# ଗୋବିନ୍ଦଚନ୍ଦ୍ର ରଚନାସମଗ୍ର

(ପ୍ରଥମ ଭାଗ)

ସଂପାଦନା :
**ଡ. ଗିରୀଶ ଚନ୍ଦ୍ର ମିଶ୍ର**

**ଆର୍ଯ୍ୟ ପ୍ରକାଶନ**
ଲିଙ୍କ୍‌ରୋଡ଼, କଟକ

# ଗୋବିନ୍ଦଚନ୍ଦ୍ର ରଚନାସମଗ୍ର
(ପ୍ରଥମ ଭାଗ)

ସଂପାଦନା :
**ଡ. ଗିରୀଶ ଚନ୍ଦ୍ର ମିଶ୍ର**
ପ୍ରାଧ୍ୟାପକ, ଓଡ଼ିଆ ବିଭାଗ
ରେଭେନ୍ସା କଲେଜ, କଟକ।

ପ୍ରକାଶକ :
**ଆର୍ଯ୍ୟ ପ୍ରକାଶନ**
ଲିଙ୍କରୋଡ୍, କଟକ—୭୫୩୦୧୨

ISBN No.:81-7412-113-2

ମୁଦ୍ରଣ :
**ଶ୍ରୀ ଜଗନ୍ନାଥ ଲାମିନେଟ୍ସ ଆଣ୍ଡ ଅଫ୍‌ସେଟ୍ ପ୍ରିଣ୍ଟର**
ବାଦାମବାଡ଼ି, କଟକ—୧୨

ପ୍ରକାଶ କାଳ :
୧୯୯୮

ପ୍ରଚ୍ଛଦପଟ :
**ସ୍ୱାହା ମିଶ୍ର**

ମୂଲ୍ୟ : ଏକଶହ ପଚାଶ ଟଙ୍କା

# ଗୋବିନ୍ଦଚନ୍ଦ୍ର ରଚନାସମଗ୍ର

## (ପ୍ରଥମ ଭାଗ)

ଜାତୀୟ ଜୀବନର ଆତ୍ମବିକାଶ (ପ୍ରଥମ ଖଣ୍ଡ)

ଜାତୀୟ ଜୀବନର ଆତ୍ମବିକାଶ (ଦ୍ୱିତୀୟ ଖଣ୍ଡ)

ଜାତୀୟ ଜୀବନର ଆତ୍ମବିକାଶ (ତୃତୀୟ ଖଣ୍ଡ)

# ପ୍ରଥମ ଭାଗ

## ପ୍ରଥମ ପରିଚ୍ଛେଦ

ମୋର ଜନ୍ମଭୂମି ଗଡ଼ଜାତର ଦଶପଲ୍ଲା ରାଜ୍ୟ। ମୋ ପିତାଙ୍କ ନାମ ବୈଦ୍ୟନାଥ ମିଶ୍ର, ପିତାମହଙ୍କ ନାମ ଈଶ୍ୱର ମିଶ୍ର। ନୟାଗଡ଼ ରାଜ୍ୟରେ ପଦ୍ମାଦେଈପୁର ଆମର ସାବକ ଘର ଅଟେ। ଏହି ଶାସନରେ ଘର ଜମି ଏବେ ମଧ୍ୟ ଅଛି। ଦଶପଲ୍ଲା ମୋର ମାମୁ ଘର। ମୋ ଅଜା (ମାତାମହ)ଙ୍କ ନାମ ହରିହର ଶତପଥୀ। ଦଶପଲ୍ଲା ରାଜା ତାହାଙ୍କୁ ରାୟଗୁରୁ ଉପାଧି ପ୍ରଦାନ କରିଥିଲେ। ତାଙ୍କର ଡାକ ନାମ ହରିରାଇଗୁରୁ। ସେ ଜଣେ ପୁରୁଣା କାଳିଆ ଅତି ସରଳ ଓ ଧାର୍ମିକ ଲୋକ ଥିଲେ। ତାହାଙ୍କୁ ରାଜାଙ୍କଠାରୁ ପ୍ରଜା ପର୍ଯ୍ୟନ୍ତ ସମସ୍ତେ ଗୁରୁତୁଲ୍ୟ ଭକ୍ତି ଓ ସମ୍ମାନ କରୁଥିଲେ। ଦଶପଲ୍ଲା ଗଡ଼ରେ ତାହାଙ୍କର ଅନେକ ଶିଷ୍ୟ ଥିଲେ। ତାହାଙ୍କ ଜୀବନରେ ସେ ରାଜକଚେରୀ ଦ୍ୱାରକୁ ଯାଇ ନଥିଲେ। ଦୁଇ ତିନି ଜଣଙ୍କୁ କୌଣସି କାର୍ଯ୍ୟ ଉପଲକ୍ଷେ ଛୁଇଁବାକୁ ହେଲେ, ସେ ପିନ୍ଧିଥିବା ଲୁଗାକୁ ପାଲଟୁ ଥିଲେ। ଦଶପଲ୍ଲା ଗଡ଼ର ଶ୍ରୀ ରାଧାକାନ୍ତ ଠାକୁର ମନ୍ଦିରର ସେ ପରିଛା ଥିଲେ। ସକାଳୁ ଦିନ ଦୁଇଟା ପର୍ଯ୍ୟନ୍ତ ଏବଂ ସଂଧ୍ୟା ସମୟରୁ ରାତ୍ରି ୧୨ଟା ପର୍ଯ୍ୟନ୍ତ ସେ ସେହି ରାଧାକାନ୍ତ ଠାକୁରଙ୍କ ନିକଟରେ ବରାବର ଧାରଣା ଦେଇ ବସୁଥିଲେ। ଏହି ସବୁ କାରଣରୁ ଦଶପଲ୍ଲା ରାଜ୍ୟରେ ସମସ୍ତେ ତାହାଙ୍କୁ ଗୁରୁତୁଲ୍ୟ ଭକ୍ତି କରୁଥିଲେ। ତାହାଙ୍କର ଅନେକ ଦିନ ପର୍ଯ୍ୟନ୍ତ ପୁତ୍ର ସନ୍ତାନ ନ ହେବାରୁ ସେ ମୋ ପିତାଙ୍କୁ ଅତି ଆଗ୍ରହରେ ଦଶପଲ୍ଲାକୁ ଡକାଇ ନେଇଥିଲେ। ମୋର ଜନ୍ମ ଏହି ଦଶପଲ୍ଲା ଗଡ଼ରେ।

ପଦ୍ମାଦେଈପୁର ଶାସନରେ ଆମ୍ଭର ସାଂସାରିକ ଅବସ୍ଥା ଟିକିଏ ଶୋଚନୀୟ ହୋଇ ପଡ଼ିଲା। ଏପରି ଅବସ୍ଥାରେ ଗୋଟିଏ ପରିବାର ଦୁଇଟି ରାଜ୍ୟରେ ଛାଡ଼ ଛାଡ଼ ହୋଇ ରହିବାକୁ କାହାରିକୁ ସୁଖ ଲାଗିଲା ନାହିଁ। ମୋ ପିତାମହ ଈଶ୍ୱର ମିଶ୍ରେ ଜଣେ ବଡ଼ ଶିବଭକ୍ତ ଓ କର୍ମଠ ବ୍ୟକ୍ତି ଥିଲେ। ସେ ପ୍ରତ୍ୟହ ସକାଳୁ ଦିନ ଦୁଇଟା ପର୍ଯ୍ୟନ୍ତ ଶିବ ମନ୍ଦିରରେ ଶିବ ଆରାଧନା କରୁଥିଲେ। ଶିବଙ୍କ ଆରାଧନା ନ କରି ସେ ଜଳ ଗ୍ରହଣ କରୁ ନଥିଲେ। ଶିବ ମନ୍ଦିରରୁ ଫେରି ଭୋଜନ ସାରି ସେ ତାଳପତ୍ର ପୋଥି ଲେଖୁଥିଲେ। ତାଙ୍କ ସମୟକୁ ମୁଦ୍ରା ଯନ୍ତ୍ରର ପ୍ରଚାର ବହୁଙ୍କ

ହୋଇ ନଥିଲା। ରାମାୟଣ ଆଦି ପୁରାଣ ଓ ଭାଗବତ ସବୁ ତାହାଙ୍କ ସମୟରେ ତାଳପତ୍ରରେ ଲେଖା ହେଉଥିଲା। ତାଳପତ୍ର ପୋଥି ଲେଖିବାରେ ସେ ବଡ଼ ନିପୁଣ ଥିଲେ। ତାହାଙ୍କ ହସ୍ତଲିଖିତ ଅନେକ ତାଳପତ୍ର ପୋଥି ଏବେ ଆମ ଘରେ ଅଛି। ତାହାଙ୍କର ଏହି ସବୁ ଗୁଣ ହେତୁ ମୋ ଅଜା ମଧ ତାହାଙ୍କୁ ଭକ୍ତି କରୁଥିଲେ। ମୋ ପିତାଙ୍କର ଦଶପଲ୍ଲାକୁ ଆସିବାର କେତେକ ବର୍ଷପରେ ମୋ ଅଜାଙ୍କର ଆଗ୍ରହ ଓ ଅନୁରୋଧରେ ମୋ ପିତାମହ ଆଦି ପରିବାରର ଅନ୍ୟାନ୍ୟ ସମସ୍ତେ ଦଶପଲ୍ଲାକୁ ଚାଲି ଆସିଲେ।

ଓଡ଼ିଶା ଗଡ଼ଜାତରେ କୁଳୀନ ବୈଦିକ ବ୍ରାହ୍ମଣ ବସତି ତଥା ଶାସନ ଅଛି। ସେମାନେ ସମସ୍ତେ ପୁରୀର ଶାସନୀ ବ୍ରାହ୍ମଣ। ପୁରୀ ରାଜାଙ୍କ ଷୋଳ ଶାସନ ଓଡ଼ିଶାରେ ବୈଦିକ ଧର୍ମର ପୀଠ ବୋଲି ପ୍ରସିଦ୍ଧ। ଓଡ଼ିଆ ଜାତିର ରୁଚି ଓ ସଭ୍ୟତା ଏହି ପୁରୀ ବ୍ରାହ୍ମଣ ଶାସନମାନଙ୍କର ପୂର୍ଣ୍ଣାଙ୍ଗ ପ୍ରାପ୍ତି ଲାଭ କରିଥିଲା, ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ। ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳର କଥା ମୁଁ ଭଲକରି କହିପାରିବି ନାହିଁ। ମାତ୍ର ଗଡ଼ଜାତମାନଙ୍କରେ କୌଣସି ନୀତି ନିୟମର ଆଲୋଚନା ବେଳେ, ରାଜା ଓ ପ୍ରଜା ସମସ୍ତେ ଏହି ପୁରୀକୁ ଆଦର୍ଶ ରୂପେ ଦେଖନ୍ତି। ଏହିପରି କେତେ କାରଣରୁ ପୂର୍ବେ ପୁରୀ ଜିଲ୍ଲାର ଶାସନମାନଙ୍କରୁ କୁଳୀନ ବ୍ରାହ୍ମଣମାନଙ୍କୁ ନିମନ୍ତ୍ରଣ କରି ଜମି ଘର ଦାନ ଦେଇ ବ୍ରାହ୍ମଣ ଶାସନ ସ୍ଥାପନ କରିବାକୁ ଗଡ଼ଜାତର ରାଜାମାନେ ଗୋଟିଏ ପୁଣ୍ୟ କର୍ମ ବୋଲି ବିବେଚନା କରୁଥିଲେ। ଏହିପରି ଭାବରେ ନିମନ୍ତ୍ରିତ ହୋଇ ଆମ ପୂର୍ବପୁରୁଷ କେହି ନୟାଗଡ଼ ପଦ୍ମାଦେଈପୁର ଶାସନରେ ଦାନ-ଜମି ପାଇ ବସତି କରିଥିଲେ। ପୁରୀର ବୀର-ନରସିଂହପୁର ଆମ ପୂର୍ବପୁରୁଷଙ୍କ ବାସସ୍ଥାନ ବୋଲି ମୁଁ ଶୁଣୁଛି, କିନ୍ତୁ ସେଠାରୁ କିଏ କେବେ ଆସିଥିଲେ ତାହା ମୁଁ ଜାଣେ ନାହିଁ।

ସେ ଯାହାହେଉ, ଦଶପଲ୍ଲାରେ ଭଲ ବ୍ରାହ୍ମଣ ସଂଖ୍ୟ ଅତି କମ୍। ଦଶପଲ୍ଲା ଗଡ଼ରେ ବୈଦିକ ଓ ଆରଣ୍ୟକ ଏହିପରି ଦୁଇ ଶ୍ରେଣୀର ବ୍ରାହ୍ମଣ ଅଛନ୍ତି। ଆରଣ୍ୟକ ବ୍ରାହ୍ମଣମାନଙ୍କୁ 'ଝାଡୁଆ' ବ୍ରାହ୍ମଣ ବୋଲି କହନ୍ତି। ଏହି ଦୁଇ ଶ୍ରେଣୀ ବ୍ରାହ୍ମଣଙ୍କ ମଧରେ କୌଣସି ପ୍ରକାର ସାମାଜିକ ସଂବନ୍ଧ ନାହିଁ। ଏବେ ମଧ କେହି କାହା ସହିତ ବନ୍ଧୁ ବାନ୍ଧିବାକୁ କୁଣ୍ଠିତ। ବୈଦିକ ବ୍ରାହ୍ମଣମାନେ ଆପଣାକୁ ଏହି ଆରଣ୍ୟକ ବ୍ରାହ୍ମଣମାନଙ୍କଠାରୁ ଉଚ୍ଚ ବୋଲି ମନେ କରନ୍ତି। ଏହିପରି ଆହୁରି ମଧ କେତେକ କାରଣରୁ ମୋ ଅଜା ମୋ ପିତା ଓ ପିତାମହଙ୍କୁ ପଦ୍ମାଦେଈପୁର ଶାସନକୁ ଛାଡ଼ି ଦଶପଲ୍ଲା ଆସିବାକୁ ପ୍ରବର୍ତ୍ତାଇଥିଲେ।

ମୋ ଅଜା ଜଣେ ପ୍ରଭାବଶାଳୀ ଲୋକ ଥିଲେ। ପ୍ରଭାବଶାଳୀ କହିଲେ ସେ ଜଣେ ବଡ଼ ପଣ୍ଡିତ କିମ୍ବା ଧନବାନ୍ ନଥିଲେ। ମୋଗଲବନ୍ଦୀରେ ସାଧାରଣତଃ

ଧନୀ ଓ ଜମିଦାରୀମାନେ ବଡ଼ଲୋକ ଓ ପ୍ରଭାବଶାଳୀ। କିନ୍ତୁ ଗଡ଼ଜାତରେ ଏ ସବୁର କୌଣସି ମୂଲ୍ୟ ନାହିଁ। ଗଡ଼ଜାତରେ ରାଜାମାନେ ହେଉଛନ୍ତି ସମସ୍ତପ୍ରକାର ପ୍ରଭାବର ମୂଳ। ଯାହାଙ୍କଠାରେ ଯେତେ ପରିମାଣରେ ରାଜ ଅନୁଗ୍ରହ ପଡ଼ିଥାଏ ସେ ସେତିକି ମାତ୍ରାରେ ବଡ଼ଲୋକ ଓ ପ୍ରଭାବଶାଳୀ ବିବେଚିତ ହୁଅନ୍ତି। ସୁତରାଂ ମୋ ଅଜାଙ୍କଠାରେ କେବଳ ଯେ ରାଜ ଅନୁଗ୍ରହ ଥିଲା ତାହା ନୁହେଁ, ରାଜପରିବାରର ସମସ୍ତେ ମଧ୍ୟ ତାହାଙ୍କୁ ଗୁରୁତୁଲ୍ୟ ଭକ୍ତି ଓ ସମ୍ମାନ କରୁଥିଲେ। ତେଣୁ ଅଜାଙ୍କର ପ୍ରଭାବ ରାଜ୍ୟରେ କମ୍ ନଥିଲା। ଅଜାଙ୍କର ପ୍ରଭାବରୁ ମୋ ପିତା ଏବଂ ପିତାମହଙ୍କର ପ୍ରଭାବ ରହିବା ସ୍ୱାଭାବିକ। ମୋ ପିତାମହ ଶ୍ରୀ ଈଶ୍ୱର ମିଶ୍ରଙ୍କର ସରଳ ପ୍ରକୃତି, ନୈଷ୍ଠିକତା ଓ କର୍ମ ନୈପୁଣ୍ୟ ହେତୁ ଅତି ଅଳ୍ପ ସମୟ ମଧ୍ୟରେ ସେ ସମସ୍ତଙ୍କ ପ୍ରୀତିଭାଜନ ହୋଇ ପାରିଥିଲେ।

ମୋ ମାତାଙ୍କର ନାମ କମଳା ଦେବୀ। ସେ ବଡ଼ ଅଭିମାନିନୀ ଓ ଏକବୁଝା ଥିଲେ। ମୋ ଉପରେ ମୋର ଗୋଟିଏ ଭାଇ ଥିଲେ। ସେ ମରିଯିବାର ଅନେକ ବର୍ଷ ପର୍ଯ୍ୟନ୍ତ ମୋ ପିତା ମାତାଙ୍କର ସନ୍ତାନ ସନ୍ତତି କିଛି ହେଲେ ନାହିଁ। ସନ୍ତାନ ଲାଭ ପାଇଁ ମୋ ମାତା ବହୁତ ଓଷା ବ୍ରତ କଲା ପରେ ମୋର ଜନ୍ମ ହେଲା। ମୋ ଜନ୍ମ ହେବା ପରେ ମୋ ପିତା ମାତା ମୋତେ ପୁରୁଣା ଦଶପଲ୍ଲା ଗଡ଼ରେ ଥିବା ପ୍ରସିଦ୍ଧ ବଳଭଦ୍ର ଠାକୁରଙ୍କ ନିକଟରେ ବନ୍ଧା ପକାଇ ଦେଇଥିଲେ। ଗଡ଼ଜାତରେ ଗୋଟିଏ ପ୍ରଥା ଅଛି; ପିତା ମାତା ସନ୍ତାନର ବଞ୍ଚି ରହିବା ଆଶାରେ କୌଣସି ପ୍ରସିଦ୍ଧ ଠାକୁରଙ୍କ ନିକଟରେ ସନ୍ତାନକୁ ଏହିପରି ବନ୍ଧା ପକାଇ ଥାଆନ୍ତି। ପୁଣି ସନ୍ତାନ ବଡ଼ ହୋଇଗଲେ କର୍ଣ୍ଣବେଧ ବା ଉପନୟନ ସମୟରେ ଠାକୁରଙ୍କ ନିକଟରେ ଉପଯୁକ୍ତ ବ୍ୟବସ୍ଥା କରି ଓ କଳ୍ପିତ ଋଣ ଟଙ୍କା ଠାକୁରଙ୍କୁ ବା ସେବକଙ୍କୁ ସୁଝି ସନ୍ତାନକୁ ମୁକୁଳାଇ ନିଅନ୍ତି। ମୁଁ ବନ୍ଧା ପଡ଼ିଥିଲି ସତ୍ୟ କିନ୍ତୁ ମୋତେ ଆଉ ମୋ ପିତା ମାତା ମୁକୁଳାଇ ନାହାନ୍ତି। ମୋତେ ମୁକୁଳାଇବାର ସମୟ ଉପସ୍ଥିତ ହେବା ପୂର୍ବରୁ ସେମାନେ ସଂସାର ଛାଡ଼ି ଚାଲିଗଲେ। ଆଜି ପର୍ଯ୍ୟନ୍ତ ମୁଁ ଠାକୁରଙ୍କ ନିକଟରେ ବନ୍ଧା ରହିଅଛି। ଏଥିଯୋଗୁଁ 'ମୁଁ ଦିଅଁଙ୍କର'; ଏହି କଥାଟି ମୋତେ ଗୋଟିଏ ବଡ଼ ଯୁକ୍ତି ଯୋଗାଇଛି। ମୋର ନିକଟ ସଂପର୍କୀୟ ବ୍ୟକ୍ତି ସବୁ ଦେଶ କାର୍ଯ୍ୟରୁ ନିବୃତ୍ତ ହୋଇ ସଂସାର ଭିତରେ ପ୍ରବେଶ କରିବାକୁ ମୋ ସହିତ ଯୁକ୍ତି କଲାବେଳେ ମୁଁ କହିଥାଏ, ମୁଁ ବଳଭଦ୍ର ଠାକୁରଙ୍କ ନିକଟରେ ବନ୍ଧା ଅଛି। ମୁଁ ଠାକୁରଙ୍କ କାର୍ଯ୍ୟ କରିବି। ସଂସାର କଥା ଆଉ ମୋତେ କାହିଁକି କହୁଛ ?

ମୋର ଶୈଶବକାଳ ଅତି ସୁଖରେ ଯାଇଛି। ସମସ୍ତଙ୍କ ଠାରୁ ଟିକିଏ ଅତି ମାତ୍ରାରେ ସ୍ନେହ ଆଦର ପାଇଥିବାରୁ ମୁଁ ମଧ୍ୟ ଟିକିଏ ଜିଦ୍‌ଖୋର୍ ହୋଇ ଯାଇଛି। ଏହି ପ୍ରକୃତି ମୋର ବର୍ତ୍ତମାନ ଜୀବନର ବହୁତ ସୁଖ ଦୁଃଖର କାରଣ ହୋଇଛି।

କିନ୍ତୁ ମୋତେ ବହୁଦିନ ସୁଖ ଭୋଗ କରିବାକୁ ପଡ଼ି ନଥିଲା। ଅତି ଅଳ୍ପ ଦିନ ମଧ୍ୟରେ ନାବିକବିହୀନ ନାବ ପରି ମୋତେ ଦୁଃଖ ସାଗରରେ ଭାସିବାକୁ ପଡ଼ିଥିଲା। ଜୀବନ ଓ ଜୀବିକା ନିମିତ୍ତ ମୋତେ ବାଲ୍ୟକାଳରୁ ସଂଗ୍ରାମ କରିବାକୁ ପଡ଼ିଥିଲା।

ମୋ ପିତା ବୈଦ୍ୟ ବୃତ୍ତି କରୁଥିଲେ। କେଇ ଚାଷ ବାସ ବୁଝୁ ଥିଲେ। ଦଶପଲ୍ଲାରେ ଆମର ନିଜର ହୋଇ ଜମି ନଥିଲା। ଅଜାଙ୍କ ସାହାଯ୍ୟ ଓ ପ୍ରଭାବରୁ ଆମର ଚାଷ ବିଷୟରେ କୌଣସି ଅସୁବିଧା ହେଉ ନ ଥିଲା। ଚାଷ କହିଲେ, କେତେକ ଜମି ଆମର ଭାଗ ଚାଷ ଥାଏ। ଅଜା ରାଧାକାନ୍ତ ଠାକୁରଙ୍କର ପରିଚ୍ଛା। ତେଣୁ ଏହି ଠାକୁରଙ୍କର କେତେକ ଭଲ ଜମି ଆମକୁ ଭାଗ ଚାଷ କରିବାକୁ ଦେଇ ଥାଆନ୍ତି। ଗଡ଼ଜାତର ବର୍ତ୍ତମାନ ଅବସ୍ଥାକୁ ସେତେବେଳର ଅବସ୍ଥା ସଂଗେ ତୁଳନା କରାଯାଇ ନ ପାରେ। ସେତେବେଳେ ଗଡ଼ଜାତର ଲୋକେ ନିଜର ଯୋତରୂପେ ଜମି କରିବାକୁ ବଡ଼ ଇଚ୍ଛୁକ ହେଉ ନଥିଲେ। ଲୋକଙ୍କର ଏତେ ଅଭାବ ନଥିଲା। ଜୀବନ ଅତି ସରଳଭାବରେ ସମସ୍ତେ ଯାପନ କରୁଥିଲେ। ଅଭାବର ମାତ୍ରା ଅତି କମ୍ ଥିବାରୁ କେତେବେଳେ କିଛି ଅଭାବ ଥିଲାପରି ସେମାନେ ଅନୁଭବ କରିପାରୁ ନଥିଲେ। ରାଜା ପ୍ରଜାଙ୍କ ସମ୍ବନ୍ଧ ମଧ୍ୟ ପିତା ପୁତ୍ରର ସମ୍ବନ୍ଧ ପରି ଥିଲା। ଅନ୍ୟାୟ ଅବିଚାର କଅଣ, ପ୍ରଜା କିଛି ଜାଣୁ ନ ଥିଲେ। ମାଲି ମକଦ୍ଦମା ନ ଥିଲା। କର ପୀଡ଼ା କଣ ତାହା ମଧ୍ୟ ପ୍ରଜା ଜାଣୁ ନ ଥିଲେ। ବେଠି ପ୍ରଭୃତିର ପ୍ରଚଳନ ବିଶେଷ ଭାବରେ ନ ଥିଲା। ଚାଷ ଜମି ପାଇଁ ସାମାନ୍ୟ ମାତ୍ର ଖଜଣା ଦେବାକୁ ପଡୁଥିଲା। ରାଜାଙ୍କର ଆଜିକାଲି ପରି ଏତେ ଆଡ଼ମ୍ବର ନ ଥିଲା, କିମ୍ବା ବ୍ୟୟାଧିକ୍ୟ ମଧ୍ୟ ନ ଥିଲା। ରାଜା ପାରିଧି ବା ଶୀକାର କରିବାକୁ ବାହାରିଲେ ପ୍ରଜାମାନେ ତାଙ୍କ ସାଙ୍ଗରେ ଜଙ୍ଗଲକୁ ଯାଉଥିଲେ। ଆଜିକାଲି ତାହା ଏକ ବେଠିରେ ପରିଣତ ହୋଇ ଗଲାଣି। ଜଗନ୍ନାଥଙ୍କର ରଥ ଟାଣିବା ଓ ପୁରୀକୁ ରଥ କାଠ ଯୋଗାଇବା ଏହି ଦୁଇଟି ପ୍ରଜାମାନଙ୍କର ସାଧାରଣ ବେଠି। ଏତଦ୍‌ବ୍ୟତୀତ ଜାଗିରି ଜମି ଖାଇ ଜାଗିରିଆ ପ୍ରଜା ଥିଲେ। ସେମାନେ ରଜାଘରର ଅନ୍ୟ ସବୁ ପ୍ରକାର କାମ କରୁଥିଲେ।

ଏହି ସମୟରେ ଦଶପଲ୍ଲାର ରାଜା ଥିଲେ ଶ୍ରୀ ଚୈତନ୍ୟ ଭଞ୍ଜଦେଓ। ଅତର ମିଆଁ ନାମରେ ଜଣେ ମୁସଲମାନ ଥିଲେ ଦଶପଲ୍ଲାର ଦେବାନ। ମୋର ବୟସ ସେତେବେଳେ ପାଞ୍ଚ କିମ୍ବା ଛଅ ହେବ। ଦଶପଲ୍ଲା ଗଡ଼ରେ ସେତେବେଳକୁ ଗୋଟିଏ ଭର୍ଣ୍ଣାକ୍ୟୁଲର ଇସ୍କୁଲ ଥାଏ। ସେହି ଇସ୍କୁଲରେ ମୋ ପାଠ ପଢ଼ା ଆରମ୍ଭ ହେଲା। ସେହି ଇସ୍କୁଲରେ ଦେବାନଙ୍କର କେତେ ଗୁଡ଼ିଏ ପିଲା ପଢୁଥାନ୍ତି। ସେମାନଙ୍କ ନାମ ସଏଦ୍, ରାପ୍ପା, ଓଜି। ଏମାନଙ୍କ ମଧ୍ୟରେ ସଏଦ୍ ଜ୍ୟେଷ୍ଠ। ସେ ଭାରି କ୍ରୀଡ଼ାପ୍ରିୟ ଥିଲେ। ସେ ପ୍ରଥମେ ଦଶପଲ୍ଲାରେ ପେଣ୍ଡୁ (କ୍ରିକେଟ୍) ଆରମ୍ଭ କରିଥିଲେ। ସଏଦ୍ ମିଆଁ ଯୋଗୁ ସେତେବେଳକୁ ସେହି ଇସ୍କୁଲରେ ଆଧୁନିକ ଧରଣର କେତେ ଖେଳ

ପ୍ରଚଳିତ ହୋଇଥାଏ। ଏହି ଖେଳ ମୋତେ ଇସ୍କୁଲକୁ ଟାଣି ନେଇ ଥିଲା। ସଏଦ୍ ମିଆଁ ପିଲାଙ୍କୁ ନେଇ ବହୁତ ଖେଳ କରନ୍ତି। ଇସ୍କୁଲର ମାଷ୍ଟ୍ରମାନେ ପୁରୁଣା କାଳିଆ। ସେମାନେ ଖେଳକଥା କିଛି ଜାଣି ନ ଥାନ୍ତି କହିଲେ ଚଳେ। ପିଲାଙ୍କୁ ପାଠ ଘୋଷିବାକୁ ଦେବା ଏବଂ ନିର୍ଦ୍ଦିଷ୍ଟ ସମୟରେ ପାଠ ଆଦାୟ ନ ଦେଲେ ମାଡ଼ ଦେବା, ଏହା ହେଉଥିଲା ମାଷ୍ଟରଙ୍କ କାର୍ଯ୍ୟ। ଏହାଛଡ଼ା ପ୍ରତି କ୍ଲାସ୍‌ରେ, ବିଶେଷତଃ ତଳ କ୍ଲାସ୍‌ମାନଙ୍କରେ ଜଣେ ଜଣେ ଚାଟ ପିଲାଥିଲେ। ଏହି ଚାଟପିଲାମାନେ ପ୍ରକୃତରେ ଶିକ୍ଷକ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। କାରଣ ଏହି ଚାଟ ପିଲା କ୍ଲାସରେ ପିଲାଙ୍କୁ ପଛ ଦେଉଥିଲେ ପିଲାଙ୍କଠାରୁ ପଢ଼ା ବୁଝି ନେଉଥିଲେ। ପଢ଼ା କାହାକୁ ନ ଆସିଲେ ଏହି ଚାଟ ପିଲା ଶିକ୍ଷକଙ୍କ ନିର୍ଦ୍ଦେଶ ମତେ ସେ ପିଲାକୁ ମାଡ଼ ଦେଉଥିଲେ, ସୁତରାଂ ଏହି ଚାଟ ପିଲାଙ୍କୁ କ୍ଲାସର ବାଳକମାନଙ୍କର ଯେତେ ଡର ଶିକ୍ଷକଙ୍କୁ ସେତେ ନ ଥାଏ। ପିଲାଦିନେ ମୋର ପାଠରେ ତେତେ ମନ ନ ଥାଏ। ସଏଦ୍ ମିଆଁଙ୍କ ଖେଳ ପ୍ରତି ମୋର ଭାରି ଆଗ୍ରହ। ସେ ଥିଲେ ସ୍କୁଲର ବଡ଼ ଚାଟ। ତାହାଙ୍କ ପ୍ରତି ମୋର ଡର ନ ଥାଏ, କିନ୍ତୁ ଆମ କ୍ଲାସର ଚାଟକୁ ମୋର ଭାରି ଡର। ପାଠ ଟିକିଏ ନ ଆସିଲେ ସେ ଭାରି ମାଡ଼ ଦେଉଥିଲା। ଦିନେ ଦିନେ ମୁଁ ସ୍କୁଲରେ ମାଡ଼ଖାଇ ଘରକୁ ଫେରିଯାଏ। ଆଉ ସ୍କୁଲକୁ ଆସିବାକୁ ମୋ ମନ ଡାକେ ନାହିଁ। ଗଦାଧର, ଦୀନବନ୍ଧୁ ଓ କୃଷ୍ଣ ନାମରେ ମୋର କେତୋଟି ସାଥି ପିଲା ଥିଲେ। ଦିନେ ଦିନେ ମୁଁ, ଦୀନବନ୍ଧୁ ଓ ଗଦାଧର, ସ୍କୁଲକୁ ଆସୁ ଆସୁ ବାଟରୁ ପଳାଇ ଯାଉଥିଲୁ । କିନ୍ତୁ ଘରକୁ ନ ଯାଇ ଗୋଟିଏ ସ୍ଥାନରେ ଲୁଚି ରହୁଥିଲୁ। ସ୍କୁଲ ଛୁଟି ହେଲା ବେଳେ ହେଲେ ଘରକୁ ଆସୁଥିଲୁ। ଘରେ ସମସ୍ତେ ଜାଣୁଥିଲେ ଯେ ଆମେ ସ୍କୁଲକୁ ଯାଇ ସ୍କୁଲରୁ ଫେରୁଛୁ।

ସ୍କୁଲରେ ବ୍ରଜବନ୍ଧୁ ମିଶ୍ର ନାମରେ ଜଣେ ଶିକ୍ଷକ ଥିଲେ। ତାଙ୍କର ଘର ଦଶପଲ୍ଲା ଗଡ଼ରେ। ଯେଉଁ ଦିନ ଯେଉଁ ପିଲା ସ୍କୁଲକୁ ଯାଇ ନଥାଏ, ଦିନେ ଦିନେ ଏହି ବ୍ରଜବନ୍ଧୁ ମିଶ୍ର ତା ଘରକୁ ଯାଇ ବାଳକର ସ୍କୁଲକୁ ନ ଯିବାର କାରଣ ଅନୁସନ୍ଧାନ କରୁଥିଲେ। ଏହିପରି ଭାବରେ ପିଲାର ସ୍କୁଲକୁ ଯାଇ ନ ଥିବାର ସମ୍ବାଦ ଘରେ ପିତାମାତା ଜାଣି ପାରିଲେ, ପିଲାକୁ ଘରୁ ମଧ୍ୟ ଶାସ୍ତି ମିଳୁଥିଲା। ସ୍କୁଲରେ ମଙ୍ଗୁଳିଆ ନାମରେ ଗୋଟିଏ ଦପ୍ତରି ଥିଲା। ପିଲାଙ୍କୁ ଡାକିକରି ସ୍କୁଲରେ ହାଜର କରିବା ତାହାର ପ୍ରଧାନ କାମ। ସ୍କୁଲରେ ବେଶୀ ପିଲା ନ ଜମିଲେ ମଙ୍ଗୁଳିଆର ଚାକିରି ଯିବ। କେହି ପିଲା ବାରମ୍ବାର ଘରେ ହାଜର ହେଲେ ମଙ୍ଗୁଳିଆକୁ ଜୋରିମାନା ହେଉଥିଲା। ସୁତରାଂ ନ ଆସିଥିବା ପିଲାମାନଙ୍କୁ ଧରି ଆଣିବାକୁ ସେ ବହୁତ ଚେଷ୍ଟା କରୁଥାଏ। ପିଲାମାନଙ୍କ ଲୁଚିବାର ସ୍ଥାନ ସବୁ ମଙ୍ଗୁଳିଆକୁ ଜଣା। ଗଡ଼ର ଅନ୍ଧିକନ୍ଧି ମଙ୍ଗୁଳିଆକୁ କିଛି ଅଗୋଚର ନଥିଲା। ଲୁଚିବା ସ୍ଥାନସବୁ

ଖୋଜି ମଙ୍ଗୁଲିଆ କୌଣସି ଲୁଚିଥିବା ପିଲାଙ୍କୁ ପାଇଲେ ସେ ତାକୁ ଧରି ମାରି ଘୋସାରି ଟାଣିନେଇ ଆସୁଥିଲା। ତା ନିକଟରେ ଦୟାମାୟା କିଛି ନଥିଲା। ଦୁଇ ଚାରିଜଣ ବଡ଼ ପିଲା ଯଦି ମେଳିବାନ୍ଧି ସ୍କୁଲକୁ ନ ଆସି ଲୁଚି ରହି ଥାଆନ୍ତି, ତେବେ ମଙ୍ଗୁଲିଆ ଖୋଜି ଖୋଜି ସେମାନଙ୍କ ନିକଟରେ ହାଜର ହେଲେ ପିଲାମାନେ ତାକୁ ଧରି ଟାଙ୍କେ ଛେଚି ଛାଡ଼ି ଦେଉଥିଲେ। ମାଡ଼ଖାଇ କିନ୍ତୁ ମଙ୍ଗୁଲିଆ ପିଲାଖୋଜା ଓ ପିଲାଧରା କାମରେ ହଟୁ ନ ଥାଏ। ହଟିବ ଅବା କିପରି? ହଟିଲେ ତେଣେ ଜୋରିମାନା ହେବ। ସୁତରାଂ ସେ ସ୍କୁଲକୁ ଆସି ଶିକ୍ଷକଙ୍କୁ କହି ଆଉ କେତେଜଣ ପିଲାଙ୍କୁ ସଙ୍ଗରେ ନେଇଯାଇ ଲୁଚିଥିବା ପିଲାଙ୍କୁ ଖୋଜେ ଓ ସାଙ୍ଗରେ ନେଇଥିବା ପିଲାମାନଙ୍କ ସାହାଯ୍ୟରେ ଲୁଚିଥିବା ପିଲାଙ୍କୁ ଧରି ଆଣେ। ଲୁଚିଥିବା ପିଲା ଧରାହୋଇ ସ୍କୁଲକୁ ଆସିଲେ ତା' ଅବସ୍ଥା ଶୋଚନୀୟ ହୁଏ। ସ୍କୁଲ ଛୁଟିହେବା ପର୍ଯ୍ୟନ୍ତ ତାକୁ 'ନାକ ଖଡ଼ି' ଶାସ୍ତି ଦିଆ ହୁଏ। ଚାଟ ପିଲାଠାରୁ ଆରମ୍ଭ କରି ଶିକ୍ଷକ ପର୍ଯ୍ୟନ୍ତ ଯେ ଯେପରି ପାରିଲା ସେପରି ତାକୁ ମାଡ଼ ଦେଉ ଥାଆନ୍ତି। ଏହି କାରଣରୁ ପିଲାମାନଙ୍କୁ ସ୍କୁଲ ଯମାଳୟ ପରି ବୋଧ ହେଉଥାଏ। ବାଳକର ହୃଦୟ ଅତି କୋମଳ। ତାର କୋମଳ ହୃଦୟରେ ପାଠ ପ୍ରତି ଆଗ୍ରହ ଜନ୍ମାଇବା ପାଠ ପଢ଼ାର ପ୍ରଧାନ କାର୍ଯ୍ୟ। ସେ କାଳର ଶିକ୍ଷକମାନେ ତାହା ଜାଣୁ ନ ଥିଲେ। ଆଜି ମଧ ଶିକ୍ଷକମାନେ ସେକଥା ସଂପୂର୍ଣ୍ଣରୂପେ ହୃଦୟଙ୍ଗମ କଲେଣି ବୋଲି କହି ହେବ ନାହିଁ। ବର୍ତ୍ତମାନ ପଲ୍ଲୀ ଗ୍ରାମର ସ୍କୁଲ ଓ ଶିକ୍ଷକମାନଙ୍କ ଶିକ୍ଷାପ୍ରଣାଳୀ ଦେଖିଲେ କିଏ ବିଶ୍ୱାସ କରିବ ଯେ ଦେଶର ଭବିଷ୍ୟତ ଆଶାର ସ୍ଥଳ ବାଳକ ବାଳିକାମାନଙ୍କର ଉପଯୁକ୍ତ ଶିକ୍ଷା ପ୍ରଣାଳୀ ଦେଶରେ ପ୍ରଚଳିତ ହେଲାଣି? ବର୍ତ୍ତମାନର ଅବସ୍ଥା ତ ଏହିପରି ଆଜିକୁ ଚାଳିଶ ବର୍ଷ ତଳେ, ବିଶେଷତଃ ଗଡ଼ଜାତରେ, ଶିଶୁ ଶିକ୍ଷାର ନିୟମ କିପରି ଥିବ ତାହା ସହଜରେ ଅନୁମାନ କରାଯାଇ ପାରେ।

ସେ ଯାହାହେଉ, ମୁଁ ମୋ ସାଙ୍ଗ ପିଲାଙ୍କ ସାଥିରେ ଏପରି କେତେ ଥର ସ୍କୁଲକୁ ନ ଯାଇ ଲୁଚିଛି। ମଙ୍ଗୁଲିଆ ମୋତେ ଖୋଜି ଧରି ଆଣିଛି। ମୁଁ କେତେଥର ମଧ ମଙ୍ଗୁଲିଆ ସାଥିରେ ପିଲାଙ୍କୁ ଖୋଜିବାକୁ ଯାଇଛି। ଦଶପଲ୍ଲା ଗଡ଼ରେ ଗୋଟିଏ ବଡ଼ ପୋଖରୀ ଅଛି। ଏହି ପୋଖରୀ ହୁଡ଼ା ଚାରିପାଖ ଜଙ୍ଗଲରେ ପୂର୍ଣ୍ଣ। ଏହି ଜଙ୍ଗଲରେ ଗଡ଼ର ପିଲାମାନେ ଲୁଚି ଥାଆନ୍ତି। ଏବେ ସେହି ପୋଖରୀ ଅଛି, ମାତ୍ର ମଙ୍ଗୁଲିଆ ଆଉ ନାହିଁ ଏବଂ ସେହି ସ୍କୁଲ ମଧ ନାହିଁ। ସେହି ମାଷ୍ଟରମାନେ ନାହାନ୍ତି। ମୋ ସାଥି ପିଲାମାନଙ୍କ ମଧ୍ୟରୁ ଅନେକେ ମଧ ଇହ ସଂସାର ଛାଡ଼ି ଚାଲି ଗଲେଣି। ମାତ୍ର ସେହିସବୁ କଥା ଏବେ ମୋ ମନରେ ଅଛି। ଚାଳିଶ ବର୍ଷ ତଳର କଥା ମୋତେ କାଲି ପରି ଲାଗୁଛି। ଏସବୁ ଆଜି ମନେ ପଡ଼ିଲା ବେଳେ ମନରେ କେତେ ଭାବ ଖେଳି ଯାଉଛି। ମନ ଦୁଃଖରେ ବୁଡ଼ି ଯାଉଛି।

ହୃଦୟ କହୁଛି, ଏପରି ଅବସ୍ଥାରେ କୌଣସି ଦେଶ ଉନ୍ନତ ହୋଇ ନ ପାରେ। ବାଲ୍ୟକାଳରୁ ମନରେ ଉଚ୍ଚ ଭାବର ଅଙ୍କୁର ଉଠିବାର ଅନୁକୂଳ ପରିସ୍ଥିତି ଆମ ଦେଶରେ ତଥା ସମାଜରେ ନାହିଁ। ବାଲ୍ୟକାଳରୁ ପିଲାଙ୍କ ମନ ଓ ହୃଦୟ ଚିପି ହୋଇଯାଉଛି। ସତେ ଯେପରି ହିମାଳୟ ଦେଶର ଅଙ୍କୁରିତ ଜୀବନକୁ ଚିପି ଦେଉଛି। ମନୁଷ୍ୟ ବା ଏହାକୁ ଠେଲି କେତେଦୂର ଉଠିବ ? ତାହାର ଅବା ବଳ କେତେ ଏବଂ କେଉଁଠାରୁ ସେହି ବଳ ପାଇବ ?

ଗଡ଼ଜାତମାନଙ୍କର ରାଜଗଡ଼ମାନ ଗୋଟିଏ ଗୋଟିଏ ଛୋଟ ସହର ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ। ସହରମାନଙ୍କର ଚାଲିଚଳଣ ଏହି ଗଡ଼ମାନଙ୍କରେ ଥାଏ। ମଫସଲର ପିଲାମାନଙ୍କର ତୁଳନାରେ ଗଡ଼ର ପିଲାମାନେ ଟିକିଏ ଦୁଷ୍ଟ, ସବୁ ବିଷୟରେ ଆଗୁଆ ଓ ସାହସୀ। ଆମର ଘର ଗଡ଼ରେ ହୋଇଥିବାରୁ ମୁଁ ମଧ୍ୟ ପିଲାଦିନେ ସେହି ଧରଣର ପିଲା ଥିଲି। ଗଡ଼ରେ ସାଙ୍ଗ ସାଥି ବହୁତ ମିଳନ୍ତି। ଆମ ପଡ଼ିଶାଘର ଗୋଟିଏ ପିଲାର ନାମ ଗଦାଧର। ସେ ମୋର ପିଲାଦିନର ସାଥି। ଆମେ ଦୁହେଁ ଆଉ କେତୋଟି ପିଲାଙ୍କ ସହିତ ସାଙ୍ଗ ହୋଇଥାଉଁ। ସ୍କୁଲକୁ ଅନେକ ସମୟରେ ନ ଯାଇ ଲୁଚିରହୁଁ। କେବଳ ତାହା ନୁହେଁ। ସ୍କୁଲକୁ ଯାଇ, ହାଜିରା ଡକାହେଲା ପରେ ସ୍କୁଲରୁ ପଳାଇ ଆସିବାର ଫିକର ପାଞ୍ଚି ପଳାଇ ଆସୁଁ। ଆମ୍ଭମାନଙ୍କ ମଧ୍ୟରେ ପ୍ରଥମରୁ ବିଚାର ହୁଏ ଯେ, ଆଗ ଜଣେ ବହିତକ ଧରି ପଳାଇବ। ସେ ପଳାଇଲା କହି ତାକୁ ଧରିବାକୁ ବାହାନା କରି ଆଉ ଜଣେ ତାକୁ ଗୋଡ଼ାଇବ। ଦ୍ୱିତୀୟ ପିଲା ପଳାଇଲା ବୋଲି ଆଉ ଜଣେ ତା ପଛ ଧରିବ। ତା ପଛକୁ ଆଉ ଜଣେ ଉଠି ତାକୁ ଗୋଡ଼ାଇବ। ଏହିପରି ପାଞ୍ଚ ଛଅଜଣ ପିଲା ସ୍କୁଲରୁ ପଳାଇ ଯାଉଥିବେ। ଶିକ୍ଷକମାନେ କହୁଥିବେ ପ୍ରଥମରୁ ପଳାଇ ଯାଇଥିବା ପିଲାକୁ ଧରିବାକୁ ଏମାନେ ଗୋଡ଼ାଇଛନ୍ତି। ଏହିପରି ଶିକ୍ଷକଙ୍କୁ ଠକିବାପାଇଁ ଗଡ଼ର ପିଲାମାନେ କେତେପ୍ରକାର ଉପାୟ ରଚନା କରୁଥାଆନ୍ତି। ଏହିପରି କେତେଥର ମୁଁ ସ୍କୁଲରୁ ପଳାଇ ଆସିଛି। ସ୍କୁଲରୁ ପଳାଇ ଆସି କୌଣସି ଗୋଟିଏ ଦୂର ସ୍ଥାନକୁ ଯାଉଁ। ଗଛରେ ଚଢ଼ିବା, ନାନାପ୍ରକାର ଖେଳ କରିବା, ପୋଖରୀରେ ପହଁରିବା ଇତ୍ୟାଦି କୌତୁକରେ ସମୟ କଟାଇଦେଉଁ। ସ୍କୁଲରୁ ପଳାଇଲା ଦିନ ଘରେ ମାଡ଼ ଖାଉଁ ଏବଂ ସ୍କୁଲରେ ମାଡ଼ ଖାଉଁ। ଦିନଯାକ ଏକଗୋଡ଼ିକିଆ ଆଦି ଦଣ୍ଡ ମଧ୍ୟ ଭୋଗ କରୁଁ। ଏତେ ଦଣ୍ଡ ଭୋଗ କରୁଁ ସତ୍ୟ, କିନ୍ତୁ ସେଥିପ୍ରତି ଭ୍ରୁକ୍ଷେପ ନ ଥାଏ। ଲୁଚିକରି ସ୍କୁଲରୁ ପଳାଇ ଖେଳ କୌତୁକରେ ସମୟ କଟାଇବାରେ ମନରେ ଭାରି ଉତ୍ସାହ ଓ ଆନନ୍ଦ ଆସେ। ସେହି ଉତ୍ସାହ ଓ ଆନନ୍ଦ ପାଠପଢ଼ାରେ ନଥାଏ। ସୁତରାଂ ଯେତେ ମାଡ଼ ଖାଇଲେ କଅଣ ହେବ, ସେସବୁ କେଉଁଆଡ଼େ ପାଶୋରଯାଏ। ପୁଣି ଆମ୍ଭେମାନେ ସ୍କୁଲରୁ ପଳାଇ ଆସୁଁ। ନଚେତ୍ ସ୍କୁଲକୁ ନ ଯାଇ ଲୁଚି ରହୁଁ। ଆମ୍ଭେମାନେ କାହିଁକି ଏହା

କରୁଁ, ତାହା ଆଜି ଭାବିଲାବେଳେ ମନେହୁଏ, ମନୁଷ୍ୟ ଅଳ୍ପବୟସ୍କ ହେଉ କିମ୍ବା ବୟଃପ୍ରାପ୍ତ ହେଉ, ସେ ସବୁବେଳେ ସ୍ୱାଧୀନ ହେବାକୁ ଚାହେଁ। କୌଣସି ପ୍ରକାର ଆବରଣ ବା ବନ୍ଧନ ତାକୁ ସୁଖ ଲାଗେ ନାହିଁ। ମନର ସ୍ୱାଧୀନ ପ୍ରବୃତ୍ତିକୁ ସେ ସ୍ୱାଧୀନ ଭାବରେ ଖେଳାଇବାକୁ ପସନ୍ଦ କରେ। ସେଥିପାଇଁ ଆଧୁନିକ ଶିକ୍ଷାପ୍ରଣାଳୀରେ ଶିଶୁ ମନର ଗତିକୁ ନିରୀକ୍ଷଣ କରାଯାଇ ସେ ଯହିଁରେ ଆନନ୍ଦ ଲାଭ କରୁଛି ସେହିପରି ଭାବରେ ତାହାକୁ ପ୍ରାଥମିକ ଶିକ୍ଷା ଦିଆଯାଉଛି। ଏହିପରି ଶିଶୁ ଶିକ୍ଷା ଆମ ଦେଶରେ କାହିଁ? ଆମ୍ଭେମାନେ ତ ଦରିଦ୍ର। ଦରିଦ୍ର ପଲ୍ଲୀଶିଶୁର କଥା ଛାଡ଼ିଦେଲେ ମଧ୍ୟ ଦେଶର ସଙ୍ଗତି ସମ୍ପନ୍ନ ଲୋକେ ବି ସେମାନଙ୍କର ସନ୍ତାନ ସନ୍ତତିମାନଙ୍କୁ ଉପଯୁକ୍ତ ଶିଶୁଶିକ୍ଷା ପ୍ରଣାଳୀରେ ଶିକ୍ଷା ଦେବାକୁ ଦେଶରେ ସୁଯୋଗ ସୁବିଧା ନାହିଁ। କି ଧନୀ କି ଦରିଦ୍ର ଏ ବିଷୟରେ ସମସ୍ତେ ସମଭାବାପନ୍ନ।

ମୋର ମନେ ଅଛି ସେତେବେଳେ ଦଶପଲ୍ଲା ରାଜା ଶ୍ରୀଚୈତନ୍ୟ ଭଞ୍ଜଦେଓଙ୍କର ଏକମାତ୍ର ପୁତ୍ର ଥିଲେ। ସେ ତ ଯୁବରାଜ; ତଥାପି ସେ ଏହି ସ୍କୁଲକୁ ପଢ଼ିବାକୁ ଆସୁଥିଲେ। ସେ ଆମ୍ଭମାନଙ୍କ ସାଥିରେ ପଢୁଥାଆନ୍ତି। ତାଙ୍କ ସହିତ ଆମ୍ଭେ ପିଲାମାନେ ରାଜପ୍ରସାଦକୁ ଖେଳିବାକୁ ଯାଉଁ। ସ୍କୁଲରେ ସେ ମଧ୍ୟ ଆମ୍ଭମାନଙ୍କର ସାଥି। ସେ ଆମ୍ଭମାନଙ୍କ ପରି ଲୁଚି ରହନ୍ତି ନାହିଁ, କିମ୍ବା ସ୍କୁଲରୁ ପଳାଇ ଯାଆନ୍ତି ନାହିଁ। କିନ୍ତୁ ତାହା କରନ୍ତି ବୋଲି ମଧ୍ୟ କୁହାଯାଇପାରେ। କାରଣ ସେ ଦିନେ ଦିନେ ସ୍କୁଲକୁ ଆସିବାକୁ ଇଚ୍ଛା କରନ୍ତି ନାହିଁ। ସ୍କୁଲକୁ ଆସି କିଛି ସମୟ ବୁଲାଚଲା କରି, ସାଥିରେ ଦୁଇ ତିନି ଜଣ ପିଲା ଧରି ନଅରକୁ ଫେରିଯାଆନ୍ତି। ସ୍କୁଲକୁ ଆସିଲେ ଶିକ୍ଷକଙ୍କଠାରୁ ଆରମ୍ଭ କରି ପିଲା ପର୍ଯ୍ୟନ୍ତେ, ସମସ୍ତେ ତାହାଙ୍କର ଆଜ୍ଞାଧୀନ। ତାହାଙ୍କ ପାଇଁ କିଛି ବାଧା ନଥାଏ, କିଛି ବଂଧନ ନଥାଏ, ସେ ସ୍ୱାଧୀନ। ସମସ୍ତେ ତାଙ୍କ ମନର ଗତି ନେଇ ଚଳନ୍ତି। ତଥାପି ତାଙ୍କର ସ୍କୁଲରେ ମନ ନ ଥାଏ କିମ୍ବା ପଢ଼ାରେ ସୁଖ ନଥାଏ। ତେବେ ଏ ଶିକ୍ଷାରେ ଦୋଷ କେଉଁଠାରେ? ଶିଶୁର ଖାଲି ସ୍ୱାଧୀନ ରହିଲେ ଯଥେଷ୍ଟ ନୁହେଁ। ଶିଶୁ ତଥା ଅଳ୍ପବୟସ୍କ ବାଳକବାଳିକାମାନଙ୍କର ସ୍ୱାଧୀନ ମନୋବୃତ୍ତିକୁ ନିୟନ୍ତ୍ରିତ କରିବା ଶିକ୍ଷାର ପ୍ରଧାନ ଅଂଗ। ଏପରି ଭାବରେ ଶିକ୍ଷା ଦେବାର ପ୍ରଥା ଆମ ଦେଶରେ ନାହିଁ କହିଲେ ଚଳେ। ସ୍ଥାନ ବିଶେଷରେ, ଆଧୁନିକ ଉନ୍ନତି ପ୍ରଣାଳୀରେ ଶିକ୍ଷା ଦେବାର ପଦ୍ଧତି ପାଇଁ ଏବେ ଅବଶ୍ୟ ଚେଷ୍ଟା କରାଯାଉଛି। କିନ୍ତୁ ତାହାର ସୁବିଧା କେତେଜଣ ପାଇପାରିବେ? ଦେଶର ଲୋକମାନଙ୍କ ମଧ୍ୟରୁ କେତେକ ମୁଷ୍ଟିମେୟ ଧନୀଲୋକମାନଙ୍କ ପକ୍ଷରେ ଏହା ସୁବିଧାଜନକ ହୋଇପାରେ। କିନ୍ତୁ ଦେଶର ଜନତା ତାହାଦ୍ୱାରା କିଛି ଉପକାର ପାଇ ପାରିବେ ନାହିଁ।

ମୋ ପିତାଙ୍କ ଦେହ ଭଲ ନଥାଏ। ତାହାଙ୍କର କଅଣ ଗୋଟାଏ ଅସାଧ୍ୟ ରୋଗ ହୋଇଥାଏ। ଏହି ରୋଗର ପ୍ରତିକାର ପାଇଁ କୌଣସି ଗୋଟିଏ ତେଲ

ପ୍ରସ୍ତୁତ କରିବାକୁ ସେ ନାନାପ୍ରକାର ଚେର ମୂଳ ସଂଗ୍ରହ କରିଥାଆନ୍ତି। ବାପାଙ୍କର ଏପରି ଗୋଟିଏ ରୋଗ ଜାତ ହେଉଥିବାର ଶୁଣି ମାଆଙ୍କ ମନ ଭଲ ନଥାଏ। ବାପାଙ୍କ ସହିତ ମାଆଙ୍କର କିଛି ମନାନ୍ତର ଜାତ ହୋଇଥିଲା। ଏଥିରେ ମା ଭାରି ବିଚଳିତ ହୋଇ ପଡ଼ିଲେ। ସେ ବଡ଼ ଅଭିମାନିନୀ। କାହାରି କଥା ସହିପାରୁ ନଥିଲେ। ବାପାଙ୍କର ରୋଗବୃଦ୍ଧି ଓ ପାରିବାରିକ ଅବସ୍ଥା ଦେଖି ସେ ଆଉ ଧୈର୍ଯ୍ୟଧରି ରହିପାରିଲେ ନାହିଁ। ଦିନେ ହଠାତ୍ କନିଅରମଞ୍ଜି ଖାଇ ପ୍ରାଣ ହରାଇ ଦେଲେ।

ମାଆଙ୍କ ମୃତ୍ୟୁପୂର୍ବରୁ ଆମ୍ଭର ପାରିବାରିକ ଆର୍ଥିକ ଅବସ୍ଥା ଖରାପ ହୋଇ ପଡ଼ିଥିଲା। ବାପାଙ୍କ ଅସୁସ୍ଥତା ହେତୁରୁ ତାଙ୍କର ଆଉ ରୋଜଗାର କିଛି ନଥାଏ କହିଲେ ଚଳେ। ଇତି ମଧ୍ୟରେ ମୋର ଉପନୟନ କାର୍ଯ୍ୟ ଶେଷ ହୋଇ ଯାଇଥାଏ। ନୟାଗଡ଼ ଇଟାମାଟି ଗ୍ରାମରୁ ଆନନ୍ଦ ସାହୁ ନାମରେ ଜଣେ ଗୁଡ଼ିଆ ଦଶପଲ୍ଲାକୁ ଉଠି ଆସିଥାନ୍ତି। ଦଶପଲ୍ଲାରେ ବେପାର କରି ତାଙ୍କର ଅବସ୍ଥା ବଡ଼ ସ୍ୱଚ୍ଛଳ। ଆମ୍ଭର ପୂର୍ବଘର ନୟାଗଡ଼ ହୋଇଥିବାରୁ ଏହାଙ୍କ ସହିତ ବେଶ୍ ଭାବ ଥାଏ। ଘରେ କାହାରିକୁ ନ ପଚାରି ଏହି ଆନନ୍ଦ ସାହୁଙ୍କଠାରୁ କିଛି ସାହାଯ୍ୟ ଆଣି ଉପନୟନ କରିବାକୁ ବାପା ଠିକ କଲେ। ମୋ ଉପନୟନ କାର୍ଯ୍ୟ ମଧ୍ୟ ସମ୍ପନ୍ନ ହୋଇଗଲା। ଏଥିପାଇଁ କକେଇ ଓ ବାପାଙ୍କର ମନାନ୍ତର ହେଲା। ଅଜା ମଧ୍ୟ ବାପାଙ୍କ କାର୍ଯ୍ୟରେ ବଡ଼ ଦୁଃଖିତ ହେଲେ। ଏହା ମାଆଙ୍କ ମୃତ୍ୟୁର ଗୋଟିଏ କାରଣ ହୋଇଥିଲା।

ସେ ଯାହାହେଉ ମାଆଙ୍କ ମୃତ୍ୟୁ ପରେ ମୋର ପାଠପଢ଼ା ବନ୍ଦ ହେଲା। ବାପା ଆଉ କ୍ଷଣକ ପାଇଁ ଆମ୍ଭ ଭାଇଭଉଣୀ ଦୁହିଁଙ୍କୁ ଛାଡ଼ି ଦେଉ ନଥାନ୍ତି। ବାପା ଓ କକେଇଙ୍କର ମନ ନ ମିଳିବାରୁ ଦୁହେଁଯାକ ଅଲଗା ହୋଇ ରହିଥାଆନ୍ତି। ମୋର ଗୋଟିଏ ପିଉସୀ ଥାଆନ୍ତି। ସେ ବାପା ଓ କକେଇଙ୍କଠାରୁ ବୟସରେ ବଡ଼। ସେ ବାଲ୍ୟ ବିଧବା, ଆଉ ଶାଶୁ ଘରକୁ ଯାଇ ନ ଥାନ୍ତି। ସେ ଆମ ଘରେ ଥାଆନ୍ତି। ବାପା, କକେଇଙ୍କଠାରୁ ଅଲଗା ହୋଇଗଲା ପରେ ଏହି ପିଉସୀ ଆମ୍ଭଙ୍କୁ ରୋଷେଇ କରି ଦିଅନ୍ତି। ଏହିପରି ପ୍ରାୟ ଏକବର୍ଷ କଟିଗଲା। ମାଆଙ୍କ ମୃତ୍ୟୁରେ ବାପା ଚିନ୍ତିତ ହୋଇ ବେମାର ପଡ଼ିଲେ। ସେଥିରେ ତାହାଙ୍କର ମୃତ୍ୟୁ ହେଲା।

ପିତାମାତାଙ୍କ ମୃତ୍ୟୁପରେ କକେଇଙ୍କ ପାଖରେ ଆମେ ଭାଇ ଭଉଣୀ ଦୁହେଁ ରହିଲୁଁ। ଆମ ଜେଜେବାପା ଥାଆନ୍ତି। ସେତେବେଳକୁ ସେ ବୃଦ୍ଧ ହୋଇଗଲେଣି। ତାହାଙ୍କର ବୟସ ପ୍ରାୟ ସତୁରି ହେବ। ଜ୍ୟେଷ୍ଠ ପୁତ୍ର ଓ ପୁତ୍ରବଧୂଙ୍କ ମୃତ୍ୟୁରେ ତାହାଙ୍କର ଜୀବନ ଅତିଶୟ ଦୁଃଖମୟ ହୋଇ ଉଠିଲା। ବାପାଙ୍କ ମୃତ୍ୟୁର ଏକବର୍ଷ ମଧ୍ୟରେ ସେ ମଧ୍ୟ ଇହ ସଂସାର ତ୍ୟାଗ କଲେ।

ଏଣେ ଅଜାଙ୍କର ଅବସ୍ଥା ଆଉ ଭଲ ନଥାଏ। ଅଜା ଶ୍ରୀ ରାଧାକାନ୍ତ ଠାକୁରଙ୍କ ଦେଉଳରେ ମାନେଜର ଥିଲେ। ଏଥି ମଧ୍ୟରେ ଠାକୁରଙ୍କର କିଛି ସୁନା ଅଳଙ୍କାର

ଚୋରିଗଲା । ପୂଜାହାରୀ ଧରା ପଡ଼ି ଜେଲଦଣ୍ଡ ପାଇଲା, କିନ୍ତୁ ତହିଁରେ ତତ୍କାଳୀନ ରାଜା ଶ୍ରୀ ନାରାୟଣଚନ୍ଦ୍ର ଭଞ୍ଜଦେଓ ଅଜାଙ୍କୁ ଉକ୍ତ କାର୍ଯ୍ୟରୁ ଅନ୍ତର କରିଦେଲେ । କେବଳ ଏତିକି ନୁହେଁ, ଜମିବାଡ଼ି କାଟିନେଲେ ଓ ଶେଷରେ ଛାମୁ ମନା ଶାସ୍ତି ମଧ ଦିଆଗଲା । ପୂର୍ବେ ଗଡ଼ଜାତମାନଙ୍କରେ ଛାମୁ ମନା ଗୋଟିଏ ବଡ଼ ଶାସ୍ତି ଥିଲା । ଏହାର ଅର୍ଥ ଏହି ଯେ ଯାହାଙ୍କୁ ଛାମୁ ମନାହୁଏ ସେ ରାଜାଙ୍କ ନିକଟକୁ ଯିବା ଆସିବା କରନ୍ତି ନାହିଁ । ରାଜା ମଧ ତାହାଙ୍କ ମୁହଁ ସେହିଦିନଠାରୁ ଚାହାନ୍ତି ନାହିଁ । ଏହିପରି ଦଣ୍ଡର ଅବଶ୍ୟ ଆଜିକାଲି କିଛି ମୂଲ୍ୟ ନାହିଁ । ଗଡ଼ଜାତ ବାହାରର ଲୋକେ ଏହାର ଗୁରୁତ୍ୱ କିଛି ବୁଝିବା ମଧ କଠିନ, କିନ୍ତୁ ଗଡ଼ଜାତରେ ସେତେବେଳେ ଏପରି ଗୋଟିଏ ଦଣ୍ଡ ଭାରି ବଡ଼ ଦଣ୍ଡ ବୋଲି ବିବେଚିତ ହେଉଥିଲା । ଛାମୁ ମନା ହେଲାମାତ୍ରକେ, ଗଡ଼ର ଉଚ୍ଚପଦସ୍ଥ ଲୋକେ ଆଉ ତାହାଙ୍କ ସହିତ କଥା କହିବାକୁ କୁଣ୍ଠିତ ହୁଅନ୍ତି । ତାହାଙ୍କ ମାନ ମର୍ଯ୍ୟାଦା ଉପରେ ବାଧା ପଡ଼ିଯାଏ, କାରଣ ଗଡ଼ଜାତ ଲୋକଙ୍କର ଦୃଷ୍ଟି ସବୁବେଳେ ରାଜାଙ୍କଠାରେ । ରାଜା ସେମାନଙ୍କର ପିତା ଓ ଦେବତା ସ୍ୱରୂପ । ରାଜା ଅନୁଗ୍ରହ ଲାଭ ଜୀବନର ମୁକ୍ତି, ଏହିପରି ଭାବ ସବୁବେଳେ ଗଡ଼ଜାତ ଲୋକଙ୍କ ମନରେ ଖେଳୁଥାଏ । ରାଜ ଅନୁଗ୍ରହ ଲାଭ ସେମାନଙ୍କର ଏକମାତ୍ର କାମନା ଓ ଜୀବନର ଏକମାତ୍ର ଆଦର୍ଶ ଏହା ମଧ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଆଜି ଦେଶରେ କେତେ ନୂଆ ଭାବ ଖେଳି ଯାଉଛି । କେତେ ପ୍ରକାର ନୂତନ ଆଦର୍ଶ ଦେଶବାସୀଙ୍କ ହୃଦୟରେ ପ୍ରତିଫଳିତ ହେଉଛି । ରାଜନୈତିକ, ସାମାଜିକ ଓ ଧର୍ମସମ୍ବନ୍ଧୀୟ ଏହିପରି କେତେ ନୂତନ ଭାବ ଜଗତରେ ନିତ୍ୟ ନୂତନ ପରିବର୍ତ୍ତନ ସୃଷ୍ଟି କରୁଛି । ଲୋକଙ୍କର ଦୃଷ୍ଟିରୁ ସୀମା ଅସୀମ ହୋଇ ପଡ଼ିଛି, ଜଗତର କେଉଁ ପୃଷ୍ଠରେ କିଛି ବିଶେଷ ଘଟଣା ଘଟିଲେ ତାହା କେତେକ ଘଣ୍ଟା ମଧରେ ସମସ୍ତ ପୃଥିବୀରେ ଖେଳିଯାଉଛି । ଜନ ସମାଜରେ ନୂତନ ଭାବର ତରଙ୍ଗ ମଧ ଖେଳାଇ ଦେଉଛି । କିନ୍ତୁ, ଆଜକୁ ୩୦ କିମ୍ବା ୪୦ ବର୍ଷର କଥା ଟିକିଏ ଭାବି ଦେଖିଲେ ବର୍ତ୍ତମାନ ଓ ସେତେବେଳର ଅବସ୍ଥା, ଜନ ସମାଜର ରୁଚି ଓ ଆଦର୍ଶରେ ଆକାଶ ପାତାଳ ପ୍ରଭେଦ ଦେଖିବାକୁ ମିଳିବ । ସେହି ସମୟରେ ବର୍ତ୍ତମାନ ଭାବଧାରାର ଚିହ୍ନମାତ୍ର ନ ଥିଲା । ଭାରତରେ ସ୍ୱରାଜ୍ୟ ଆନ୍ଦୋଳନର ସୂତ୍ରପାତ ହୋଇ ନଥିଲା ଏବଂ ଜଗତରେ ଅଧିକାଂଶ ଦେଶରେ ରାଜତନ୍ତ୍ର ବିଦ୍ୟମାନ ଥିଲା । ଏପରି ଅବସ୍ଥାରେ ଓଡ଼ିଶା ପରି ଦେଶର କଥା ଜଥଣ ବିଚାର କରାଯାଇ ପାରେ । ଓଡ଼ିଶାରେ ଶିକ୍ଷିତ ଲୋକଙ୍କ ସଂଖ୍ୟା ଅତି କମ୍ । ସଂବାଦ ପତ୍ରର ବହୁଳ ପ୍ରଚାର ସେତେବେଳେ ହୋଇ ନଥିଲା । ମୋଗଲବନ୍ଦିର ଲୋକେ ଅନ୍ଧକାରରେ ପଡ଼ିଥାନ୍ତି, ସେତେବେଳେ ଗଡ଼ଜାତର ଅବସ୍ଥା ସହଜରେ ଅନୁମାନ କରାଯାଇପାରେ । ଏପରି ଅବସ୍ଥାରେ ଗଡ଼ଜାତ ପ୍ରଜାଙ୍କର ଆଦର୍ଶ ବା ଆଉ କ'ଣ ହୋଇପାରେ ?

ଅଜାଙ୍କୁ ଛାମୁମନା ଦଣ୍ଡ ହେବାରୁ ସେ ଟିକିଏ ବିଚଳିତ ହୋଇ ପଡ଼ିଲେ। ଏଣେ କନ୍ୟା ଓ ଜାମାତାଙ୍କର ମୃତ୍ୟୁରେ ସେ ବଡ଼ ଅଧୀର ହୋଇଥାନ୍ତି। ଏପରି ଅବସ୍ଥାରେ ପୁଣି ତାହାଙ୍କ ଉପରେ ଏହି ବଜ୍ରପାତ। ଛାମୁମନା ହେଲା, ଶ୍ରୀ ରାଧାକାନ୍ତ ଠାକୁରଙ୍କର ପରୀଛାପଣ ଗଲା, ଜୋରିମାନା ଦେଲେ ଏବଂ ଜମିବାଡ଼ି ମଧ୍ୟ କଟିଗଲା। ଏ ସବୁ ସତ୍ତ୍ୱେ ଅଜା ଧୈର୍ଯ୍ୟଚ୍ୟୁତ ହୋଇ ନଥିଲେ। ଦଶପଲ୍ଲା ପ୍ରଜା କିମ୍ବା ଗଡ଼ଜାତବାସୀଙ୍କର ଭକ୍ତି ତାହାଙ୍କଠାରୁ କମିଯାଇ ନ ଥିଲା। ରାଜା ମଧ୍ୟ ତାହାଙ୍କୁ ଆଉ କୌଣସି ପ୍ରକାର ଯାତନା ଦେଇ ନଥିଲେ। ରାଜା ଅନ୍ତରରେ ତାହାଙ୍କୁ ଭଲ ପାଉଥାଆନ୍ତି। ପୂର୍ବ ରାଜାଙ୍କ ମଣିମା ଓ ରାଜ ପରିବାରର ଅନ୍ୟାନ୍ୟ ସମସ୍ତେ ତାହାଙ୍କୁ ପୂର୍ବପରି ଭକ୍ତି କରୁ ଥାଆନ୍ତି। ରାଧାକାନ୍ତ ଠାକୁରଙ୍କୁ ଅଜା ଛାଡ଼ି ନ ଥାନ୍ତି। ପୂର୍ବେ ଯେପରି ଆରାଧନା କରୁଥିଲେ ଏବେ ମଧ୍ୟ ସେହିପରି କରୁ ଥାଆନ୍ତି। ସେବକମାନେ ସେହିପରି ତାହାଙ୍କୁ ଭକ୍ତି ଓ ସମ୍ମାନ ଦେଖାଉ ଥାଆନ୍ତି। କିଛି ସମୟ ପରେ ରାଜା ପୁଣି ଅଜାଙ୍କୁ ଡକାଇ ପରୀଛା ଚାକିରି ଦେଲେ। ଜମିବାଡ଼ି ଫେରାଇ ଦେଲେ। ଏହା ହେଲେ ମଧ୍ୟ ଅଜାଙ୍କର ମନ ଭାଙ୍ଗି ଯାଉଥାଏ। ଏସବୁ ଘଟଣାର ଅଳ୍ପ ସମୟ ପରେ ତାହାଙ୍କର ସ୍ୱାସ୍ଥ୍ୟଭଙ୍ଗ ହେଲା। ସେଥିରେ ସେ ଇହଲୀଳା ସାଙ୍ଗ କଲେ। ବର୍ତ୍ତମାନ ଆମ୍ଭେ ଭାଇ ଭଉଣୀ ଦୁଇଟି। ସାହା ହେବାକୁ ମଧ୍ୟ କେହି ନ ଥାନ୍ତି।

ଦଣ୍ଡପଲ୍ଲାରେ ଆମ୍ଭର ଚାଷ ଜମି କିଛି ନଥିଲା। ଜମି କରିବାକୁ ଲୋକ ସାଧାରଣଙ୍କର ସେତେ ଆଗ୍ରହ ନ ଥିଲା। ବାପା ତ କବିରାଜି କରୁଥିଲେ। କକେଇ ରାଧାକାନ୍ତ ଠାକୁରଙ୍କ ଜମି ଭାଗଚାଷ କରୁ ଥାଆନ୍ତି। ଏହିପରି ଭାବରେ ଦିନ କଟିଯାଏ, ବିଶେଷ କିଛି ଅସୁବିଧା ନ ଥାଏ। ଜୀବନରେ କୌଣସି ଉଚ୍ଚ ଆକାଂକ୍ଷା କିମ୍ବା ଆଦର୍ଶ ନ ଥାଏ। ଏହିପରି ଅବସ୍ଥାରେ ମୋର ପିତା ଓ କକେଇ ଅତି ସରଳ ଭାବରେ ଜୀବନ ଯାପନ କରୁଥିଲେ। ବର୍ତ୍ତମାନ ପିତା ଓ ପିତାମହଙ୍କ କାଳ ହୋଇଗଲା। ଅଜା ମଧ୍ୟ ଚାଲିଗଲେ। କକେଇ କିଛି ଜାଣି ନ ଥିଲେ। ପଢ଼ା ଶୁଣା କରି ନ ଥିଲେ। ଅଜାଙ୍କ ମୃତ୍ୟୁପରେ ରାଧାକାନ୍ତ ଠାକୁରଙ୍କ ଜମି ଭାଗଚାଷ କରିବାକୁ ମିଳିଲା ନାହିଁ। ନୟାଗଡ଼ ପଦ୍ମାଦେଈପୁର ଶାସନରେ ଥିବା ଜମି ବନ୍ଧକ ପଡ଼ିଥାଏ। ଘରେ ଆଉ ଆୟର କୌଣସି ଉପାୟ ନ ଥାଏ। ଏପରି ଅବସ୍ଥାରେ କକେଇ ନିହାତି ନିଃସ୍ୱ ହୋଇ ପଡ଼ିଲେ। ବ୍ରାହ୍ମଣ କର୍ମକର୍ମାଣି କରି କୌଣସି ପ୍ରକାରେ ସେ ତାଙ୍କର ପରିବାର ପୋଷଣ କରୁ ଥାଆନ୍ତି। ସେତେବେଳକୁ କକେଇଙ୍କର ପୁତ୍ର କନ୍ୟା ଦୁଇଟି। ବିଧବା ବୃଦ୍ଧା ପିଉସୀ ମୋର ପୁଣି ଘରେ ଥାଆନ୍ତି। ତାହାଙ୍କୁ ଘରେ ସମସ୍ତେ ଭକ୍ତି କରୁ ଥାଆନ୍ତି। ଆମର ପରିବାରର ଅବସ୍ଥା ହଠାତ୍ ଏପରି ସଙ୍କଟାପନ୍ନ ହୋଇ ଯିବାରୁ ସେ ସବୁବେଳେ ଚିନ୍ତିତ ଥାଆନ୍ତି। ଏପରି ଅବସ୍ଥାରେ ଆମ୍ଭେ ଭାଇ ଭଉଣୀ ଦୁଇଟି କକେଇଙ୍କ ନିକଟରେ ଥାଉଁ।

ଘରେ ଦିନେ ଦିନେ କିଛି ଖାଇବାକୁ ନ ଥାଏ। ଦିନେ ଦୁଇଦିନ ଧରି ସମସ୍ତେ ଉପବାସ ରହୁ। ଏତେବେଳକୁ ମୋର ବୟସ ନଅ କିମ୍ବା ଦଶ ହେବ। ମୋର ସାନ ଭଉଣୀଟିର ବୟସ ଛ'କିମ୍ବା ସାତ ହେବ।

କକେଇଙ୍କର ଆମ୍ଭ ଦୁହିଁଙ୍କ ପ୍ରତି ସ୍ନେହ ଥାଏ। ଖୁଡ଼ୀଙ୍କର ସ୍ନେହ ନ ଥାଏ, ତାହା ନୁହେଁ। କିନ୍ତୁ ନିଜର ଜନ୍ମିତ ପୁତ୍ର କନ୍ୟା ଉପବାସ ରହିଲା ବେଳେ ଅନ୍ୟ ପ୍ରତି ହୃଦୟରେ ସ୍ନେହ ମାୟା ମମତା ରହିବା ଅସମ୍ଭବ। ଏହି କ୍ଷୁଧା ଜ୍ୱାଳାରେ ପିତାମାତା ପୁତ୍ର କନ୍ୟାକୁ ମଧ ପରିତ୍ୟାଗ କରିବାର ଦୃଷ୍ଟାନ୍ତ ବିରଳ ନୁହେଁ। ଏପରି ଅବସ୍ଥାରେ ଖୁଡ଼ୀଙ୍କର ଆମ୍ଭ ଦୁହିଁଙ୍କ ପ୍ରତି ସ୍ନେହ ଅଥବା ଆଦର ଭାବ ଟିକିଏ କମ୍ ହେବା ସ୍ୱାଭାବିକ। ତେଣେ ମାମୁ ଘରର ଅବସ୍ଥା ଭଲ ନୁହେଁ। ଦଶପଲ୍ଲା ଗଡ଼ରେ କିମ୍ବା ଦଶପଲ୍ଲା ରାଜ୍ୟରେ ଆମର ବନ୍ଧୁବାନ୍ଧବ ହିସାବରେ ଆଉ କେହି ନ ଥାନ୍ତି। ବନ୍ଧୁବାନ୍ଧବ ଯେ କେହି ଅଛନ୍ତି ସେ ସମସ୍ତେ ନୟାଗଡ଼ ରାଜ୍ୟରେ। ଗଡ଼ଜାତରେ ସମସ୍ତଙ୍କର ଅବସ୍ଥା ସମାନ। ଅନ୍ୟର କଥା ବା ବୁଝୁଛି କିଏ।? ଏପରି ଅବସ୍ଥାରେ ଆମ୍ଭ ଦୁହିଁଙ୍କର ଅବସ୍ଥା ଯେ କଅଣ ହୋଇଥିବ ତାହା କଳ୍ପନାର ଅତୀତ।

ମୁଁ ଘର ଛାଡ଼ି ଇଆଡ଼େ ସିଆଡ଼େ ବୁଲିଲି। ଚାରି ପାଞ୍ଚଦିନରେ ଥରେ ଘରକୁ ଯାଏଁ। ଭଉଣୀଟି କିପରି ଅଛି ତାହାର ସମ୍ବାଦ ମଧ ନିଏ ନାହିଁ। ଆଗରୁ କହିଛି ଦଶପଲ୍ଲା ଗଡ଼ରେ ବୈଦିକ ଓ ଆରଣ୍ୟକ ଏପରି ଦୁଇ ଶ୍ରେଣୀର ବ୍ରାହ୍ମଣ ଅଛନ୍ତି। ବ୍ରାହ୍ମଣ ଜାତିର ପ୍ରଥା ଏହି ଯେ କେହି କାହା ଘରେ ଅନ୍ନ ଗ୍ରହଣ କରିବ ନାହିଁ। ବ୍ରାହ୍ମଣ ବ୍ରାହ୍ମଣ ଘରେ ଖାଇଲେ ମଧ ଜାତିରୁ ଅଟକ ହୁଏ। ବୈଦିକ ବ୍ରାହ୍ମଣ ମଧ ବୈଦିକ ବ୍ରାହ୍ମଣଘରେ ଖାଇବା ନିଷିଦ୍ଧ। କେବଳ ନିଜର ବନ୍ଧୁ ବାନ୍ଧବ ଓ ନିକଟ ସମ୍ପର୍କୀୟ ଛଡ଼ା କେହି କାହା ଘରେ ଅନ୍ନ ଗ୍ରହଣ କରି ନ ପାରେ। ବର୍ତ୍ତମାନ ଅବଶ୍ୟ ଏହି ନିୟମର କେତେକ ପରିମାଣରେ ବ୍ୟତିକ୍ରମ ହେଲାଣି। କିନ୍ତୁ ଏବେ ମଧ ଗଡ଼ଜାତ ମଧରେ ଏହି ନିୟମର ବିଶେଷ କିଛି ପରିବର୍ତ୍ତନ ହେଲାପରି ବୋଧ ହୁଏ ନାହିଁ। ପୂର୍ବପରି ତାହା ଚାଲିଛି କିନ୍ତୁ ସାମାଜିକ ନିୟମ ଟିକିଏ କୋହଳ ହୋଇ ଗଲାଣି। ପୂର୍ବେ କୌଣସି ସାମାଜିକ ନିୟମ ଭଙ୍ଗ କରିବା ଜଣା ପଡ଼ିଲେ ତହିଁରେ କ୍ଷମାର ସ୍ଥାନ ନ ଥାଏ; ତାକୁ ନିୟମ ଅନୁସାରେ ସମାଜଚ୍ୟୁତ ହେବାକୁ ପଡ଼େ।

ମୋତ ମନେହୁଏ ଏହିସବୁ କଠୋର ନିୟମ ଓ ବନ୍ଧନ ହେତୁ ହିନ୍ଦୁ ସମାଜର ଆଜି ଏନିପରି ଅଧଃପତନ ହୋଇଅଛି। ତାହାର ଆତ୍ମ ବିକାଶର ପଥ ରୁଦ୍ଧ ହୋଇଅଛି। ସବୁବେଳେ ନିଜକୁ ନିର୍ଦ୍ଦିଷ୍ଟ ସୀମା ମଧରେ ଆବଦ୍ଧ ରଖିଲେ ଏବଂ ସେହି ସୀମା ଅତିକ୍ରମ କରିବାକୁ ପଦେ ପଦେ ବାଧା ଥିଲେ ମନୁଷ୍ୟର ଦୃଷ୍ଟି ଛୋଟ ହୋଇଯାଏ। ମନ ସଂକୀର୍ଣ୍ଣ ହୋଇଯାଏ। ହିନ୍ଦୁ ସମାଜର ଅବସ୍ଥା ଆଜି ତାହାହିଁ ହୋଇଅଛି। ହିନ୍ଦୁ ସମାଜ ଏହିପରି ବନ୍ଧନ ସବୁ ଛିନ୍ନ କରି, କିପରି ସଂକୀର୍ଣ୍ଣ ମନୋବୃତ୍ତି ତ୍ୟାଗ

କରି ବିଶ୍ୱମାନବତା ଉପଲବ୍ଧ କରିବ, ଏହି ଆଶା ଓ ଆଦର୍ଶକୁ ଧରି ରାଜା ରାମମୋହନ ରାୟ ବ୍ରହ୍ମବାଣୀ ପ୍ରଚାର କରି ବ୍ରାହ୍ମସମାଜ ପ୍ରତିଷ୍ଠା କରି ଯାଇଅଛନ୍ତି। ସ୍ୱାମୀ ଦୟାନନ୍ଦ ସରସ୍ୱତୀ ସେହି ଆଦର୍ଶରେ ମଧ୍ୟ ଆର୍ଯ୍ୟସମାଜ ସ୍ଥାପନ କରି ଅଛନ୍ତି। ଏହି ଦୁଇ ମନୀଷୀଙ୍କର ଆବିର୍ଭାବ ହୋଇ ନ ଥିଲେ ହିନ୍ଦୁ ସମାଜ ଓ ହିନ୍ଦୁ ଧର୍ମର ଅବସ୍ଥା ଆଜି କଅଣ ହୋଇଥାନ୍ତା ତାହା କଳ୍ପନା କରିବା ଅସମ୍ଭବ।

ସେ ଯାହାହେଉ, ମୋର ଏପରି ଅବସ୍ଥାରେ ମୋତେ ଯେ ଡାକିଛି ମୁଁ ତାହାଙ୍କ ଘରେ ଯାଇ ଅନ୍ନ ଗ୍ରହଣ କରିଛି। ଆରଣ୍ୟକ ବ୍ରାହ୍ମଣମାନଙ୍କ ଘରେ ମଧ୍ୟ ଖାଇଛି। ଏଥିପାଇଁ ମୋତେ କେତେ ଅପମାନ ସହ୍ୟ କରିବାକୁ ପଡ଼ିଛି। ସଂକ୍ଷେପରେ କହିବାକୁ ଗଲେ ମୁଁ ଏତିକି ମାତ୍ର କହିପାରେ, ଏହି ସମୟରେ ମୋର ଜୀବନ ଘୋର ଦୁଃଖପୂର୍ଣ୍ଣ। ସେ ଦୁଃଖର କାହାଣୀ କଥାରେ ଲେଖି ହେବ ନାହିଁ, ମନରେ କଳ୍ପନା କରିବା ମଧ୍ୟ ଅସମ୍ଭବ। ମୋର ସବୁ ମନେ ପଡୁ ନାହିଁ। ଯାହା ଅବା ମନେପଡୁଛି ସେ ସମସ୍ତ ଲେଖି ଏ ଲେଖାର କଳେବର ବୃଦ୍ଧି କରିବାରେ କିଛି ପ୍ରୟୋଜନ ନାହିଁ। ଗଡ଼ଜାତ ରାଜ୍ୟ ବୋଲି ଆମେ ଭାଇ ଭଉଣୀ ଦୁଇଟି ବିଧର୍ମୀ ହୋଇ ଯାଇନାହୁଁ, କାରଣ, ସେଠାରେ ଖ୍ରୀଷ୍ଟିୟାନ କିମ୍ବା ମୁସଲମାନ ଧର୍ମପ୍ରଚାରକ କେହି ନାହାନ୍ତି। ଆମ୍ଭେ ଦୁଇ ଜଣ କିପରି ଜୀବନ ଧାରଣ କରି ରହିଲୁ ଏହି କଥା କେବଳ ମୋତେ ଆଜି ଆଶ୍ଚର୍ଯ୍ୟ ଲାଗୁଛି।

ମାଆ ମରିଗଲା ଦିନୁ ମୋର ପାଠପଢ଼ା ସରିଥାଏ। ପିତାଙ୍କ ମୃତ୍ୟୁ ପରେ ଘର ଛାଡ଼ିଲି କହିଲେ ଚଳେ। ଭାଇ ଭଉଣୀ ଦୁହିଁଙ୍କର ଦେଖାସାକ୍ଷାତ ବଡ଼ ବିରଳ। ଖାଇବାକୁ ଘରେ ସବୁଦିନ ନ ଥାଏ, ପିନ୍ଧିବାକୁ ଲୁଗା ମଧ୍ୟ ନ ଥାଏ। କକେଇଙ୍କର ଅବସ୍ଥା ମଧ୍ୟ କହି ହେବ ନାହିଁ। ଏପରି ଅବସ୍ଥାରେ ମୋର ପାଠପଢ଼ିବା କଥା ମନରେ ଆଣିବା ବାମନର ଚନ୍ଦ୍ରକୁ ଛୁଇଁବାର କଳ୍ପନା ମାତ୍ର। ମୁଁ ବେଳେବେଳେ ୫/୭ ଦିନ ଧରି ଉପବାସ ରହିଯାଏଁ। କକେଇଙ୍କ ଘରେ ଯାହା ଖାଇବାକୁ ମିଳେ ତହିଁରେ ପେଟ ପୁରେ ନାହିଁ। ଘରେ ଯାହାଥାଏ ଖୁଡ଼ି ତାହା ବାଣ୍ଟି କରି ଦିଅନ୍ତି। ଘରେ ନ ଥିଲେ ସେ ଖାଇବାକୁ ପେଟ ପୂରା ଦେବେ କୁଆଡୁ ? ବେଳେବେଳେ ପଢ଼ିବାକୁ ମନ ହୁଏ। କିନ୍ତୁ ଏପରି ଅବସ୍ଥାରେ ସ୍କୁଲକୁ ଯାଇ ପାଠପଢ଼ିବା ଅସମ୍ଭବ।

ଗୋପିନାଥ ମିଶ୍ରେ ଗଡ଼ ମାଇନର ସ୍କୁଲର ଜଣେ ଶିକ୍ଷକ। ଗଡ଼ରେ ତାଙ୍କ ଘର। ମୋ ପିତା ଓ କକେଇଙ୍କର ସେ ଜଣେ ପରିଚିତ ଓ ସ୍ନେହୀ ବନ୍ଧୁ। ସେ ମତେ ଦିନେ ପାଠପଢ଼ିବା ଉଦ୍ଦେଶ୍ୟରେ ବହୁତ କଥା ବୁଝାଇ କହିଲେ। ଆମର ଘର ଓ ବଂଶ ମର୍ଯ୍ୟାଦା ଓ ବର୍ତ୍ତମାନ ଆମ ଘରର ଅବସ୍ଥା କଥା କହି କୌଣସି ପ୍ରକାର କିଛି ପାଠ ପଢ଼ିବାକୁ ମତେ ଉତ୍ସାହିତ କଲେ। କିଛି ନ ହେଲେ ରାମାୟଣ ଭାଗବତ ପଢ଼ିପାରିବାର କ୍ଷମତା ପାଇଁ ଅନ୍ତତଃ ଅକ୍ଷରଜ୍ଞାନ ହେବା ଉଚିତ୍। ଏତିକି ହେଲେ କେଉଁଠାରେ ରାମାୟଣ ଭାଗବତ ପାଠକରି ମୁଁ ମୋର ଜୀବିକା ଅର୍ଜନରେ

ଉପାୟ ଅବଲମ୍ବନ କରି ପାରିବି। ତାହାଙ୍କର ଯୁକ୍ତି ଓ ଉପଦେଶ ଶୁଣି ମୁଁ ନୀରବ ରହିଲି। ତାହାଙ୍କୁ କଅଣ ଜବାବ ଦେବି କିଛି ଦେଖାଗଲା ନାହିଁ। ମୁଁ ସ୍କୁଲକୁ କାଲିଠାରୁ ଯିବି ଏହି ଜବାବ ପାଇଲା ପରେ ସେ ମୋତେ ବିଦାୟ ଦେଲେ। କାଲି ସ୍କୁଲକୁ ଯାଇ ହେଡ୍‌ମାଷ୍ଟରଙ୍କ ସଙ୍ଗେ ଦେଖା କରିବାକୁ ସେ ମୋତେ ପରାମର୍ଶ ଦେଲେ। ଗୋପିନାଥ ମିଶ୍ରେ ସେଠାରୁ ଚାଲିଯିବା ପରେ ମୁଁ ତାହାଙ୍କ କଥା ବହୁତ ଭାବିଲି। ରାମାୟଣ ଭାଗବତ ପଢ଼ିବାର ଜ୍ଞାନ ଲାଭ କଲେ ମୁଁ କିଛି ରୋଜଗାର କରିବାକୁ କ୍ଷମ ହେବି। ଏହି କଥାଟି ମୋ ମନକୁ ବେଶ୍ ଲାଗିଲା। ଅଧିକ ପାଠ ପଢ଼ିବା ଦୂରର କଥା। ଅନ୍ତତଃ ଏତିକି ଜ୍ଞାନ ହେବା ପର୍ଯ୍ୟନ୍ତ କୌଣସି ଉପାୟରେ ପଢ଼ିବାକୁ ମୁଁ କାଲିଠାରୁ ସ୍କୁଲକୁ ଯିବି ବୋଲି ମନରେ ଭାରି ଆଗ୍ରହ ଜାତ ହେଲା। କାରଣ, ଏହାଦ୍ୱାରା ମୋତେ କିଛି ରୋଜଗାରର ବାଟଟା ପରିଷ୍କାର ଦେଖାଗଲା। ସେତେବେଳ ସମୟରେ ଗଡ଼ଜାତମାନଙ୍କରେ ପ୍ରତି ଗ୍ରାମରେ ଗୋଟିଏ ଗୋଟିଏ ଭାଗବତ ଗାଦି ଥାଏ। ଏହା ଛଡ଼ା ସଂଗତିସମ୍ପନ୍ନ ଲୋକମାନେ ମଧ୍ୟ ନିଜ ନିଜ ଘରେ ଭାଗବତ ରାମାୟଣ ଓ ମହାଭାରତର ନିତ୍ୟ ପୂଜା ପାଠ କରିବାର ପ୍ରଥା ଥାଏ। ଏହି ସବୁ ପୂଜା ଓ ପାଠ ବ୍ରାହ୍ମଣମାନେ କରନ୍ତି ଏହା କହିବା ବାହୁଲ୍ୟ ମାତ୍ର। ଏହିପରି ପୂଜାପାଠ କରିବାର ଦୁଇ ଚାରୋଟି ସ୍ଥାନ ଧରି ପାରିଲେ ସେତେବେଳର ସମୟରେ ଯେ କେହି ଅନାୟାସରେ ନିଜର ଓ ନିଜ ପରିବାରର ଭରଣପୋଷଣ କରି ପାରୁଥିଲା। କିନ୍ତୁ ଆଜି ଏହିସବୁ ଆଉ ନାହିଁ। ଥିଲେ ମଧ୍ୟ ସେ ଭକ୍ତି ବିଶ୍ୱାସ ଓ ସରଳତା ନାହିଁ। ହୃଦୟରେ ଆଉ ସେପରି ପବିତ୍ରତା ଆସୁ ନାହିଁ। ଗୋଟିଏ ଯନ୍ତ୍ରଚାଳିତ କ୍ରିୟାପରି ପୂଜାଦି କାର୍ଯ୍ୟ ଅନୁଷ୍ଠିତ ହେଉଛି। ବର୍ତ୍ତମାନ ଦେଶର ପରିସ୍ଥିତି ଲୋକମାନଙ୍କର ମନ ଓ ହୃଦୟରୁ ସେହି ଭାବକୁ ଦୂର କରି ଦେଉଛି। ଜୀବନ ସଂଗ୍ରାମ ସମସ୍ତଙ୍କୁ ଅତି ଦୁରୂହ ବୋଧ ହେଉଛି। ଜୀବନରେ ଆନନ୍ଦ ନାହିଁ। ସମସ୍ତଙ୍କର ହୃଦୟ ଗୁରୁ ଚିନ୍ତାରେ ଚିପିହୋଇ ରହିଥିଲା ପରି ବୋଧ ହେଉଛି। ମନୁଷ୍ୟ ତାହାର ହୃଦୟର ଭାବକୁ ପ୍ରକାଶ କରିବାରେ ପ୍ରତି ପଦେ ପଦେ ବାଧା ପାଉଛି। ଦେଶର ବର୍ତ୍ତମାନ ପରିସ୍ଥିତି ଏହିପରି ହୋଇ ଉଠିଛି। ସୁତରାଂ ପୂର୍ବର ଭାବ ଆଉ ରହିବ କିପରି ?

ସେ ଯାହାହେଉ ମୁଁ ତହିଁ ଆରଦିନ ସ୍କୁଲକୁ ଯିବାକୁ ମନେ ମନେ ସ୍ଥିର କଲି। ଗୋପିନାଥ ମିଶ୍ରେ କହିଯାଇଥାଆନ୍ତି ସ୍କୁଲକୁ ଯାଇ ହେଡ୍‌ମାଷ୍ଟରଙ୍କ ସହିତ ଦେଖା କରିବି। ସେ କଅଣ କହିବେ ଏବଂ ମତେ କଅଣ ପଚାରିବେ ସେ କଥା ଶୁଣି ପାଠ ପଢ଼ିବା କଥା ସ୍ଥିର କରିବି। ଏହିପରି ନାନା କଥା ଭାବିଲି। ଏହିସବୁ କଥା ଯେତେ ବେଶି ମନରେ ଆସିଲା ସେତିକି ପଢ଼ିବାକୁ ମନ ବ୍ୟଗ୍ର ହେଲା। ସେ ଦିନ ରାତିରେ ମୁଁ ଆଉ ଶୋଇନାହିଁ। ରାତ୍ର ପାହିଲା। ମୁଁ ଯାଇ ସ୍କୁଲରେ ହାଜର ହେଲି। ମୁଁ ସ୍କୁଲ ଛାଡ଼ିବାର ଅନେକ ବର୍ଷ ହୋଇଥାଏ। ବର୍ତ୍ତମାନ ଦଶପଲ୍ଲା

ଗଡ଼ର ସ୍କୁଲ ମାଇନର ସ୍କୁଲରେ ପରିଣତ ହୋଇଗଲାଣି। ଗୁପ୍ତ ସାହେବ କମିଶନର ଥିଲାବେଳେ ଏହି ସ୍କୁଲଟି ହୋଇଥିବାରୁ ଏହାର ନାମ ଗୁପ୍ତ.ମି.ଇ ସ୍କୁଲ। ଶ୍ରୀଯୁକ୍ତ ବାସୁଦେବ ପଟ୍ଟନାୟକ ସ୍କୁଲର ପ୍ରଥମ ହେଡ୍‌ମାଷ୍ଟର। ମୁଁ ସକାଳୁ ଯାଇ ଏହାଙ୍କ ସହିତ ଦେଖାକଲି। ଗୋପିନାଥ ମିଶ୍ରେ ମଧ୍ୟ ଥାଆନ୍ତି। ସେ ମୋଠାରୁ ମୋର ବର୍ତ୍ତମାନ ଅବସ୍ଥା ସବୁ ଶୁଣିଲେ। ମୋତେ ପଢ଼ିବାକୁ ଉତ୍ସାହ ଦେଲେ। ମୁଁ ଯଦି ପଢ଼େ ତେବେ ସେ ମୋତେ ବହିପତ୍ର ଏବଂ ପିନ୍ଧିବାକୁ ଲୁଗାପଟା ସାହାଯ୍ୟ କରିବାକୁ ପ୍ରତିଶ୍ରୁତ ହେଲେ। ମୁଁ ସ୍କୁଲକୁ ଯେତେବେଳେ ଇଚ୍ଛା ସେତେବେଳେ ଆସିପାରେ। ସବୁ ଦିନ ନିୟମିତ ସମୟରେ ଯଦି ନ ଆସି ପାରେଁ ସେଥିପାଇଁ କିଛି ଆପତ୍ତି ନାହିଁ। ଏହି ସବୁ ଶୁଣି ମୁଁ ପଢ଼ିବାକୁ ନିଶ୍ଚୟ କଲି। ସେହି ଦିନ ସ୍କୁଲରେ ନାମ ଲେଖା ହେଲା। ବର୍ଣ୍ଣବୋଧକ ଠାରୁ ପୁଣି ମୋତେ ଆରମ୍ଭ କରିବାକୁ ପଡ଼ିଲା। ଅତି ପିଲାବେଳେ ମୁଁ କଅଣ ପଢ଼ିଥିଲି ତାହା ଆଉ କିଛି ମନେ ନଥିଲା, କାରଣ ମୁଁ ବର୍ଣ୍ଣବୋଧର ମଧ୍ୟ ଅକ୍ଷର ଚିହ୍ନି ପଢ଼ି ପାରିଲି ନାହିଁ। ସେ ଯାହାହେଉ ଏହିପରି ଭାବରେ କେବଳ ରାମାୟଣ ଓ ଭାଗବତ ପଢ଼ି ପାରିବା ଭଳି ଅକ୍ଷର ଜ୍ଞାନ ଲାଭ କରିବା ଉଦ୍ଦେଶ୍ୟରେ ମୁଁ ମୋର ପାଠପଢ଼ା ପୁଣି ଆରମ୍ଭ କଲି।

ମୁଁ ସ୍କୁଲରେ ନାମ ଲେଖାଇଲି। ବେଳକୁ ବେଳ ପଢ଼ିବାକୁ ମନରେ ଆଗ୍ରହ ଜାତ ହେଲା, କିନ୍ତୁ ସବୁଦିନେ ସ୍କୁଲକୁ ଯାଇପାରେ ନାହିଁ। ଯେଉଁ ଦିନ ଘରେ ଖାଇବାକୁ ନ ଥାଏ ସେଦିନ ଯିବି ଅବା କିପରି ? କୌଣସି କାରଣରୁ ସ୍କୁଲକୁ ନଗଲେ କକେଇ ବଡ଼ ବିରକ୍ତ ହୁଅନ୍ତି। ମୁଁ ତ ବର୍ଣ୍ଣବୋଧକ ପାଠ ଆରମ୍ଭ କରିଥାଏଁ। ସୁତରାଂ ପ୍ରତିଦିନ ସ୍କୁଲକୁ ଯିବା ନଯିବା ଦ୍ୱାରା ବିଶେଷ କିଛି କ୍ଷତି ହୁଏ ନାହିଁ। ମୁଁ ସବୁବେଳେ କ୍ଲାସରେ ପ୍ରଥମ ହୁଏ। ବର୍ଷକ ଭିତରେ ମୋତେ ପରୀକ୍ଷା କରି ଥରକୁ ଥର ମୋତେ ଉପର କ୍ଲାସକୁ ଉଠାଇ ଦିଅନ୍ତି। ବର୍ଷ ଶେଷରେ ମୁଁ ନିମ୍ନ ପ୍ରାଇମେରୀ ଦ୍ୱିତୀୟ ଶ୍ରେଣୀକୁ ପ୍ରମୋଶନ ପାଇଲି। ବର୍ଷକ ଭିତରେ ରାମାୟଣ ପଢ଼ିବାର ଜ୍ଞାନ ହୋଇଗଲା। କିନ୍ତୁ ବର୍ତ୍ତମାନ ରାମାୟଣ ପଢ଼ି ଜୀବିକା ନିର୍ବାହ କରିବାର ଇଚ୍ଛା ନାହିଁ। ଭଲ ପାଠ ପଢ଼ି ଭଲ ଭାବରେ ନିମ୍ନ ପ୍ରାଇମେରୀ ଖଣ୍ଡିକ ପାଶ୍‌କରି ପାରିଲେ ଦଶପଲ୍ଲାର କୌଣସି ଗୋଟିଏ ଗ୍ରାମରେ ଖଣ୍ଡିଏ ପାଠଶାଳା କରି ପାରିଲେ ଭଲ ହେବ। ଏହି ଆଶା ମନରେ ଥାଏ ଏବଂ ସ୍କୁଲକୁ କେବେ ଯାଇ ନ ପାରିଲେ ମନ ଦୁଃଖ ହୁଏ।

ଇତି ମଧ୍ୟରେ ତାଳଚେର ଗଡ଼ଜାତରୁ ଜଣେ ବ୍ରାହ୍ମଣ ଦଶପଲ୍ଲାକୁ ଆସି ନବିସନ୍ଦା କାର୍ଯ୍ୟ କରୁଥିଲେ। ମୁଁ ଏହାଙ୍କ ନିକଟରେ ରୋଷେଇ କରିବାକୁ ରହିଲି। ରୋଷେଇ କରିବାପାଇଁ ଚାକିରି କରିବା ଆମ ଜାତିର ନିୟମ ବିରୁଦ୍ଧ। କେହି ଏହି କାର୍ଯ୍ୟ କଲେ ଜାତିରୁ ଅଟକ ହୁଏ। ପଣ୍ଡା ଅଥବା ନୀଚ କୁଳ ବ୍ରାହ୍ମଣମାନେ ରୋଷେଇ କାର୍ଯ୍ୟ କରନ୍ତି। କିନ୍ତୁ ମୁଁ ଯାହାଙ୍କ ନିକଟରେ ରହିଲି ସେ ଜଣେ ଉଚ୍ଚ

କୁଳର ବ୍ରାହ୍ମଣ। ସେ ପଣ୍ଡାବ୍ରାହ୍ମଣ ରଖିବେ ନାହିଁ। ଆନନ୍ଦ ସାହୁ, ଯେ କି ମୋର ଉପନୟନ କାର୍ଯ୍ୟ ପାଇଁ ପିତାଙ୍କୁ କିଛି ଅର୍ଥ ସାହାଯ୍ୟ କରିଥିଲେ, ତାହାଙ୍କର ପରାମର୍ଶରେ ମୋର ବଡ଼େଇଙ୍କୁ ଅନୁରୋଧ କରି ସେ ମୋତେ ପାଖରେ ରଖିଲେ। ମୁଁ ଚାକିରି କଲାପରି ରହିଲି ନାହିଁ, କାରଣ ମୁଁ ତାଙ୍କଠାରୁ ଦରମା ନେଇନାହିଁ। ସେ ମୋର ପଢ଼ା ପାଇଁ ବହିପତ୍ର, ଲୁଗାପଟା ସାହାଯ୍ୟ କରିବେ। ମୁଁ ରୋଷେଇ କରିବି ଦୁହେଁଯାକ ଖାଇବୁ। ନିମ୍ନ ପ୍ରାଇମେରି ପଢ଼ିବାପାଇଁ ବହିପତ୍ର ବର୍ଷରେ ଟଙ୍କାଟିଏ। ସୁତରାଂ ଏହାକୁ ଦରମା କୁହାଯାଇ ନ ପାରେ। ସେ ଯାହାହେଉ, ବର୍ତ୍ତମାନ ମୁଁ ଏହିପରି ରୋଷେଇକରି ପାଠ ପଢ଼ିଲି।

ଏତେବେଳକୁ ଦଶପଲ୍ଲାର ଦେବାନ ଭାବଗ୍ରାହୀ ବିଶ୍ୱାଳ ଓ ରାଜା ଶ୍ରୀ ନାରାୟଣ ଦେଓ ଭଞ୍ଜ। ଗତ ଦଶବର୍ଷ ଭିତରେ ଦଶପଲ୍ଲାର ରୀତି ନୀତି ବହୁତ ବଦଳି ଗଲାଣି। ପୁରୁଣା କାଳିଆ ଲୋକେ ଯେ କେତୋଟି ଥିଲେ ସେମାନେ ମରି ହଜି ଗଲେଣି। ରାଜାଙ୍କ ସହିତ ପ୍ରଜାଙ୍କର ପୂର୍ବ ସମ୍ବନ୍ଧ ଆଉ ନାହିଁ। ଆମେ କଳହ ହେଉଥିଲେ ରାଜା ନିଜେ ମେଣ୍ଟାଇ ଦେଉଥିଲେ। ବର୍ଷର ଭିନ୍ନ ଭିନ୍ନ ଋତୁରେ ଭିନ୍ନ ଭିନ୍ନ ନୂଆ ଫଳ ପ୍ରଥମେ ରାଜ ପ୍ରାସାଦକୁ ଆସେ। କିନ୍ତୁ ରାଜା ସେ ସବୁ ନୂଆ ଜିନିଷ ପ୍ରଥମେ ଗଡ଼ର ଭଦ୍ରବ୍ୟକ୍ତିମାନଙ୍କୁ ନ ଦେଇ ନିଜେ ବ୍ୟବହାର କରନ୍ତି ନାହିଁ। ପ୍ରତିବର୍ଷ ଶରତ୍ ସମୟରେ ରାଜା ପ୍ରଜା ମିଶି ବଣଭୋଜି କରିବାକୁ ଯାନ୍ତି। ବଣ ଜଙ୍ଗଲରେ ୧୦/୧୫ ଦିନ ପର୍ଯ୍ୟନ୍ତ ମଧ କେବେ କେବେ ରହିବାକୁ ପଡ଼େ। ଗଡ଼ଜାତରେ ହରିତାଳିକା, ଗହ୍ମା ପୂର୍ଣ୍ଣିମା ଦୁଇଟି ଉତ୍ସବରେ ଟିକିଏ ବିଶେଷତ୍ୱ ଅଛି। ଏହି ଦୁଇଟି ଉତ୍ସବରେ ଲୋକେ ଦଳବାନ୍ଧି ଉତ୍ସବ କରନ୍ତି। ରାଜା ଅସାକ୍ଷାତରେ, ବେଳେ ବେଳେ ସାକ୍ଷାତରେ ମଧ, ଏ ସବୁ ଦଳରେ ଯୋଗ ଦିଅନ୍ତି। ହରିତାଳିକା ଦିନ ରାତ୍ରରେ କବାଟ ବାଡ଼େଇବା ଗୋଟିଏ ବିଶେଷତ୍ୱ। ସେଦିନ କବାଟ ବାଡ଼େଇଲେ ଆୟୁ ବୃଦ୍ଧି ହୁଏ ବୋଲି ଗୋଟାଏ ବିଶ୍ୱାସ ଅଛି। ସୁତରାଂ ହରିତାଳିକା ରାତ୍ରରେ କବାଟ ବାଡ଼ିଆକୁ ଲୋକେ ଦଳ ଦଳ ହୋଇ ବାହାରନ୍ତି। ଯେଉଁ ଲୋକ ବେଶି ଗାଳି ଦିଏ ତାହାରି କବାଟକୁ ଲୋକେ ବେଶି ପିଟନ୍ତି। ରାଜା ମଧ ବେଳେ ବେଳେ ଏହି କବାଟ ବାଡ଼ିଆରେ ପୂର୍ବେ ଯୋଗ ଦେଉଥିଲେ। ଏହାକୁ ଗୋଟିଏ ବଡ଼ ଆମୋଦପ୍ରମୋଦ ଓ ହସ କୌତୁକର କ୍ରିୟା ବୋଲି ଭାବି ସମସ୍ତେ ବଡ଼ ଆନନ୍ଦ ଅନୁଭବ କରୁଥିଲେ। କିନ୍ତୁ ଏ ସବୁ ଭାବ ଓ ଅବସ୍ଥା ବହୁ ପୂର୍ବରୁ ବଦଳି ଗଲାଣି। ଏପରିକି ଏ ସବୁ ମୁଁ ଶୁଣୁଛି, କିନ୍ତୁ ଦେଖି ନାହିଁ। ତଥାପି ଯାହା ଦେଖିଛି, ରାଜା ପ୍ରଜାଙ୍କର ଯେଉଁ ଭାବ ଓ ସମ୍ବନ୍ଧ ଥିଲା ସେ ସବୁ ଆଉ କିଛି ନାହିଁ। ବର୍ତ୍ତମାନ ଦଶପଲ୍ଲାରେ କଚେରୀ ବସୁଛି, କୋଟଫିସ୍ ବିକା ହେଉଛି, ମାଲିମକଦ୍ଦମାର ବିଚାର ଚାଲିଛି, ନବିସନ୍ଧା ରହି ଦରଖାସ୍ତ ଲେଖୁଅଛନ୍ତି। ମୁଁ ଯାହାଙ୍କ ନିକଟରେ

ରୋଷେଇ କରିବାକୁ ରହିଲି ସେ ଥିଲେ ଜଣେ ଦରଖାସ୍ତ ଲେଖିବା ଜବିସେନ୍ଦା ଯାହାକୁ ଇଂରେଜିରେ କହନ୍ତି ପିଟିସନ୍ ରାଇଟର୍।

ସେ ତାଳଚେରରୁ ଆସିଥିଲେ। ତାଙ୍କ ନାମ ମୋର ବର୍ତ୍ତମାନ ମନେ ପଡୁନାହିଁ। ତାଙ୍କୁ ସମସ୍ତେ ମିଶ୍ରେ ମିଶ୍ରେ ବୋଲି ଡାକନ୍ତି। ସେ ଯାହା ହେଉ, ତାଙ୍କ ନିକଟରେ ଛଅ ମାସ ରହିବାପରେ ସେ ତାଙ୍କ ଗ୍ରାମକୁ ଗଲେ ଯେ ଆଉ ଫେରିଲେ ନାହିଁ। ସେ ଯେଉଁ ବସା ଘରେ ଥିଲେ ସେ ଘରଟି ଗୋଟିଏ ବଡ଼ ଖଞ୍ଜା ଘର। ସେ ଘରେ ଅନେକଗୁଡ଼ିଏ କୋଠରୀ ଥାଏ। ସେଠାରେ କଟକର ମାଧବ ମହାରଣା ବସା କରି ରହିଥାଆନ୍ତି। ମାଧବ ମହାରଣା ଦଶପଲ୍ଲା ଷ୍ଟେଟର ଏଜେଣ୍ଟ। ଷ୍ଟେଟର କିମ୍ବା ରାଜାଙ୍କର ଯେତେବେଳେ ଯାହା କିଛି ଜିନିଷ କଟକରୁ ନବାର ଦରକାର ହୁଏ ଏହି ମାଧବ ମହାରଣା ସେହି ସବୁ ଜିନିଷ ଯୋଗାନ୍ତି। ଉକ୍ତ ଜିନିଷର ଭଲମନ୍ଦ ପାଇଁ ଏହି ଏଜେଣ୍ଟ ଦାୟୀ।

ସେହି ସମୟକୁ ଦଶପଲ୍ଲା ଷ୍ଟେଟ୍ ପରିଦର୍ଶନ କରିବାପାଇଁ ପଲିଟିକେଲ୍ ଏଜେଣ୍ଟଙ୍କର ଆସିବାର ଥାଏ। ସେଥିପାଇଁ ଦଶପଲ୍ଲାରେ ଭାରୀ ଚହଳ। ପଲିଟିକେଲ୍ ଏଜେଣ୍ଟ ପଦ ଏବେ ନୂଆ ସୃଷ୍ଟି ହୋଇଛି। ଏ ଆଗେ ଓଡ଼ିଶାର କମିଶନର ସାହେବ ଗଡ଼ଜାତମାନଙ୍କରେ ସର୍ବେସର୍ବା ଥିଲେ। ତାଙ୍କ ତଳେ ଜଣେ ସୁପରିନ୍‌ଟେଣ୍ଡେଟ୍ ଥାନ୍ତି। ସ୍ୱର୍ଗୀୟ ସୁଦାମ ଚରଣ ନାୟକ ହେଉଛନ୍ତି ଓଡ଼ିଶା ଗଡ଼ଜାତମାନଙ୍କର ଶେଷ ସୁପରିନ୍‌ଟେଣ୍ଡେଟ୍। ଆଉ ଏବେ ଓଡ଼ିଆ ଏପରି ଦାୟିତ୍ୱପୂର୍ଣ୍ଣ ଉଚ୍ଚ ଚାକିରି ପାଇବା ସହଜ ନୁହେଁ। ପୂର୍ବେ ଯେଉଁମାନେ ସୁପରିନ୍‌ଟେଣ୍ଡେଟ୍ ହେଉଥିଲେ ସେମାନଙ୍କ ମନରେ ଓଡ଼ିଆ ଜାତିର ଭବିଷ୍ୟତ କଳ୍ପନା କରିବାର ଶକ୍ତି ନଥିଲା। ଓଡ଼ିଆ ଜାତିର ଉନ୍ନତି ସାଧନ କରିବାରେ ସେମାନେ ଯେପରି ସୁବର୍ଣ୍ଣ ସୁଯୋଗ ପାଇଥିଲେ, ସେତେବେଳେ ଓଡ଼ିଶା ଗଡ଼ଜାତ ରାଜାମାନଙ୍କର ମତିଗତି ଯେପରି ଥିଲା, ସେମାନେ ଏହି ସୁପରିନ୍‌ଟେଣ୍ଡେଣ୍ଟମାନଙ୍କର ଇଙ୍ଗିତରେ ଓଡ଼ିଆ ଜାତିର ଓ ସାହିତ୍ୟର ଉନ୍ନତିପାଇଁ ବହୁତ କାର୍ଯ୍ୟ କରି ପାରି ଥାଆନ୍ତେ। ଆଜି ଗଡ଼ଜାତର ରାଜା ପ୍ରଜା ଓଡ଼ିଶାରୁ ଅଲଗା ହୋଇ ଯାଉଛନ୍ତି। ସାମାଜିକ, ଆର୍ଥିକ, ରାଜନୈତିକ ଯେଉଁ ଦୃଷ୍ଟିରେ ଦେଖିବାକୁ ଯିବ ସବୁ ପ୍ରକାରେ ଗଡ଼ଜାତମାନ ଓଡ଼ିଶାର ଅଞ୍ଚଳମାନଙ୍କ ସହିତ ଘନିଷ୍ଠ ଭାବରେ ଜଡ଼ିତ। ଗଡ଼ଜାତସବୁ ଓଡ଼ିଶାରୁ ଅଲଗା ରହିଲେ, ଓଡ଼ିଆ ଜାତିର ଭବିଷ୍ୟତ ଅନ୍ଧକାର ରହିବ। ବୃହଦ୍ ଉତ୍କଳର ପରିକଳ୍ପନା କଲେ ଗଡ଼ଜାତ ରାଜାଙ୍କର ବିଷମ ସମସ୍ୟାର ସର୍ବାଗ୍ରେ ମନ ମଧ୍ୟରେ ଉପସ୍ଥିତ ହୁଏ। ଆଜି ଏହି ସମସ୍ୟାଟି ଜଟିଳରୁ ଜଟିଳତର ହୋଇ ଉଠୁଛି କିନ୍ତୁ ଏହି ଜଟିଳତା ଦୂର କରି ବର୍ତ୍ତମାନ ଓଡ଼ିଶାକୁ ବୃହତ୍ତର ଓଡ଼ିଶାରେ ପରିଣତ କରିବାର ଭାବନା ମନ ମଧ୍ୟରେ ଜାଗ୍ରତ ହେଲାବେଳେ ସେହି ଭାବନାକୁ ମନ ମଧ୍ୟରେ କାର୍ଯ୍ୟରେ ପରିଣତ କରିବାପାଇଁ ଆଜି ଚକ୍ଷୁ ସମ୍ମୁଖରେ ଅତୀତର କୌଣସି କୀର୍ତ୍ତି ଦୃଷ୍ଟି ଗୋଚର ହୁଏ ନାହିଁ। ଏହି ସବୁ ପାଇଁ ଆଜି ଦାୟୀ କିଏ ?

ଦୋଷ ଓ ତ୍ରୁଟି କେଉଁଠାରେ, ଏହି ପ୍ରଶ୍ନ ମନରେ ଜାଗ୍ରତ ହୋଇ ଉଠିଲା ବେଳେ ଏହି ଗଡ଼ଜାତ ରାଜ୍ୟମାନଙ୍କ ଉପରେ ନିଯୁକ୍ତ ହୋଇଥିବା ଓଡ଼ିଆ ସୁପରିନ୍‌ଟେଣ୍ଡେଣ୍ଟମାନଙ୍କ କଥା ସ୍ୱତଃ ମନରେ ଜାଗି ଉଠେ। ମନେହୁଏ, ଏହିମାନେ ଟିକିଏ ଇଚ୍ଛା କରିଥିଲେ କିମ୍ବା ଏମାନଙ୍କର ଭିତରେ ତିଳେ ମାତ୍ର ଦେଶାତ୍ମବୋଧ ଥିଲେ ଏମାନେ ଏପରି ଅନେକ ଅନୁଷ୍ଠାନ ଗଢ଼ି ଦେଇ ପାରିଥାନ୍ତେ, ଯେଉଁସବୁ ଆଜି ଗଡ଼ଜାତ ଓ ମୋଗଲବନ୍ଦୀ ଏହିପରି ଓଡ଼ିଶାର ଏହି ଦୁଇ ଅଞ୍ଚଳର ଭାବ ଧାରାକୁ ଟାଣି ଏକତ୍ର କରି ପାରୁ ଥାଆନ୍ତା। ଆଜି ଗଡ଼ଜାତ ଛାତ୍ରମାନଙ୍କ ପାଇଁ ଉଚ୍ଚଶିକ୍ଷାର ଦ୍ୱାର ରୁଦ୍ଧ ହେବାର ସମ୍ଭାବନା ନ ଥାନ୍ତା। ସେ ଯାହା ହେଉ, ସୁଦାମ ବାବୁଙ୍କ ପରେ ଏହି ଚାକିରି ଲୋପ ପାଇଛି। କମିଶନର ସାହେବ ଆଉ ଗଡ଼ଜାତର କିଛି ନୁହଁନ୍ତି। ପଲିଟିକେଲ୍ ଏଜେଣ୍ଟ ପଦ ଗଡ଼ଜାତ ପାଇଁ ସୃଷ୍ଟି ହୋଇଛି। ସେ ଏବେ ଦଶପଲ୍ଲା ଷ୍ଟେଟ୍ ପରିଦର୍ଶନ ପାଇଁ ଆସୁଅଛନ୍ତି।

ଆଗେ କମିଶନର୍ ସାହେବ ଗଡ଼ଜାତକୁ ଆସିଲାବେଳେ ଯେପରି ଗଡ଼ଜାତ ରାଜଧାନୀ ଏକ ନୂଆ କଳେବର ଧାରଣ କରେ, ପଲିଟିକେଲ୍ ଏଜେଣ୍ଟଙ୍କ ପାଇଁ ତଦ୍ରୂପ ଚାଲିଥାଏ। କଚେରୀ, ସ୍କୁଲ, ଜେଲଖାନା ସବୁରେ ଚୂନ ଲିପାଯାଉଥାଏ। ରାସ୍ତାଘାଟ ପରିଷ୍କାର ପରିଚ୍ଛନ୍ନ କରାଯାଇ ନାନା ପ୍ରକାର ସାଜସଜ୍ଜାରେ ଶୋଭିତ କରା ହେଉଥାଏ। ସ୍କୁଲ ପିଲାମାନେ ନାନା ପ୍ରକାର ଗୀତ ଶିଖୁଥାଆନ୍ତି। ସାହେବ ଆସିଲେ ସ୍କୁଲରେ ପୁରସ୍କାର ବିତରଣ ହୁଏ। ପିଲାମାନେ ଗୀତ ସବୁ ମୁଖସ୍ଥ କରି ସାହେବଙ୍କ ଆଗରେ ଠିଆ ହୋଇ ସାହେବଙ୍କୁ ଶୁଣାନ୍ତି। ଏହିପରି ସାହେବ ଆସିଲେ ଗଡ଼ଜାତରେ ଗୋଟାଏ ଚହଳ ପଡ଼େ। ସାହେବ କହିଲେ ଆଗେ କମିଶନର ସାହେବଙ୍କୁ ବୁଝାଉଥିଲା, ଏବେ ପଲିଟିକେଲ୍ ଏଜେଣ୍ଟଙ୍କୁ ବୁଝାଉଛି।

ଯାହାହେଉ ସାହେବ ଆସିବାପାଇଁ ଚାରିଆଡ଼େ ଭାରି ଚହଳ। କଟକରୁ ଦଶପଲ୍ଲାର ଏଜେଣ୍ଟ ମାଧବ ମହାରଣା ଦଶପଲ୍ଲା ଯାଇଥାଆନ୍ତି। ସେ ଆମ ବସାରେ ଯାଇ ରହିଲେ। ପୂର୍ବେ ସେ ମଧ ଆମ ବସାରେ ରହୁଥିଲେ ଏବଂ ଆମ ରୋଷେଇରେ ଖାଉଥିଲେ। ସୁତରାଂ ମିଶ୍ରେ ତାଳଚେରରୁ ଫେରିବା ପର୍ଯ୍ୟନ୍ତ ମୁଁ ଏହି ମାଧବ ମହାରଣାଙ୍କ ନିକଟରେ ରହି ରୋଷେଇ କଲି। କିନ୍ତୁ ମୁଁ ଠିକ୍ ରୋଷେୟା ଭାବରେ ଏହାଙ୍କ ନିକଟରେ ନଥିଲି। ମାଧବ ମହାରଣା ଜଣେ ଅତ୍ୟନ୍ତ ଭଦ୍ର ବ୍ୟକ୍ତି। ସେ ମୋର ପରିଚୟ ପାଉଥାଆନ୍ତି। କେବଳ ଅବସ୍ଥା ଚକ୍ରରେ ପଡ଼ି ମୁଁ ଏପରି ରୋଷେଇ କରି ପାଠ ପଢୁଛି, ଏହା ମଧ ସେ ଜାଣିଥାଆନ୍ତି। ସୁତରାଂ ସେ ମୋତେ ସ୍ନେହଭାବ ଦେଖାଇ ମୋ ସହିତ ବ୍ୟବହାର କରୁଥାଆନ୍ତି। ଦିନକୁ ଦିନ ଉକ୍ତ ନବିସନ୍ଧାଙ୍କର ଆସିବାରେ ବିଳମ୍ବ ହେଲା। ଏଣେ ଷ୍ଟେଟକୁ ସାହେବ ଆସୁଥିବା ହେତୁ କାର୍ଯ୍ୟରେ ଗୁରୁତ୍ୱ ଲାଘବ କରିବାପାଇଁ ମାଧବ ମହାରଣା କଟକରୁ ଆଉ କେତେ ଜଣଙ୍କୁ ଡକାଇଥାଆନ୍ତି। ସେମାନେ ଯାଇ ଠିକ୍ ସମୟରେ ଦଶପଲ୍ଲାରେ ଉପସ୍ଥିତ ହେଲେ।

ଏ ସମସ୍ତଙ୍କ ପାଇଁ ମଧ ମୋତେ ରୋଷେଇ କରିବାକୁ ପଡ଼ିଲା। କିନ୍ତୁ ନବାଗତ ବ୍ୟକ୍ତିଗୁଡ଼ିକ ମୋତେ କେହି ଜାଣୁ ନଥିଲେ। ରୋଷେଇ କାମ ମଧ ମୋତେ ଭଲ ଆସୁ ନଥାଏ। ଏଥିପାଇଁ ଏମାନଙ୍କ ମଧରୁ କେହି କେହି ମୋ ଉପରେ ବେଳେ ବେଳେ ବିରକ୍ତ ହେଉଥିଲେ। କିନ୍ତୁ ମାଧବ ମହାରଣା ଏହା ଟିକିଏ ଜାଣିପାରିଲେ ସେମାନଙ୍କ ଉପରେ ଏଥିପାଇଁ ବଡ଼ ବିରକ୍ତ ହେଉଥିଲେ।

ଏହି ସମୟରେ ଗଡ଼ ସ୍କୁଲକୁ ସ୍କୁଲ ସବ୍‌ଇନ୍‌ସ୍‌ପେକ୍ଟର ଆସିଲେ। ପୂର୍ବେ ସ୍କୁଲ ସବ୍‌ଇନ୍‌ସ୍‌ପେକ୍ଟରମାନେ ମାଇନର ସ୍କୁଲ ପରିଦର୍ଶନ କରି ପାରୁଥିଲେ। ସାହେବ ଆସିବାର ସମୟ ନିକଟ ହେବାରୁ ସବ୍‌ଇନ୍‌ସ୍‌ପେକ୍ଟର ବାବୁ ମଧ ଆସି ହାଜର ହେଲେ। ତାଙ୍କୁ ରୋଷେଇ କରିଦେବାକୁ ତାଙ୍କ ପାଖରେ କେହି ନଥାନ୍ତି। ଏପରି ଅବସ୍ଥାରେ ହେଡ଼ମାଷ୍ଟର ବାସୁବାବୁ ମୋତେ ଡାକି ସବ୍‌ଇନ୍‌ସ୍‌ପେକ୍ଟର ବାବୁଙ୍କର କାର୍ଯ୍ୟ ଚଳାଇ ଦେବାକୁ ଅନୁରୋଧ କଲେ। ମୁଁ ତାଙ୍କ ଅନୁରୋଧ ଭାଙ୍ଗି ନ ପାରି ମାଧବ ମହାରଣାଙ୍କ ବସା ଛାଡ଼ି ସବ୍‌ଇନ୍‌ସ୍‌ପେକ୍ଟରେ ବାବୁଙ୍କର ନିକଟରେ ରହିଲି। ସାହେବ ଆସି ଚାଲିଗଲେ। ସବ୍‌ଇନ୍‌ସ୍‌ପେକ୍ଟର ବାବୁ ମଧ ଚାଲିଗଲେ। ବର୍ତ୍ତମାନ ମୁଁ କଣ କରିବି କିଛି ଭାବିପାରିଲି ନାହିଁ। ଏପରି ଅବସ୍ଥାରେ ହେଡ଼ମାଷ୍ଟର ବାସୁବାବୁ ମୋତେ କିଛିଦିନପାଇଁ ନିଜ ହାତରୁ ସବୁ ଖର୍ଚ୍ଚ ଦେଇ ସ୍କୁଲରେ ରଖାଇ ଦେଲେ। ସ୍କୁଲ ଘରର ଗୋଟିଏ ଛୋଟ ଘରେ ମୁଁ ହାତରେ ରୋଷେଇ କରି ଖାଇ ପାଠ ପଢ଼ିଲି। ଇତି ମଧରେ ଦଶପଲ୍ଲାର ମଫସଲ ସ୍କୁଲ ସବୁ ପରିଦର୍ଶନ କରିବାପାଇଁ ଜଣେ ଇନ୍‌ସ୍‌ପେକ୍ଟିଙ୍ଗ ପଣ୍ଡିତ ନିଯୁକ୍ତ ହେଲେ। ବଡ଼ମ୍ବା ଷ୍ଟେଟରେ ଶ୍ରୀ ଉପେନ୍ଦ୍ରଚନ୍ଦ୍ର ମିଶ୍ର ନାମକ ଜଣେ କଟକ ନରମାଲ ଟ୍ରେନିଂ ପାଶ୍ ପଣ୍ଡିତ ଦଶପଲ୍ଲାର ପ୍ରଥମ ଇନ୍‌ସ୍‌ପେକ୍ଟିଙ୍ଗ୍ ପଣ୍ଡିତ। ଏ ମହାଶୟ ଯାଇ ସ୍କୁଲରେ ବସା କରି ରହିଲେ। ମୁଁ ଏହାଙ୍କୁ ରୋଷେଇ କରି ଦେଇ ପୂର୍ବ ପରି ପାଠ ପଢ଼ିଲି।

ବର୍ତ୍ତମାନ ମୁଁ ନିମ୍ନ ପ୍ରାଥମିକ ୪ର୍ଥ ଶ୍ରେଣୀରେ। ସେତେବେଳକୁ ସ୍କୁଲରେ କିଣ୍ଡରଗାର୍ଟେନ୍ ପ୍ରଣାଳୀ ଅନୁସାରେ ଶିକ୍ଷାପଦ୍ଧତି ପ୍ରଚଳିତ ହେଉଥାଏ। ସ୍କୁଲର ଛାତ୍ରମାନେ ହସ୍ତ କର୍ମ ଶିଖିବାର ନିୟମ ଥାଏ। ମାଟିରେ ଆମ୍ଭେମାନେ ନାନା ପ୍ରକାର ଫଳମୂଳ ତିଆରି କରୁଥାଉଁ। ଏହି ହସ୍ତକର୍ମଗୁଡ଼ିକ ମୁଁ ଭଲ କରି ପାରୁଥାଏ। ସ୍କୁଲରେ ଡ୍ରିଲ୍‌ଶିକ୍ଷା ଦିଆଯାଉ ଥାଏ। ଡ୍ରିଲରେ ମଧ ମୁଁ ବେଶ୍ କରୁଥାଏଁ। ପଲ୍ଲୀ ସ୍କୁଲ ପରିଦର୍ଶକ ଶ୍ରୀଯୁକ୍ତ ଉପେନ୍ଦ୍ରଚନ୍ଦ୍ର ମିଶ୍ର ପଲ୍ଲୀ ସ୍କୁଲରେ ଡ୍ରିଲ୍ ଓ ହସ୍ତକର୍ମ ଶିକ୍ଷା ଦେବାକୁ ବିଶେଷ ଚେଷ୍ଟା କରୁଥାଆନ୍ତି। ସେ ଅନେକ ସମୟରେ ମୋତେ ସଂଗରେ ନେଇ ମଫସଲ ଗ୍ରସ୍ତରେ ବାହାରନ୍ତି। ପଲ୍ଲୀ ସ୍କୁଲରେ ଛାତ୍ରମାନଙ୍କୁ ମୁଁ ଏହି ଡ୍ରିଲ୍ ଓ ହସ୍ତକର୍ମ କିପରି କରିବାକୁ ହୁଏ ତହିଁର ଉଦାହରଣ ଦିଏ। ମୁଁ ଭଲ ପାଠ ପଢୁଥାଏ। ପୁଣି ଡ୍ରିଲ୍ ଓ ହସ୍ତକର୍ମ ଭଲ କରି ଜାଣିଥାଏ। ଏଥିପାଇଁ ପଲ୍ଲୀ ସ୍କୁଲମାନଙ୍କ ମଧ୍ୟରୁ ଅନେକ ଶିକ୍ଷକ ମୋତେ ସେମାନଙ୍କ ନିଜ ସ୍କୁଲରେ ଛାତ୍ର ସ୍ୱରୂପ ରଖିବାକୁ

ପଣ୍ଡିତ ଉପେନ୍ଦ୍ର ମିଶ୍ରଙ୍କୁ ଅନୁରୋଧ କଲେ। କିନ୍ତୁ ହେଡ୍‌ମାଷ୍ଟର ବାସୁଦେବ ପଟ୍ଟନାୟକଙ୍କ ଅନୁମତି ନ ନେଇ ସେ ଅବା କିପରି ମତେ କୌଣସି ସ୍କୁଲରେ ଛାଡ଼ିଦେଇ ଆସିବେ ? ସ୍କୁଲର ଶିକ୍ଷକମାନେ ମୋର ସମସ୍ତ ଖର୍ଚ୍ଚ ବହନ କରିବାକୁ ପ୍ରସ୍ତୁତ। ହେଡ୍‌ମାଷ୍ଟର ବାବୁ କାହିଁକି ମୋତେ ପଲ୍ଲୀ ସ୍କୁଲକୁ ନ ଛାଡ଼ିଲେ ମୁଁ ଜାଣେ ନାହିଁ। ମୁଁ ଏତିକି ଜାଣିଲି ଯେ କୌଣସି ପଲ୍ଲୀ ସ୍କୁଲକୁ ଯିବାର ମୋର ନ ହେଲା। କୌଣସି କୌଣସି ଶିକ୍ଷକଙ୍କର ଅତିଶୟ ଆଗ୍ରହ ଓ ସ୍ନେହରେ ମୋ ମନ ମଧ ତାଙ୍କରି ଆଡ଼କୁ ଢଳି ଥାଏ। ବାସୁ ବାବୁ ମଧ ମୋତେ ପୁତ୍ରବତ୍ ସ୍ନେହ କରୁଥାଆନ୍ତି। ପଣ୍ଡିତ ଉପେନ୍ଦ୍ରଚନ୍ଦ୍ର ମିଶ୍ର ମଧ ମୋତେ ନିଜର ଛୋଟ ଭାଇ ପରି ଦେଖୁଥାଆନ୍ତି। ସେ ଯାହାହେଉ ଶ୍ରୀଯୁକ୍ତ ଉପେନ୍ଦ୍ରଚନ୍ଦ୍ର ମିଶ୍ର ଦଶପଲ୍ଲାର କନ୍ଧମାଳଗସ୍ତରେ ଗଲାବେଳକୁ ଥରେ ମୋତେ ସଙ୍ଗରେ ନେଇଗଲେ। ମୁଁ କନ୍ଧମାଳ ଓ କନ୍ଧଗ୍ରାମ ଦେଖି ନଥାଏ। କନ୍ଧମାନଙ୍କ ବିଷୟରେ ବହୁତ କଥା ଶୁଣିଥାଏଁ। ସେମାନେ ଲଙ୍ଗଳା ହୋଇ, କେତେବେଳେ ବା ଗଛର ବକଳ କିମ୍ବା ତାଳପତ୍ର ପିନ୍ଧି ଜଙ୍ଗଲରେ ବୁଲୁ ଥାଆନ୍ତି। ଜଙ୍ଗଲର ଫଳମୂଳ ଖାଇ ରହନ୍ତି। ସେମାନେ ବଡ଼ ସାହସୀ। ସେମାନଙ୍କର ପୋଷାକ ପତ୍ର ଦେଖି ହସିଲେ, ସେମାନେ ହସିବା ଲୋକକୁ ଟିକି ଟିକି କରି ହାଣି ପକାନ୍ତି। କନ୍ଧମାନେ ନରବଳି ଦିଅନ୍ତି। ସେମାନେ ରଜାଙ୍କୁ ମଧ ଡରନ୍ତି ନାହିଁ। ଏହିପରି କେତେ କଥା ପିଲାମାନଙ୍କ ସହିତ କଥାବାର୍ତ୍ତା ହେଉଁ। ବର୍ତ୍ତମାନ ସେହି କନ୍ଧମାଳ ଓ କନ୍ଧଗ୍ରାମ ଦେଖିଯିବାକୁ ମୋର ଭାରି ଇଚ୍ଛା। ସୁତରାଂ ମୁଁ ପଣ୍ଡିତଙ୍କ ସାଙ୍ଗରେ ଆନନ୍ଦରେ ମାଳଗସ୍ତରେ ବାହାରିଲି। ଗଡ଼ରୁ ବାହାରିଲାବେଳେ ମନେ ମନେ ବିଚାରିଥିଲି ଏହି କନ୍ଧ ସ୍କୁଲମାନଙ୍କରେ ମୋତେ ଡ୍ରିଲ ଓ ହସ୍ତ କର୍ମ ଶିଖାଇବାକୁ ହେବ। କିନ୍ତୁ •କନ୍ଧ ଗ୍ରାମ ସ୍କୁଲରେ ପିଲାଙ୍କୁ ପରୀକ୍ଷା କରି ଶିକ୍ଷା ଦେବା କାମ ପଣ୍ଡିତଙ୍କ ଉପରେ ନ ଥାଏ। କନ୍ଧଗ୍ରାମକୁ ଯାଇ ପିଲାମାନେ କାହିଁକି ପାଠଶାଳକୁ ନ ଆସନ୍ତି ସେଥିପାଇଁ କନ୍ଧ ପିଲାଙ୍କର ବାପାମାନଙ୍କୁ ଡକାଇ ବୁଝାଇବାକୁ ହେଉଥାଏ। ସମୟେ ସମୟେ ସ୍ଥାନ ବିଶେଷରେ ମଧ ଭୟ ଦେଖାଇବାକୁ ହୁଏ। ଚଡ଼ିଆ ପଲ୍ଲୀ ନାମରେ ଗୋଟିଏ କନ୍ଧ ଗ୍ରାମକୁ ଆମ୍ଭେମାନେ ଯାଉଥିଲୁ। ଏହି ଗ୍ରାମର ସ୍କୁଲଟି ଭଲ ଚାଲୁ ନଥାଏ। ପିଲାମାନେ ସ୍କୁଲକୁ ଆସନ୍ତି ନାହିଁ। ପଣ୍ଡିତ ମହାଶୟ ଗ୍ରାମର କନ୍ଧମାନଙ୍କୁ ଡକାଇ ଆଣି ବସାଇ ରଖାଇ ସେମାନଙ୍କ ନାମରେ ରାଜାଙ୍କ ନିକଟକୁ ରିପୋର୍ଟ୍ କରି ଧରାଇ ନେବେ ବୋଲି ଧମକାଇ ଥିଲେ। କନ୍ଧମାନେ ତାଙ୍କୁ ତନଖଦାର ବାବୁ ବୋଲି ଡାକନ୍ତି। ତନଖଦାର ବାବୁଙ୍କ ଧମକରେ କନ୍ଧମାନେ ଏଣିକି ପିଲା ପ୍ରତିଦିନ ପଠାଇବେ ବୋଲି କହିଲେ। କିନ୍ତୁ ଜଣେ କନ୍ଧ ଠିଆ ହୋଇ କହିଲା, "ତନଖଦାର ବାବୁ, ତତେ ରଜା ଆମର ଟଙ୍କା ଦେଇ ରଖିଛି। ଆମ ପିଲା ପଢ଼ିବାକୁ ଅବଧାନ ରଖିଛି। ଆମେ ପାଠ ପଢ଼ିବାକୁ ନ ଆସିଲେ, ଅବଧାନ ରଜା ପଇସା ମାହାଳିଆ ଖାଇବ। ଏଥିକି ଦାୟୀ କିଏ ହେବ? ତୁ ଅବଧାନକୁ

ପଚାରେ, ମୁଁ ହୁକୁମ ମାନି ପାଠଶାଳାରେ ହାଜରା ପକାଏ କି ନାହିଁ। ମୋର ପିଲା ଆସେ, ସେ ନ ଆସି ପାରିଲେ ମୁଁ ତାର ସାନ ଭାଇକି ପଠାଇ ଦିଏ। ପାଳି କରି ଆମ ଘରୁ କେହି ହେଲେ ଆସି ହାଜରା ଦେଇଯାଏ। ହାଜରା ପକାଇବାରେ ମୋର ଗୋଟିଏ ଦିନ ବାକି ନାହିଁ। ଏହା ଶୁଣି ପଣ୍ଡିତେ ଆଉ କିଛି କହି ପାରିଲେ ନାହିଁ। ଏହି କଥା କହି ପଣ୍ଡିତେ ଅନେକ ସମୟରେ ହସ ବୃଷ୍ଟି କରାନ୍ତି। କନ୍ଧଗ୍ରାମ ଅନେକ ପରିମାଣରେ ବଦଳି ଗଲାଣି। କୌଣସି କୌଣସି କନ୍ଧ ଗ୍ରାମରେ ଏବେ ଶିକ୍ଷା ପ୍ରତି ଆଗ୍ରହ ଦେଖା ଗଲାଣି। କିନ୍ତୁ ସେତେବେଳେ କନ୍ଧମାନଙ୍କରେ ବୁଲି ସ୍କୁଲଟିଏ ବସାଇବା ବଡ଼ କଠିନ ଥିଲା। ପଣ୍ଡିତ ଉପେନ୍ଦ୍ର ମିଶ୍ରଙ୍କ ମନରେ ପରୋପକାର ଭାବ ଟିକିଏ ଥାଏ। ସେ ଅନେକ ସମୟରେ କହନ୍ତି, ମନୁଷ୍ୟ ଜନ୍ମ ହୋଇଛି। ସେ ନିଶ୍ଚୟ କିଛି ଜଗତର କଲ୍ୟାଣ କରିବ। ଏହି ଜଗତର କଲ୍ୟାଣ ଓ ଦେଶସେବା ଶବ୍ଦଟି ମୁଁ ପ୍ରଥମେ ପଣ୍ଡିତ ଉପେନ୍ଦ୍ର ମିଶ୍ରଙ୍କ ନିକଟରୁ ଶୁଣିଲି। ବାସୁ ବାବୁଙ୍କର କାର୍ଯ୍ୟ ଦେଖି ଅନେକ ସମୟରେ ଗଡ଼ ସ୍କୁଲର ଉପର କ୍ଲାସ ଛାତ୍ରମାନେ ଏକାଠି ବସିଲାବେଳେ କଥା ହୁଅନ୍ତି କିଏ କଅଣ କରିବ। ସାଧାରଣତଃ କିଏ କି ଚାକିରି କରିବ ବା କିପରି ଚାକିରି ପାଇଲେ କିଏ କେତେ ସୁଖୀ ହେବ ଏହି କଥା ଆଲୋଚନା ହୁଏ। ମୁଁ ଏସବୁ ଶୁଣେ, ସେ ସବୁ କଥା ଏ କାନରେ ପଶି ସେ କାନରେ ବାହାରିଯାଏ। ସେ ସବୁ କଥା ମୋତେ ସ୍ୱପ୍ନପରି ଲାଗେ।

ପଣ୍ଡିତ ଉପେନ୍ଦ୍ର ମିଶ୍ର ମୋତେ ବଡ଼ ସ୍ନେହ କରୁଥିଲେ। ଗଡ଼ ସ୍କୁଲ ଗ୍ରୀଷ୍ମ ଅବକାଶ ପାଇଁ ଏକମାସ ବନ୍ଦ ହେଲା। ହେଡ଼ମାଷ୍ଟର ବାସୁବାବୁ ଘରକୁ ଗଲେ। ପଣ୍ଡିତେ ଛୁଟି ନେଇ ଗ୍ରାମକୁ ଆସିଲେ। ଗ୍ରାମକୁ ଗଲାବେଳେ ସେ ମୋତେ ତାଙ୍କ ଘରକୁ ଯିବାକୁ ଡାକିଲେ। ମୁଁ ତାଙ୍କ ସଙ୍ଗରେ ବଡ଼ୟା ଆସିଲି। ତାଙ୍କର ପିତା ମାତା ଥାଆନ୍ତି। ତାଙ୍କର ଆଉ ଦୁଇଟି ଛୋଟ ଭାଇ ଥାଆନ୍ତି। ମୁଁ ତାଙ୍କ ଘରେ ପ୍ରାୟ ୨୦ ଦିନ ପର୍ଯ୍ୟନ୍ତ ରହିଥିଲି। ତାଙ୍କ ଘରେ ମୋତେ ସମସ୍ତେ ବଡ଼ ସ୍ନେହ କରୁଥାନ୍ତି। ଘର ପୁଅପରି ମୁଁ ତାଙ୍କ ଘରେ ଚଳୁଥାଏ। ତାଙ୍କ ଗ୍ରାମରୁ ଦଶପଲ୍ଲା ଷ୍ଟେଟ କାମ ନେଇ ପଣ୍ଡିତେ କଟକ ବାହାରିଲେ। ମୁଁ ମଧ ତାଙ୍କ ସଙ୍ଗରେ କଟକ ଆସିଲି। କଟକରେ କିଛିଦିନ ରହି ଉଭୟେ ଦଶପଲ୍ଲା ଫେରିଲୁ। କଟକ ଦେଖିବା ପରେ ବହୁତ ପାଠ ପଢ଼ିବାକୁ ମୋର ଭାରି ଇଚ୍ଛା ହେଲା। ମୁଁ ନିମ୍ନ ପ୍ରାଇମେରି ପାଶ୍ କରି ମାଇନର ୪ର୍ଥ କ୍ଲାସ୍‌କୁ ପ୍ରମୋଶନ ପାଇଲି। ଆଉ ପଣ୍ଡିତଙ୍କ ସଂଗରେ ପଲ୍ଲୀ ସ୍କୁଲକୁ ଯିବାକୁ ହେଲା ନାହିଁ। ମୁଁ ସ୍କୁଲରେ ହେଡ଼ମାଷ୍ଟର ବାସୁ ବାବୁଙ୍କ ସହିତ ରହିଲି।

ସ୍କୁଲର ବୋଡ଼ିଙ୍ଗ୍ ଘର ନଥାଏ। ବୋଡ଼ିଙ୍ଗରେ କେହି ପିଲା ନଥାନ୍ତି। ଗଡ଼ର କେତେଗୁଡ଼ିଏ ଛାତ୍ର ଦିନରାତି ସ୍କୁଲରେ ରହି ପଢ଼ା ଶୁଣା କରନ୍ତି। ଘରକୁ କେବଳ ଖାଇଲାବେଳକୁ ଯାନ୍ତି। ବାସୁ ବାବୁ ହେଡ଼ମାଷ୍ଟର ସ୍କୁଲରେ ଥାନ୍ତି। ତାଙ୍କର ବନମାଳି ଓ

ପର୍ଣ୍ଣ ନାମରେ ଦୁଇଟି ଛୋଟ ଭାଇ ଦଶପଲ୍ଲା ସ୍କୁଲରେ ପଢୁଥାନ୍ତି। ବଂଶୀଧର ନାମରେ ତାଙ୍କର ଗୋଟିଏ ପୁତୁରା ମଧ୍ୟ ପଢୁଥାଏ। ଏମାନେ ସମସ୍ତେ ସେହି ସ୍କୁଲରେ ଥା'ନ୍ତି। ବାସୁବାବୁ ମାସରେ ପଚିଶ ଟଙ୍କା ଦରମା ପାନ୍ତି। ସବୁତକ ଟଙ୍କା ତାଙ୍କର ଦଶପଲ୍ଲାରେ ଖର୍ଚ୍ଚ ହୋଇଯାଏ। ଗଡ଼ର ଛାତ୍ର ଯେଉଁମାନେ ଦିନରାତି ସ୍କୁଲରେ ଅଛନ୍ତି, ସେମାନେ ମଧ୍ୟ ଅନେକ ସମୟରେ ବାସୁ ବାବୁଙ୍କୁ ଖର୍ଚ୍ଚାନ୍ତରେ ପକାନ୍ତି। ହେଡ୍‌ମାଷ୍ଟରଙ୍କ ପାଇଁ ଜଳଖିଆ ରହିଥିବ ପିଲାମାନେ ଖାଇଯାନ୍ତି। ଶୀତଦିନେ ତାଙ୍କର ଘୋଡ଼େଇ ହେବା ରେଜେଇ, କମଳ ପିଲାମାନେ ବ୍ୟବହାର କରନ୍ତି। ବାସୁ ବାବୁ ଛଣ ପାଳ ପକାଇ ଶୁଅନ୍ତି। ପିନ୍ଧିଥିବା ଲୁଗା କାନିଟି ଦେହରେ ପକାଇ ଶୋଇ ପଡ଼ନ୍ତି। ପିଲାଙ୍କୁ କାହାକୁ କିଛି କହନ୍ତି ନାହିଁ। ତାହାଙ୍କର ଏହିପରି ବ୍ୟବହାର ହେତୁରୁ ଗଡ଼ର ଅନେକ ପିଲା ସ୍କୁଲ ଛାଡ଼ିଯା'ନ୍ତି ନାହିଁ। କିନ୍ତୁ ପ୍ରତ୍ୟେକ ପୁଣ୍ୟ ପର୍ବରେ ଥିଲା ଘରର ପିଲାମାନେ ବାସୁ ବାବୁଙ୍କୁ ଓ ତାଙ୍କର ପିଲାମାନଙ୍କ ପାଇଁ ଭୋଜ୍ୟ ସାମଗ୍ରୀ ପଠାନ୍ତି। ଭଲ ଭଲ ଜିନିଷ ତିଆରି କରି ହେଡ୍ ମାଷ୍ଟରଙ୍କୁ ଖୁଆଇବାରେ ଗଡ଼ର ପିଲାମାନେ ଆନନ୍ଦ ଅନୁଭବ କରନ୍ତି। ଏପରି କି କାହାର କୌଣସି ଭଲ ତରକାରୀ ହୋଇଥିଲେ, ହେଡ଼ ମାଷ୍ଟରଙ୍କୁ ନ ଖୁଆଇଲେ ସେଦିନ ସେ ଆନନ୍ଦ ପାଏ ନାହିଁ। ସେତେବେଳେ ଦଶପଲ୍ଲା ଗଡ଼ ଓ ସ୍କୁଲ ଆମର ସାରା ଦୁନିଆ। ଏହାଛଡ଼ା ଆଉ ଦୁନିଆରେ କ'ଣ ଅଛି, ଆମ୍ଭେମାନେ ଜାଣି ନ ଥାଉ। ପିଲାମାନେ ରାତିରେ ମାଛ ଧରନ୍ତି। ବଗିଚାରେ ମାଟି ହାଣନ୍ତି। ବର୍ଷା ଦିନେ ଜଙ୍ଗଲକୁ ଛତୁ ଖୋଜିଯାନ୍ତି। ସବୁଠାରେ ହେଡ୍‌ମାଷ୍ଟର ବାସୁବାବୁ ପିଲାଙ୍କର ସାଥି। ସଂଧ୍ୟାରେ ଡୁ ଡୁ ଖେଳ ହୁଏ। ହେଡ୍ ମାଷ୍ଟର ବାସୁ ବାବୁ ମଧ୍ୟ ପିଲାଙ୍କ ସଂଗରେ ଖେଳନ୍ତି। ଏହି ସମୟର କଥା ମନେ ପଡ଼ିଲାବେଳେ ମନରେ ଯେଉଁ ଭାବ ଆସେ ତାହା ପ୍ରକାଶ କରିବା କଠିନ। ସ୍କୁଲରେ ସେହି ଭାବ ଆଉ ନାହିଁ କିମ୍ବା ଦଶପଲ୍ଲା ଆଉ ସେହିପରି ନାହିଁ। ଦଶପଲ୍ଲାବାସିନ୍ଦା ଓ ଷ୍ଟେଟ କର୍ମଚାରୀ ମଧ୍ୟରେ ପୂର୍ବ ସମ୍ପର୍କ ଆଉ ନାହିଁ। ଗଡ଼ଜାତ ଭିତରେ ଗଡ଼ଜାତିଆ ଓ ମୋଗଲବନ୍ଦିଆ ଭାବ ବର୍ତ୍ତମାନ ଉତ୍କଟ ଆକାର ଧାରଣ କରିଛି। ଏଆଡ଼ର ଯେଉଁମାନେ ଗଡ଼ଜାତମାନଙ୍କରେ ଚାକିରି କରିଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ଗଡ଼ଜାତର ଲୋକମାନଙ୍କୁ ଗଡ଼ଜାତିଆ ଜଂଗଲୀ ବୋଲି ଘୃଣା କରନ୍ତି। ଗଡ଼ଜାତର ଲୋକେ ମଧ୍ୟ ଏମାନଙ୍କୁ ମୋଗଲବନ୍ଦିଆ ଠକ ବୋଲି ଘୃଣା କରନ୍ତି। ଗଡ଼ଜାତିଆ ଓ ମୋଗଲବନ୍ଦିଆ ଯେ ଏକ ଜାତିର ଲୋକ ଏବଂ ଉଭୟେ ଏକ ମାତାର ସନ୍ତାନ ଓ ଉଭୟେ ଭାଇ ଏ କଥା କେହି ହେଲେ ଆଜି ସ୍ୱପ୍ନରେ କଳ୍ପନା କରିପାରୁ ନାହିଁ। ନିଜ ନିଜ ଭିତରେ ଭେଦ ସୃଷ୍ଟି କରି ଛିନ୍ନ ବିଚ୍ଛିନ୍ନ ହେଲେ, ଜାତିର କେବେ ହେଲେ ସମୃଦ୍ଧ ଉନ୍ନତି ସାଧିତ ହୋଇ ପାରିବ ନାହିଁ। ବରଂ ତାହା ଦିନକୁ ଦିନ ହ୍ରାସ ଲଭିପାରେ।

# ଦ୍ୱିତୀୟ ପରିଚ୍ଛେଦ

ପୂର୍ବ ବର୍ଣ୍ଣିତ ସୁଖମୟ ଜୀବନ ମୋତେ ବେଶିଦିନ ଭୋଗ କରିବାକୁ ହୋଇ ନଥିଲା। ସ୍କୁଲରେ ଆମ୍ଭମାନଙ୍କ ସଂଗରେ ସାଧୁ ନାମରେ ଗୋଟିଏ ଛାତ୍ର ଥାଏ। ସାଧୁ ଗ୍ରାମରୁ ଭଲ ଭଲ ଆଚାର ଆଣେ। ସେ ନଥିବା ସମୟରେ ଆମେ ପିଲାମାନେ ତାହାର ଆଚାର ବାହାର କରି ଖାଇ ଯାଉଁ। ଦିନେ ମୁଁ ଓ ଆଉ ଗୋଟିଏ ଛାତ୍ର ଏହି ସାଧୁର ବେତ ପେଟରାରୁ ହାତ ଗଳେଇ ଆଚାର ବାହାର କଲା ବେଳକୁ, ଗୋଟିଏ କନାରେ କେତୋଟି ଟଙ୍କା ବନ୍ଧା ହୋଇ ଥିବାର ହାତରେ ପଡ଼ିଲା। ସେ ଟଙ୍କା ପୁଡ଼ିଆଟି ପାଇ ସେଥିରୁ ଦୁହେଁଯାକ ଦୁଇଟି ଟଙ୍କା ଆଣି ବାକି ଟଙ୍କାତକ ରଖିଦେଲୁ। ସାଧୁ ଫେରି ଆସି ତାର ପେଟରା ଫିଟାଇ ଦେଖିଲା ବେଳକୁ ଟଙ୍କା ଦୁଇଟି ନ ଥିବାର ଜାଣିଲା। ବାସୁ ବାବୁଙ୍କୁ ଯାଇ ଏ କଥା କହିଲା। ସେତବେଳକୁ ସ୍କୁଲର ପିଲାମାନେ ଖାଇବାକୁ ଯାଇଥାନ୍ତି। ବାସୁବାବୁ ମୋତେ ଡାକି ଏ ଟଙ୍କା କଥା ପଚାରିଲେ। ମୁଁ ତାହାଙ୍କୁ ଉତ୍ତର ଆଉ ଦେଇ ପାରିଲି ନାହିଁ। ମୁଁ ନେଇଛି ବୋଲି କହିବାକୁ ମନ ହେଉଥାଏ, ମାତ୍ର ସାହସ ପାଉ ନଥାଏ। ମୋତେ ଏହିପରି ଅବସ୍ଥାରେ ଦେଖି ବାସୁ ବାବୁ ଗୋଟିଏ ବେତରେ ଦୁଇ ଚାରି ବେତ ପିଟିଦେଲେ। ମୁଁ ସବୁ କଥା କହିଦେଲି କିନ୍ତୁ ଆର ପିଲାଟି ମାନିଲା କି ନାହିଁ, ମୋର ମନେ ନାହିଁ। ଏହା ପରଦିନ ମୁଁ ସ୍କୁଲ ଛାଡ଼ି ଆସିଲି। ବାସୁ ବାବୁ ଯେତେ ଡକାଇଲେ ଆଉ ଗଲି ନାହିଁ। ମୁଁ ରାଗିକରି ଆଉ ବାସୁବାବୁଙ୍କ ନିକଟକୁ ଗଲି ନାହିଁ। ଆମ ପିଲାଙ୍କ ମଧ୍ୟରେ କୌତୁକରେ ଆମେ ଏହା କରିଥିଲୁ। କିନ୍ତୁ ବାସୁ ବାବୁ କିଛି ନ ବୁଝି ମୋତେ କାହିଁକି ଆଗ ମାଇଲେ, ଏହାହିଁ ମୋର ରାଗର କାରଣ। ବାସୁ ବାବୁ ଡକାଇବାରେ ନ ଯିବା ଅର୍ଥ ମୋର ପଢ଼ା ବନ୍ଦ। ସେ ଯାହାହେଉ ମୁଁ କିଛିଦିନ କକେଇଙ୍କ ଘରେ ରହିଲି। ଏହାପରେ ଗଡ଼ ନିକଟ ନାହାକପଡ଼ା ନାମରେ ଗୋଟିଏ ଗୌଡ଼ ଗ୍ରାମରେ ଗୋଟିଏ ପାଠଶାଳା ସ୍ଥାପନ କରି କେତେଗୁଡ଼ିଏ ପିଲାଙ୍କୁ ପାଠ ପଢ଼ାଇଲି।

ପାଠଶାଳାଟି ଦଶହରା ଦିନ ସ୍ଥାପନ କଲି। ସେଥିରେ ବାରଟି ପିଲା ପାଠ ପଢୁଥାଆନ୍ତି। ପ୍ରତ୍ୟେକ ପିଲା ମାସରେ ଦୁଇଅଣା କରି ଦରମା ଦିଅନ୍ତି। ସୁତରାଂ ମାସରେ ଦେଢ଼ଟଙ୍କା ଦରମା ହେଲା। ଖର୍ଚ୍ଚୁରା କିଛି ନାହିଁ। ଦୁଇବେଳା ପାଠଶାଳାକୁ ପଢ଼ାଇବାକୁ ଯାଏ। ରାତିରେ, ଗଡ଼ର କେତୋଟି ପଢୁଥିବା ସାଙ୍ଗ ପିଲାମାନଙ୍କ ସହିତ ଏକାଠି ପାଠ ପଢ଼େ। କାରଣ, ମୋ ସାଙ୍ଗରେ ପଢୁଥିବା ପିଲାମାନେ

ମୋଠାରୁ ବେଶି ପାଠ ପଢ଼ିଯିବେ ଏହି ଭାବନାଟି ମୋତେ ସେମାନଙ୍କ ନିକଟକୁ ନେଉଥାଏ। କିନ୍ତୁ ବାସୁ ବାବୁଙ୍କ ନିକଟରେ ରହି ସ୍କୁଲରେ ପଢ଼ିବାକୁ ଇଚ୍ଛା ହେଉ ନଥାଏ।

ଇତି ମଧ୍ୟରେ ବାସୁବାବୁ ଦଶପଲ୍ଲା ଛାଡ଼ିଲେ। ସେ ସ୍କୁଲ୍ ସବ୍‌ଇନିସ୍‌ପେକ୍ଟର ଚାକିରି ପାଇବାରୁ ଦଶପଲ୍ଲା ଛାଡ଼ି ଚାଲି ଯାଉଛନ୍ତି। ସେଥିପାଇଁ ସମସ୍ତେ ଦୁଃଖିତ। ଗଲାବେଳକୁ ବାସୁବାବୁ ମୋତେ ଡକାଇ କୌଣସି ସ୍କୁଲରେ ପଢ଼ିବାକୁ ବୁଝାଇଥିଲେ। ସେ ଗଲାଦିନ ଛାତ୍ର, ଶିକ୍ଷକ ଓ ଗଡ଼ର ଅନେକ ଭଦ୍ରଲୋକ ତାଙ୍କୁ ବାଟେଇ ଦେବାକୁ ଆସିଥିଲେ। ତାଙ୍କର ଉନ୍ନତିରେ ସମସ୍ତେ ଖୁସି ହେବାର କଥା, ମାତ୍ର ସେ ଚିରଦିନ ପାଇଁ ଦଶପଲ୍ଲା ଛାଡ଼ି ଚାଲି ଯାଉଥିବାରୁ ସେ ଆନନ୍ଦରେ କାହାରି ଆନନ୍ଦ ନ ଥାଏ। ବାସୁବାବୁ ସେ ଦିନ ନିଜେ କାନ୍ଦିଛନ୍ତି, ଆମ୍ଭେମାନେ ମଧ୍ୟ କାନ୍ଦିଅଛୁ। ସେ ଯାହାହେଉ, ବାସୁବାବୁ ଦଶପଲ୍ଲା ଛାଡ଼ି ଚାଲିଗଲେ। ମୋର ପଢ଼ିବାକୁ ମନ ବଡ଼ ବ୍ୟାକୁଳ ହୋଇ ପଡ଼ିଲା। କିନ୍ତୁ ପଢ଼ିବି କିପରି ? ପଢ଼ିବାକୁ କୌଣସି ସମ୍ବଳ ନଥାଏ। ବାଧ୍ୟ ହୋଇ ପାଠଶାଳାଟି ଚଳାଉଥାଏ। କିନ୍ତୁ ପାଠଶାଳାରେ କିମ୍ବା ପାଠ ପଢ଼ାଇବାରେ ମୋର ମନ ନଥାଏ। ପାଠଶାଳାଟି ଆରମ୍ଭ କରିଛି, ଛାଡ଼ି ଦେଉଛି ବା କିପରି ? ଛାଡ଼ି ଦେଇ କଅଣ ବା କରିବି। କିଛି ବାଟ ଦେଖାଗଲା ନାହିଁ। ପାଠ ପଢ଼ିବା ବାଧ୍ୟ ହୋଇ ଭୁଲିଗଲି। ପାଠ ପଢ଼ାଇବାରେ ମନକୁ ଭୁଲାଇ ଦିଏ।

ଏହିପରି ଭାବରେ ତିନି ଚାରିମାସ ବିତିଗଲା। ଶ୍ରୀପଞ୍ଚମୀ ଆସି ଉପସ୍ଥିତ ହେଲା। ଗଡ଼ଜାତମାନଙ୍କରେ ଶ୍ରୀପଞ୍ଚମୀ ଗୋଟିଏ ଚାଟପିଲାମାନଙ୍କର ବଡ଼ ଉତ୍ସବ। ପାଠଶାଳା ଅର୍ଥାତ୍ ଚାଟଶାଳୀର ପିଲାମାନେ ଶ୍ରୀପଞ୍ଚମୀର ଦଶ ବାରଦିନ ପୂର୍ବରୁ ନାନାପ୍ରକାର ଗୀତ, ଛାନ୍ଦ ଶିକ୍ଷା କରନ୍ତି। ପରେ ପ୍ରାୟ ୧୫ ଦିନ ପର୍ଯ୍ୟନ୍ତ ଏହି ଚାଟପିଲାମାନେ 'ଚାଟଭିକ୍ଷା' କରି ବୁଲନ୍ତି। ଏହି ଭିକ୍ଷାରୁ ଯେଉଁ ପଇସା ମିଳେ ସେ ସବୁ ଶିକ୍ଷକ ନିଅନ୍ତି। ଶ୍ରୀପଞ୍ଚମୀ ଦିନ ଶିକ୍ଷକଙ୍କୁ ନୂଆ ଲୁଗା ଯୋଡ଼ ମିଳେ। ଏହିପରି ମୋତେ ଯୋଡ଼ିଏ ନୂଆ ଲୁଗା ଓ ଏକକାଳୀନ ଆଠଟି ଟଙ୍କା ମିଳିଲା। ମୁଁ ସେତକ ପାଇଲା ପରେ ପାଠଶାଳା ଛାଡ଼ି ଆସି ପୁଣି ମାଇନର ସ୍କୁଲରେ ନାମ ଲେଖାଇଲି। ଏହି ଟଙ୍କା କେତୋଟିରେ ତିନି ଚାରିମାସ ଚଳିଲି। ତାପରେ କିପରି ପଢ଼ିବି ଏହି ପ୍ରଶ୍ନ ମନରେ ଆସିଲା। କିଛି ଉପାୟ ନ ଦେଖି ପୁଣି ସ୍କୁଲ ଛାଡ଼ି ଇଆଡ଼େ ସିଆଡ଼େ କେତେକ ମାସ ବୁଲିଲି।

ବାସୁ ବାବୁଙ୍କ ପରେ ବାବୁ ଦୀନବନ୍ଧୁ ପଟ୍ଟନାୟକ ମାଇନର ସ୍କୁଲର ହେଡ଼ମାଷ୍ଟର ହେଲେ। ସେ ସ୍କୁଲରେ ବସା କରି ରହିଥାନ୍ତି। ସେ ମୋ ସମ୍ବାଦ ପାଇ ମୋତେ ଡକାଇ ପାଖରେ ରଖିଲେ। ମୋତେ ରୋଷେଇ କରିବାକୁ ପଡ଼େ। ଏଣେ ସ୍କୁଲରେ

ପାଠ ପଢ଼େ। ଏହିପରି ଭାବରେ ମୋର ଗୋଟିଏ ବର୍ଷ ବିତିଗଲା। ଏ ବର୍ଷ ଆଉ ମୁଁ କ୍ଲାସ୍ ପ୍ରମୋସନ ପାଇଲି ନାହିଁ। ଏହିବର୍ଷ ୧୯୦୫ ମସିହା। ସୁତରାଂ ୧୯୦୬ରେ ମୁଁ ପୁଣି ସେହି କ୍ଲାସ୍‌ରେ ପଢ଼ିଲି। ମାଇନର ୪ର୍ଥ କ୍ଲାସ୍।

ଗ୍ରୀଷ୍ମ ଛୁଟି ହେଲା। ହେଡ୍‌ମାଷ୍ଟର ଘରକୁ ଗଲେ। କିନ୍ତୁ ଛୁଟିରେ ଚଳିବା ପାଇଁ ମୋତେ କିଛି ଖର୍ଚ୍ଚ ଦେଇ ଯାଇ ନାହାନ୍ତି। ଘରେ କକେଇଙ୍କର ଅବସ୍ଥା ତଦ୍ରୂପ। ଦଶପଲ୍ଲାରେ ରହି ଏପରି ଭାବରେ ପାଠ ପଢ଼ିବା ମୋତେ ଅସମ୍ଭବ ଜଣା ପଡ଼ିଲା। ଦଶପଲ୍ଲା ଛାଡ଼ି କୁଆଡ଼େ ଚାଲି ଗଲେ ଭଲ ହେବ ଏହା ମନେ ମନେ ସ୍ଥିର କଲି। ପୁରୀ ଯିବି ବୋଲି ଭାବି ଦିନେ ଉପରବେଳା କାହାକୁ କିଛି ନ କହି ଦଶପଲ୍ଲା ଛାଡ଼ିଲି। ଭାଗ୍ୟ ଯେଉଁଆଡ଼େ ଟାଣି ନେବାର ଥିବ ସେଇଆଡ଼େ ନେଇଯିବ ଭାବି ଦଶପଲ୍ଲା ଛାଡ଼ିଲି। ଫେରିବା ଆଶା ସେଦିନ ଆଉ ମୋ ମନରେ ନ ଥିଲା।

ଦଶପଲ୍ଲା ଛାଡ଼ି ତହିଁଆରଦିନ ନୟାଗଡ଼ରେ ଆସି ଉପସ୍ଥିତ ହେଲି। ଏଠାରେ ଶ୍ରୀଯୁକ୍ତ ଲିଙ୍ଗରାଜ ଦାସ ମୁକ୍ତିଆରି କରୁଥାଆନ୍ତି। ଏହାଙ୍କ ଘର ଦଶପଲ୍ଲା ଗଡ଼ରେ। ଦଶପଲ୍ଲାରୁ ଏ ମହାଶୟ ସର୍ବ ପ୍ରଥମେ କଟକ ପାଠ ପଢ଼ିବାକୁ ଆସିଥିଲେ। ସେ ପ୍ରଥମେ ଏଣ୍ଟ୍ରାନ୍ସ ପାଶ୍ କରି ଦଶପଲ୍ଲା ଷ୍ଟେଟରେ ଚାକିରି କରିଥିଲେ। ରାଜା ଶ୍ରୀ ନାରାୟଣଚନ୍ଦ୍ର ଭଞ୍ଜଦେଓଙ୍କର ସେ ଅତିଶୟ ବିଶ୍ୱାସର ପାତ୍ର ଥିଲେ। କେତେକ ବର୍ଷ ପର୍ଯ୍ୟନ୍ତ ଏହି ଲିଙ୍ଗରାଜ ଦାସ ଦଶପଲ୍ଲା ଷ୍ଟେଟ୍‌କୁ ଶାସନ କରୁଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ଦଶପଲ୍ଲାର ଲୋକେ କିପରି ପାଠ ପଢ଼ିବେ ଏବଂ ଷ୍ଟେଟରେ ଚାକିରି ପାଇବେ, ଏହାଙ୍କର ପ୍ରଥମ ଚେଷ୍ଟା।

ଦଶପଲ୍ଲାକୁ ଜଗଦାନନ୍ଦ ଦାସ ନାମରେ ଜଣେ ଦେୱାନ ଆସିଲେ। କୌଣସି କାରଣରୁ ସୁଦାମ ବାବୁ ରାଜାଙ୍କୁ ପରାମର୍ଶ ଦେଲେ ଯେ ଜଗଦାନନ୍ଦ ଦାସଙ୍କୁ ଦେୱାନ କାର୍ଯ୍ୟରୁ ଅନ୍ତର କରି ଆଉ ଜଣେ ତାଙ୍କର ମନୋନୀତ ଲୋକ ମଧ୍ୟରୁ ବାଛିବାକୁ। ଜଗଦାନନ୍ଦ ବାବୁ ଷ୍ଟେଟ ଚଳାଇବାକୁ ପ୍ରକୃତ ଅସମର୍ଥ। କିନ୍ତୁ ଦେୱାନ ମନୋନୀତ କରିବାରେ ରାଜାଙ୍କର ପୂର୍ଣ୍ଣ ସ୍ୱାଧୀନତା ରହିବା ଦରକାର। ନିଜ ଷ୍ଟେଟ୍ କିପରି ଚଳିବ, କାହାକୁ ଦେୱାନ ରଖିବାକୁ ହେବ ଇତ୍ୟାଦି ବିଷୟରେ ରାଜାଙ୍କର ବିଚାର ଉପରେ ସଂପୂର୍ଣ୍ଣ ନିର୍ଭର କରେ। ସେହି ବିଚାର-ସ୍ୱାଧୀନତାରେ ହସ୍ତକ୍ଷେପ କରିବା ଲିଙ୍ଗରାଜ ଦାସଙ୍କୁ ଭଲ ଲାଗିଲା ନାହିଁ। ତାହାଙ୍କର ପରାମର୍ଶରେ ରାଜା ଶ୍ରୀ ନାରାୟଣଚନ୍ଦ୍ର ଭଞ୍ଜଦେଓ କମିଶନ ସାହେବଙ୍କ ଅଫିସରୁ ପାଇଥିବା ପରାମର୍ଶ ଅନୁସାରେ କାମ ନ କରିବାରୁ ଲିଙ୍ଗରାଜ ଦାସଙ୍କୁ ରାଜନୈତିକ କାରଣରୁ ରାଜ୍ୟରୁ ଅନ୍ତର କରି ଦିଆଗଲା। ଏହିପରି ଲିଙ୍ଗରାଜ ଦାସେ ଦଶପଲ୍ଲାରୁ ନିର୍ବାସିତ ହେଲେ। ଅନେକ ଦିନ ପର୍ଯ୍ୟନ୍ତ ଇତସ୍ତତଃ ବୁଲି ପଲିଟିକେଲ୍ ଏଜେଣ୍ଟଙ୍କ ଅନୁମତି ପାଇ

ପରେ ନୟାଗଡ଼ ଷ୍ଟେଟରେ ଘର କରି ରହିଥାଆନ୍ତି ଏବଂ ଷ୍ଟେଟ୍ କଚେରୀରେ ମୁକ୍ତିଆରି କରୁ ଥାଆନ୍ତି।

ପିଲାଦିନୁ ସେ ମୋତେ ଜାଣନ୍ତି। ତାଙ୍କର ପୁତ୍ର ଶ୍ରୀମାନ୍ କୃଷ୍ଣଚନ୍ଦ୍ର ମୋର ଆବାଲ୍ୟ ସଖା। ଲିଙ୍ଗରାଜ ଦାସଙ୍କୁ ମୁଁ ମାମୁଁ ବୋଲି ଡାକେ। ସୁତରାଂ ମୁଁ ଯାଇ ଏହାଙ୍କ ନିକଟରେ ଉପସ୍ଥିତ ହେଲି। କିଛି ସୁବିଧା ପାଇଲେ ନୟାଗଡ଼ରେ ମୁଁ ପଢ଼ନ୍ତି ଏହି କଥା ତାହାଙ୍କୁ ଜଣାଇଲି। ନୟାଗଡ଼ ମାଇନର ସ୍କୁଲର ହେଡ଼ମାଷ୍ଟର ବାବୁ ବାଳକୃଷ୍ଣ ପଟ୍ଟନାୟକ। ଏହାଙ୍କ ଘର ଖଣ୍ଡପଡ଼ା ଗଡ଼ରେ। ମୋର ଭଉଣୀ ସେହି ଖଣ୍ଡପଡ଼ା ଗଡ଼ରେ ତାଙ୍କ ପଡ଼ିଶା ଘରେ ବିବାହ କରିଥାନ୍ତି। ତେଣୁ ମୋର ଭିଣୋଇଙ୍କର ସେ ଜଣେ ପଡ଼ୋଶୀ ଏବଂ ବଂଧୁ। ମୋର ଭଉଣୀର ବିଭାଘର ପରେ ମୁଁ ଥରେ ଖଣ୍ଡପଡ଼ା ଯାଇଥିଲି। ସେଠାରେ ବାଳକୃଷ୍ଣ ବାବୁଙ୍କୁ ଦେଖିଥିଲି ଏବଂ ଭଲ କରି ପରିଚୟ ମଧ୍ୟ ହୋଇଥିଲା।

ମୁଁ ପାଠ ପଢ଼ିବାକୁ ଦଶପଲ୍ଲାରୁ ପଳାଇ ଆସିଛି, ଏହା ଜାଣି ଲିଙ୍ଗରାଜ ଦାସେ ଏହି ବାଳକୃଷ୍ଣ ବାବୁଙ୍କୁ ଡକାଇ ମୋର ପଢ଼ିବାପାଇଁ କଣ ସୁବିଧା କରାଯାଇ ପାରେ ଏଥିପାଇଁ ପରାମର୍ଶ ମାଗିଲେ। ହେଡ଼ମାଷ୍ଟର ବାଳକୃଷ୍ଣ ବାବୁ ମୋତେ ଚିହ୍ନନ୍ତି ଏହା ତାହାଙ୍କୁ ଜଣା ନାହିଁ। ବାଳକୃଷ୍ଣ ବାବୁ ମୋତେ ହଠାତ୍ ସେଠାରେ ଦେଖି ଟିକିଏ ଅବାକ୍ ହୋଇଗଲେ। ମତେ ଭଲ କରି ଜାଣନ୍ତି ବୋଲି ସେ ଲିଙ୍ଗରାଜ ଦାସଙ୍କୁ କହିଲେ। ମୁଁ ଯଦି ସ୍କୁଲରେ ନାମ ଲେଖାଏଁ ତେବେ ଷ୍ଟେଟ୍‌ରୁ କିଛି ସାହାଯ୍ୟ ମିଳିବାର ସମ୍ଭାବନା ଅଛି ବୋଲି ବାଳକୃଷ୍ଣ ବାବୁ କହିଲେ। ଉଭୟଙ୍କ ବିଚାରରେ ସ୍ଥିର ହେଲା ଯେ ମୁଁ ନୟାଗଡ଼ ସ୍କୁଲରେ ନାମ ଲେଖାଇବା ଦରକାର। ସୁତରାଂ ମୁଁ ନୟାଗଡ଼ରେ ରହିଲି ଏବଂ ସ୍କୁଲରେ ମଧ୍ୟ ନାମ ଲେଖାଇଲି। ଷ୍ଟେଟରୁ କିଛି ସାହାଯ୍ୟ ପାଇବା ଆଶାରେ ଖଣ୍ଡିଏ ଦରଖାସ୍ତ ଦେଲି। ଏହିପରି ଭାବରେ ମୁଁ ନୟାଗଡ଼ରେ ରହି ସ୍କୁଲରେ ନାମ ଲେଖାଇଲି। ସ୍କୁଲ ଦରମା ଛାଡ଼ ହୋଇଗଲା। ହାତରେ ରାନ୍ଧି ଖାଇବାକୁ ହୁଏ। ଏପର୍ଯ୍ୟନ୍ତ ମୁକ୍ତିଆର ବାବୁ ଲିଙ୍ଗରାଜ ଦାସ ଗଡ଼ର ଜଣେ ଭଦ୍ରବ୍ୟକ୍ତିଙ୍କ ଘରେ ଖିଆପିଆ କରୁଥିଲେ। ଦଶପଲ୍ଲାରୁ ତାଙ୍କର ସମସ୍ତ ପରିବାର ନୟାଗଡ଼ ଆସି ନ ଥାନ୍ତି। ମୁଁ ତାଙ୍କ ବସାରେ ରୋଷେଇ କରିବାରୁ ଏଣିକି ମୋ ରୋଷେଇରେ ଖାଇଲେ। ଏହାଙ୍କ ବସାରେ ପ୍ରାୟ ଦୁଇମାସ ପର୍ଯ୍ୟନ୍ତ ମୁଁ ରହିଲି। ସେଠାରେ ପଢ଼ାପଢ଼ି କରିବାକୁ ମତେ ସୁବିଧା ହେଲା ନାହିଁ। ଏହିପରି କେତେକ କାରଣରୁ ମୁଁ ତାଙ୍କ ବସା ଛାଡ଼ି ଆସି ମାସରେ ଦୁଇଟି ଟଙ୍କାକୁ ଗୋଟିଏ ଟିଉସନ୍ କଲି। ଗଡ଼ରେ ବାଇଧର ପଟ୍ଟନାୟକ ନାମରେ ଜଣୈକ ଭଦ୍ରବ୍ୟକ୍ତିଙ୍କ ଘରେ ଯାଇ ବସା କରି ରହିଲି। ଏହି ବାଇଧର ବାବୁଙ୍କର ପିତା ମାତା ଥା'ନ୍ତି। ତାଙ୍କର ଗୋଟିଏ ଭାଇ ମୁକ୍ତିଆର। ଅନେକ ଦିନ ପର୍ଯ୍ୟନ୍ତ ମୁଁ ଏହାଙ୍କ ଘରେ ରହିଲି। ବାଇଧର ବାବୁଙ୍କ

ବାଇଧର ବାବୁଙ୍କ ବୃଦ୍ଧ ପିତା ମାତା ମୋତେ ବଡ଼ ସ୍ନେହ କରୁଥାନ୍ତି। ଏହି ସମୟରେ ମୋତେ ଭାରୀ ଜ୍ୱର ହେଲା। ଏମାନେ ମୋର ବହୁତ ସେବା କରିଛନ୍ତି। ପିଲାଦିନୁ ପିତାମାତାଙ୍କୁ ହରାଇ ପିତାମାତାଙ୍କ ସ୍ନେହ କଣ ମୁଁ କିଛି ଜାଣେ ନାହିଁ। ବାଇଧର ବାବୁଙ୍କର ପିତାମାତାଙ୍କ ଠାରୁ ସେହି ସ୍ନେହ କଣ, ତାହାର କିଛିଏ ଆଭାଷ ପାଇ ପାରିଥିଲି।

ସେ ଯାହାହେଉ ମୋତେ ଜ୍ୱର ହେବାରୁ ମୋର ସେହି ଟିଉସନ୍‌ଟି ଚାଲିଗଲା। ମୁଁ ପୁଣି ନିରୂପାୟ ହୋଇ ପଡ଼ିଲି। ଏପର୍ଯ୍ୟନ୍ତ ଷ୍ଟେଟରୁ କିଛି ସାହାଯ୍ୟ ପାଇ ନ ଥାଏ। ଦୁଇ ଚାରି ମାସ ଏହି ବାଇଧର ବାବୁଙ୍କ ଘରେ ରହିଲି। ସେ ମୋତେ ସବୁ ସାହାଯ୍ୟ କରୁଥାନ୍ତି। ଇତି ମଧ୍ୟରେ ବର୍ଷ ଶେଷ ହେଲା। ମୁଁ ୧୯୦୮ରେ ମାଇନର ୫ମ ଶ୍ରେଣୀକୁ ପ୍ରମୋଶନ ପାଇଲି। ବାଇଧର ବାବୁଙ୍କର ଗୋଟିଏ ବଡ଼ ପରିବାର। ତାଙ୍କର ଅବସ୍ଥା ସେତେ ସ୍ୱଚ୍ଛଳ ନୁହେଁ। ଏପରି ଅବସ୍ଥାରେ ତାଙ୍କ ଘରେ ରହି ତାଙ୍କ ଉପରେ ଗୋଟିଏ ଭାର ଦେବା ମୋତେ ଭଲ ଲାଗିଲା ନାହିଁ। କିନ୍ତୁ ବାଇଧର ବାବୁ କିମ୍ବା ତାଙ୍କର ବୃଦ୍ଧ ପିତାମାତା ମୋତେ ତାଙ୍କ ଘରୁ ଛାଡ଼ିବାକୁ ଅନିଚ୍ଛୁକ। ସେ ଯେପରି ସୁଖ ଦୁଃଖରେ ଚଳୁଛନ୍ତି ସେହିପରି ମୁଁ ତାଙ୍କ ଘରେ ଚଳିବାକୁ ବାଇଧର ବାବୁଙ୍କର ଇଚ୍ଛା। କିନ୍ତୁ ତାଙ୍କର ଅଭାବ ଅସୁବିଧା ଦେଖି ମୁଁ ତାଙ୍କ ଘର ଛାଡ଼ି ଆଇଲି। ଏଥିପାଇଁ ବାଇଧର ବାବୁ ଓ ତାଙ୍କର ପିତା ମାତା ଭାରୀ ଦୁଃଖ କରିଛନ୍ତି। ମୁଁ ତାଙ୍କ ଘର ଛାଡ଼ିଲେ ମଧ୍ୟ ସେ ବେଳେ ବେଳେ ମତେ ଘରକୁ ଡକାଇ ନିଅନ୍ତି। ଭଲ ମନ୍ଦ ପଚାରି ସାମୟିକ କିଛି କିଛି ସାହାଯ୍ୟ କରନ୍ତି। ସେ ଯାହା ହେଉ ମୁଁ ତାଙ୍କ ଘର ଛାଡ଼ି ଆସି ସ୍କୁଲରେ ରହିଲି। ପୁନର୍ବାର ମୋତେ ଜୀବିକା ନିର୍ବାହ କରି ପାଠ ପଢ଼ିବା ପାଇଁ ଘୋର ସଂଗ୍ରାମ କରିବାକୁ ପଡ଼ିଲା।

ସ୍କୁଲରେ ୪/୫ଟି ଛାତ୍ର ରହିଥାନ୍ତି। ସେମାନେ ସମସ୍ତେ ହାତରେ ରାନ୍ଧି ଖାଉଥାନ୍ତି। ମୁଁ ଆସି ସ୍କୁଲରେ ଏମାନଙ୍କ ସହିତ ରହିଲି। ମାତ୍ର କିଛି ଦିନ ଏକା ଏକା ରୋଷେଇ କରିବାକୁ ପଡ଼ିଲା। ସେତେବେଳେ ମୋର ପଇସା ପତ୍ର କିଛି ନଥାଏ। ମୁଁ ଅତି କଷ୍ଟରେ ଚଳୁଥାଏ। ଅନ୍ୟାନ୍ୟ ଛାତ୍ରମାନଙ୍କ ସହିତ ମିଳି ମିଶି ରହିବି କିପରି ? ସେ ଯାହା ହେଉ ଇତି ମଧ୍ୟରେ ନୟାଗଡ଼ ଷ୍ଟେଟରେ ଇଟାମାଟି ନାମରେ ଗୋଟିଏ ବଡ଼ ଗ୍ରାମ ଅଛି। ବାଣିଜ୍ୟ ବ୍ୟବସାୟ ଆଦି ସବୁ ବିଷୟରେ ଏହି ଇଟାମାଟି ନୟାଗଡ଼ ଗଡ଼ଠାରୁ ଉତ୍କୃଷ୍ଟ କହିଲେ ଚଳେ। ଏଠାରେ ଗୋଟିଏ ଗୁରୁଟ୍ରେନିଂ ସ୍କୁଲ ଥାଏ। ତହିଁର ହେଡ଼ ପଣ୍ଡିତ ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର। ଏହି ମହାଶୟଙ୍କ ଘର ଖଣ୍ଡପଡ଼ା ଗଡ଼ରେ। ଏ ଜଣେ ମୋର ଭିଣୋଇଙ୍କର ପରିଚିତ ବନ୍ଧୁ। ମୁଁ ଥରେ କିଛି ସାହାଯ୍ୟ ପାଇଁ ଏହାଙ୍କୁ ଅନୁରୋଧ କରିବାରୁ ସେ ମାସରେ ଗୋଟିଏ ଟଙ୍କା ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଲେ। ଷ୍ଟେଟରୁ ଗୋଟିଏ ଟଙ୍କା,

ପଣ୍ଡିତ ଚନ୍ଦ୍ରଶେଖର ମିଶ୍ରଙ୍କଠାରୁ ଗୋଟିଏ ଟଙ୍କା ଏହିପରି ବର୍ତ୍ତମାନ ମାସରେ ଦୁଇଟି ଟଙ୍କା ମୁଁ ପାଇଲି। ଦିନକୁ ଚାରୋଟି ପଇସା ଖର୍ଚ୍ଚ କରିବାକୁ ପଡ଼ିଲା। ସ୍କୁଲରେ ଯେଉଁ ପିଲାମାନେ ମେସ୍ କରି ରହିଥାନ୍ତି ସେମାନେ ଦିନକୁ ଦୁଇଟି ପଇସା, ଅଧସେର ଚାଉଳ ହିସାବରେ ଖର୍ଚ୍ଚ ଦିଅନ୍ତି। ସୁତରାଂ ମୁଁ ଏହି ମେସ୍‌ରେ ଏଣିକି ସକାଳ ବେଳାଟି ଯୋଗଦିଏ। ମୋର ଏହିପରି ତିନୋଟି ପଇସା ଖର୍ଚ୍ଚ ହୁଏ। ଉପର ବେଳାଟି ଅବଶିଷ୍ଟ ଗୋଟିଏ ପଇସାରେ ଜଳଖିଆ ଖାଇ ରହିଥାଏ। ଏଣିକି ମୋର ଟିକିଏ ସୁବିଧା ହେଲା କହିଲେ ଚଳେ। ଗୋଲକବିହାରୀ ପଟ୍ଟନାୟକ ନାମକ ଗୋଟିଏ ପିଲା ମୋ ସାଙ୍ଗରେ ପଢୁଥାଏ। ସେ ମଧ୍ୟ ମୋତେ କିଛି କିଛି ସାହାଯ୍ୟ କରେ। କୌଣସି କାରଣରୁ ସ୍କୁଲ ଛୁଟି ହେଲେ ନୟାଗଡ଼ ଷ୍ଟେଟରେ ଥିବା ବଂଧୁ ବାନ୍ଧବଙ୍କ ଘର ଆଡ଼େ ଯାଇ ବୁଲି ଆସେ। ତଦ୍ଵାରା ମଧ୍ୟ ମୋର ଖର୍ଚ୍ଚ କିଛି ବଞ୍ଚିଯାଏ। ବହିପତ୍ର ତ ମୋର କିଛି ନଥାଏ। ଯା ତାଠାରୁ ବହି ମାଗି ପଢ଼େ। ଏହିପରି ଭାବରେ ନୟାଗଡ଼ରେ ମୁଁ ପଢୁଥାଏ।

ଦଶପଲ୍ଲାରେ ଥିବା ବଜେଇ ମୁଁ ନୟାଗଡ଼ରେ ରହି ପାଠ ପଢୁଥିବାର ସଂବାଦ ପାଇ ପାରିଲେ। ମୋତେ ନ ପଚାରି କିମ୍ଵା ମୋର ମତାମତ କିଛି ନ ନେଇ ମୋର ବିବାହ ସମ୍ପନ୍ନ କରିବା ପାଇଁ ଆୟୋଜନ କରିବାରେ ଲାଗିଲେ। ନୟାଗଡ଼ ପଦ୍ମାଦେଈପୁର ଶାସନରେ ଆମ୍ଭର ଘର ଜମିବାଡ଼ି ପ୍ରଭୃତି ସବୁ ଅଛି। ଜମି ତ ବଂଧକ ଥାଏ। ମୋର ବିବାହ କାର୍ଯ୍ୟର ସମସ୍ତ ଆୟୋଜନ କରି ବଜେଇ ଘରର ସମସ୍ତଙ୍କୁ ନେଇ ଆସି ଏହି ପଦ୍ମାଦେଈ ପୁରରେ ଉପସ୍ଥିତ ହେଲେ। ବିବାହ ତିଥିର ୫/୭ ଦିନ ପୂର୍ବରୁ ମୁଁ ଏ ଖବର ପାଇ ପାରିଲି। ଏହି ସଂବାଦରେ ମୋ ମନରେ କୌଣସି ଭାବର ଉଦ୍ରେକ ହୋଇ ନ ଥିଲା। ବଜେଇ ମୋତେ ନ ପଚାରି ଏପରି ଗୋଟିଏ କାର୍ଯ୍ୟ କିପରି କରିବାକୁ ଯାଉଛନ୍ତି ଏ ଭାବ ମଧ୍ୟ ମୋର ମନରେ ଆସି ନ ଥିଲା। ସେତେବେଳକୁ ମୁଁ ଜୀବନର ମୂଲ୍ୟ ବୁଝି ପାରି ନଥିଲି। ପାଠ ପଢ଼ି କିପରି ଖଣ୍ଡିଏ ଚାକିରି କରିବି ଏହାହିଁ ମୋର ଏକମାତ୍ର ଲକ୍ଷ ଥିଲା। ଦଶ ଓ ଦେଶ ସେବା କଥା ମୁଁ ସ୍ଵପ୍ନରେ ମଧ୍ୟ ଭାବି ନଥିଲି। ବିବାହର ବୟସ ଓ ଅବସ୍ଥାର ବିଚାର ମଧ୍ୟ ମୋର ମନକୁ ସ୍ପର୍ଶ କରି ନଥିଲା। ବଜେଇ ସେ ସମୟ ପ୍ରଥାନୁଯାୟୀ ମୋତେ ପଚାରିବା ଆବଶ୍ୟକ ମନେ କରି ନଥିଲେ। ସେ ସମୟରେ ପୁତ୍ର କିମ୍ଵା କନ୍ୟାର ବିବାହ ବିଷୟରେ ମତାମତ ନେବା ସାମାଜିକ ଓ ଲୋକ ଦୃଷ୍ଟିରେ ଗୋଟିଏ ନିହାତି ହାସ୍ୟାସ୍ପଦ ଅଶୋଭନୀୟ କଥା ବୋଲି ବିବେଚିତ ହେଉଥିଲା। ପିତାମାତା ତଥା ଅଭିଭାବକମାନଙ୍କର ଏହା ଗୋଟିଏ କର୍ତ୍ତବ୍ୟ ରୂପେ ବିବେଚିତ ହେଉଥିଲା। ମୁଁ ବଜେଇଙ୍କୁ ଏ ବିଷୟରେ କହି ନାହିଁ ସତ୍ୟ ମାତ୍ର ମୋର ବିବାହ

ହେବାକୁ ଇଚ୍ଛା ହେଲା ନାହିଁ। ବିବାହ ତିଥି ଦୁଇ ଦିନ ଥାଏ, ମୁଁ ପଦ୍ମାଦେଈପୁର ଛାଡ଼ି ସ୍କୁଲକୁ ଚାଲି ଆସିଲି।

ମୋର ବୟସ ବର୍ତ୍ତମାନ ୧୭ କିମ୍ବା ୧୮ ହେବ। ବ୍ରାହ୍ମଣ ଜାତିରେ ବାଲ୍ୟ ବିବାହ ପ୍ରଥା ପ୍ରଚଳିତ ଥାଏ। ବରର ବୟସ ୧୪ କିମ୍ବା ୧୫ ହୋଇଗଲେ ବିବାହ ବୟସ ବଳିଗଲା ବୋଲି ଲୋକେ ମନେ କରୁଥିଲେ। ମୋର ବିବାହ କ୍ରିୟା ଏ ପର୍ଯ୍ୟନ୍ତ ସମ୍ପନ୍ନ ହୋଇ ନ ଥିବାରୁ ଜକେଇ ମଧ୍ୟ ସାମୟିକ ଲୋକ ମୁଖରୁ ନିନ୍ଦାବାଣୀ ନ ଶୁଣୁଥିଲେ ତାହା ନୁହେଁ। ମୋ ଭଉଣୀଟିର ବିବାହ କାର୍ଯ୍ୟ ଶେଷ କରିଛନ୍ତି, ମୋର ଏହି କାର୍ଯ୍ୟଟି କୌଣସି ପ୍ରକାରେ ସାରି ଦେଲେ ଲୋକନିନ୍ଦାରୁ ସେ ରକ୍ଷା ପାଇବେ, ଏଥିପାଇଁ କୌଣସି ଭଲ ମନ୍ଦ କିମ୍ବା ଭବିଷ୍ୟତର ବିଚାର ନ କରି ଯେତେ ଶୀଘ୍ର ସମ୍ଭବ ସେତେ ଶୀଘ୍ର ଏହି କାର୍ଯ୍ୟଟି ଶେଷ କରି ଦେବା ଇଚ୍ଛାରେ ସେ ସମସ୍ତ ଆୟୋଜନ କରି ସାରିଥାଆନ୍ତି। ଏପରି ଅବସ୍ଥାରେ ମୁଁ କିଛି ନ କହି ଘରୁ ବାହାରି ଆସିଛି। ଏଥିରେ ସେ ଯେ କିଛି ଭାବି ନ ଥିବେ ତହିଁରେ ସଂଦେହ କରିବାର କାରଣ ନାହିଁ। ସେ ଯାହା ହେଉ, ପଦ୍ମଦେଈପୁର ଶାସନରୁ ଆଉ କେତେ ଜଣଙ୍କୁ ସଙ୍ଗରେ ନେଇ ଜକେଇ ଆସି ଗଡ଼ରେ ମୋ ନିକଟରେ ପହଞ୍ଚିଲେ। ମୋତେ ନାନାପ୍ରକାରରେ ବୁଝାଇ ସେଠାକୁ ନେଇ ଯାଇ ମୋର ବିବାହ କ୍ରିୟା ଶେଷ କରିଦେଲେ। ମୋ ଇଚ୍ଛା ବିରୁଦ୍ଧରେ ଏପରି ଗୋଟିଏ ଦାୟିତ୍ୱ କାମ ଶେଷ ହୋଇଗଲା ଏଥିରେ ତିଳେମାତ୍ର କୌଣସି ସନ୍ଦେହ ନାହିଁ।

ବୈବାହିକ କ୍ରିୟା ମନୁଷ୍ୟ ଜୀବନରେ ଏକ ଅପୂର୍ବ ପରିବର୍ତ୍ତନ ଘଟାଇ ଦିଏ। ମନୁଷ୍ୟ ଜୀବନର ଘଟଣାବଳି ମଧ୍ୟରେ ଏହି ଘଟଣାଟି ମନୁଷ୍ୟର ଭାବ ଓ କର୍ମମୟ ଜୀବନକୁ ଯେପରି ପ୍ରଭାବିତ କରେ ଅନ୍ୟ ସେପରି କୌଣସି ଘଟଣା ଏତେ ପ୍ରଭାବିତ କରି ପାରେ ନାହିଁ। ବୈବାହିକ କ୍ରିୟା ଅନେକ କ୍ଷେତ୍ରରେ ମନୁଷ୍ୟର ଚିନ୍ତା ଓ ଆଦର୍ଶକୁ ସଂକୀର୍ଣ୍ଣ କରିଦିଏ। କୌଣସି ଉଚ୍ଚ ଆଦର୍ଶ ଉପଲବ୍ଧି କରିବାପାଇଁ ମନୁଷ୍ୟର ସାହସ କିମ୍ବା ବଳ ରହେ ନାହିଁ। ଉଚ୍ଚ ଆଦର୍ଶ ଉପଲବ୍ଧିର ସଂଗ୍ରାମ କ୍ଷେତ୍ରରେ କଠୋର ଅଗ୍ନି ପରୀକ୍ଷା ବେଳ ଉପସ୍ଥିତ ହେଲାବେଳେ ମନୁଷ୍ୟ ପଛକୁ ହଟିଯାଏ। ବୈବାହିକ ସମ୍ବନ୍ଧ ଏହିଠାରେ ତାହାକୁ ଦୁର୍ବଳ କରି ପକାଏ। ସୁତରାଂ ମନୁଷ୍ୟ ଜୀବନର ବିକାଶ ହେବା ପୂର୍ବରୁ ବାଳକକୁ ବିବାହିତ କରାଇ ତା ମନକୁ ସଂକୀର୍ଣ୍ଣ କରିଦେବା ଉଚିତ ନୁହେଁ। ମନୁଷ୍ୟର ହୃଦୟ ଓ ମନ ବିକାଶ ଲାଭ କରୁ। ତାର କଳ୍ପନା ଶକ୍ତି ସଂପୂର୍ଣ୍ଣ ରୂପେ ବିକଶିତ ହେଉ। ମନୁଷ୍ୟ ତାର ଜୀବନର ମୂଲ୍ୟ ଓ କର୍ତ୍ତବ୍ୟ ଉପଲବ୍ଧି କରୁ। ସେ ଯେଉଁ ଦେଶ ଓ ସମାଜରେ ଜନ୍ମ ଗ୍ରହଣ କରିଛି ସେହି ଦେଶ ଓ ସମାଜର ଅବସ୍ଥା ଦୃଷ୍ଟିରେ ତାହାର ଆଦର୍ଶ କ'ଣ ଓ କିପରି ହେବା ଉଚିତ ତାହା ଅନୁସରଣ କରିବାରେ ଯଦି କର୍ତ୍ତବ୍ୟର ମାର୍ଗ ସରଳ

କରିବାପାଇଁ ବୈବାହିକ କ୍ରିୟା ଆବଶ୍ୟକ ବୋଧହୁଏ ତେବେ ସେ ବିବାହ କରି ପାରନ୍ତି। ବିବାହ କାର୍ଯ୍ୟରେ ପିତାମାତା କିମ୍ବା କୌଣସି ଅଭିଭାବକ ହସ୍ତକ୍ଷେପ କରିବା ଉଚିତ ନୁହେଁ। ବିବାହ ହେଉଛି ଦୁଇଟି ହୃଦୟର ମିଳନ। ରୁଚି ଓ ସୌନ୍ଦର୍ଯ୍ୟ ଜ୍ଞାନର ମିଳନ। ମାନବର ଏହିଠାରେ ଜୀବନର ସୁଖ ଓ ଆନନ୍ଦ। ଏଥିରେ ତାହାର ପୂର୍ଣ୍ଣ ସ୍ୱାଧୀନତା ରହିବା ଦରକାର। ଏହି ସ୍ୱାଧୀନତାରେ ମନୁଷ୍ୟର ଜୀବନ ବିକାଶ ପାଏ। ଦେଶ ଓ ସମାଜର ଶିକ୍ଷା ଓ ସଭ୍ୟତା ପରିପୁଷ୍ଟ ହୁଏ। କିନ୍ତୁ ଏହି ସ୍ୱାଧୀନତା ଟିକକ ଯେଉଁ ଦେଶ ଓ ସମାଜରେ ଅଭାବ ସେହି ଦେଶ ଓ ସମାଜ ତେତେ ଅନୁନ୍ନତ ଏବଂ ସେମାନଙ୍କର ଉନ୍ନତିର ଆଶା ବିଡ଼ମ୍ବନା ମାତ୍ର। ସୁତରାଂ ସେଥିରେ ନାରୀ ଏବଂ ପୁରୁଷ ସମସ୍ତଙ୍କର ଜାତି ଧର୍ମ ନିର୍ବିଶେଷରେ ସ୍ୱାଧୀନତା ରହିବା ଉଚିତ।

ସେ ଯାହା ହେଉ ଏହିପରି ଭାବରେ ମୋର ବିବାହ କାର୍ଯ୍ୟ ଶେଷ ହୋଇଗଲା। କାର୍ଯ୍ୟ ଶେଷ କରି ବଳେଇ ଦଶପଲ୍ଲା ଫେରିଲେ। ମୁଁ ଯଥା ସମୟରେ ଆସି ସ୍କୁଲରେ ଯୋଗ ଦେଲି। ଇତି ମଧ୍ୟରେ ବର୍ଷ ଶେଷ ହେଲା। ମୁଁ ପରୀକ୍ଷା ଦେଇ ମାଇନର ଷଷ୍ଠ ଶ୍ରେଣୀକୁ ପ୍ରମୋଶନ ପାଇଲି। ଦୁଇ ଟଙ୍କାରେ ଚଳିବା ଏଣିକି ଅସମ୍ଭବ ଜଣାଗଲା। ଆଉ କିଛି ସାହାଯ୍ୟ ପାଇବା ଆଶାରେ ନୟାଗଡ଼ ଷ୍ଟେଟ୍‌କୁ ଖଣ୍ଡିଏ ଦରଖାସ୍ତ ଦେଲି। ଏଥର ଆଉ ଗୋଟିଏ ଟଙ୍କା ଷ୍ଟେଟ୍‌ରୁ ସାହାଯ୍ୟ ମିଳିଲା। ଏଥର ମାସରେ ହେଲା ତିନୋଟି ଟଙ୍କା। ଦିନକୁ ଛ'ଟି ପଇସା। ଏଣିକି ଦୁଇବେଳା ମୁଁ ମେସ୍‌ରେ ଖାଇଲି। ଏହି ଛଅ ପଇସାରେ ଦିନକର ଖାଇବା ଖର୍ଚ୍ଚ ଚଳିଯାଏ। କିନ୍ତୁ କେବଳ ମେସ୍ ଖର୍ଚ୍ଚ ଚଳିଲେ ତ କାର୍ଯ୍ୟ ପୂରା ହେଉନାହିଁ। ଏହା ବାଦ ଜଳଖିଆ, ତେଲ ଓ ଧୋବା ଖର୍ଚ୍ଚ। ହିସାବ କରି ଦେଖିଲେ ଏହିପରି କେତେ ଅଭାବ ରହିଥାଏ। ମନୁଷ୍ୟ କ୍ରମଶଃ ଯେତେ ବେଶି ଶିକ୍ଷାପାଏ ତାର ଅଭାବ ମଧ୍ୟ ତେତେ ବଢ଼ିଯାଏ। ଦୁଇବର୍ଷ ତଳେ ମୁଁ ଯାହା ଦରକାର କରୁ ନ ଥିଲି ତାହା ବର୍ତ୍ତମାନ ନ ହେଲେ ଚଳୁ ନାହିଁ। ଛତା, କାମିଜ, ଜୋତା ଏ ସବୁ ତ ନ ହେଲେ ନ ଚଳେ। ଏହିପରି କେତେ ଅଭାବ ବଢ଼ି ଯାଇଛି। ମନରେ ମଧ୍ୟ ଅତୃପ୍ତି ଭାବ ଜାତ ହେଉଛି। ଯାହା ନିହାତି ଆବଶ୍ୟକ ମନେ କରୁଛି ତାହା ପୂରଣ ନ ହେବାଯାଏ ସାଙ୍ଗ ସାଥିମାନଙ୍କ ସହିତ ମିଶିବାକୁ ମନ ହେଉ ନାହିଁ। ମାଇନର ଷଷ୍ଠ ଶ୍ରେଣୀରୁ ପ୍ରମୋଶନ ପାଇଲା ପରଠାରୁ ମାଇନର ଖଣ୍ଡି ପାଶ୍ କରି ପାଠ ପଢ଼ିବା ଶେଷ କରିବା ଭାବନାରେ ମନରେ ଆନନ୍ଦ ଆସୁ ନାହିଁ କିମ୍ବା ତୃପ୍ତି ଆସୁ ନାହିଁ। କିପରି ମାଟ୍ରିକ୍ୟୁଲେସନ ପଢ଼ିବି ଏହି ଭାବନା ମନରେ ବେଳେ ବେଳେ ଜାତ ହୁଏ। କିନ୍ତୁ ଖାଲି ଭାବନା ଜାତ ହେଲେ କ'ଣ ହେବ, ଏହିପରି ଭାବନାକୁ କାର୍ଯ୍ୟରେ ପରିଣତ କରିବା ମୁଁ ସ୍ୱପ୍ନରେ ମଧ୍ୟ ଭାବି ପାରିଲି ନାହିଁ।

ଏହିପରି ମନର ଭାବ ଓ ଅଭାବ ଅସୁବିଧା ମଧ୍ୟରେ ଜୀବନ କଟି ଯାଉଥାଏ। ବେଳେବେଳେ ମୋର ସାଙ୍ଗ ପିଲାମାନେ ମୋତେ କିଛି କିଛି ସାହାଯ୍ୟ କରନ୍ତି।

ଗୋଲକର ଅବସ୍ଥା ଖୁବ୍ ଭଲ ନ ହେଲେ ମଧ ମନ୍ଦ ନୁହେଁ। ସ୍କୁଲରେ ସେତେବେଳକୁ ଗୋଟିଏ ବୋଡ଼ିଙ୍ଗ୍ ହେଲାଣି। ସ୍କୁଲର ହେଡ୍ ପଣ୍ଡିତ ବୋଡ଼ିଙ୍ଗ୍‌ର ସୁପରିଣ୍ଟେଣ୍ଡେଣ୍ଟ। ସେ ଗୋଲକକୁ ଟିଉସନ କରନ୍ତି। ଗୋଲକର ପଣ୍ଡିତଙ୍କ ସହିତ କୌଣସି ଗୁରୁତର ବିଷୟ ନେଇ ଝଗଡ଼ା ଲାଗିଲା। ଗୋଲକ ମୋର ଅନ୍ତରଙ୍ଗ ବନ୍ଧୁ। ମୁଁ ତାର ପକ୍ଷ ନେବା ସ୍ୱାଭାବିକ। ଏହି ଘଟଣା ବଡ଼ ଗୁରୁତର ଆକାର ଧାରଣା କଲା। ସ୍କୁଲର ଶିକ୍ଷକ ଏବଂ ଷ୍ଟେଟ୍‌ର ଅନେକ କର୍ମଚାରୀ ମଧ ଆମ୍ଭ ଦୁହିଙ୍କ ଉପରେ ବଡ଼ ବିରକ୍ତ ଓ ଅସନ୍ତୁଷ୍ଟ ହେଲେ। ଇଟାମାଟି ଗୁରୁଟ୍ରେନିଂ ସ୍କୁଲର ହେଡ୍‌ପଣ୍ଡିତ ଶ୍ରୀ ଚନ୍ଦ୍ରଶେଖର ମିଶ୍ର ସାହାଯ୍ୟ ଦେଉଥିବା ଟଙ୍କାଟି ବନ୍ଦ କରିଦେଲେ। ଗୋଲକକୁ ସାହାଯ୍ୟ କରିବାହିଁ ତାଙ୍କର ବିରକ୍ତିର କାରଣ। ମୁଁ ଜାଣେ ତାହାର କିଛି ଦୋଷ ନାହିଁ। ଏଥିପାଇଁ ମୋର ପାଠପଢ଼ା ଏତିକିରେ ବନ୍ଦ ହେଲେ ହେବ ପଛକେ ମୁଁ ଗୋଲକକୁ ନିଶ୍ଚୟ ସମର୍ଥନ କରିବି, ଏହାହିଁ ମୋର ଏକମାତ୍ର କଥା ହୋଇ ରହିଲା। ସେହି କାରଣରୁ ମୋ ଉପରେ ସମସ୍ତେ ବିରକ୍ତ ଓ ଅସନ୍ତୁଷ୍ଟ। କେହି କିପରି ମୋତେ ସାମୟିକ ସାହାଯ୍ୟ କରୁଥିଲେ। ତାହା ବର୍ତ୍ତମାନ ବନ୍ଦ ହୋଇଗଲା। ପୂର୍ବଠାରୁ ପୁଣି ମୋତେ ଏକବେଳା ଖାଇ ଏକବେଳା ଉପବାସରେ ସମୟ କଟାଇବାକୁ ପଡ଼ିଲା।

ନୟାଗଡ଼ ଗଡ଼ରେ ବ୍ରାହ୍ମଣସାହି ନାମରେ ଗୋଟିଏ ଗଳି ଅଛି। ସେହି ବ୍ରାହ୍ମଣ ସାହିରେ ପଣ୍ଡିତ ଲୋକନାଥ ମିଶ୍ରଙ୍କର ଘର। ସେ ଜଣେ ଶିକ୍ଷିତ ଧନୀ ଲୋକ ଥିଲେ। ବର୍ତ୍ତମାନ ଏପରି ଅବସ୍ଥାରେ ମୁଁ ଯାଇ ତାଙ୍କରି ନିକଟରେ ଉପସ୍ଥିତ ହେଲି। ସେ ମୋଠାରୁ ମୋର ସମସ୍ତ ଜୀବନ-ବୃତ୍ତାନ୍ତ ଶୁଣି ମୋତେ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଲେ। ମୁଁ ଯାଇ ତାଙ୍କ ଘରେ ରହିଲି। ତାଙ୍କର ପୁତ୍ର ସନ୍ତାନ କିଛି ନଥାନ୍ତି। ଦୁଇଟି ଛୋଟ କନ୍ୟା। ମୁଁ ତାଙ୍କ ଘରେ ରହିବା ପରେ ସେ ଓ ତାଙ୍କର ସ୍ତ୍ରୀ ମୋତେ ପୁତ୍ରବତ ସ୍ନେହ କରିବାକୁ ଆରମ୍ଭ କଲେ। ମୁଁ ତାଙ୍କ ଘରେ ଖାଏ। ମୋର ବର୍ତ୍ତମାନ କିଛି ଅଭାବ ନାହିଁ। ଖୁସିରେ ଦିନ କଟିବାକୁ ଲାଗିଲା।

ବର୍ତ୍ତମାନ ୧୯୦୯ ମସିହା। ବାର୍ଷିକ ପରୀକ୍ଷା ସମୟ ଉପସ୍ଥିତ ହେଲା। ମୁଁ ପରୀକ୍ଷା ଦେଇ ମାଇନର ଫାଷ୍ଟ କ୍ଲାସ୍‌କୁ ପ୍ରମୋସନ ପାଇଲି। ମାଇନର ଖଣ୍ଡି କିପରି ଭଲ ଭାବରେ ପାଶ୍ କରିବି ଏହା ହେଲା ମୋର ଏକମାତ୍ର ଚିନ୍ତା। ମାଇନର ପାଶ୍ ପରେ ଚାକିରି କରିବି କିମ୍ବା ଆଉ କିଛି ପଢ଼ିବା ପାଇଁ ଚେଷ୍ଟା କରିବି କିଛି ଭାବି ସ୍ଥିର କରି ପାରୁ ନଥାଏ। କିନ୍ତୁ ବେଶି ଦିନ ମୋତେ ଲୋକନାଥ ମିଶ୍ରଙ୍କ ଘରେ ରହିବାକୁ ପଡ଼ିଲା ନାହିଁ। ତାହାଙ୍କର ଗୋଟିଏ କନ୍ୟା ଜାତ ହୋଇ

ଙ୍କ ସ୍ତ୍ରୀ ମୃତ୍ୟୁ ମୁଖରେ ପତିତ ହେଲେ। ମୁଁ ଯେ ତାଙ୍କ ସ୍ନେହରୁ ଚିରଦିନ ପାଇଁ ବଞ୍ଚିତ ହେଲି ତାହା ନୁହେଁ। ତାହାଙ୍କ ଘର ମଧ୍ୟ ମୋତେ ଛାଡ଼ିବାକୁ ପଡ଼ିଲା। ସେ ନିଜେ ଏଣିକି ଘରେ ଚଳିବାରେ ବଡ଼ ହଇରାଣ ହେଲେ। ତାଙ୍କର ପିଲାଟିମାନଙ୍କର ଯତ୍ନ ନେବାକୁ କେହି ନାହିଁ। ତାହାଙ୍କୁ ଗଣ୍ଡେ ରୋଷେଇ କରି ଦେବାକୁ କେହି ନାହିଁ। ଏପରି ଅବସ୍ଥାର ମୁଁ ଆଉ ତାହାଙ୍କ ଘରେ ଚଳିବି କିପରି? କିନ୍ତୁ ସେ ମୋତେ ସ୍ଥାନାନ୍ତରିତ ହେବା ନିମିତ୍ତ କହି ନାହାନ୍ତି। ମୁଁ ତାଙ୍କର ଚଳାଚଳରେ ଅସୁବିଧା ଦେଖି ପାରିବାରୁ ନିଜ ଇଚ୍ଛାନୁସାରେ ତାହାଙ୍କଠାରୁ ଅନୁମତି ନେଇ ତାହାଙ୍କ ସାହିରେ ରଥଙ୍କ ଘରେ ଆସି ରହିଲି। ସେ ପ୍ରତି ମାସରେ ୧୫ ସେର ଚାଉଳ ମୋତେ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ହେଲେ। ଏହି ଚାଉଳ ଏବଂ ଷ୍ଟେଟ୍‌ରୁ ପାଉଥିବା ମାସିକ ସାହାଯ୍ୟ ଦୁଇଟଙ୍କାରେ ମୋର ଚଳାଚଳ ପକ୍ଷେ ବିଶେଷ କିଛି ଅସୁବିଧା ହୁଏ ନାହିଁ। ରଥଙ୍କ ବସାରେ ଆମ୍ଭେମାନେ ୪/୫ଟି ଛାତ୍ର ଏକାଠି ବସା କରି ରହିଥାଉଁ। ସମସ୍ତେ ପାଳି କରି ହାତରେ ରୋଷେଇ କରି ଚଳାଚଳ ହେଉଁ। ଦିନେ ଦିନେ ଏହି ରୋଷେଇ ପାଳି ନେଇ ଆମ ଭିତରେ ଭାରୀ ଝଗଡ଼ା ହୁଏ। ରୋଷେଇ ନ କରି ଦିନେ ଓଳିଏ ଉପବାସ ରହୁ। ପୁଣି ମିଳିମିଶି ଚଳୁ। ଗଦାଧର ନନ୍ଦ, ବିନାୟକ ମିଶ୍ର, ନାରାୟଣ ତ୍ରିପାଠୀ, ବୈଦ୍ୟନାଥ ରଥ ଓ ମୁଁ ଏହି କେତେଜଣ ଆମ୍ଭେମାନେ ଏକାଠି ରହିଥାଉଁ। ଗଦାଧର ନନ୍ଦ ଆମ୍ଭମାନଙ୍କ ଭିତରେ ଟିକିଏ ବୟସ୍କ, ସୁତରାଂ ଅଗ୍ରଗାମୀ। ଆମ ବସା ସ୍କୁଲର ଉପର ଦୁଇ ଶ୍ରେଣୀର ପିଲାମାନଙ୍କର ଗୋଟିଏ କେନ୍ଦ୍ରସ୍ଥାନ ହୋଇଥାଏ। ଆମ୍ଭ ବସାରେ ଅନେକ ସମୟରେ ଖେଳ କୌତୁକ ଓ ଭୋଜି ପ୍ରଭୃତି ହୁଏ। ଶିକ୍ଷକମାନଙ୍କୁ ନିମନ୍ତ୍ରଣ କରୁ। ଏ ସବୁରେ ସମସ୍ତ ଭାର ମୋ ଉପରେ ନ୍ୟସ୍ତ ହୁଏ। ପିଲାମାନଙ୍କ ମଧ୍ୟରେ ପାଠ ପଢ଼ିସାରି କିଏ କଣ କରିବ ଏ ବିଷୟରେ ବହୁତବାର ଆଲୋଚନା ହୁଏ। ସମସ୍ତେ ଷ୍ଟେଟର ବଡ଼ ବଡ଼ ଚାକରିଆ ହେବା ପାଇଁ କହନ୍ତି, ମାତ୍ର ଏସବୁ ମୁଁ ଆଦୌ କଳ୍ପନା କରିପାରେ ନାହିଁ କିମ୍ବା ଭବିଷ୍ୟତରେ କଣ କରିବି ଏହା ମଧ୍ୟ ଭାବି ପାରେ ନାହିଁ। ଆମ୍ଭେମାନେ ଖାଇ ବସିଲା ବେଳେ ପରସ୍ପର ଛୁଆଁ ଛୁଇଁ ହେବା ଓ ଏକ ଆସନରେ ବସି ଖାଇବାକୁ ଗୋଟିଏ ଶିକ୍ଷିତ (Culture) ମନୁଷ୍ୟର କାର୍ଯ୍ୟ ବୋଲି ମନେ କରୁ। କାରଣ ଆମ୍ଭେମାନେ ଯେତେଜଣ ଏକାଠି ଖାଉଁ ସମସ୍ତେ ବ୍ରାହ୍ମଣ। ବ୍ରାହ୍ମଣର ନିୟମ ଏହି ଯେ ସେ ଯଜ୍ଞୋପବୀତ ଧାରଣ କଲା ପରେ ଖାଇଲାବେଳେ କାହାକୁ ସ୍ପର୍ଶ କରିବ ନାହିଁ। ଏପରି କି ନିଜ ପିତାମାତା ଓ ଭାଇଭଉଣୀମାନଙ୍କ ଭିତରେ ଖାଇଲାବେଳେ ଛୁଆଁଛୁଇଁ ହୋଇ ଖାଇବାକୁ ଶାସ୍ତ୍ରର ବିରୁଦ୍ଧ କାର୍ଯ୍ୟ ବୋଲି ବିବେଚିତ ହୁଏ। ଏହି ଅବସ୍ଥାର ଆମ୍ଭେମାନେ ଏହି କାର୍ଯ୍ୟଟିକୁ ଗୋଟିଏ ଭାରୀ ବଡ଼ କାର୍ଯ୍ୟ ଏବଂ ବନ୍ଧୁପ୍ରେମର ପରାକାଷ୍ଠା ବୋଲି ମନେ କରିଥାଉଁ।



## ଦ୍ୱିତୀୟ ଭାଗ

# ପ୍ରଥମ ପରିଚ୍ଛେଦ

## କଟକରେ ଛାତ୍ର ଜୀବନ

ମାଇନର ପରୀକ୍ଷା ସରିଲା। ୧୯୧୦ ମସିହା ଡିସେମ୍ବର ମାସରେ ମୁଁ କଟକ ବାହାରିଲି। ନୟାଗଡ଼ରୁ ବାହାରି ପ୍ରଥମ ଦିନ ବୋଲଗଡ଼ରେ ଆସି ରହିଲି। ବୋଲଗଡ଼ରେ ସେତେବେଳକୁ ମାଇନର ସ୍କୁଲ ହୋଇ ନଥାଏ। ଗୋଟିଏ ଭର୍ଣ୍ଣାକୁଲାର ସ୍କୁଲ ଥାଏ। ସ୍କୁଲର ହେଡ୍ ପଣ୍ଡିତ ଜଣେ ପୁରୁଣାକାଳିଆ ପଣ୍ଡିତ। ମୁଁ ସ୍କୁଲରେ ତାହାଙ୍କ ଅତିଥି ହୋଇ ରହିଲି। ଏପରି ତାହାଙ୍କ ସହିତ ପରିଚୟ ହେବାରେ ସେ ମୋ ବିଷୟରେ ସବୁ କଥା ଜାଣିବାକୁ ଆଗ୍ରହ ପ୍ରକାଶ କଲେ। ମୁଁ ଏ ପର୍ଯ୍ୟନ୍ତ କିପରି ଭାବରେ ପାଠ ପଢ଼ିଛି ଏବଂ କଟକ କି ଉଦ୍ଦେଶ୍ୟରେ ଯାଉଛି ଇତ୍ୟାଦି କଥା ଶୁଣି ସେ ମତେ ବଡ଼ ଉତ୍ସାହ ଦେଇଥିଲେ। ତହିଁ ଆରଦିନ ମୁଁ ବିଦାୟ ନେଇ ଆସିଲା ବେଳକୁ ପଣ୍ଡିତ ମହାଶୟ ମୋତେ ବାଟ ଖର୍ଚ୍ଚ ପାଇଁ ଆଠଅଣା ପଇସା ଦେଇ ଆଶୀର୍ବାଦ କରି କହିଲେ, "ପ୍ରଭୁ ତୁମକୁ ନିଶ୍ଚୟ ସହାୟ ହେବେ। ତୁମ୍ଭେ ଦିନେ ଓଡ଼ିଶାରେ ଜଣେ ଜଣା ଶୁଣା ମଣିଷ ହେବ।"

ମୁଁ ବୋଲଗଡ଼ ଛାଡ଼ି ଅଇଲି। ପଣ୍ଡିତଙ୍କର ଉତ୍ସାହବାଣୀ ବାଟଯାକ ମୋର ବାରମ୍ବାର ମନେ ପଡ଼ି ମତେ ଉତ୍ସାହିତ କଲା। ବୋଲଗଡ଼ରୁ ଆସି ସେଦିନ ସନ୍ଧ୍ୟାରେ ଖୋରଧାରେ ପହଞ୍ଚିଲି। ଖୋରଧାରେ ଗୋଲକ ପଢୁଥାଏ। ବାଇଧର ବାବୁଙ୍କ ସାନ ଭାଇ କୃପାସିନ୍ଧୁ ପଟ୍ଟନାୟକ ମାଟ୍ରିକ୍ ସେକେଣ୍ଡ କ୍ଲାସରେ ପଢୁଥାନ୍ତି। ମୁଁ ଯାଇ ଏ ଦୁହିଁଙ୍କ ନିକଟରେ ପହଞ୍ଚିଲି। ସେଦିନ ଖୋରଧା ସ୍କୁଲ ବଡ଼ଦିନ ଉପଲକ୍ଷେ ବନ୍ଦ ହୋଇଥାଏ। ଛାତ୍ର ଓ ଶିକ୍ଷକ ସମସ୍ତେ ଘରକୁ ଯିବାକୁ ବ୍ୟଗ୍ର। ଗୋଲକ ଓ କୃପାସିନ୍ଧୁ ବାବୁ ମଧ୍ୟ ଘରକୁ ଯିବାକୁ ଉଦ୍ୟତ। ଏପରି ଅବସ୍ଥାରେ ମୁଁ ସେଠାରେ ଉପସ୍ଥିତ ହେଲି। ସେହିଦିନ ସନ୍ଧ୍ୟା ଗାଡ଼ିରେ ସେହି ସ୍କୁଲର ଜଣେ ଶିକ୍ଷକ କଟକ ଆସିବାର ଥାଏ। କୃପାସିନ୍ଧୁ ବାବୁ ମତେ ନେଇ ତାଙ୍କର ସାଥି କରାଇ ଦେଲେ। ସେହିଦିନ ରାତ୍ରିରେ ମୁଁ କଟକ ଆସି ଶ୍ରୀଯୁକ୍ତ ଶୂର ଦେଓଙ୍କ ବସାରେ ପହଞ୍ଚିଲି।

ଖୋରଧା ସ୍କୁଲର ଉକ୍ତ ଶିକ୍ଷକ ମୋର ରେଲ ଟିକଟ ଖଣ୍ଡି ମତେ ଦେଇଥିଲେ ଏବଂ ଗାଡ଼ିରେ ଆଣି ମତେ ଶୂର ଦେଓଙ୍କ ବସାରେ ଛାଡ଼ି ଦେଇଥିଲେ।

ଶୂରଦେଓଙ୍କ ବସାରେ କୃଷ୍ଣଚନ୍ଦ୍ର ଦାସ ନାମରେ ଜଣେ ଛାତ୍ର ଥାଏ। ନୟାଗଡ଼ର ମୁକ୍ତିଆର ଶ୍ରୀଯୁକ୍ତ ଲିଙ୍ଗରାଜ ଦାସଙ୍କର ପୁତ୍ର ହେଉଛି କୃଷ୍ଣ। କୃଷ୍ଣ ମୋର ଦଶପଲ୍ଲାର ସାଥି। ପିଲାଦିନେ ଦୁହେଁ ଏକାଠି ପାଠ ପଢ଼ିଛୁ ଏବଂ ଏକାଠି ଖେଳିଛୁ। କୃଷ୍ଣ ମୋର ଭାରୀ ସାଥି। ଅନେକ ସମୟରେ ସେ ଆସି ଆମ ଘରେ ରହେ ଏବଂ ମୁଁ ଯାଇ ତାଙ୍କ ଘରେ ରହେ। କୃଷ୍ଣ ଦଶପଲ୍ଲାରେ ମାଇନର ପାଶ୍ କରି କଟକରେ ବର୍ତ୍ତମାନ କଲେଜିଏଟ୍ ସ୍କୁଲର ଦ୍ୱିତୀୟ ଶ୍ରେଣୀରେ ପାଠ ପଢୁଛି। ମୋର ପିତାମାତାଙ୍କ ମୃତ୍ୟୁ ପରଠାରୁ ଯେଉଁସବୁ ଅବସ୍ଥା ଭିତରେ ମୋର ଜୀବନ ଅତିବାହିତ ହେଉଅଛି, ସେ ସବୁ କୃଷ୍ଣକୁ ଜଣା। ଦଶପଲ୍ଲା ଛାଡ଼ି ଅଇଲା ପରେ ମୁଁ କେଉଁଠାରେ କଣ କରୁଛି, ସେ ଭଲ କରି ଜାଣି ନଥାଏ। ମୁଁ ନୟାଗଡ଼ରେ ରହି ପାଠ ପଢୁଛି, ଏହା କୃଷ୍ଣ ଶୁଣିଥାଏ। କିନ୍ତୁ ମୁଁ ମାଇନର ପାଶ୍ କରି ଦିନେ କଟକ ପାଠ ପଢ଼ିବାକୁ ଆସିବି, କୃଷ୍ଣ ଏହା ସ୍ୱପ୍ନରେ ମଧ କଳ୍ପନା କରି ନାହିଁ। ହଠାତ୍ ମତେ କଟକରେ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲା। କଟକକୁ ମୁଁ ପୁଣି ପାଠ ପଢ଼ିବାକୁ ଆସିଛି। ଏହା ତ ଆହୁରି ଆଶ୍ଚର୍ଯ୍ୟର କଥା। ସେ ମନେ କଲା ଏହା ଗୋଟିଏ ଦୁନିଆରେ ଆଶ୍ଚର୍ଯ୍ୟ ଘଟଣା। ସେ ମତେ କୁଣ୍ଢାଇ ପକାଇ କହିଲା, "ଭାଇ, ଆମ୍ଭେମାନେ ରବିନ୍‌ସନ୍ କ୍ରୁଶୋ ନାମରେ ଗୋଟିଏ କାହାଣୀ ପାଠ କରିଛୁ। ତତେ ଦେଖି ସେହି ରବିନ୍‌ସନ୍ କ୍ରୁଶୋ ମୋର ମନେ ପଡୁଛି। ମୋର ମନେ ହେଉଛି, ତୁ ଆମ୍ଭର ରବିନ୍‌ସନ୍ କ୍ରୁଶୋ।"

ରବିନ୍‌ସନ୍ କ୍ରୁଶୋ କିଏ କଣ ମୁଁ ସେତେବେଳକୁ କିଛି ଜାଣେ ନାହିଁ। ଏ କଥାର ମର୍ମ ମୁଁ କିଛି ବୁଝି ପାରିଲି ନାହିଁ। ସେ ଯାହା ହେଉ କୃଷ୍ଣକୁ ପାଇ ମୁଁ ବଡ଼ ଖୁସି ହୋଇଥିଲି, ଏକଥା କହିବା ଅନାବଶ୍ୟକ। କୃଷ୍ଣ ଥିବାରୁ କଟକରେ ମଧ ମୋର କେତେକ ବିଷୟରେ ସୁବିଧା ହୋଇଥିଲା। ମୁଁ ଯେଉଁ ଚାରି ଜଣ ଭଦ୍ରବ୍ୟକ୍ତିଙ୍କ ନିକଟକୁ ଚାରିଖଣ୍ଡି ପତ୍ର ନେଇ ଆସିଥିଲି, କୃଷ୍ଣ ମତେ ନେଇ ସେମାନଙ୍କ ଘର ଦେଖାଇ ଦେଇଥିଲା। ଏତକ ସାହାଯ୍ୟ କିଛି କମ୍ ନୁହେଁ। ଗଡ଼ଜାତରୁ ଆସି କଟକରେ ହଠାତ୍ ରାସ୍ତା ଘାଟ ଚିହ୍ନିବା ବଡ଼ କଠିନ। ସେ ଯାହା ହେଉ ମୁଁ ପ୍ରଥମେ ବାବୁ ବିଶ୍ୱନାଥ କରଙ୍କ ସହିତ ସାକ୍ଷାତ କଲି। ସେ ମହାଶୟ କହିଲେ, "ମୁଁ ଯଦି କୌଣସି ସ୍କୁଲରେ ନାମ ଲେଖାଇ ଅଧ୍ୟୟନ କରେ, ସେ ମତେ ସାମୟିକ କିଛି କିଛି ସାହାଯ୍ୟ କରି ପାରିବେ।" ବାବୁ ଗୌରୀଶଙ୍କର ରାୟ ମଧ ସେହିପରି କିଛି କହିଲେ। ଯୋଗେଶଚନ୍ଦ୍ର ରାୟଙ୍କ ନିକଟକୁ ଗଲି। ସେ ଉକ୍ତ ପତ୍ରଖଣ୍ଡି ପଢ଼ି ଆଙ୍କୁ ଶୁଣାଇବାକୁ ମତେ କହିଲେ। ତାହା ଶୁଣି ସେ ମତେ ଯଙ୍ଗ ଉତ୍କଳ ଆସୋସିଏସନ୍‌ର

ସଂପାଦକଙ୍କ ନିକଟକୁ ଯିବାକୁ କହି ଦେଲେ। ସେଠାରୁ ମୁଁ ବାବୁ ବ୍ରଜସୁନ୍ଦର ଦାସଙ୍କ ନିକଟକୁ ଗଲି। ବ୍ରଜ ବାବୁଙ୍କ ଘରେ ପଣ୍ଡିତ ଗୋପବନ୍ଧୁ ଦାସ ଆସି ରହିଥାନ୍ତି। କଟକରେ ଉତ୍କଳ ସମ୍ମିଳନୀ ବସିଥାଏ। ଗୋପବନ୍ଧୁ ବାବୁ ଉତ୍କଳ ସମ୍ମିଳନୀରେ ଯୋଗ ଦେବାପାଇଁ କଟକ ଆସିଥାନ୍ତି। ଏ ଦୁହିଁଙ୍କ ସହିତ ଏକତ୍ରରେ ଦେଖା ହେଲା। ଗୋପବନ୍ଧୁ ବାବୁ ମତେ ଅନେକ କଥା ପଚାରିଲେ। କିନ୍ତୁ ସେ କଣ କହିଲେ ମୋର ମନେ ନାହିଁ। ବ୍ରଜ ବାବୁ ବିଶେଷ କିଛି ସାହାଯ୍ୟ କରି ପାରିବେ ବୋଲି ଆଶା ଦେଲେ ନାହିଁ। ଏହିସବୁ ଲୋକଙ୍କଠାରେ ବିଶେଷ କିଛି ସାହାଯ୍ୟ ପାଇବାର ଆଶା ମତେ ଦେଖାଗଲା ନାହିଁ। ମୁଁ ଟିକିଏ ନିରାଶ ଏବଂ ଦୁଃଖିତ ହୋଇ ପଡ଼ିଲି।

କଟକରେ ସେ ବର୍ଷ ଉତ୍କଳ ସମ୍ମିଳନୀ ବସୁଥାଏ। ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ ସମ୍ମିଳନୀର ସଭାପତି। ଶୂରଦେଓ ଏହି ସମ୍ମିଳନୀ କାର୍ଯ୍ୟ ହେତୁ ଦିନରାତି ସବୁବେଳେ କାର୍ଯ୍ୟବ୍ୟସ୍ତ ଥାନ୍ତି। ତାଙ୍କର ଜଣେ ଭାଇ ଗଞ୍ଜାମ ତରଳାରୁ ସମ୍ମିଳନୀରେ ଯୋଗ ଦେବାକୁ ଆସିଥାନ୍ତି। ମୁଁ ତାହାଙ୍କ ସଙ୍ଗରେ ସମ୍ମିଳନୀ ଦେଖିବାକୁ ଯାଏ। ସମ୍ମିଳନୀ କଣ, ସଭା କଣ, ଏସବୁ ମୁଁ ଏପର୍ଯ୍ୟନ୍ତ ଜାଣି ନାହିଁ। ବଡ଼ ଲୋକ, ଶିକ୍ଷିତ ଲୋକ ସବୁ ଏପରି ସଭାରେ ଯୋଗ ଦିଅନ୍ତି। ବକ୍ତୃତା ଦିଆହୁଏ। ଏସବୁ ଦେଖିବା ଓ ଶୁଣିବା ମୋ ପକ୍ଷରେ ନୂଆ। ମତେ ଭାରୀ ଭଲ ଲାଗୁଥାଏ। ଏହି ଦୁଇ ଚାରି ଦିନ ମୁଁ ମୋର ପାଠ ପଢ଼ା ଚିନ୍ତା ଭୁଲି ଯାଇଥିଲି। ବକ୍ତୃତା ଶୁଣିବାକୁ ଭାରୀ ଭଲ ଲାଗେ। କିନ୍ତୁ ବକ୍ତୃତାରେ କଣ କୁହାଗଲା କିମ୍ବା ସମ୍ମିଳନୀରେ କି ବିଷୟ ସବୁ ଆଲୋଚିତ ହୋଇଥିଲା, ସେ ସବୁ ମୋର କିଛି ମନେ ନାହିଁ। ସମ୍ମିଳନୀରୁ ଫେରି ବସାରେ ପହୁଞ୍ଚିଲେ, ଶୂରଦେଓଙ୍କର ଉକ୍ତ ଭାଇ ମତେ ସମ୍ମିଳନୀ କଥା ପଚାରନ୍ତି। ମୁଁ ତାହାଙ୍କୁ କହେ, "ମୋର ମନ ହେଉଛି ମୁଁ କିପରି ବକ୍ତୃତା ଦିଅନ୍ତି।" ମୋ ଠାରୁ ଏପରି ଉତ୍ତର ପାଇ ସେ କହନ୍ତି, "ହଁ, ଦିନ ଆସିବ, ତୁମେ ଯେବେ ଏହିପରି ସଭା ସମିତିରେ ବକ୍ତୃତା ଦେବ। ଈଶ୍ୱର ତୁମ୍ଭର ଏହି ଇଚ୍ଛା ପୂରଣ କରିବେ।"

ସେ ଯାହା ହେଉ ସମ୍ମିଳନୀ ଶେଷ ହେଲା। ଶୂରଦେଓଙ୍କ ସହିତ କଥା ହେବାକୁ ସମୟ ମିଳିଲା। ମୋ କଥା ଶୁଣି ସେ କହିଲେ, "ମୁଁ ଯଦି ପଢ଼େ ତେବେ ସେ ସାମୟିକ କିଛି ସାହାଯ୍ୟ କରି ପାରିବେ। ଏହାଛଡ଼ା ମିଶନ ସ୍କୁଲରେ ଯଦି ନାମ ଲେଖାଏ ତେବେ ସେତେବେଳର ସେହି ସ୍କୁଲର ହେଡ଼ମାଷ୍ଟର ହଣ୍ଡରସନ୍ ସାହେବଙ୍କୁ କହି ସ୍କୁଲରେ ମୋର ଦରମାଟକ ଛାଡ଼ କରାଇ ଦେଇ ପାରିବେ। ଏଥିରେ କିନ୍ତୁ କଟକ ଆସି ପାଠ ପଢ଼ିବା ପାଇଁ ମୋର ସାହସ ପାଇଲା ନାହିଁ। ଗୋବିନ୍ଦଚନ୍ଦ୍ର ଶୂରଦେଓଙ୍କର ଭାଇ ଶ୍ରୀ ଦାଶରଥି ଶୂରଦେଓ କନିକା ରାଜାଙ୍କୁ ଯାଇ ସାକ୍ଷାତ କରିବା ପାଇଁ ମତେ ପରାମର୍ଶ ଦେଲେ। ସେ ଖଣ୍ଡିଏ ଦରଖାସ୍ତ ମୋ

ପାଇଁ ଇଂରେଜିରେ ଲେଖିଦେଲେ। ମୁଁ ଉକ୍ତ ଦରଖାସ୍ତ ଖଣ୍ଡି ଧରି କନିକା କୋଠିକୁ ଗଲି। ଦୁଇଦିନ ଯିବା ଆସିବା କରିବା ପରେ କନିକା ରାଜାଙ୍କ ସହିତ ଦେଖା ମିଳିଲା। ସେ ମୋର ଦରଖାସ୍ତ ଖଣ୍ଡି ପାଠ କରି ମତେ ସଂସ୍କୃତ ପଢ଼ିବାକୁ ପରାମର୍ଶ ଦେଲେ। "ସଂସ୍କୃତ ପାଠର ଆଜିକାଲି କିଛି ମୂଲ୍ୟ ନାହିଁ, ସଂସ୍କୃତ ପଢ଼ିବାକୁ ମୋର ଇଚ୍ଛା ନୁହେଁ", ଏହା କହିବାରୁ, "କାହିଁକି ସଂସ୍କୃତ ପାଠର କିଛି ମୂଲ୍ୟ ନାହିଁ," ଏହି କଥା ପଚାରି ସେ ମୋ ସହିତ ଟିକିଏ ଯୁକ୍ତି କଲେ। ମତେ କହିଲେ ଇଂରେଜିରେ ତାହାଙ୍କ ସହିତ କଥା ହେବାକୁ। ମୁଁ ସବୁକଥା ଇଂରେଜିରେ କହିପାରେ ନାହିଁ। ଇଂରେଜି କହୁ କହୁ ଓଡ଼ିଆ ମିଶାଇ କହିଦିଏ। ମୋ କଥା ଶୁଣିବାକୁ ତାହାଙ୍କୁ ବୋଧହୁଏ ଭଲ ଲାଗୁଥାଏ। ଏଥିପାଇଁ ସେ ମୋତେ ଇଆଡୁ ସିଆଡୁ କେତେକ କଥା ପଚାରି ଶେଷରେ ମାସରେ ପ୍ରଥମେ ଦୁଇଟି କରି ଟଙ୍କା ସାହାଯ୍ୟ ଦେବାକୁ କହିଲେ। ସ୍କୁଲରେ ନାମ ଲେଖାଇ ଅଧ୍ୟୟନ କଲେ, ମୁଁ କିପରି ପଢୁଛି, ଏହା ଦେଖିଲା ପରେ ସେ ଅଧିକା କିଛି ସାହାଯ୍ୟ କରିବାକୁ ଆଶା ଦେଲେ। ଏହି ଦୁଇଟଙ୍କା ପୁଣି ତିନି ମାସ ପାଇଁ। ସ୍କୁଲରେ ତିନିମାସ ଅଧ୍ୟୟନ କଲା ପରେ ଯାହା ସାହାଯ୍ୟ କରିବାର ହେବ ସେ ତାହା ଦେବେ।

ସେ ଯାହ ହେଉ କଟକରେ ଆସି ଅଧ୍ୟୟନ କରିବା ପାଇଁ ମୋର ଟିକିଏ ଆଶା ହେଲା। ମୁଁ ନିଶ୍ଚୟ କଲି କଟକରେ ରହି ସ୍କୁଲରେ ନାମ ଲେଖାଇ କିଛି ସମୟ ଆଉ ଚେଷ୍ଟା କରିବି। ଏହା ସ୍ଥିର କରି ମୁଁ ନୟାଗଡ଼ ବାହାରିଲି। ଉଦ୍ଦେଶ୍ୟ, ନୟଗଡ଼ଠାରେ ମୋର ଲୁଗାପଟାଦି ଯାହା କିଛି ଅଛି ସେ ସବୁ ନେଇ କଟକ ଫେରିବି।

କଟକ ଛାଡ଼ି ଯେଉଁଦିନ ନୟାଗଡ଼ ଯିବି ସେଦିନ ଶୁଣିଲି ସେ ନୟାଗଡ଼ ଷ୍ଟେଟ୍‌ର ସୁପରିଣ୍ଟେଣ୍ଡେଣ୍ଟ ବାବୁ ଗୌରୀଶ୍ୟାମ ମହାନ୍ତି ପୁରୀ ଆସିଛନ୍ତି। କାରଣ ପୁରୀ ହେଉଛି ତାଙ୍କର ଘର। ଏ ସଂବଦା ପାଇ କୃଷ୍ଣ ମତେ ପରାମର୍ଶ ଦେଲା, ପୁରୀଠାରେ ଯାଇ ଗୌରୀଶ୍ୟାମ ବାବୁଙ୍କ ସହିତ ଦେଖା କରିବାକୁ। ମୁଁ ତାର ପରାମର୍ଶ ଅନୁସାରେ ପୁରୀ ବାହାରିଲି। ପୁରୀ ଏପର୍ଯ୍ୟନ୍ତ ମୁଁ ଦେଖି ନଥାଏ। ପିଲାଦିନୁ ପୁରୀ ଜଗନ୍ନାଥଙ୍କ ନାମ ଶୁଣି ଆସିଛି। ପୁରୀ ଯାଇ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ମନ ମଧ ବ୍ୟଗ୍ର ହେଲା। ସେ ଯାହା ହେଉ ଏହିପରି ଭାବରେ ମୁଁ ପୁରୀ ବାହାରିଲି। କିନ୍ତୁ ପୁରୀରେ କେଉଁଠାକୁ ଯିବି ଏବଂ କେଉଁଠାରେ ରହିବି ମତେ କିଛି ଜଣା ନଥାଏ। ରେଳରେ ଯାଉ ଯାଉ ବାଟରେ ଜଣେ ବଙ୍ଗାଳି ଯାତ୍ରୀଙ୍କ ସହିତ ପରିଚୟ ହେଲା। ମୁଁ ତାଙ୍କ ସଙ୍ଗରେ ଯାଇ ଗୋଟିଏ ଧର୍ମଶାଳାରେ ରହିଲି। ତହିଁ ଆରଦିନ ଉପରବେଳା ଗୌରୀଶ୍ୟାମ ବାବୁଙ୍କ ଘରଠାରେ ଉପସ୍ଥିତ ହେଲି। ଶୁଣିଲି, ଗୌରୀଶ୍ୟାମ ବାବୁ ପୁରୀକୁ ଆସି ନାହାନ୍ତି। ଏ ସଂବାଦଟି ପାଇ

ମୁଁ କଣ କରିବି, କେଉଁଠାକୁ ଯିବି କିଛି ସ୍ଥିର କରି ପାରିଲି ନାହିଁ। ପୁରୀରୁ କିପରି ନୟାଗଡ଼ ଫେରିଯିବି ଏହି ଚିନ୍ତା ମଧ୍ୟ ମନକୁ ଅସ୍ଥିର କଲା। ଏହିପରି ଭାବରେ ଚିନ୍ତିତ ହୋଇ ମନ ଦୁଃଖରେ ତାଙ୍କ ଘରଠାରେ ବସି ରହିଲି। ସନ୍ଧ୍ୟା ହେଲା। ତାହାଙ୍କର ସାନ ଭାଇ ରାଧାଶ୍ୟାମ ବାବୁ କଚେରୀରୁ ଫେରିଲେ। ଶ୍ରୀଯୁକ୍ତ ରାଧାଶ୍ୟାମ ମହାନ୍ତି ପୁରୀର ଜଣେ ଜଣାଶୁଣା ଓକିଲ। ସେ କଚେରୀରୁ ଫେରି ମତେ ଦେଖି କିଏ ବୋଲି ପଚାରିବାରେ ମୁଁ କହିଲି, "ମୁଁ ଜଣେ ଛାତ୍ର। ନୟାଗଡ଼ ମୋର ଘର। ଆପଣଙ୍କ ସହିତ ମୋର କେତେକ କଥା ଅଛି। ଆପଣ କଚେରୀରୁ ଫେରୁଛନ୍ତି। ଆପଣଙ୍କ ସନ୍ଧ୍ୟା ନିତ୍ୟକର୍ମ ସାରନ୍ତୁ। ମୁଁ ପରେ କଥା ହେବି।" ଏହା ଶୁଣି ସେ ଘରକୁ ଯାଇ ତାହାଙ୍କ ନିତ୍ୟକର୍ମ ସାରି ବୈଠକଖାନାକୁ ଫେରିଲେ। ପୁରୀ ମୁଁ କିପରି ଏବଂ କାହିଁକି ଆସିଛି ସେସବୁ ଶୁଣାଇଲି। ସେ ମୋ ଠାରୁ ମୋର ସମସ୍ତ ବୃତ୍ତାନ୍ତ ଶୁଣି ତାହାଙ୍କ ଘରେ ସେଦିନ ଆଶ୍ରୟ ଦେଲେ। ତାର ପରଦିନ ନୟାଗଡ଼ ଫେରିଯିବା ପାଇଁ ମତେ ଦୁଇଟଙ୍କା ବାଟ ଖର୍ଚ୍ଚ ଏବଂ ଗୌରୀଶ୍ୟାମ ବାବୁଙ୍କ ନିକଟକୁ ଖଣ୍ଡିଏ ସୁପାରିଶ ପତ୍ର ମଧ୍ୟ ଦେଲେ। ଶ୍ରୀଯୁକ୍ତ ରାଧାଶ୍ୟାମ ବାବୁ ମତେ ଏପରି ସହାନୁଭୂତି ଦେଖାଇବେ ବୋଲି ମୁଁ ଆଶା କରି ନ ଥିଲି। ସେ ଯାହା ହେଉ ମୁଁ ତାହାଙ୍କଠାରୁ ସୁପାରିଶ ପତ୍ର ଖଣ୍ଡି ଧରି ଠିକ ସମୟରେ ନୟାଗଡ଼ରେ ଉପସ୍ଥିତ ହେଲି। ଗୌରୀଶ୍ୟାମ ବାବୁଙ୍କ ସହିତ ଦେଖାକରି ତାହାଙ୍କ ଭାଇ ଦେଇଥିବା ପତ୍ର ଖଣ୍ଡି ତାହାଙ୍କୁ ଦେଲି। ସେ ଉକ୍ତ ପତ୍ରଖଣ୍ଡି ପାଠ କରି ଆଉ ଖଣ୍ଡିଏ ଦରଖାସ୍ତ ଦେବାକୁ ମତେ କହିଲେ। ଆଉ ଖଣ୍ଡିଏ ଦରଖାସ୍ତ ଦେଇ ମୁଁ ଦଶପଲ୍ଲା ଗଲି।

ଦଶପଲ୍ଲାରେ ଶ୍ରୀଯୁକ୍ତ ଭାବଗ୍ରାହୀ ବିଶ୍ୱାଳଙ୍କ ନିକଟରେ କିଛି ସାହାଯ୍ୟ ପାଇଁ ଖଣ୍ଡିଏ ଦରଖାସ୍ତ ଦେଲି। କିନ୍ତୁ ସେ ମୋର ଦରଖାସ୍ତ ଖଣ୍ଡି ପାଇ ନଥି ସାମିଲ କରି ରଖିଲେ। କୌଣସି ପ୍ରକାର କିଛି ସାହାଯ୍ୟର ଆଶା ମଧ୍ୟ ଦେଲେ ନାହିଁ। ସେ ଯାହା ହେଉ ଦଶପଲ୍ଲାରୁ ମୋର କେତେକ ପରିଚିତ ବନ୍ଧୁଙ୍କ ନିକଟରୁ ୮/୧୦ଟି ପର୍ଯ୍ୟନ୍ତ ଟଙ୍କା ସାହାଯ୍ୟ ଧରି ନୟାଗଡ଼ ଆସିଲି। ନୟାଗଡ଼ରୁ ସେହିପରି କେତୋଟି ଟଙ୍କା ମୋର ବନ୍ଧୁ ହିତାକାଂକ୍ଷୀମାନଙ୍କ ଠାରୁ ସାହାଯ୍ୟ ପାଇଲି। ଏହିତକ ଧରି ୧୯୧୧ ଜାନୁୟାରୀ ମାସ ଶେଷରେ ମୁଁ ପୁଣି ଆସି କଟକରେ ଉପସ୍ଥିତ ହେଲି। ଏଥର କଟକ ଆସି ଚାନ୍ଦନିଚୌକି ହରିହରଘାଟ ନିକଟ ଗୋଟିଏ ବସାରେ ରହିଲି। ଜୟକୃଷ୍ଣ ପଟ୍ଟନାୟକ ନାମରେ ତିଗିରିଆର ଜଣେ କଲେଜ ଛାତ୍ର ଏହି ବସାରେ ଥାନ୍ତି। ସେ ଜଣେ ଗଡ଼ଜାତର ଛାତ୍ର। ଗଡ଼ଜାତରୁ ଛାତ୍ର କିପରି କଟକରେ ଅଧିକ ସଂଖ୍ୟାରେ ପାଠ ପଢ଼ିବେ, ଏହିପରି ତାଙ୍କର ମନର ଭାବ ଥାଏ। ଏପରି ଅବସ୍ଥାରେ ତାଙ୍କର ମୋ ପ୍ରତି ଟିକିଏ ସହାନୁଭୂତି ହେବା ସ୍ୱାଭାବିକ।

ଜୟିବାବୁଙ୍କ ବସାରେ ରହିଲି ସତ୍ୟ, କିନ୍ତୁ ମେସ୍ ଖର୍ଚ୍ଚ ଦେବି କେଉଁଠାରୁ ? ଜୟିବାବୁ ଜଣେ ଛାତ୍ର। ସେ କିଛି ମୋର ଖର୍ଚ୍ଚ ଚଳାଇ ପାରିବେ ସେପରି ନୁହେଁ। ଆସିଲା ବେଳକୁ ଯେଉଁ କେତୋଟି ଟଙ୍କା ଆଣିଥିଲି, ତହିଁରୁ ଅର୍ଦ୍ଧେକ ବାଟଖର୍ଚ୍ଚ ଓ ଲୁଗାପଟା ଆଦିରେ ଖର୍ଚ୍ଚ ହୋଇ ଯାଇଛି। ଯାହା କିଛି ଥିଲା, ତାହା କଟକରେ ଗୋଟିଏ ମାସ ଖର୍ଚ୍ଚ ଯାଏ ବି ନାହିଁ। କନିକା ରାଜାଙ୍କ ସାହାଯ୍ୟ ମାସକୁ ଦୁଇ ଟଙ୍କା ହିସାବରେ ପାଇବାର କଥା। କିନ୍ତୁ ସ୍କୁଲରେ ନାମ ନ ଲେଖାଇଲେ ସେଠାରୁ ମିଳିବ ନାହିଁ। ନୟାଗଡ଼ର ସାହାଯ୍ୟ କଣ କେତେ ଏବଂ କେବେ ମିଳିବ କିଛି ସ୍ଥିର ନାହିଁ। ତା ଉପରେ ନିର୍ଭର କରି ସ୍କୁଲରେ ନାମ ଲେଖାଇବି କିପରି ? କଟକରୁ କିଛି ସାହାଯ୍ୟ ସଂଗ୍ରହ କରିବା ଆଶାରେ କେତେଜଣ ଭଦ୍ରବ୍ୟକ୍ତିଙ୍କ ନିକଟକୁ ଗଲି। କିନ୍ତୁ କାହାରିଠାରୁ କିଛି ସାହାଯ୍ୟ ଆଶା ତ ପାଇଲି ନାହିଁ, ବରଂ ଜଣେ ଦୁଇ ଜଣ ବିଶିଷ୍ଟ ବ୍ୟକ୍ତି ଏପରି ବିରକ୍ତ ହୋଇଥିଲେ ଯେ, ମୁଁ ସେମାନଙ୍କ ନିକଟରୁ ଫେରି ଆସିଲା ବେଳକୁ ନିରାଶରେ କାନ୍ଦି ପକାଇଛି।

ଏଣେ ମିଶନ ସ୍କୁଲରେ ଅଧ୍ୟୟନ କରିବା ଇଚ୍ଛାରେ ସେହି ସ୍କୁଲକୁ ଯାଏ। ଶୂରଦେଓ ହଣ୍ଡରସନ୍ ସାହେବଙ୍କୁ କହିଥାନ୍ତି ମତେ ସ୍କୁଲ ଦରମା ଛାଡ଼ ଦେବାପାଇଁ। ଏହି ଦରମା ଛାଡ଼ ପାଇଁ ଖଣ୍ଡିଏ ଦରଖାସ୍ତ ଦେଇଥାଏ। ମାତ୍ର ସ୍କୁଲରେ ନାମ ଲେଖାଇ ନଥାଏ। ଦରମା ଛାଡ଼ ନ ପାଇଲେ ମୋର ପଢ଼ିବା ଏକାବେଳକେ ଅସମ୍ଭବ। ଏପରି ଅବସ୍ଥାରେ ନାମ ଲେଖାଇବି କିପରି ? ମିଶନ ସ୍କୁଲରେ ୪ର୍ଥ ଶ୍ରେଣୀର ଦରମା ମାସକୁ ଟ୧/ ଦୁଇମାସର ଦରମା, ନାମ ଲେଖାଇବା ଫିସ୍ ଏହିପରି ତିନିଟଙ୍କା ବାରଅଣା ଦେଲେ ମୋର ନାମ ଲେଖା ହେବ। ଏତେ ଟଙ୍କା ମୁଁ ଦେଉଛି କେଉଁଠାରୁ ? ସୁତରାଂ ସ୍କୁଲରେ ମୋର ନାମ ନ ଥାଏ। ମୁଁ ଯାଇ ସ୍କୁଲରେ ସେହିପରି ଭାବରେ ବସେ। ବହିପତ୍ର ମଧ ପଢ଼ିବାକୁ କିଛି ନଥାଏ। ଶିକ୍ଷକମାନେ ଅନୁଗ୍ରହ କରି ମତେ କେହି କିଛି କହନ୍ତି ନାହିଁ। ମାତ୍ର ସ୍କୁଲର କିରାନୀ ନାମ ନ ଲେଖାଇ କ୍ଲାସରେ ବସିବାର ଜାଣିପାରି ମତେ ଆସି କ୍ଲାସରୁ ତଡ଼ି ଦିଅନ୍ତି।

ଏହିପରି ଭାବରେ ଦୁଇ ତିନିମାସ ବିତିଗଲା। କନିକା ରାଜାଙ୍କ ସାହାଯ୍ୟ ମାସକୁ ଦୁଇଟଙ୍କା ହିସାବରେ ତିନିମାସରେ ଛ'ଟି ଟଙ୍କା ଆଣିଲି। କନିକା ରାଜା ବିଲାତ ଚାଲିଯାଇଥିବାରୁ ତାହାଙ୍କ ସହିତ ଆଉ ଦେଖା ହୋଇ ପାରିଲା ନାହିଁ। ସେ ବିଲାତରୁ ଫେରିଲା ବେଳକୁ ତାଙ୍କଠାରୁ ସାହାଯ୍ୟ ଆଣିବା ମୋର ଦରକାର ନଥିଲା। ସେ ଯାହାହେଉ ଏପର୍ଯ୍ୟନ୍ତ କଟକରେ ରହି ମୁଁ କିଛି ବିଶେଷ ସୁବିଧା କରି ପାରିଲି ନାହିଁ। ନୟାଗଡ଼ରୁ ମଧ କିଛି ଆଶାର ସମ୍ବାଦ ପାଇ ନାହିଁ। ଦିନକୁ ଦିନ କଟକରେ ରହି ଅଧ୍ୟୟନ କରିବାର ସମସ୍ତ ପ୍ରକାର ଆଶା ଲୋପ ପାଉଛି।

ଇତିମଧ୍ୟରେ ଜୟକୃଷ୍ଣ ବାବୁ ହଠାତ୍ ନିମୋନିଆ ରୋଗରେ ପୀଡ଼ିତ ହେଲେ। ତିଗିରିଆରୁ ତାହାଙ୍କର ପିତା ଆସି ବହୁତ ଚିକିତ୍ସା କରାଇଲେ। କିନ୍ତୁ କାହିଁରେ କିଛି ହେଲା ନାହିଁ। ତାହାଙ୍କର ଜୀବନ ସେହି ରୋଗରେ ନିର୍ବାଣପ୍ରାପ୍ତି ହେଲା। ଜୟିବାବୁଙ୍କ ମୃତ୍ୟୁରେ ମୁଁ ମଧ୍ୟ ଅତ୍ୟନ୍ତ ଅଧୀର ହୋଇ ପଡ଼ିଲି। କଟକରେ ରହି ଅଧ୍ୟୟନ କରିବାର ମୋର ସମସ୍ତ ଆଶା ଲୋପ ପାଇଲା। ତଥାପି ଆଉ କିଛିଦିନ ରହି ଭାଗ୍ୟ ପରୀକ୍ଷା କରିବାକୁ ସାହସ କଲି। ମନର ଏପରି ଅବସ୍ଥାରେ ଦିନେ କ୍ଲାସର ସମସ୍ତ ଛାତ୍ର ଓ ଶିକ୍ଷକ ମୋ ପ୍ରତି ଅତ୍ୟନ୍ତ ସହାନୁଭୂତି ଦେଖାଇଥିଲେ। ସେତେବେଳକୁ ଶ୍ରୀଯୁକ୍ତ ଦୈତ୍ୟାରି ମିଶ୍ର କ୍ଲାସରେ ପଢ଼ାଉଥାନ୍ତି। ସେ ସେହି ମୁହୂର୍ତ୍ତରେ ନାମ ଲେଖା ଫି ଟ୧/ ଦେଇ ସ୍କୁଲରେ ମୋର ନାମ ଲେଖାଇ ଦେଲେ। କଥା ହେଲା, ସ୍କୁଲ ଦରମା ଯଦି ମୋର ଛାଡ଼ ହୋଇଯାଏ ତେବେ ମୋତେ ଆଉ କିଛି ଦେବାକୁ ପଡ଼ିବ ନାହିଁ, ନଚେତ୍ ଗତମାସରେ ବାକି ଦରମା ମତେ ଦେବାକୁ ପଡ଼ିବ। ତେଣିକି ଦରମା ଦେଇ ପାରିଲେ ସ୍କୁଲରେ ପଢ଼ିବି, ନଚେତ୍ ସ୍କୁଲ ଛାଡ଼ିବାକୁ ହେବ।

ଏହିପରି ଆଶା ନିରାଶା ଭିତରେ ମୋର ଜୀବନ ଅତିବାହିତ ହେଉଥାଏ। ଦିନେ ଦିନେ ଆଶାରେ ପ୍ରାଣ ପୂରି ଉଠେ, ଦିନେ ଦିନେ ନିରାଶାରେ ଚାରିଦିଗ ଅନ୍ଧକାର ଦେଖାଯାଏ। ପାଠ ନ ପଢ଼ିଲେ ମୁଁ କୁଆଡ଼େ ଯିବି ଏବଂ କଣ କରିବି କିଛି ବାଟ ଦେଖାଯାଏ ନାହିଁ। ଏହିପରି ଅବସ୍ଥାରେ ପୁଣି ଦଶପଲ୍ଲା ଫେରି ଯିବାକୁ ମନ ଡାକେ ନାହିଁ। ଦଶପଲ୍ଲା ଫେରି ଯାଇ ଅବା କଣ କରିବି, କେଉଁଠାରେ ରହିବି। ଏପରି ଅବସ୍ଥାରେ କଟକରେ ସୁଖ ଦୁଃଖରେ ପଡ଼ି ରହି ଭାଗ୍ୟ ପରୀକ୍ଷା କରିବା ଦରକାର। ଏହି ସମୟରେ ବର୍ତ୍ତମାନର ଆଚାର୍ଯ୍ୟ ହରିହର ଦାସ କଟକରେ ଥାନ୍ତି। ସେ ମହାଶୟ ସେତେବେଳକୁ କଟକ ଏକାଡ଼େମୀ ସ୍କୁଲରେ ଶିକ୍ଷକ। ମୋର ଏପରି ଅନିଶ୍ଚିତ ଅବସ୍ଥାରେ ତାହାଙ୍କ ସହିତ ଦେଖା ହୋଇଥିଲା। ଏପରି କଠୋର ସଂଗ୍ରାମ କରି ବର୍ତ୍ତମାନ ଶିକ୍ଷା ଲାଭରେ କୌଣସି ମୂଲ୍ୟ ନାହିଁ ବୋଲି ସେ ମତେ ବୁଝାଇଥିଲେ। ତାହାଙ୍କ ସହିତ ବହୁତ ଯୁକ୍ତି ପରେ ସେ ପୁଣି ମତେ ସ୍କୁଲରେ ପଢ଼ିବାକୁ ପରାମର୍ଶ ଦେଲେ।

କ୍ରମେ ମାର୍ଚ୍ଚ ଶେଷ ହୋଇ ଅପ୍ରେଲ ମାସ ଆରମ୍ଭ ହେଲା। ଦିନକୁ ଦିନ ମୋର ନୈରାଶ୍ୟ ବଢ଼ିବାକୁ ଲାଗିଲା। ଆଉ କୌଣସି ଉପାୟ ନ ପାଇ ଶେଷରେ କଟକ ଛାଡ଼ି ଯିବାକୁ ନିଶ୍ଚୟ କଲି। କଟକ ଛାଡ଼ି ଦଶପଲ୍ଲା କିମ୍ବା ନୟାଗଡ଼ କେଉଁଠାକୁ ଯିବି, ସେଠାରେ ଯାଇ କଣ କରିବି ଏହି କଥା ଭାବୁଛି, ଇତି ମଧ୍ୟରେ ମୁଁ ଶ୍ରୀଯୁକ୍ତ ରେବା ରାୟଙ୍କ ନାମ ଶୁଣିଲି। ମୁଁ ତାହାଙ୍କ ନିକଟରେ ଉପସ୍ଥିତ ହୋଇ କିଛି ସାହାଯ୍ୟ ପାଇଁ ଅନୁରୋଧ କଲି। କଟକରେ ରେବା ରାୟ ଗୋଟିଏ ଉଚ୍ଚ ଇଂରେଜି ବାଳିକା ସ୍କୁଲ ସ୍ଥାପନ କରିଥିଲେ। ନାନା କାରଣରୁ ସ୍କୁଲଟି ରହି ପାରିଲା ନାହିଁ।

ସ୍କୁଲଟି ଭାଙ୍ଗିଯିବାରୁ ତାଙ୍କର ପିତା ଶ୍ରୀ ଜଗନ୍ନାଥ ରାଓଙ୍କର କାଫୁଲାବଜାରରେ ଥିବା କୋଠାରେ ସେ ରହିଥାନ୍ତି। ତାହାଙ୍କ ପିତା ଜଗନ୍ନାଥ ରାଓ ବୌଦ ଷ୍ଟେଟ୍‌ର ଦେୱାନ। ବୌଦରୁ ଖର୍ଚ୍ଚ ଆସିଲେ ସେ ଚଳନ୍ତି। ତାହାଙ୍କର ଦୁଇ ପୁତ୍ର ସେତେବେଳକୁ ସ୍କୁଲରେ ଅଧ୍ୟୟନ କରୁଥାନ୍ତି। ଏପରି ଅବସ୍ଥାରେ ମଧ୍ୟ ସେ ମୋର କଥାରେ ତରଳି ଯାଇ ମତେ ସମସ୍ତ ପ୍ରକାର ସାହାଯ୍ୟ କରିବାକୁ ଆଶା ଦେଲେ। ମୁଁ ଯାଇ ତାହାଙ୍କର କାଫୁଲାବଜାର ବସାରେ ରହିଲି। ସେ କେବଳ ଖାଇବା ପିନ୍ଧିବାର ଯେ ସମସ୍ତ ଭାର ବହନ କଲେ ତାହା ନୁହେଁ, ବହିପତ୍ର ମଧ୍ୟ କିଣି ଦେଲେ। ମୋର ସ୍କୁଲ ଦରମା ମଧ୍ୟ ଦେବାକୁ ପ୍ରସ୍ତୁତ ଥିଲେ, କିନ୍ତୁ ତାହାଙ୍କଠାରୁ ସ୍କୁଲ ଦରମାପାଇଁ ଟଙ୍କା ନେବାର ଆବଶ୍ୟକ ହୋଇ ନଥିଲା। ଏହି ଘଟଣାର ୩/୪ ଦିନ ପରେ ସ୍କୁଲରେ ମୋର ପୂରା ଦରମା ଛାଡ଼ ହୋଇଥିବାର ସଂବାଦ ପାଇଲି। ଏହିସବୁ ଏକ ସପ୍ତାହ ମଧ୍ୟରେ ଘଟିଲା। ମୋର ନୈରାଶ୍ୟର ଯେପରି ସୀମା ନ ଥିଲା ବର୍ତ୍ତମାନ ମୋର ଆନନ୍ଦର ତଦ୍ରୂପ ସୀମା ରହିଲା ନାହିଁ। ରେବା ରାୟ ମୋର ପଢ଼ିବାର ସଂପୂର୍ଣ୍ଣ ଭାର ଗ୍ରହଣ କରି ମତେ କହିଲେ, ''ଗୋବିନ୍ଦ, ଭଲ କରି ପାଠ ପଢ଼, କିନ୍ତୁ ପାଠ ପଢ଼ି ତୁମ୍ଭେ ଦୀନ ଦୁଃଖୀଙ୍କ କଥା ଯେପରି ଭୁଲି ନ ଯାଅ—ଏତିକି ମୋର ତୁମ୍ଭଙ୍କୁ ଅନୁରୋଧ ଓ ଉପଦେଶ।''

ଏହିପରି ଭାବରେ ମୁଁ ଆସି ରେବା ରାୟଙ୍କ ଘରେ ରହିଲି। ସଚ୍ଚି ରାୟ ଓ ସୁଧୀରଚନ୍ଦ୍ର ରାୟ ନାମରେ ରେବା ରାୟଙ୍କର ଦୁଇଟି ପୁତ୍ର। ଏ ସଚ୍ଚି ବାବୁ ସେହି ବର୍ଷ ମାଟ୍ରିକ୍ ପରୀକ୍ଷା ଦେଉଥାନ୍ତି। ସୁଧୀର ବାବୁଙ୍କ ଡାକ ନାମ ଫୁଟ ବାବୁ। ଫୁଟୁ ବାବୁ କଲେଜିଏଟ୍ ସ୍କୁଲର ସେକେଣ୍ଡ କ୍ଲାସରେ ଅଧ୍ୟୟନ କରୁଥାନ୍ତି। ଫୁଟୁବାବୁ ବୟସରେ ମୋଠାରୁ ସାନ ହେଲେ ମଧ୍ୟ ପଢ଼ାଶୁଣା ଓ ସାଧାରଣ ଜ୍ଞାନ ତାଙ୍କର ମୋଠାରୁ ବହୁତ ବେଶୀ। କ୍ଲାସ ପଢ଼ାପଢ଼ିରେ ମୁଁ ତାଙ୍କଠାରୁ ବହୁତ ସାହାଯ୍ୟ ପାଇଥିଲି। ଦୁହିଁଙ୍କ ମଧ୍ୟରେ ବନ୍ଧୁତା ମଧ୍ୟ ଶୀଘ୍ର ବଢ଼ିଗଲା। ଦୁହେଁ ଏକାଠି ବସି ପାଠ ପଢୁ, ଏକ ସଙ୍ଗରେ ଖେଳୁ, ଗଛରେ ଚଢ଼ି ପିଜୁଳି, ବେଲ ଖାଉ, ସଚ୍ଚି ବାବୁଙ୍କୁ ଦାଦା ବୋଲି ଡାକୁ। ରେବା ରାୟଙ୍କୁ ମା ବୋଲି ମୁଁ ସମ୍ବୋଧନ କରେ। ଏହି ସଚ୍ଚି ଦାଦାଙ୍କୁ ଯେତେ ଭୟ ମାଙ୍କୁ ସେତେ ଭୟ ନଥାଏ। ଆମ୍ଭ ଦୁହିଁଙ୍କ ମଧ୍ୟରୁ କାହାରିକି ଗଛରେ ଚଢ଼ିବାର ଦେଖିଲେ, ସଚ୍ଚି ଦାଦା ଭାରୀ ଗାଳି ଦିଅନ୍ତି। ପଢ଼ିବା ସମୟରେ ନ ପଢ଼ି ବସି ଗଳ୍ପ କରୁଥିଲେ ସେ ମଧ୍ୟ ମାଙ୍କୁ କହି ଗାଳି ଦିଅନ୍ତି। ରେବା ରାୟ ସକାଳ ବେଳା ୩/୪ ଘଣ୍ଟା ସମୟ ଗୋଟିଏ ଗଛତଳେ ବସି ଉପାସନାରେ ସମୟ କଟାଇ ଦିଅନ୍ତି। ଦିନରେ ଥରେ ମାତ୍ର ଭୋଜନ କରନ୍ତି। ଅନେକ ସମୟରେ କହନ୍ତି, ଦୀନ ଦରିଦ୍ରଙ୍କ ସେବା ଭଗବାନଙ୍କର ଯଥାର୍ଥ ସେବା। ଏସବୁ ମୁଁ ଶୁଣେ, କିନ୍ତୁ କିଛି ହୃଦୟଙ୍ଗମ କରି ପାରେ ନାହିଁ।

ଏହିପରି ଭାବରେ ଅତି ଅଳ୍ପ ଦିନରେ ମୁଁ ତାଙ୍କ ପରିବାରର ଜଣେ ନିଜର ଲୋକ ହୋଇ ଯାଇଥିଲି। ମୋର ମନରୁ ସମସ୍ତ ଚିନ୍ତା, ଦୁଃଖ ଓ ଭାବନା ପାସୋର ଯାଇଥିଲା। ଇତି ମଧ୍ୟରେ ନୟାଗଡ଼ ଷ୍ଟେଟରୁ ମୁଁ ଖଣ୍ଡିଏ କାର୍ଡ଼ ପାଇଲି। ତହିଁରେ ଲେଖା ଥିଲା, ମାସରେ ନଅଟଙ୍କା ହିସାବରେ ମୋର ଗୋଟିଏ ବୃତ୍ତି (Schalarship) ମଞ୍ଜୁର ହୋଇଛି। ଏହି ସଂବାଦ ପାଇ ମୁଁ ପ୍ରଥମେ ବିଶ୍ୱାସ କରି ପାରିଲି ନାହିଁ। ପତ୍ରଖଣ୍ଡି ୫/୭ ଥର ପାଠ କଲା ପରେ ମନରେ ବିଶ୍ୱାସ ଜନ୍ମିଲା। ଏ ସମ୍ବାଦରେ ମୋର ଆନନ୍ଦର ସୀମା ରହିଲା ନାହିଁ। ରେବା ରାୟଙ୍କୁ ଏ ସଂବାଦ ଦେଲି। ସେ ଏହା ଶୁଣି ଭାରୀ ଖୁସି ହୋଇ କହିଲେ, "ଭଗବାନ ଯେତେବେଳେ ସାହାଯ୍ୟ କରନ୍ତି, ଏହିପରି ସାହାଯ୍ୟ କରନ୍ତି।"

ଏ ସଂବାଦରେ ମୁଁ ଟିକିଏ ଆତ୍ମବିହ୍ୱଳ ହୋଇଗଲି। ମାସକୁ ନଅଟଙ୍କା ମତେ ବୋଧେ ହେଲା ନଅଶହ ପରି। ଏତେଗୁଡ଼ାଏ ଟଙ୍କା ମୁଁ କଣ କରିବି, କିପରି ଖର୍ଚ୍ଚ କରିବି, ମୁଁ କିଛି ବୁଝି ପାରିଲି ନାହିଁ। ମନର ଏପରି ଅବସ୍ଥାରେ, ଦିନେ ତିନିମାସର ସାହାଯ୍ୟ ଏକକାଳୀନ ଟ୨୭ଙ୍କା ମନିଅର୍ଡ଼ର ପହଞ୍ଚିଲା। ମନିଅର୍ଡ଼ର ମୁଁ ସ୍କୁଲରେ ପାଇଲି। ସ୍କୁଲ ଛୁଟି ପରେ ବସାକୁ ଫେରି ସବୁତକ ଟଙ୍କା ରେବା ରାୟଙ୍କ ନିକଟରେ ନେଇ ରଖିଦେଲି। ରେବା ରାୟ ଏତେ ଟଙ୍କା କିପରି ମୁଁ ପାଇଲି ବୋଲି ପଚାରିବାରେ ଗତ ତିନିମାସର ଟଙ୍କା ଏକକାଳୀନ ଆସିଛି ବୋଲି ମୁଁ ବୁଝାଇ ଦେଲି। ରେବା ରାୟ କହିଲେ, "ଏ ଟଙ୍କା ମତେ କାହିଁକି ଦେଉଛ? ତୁମେ ନେଇ ପାଖରେ ରଖ। ତୁମର ଅନେକ ଅସୁବିଧା ଥିବ। ତୁମେ ତୁମର ସୁବିଧା ଦେଖି ଖର୍ଚ୍ଚ କରିବ। ମୋ ନିକଟରେ ରଖାଇଲେ, ମୋଠାରୁ ନେଇ ଖର୍ଚ୍ଚ କରିବାକୁ ତୁମ୍ଭକୁ ଟିକିଏ ଅଡୁଆ ବୋଧ ହେବ।" ରେବା ରାୟଙ୍କଠାରୁ ଏହା ଶୁଣି ମୁଁ କହିଥିଲି, "ମୋର କୌଣସି ଦରକାର ନାହିଁ। ମୋର ଯାହା ଦରକାର ହେଉଛି ଆପଣ ଦେଉଛନ୍ତି। ଟଙ୍କା ନେଇ ମୁଁ କଣ କରିବି?" ମୋଠାରୁ ଏପରି ଉତ୍ତର ଶୁଣିଲା ପରେ ରେବା ରାୟ ଟିକିଏ ମତେ ଚାହିଁ, "ହଉ ତୁମର ଟଙ୍କା ମୋ ନିକଟରେ ଜମା ରହିଲା" ଏତିକି କହି ଟଙ୍କାତକ ରଖିଥିଲେ। ଏହାପରେ ଗ୍ରୀଷ୍ମଛୁଟି ହେଲା। ସେହିବର୍ଷ ରେବା ରାୟ ତାଙ୍କର ପୁତ୍ର କନ୍ୟାଙ୍କୁ ଧରି ବୌଦ ତାହାଙ୍କ ପିତାଙ୍କ ନିକଟକୁ ଗଲେ। ମୁଁ ମଧ୍ୟ ଛୁଟିରେ ଦଶପଲ୍ଲା ବାହାରିଲି।

ଛୁଟିରେ ଦଶପଲ୍ଲାକୁ ଗଲି। ଏଥର ଦେଖୁଛି ସମସ୍ତଙ୍କ ବ୍ୟବହାର ଅନ୍ୟ ପ୍ରକାରର। ସମସ୍ତଙ୍କ ନିକଟରୁ ସ୍ନେହ ଆଦର ମିଳୁଛି। ମୁଁ କଟରେ ଅଧ୍ୟୟନ କରିବା ହେତୁରୁ ଦଶପଲ୍ଲାରେ ମୋ ପ୍ରତି ସମସ୍ତେ ଟିକିଏ ଆକୃଷ୍ଟ ହୋଇଛନ୍ତି। କାରଣ ଦଶପଲ୍ଲାରୁ ଏପର୍ଯ୍ୟନ୍ତ କେହି କଟକ ପାଠ ପଢ଼ିବାକୁ ଯାଇ ନାହାନ୍ତି, ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ। ନୟାଗଡ଼ରେ ମୁକ୍ତିଆରି କରୁଥିବା ଶ୍ରୀଯୁକ୍ତ ଲିଙ୍ଗରାଜ ଦାସଙ୍କୁ

ଛାଡ଼ି ଦେଲେ ଏପର୍ଯ୍ୟନ୍ତ ଆଉ କେହି କଟକରେ ପଢ଼ି ଏଣ୍ଟ୍ରାନ୍ସ କିମ୍ବା ମାଟ୍ରିକ୍ ପାସ କରି ନାହାନ୍ତି। ମୋ ପୂର୍ବରୁ ଲିଙ୍ଗରାଜ ପଣ୍ଡା ଓ ତ୍ରିଲୋଚନ ମିଶ୍ର ନାମରେ ଦୁଇଟି ଛାତ୍ର କଟକ ଯାଇ ସ୍କୁଲରେ ନାମ ଲେଖାଇଥିଲେ। ମାତ୍ର ସେମାନେ କିଛି ସମୟ ରହି ଫେରି ଆସିଥିଲେ। କୃଷ୍ଣ ଅବଶ୍ୟ କଟକରେ ପଢ଼ୁଛି, କିନ୍ତୁ ସେ ଏଣିକି ନୟାଗଡ଼ର ଛାତ୍ର କହିଲେ ଚଳେ। ବହୁ ବର୍ଷ ପରେ ମୁଁ ଦଶପଲ୍ଲାରୁ କଟକକୁ ଅଧ୍ୟୟନ କରିବାକୁ ଆସୁଛି। ଏପରି ଅବସ୍ଥାରେ ମୋ ପ୍ରତି ସମସ୍ତଙ୍କର ଦୃଷ୍ଟି ଆକୃଷ୍ଟ ହେବା ସ୍ୱାଭାବିକ। ସେ ଯାହା ହେଉ, ଛୁଟିରେ ମୁଁ ଦଶପଲ୍ଲା, ଖଣ୍ଡପଡ଼ା ଓ ନୟାଗଡ଼ ହୋଇ ଯଥା ସମୟରେ କଟକରେ ଉପସ୍ଥିତ ହେଲି। କଟକ ଫେରିବା ପୂର୍ବରୁ ସ୍ଥିର କରିଥାଏ, ରେବା ରାୟଙ୍କଠାରୁ ସାହାଯ୍ୟ ଗ୍ରହଣ କରିବା ଆଉ ମୋର ଦରକାର ନାହିଁ। ମୁଁ ତାହାଙ୍କ ଘର ଛାଡ଼ି ହରିହର ଘାଟ ବସାରେ ଆସି ରହିବି। କଟକ ଫେରିଲା ବେଳକୁ ରେବା ରାୟ ମଧ୍ୟ ବୌଦରୁ ଫେରିଥାନ୍ତି। ମୁଁ ତାହାଙ୍କୁ ତାହାଙ୍କ ଘର ଛାଡ଼ିବା କଥା କହିଲି। ମୁଁ କହିଲି, "ମାସକୁ ନଅଟଙ୍କା ମୁଁ ନୟାଗଡ଼ରୁ ସାହାଯ୍ୟ ପାଇଲି। ଏଥିରେ ମୁଁ ଆନନ୍ଦରେ ଚଳି ପାରିବି। ମୋର କୌଣସି ଅସୁବିଧା ହେବ ନାହିଁ। ଆପଣ ମତେ ଯେଉଁ ସାହାଯ୍ୟ ଦେଉଛନ୍ତି, ତାହା ଆଉ ଗୋଟିଏ କେହି ଗରିବ ଛାତ୍ର ପାଇଲେ ସେ ପଢ଼ି ପାରିବ। ସୁତରାଂ ଆପଣଙ୍କ ସାହାଯ୍ୟ ଗ୍ରହଣ କରିବା ମୋର ଆଉ ଆବଶ୍ୟକ ନାହିଁ।" ମୋଠାରୁ ଏପରି ପ୍ରସ୍ତାବ ଶୁଣି ରେବା ରାୟ ଅତ୍ୟନ୍ତ ଖୁସି ହୋଇ କହିଥିଲେ, "ଗୋବିନ୍ଦ, ତୁମ୍ଭର କଥା ଶୁଣି ମୁଁ ବଡ଼ ଆନନ୍ଦିତ ହେଲି। ଭଗବାନ ତୁମ୍ଭର ମଙ୍ଗଳ କରିବେ। ତୁମ୍ଭେ ମନ ଦେଇ ପାଠ ପଢ଼।"

ଏହିପରି ଭାବରେ ରେବା ରାୟଙ୍କଠାରୁ ବିଦାୟ ନେଇ ତାହାଙ୍କ ଘର ଛାଡ଼ି ଆସି ହରିହର ଘାଟରେ ରହିଲି। ଜୟକୃଷ୍ଣ ବାବୁଙ୍କ ମୃତ୍ୟୁ ପରେ ଏହି ବସାରେ ବାବୁ ଗୁଣନିଧି ମହାନ୍ତି ଥାନ୍ତି, କେତୋଟି ଛାତ୍ର ମଧ୍ୟ ତାଙ୍କ ବସାରେ ଥାନ୍ତି। ଗୁଣନିଧି ବାବୁ ବର୍ତ୍ତମାନ ଜଣେ କଂଗ୍ରେସ କର୍ମୀ। କିନ୍ତୁ ସେତେବେଳେ ସେ ଓଭରସିଅର ଚାକିରି କରୁଥିଲେ। ତାହାଙ୍କ ନିକଟରେ କଟକ ସର୍ଭେ ସ୍କୁଲରେ ଅଧ୍ୟୟନ କରୁଥିବା କେତେକ ଛାତ୍ର ଓ ସ୍କୁଲ ଛାତ୍ର ମଧ୍ୟ ଥାନ୍ତି। ଏହିଠାରେ ଦଶପଲ୍ଲାର ଭୂତପୂର୍ବ ହେଡ଼ମାଷ୍ଟର ବାବୁ ବାସୁଦେବ ପଟ୍ଟନାୟକ ମଧ୍ୟ ବସା କରି ରହିଥାନ୍ତି। ଏହି ବର୍ଷ ୧୯୧୧ ମସିହା, ଏ ବର୍ଷ କାଠଯୋଡ଼ିରେ ପାଣି ୨୭ ଫୁଟ, କଟକରେ ହଇଜା। ଏହି ମେସ୍‌ରେ ରହିଲା ପରେ ମୋର ନାଳରକ୍ତ ଝାଡ଼ା ହେଲା। ଦିନରେ ୫୦ କିମ୍ବା ୬୦ ଥର ରକ୍ତ ଝାଡ଼ା ହୁଏ। ମୋର ଅବସ୍ଥା ଅତି ସାଙ୍ଘାତିକ ହେଲା। ବଞ୍ଚିବାର ଆଶା ରହିଲା ନାହିଁ। ମୁଁ କଥା କହି ପାରେ ନାହିଁ। ଆଖି ଖୋଲି ଚାହିଁ ପାରେ ନାହିଁ। ବିଛଣାରୁ ଉଠିବା ଦୂରର କଥା। ଏହିପରି ଅବସ୍ଥାରେ ବାସୁବାବୁ

ନ ଥିଲେ ମୋର ପ୍ରାଣ ରହି ନ ଥାନ୍ତା। ଗୁଣନିଧି ବାବୁ ଓ ବାସୁବାବୁ ମୋର ବହୁତ ସେବା କରିଥିଲେ। ଏମାନଙ୍କ ସେବା ଶୁଶ୍ରୂଷାରେ ମୁଁ ଟିକିଏ ଆରୋଗ୍ୟ ଲାଭ କଲା ପରେ ଦଶପଲ୍ଲା ଚାଲିଗଲି। ଏହି ରୋଗରୁ ପୂର୍ଣ୍ଣ ଆରୋଗ୍ୟ ଲାଭ କଲାବେଳକୁ ଛ ମାସ ଚାଲିଗଲା। ବର୍ଷ ଶେଷ ହେଲା। ସେହି ବର୍ଷ ମୋର ଆଉ ପାଠ ପଢ଼ା ହୋଇ ନାହିଁ।

ଡିସେମ୍ବର ମାସରେ ମୁଁ କଟକ ଫେରିଲି। ଏଥର ଆସି ମିଶନ ସ୍କୁଲ ହିନ୍ଦୁ ହଷ୍ଟେଲରେ ରହିଲି। ବାର୍ଷିକ ପରୀକ୍ଷା ଆଉ ୧୫/୨୦ ଦିନ ମାତ୍ର ଅଛି। ଏଥିରେ ପାଠ ପଢ଼ି ପରୀକ୍ଷା ଦେବା ଅସମ୍ଭବ। ତଥାପି ପରୀକ୍ଷା ଦେଲି। ଇଂରେଜୀ, ଅଙ୍କ, ଓଡ଼ିଆ ଛଡ଼ା ଅନ୍ୟାନ୍ୟ ସମସ୍ତ ବିଷୟରେ କିଛି ଲେଖି ପାରିଲି ନାହିଁ। ସୁତରାଂ ପ୍ରମୋଶନ ଆଉ ପାଇ ପାରିଲି ନାହିଁ। ପ୍ରମୋଶନ ନ ପାଇବାରୁ ମନଦୁଃଖ ହୋଇ ନାହିଁ। ଜୀବନରୁ କେତେ ବର୍ଷ ଏହିପରି ବୃଥା ଯାଇଛି, ଏ ବର୍ଷ ରୋଗଶଯ୍ୟାରେ ଗଲା। ଏଥିପାଇଁ ଦୁଃଖ କରିବାର କାରଣ କଣ ଅଛି। ବର୍ଷ ଆରମ୍ଭରୁ ଯେଉଁମାନେ ସାଥିରେ ଥିଲେ ସେମାନେ ଅଲଗା ହୋଇଗଲେ, ଏଥିପାଇଁ ଟିକିଏ ଦୁଃଖ ହେଲା। ନୟାଗଡ଼ ଷ୍ଟେଟରୁ ଚାରିବର୍ଷ ପାଇଁ ସାହାଯ୍ୟ ମିଳିଛି। ତହିଁରୁ ଗୋଟିଏ ବର୍ଷର ସାହାଯ୍ୟ ଶେଷକୁ କମତି ପଡ଼ିବ, କେବଳ ଏହି ଚିନ୍ତା ମନରେ ଟିକିଏ ଦୁଃଖଭାବ ସଂଚାର କରିଥିଲା।

ସେ ଯାହା ହେଉ ୧୯୧୨ ରେ ମୁଁ ପୁଣି ସେହି ଚତୁର୍ଥ ଶ୍ରେଣୀରେ ଅଧ୍ୟୟନ କଲି। ରେବା ରାୟଙ୍କ ଘର ଛାଡ଼ି ଆସିଥିଲେ ମଧ ପ୍ରତି ସପ୍ତାହରେ ୨/୩ ଥର ଯାଏ। ଫୁଟୁ ବାବୁଙ୍କ ସହିତ ବସି ଗପ କରିବା, ବଗିଚାରେ ବୁଲି ଫଳ ଖାଇବା, ଏ ସବୁ ଏବଂ ରେବା ରାୟଙ୍କ ସ୍ନେହ ସହାନୁଭୂତି ମତେ ତାଙ୍କ ଘରକୁ ଟାଣିନିଏ। ଫୁଟୁ ବାବୁ ମତେ ଅନେକ ସମୟରେ ପଚାରନ୍ତି, "ଗୋବିନ୍ଦ ତୁମେ ପାଠ ପଢ଼ି କ'ଣ କରିବ?" ରେବା ରାୟ କହନ୍ତି, "ମନୁଷ୍ୟ ଜନ୍ମ ହୋଇଛି, ଦେଶର କିଛି ମଙ୍ଗଳ କରିବ?" ଦେଶପାଇଁ, ପରପାଇଁ ଯେ କିଛି ନ କରେ ତାର ଜୀବନ ବୃଥା।" ଏ ସବୁ ମୁଁ ଶୁଣେ, କିନ୍ତୁ ସେ କଥା ମୋର ବୁଦ୍ଧିରେ ପ୍ରବେଶ କରି ପାରେ ନାହିଁ। ମୁଁ ଭାବେ, ପରପାଇଁ ମୁଁ ଅବା କିଛି କରି ପାରେ, କିନ୍ତୁ ଦେଶପାଇଁ ମୁଁ କ'ଣ କରିବି? ମୋ ଦ୍ୱାରା ଦେଶର କଣ ଉପକାର ହେବ? ଯେଉଁଦିନ ମୁଁ ତାହାଙ୍କ ଘରକୁ ଯାଏ ସେହିଦିନ ମୋ ମନରେ ଏହିପରି କେତେକ ଭାବ ଜାତ ହୁଏ।

ଇତିମଧ୍ୟରେ କଟକ ବାସନ୍ତୀ ଥିଏଟର ଘରେ ରାଣୀ ଦୁର୍ଗାବତୀ ନାଟକ ଅଭିନୀତ ହୋଇଥିଲା। ଆମ୍ଭ ହଷ୍ଟେଲରୁ କେତେକ ଛାତ୍ର ନାଟକ ଦେଖିବାକୁ ଗଲେ, ମୁଁ ମଧ ଗଲି। ରାଣୀ ଦୁର୍ଗାବତୀ ନାଟକ ଦେଖି ଆସିଲା ପରେ ମୋ ମନ ଓ

ଚିନ୍ତାରେ ଘୋର ପରିବର୍ତ୍ତନ ସୃଷ୍ଟି ହେଲା । ରାଣୀ ଦୁର୍ଗାବତୀ, ନିଜ ରାଜ୍ୟର ସ୍ୱାଧୀନତା ରକ୍ଷା କରିବାପାଇଁ କିପରି ଲଢ଼ାଇ କରିଥିଲେ ସେହି କଥା ଅନବରତ ମୋ ଆଖି ଆଗରେ ନାଚିଲା । ମନର ଏହିପରି ଅବସ୍ଥାରେ ଶିବାଜୀ ମହାରାଜାଙ୍କ ଚରିତ ନାଟକ ଆକାରରେ ଲିଖିତ ଖଣ୍ଡିଏ ପୁସ୍ତକ ପାଠ କରିବାକୁ ପାଇଲି । ଶିବାଜୀ ନାଟକ ପାଠ କରୁ କରୁ ମୋଗଲ ବାଦ୍‌ଶାହା ଆଉରଙ୍ଗଜେବ୍, ଶିବାଜୀଙ୍କୁ କିପରି ବନ୍ଦିଶାଳାରେ ରଖିଲେ ଏବଂ ସେହି ବନ୍ଦିଶାଳାରୁ ଶିବାଜୀ କୌଶଳ କରି କିପରି ପଳାଇ ଆସିଥିଲେ ଇତ୍ୟାଦି ଘଟଣା ବିଶେଷ ଭାବରେ ମୋର ଚିତ୍ତାକର୍ଷଣ କରିଥିଲା । ଏହି ଦୁଇଟି ଘଟଣା ପରେ ଦେଶ ପାଇଁ ଏବଂ ଦେଶର ସ୍ୱାଧୀନତା ପାଇଁ ମୁଁ କିପରି କିଛି କାର୍ଯ୍ୟ କରନ୍ତି ଏହିପରି ଗୋଟିଏ ଭାବ ମନକୁ ବିଚଳିତ କଲା । ମୁଁ ଭାବିଲି, ଆମ ଦେଶ ପରାଧୀନ । ଇଂରେଜ ଏ ଦେଶର ରାଜା । ଆମ ଦେଶ ପରି ରାଜ୍ୟର ଅଧୀନ । ଯେତେଦିନ ଏ ଦେଶରେ ଇଂରେଜ ସରକାର ପ୍ରତିଷ୍ଠିତ ଥିବ ସେତେଦିନ ଆମ ଦେଶ ପରାଧୀନ ହୋଇ ରହିଥିବ । ଏ ଦେଶରୁ ଇଂରେଜ ସରକାରଙ୍କୁ ଉଠାଇବା ପାଇଁକାର୍ଯ୍ୟ କରିବା ଅର୍ଥ ଦେଶକୁ ସ୍ୱାଧୀନ କରିବା । କିନ୍ତୁ ଏହା କଣ ସମ୍ଭବପର । ଏହି ଭାବନା ତ କାହାରି ମନରେ ନାହିଁ । ଆମେ ପରାଧୀନ ବୋଲି କେହି ତ ଚିନ୍ତା କରୁ ନାହାନ୍ତି । ତେବେ ଏହା କଦାପି ସମ୍ଭବ ନୁହେଁ । ମୁଁ କିଛି କରି ନ ପାରେ । ମୋ ଦ୍ୱାରା କିଛି ହୋଇ ନ ପାରେ । ମୋର ଏ ଭାବନା କେବଳ ପାଗଳାମି । ଏପରି ଭାବି ଦେଶ କଥା ଭୁଲିଯାଏ । ରାଣୀ ଦୁର୍ଗାବତୀ ଓ ମହାରାଜ ଶିବାଜୀ ମନେ ପଡ଼ନ୍ତି । ପୁଣି ମୋର ମନ ଚଞ୍ଚଳ ହୁଏ । ଆମେ ପରାଧୀନ, ମୋର କର୍ତ୍ତବ୍ୟ କଣ, ଏହିପରି ଚିନ୍ତା ମନକୁ ଅସ୍ଥିର କରେ । କାହାକୁ ପାଏ ନାହିଁ, କାହାକୁ ପଚାରି ମନର ସନ୍ଦେହ ଦୂର କରିବି । ଏହିପରି ଭାବନା ମନ ମଧ୍ୟରେ ବାରମ୍ବାର ଜାଗି ଉଠେ । ମୁଁ କିଛି ସ୍ଥିର କରି ପାରେ ନାହିଁ ।

## ଦ୍ୱିତୀୟ ପରିଚ୍ଛେଦ

ଓଡ଼ିଶାରେ ରାଜନୀତିର ଗନ୍ଧ ନାହିଁ, ରାଜନୈତିକ ଅନୁଷ୍ଠାନ ନାହିଁ, ରାଜନୈତିକ ଚର୍ଚ୍ଚା ନାହିଁ । ଦେଶରେ କେହି ହେଲେ ଜଣେ ଲୋକ ନାହିଁ ଯେ କି ଦେଶର ଅବସ୍ଥା ବିଷୟରେ ନେଇ ଲୋକଙ୍କୁ ବୁଝାଇବ । ଓଡ଼ିଶାରେ ଘୋର ଅନ୍ଧକାର । ଭାରତରେ ମଧ୍ୟ ସ୍ୱରାଜ୍ୟ ଆନ୍ଦୋଳନର ସୂତ୍ରପାତ ହୋଇ ନାହିଁ । କଂଗ୍ରେସ ଅନୁଷ୍ଠାନ ଏତେ ବିଶାଳ ଓ ପ୍ରଭାବଶାଳୀ ହୋଇ ନାହିଁ । ଭାରତର କୌଣସି ରାଜନୈତିକ ନେତା ମଧ୍ୟ ସମସ୍ତ ଦେଶରେ କୌଣସି ଆନ୍ଦୋଳନ ସୃଷ୍ଟି କରି ନାହାନ୍ତି । ମହାତ୍ମା ଗାନ୍ଧି ଦକ୍ଷିଣ ଆଫ୍ରିକାରେ । ତିଳକ ମହାରାଜଙ୍କ ନାମ ଓଡ଼ିଶାରେ ଶିକ୍ଷିତ ସମାଜ ଶୁଣିଛନ୍ତି

କି ନାହିଁ ସନ୍ଦେହ। ସୁରେନ୍ଦ୍ର ବାନର୍ଜିଙ୍କ ନାମ କେବଳ କେତେବେଳେ କିପରି ଶୁଣାଯାଏ। କିନ୍ତୁ ଦେଶର ସ୍ୱାଧୀନତା ପାଇଁ କିମ୍ବା ସ୍ୱରାଜ୍ୟଲାଭ ପାଇଁ କେବେ କେହି କେଉଁଠାରେ କିଛି କହିଥିବାର ଶୁଣା ନାହିଁ କିମ୍ବା ଜଣା ନାହିଁ। ଓଡ଼ିଶାରେ ସଂବାଦ ମୁଖପତ୍ର। ଦୀପିକାର ରାଜନୀତି କିମ୍ବା ସମାଜନୀତି କିଛି ନ ଥାଏ। ଦେଶରେ କୌଣସି ବିଷୟ ନେଇ ଲୋକମତ ଗଠନ କରିବାପାଇଁ ଅଗ୍ରଲେଖା କଦାପି ଦେଖିବାକୁ ମିଳେ ନାହିଁ। ଲୋକମତ ଗଠନ କରିବାର କଳ୍ପନା ନ ଥାଏ, ଏପରି ସ୍ଥଳେ ପ୍ରୟାସ ଅବା ଆସିବ କୁଆଡୁ?

ଓଡ଼ିଶାରେ ଉଚ୍ଚ ଶିକ୍ଷିତ ଲୋକଙ୍କ ସଂଖ୍ୟା ଅତ୍ୟନ୍ତ ଅଳ୍ପ। ଶିକ୍ଷିତ ସମାଜ ବୋଲି କିଛି ନାହିଁ। ଦେଶର ଯୁବକ ସୁପ୍ତ। ଦେଶର ପ୍ରାଣରେ ସ୍ପନ୍ଦନ ନାହିଁ। ଦେଶ ଓ ଜାତିର କୌଣସି ଆଦର୍ଶ ନାହିଁ। ଯାହା କିଛି ଅବା ଅଛି ତାହା ହେଉଛି ସରକାରଙ୍କ ନିକଟରେ ହାତ ଯୋଡ଼ି ଆବେଦନ କରିବାର ପ୍ରଥା। ଏହି ଆବେଦନ ଓ ନିବେଦନ ପ୍ରଥାରେ ମଧ୍ୟ ଶୃଙ୍ଖଳା ନାହିଁ କିମ୍ବା କୌଣସି ଶକ୍ତି ନାହିଁ। ଯେଉଁ ଆଡ଼କୁ ଚାହିଁବ ଚାରିଆଡ଼ ଘୋର ଅନ୍ଧକାର। ଏପରି ଅବସ୍ଥାରେ ମୋର ହୃଦୟରେ ଦେଶକୁ ସ୍ୱାଧୀନ କରିବାର ପରିକଳ୍ପନା ଫୁଟି ଉଠିଲା। କିନ୍ତୁ ଏହି କଳ୍ପନା ତଥା ଭାବନାକୁ ଜୀବିତ ରଖିବାକୁ ଉପାଦନ କାହିଁ? ଆଲୋଚନା, ସମାଲୋଚନା କରିବାକୁ ସାଥି କାହାନ୍ତି? ଏହି ଭାବକୁ ଉଦ୍‌ବେଳିତ କରିବାକୁ ଦେଶରେ କେହି ବ୍ୟକ୍ତି ନାହାନ୍ତି। ଏପରି ଅବସ୍ଥାରେ ମୁଁ ଏକାକି ବସି ଭାବେ, ଭଗବାନଙ୍କ ନିକଟରେ ପ୍ରାର୍ଥନା କରେ–ପ୍ରଭୁ ମୋ ହୃଦୟରେ ଏହି ଯେ ନୂତନ ଭାବ ଅଙ୍କୁରିତ ହେଲା ଏହାକୁ କିଞ୍ଚିତ ମାତ୍ରାରେ କାର୍ଯ୍ୟରେ ପରିଣତ କରିବା ପାଇଁ ମତେ ଶକ୍ତି ଦିଅ, ମତେ ବାଟ ଦେଖାଅ। ଏହିପରି ପ୍ରାର୍ଥନା କରେ ଏବଂ ଚିନ୍ତା କରେ। କୌଣସି ଆଶ୍ରା ପାଏ ନାହିଁ। ଏଣେ କ୍ଲାସରେ ପାଠପଢ଼ା ମଧ୍ୟ ଚାଲିଥାଏ। କିନ୍ତୁ ମନ ଅସ୍ଥିର ଥିବାରୁ ଭଲ କରି ପାଠ ପଢ଼ାରେ ମନୋନିବେଶ ମଧ୍ୟ କରି ପାରେ ନାହିଁ। ଏହିପରି ଭାବରେ କେତେକ ମାସ ଅତିବାହିତ ହୋଇଗଲା। ମୋ ମନରେ ଦେଶର ସ୍ୱାଧୀନତା ପାଇଁ ଲଢ଼ାଇ କରିବାର ଭାବନା କ୍ରମଶଃ ଦୃଢ଼ୀଭୂତ ହେବାକୁ ଲାଗିଲା। ଅବଶେଷରେ ମୁଁ ନିଶ୍ଚୟ କଲି, ମୁଁ ମୋର ଜୀବନ ଦେଶସେବାରେ ନିୟୋଜିତ କରିବି। ପିଲାଦିନୁ ଯେଉଁ ଦୁଃଖ ଓ କଷ୍ଟ ଭିତରେ ଜୀବନ ସଂଗ୍ରାମ କରିବାକୁ ପଡ଼ିଛି, ଦେଶର ସେହି ଦୁଃଖ ଦୂର କରିବାକୁ ମୁଁ ମୋର ଏହି କ୍ଷୁଦ୍ର ଜୀବନଟିକୁ ସମର୍ପଣ କରିବି। ଆଉ ସଂସାର ଭିତରେ ପ୍ରବେଶ କରିବି ନାହିଁ।

ଏହିପରି ନିଶ୍ଚୟ କଲା ପରେ ମନରେ ଟିକିଏ ଶାନ୍ତି ପାଇଲି। ଏହି ବର୍ଷ ସତ୍ୟବାଦୀ ସ୍କୁଲ ପ୍ରତିଷ୍ଠିତ ହୋଇଥାଏ। ପଣ୍ଡିତ ଶ୍ରୀ ନୀଳକଣ୍ଠ ଦାସ ଏମ୍.ଏ.ପାଶ କରି ସ୍କୁଲରେ ଯୋଗ ଦେଇଥାନ୍ତି। ସେତେବେଳେ ଉଚ୍ଚ ଉପାଧି ପାଇ ସରକାରୀ

ଚାକିରି କରିବାରେ ଲୋକେ ନିଜକୁ ବଡ଼ ଗୌରବାନ୍ୱିତ ମନେ କରୁଥିଲେ। ଉଚ୍ଚ ଉପାଧିଧାରୀ ସରକାରୀ ବଡ଼ ଚାକିରି ପାଇଲେ ଦେଶ ଓ ସମାଜରେ ମଧ୍ୟ ସେପରି ବ୍ୟକ୍ତିଙ୍କର ଯଥେଷ୍ଟ ସମ୍ମାନ ଥିଲା। ସେ ଜଣେ ଅସାଧାରଣ ବ୍ୟକ୍ତି ବୋଲି ପରିଚିତ ହେଉଥିଲେ। କିନ୍ତୁ ସତ୍ୟବାଦୀ ସ୍କୁଲ ପ୍ରତିଷ୍ଠା ପରେ ଦେଶ ଓ ସମାଜର ଏହି ମନୋବୃତ୍ତି ପରିବର୍ତ୍ତିତ ହେଉଥିଲା। ଉଚ୍ଚ ଉପାଧି ପାଇ ସରକାରୀ ଚାକିରି ନ କରି ଦେଶର କୌଣସି ହିତକର ଅନୁଷ୍ଠାନରେ ଯୋଗ ଦେବାର ପ୍ରଥମ ପଥ ପ୍ରଦର୍ଶକ ପଣ୍ଡିତ ନୀଳକଣ୍ଠ ଦାସ ଓ ସ୍ୱର୍ଗୀୟ ପଣ୍ଡିତ କୃପାସିନ୍ଧୁ ମିଶ୍ର। ଏହି ଦୁଇଜଣଙ୍କ ପରେ ପଣ୍ଡିତ ଗୋଦାବରୀଶ ମିଶ୍ର ମଧ୍ୟ ସତ୍ୟବାଦୀ ସ୍କୁଲରେ ଯୋଗ ଦେଇଥିଲେ। ସତ୍ୟବାଦୀ ସ୍କୁଲ ପ୍ରତିଷ୍ଠାନ ଓଡ଼ିଶାରେ ଗୋଟିଏ ନୂତନ ଜୀବନ ତରଙ୍ଗ ସୃଷ୍ଟି କରି ଦେଲା। ଓଡ଼ିଆ ଶିକ୍ଷିତ ଯୁବକଙ୍କର ମନୋବୃତ୍ତିକୁ ବଦଳାଇ ଦେଲା। ଏହି କେତେଜଣ ଶିକ୍ଷତ ଓଡ଼ିଆ ଯୁବକଙ୍କର ତ୍ୟାଗ ଓଡ଼ିଶାର ପ୍ରତ୍ୟେକ ସଭା ସମିତିରେ ପ୍ରଶଂସିତ ହୋଇଥିଲା। ଓଡ଼ିଶାର ଚତୁର୍ଦ୍ଦିଗରୁ ଏମାନେ ଅଭିବାଦନ ପାଇଥିଲେ। ସମସ୍ତ ଦେଶର ହୃଦୟ ଓ ମନ ସତ୍ୟବାଦୀ ଅନୁଷ୍ଠାନ ଆଡ଼କୁ ହୋଇ ଉଠିଲା। ଓଡ଼ିଶାର କୌଣସି ହିତ କଥା କେହି ଚିନ୍ତା କଲେ ତହିଁରେ ପ୍ରେରଣା ଲାଭ କରିବା ଆଶାରେ ସମସ୍ତେ ସତ୍ୟବାଦୀ ଆଡ଼କୁ ଦୃଷ୍ଟି ପକାଇଲେ। ସତ୍ୟବାଦୀ ଅନୁଷ୍ଠାନ ଓଡ଼ିଆ ଜାତୀୟ ଜାଗରଣର କେନ୍ଦ୍ର ହୋଇ ଉଠିଲା। ସତ୍ୟବାଦୀ ସ୍କୁଲଘର ନିଆଁଲାଗି ପୋଡ଼ି ଯିବାରୁ ସମସ୍ତ ଦେଶରେ ସ୍ନେହ ଓ ସହାନୁଭୂତି ଏକାଧାରରେ ଅଜାଡ଼ି ହୋଇ ପଡ଼ିଲା। ସେତେବେଳେ ମୋର ମନେ ଅଛି, ଆମ୍ଭେମାନେ ଆମ୍ଭ ମିଶନ ସ୍କୁଲରୁ ସତ୍ୟବାଦୀ ସ୍କୁଲ ପାଇଁ ଚାନ୍ଦା ସଂଗ୍ରହ କରିଥିଲୁ। ଏହିପରି ଭାବରେ ଓଡ଼ିଶାର ଜୀବନ ଟିକିଏ ଜାଗି ଉଠିଲା। ବହୁତ ପାଠ ପଢ଼ି, ସରକାରୀ ଚାକିରି ନ କରି, ଦେଶର କୌଣସି ହିତକର କାର୍ଯ୍ୟରେ ଜୀବନ ଉତ୍ସର୍ଗ କରିବା କେହି କେହି ଓଡ଼ିଆ ଯୁବକଙ୍କର ହେଲା ଆଦର୍ଶ। ସତ୍ୟବାଦୀ ସ୍କୁଲ ପାଇଁ ଉପରୋକ୍ତ ଉଚ୍ଚ ଉପାଧିପ୍ରାପ୍ତ କେତୋଟି ଓଡ଼ିଆ ଯୁବକଙ୍କର ତ୍ୟାଗ ଓଡ଼ିଶାରେ ଏହି ପରିବର୍ତ୍ତନ ସୃଷ୍ଟି କରିଥିଲା ଏବଂ ଓଡ଼ିଆ ପ୍ରାଣରେ ଏ ଉଦ୍‌ବେଗ ଆଣି ଦେଇଥିଲା। ଏହିସବୁ ମୋର ହୃଦୟର ଭାବକୁ ଦୃଢ଼ୀଭୂତ କଲା। ଭବିଷ୍ୟତରେ ମୁଁ କିପରି କଣ ଦେଶ ପାଇଁ କରିପାରେ ସେଥିପାଇଁ ପରିଷ୍କାର ପଥ ଦେଖି ପାରିଥିଲି। ଏହି ସମୟରେ 'ଉତ୍କଳ ସାହିତ୍ୟ' ନାମକ ମାସିକ ପତ୍ରିକାରେ ସମାଜ ସଂସ୍କାର ବିଷୟରେ କେତେଗୁଡ଼ିଏ ଲେଖା ପ୍ରକାଶ ପାଉଥାଏ। ଏହିସବୁ ଲେଖା ପଢ଼ିବାକୁ ଭଲ ଲାଗୁଥାଏ। ପୂର୍ବ ପ୍ରଚଳିତ ସାମାଜିକ ନୀତି ନିୟମ ସବୁ ମନୁଷ୍ୟର ସ୍ୱାଧୀନ ଚିନ୍ତାକୁ ଦବାଇ ରଖିଛି, ଏହିପରି ଭାବନା ମନରେ ଜାଗିଉଠେ। ସମାଜ ସଂସ୍କାର ବିଷୟରେ ପ୍ରକାଶିତ ପ୍ରବନ୍ଧମାନଙ୍କ ମଧ୍ୟରେ ନୀଳକଣ୍ଠ ବାବୁଙ୍କର "ମୋ ନିଶ" ନାମକ ପ୍ରବନ୍ଧ ମୋତେ ବିଶେଷ ଭାବରେ ପ୍ରଭାବିତ କରିଥିଲା।

ମୋର ମନେ ହୁଏ, ଓଡ଼ିଆ ପତ୍ର ପତ୍ରିକାରେ ଯେତେ ସବୁ ପ୍ରବନ୍ଧ ପ୍ରକାଶ ପାଇଛି ଅବା ପାଉଛି, ନୀଳକଣ୍ଠ ବାବୁଙ୍କର "ମୋ ନିଶ" ପରି ପ୍ରବନ୍ଧ ପ୍ରକାଶ ପାଇଛି କି ନା ସନ୍ଦେହ।

ଏହିପରି ଭାବରେ ଏହି ବର୍ଷ ଶେଷ ହେଲା। ମୁଁ ପରୀକ୍ଷା ଦେଇ ତୃତୀୟ ଶ୍ରେଣୀକୁ ପ୍ରମୋଶନ ପାଇଲି। ଛାତ୍ରାବସ୍ଥାରେ ମଧ୍ୟ କିଛି କାର୍ଯ୍ୟ କରିବାକୁ ବେଳେ ବେଳେ ମନ ହେଉଥାଏ। କିଛି କାର୍ଯ୍ୟ କରିବାକୁ ହେଲେ ପ୍ରଥମେ କେତୋଟି ସାଥି ଲୋଡ଼ା। ସୁତରାଂ ସାଥି ଖୋଜି ବାହାର କରିବା ଦରକାର। ଏହି ଇଚ୍ଛା ହେତୁରୁ ଦଶପଲ୍ଲାରୁ କେତୋଟି ଛାତ୍ର ଆସି କିପରି କଟକରେ ପାଠ ପଢ଼ିବେ ଏହି ଭାବନା ମୋ ମନରେ ଖେଳିଲା। ମୁଁ ଯେଉଁ ବର୍ଷ କଟକ ଆସିଲି, ସେହି ବର୍ଷ ନୃସିଂହଚରଣ ପଟ୍ଟନାୟକ ନାମରେ ଗୋଟିଏ ଛାତ୍ର ଦଶପଲ୍ଲା ସ୍କୁଲରୁ ମାଇନର ପାଶ୍ କରି ଖୋରଧାକୁ ଆସିଥାଏ। ନୟାଗଡ଼ରେ ପଢ଼ିଲା ଦିନୁ ମୁଁ ନରସିଂହକୁ ଜାଣେ। ନରସିଂହ ମଧ୍ୟ ମତେ ଜାଣେ। ନରସିଂହର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନୁହେଁ। ସେ ଖୋରଧା ଆସି ପଢ଼ିବାରେ ମୋର ମଧ୍ୟ କିଛି ହାତ ଅଛି। ଏଥିପାଇଁ ମୁଁ ତାହାକୁ କେତେ ଉତ୍ସାହ ଓ ଉତ୍ତେଜନା ଦେଉଛି। ବର୍ତ୍ତମାନ ଆମ୍ଭ ଦୁହିଁଙ୍କ ମଧ୍ୟରେ ଅଭେଦ ପ୍ରୀତି କହିଲେ ଚଳେ। ମୁଁ ଯାହା ଯେତେବେଳେ ଭାବେ ଅବା କରେ, ସବୁ ନରସିଂହକୁ କହେ। ନରସିଂହ ବୟସରେ ମୋଠାରୁ ବହୁତ ସାନ। କିନ୍ତୁ ତାହାର ପ୍ରକୃତି ବଡ଼ ସରଳ। ତାହାର ବ୍ୟବହାର ଅତି ମଧୁର। ସେ ଜଣେ ଅତି ସାଧୁ ସ୍ୱଭାବର ବ୍ୟକ୍ତି। ତାହାଠାରେ ବ୍ୟକ୍ତିତ୍ୱର କଳା ଥାଏ। ସେ ସାନ ହେଲେ ମଧ୍ୟ ମୁଁ ତାକୁ ସବୁ କଥା ପଚାରେ ସମୟେ ସମୟେ ସେ ମୋର ଉଗ୍ର ଓ ଅଧୀର ପ୍ରକୃତି ଦେଖି ବଡ଼ ବ୍ୟଥିତ ହୁଏ।

ଦଶପଲ୍ଲାରେ ଭାବଗ୍ରାହୀ ବିଶ୍ୱାଳ ସେତେବେଳେ ଦେୱାନ। ରାଜା ଥାନ୍ତି, କିନ୍ତୁ ସେ ବୃଦ୍ଧ ହେତୁ ଷ୍ଟେଟର କୌଣସି ସମ୍ବାଦ ରଖନ୍ତି ନାହିଁ। ଭାଗଗ୍ରାହୀ ବାବୁ ହୋଇଥାନ୍ତି ଦଶପଲ୍ଲାର ପ୍ରକୃତ ମାଲିକ ଓ ସେ ସର୍ବେସର୍ବା। ତାହାଙ୍କର ବାକ୍ୟ ଦଶପଲ୍ଲା ଷ୍ଟେଟର ପେନାଲକୋଡ଼। ଦଶପଲ୍ଲାରୁ ଛାତ୍ର ଉଚ୍ଚଶିକ୍ଷା ଲାଭ କରନ୍ତୁ ଏହା ବିଶ୍ୱାଳଙ୍କ ଇଚ୍ଛାବିରୁଦ୍ଧ। ସେଥିପାଇଁ ଦଶପଲ୍ଲାରୁ ପିଲାଙ୍କୁ କିଖେଇ କଟକ ଆଣିଲେ ବିଶ୍ୱାଳଙ୍କ ଅପ୍ରୀତିଭାଜନ ହେବାକୁ ହେବ। ତାହାଙ୍କର କୋପ ଦୃଷ୍ଟି ମଧ୍ୟ ପଡ଼ି ପାରେ। ଏହି ସବୁ କାରଣରୁ ନରସିଂହର ଇଚ୍ଛା ନୁହେଁ, ଏ ଛାତ୍ରାବସ୍ଥାରେ ମୁଁ ଏସବୁ କାର୍ଯ୍ୟରେ ଜଡ଼ିତ ହେବାକୁ।

କିନ୍ତୁ ନରସିଂହର କଥାରେ ମୋର ମନ ମାନେ ନାହିଁ। ମୋର ଇଙ୍ଗିତରେ ବନମାଳୀ ମିଶ୍ର ନାମକ ଜନୈକ ଛାତ୍ର କଟକ ଆସି ରେବା ରାୟଙ୍କ ସାହାଯ୍ୟରେ ଅଧ୍ୟୟନ କଲେ। ଅନନ୍ତ ମିଶ୍ର ନାମକ ଆଉ ଗୋଟିଏ ଛାତ୍ର ମଧ୍ୟ କଟକ ଆସିଲେ।

ଏମାନେ ସମସ୍ତେ ମୋର ସହାଧ୍ୟାୟୀ କହିଲେ ଚଳେ। କିନ୍ତୁ ବୟସରେ ସାନ ଥିବାରୁ ଅଧିକାଂଶ ସମୟରେ ଏମାନେ ମୋର ପରାମର୍ଶ ଅନୁସାରେ ଚଳନ୍ତି। ଦୟାନିଧି ଦଳବେହେରା ନାମରେ ଆଉ ଗୋଟିଏ ଛାତ୍ର ଖୋରଧା ସ୍କୁଲରେ ନାମ ଲେଖାଇଲା। ଦୟାନିଧିର ପରିବାର ଦଶପଲ୍ଲା ରାଜ୍ୟର ଗୋଟିଏ ଖ୍ୟାତନାମା ଘର। ଏହାଙ୍କ ପୂର୍ବପୁରୁଷ ଆଗେ ପାଇକ ସର୍ଦ୍ଦାର, ଅର୍ଥାତ୍ ମିଲିଟାରୀ ସର୍ଦ୍ଦାର ଥିଲେ। ଦୟାନିଧିଙ୍କ ଅବସ୍ଥା ଖୁବ୍ ଭଲ। ସେ ନିଜ ଇଚ୍ଛାରେ ଖୋରଧା ଆସିଥାଏ। ଏହିପରି ଭାବରେ ଦଶପଲ୍ଲାରୁ ୫/୬ଟି ଛାତ୍ର ଉଚ୍ଚ ଶିକ୍ଷା ପାଇଁ କଟକ, ଖୋରଧା ଆସିଥାନ୍ତି। ଆମ୍ଭ ଏହି କେତେଜଣଙ୍କ ମଧ୍ୟରେ ସ୍ନେହ ସଂବନ୍ଧ ଅସୀମ। ଆମ୍ଭେମାନେ ଛୁଟିରେ ଯାଇ ଦଶପଲ୍ଲାରେ ଏକାଠି ହେଲାବେଳେ ଆମ୍ଭମାନଙ୍କ ଆନନ୍ଦର ସୀମା ରହେ ନାହିଁ। ସେତେବେଳେ ମଟର ଲରି ନ ଥିଲା। କଟକରୁ ଆମ୍ଭେମାନେ ଚାଲିକରି ଦଶପଲ୍ଲା ଯାଉଁ। ଖୋରଧାରୁ ଦୟାନିଧି ବଳଦ ଗାଡ଼ିରେ ଯାଏ। କଟକରୁ ଦଶପଲ୍ଲା ପ୍ରାୟ ଅଶୀ ମାଇଲ ବାଟ। କଟକରୁ ବାହାରି ତିନି ଦିନରେ ଆମ୍ଭେମାନେ ଦଶପଲ୍ଲାରେ ଉପସ୍ଥିତ ହେଉଁ। ମୁଁ କେବେ କିପରି ଏକାକୀ ଗଲେ ଦୁଇ ଦିନରେ ଚାଲିଯାଏ। କିନ୍ତୁ କଟକରୁ ବନମାଳୀ, ଅନନ୍ତ ଓ ମୁଁ ଏହି ତିନିଜଣ ପ୍ରାୟ ଏକତ୍ର ଯାଉଁ। ବାଟରେ ନାନା ପ୍ରକାର ଆଲୋଚନା ହୁଏ। ଦଶପଲ୍ଲାରେ ଉପସ୍ଥିତ ହୋଇ 'କଣ କରିବା' ଏହି କଥାଟି ବେଶି ଆଲୋଚିତ ହୁଏ। ଦଶପଲ୍ଲାରେ ପହୁଞ୍ଚି ପ୍ରଥମେ ମୁଁ ଆମ୍ଭ ଘରେ ଗୋଟିଏ 'ନୈଶ ବିଦ୍ୟାଳୟ' ଖୋଲିଲି। ଦଶପଲ୍ଲା ଗଡ଼ର ଯେଉଁ ପିଲାସବୁ ଗଡ଼ ମି.ଇ. ସ୍କୁଲରେ ପଢ଼ୁଥାନ୍ତି, ସେମାନେ କିପରି ଭଲ ଭାବରେ ପାଠ ପଢ଼ିବେ ଏହି ଉଦ୍ଦେଶ୍ୟରେ ଏହି ସ୍କୁଲଟି ହେଲା। ଅନନ୍ତ ବନମାଳୀ ଏମାନେ ମନ ଦେଇ ଏହି ପିଲାମାନଙ୍କୁ ପାଠ ପଢ଼ାଇଲେ। ରୀତିମତ ଘଣ୍ଟାନୁସାରେ ସ୍କୁଲଟି ଚାଲିଲା। ସ୍କୁଲରେ ଦଶପଲ୍ଲାର କେଉଁ ଇଲାକାରୁ କେତେ ପିଲା ଆସି ପାଠ ପଢ଼ୁଛନ୍ତି, କିଏ କିପରି ପଢ଼ୁଛି, କାହାର ଘରର ଅବସ୍ଥା କିପରି, ଏ ସବୁର ଅନୁସନ୍ଧାନ ମୁଁ ଭାବୁଥାଏ। ଉଦ୍ଦେଶ୍ୟ, ଯେଉଁ ଛାତ୍ରଟି ଭଲ ପଢ଼ୁଥିବ ଏବଂ ଘରର ଅବସ୍ଥା ମଧ୍ୟ ଭଲ ଥିବ, ତାହାର ପିତା ଓ ଅଭିଭାବକଙ୍କୁ ପ୍ରବର୍ତ୍ତାଇ ସେହି ଛାତ୍ରଟିକୁ କଟକ କିମ୍ବା ଖୋରଧା ଉଚ୍ଚଶିକ୍ଷା ପାଇଁ ପଠାଇବା।

## ତୃତୀୟ ପରିଚ୍ଛେଦ

ମୁଁ ଗ୍ରୀଷ୍ମ ଛୁଟିରେ କେବଳ ଦଶପଲ୍ଲା ଯାଏ ଦଶହରା ଛୁଟିରେ କଟକରେ ରହି ପଢ଼ାପଢ଼ି କରେ ଛୁଟିରେ ଦଶପଲ୍ଲା ନ ଗଲେ ମଧ୍ୟ ଦଶପଲ୍ଲାରୁ କୌଣସି ଉପାୟରେ କେତୋଟି ଛାତ୍ର କିପରି କଟକ ଆସିବେ ଏହି ଚିନ୍ତା ସବୁବେଳେ ମୋ

ମନରେ ଖେଳୁଥାଏ। ମୋର ଏ ଭଳି କାର୍ଯ୍ୟ ଓ ଚିନ୍ତା ଭାବଗ୍ରାହୀ ବାବୁଙ୍କୁ ଅଗୋଚର ରହିଲା ନାହିଁ। ସେ ଏ ସବୁ ଶୁଣି ମନେ ମନେ ଅବଶ୍ୟ ଅସନ୍ତୁଷ୍ଟ ହେଉଥାନ୍ତି, କିନ୍ତୁ ସେ ଅସନ୍ତୋଷର ଚିହ୍ନ ଏପର୍ଯ୍ୟନ୍ତ କୌଣସି କାର୍ଯ୍ୟରେ ଦେଖାଯାଇ ନଥାଏ। ଛୁଟିରେ ଦଶପଲ୍ଲା ଗଲେ ମୁଁ ଭାବଗ୍ରାହୀ ବାବୁଙ୍କ ସହିତ ଦେଖା କରିବାକୁ ଯାଏଁ; ଛୁଟିରୁ ଫେରିଲା ବେଳେ ମଧ୍ୟ ଦେଖା କରେ। କିନ୍ତୁ ସେ ଭଲକରି କଥା କହନ୍ତି ନାହିଁ। ଏପରି ଅବସ୍ଥାରେ ମୁଁ କିମ୍ବା ଅନ୍ୟ କେହି ଛାତ୍ର ତାହଙ୍କ ସହିତ ଦେଖା କରିବାପାଇଁ ନ ଯିବା ଉଚିତ୍। କିନ୍ତୁ ଦଶପଲ୍ଲା ଗଡ଼ଜାତ ରାଜ୍ୟ। ଦଶପଲ୍ଲା ଗଡ଼ରେ ଆମ୍ଭର ଘର। କଟକରେ ପାଠ ପଢୁଛୁ। ଛୁଟିରେ ଯାଇ ଦଶପଲ୍ଲାଗଡ଼ରେ ଏକମାସ କାଳ ରହିବୁ। କେତେବେଳେ କଣ ଘଟିପାରେ ତାହା କିଏ କହିପାରେ। ଦଶପଲ୍ଲାଗଡ଼ରେ ଘର ନ ହୋଇ ଟିକିଏ ଦୂର ମଫସଲରେ ହୋଇଥିଲେ ସେ କଥା ଅଲଗା ହୁଅନ୍ତା। କିନ୍ତୁ ଗଡ଼ରେ ଘର କରି ରହି, କଟକରେ ପାଠ ପଢ଼ି, ଛୁଟିରେ ଘରକୁ ଫେରି, 'ବାବୁ'ଙ୍କ ସହିତ ଦେଖା କରିବାକୁ ନ ଯିବା ଅର୍ଥ ତାହାଙ୍କ ପ୍ରତି ବେଖାତିର ଭାବ ଦେଖାଇବା। ଏହି ଭୟରେ ମଧ୍ୟ ଆମ୍ଭେମାନେ ବାବୁଙ୍କୁ ଦେଖା କରିବାକୁ ଯାଉଁ। ସେ କଥା ଦୁଇପଦ କହିଲେ ଭଲ, ନ କହିଲେ ମଧ୍ୟ ଉତ୍ତମ। ବାବୁଙ୍କ ସହିତ ଦେଖା କରିବାର ଆହୁରି ମଧ୍ୟ ଅନେକ କାରଣ ଅଛି। ସେ ସବୁ ଉଲ୍ଲେଖ କରି ଏ ଲେଖାର କଳେବର ବୃଦ୍ଧି କରିବା ଅନାବଶ୍ୟକ।

ସେ ଯାହା ହେଉ ନିମାଇଁ ଚରଣ ମିଶ୍ର ନାମକ ଜନୈକ ଛାତ୍ରକୁ ମାଇନର ପାଶ୍ କରିବା ପୂର୍ବରୁ କଟକ ଆଣିବାପାଇଁ ତାହାର ପିତାମାତାଙ୍କୁ ମୁଁ ପରାମର୍ଶ ଦେଲି। ମୋର ପରାମର୍ଶରେ ନିମାଇଁର ପିତାମାତା ନିମାଁଇକୁ କଟକ ପଠାଇବା ପାଇଁ ସ୍ୱୀକୃତ ହେଲେ। ହରିହର ମିଶ୍ର ନାମକ ଆଉ ଜଣେ ଯୁବକ କଟକ ଆସି କବିରାଜୀ ପଢ଼ିବାପାଇଁ ତାହାଙ୍କ ପିତାଙ୍କୁ ପରାମର୍ଶ ଦେଲି। ମୋର ପରାମର୍ଶରେ ହରିହର କଟକ ଆସିବାର ମଧ୍ୟ ସ୍ଥିର ହେଲା। କଥା ହେଲା, ହରିହର ଓ ନିମାଇଁ ଉଭୟେ ମୋ ସହିତ କଟକ ଆସିବେ। ମୁଁ ବର୍ତ୍ତମାନ ଥାର୍ଡ଼କ୍ଲାସରେ। ଗ୍ରୀଷ୍ମଛୁଟିରେ ଘରକୁ ଯାଇଛି। ଗ୍ରୀଷ୍ମ ଛୁଟିପରେ ମୁଁ କଟକ ଫେରିଲା ବେଳକୁ ଏ ଦୁହେଁ ମୋ ସହିତ ଆସିବାର ସ୍ଥିର କରାଗଲା। କଟକ ଆସି ପଢ଼ିବାକୁ ହେଲେ ନିମାଇଁର ଖଣ୍ଡିଏ ସାର୍ଟିଫିକେଟ ଦରକାର ହେବ। ସ୍କୁଲରୁ ସାର୍ଟିଫିକେଟ ମିଳିବା ସହଜ ନୁହେଁ। ଏହି ଟ୍ରାନ୍ସଫର ସାର୍ଟିଫିକେଟ୍ ମିଳିବ କିପରି। ଅଥବା ନିମାଇଁ ମାଇନର ସ୍କୁଲ ଫାଷ୍ଟକ୍ଲାସରେ ଅଧ୍ୟୟନ କରୁଥିଲେ ଏହାର ଖଣ୍ଡିଏ ପ୍ରମାଣପତ୍ର ଆବଶ୍ୟକ। ଅନେକ କଥା ଭାବିଲାପରେ ସ୍ଥିର ହେଲା ଯେ, ନିମାଇଁର ପିତା ଶ୍ରୀ ରାମଚନ୍ଦ୍ର ମିଶ୍ର ନିଜେ ଯାଇ ସ୍କୁଲର ହେଡ୍‌ମାଷ୍ଟରଙ୍କ ନିକଟରେ ଖଣ୍ଡିଏ ଦରଖାସ୍ତ ଦେବେ। ଦରଖାସ୍ତରେ ଲେଖା ହେବ ଯେ, ନିମାଇଁ ଆଉ ସ୍କୁଲରେ ପାଠ ପଢ଼ିବାକୁ ଅକ୍ଷମ। ଏତକିରେ ପାଠ ପଢ଼ା ଶେଷ କରି ସେ ଏଣିକି ଚାଷ କାର୍ଯ୍ୟରେ ଯୋଗ ଦେବ।

ମୁଁ ଦଶପଲ୍ଲା ସ୍କୁଲରେ ଥାଏ । ଗ୍ରୀଷ୍ମ ଛୁଟିପାଇଁ ଦଶପଲ୍ଲା ସ୍କୁଲ ବନ୍ଦ ହୋଇ ନଥାଏ । ହେଡ୍‌ମାଷ୍ଟର ମହାଶୟଙ୍କ ନିକଟରେ ବସି ମୁଁ କୌଣସି ବିଷୟ କଥା ହେଉଛି, ଏପରି ସମୟରେ ନିମାଇଁଙ୍କ ପିତା ଶ୍ରୀ ରାମଚନ୍ଦ୍ର ମିଶ୍ର ସେ ଦରଖାସ୍ତ ଖଣ୍ଡି ହେଡ୍‌ମାଷ୍ଟରଙ୍କୁ ଦେଲେ । ଦରଖାସ୍ତ ଖଣ୍ଡି ପାଠ କରି ହେଡ୍‌ମାଷ୍ଟର ମହାଶୟ ଭାରୀ ରାଗିଗଲେ । ଦଶପଲ୍ଲା ଲୋକେ ଶିକ୍ଷା ନିମିତ୍ତ କିପରି ଆଗ୍ରହାନ୍ୱିତ, ଏହି କଥାକୁ ଉପମା ଦେଇ ସେ ମତେ ବହୁତ କଥା କହିଲେ । ଦଶପଲ୍ଲା ଲୋକଙ୍କୁ, ବିଶେଷରେ ଗଡ଼ର ବାସିନ୍ଦାଙ୍କୁ ନିନ୍ଦା କରି ବହୁତ କଥା କହିବାକୁ ଆରମ୍ଭ କଲେ । ମତେ ଦେଖାଇ କହିବାର ଉଦ୍ଦେଶ୍ୟ, ମୁଁ ସବୁବେଳେ ଦଶପଲ୍ଲାର ଶିକ୍ଷା ବିଷୟ ନେଇ ତାହାଙ୍କ ସହିତ ଆଲୋଚନା କରେ । ଦଶପଲ୍ଲା ସ୍କୁଲରେ ଭଲ ପାଠପଢ଼ା ହେଉ ନାହିଁ ବୋଲି ଦୋଷ ବାଛୁଥାଏ । ଏ ସବୁ ଯୁକ୍ତିରେ ହେଡ଼ ମାଷ୍ଟର ମହାଶୟ ମୋ ଉପରେ ମନେ ମନେ ବିରକ୍ତ ଥାନ୍ତି । ବର୍ତ୍ତମାନ ସେହି ବିରକ୍ତିର ଭାବ ପ୍ରକାଶ କରିବାପାଇଁ ତାହାଙ୍କୁ ଗୋଟିଏ ଅବଲମ୍ବନ ମିଳିଗଲା । ସେ ଯେତେ ଯାହା କହିଗଲେ ମୁଁ ସବୁ ସହ୍ୟ କରି ନେଉଥିଲି । କିନ୍ତୁ ଦଶପଲ୍ଲା ଲୋକଙ୍କୁ ବିଶେଷରେ ଗଡ଼ର ଲୋକଙ୍କ ପ୍ରତି ଅଯଥା କଥା କହିବାର ଦେଖି ମୁଁ ଆଉ ନୀରବ ରହି ପାରିଲି ନାହିଁ । ତାହାଙ୍କ ସହିତ ଯୁକ୍ତି ଆରମ୍ଭ କଲି । ଯୁକ୍ତି କରୁ କରୁ କଥା ପ୍ରସଙ୍ଗରେ ରାମଚନ୍ଦ୍ର ମିଶ୍ରଙ୍କର ଦରଖାସ୍ତର ଭିତରି ରହସ୍ୟ ଖୋଲି ଦେବାକୁ ମତେ ବାଧ୍ୟ ହେବାକୁ ପଡ଼ିଲା । କେବଳ ସେତିକି ନୁହେଁ, ତାହା ମଧ୍ୟ ମୋର ପରାମର୍ଶରେ ହୋଇଛି ବୋଲି ମୁଁ କହିଥିଲି । ଏକଥା ଶୁଣି ହେଡ୍‌ମାଷ୍ଟର ମହାଶୟଙ୍କ ସମସ୍ତ ରାଗ ମୋ ଉପରକୁ ଢଳି ପଡ଼ିଲା । ମୁଁ ତାଙ୍କର ଛାତ୍ର । ସେ ହଠାତ୍ ଉଠିଆସି ମତେ ଦୁଇ ଚାପୁଡ଼ା ପକାଇ, ସ୍କୁଲ ଘରୁ ବାହାର କରିଦେଲେ । ଘର ଭିତରୁ ଆସି ମୁଁ ସ୍କୁଲ ଘର ବାରଣ୍ଡାରେ ଠିଆ ହେଲି । ସେଠାରୁ ମଧ୍ୟ ବଳପୂର୍ବକ ମତେ ବାହାର କରି ଦେବାପାଇଁ ହେଡ୍‌ମାଷ୍ଟର ମହାଶୟ ମୋ ନିକଟକୁ ଦୌଡ଼ି ଆସିଲେ । ହେଡ୍‌ମାଷ୍ଟରଙ୍କ ପାଟି ଶୁଣି, ସବୁ କ୍ଲାସରୁ ଛାତ୍ର ଓ ଶିକ୍ଷକ ସମସ୍ତେ ଆସି ବାରଣ୍ଡାରେ ଠିଆ । ହେଡ୍‌ମାଷ୍ଟର ମହାଶୟ ଏପରି ଭାବରେ ମୋ ନିକଟକୁ ଦୌଡ଼ି ଆସି ପୁଣି ମତେ ମାରିବାକୁ ଉଦ୍ୟତ ହେଲାବେଳକୁ ମୁଁ ମଧ୍ୟ ତାହାଙ୍କ ଉପରକୁ ରାଗି ଉଠିଲି । ଆମ ଦୁହିଁଙ୍କୁ ଏପରି ରାଗାନ୍ୱିତ ଅବସ୍ଥାରେ ଦେଖି, ସ୍କୁଲର ସେକେଣ୍ଡ ମାଷ୍ଟର ଶ୍ରୀଯୁକ୍ତ ବଳରାମ ମିଶ୍ର ମତେ ଧରି ଟାଣି ନେଇଗଲେ । ନାନା କଥା ବୁଝାଇ ମତେ ଟିକିଏ ଶାନ୍ତ କରାଇ ସ୍କୁଲ ପଡ଼ା ବାହାରେ ଛାଡ଼ି ଦେଇ ଆସିଲେ । ବଳରାମ ବାବୁଙ୍କର ମୁଁ ଛାତ୍ର ନୁହେଁ । ତଥାପି ତାହାଙ୍କ ପ୍ରତି ମୋର ଯଥେଷ୍ଟ ଭକ୍ତି ଓ ସମ୍ମାନ ଥାଏ । ଅନେକ ସମୟରେ ବଳରାମ ବାବୁଙ୍କ ସହିତ ବସି ନାନା ବିଷୟ ଆଲୋଚନା କରେ । କୌଣସି କୌଣସି ଘଟଣାରେ ତାହାଙ୍କର ପରାମର୍ଶ ମଧ୍ୟ

ଗ୍ରହଣ କରିଥାଏ। ଏପରି ଅବସ୍ଥାରେ ତାହାଙ୍କ କଥାକୁ ଏଡ଼ି ସ୍କୁଲ ହତା ଭିତରେ କିଛି ଗୋଳମାଳ କରିବା ମତେ ବିଧି ସଂଗତ ବୋଧ ହେଲା ନାହିଁ। ବଳରାମବାବୁଙ୍କ କଥା ମାନି ସ୍କୁଲ ହତାରୁ ବାହାରି ଆସିଲି ସତ୍ୟ, କିନ୍ତୁ ତହିଁରେ ମୋର ରାଗ ଶାନ୍ତି ହେଲା ନାହିଁ। ସ୍କୁଲ ହତା ବାହାରେ ସର୍ବ ସାଧାରଣ ଦାଣ୍ଡରେ ସ୍କୁଲ ଛୁଟି ହେବା ପର୍ଯ୍ୟନ୍ତ ଅପେକ୍ଷା କରି ରହିଲି। ହେଡ୍‌ମାଷ୍ଟର ମହାଶୟ ସ୍କୁଲରୁ ବାହାରିଲେ ମୁଁ ମୋର ମନର ରାଗ ମେଣ୍ଟାଇବା ଉଦ୍ଦେଶ୍ୟରେ ରହିଲି।

ସ୍କୁଲ ଛୁଟି ହେଲା। ସ୍କୁଲ ଛାଡ଼ି ପିଲାମାନେ ଚାଲିଗଲେ। ହେଡ୍‌ମାଷ୍ଟର ମହାଶୟ କିନ୍ତୁ ସ୍କୁଲରୁ ବାହାରିଲେ ନାହିଁ। ସେ ନ ବାହାରି ଭଲ କରିଥିଲେ। ବାହାରିଥିଲେ କଣ ହୋଇଥାନ୍ତା ମୁଁ ତାହା କଳ୍ପନା କରିପାରୁ ନାହିଁ। ସେ ଯାହା ହେଉ ଏହିପରି ଭାବରେ କିଛି ସମୟ ଅପେକ୍ଷା କରି ମୁଁ ଘରକୁ ଫେରିଗଲି। କିନ୍ତୁ ମନରୁ ରାଗ ଯାଇ ନାହିଁ। ଅପମାନ ମଧ୍ୟ ଅସହ୍ୟ ବୋଧ ହେଲା। ଏସବୁ ପ୍ରତିକାରର କିଛି ଉପାୟ ନ ପାଇ ଶେଷରେ ଯାଇ ବିଶ୍ୱାଳଙ୍କ ନିକଟରେ ନାଲିଶ କଲି। ବିଶ୍ୱାଳଙ୍କ ନିକଟରେ ମୋର ଗୁହାରି କରିବାର ଆହୁରି ମଧ୍ୟ କାରଣ ଅଛି। ମୁଁ ନ କରିଥିଲେ ହେଡ୍‌ମାଷ୍ଟର ମହାଶୟ ମୋ ନାମରେ ନାଲିଶ କରିଥାନ୍ତେ। ଏପରି ଅବସ୍ଥାରେ ମୁଁ ଯାଇ ଆଗରୁ ପହୁଞ୍ଚିବା ଉଚିତ ଭାବି, ଭାବଗ୍ରାହୀବାବୁଙ୍କ ନିକଟରେ ସମସ୍ତ ଘଟଣା ଜଣାଇଲି। ମୋଠାରୁ ଶୁଣି ହେଡ୍‌ମାଷ୍ଟର ମହାଶୟଙ୍କୁ ଡକରା ହେଲା। ମାଷ୍ଟର ମହାଶୟ କହିଲେ, "ଗୋବିନ୍ଦ ମୋର ଛାତ୍ର, ମୁଁ ଏହାର ଅନିଷ୍ଟ ଇଚ୍ଛା କରେ ନାହିଁ। ମାତ୍ର ସେ ଯାହା କରୁଛି, ତାହା ରିପୋର୍ଟ କଲେ, ତାର ଛାତ୍ର ଜୀବନ ମାଟି ହୋଇଯିବ। ଇତ୍ୟାଦି।" ଉଭୟଙ୍କଠାରୁ ଶୁଣି ବିଶ୍ୱାଳେ ଭାରୀ ରାଗିଗଲେ। ସେ ରାଗି ମତେ ଇଂରାଜୀରେ କହିଲେ, "For this reason I don't wish that the Daspalla students should go out for higher education. All right. You must remember that I am the Dewan of this state. I shall see you" ଅର୍ଥାତ୍, ଏହିସବୁ କାରଣରୁ ଦଶପଲ୍ଲାର କେହି ଛାତ୍ର ଉଚ୍ଚ ଶିକ୍ଷାପାଇଁ ବାହାରକୁ ଯାଉ ଏହା ମୋର ଇଚ୍ଛା ନୁହେଁ। ଆଉ ମୁଁ ଷ୍ଟେଟ୍‌ର ଦେୱାନ, ଏହା ତୁମେ ମନେ ରଖିବା ଉଚିତ। ମୁଁ ତୁମକୁ ଦେଖୁଛି।

ଭାବଗ୍ରାହୀ ବାବୁ ଏପରି ରାଗିବାର ଦେଖି ମୁଁ ଟିକିଏ ଦବିଗଲି। ଏହାର ଉତ୍ତର ଦେବାକୁ ମୋର କିଛି ନାହିଁ। ମୁଁ ନୀରବରେ ଠିଆହୋଇ ରହିଥାଏ। ପୁଣି ସେ ହେଡ୍‌ମାଷ୍ଟରଙ୍କୁ କହିଲେ, "ହେଡ୍‌ମାଷ୍ଟର ବାବୁ, ଆପଣଙ୍କର ଯାହା ସବୁ କହିବାର ଅଛି, ସେ ବିଷୟରେ ସାକ୍ଷୀ ପ୍ରମାଣ ଧରି ଆଜି ସନ୍ଧ୍ୟାରେ ଉପସ୍ଥିତ ହେବେ। ଆଜି ମୁଁ ଏହାର, ବିଚାର କରିବି।" ମତେ ମଧ୍ୟ ସାକ୍ଷୀ ପ୍ରମାଣ ସହିତ ସନ୍ଧ୍ୟାରେ ଉପସ୍ଥିତ ହେବାକୁ ଆଦେଶ ଦେଲେ। ମୁଁ ବିଶ୍ୱାଳଙ୍କ ବସା ଛାଡ଼ି ଘରେ ଉପସ୍ଥିତ

ହେଲି। ଏହି ସଂବାଦ ବିଜୁଳିପରି ଗଡ଼ରେ ବ୍ୟାପିଗଲା। ସେତେବେଳକୁ ଦଶପଲ୍ଲା ରାଜ୍ୟର ଭିନ୍ନ ଭିନ୍ନ ଅଞ୍ଚଳରୁ ଅନେକ ବଡ଼ ବଡ଼ ପ୍ରଜା ସବୁ ଗଡ଼ ମୁକାମକୁ ତକରା ହୋଇ ଆସିଥାନ୍ତି। ମୁଁ କଟକରେ ପଢୁଥିବାରୁ ଏବଂ ଦଶପଲ୍ଲାରୁ କେତୋଟି ଛାତ୍ର କିପରି କଟକ ପାଠ ପଢ଼ିବାକୁ ଯିବେ, ଏହି ଚେଷ୍ଟା କରୁଥିବାରୁ ରାଜ୍ୟର ଜଣାଶୁଣା ଲୋକେ ସମସ୍ତେ ମତେ ଜାଣିଥିଲେ। ଗଡ଼ରେ ସେଦିନ ହାଜର ଥିବା ରାଜ୍ୟର ଜଣାଶୁଣା ଲୋକେ ସମସ୍ତେ ଏହି ଘଟଣା ଶୁଣିବାକୁ ପାଇଲେ। ସମସ୍ତଙ୍କ ମନରେ ଉଦ୍‌ବେଗ ଆସିଲା। ଏ ଘଟଣା କିପରି ଆକାର ଧାରଣ କରିବ, ଏ ବିଷୟ ନେଇ ନାନା ଲୋକେ ନାନା ପ୍ରକାର କଳ୍ପନା କରିବାକୁ ଲାଗିଲେ। ନରସିଂହ, ଅନନ୍ତ, ବନମାଳୀ ସମସ୍ତଙ୍କ ମନରେ ଭୟ ଜାତ ହେଲା। ଏ ଘଟଣାର ବିଚାର କରି ସର୍ବସାଧାରଣରେ ମୋତେ ବେତ ପ୍ରହାର ଦେବା ବିଶ୍ୱାଳଙ୍କର ଇଚ୍ଛା ବୋଲି ତାହାଙ୍କର ଭାବଭଙ୍ଗିରୁ ମୋର ଗୋଟାଏ ବିଶ୍ୱାସ ଜନ୍ମି ଯାଇଥାଏ।

ଗଡ଼ଜାତ ପ୍ରଜା ସବୁବେଳେ ଭୟରେ ଜୀବନ କଟାଉଥାନ୍ତି। ମୁହଁ ଖୋଲି ନ୍ୟାୟ ଅନ୍ୟାୟ ବାଛିବାର ସ୍ୱାଧୀନତା ଗଡ଼ଜାତ ପ୍ରଜାଙ୍କର ନାହିଁ। ରାଜା କିମ୍ବା ଦେଓ୍ୱାନଙ୍କର କାର୍ଯ୍ୟକୁ ଅନ୍ୟାୟ କହିବା ହେଉଛି ବଡ଼ ଅପରାଧ। ଏପରି ଅବସ୍ଥାରେ ସମସ୍ତଙ୍କର ମୋ ପ୍ରତି ସହାନୁଭୂତି ଥିଲେ ମଧ ମୋତେ ସମର୍ଥନ କରିବାକୁ କାହାରି ସାହସ ନାହିଁ। ସୁତରାଂ ଏ ଘଟଣାର ପରିଣାମ କିପରି ଆକାର ଧାରଣ କରିବ ତାହା ଜାଣିବାକୁ ସମସ୍ତେ ଉଦ୍‌ବିଗ୍ନ ହେବା ସ୍ୱାଭାବିକ। ସମସ୍ତଙ୍କ ମନରେ ଗୋଟାଏ ଆତଙ୍କଭାବ ସୃଷ୍ଟି ହୋଇଗଲା। ସେ ଯାହା ହେଉ ସନ୍ଧ୍ୟା ସମୟରେ ମୁଁ ଯାଇ ବିଶ୍ୱାଳଙ୍କ ବସାରେ ହାଜର ହେଲି। ମୁଁ ଉପସ୍ଥିତ ହେଲାବେଳକୁ ବିଶ୍ୱାଳଙ୍କ କଚେରୀ ଲାଗିଛି।

ଦଶପଲ୍ଲାରେ ଭାବଗ୍ରାହୀ ବାବୁଙ୍କ କଚେରୀ ସମୟର କିଛି ଠିକଣା ନ ଥାଏ। କେଉଁଦିନ ସକାଳୁ ତ, କେଉଁଦିନ ରାତି ଦୁଇପ୍ରହର ବେଳେ ମଧ କଚେରୀ ବସେ। ମାଲିମକଦ୍ଦମାର ବିଚାର ହୁଏ। ଏଥିପାଇଁ ପ୍ରଜାସବୁ ଦିନରାତି ସବୁବେଳେ ବିଶ୍ୱାଳଙ୍କ ସୁବିଧା ଅସୁବିଧାକୁ ଅନାଇଁ ପଡ଼ି ରହିଥାନ୍ତି। ସେ ଯାହା ହେଉ, ମୁଁ ଉପସ୍ଥିତ ହେବାର କିଛି ସମୟ ପରେ ହେଡ୍‌ମାଷ୍ଟର ବାବୁ ଆସି ଉପସ୍ଥିତ ହେଲେ। ତାହାଙ୍କ ସହିତ ବାବୁ ବଳରାମ ମିଶ୍ର ମଧ ସାକ୍ଷ୍ୟ ଦେବାକୁ ଆସିଥିଲେ। ମୋ ସହିତ ଅନନ୍ତ, ବନମାଳୀ, ନରସିଂହ ଓ ଦୟାନିଧି ପ୍ରଭୃତି ସମସ୍ତେ ରହିଥାନ୍ତି। ଗଡ଼ର ଅନ୍ୟାନ୍ୟ ଅନେକ ବ୍ୟକ୍ତି ମଧ ଏହି ଘଟଣାର ରହସ୍ୟ ଦେଖିବାକୁ ଆସି କଚେରୀରେ ଉପସ୍ଥିତ। ରାଜ୍ୟର ଭିନ୍ନ ଭିନ୍ନ ଅଞ୍ଚଳରୁ ଆସିଥିବା ବଡ଼ ବଡ଼ ପ୍ରଜା ମଧ କଚେରୀରେ ଅଛନ୍ତି। ଏପରି ଅବସ୍ଥାରେ ମୋର ନାଲିଶର ବିଚାର ଆରମ୍ଭ ହେଲା। ହେଡ୍‌ମାଷ୍ଟର ବାବୁ ମୋ ନାମରେ ତିନୋଟି ଦଫାର ଅଭିଯୋଗ ଆଣିଲେ:–

(୧) ମୁଁ ରାଜ୍ୟରେ ଲୋକଙ୍କୁ ଶିକ୍ଷା ଦେଉଛି, ଗଡ଼ସ୍କୁଲକୁ ପିଲା ନ ପଠାଇବାକୁ। କାରଣ ସ୍କୁଲରେ ଭଲ ପାଠ ପଢ଼ା ହୁଏ ନାହିଁ। ଏଥିରେ କେତେକ ଲୋକଙ୍କର ମନ ବଦଳି ଯାଉଛି, ତେଣୁ ସେମାନେ ପିଲା ପଠାଇବାକୁ ନାରାଜ। ଏପରି ହେଲେ ଏ ସ୍କୁଲ ଚଳିବ କିପରି ?

(୨) ଗୋବିନ୍ଦ ମିଶ୍ର ଘରେ ତାର ଗୋଟିଏ ଆଡ୍‌ଡ଼ା କରିଛି। ସନ୍ଧ୍ୟାବେଳେ ଗଡ଼ର ଛାତ୍ରମାନଙ୍କୁ ପଢ଼ାଇବା ବାହାନାରେ ଡକାଇ ସ୍କୁଲ ବିରୁଦ୍ଧରେ ନାନା କଥା ଶିକ୍ଷା ଦେଉଛି। ରାଜ ସରକାରଙ୍କ ବିନାନୁମତିରେ ଘରେ ଗୋଟାଏ ଚୌକି ଓ ମେଜ ରଖିଛି।

(୩) ସ୍କୁଲରେ ପାଠ ପଢ଼ାଉଥିବାବେଳେ ସେ ମତେ ଅପମାନ ଦେଇଛି। ସେ ମତେ ଅପମାନ ଦେଇ ନାହିଁ, ମୁଁ ଯେଉଁ ରାଜ ସରକାରଙ୍କ ଚୌକି ଉପରେ ବସିଥିଲି, ସେ ତାହାକୁ ଅପମାନ ଦେଇଛି। ରାଜ ସରକାରଙ୍କୁ ଅପମାନ ଦେଇଛି।

ଏହିପରି ତିନୋଟି ଦଫାରେ ହେଡ଼ମାଷ୍ଟର ବାବୁ ମୋ ନାମରେ ରିପୋର୍ଟ ଦେଲେ। ଏହାର ସାକ୍ଷୀ ପ୍ରମାଣ ନିଆ ହେଲା। ପ୍ରଥମେ ବାବୁ ବଳରାମ ମିଶ୍ର ସାକ୍ଷ୍ୟ ଦେଲେ। ତାଙ୍କ ପରେ ରାମଚନ୍ଦ୍ର ମିଶ୍ର ପ୍ରଭୃତି ୨/୩ ଜଣଙ୍କୁ ପଚରାଗଲା। ଏହି କେତେଜଣ ଯେପରି ଯାହା କହିଲେ ତହିଁରେ ସମସ୍ତ ଘଟଣା ଗୋଟାଏ ରହସ୍ୟ ପରି ବୋଧ ହେଲା। ଭାବଗ୍ରାହୀ ବାବୁ ବଡ଼ ବିଚକ୍ଷଣ ଲୋକ। ସେ ହଠାତ୍ ସ୍ୱର ବଦଳାଇ କହିଲେ, ‘‘ଏ ଗୋଟିଏ ଛାତ୍ର ଓ ଶିକ୍ଷକ ଭିତରେ ଝଗଡ଼ା। ଏହା କଚେରୀ ଭିତରେ ଏତେ ଲୋକଙ୍କ ଆଗରେ ପଡ଼ିବା ସୁନ୍ଦର ହେଉ ନାହିଁ। ବର୍ତ୍ତମାନ ମୋର କେତେ କାର୍ଯ୍ୟ ବାକି ଅଛି। ରାଜ୍ୟର ବହୁତ ପ୍ରଜା ଆସି ଜମା ହୋଇଛନ୍ତି। ସେମାନଙ୍କ କଥା ମତେ ବୁଝିବାକୁ ହେବ। ଏସବୁ ବୁଝିବାକୁ ମତେ ସମୟ ନାହିଁ।’’ ଏହା କହି ମତେ କହିଲେ, ‘‘ଗୋବିନ୍ଦ, ତୁମେ ଯାଅ, ହେଡ଼ମାଷ୍ଟର ବାବୁଙ୍କୁ କ୍ଷମା ମାଗ। ସେ ତୁମ୍ଭର ଶିକ୍ଷକ। ତୁମ୍ଭର ପିତୃତୁଲ୍ୟ ଅଟନ୍ତି। ତୁମ୍ଭ ବ୍ୟବହାରରେ ତାଙ୍କ ମନରେ କଷ୍ଟ ହୋଇଛି। ତୁମ୍ଭେ ତାଙ୍କୁ କ୍ଷମା ମାଗି ନିଅ। ହେଡ଼ମାଷ୍ଟରଙ୍କୁ କ୍ଷମା ମାଗିବାକୁ ମୁଁ ତୁମ୍ଭକୁ ଅନୁରୋଧ କରୁଛି।’’ ହେଡ଼ମାଷ୍ଟର ମହାଶୟଙ୍କୁ ମଧ ଏହି ମର୍ମରେ ଦୁଇ ଚାରିପଦ କହି ଏହି ଘଟଣାକୁ ଏହିଠାରେ ଲିଭାଇ ଦେଲେ। ବିଶ୍ୱାଳଙ୍କ ଅନୁରୋଧ ରକ୍ଷା କରିବା ପାଇଁ ମୁଁ କ୍ଷମା ମାଗିବା ବାହାନାରେ ହେଡ଼ମାଷ୍ଟରଙ୍କୁ ସେହିଠାରେ କେତେକ ଅପ୍ରିୟ ସତ୍ୟ କଥା କହି ଚାଲି ଆସିଲି। ମୋ ପଛରେ ପ୍ରାୟ ଶତାଧିକ ଲୋକ ଚାଲିଆସିଲେ। ଏହି ବ୍ୟାପାର ଏପରି ଭାବରେ ନିଷ୍ପତ୍ତି ହେବାରେ ଆମ୍ଭେମାନେ ଅବଶ୍ୟ ଅତିଶୟ ଆନନ୍ଦିତ ହୋଇଥିଲୁ। ହେଡ଼ମାଷ୍ଟର ମହାଶୟ ମଧ ସବୁ ଭୁଲିଯାଇ ପୁଣି ପୂର୍ବପରି ମୋ ସହିତ କଥୋପକଥନ କରିଥିଲେ। ନିମାଇଁ କଟକରେ ପଢ଼ିବାପାଇଁ ଟ୍ରାନ୍‌ସଫର ସାର୍ଟିଫିକେଟ୍ ଖଣ୍ଡିକ ଦେଇଥିଲେ।

# ଚତୁର୍ଥ ପରିଚ୍ଛେଦ

ଗ୍ରୀଷ୍ମାବକାଶ ଶେଷ ହେଲା। ମୁଁ କଟକ ଆସିବାକୁ ଉଦ୍ୟତ ହେଲି। ନିମାଇଁ ଓ ହରିହର ମୋ ସଙ୍ଗରେ ଆସିବାର ସ୍ଥିର ହେଲା। ହରିହରଙ୍କ ପିତାଙ୍କ ନାମ କୃପାସିନ୍ଧୁ ବୈଦ୍ୟବ୍ରହ୍ମା। ସେ ହେଉଛନ୍ତି ରାଜବୈଦ୍ୟ। କେତେକ ପୁରୁଣାକାଳିଆ ତାଳପତ୍ରରେ ଲେଖା ପୋଥି ପଢ଼ି ସେ ବୈଦ୍ୟବୃତ୍ତି କରନ୍ତି। କବିରାଜ ବିଦ୍ୟାରେ କେତେ ଉନ୍ନତି ହେଲାଣି ତାହାଙ୍କୁ ଜଣା ନାହିଁ। ସେ ବର୍ତ୍ତମାନ ମୋର ପରାମର୍ଶରେ ତାଙ୍କର ପୁତ୍ର ଶ୍ରୀମାନ୍ ହରିହରଙ୍କୁ ମୋ ସଙ୍ଗରେ କଟକ ପଠାଉଅଛନ୍ତି। ମୋର ଉଦ୍ଦେଶ୍ୟ ଯେ, କୌଣସି ବିଷୟ ଅଧ୍ୟୟନ କରିବା ପାଇଁ କଟକରେ କିଛିଦିନ ରହିଗଲେ, ଅନେକ କଥା ଜାଣି ପାରିବ। ଏହିପରି ଭାବରେ ହରିହର ଓ ନିମାଇଁଙ୍କୁ ସଙ୍ଗରେ ଧରି ମୁଁ କଟକରେ ଉପସ୍ଥିତ ହେଲି। ନିମାଇଁ ଅନନ୍ତ ନିକଟରେ ରହିଲା। ହରିହର କବିରାଜ ଶ୍ରୀ ଶ୍ୟାମସୁନ୍ଦର ଶାଠିଆଙ୍କ ନିକଟରେ ରହି କବିରାଜି ଶିକ୍ଷାକଲା। ମୁଁ ମିଶନ ସ୍କୁଲ ହିନ୍ଦୁ ହଷ୍ଟେଲରେ ରହିଥାଏ। ପ୍ରାୟ ପ୍ରତିଦିନ ଏମାନଙ୍କ ନିକଟକୁ ଆସେ। ଦଶପଲ୍ଲୀ ଅବସ୍ଥା ଅନେକ ସମୟରେ ଆଲୋଚନା ପଡ଼େ। କଟକରେ ଦଶପଲ୍ଲୀ ମେସ୍ ଗୋଟିଏ କରିବାକୁ ବେଳେ ବେଳେ ମୁଁ ପ୍ରସ୍ତାବ କରେ। ମାତ୍ର ମେସ୍ କରି ସମସ୍ତେ ଏକାଠି ରହିବାପାଇଁ ଆର୍ଥିକ ଅବସ୍ଥା ସମସ୍ତଙ୍କର ଅନୁକୂଳ ନ ଥିବାରୁ ଏହି ଇଚ୍ଛା କାର୍ଯ୍ୟରେ ପରିଣତ ହୋଇ ପାରେ ନାହିଁ।

ଏହି ଦଶପଲ୍ଲୀ ମେସ୍‌ର କଳ୍ପନା ମନରେ ଜାତ ହେବା ପରେ, ଦେଶର ଅବସ୍ଥା ବିଚାର କରିବା ପାଇଁ ଗୋଟିଏ ଦଳ ଗଢ଼ିବାର ଭାବ ମୋ ମନରେ ଜନ୍ମିଲା। ମିଶନ ସ୍କୁଲରେ ବାଇବଲ୍ ଖ୍ରୀଷ୍ଟିୟାନ ଗ୍ରନ୍ଥ ଶିକ୍ଷା ଦିଆଯାଏ। ଯେଉଁ ଶିକ୍ଷକ ଏହି ବାଇବଲ୍ ଆମ କ୍ଲାସରେ ପଢ଼ାନ୍ତି ତାହାଙ୍କ ସହିତ ଆମ୍ଭେ କେତେଜଣ ଭାରି ଯୁକ୍ତି କରୁ। ମଧୁସୂଦନ ମହାନ୍ତି, କୃତ୍ତିବାସ ନନ୍ଦ ଓ ମୁଁ ଆମ୍ଭେ ତିନିଜଣ ପ୍ରାୟ ଏହି ଯୁକ୍ତି ଆରମ୍ଭ କରୁ। ମଧୁ ରାମକୃଷ୍ଣ କଲେଜରେ ରହିଥାଏ, ତାହାର ଘର ଆଠଗଡ଼। କୃତ୍ତିବାସ ସବୁ ବିଷୟରେ ଟିକିଏ ଆଗକୁହା। ଏହି ଦୁଇଜଣଙ୍କ ସହିତ ମୋର ମନ ମିଳୁଥାଏ। ଅନ୍ତର୍ଯ୍ୟାମୀ ପଟ୍ଟନାୟକ ନାମକ ଆମ୍ଭର ଆଉ ଜଣେ ସହାଧ୍ୟାୟୀ ଥାଏ। ନୟାଗଡ଼ରୁ ଅନ୍ତର୍ଯ୍ୟାମୀ ସହିତ ମୋର ପରିଚୟ। ସେ କଟକ ଆସି ମିଶନ ହିନ୍ଦୁ ହଷ୍ଟେଲରେ ମଧ୍ୟ ଥାଏ। ମୋ ସହିତ ପରିଚିତ ଥିବାରୁ ସେ ହିନ୍ଦୁ ହଷ୍ଟେଲକୁ ଆସିଥାଏ। ଅନ୍ତର୍ଯ୍ୟାମୀ ମଧ୍ୟ ଅନେକ ସମୟରେ ଆମ୍ଭମାନଙ୍କ ସହିତ ନାନାପ୍ରକାର ଆଲୋଚନାରେ ଯୋଗ ଦିଏ। ମୁଁ ପ୍ରଥମେ ମଧୁ ଓ କୃତ୍ତିବାସକୁ ଏହି ଦଳ ବାନ୍ଧିବା କଥା କହିଲି। ସେମାନେ ମୋର ପ୍ରସ୍ତାବ ଶୁଣିଲା ମାତ୍ରକେ ଏହା ଗଢ଼ିବାକୁ ଅଙ୍ଗୀକାର କଲେ। କୃତ୍ତିବାସ, ମଧୁ ଓ ମୁ ଆମ୍ଭେ ତିନିଜଣ

ପ୍ରଥମେ ଏ ବିଷୟରେ ଏକମତ ହେଲୁ। ତାପରେ ଅନ୍ତର୍ଯ୍ୟାମୀ ଓ ବିନୋଦଙ୍କୁ ସାଥି କଲୁଁ। ବିନୋଦ ମଧ୍ୟ ଆମ୍ଭର ସହାଧ୍ୟାୟୀ। ସେ ରାମକୃଷ୍ଣ କଟେଜ୍‌ରେ ମଧୁ ସହିତ ରହିଥାଏ। ସେ ଯାହା ହେଉ ଏହିପରି ଭାବରେ ଆମ୍ଭେ ପାଞ୍ଚଜଣ ମିଶି ଗୋଟିଏ ଗୁପ୍ତ ସମାଜ (Secret Socity) ସ୍ଥାପନ କଲୁ। ପ୍ରତି ମଙ୍ଗଳବାର ଓ ଶୁକ୍ରବାର ଦିନ ସ୍କୁଲର ଖେଳଛୁଟି ବେଳେ ଆମ୍ଭେ ଏହି ପାଞ୍ଚଜଣ ଏକାଠି ବସି ନାନାକଥା ଆଲୋଚନା କରୁ। ମଧୁବାବୁଙ୍କ କୋଠି ସମ୍ମୁଖ ପଡ଼ିଆର କୋଠୋଟି ଆମ୍ବଗଛ ତଳେ ଆମ୍ଭର ଏହି ବୈଠକ ବସେ। ବର୍ତ୍ତମାନ ସେଠାରେ କଟକ କ୍ଲବ ଘର ନିର୍ମିତ ହୋଇଅଛି। ଯାହା ସବୁ ବସି ଆଲୋଚନା କରୁ ସେ ସବୁର ଗୋଟିଏ ବିବରଣୀ ଲେଖିରଖୁ।

ଏହି ସଙ୍ଘଟି ସ୍ଥାପନ କଲା ପରେ ଆମ୍ଭେମାନେ ପ୍ରତ୍ୟେକ ଦେଶ କାର୍ଯ୍ୟରେ ଜୀବନ ଉତ୍ସର୍ଗ କରିବାକୁ ସଂକଳ୍ପ କଲୁ। ଦେଶ କାର୍ଯ୍ୟ କରିବାକୁ ହେଲେ ପ୍ରଥମେ ନିଜ ନିଜକୁ ତିଆର କରିବା ଦରକାର। ପଲ୍ଲୀ ଗ୍ରାମରୁ ଛାତ୍ରମାନେ କଟକ ଅଧ୍ୟୟନ କରିବାକୁ ଆସିଲେ, ସେମାନଙ୍କର କେତେଗୁଡ଼ିଏ ବଦଭ୍ୟାସ ହୋଇଯାଏ। ଗୁଡ଼ାଖୁରେ ଦାନ୍ତ ଘଷିବା, ଚନ୍ଦନୀ ବିଡ଼ି ଖାଇବା ଏହି ଦୁଇଟି ପ୍ରଥମେ ଅଭ୍ୟାସ ପଡ଼େ। ଆମ୍ଭେମାନେ କେହି ଏଥିରୁ ମୁକ୍ତ ନ ଥାଉ। ଆମ୍ଭ ଗୁପ୍ତ ସମାଜର ପ୍ରଥମ କାର୍ଯ୍ୟ ହେଲା ନିଜ ନିଜକୁ ସଂଶୋଧନ କରିବା। ତେଲ ଲଗାଇବା ମଧ୍ୟ ଅନାବଶ୍ୟକ। ଆମ୍ଭେମାନେ ସମସ୍ତେ ବିଡ଼ି ପାନ ଓ ତେଲ ଛାଡ଼ିଲୁ। କିନ୍ତୁ ବିନୋଦ ପାନ ଖଣ୍ଡିକ ଛାଡ଼ି ପାରେ ନାହିଁ। ଏଥିପାଇଁ ଆମ୍ଭେମାନେ ତାକୁ ବହୁତ ଥଟ୍ଟା ପରିହାସ କରୁ। ବେଳେ ବେଳେ ଗାଳି ଓ କାନମୋଡ଼ା ପର୍ଯ୍ୟନ୍ତ ଦେଉ।

ଆମ୍ଭମାନଙ୍କ ସମୟକୁ ମିଶନ ସ୍କୁଲରେ ଡିବେଟିଙ୍ଗ କ୍ଲବ କିମ୍ବା ଗରିବ ଛାତ୍ରଙ୍କୁ ସାହାଯ୍ୟ କରିବାପାଇଁ ପାଣ୍ଠି ନଥାଏ। ଆମ୍ଭମାନଙ୍କ ଚେଷ୍ଟାରେ ସ୍କୁଲରେ ଗୋଟିଏ ଡିବେଟିଙ୍ଗ କ୍ଲବ ହେଲା। ଗୋଟିଏ ଗରିବ ପାଣ୍ଠି (Poor fund) ମଧ୍ୟ ହେଲା। ଗରିବ ପାଣ୍ଠି ପାଇଁ ପିଲାମାନଙ୍କ ନିକଟରୁ ପଇସା ଆଦାୟ କରିବା, ଡିବେଟିଙ୍ଗ କ୍ଲବରେ କହିବା ଓ ରଚନା ଲେଖିବା ଆଦି ସବୁ ବିଷୟରେ ଆମ୍ଭେମାନେ ଯେ ଅଗ୍ରଣୀ ଥାଉ ଏକଥା କହିବା ଅନାବଶ୍ୟକ। ଆମ୍ଭମାନଙ୍କ ଚେଷ୍ଟାରେ ଖଣ୍ଡିଏ ହାତଲେଖା ମାସିକ ପତ୍ରିକା ମଧ୍ୟ ବାହାରିଲା। ଡିବେଟିଙ୍ଗ କ୍ଲବରେ ଆଲୋଚନା ପାଇଁ 'ଅପ୍ରକୃତ ଲଜ୍ଜା' ନାମକ ଗୋଟିଏ ପ୍ରବନ୍ଧ ଥରେ ମୁଁ ପାଠ କରିଥିଲି। ମୋର ସେହି ଲେଖାଟି ଅତି ଉଚ୍ଚ ଧରଣର ଲେଖା ହୋଇଥିଲା ବୋଲି ସମସ୍ତେ ପ୍ରଶଂସା କରିଥିଲେ। ଏହି ପ୍ରଶଂସାରେ ମୁଁ ମଧ୍ୟ ଟିକିଏ ଗର୍ବ ଅନୁଭବ କରିଥିଲା ପରି ମୋର ମନେହୁଏ। ସେତେବେଳେ ମୁଁ ମଧ୍ୟ ଭଲ ପ୍ରବନ୍ଧ ଲେଖି ପାରୁଥିଲି।

ଏହି ସମୟରେ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ମିଶନ ସ୍କୁଲର ଶିକ୍ଷକ ଥାନ୍ତି। ସେ ବର୍ତ୍ତମାନ ଭାରତ ସେବକ ସମାଜର ଜଣେ ସଭ୍ୟ। କିନ୍ତୁ ସେତେବେଳେ

ସେ ଆଇ.ଏ.ମାତ୍ର ପାଶ୍ କରିଥିଲେ। ଏହି ମିଶନ ସ୍କୁଲରେ ଶିକ୍ଷକ ଥାଇ ବି.ଏ. ପରୀକ୍ଷା ଦେଇ ସେ ବି.ଏ. ଉପାଧି ପ୍ରାପ୍ତ ହେଲେ। ଲକ୍ଷ୍ମୀନାରାୟଣ ବାବୁ ସବୁ ବିଷୟରେ ଛାତ୍ରମାନଙ୍କୁ ଉତ୍ସାହ ଉତ୍ତେଜନା ଦେବା ବ୍ୟକ୍ତି। ସେ ଯାହା ଭାବିଥିବେ ତାହା କରିଯିବେ। ଏଥିପାଇଁ ଦୁନିଆଁ କଣ କହୁଛି ସେଥିକୁ ତାଙ୍କର ଭ୍ରୂକ୍ଷେପ ନ ଥାଏ। ଏହି ସମୟରେ ସେ ଖଣ୍ଡିଏ ବହି ଲେଖି, ଲେଖକ ଜାତିରେ ପାଣ ବୋଲି ପ୍ରକାଶ କରିଥିଲେ। ମିଶନ ସ୍କୁଲରେ ପଣ୍ଡିତ ଦୀନବନ୍ଧୁ ଦାସ ସଂସ୍କୃତ ହେଡ୍ ପଣ୍ଡିତ। ଶ୍ରୀଯୁକ୍ତ ଦୈତ୍ୟାରି ମିଶ୍ର ଓଡ଼ିଆ ଶିକ୍ଷକ ଓ ମିଶନ ହିନ୍ଦୁ ହଷ୍ଟେଲର ସୁପରିଂଟେଣ୍ଡେଣ୍ଟ। ଏହି ଦୁଇଜଣ ଲକ୍ଷ୍ମୀନାରାୟଣ ବାବୁ ଏପରି ନିଜକୁ ଜାତିରେ ପାଣ ବୋଲି ଲେଖିଥିବାରୁ ତାହାଙ୍କ ପ୍ରତି ସାମାଜିକ କଠୋର ନିୟମ ପ୍ରୟୋଗ କରିଥିଲେ। ଲକ୍ଷ୍ମୀନାରାୟଣ ବାବୁଙ୍କ ସହିତ ହିନ୍ଦୁ ଛାତ୍ର ଯେଉଁମାନେ ମିଳାମିଶା କରନ୍ତି ସେମାନଙ୍କୁ ମଧ ଏହି ଦୁଇ ଶିକ୍ଷକ ଭଲ ଦୃଷ୍ଟିରେ ଦେଖନ୍ତି ନାହିଁ। କିନ୍ତୁ ଆମ୍ଭେମାନେ କିଛି ନ ମାନି ଲକ୍ଷ୍ମୀନାରାୟଣ ବାବୁଙ୍କ ସହିତ ମିଳାମିଶା କରୁ। ଅନେକ ସମୟରେ ସେ ଆସି ଆମ୍ଭର ଏହି ଗୁପ୍ତ ସମାଜରେ ଯୋଗ ଦେଇ ନାନା କଥା ଆଲୋଚନା କରନ୍ତି। ଦିନେ ଦିନେ ଆମ୍ଭେମାନେ ଖରା କେତେ ସହି ପାରିବା ଏହା ପରୀକ୍ଷା କରିବାପାଇଁ ଲକ୍ଷ୍ମୀନାରାୟଣ ବାବୁଙ୍କ ସହିତ ଖରାରେ ଖାଲି ଗୋଡ଼ ଖାଲି ମୁଣ୍ଡରେ ବୁଲୁ। ଲକ୍ଷ୍ମୀନାରାୟଣ ବାବୁଙ୍କୁ ସମସ୍ତେ କହନ୍ତି ପାଗଳା। ତାଙ୍କ ସହିତ ଆମ୍ଭେମାନେ ମଧ ଏକପ୍ରକାର ପାଗଳ।

## ପଞ୍ଚମ ପରିଚ୍ଛେଦ

ବିଦ୍ୟାଧର ମିଶ୍ର ମୋର କକେଇ ପୁଅ ଭାଇ। ସେ ଦଶପଲ୍ଲା ଗଡ଼ ସ୍କୁଲରେ ପଢୁଥାଏ। ନିମାଇଁକୁ କଟକ ଆଣିଲା ପରେ ବିଦ୍ୟାଧର କଟକ ଆସିବା ପ୍ରଶ୍ନ ମୋର ମନରେ ବାରମ୍ବାର ଉଦିତ ହେଲା। ମନେ ମନେ ଭାବିଲି, ମୁଁ ଦେଶପାଇଁ ଜୀବନ ଦେବାକୁ ବ୍ୟାକୁଳ। କିନ୍ତୁ ନିଜର ଭାଇପ୍ରତି ମୋର କର୍ତ୍ତବ୍ୟ କରି ନ ପାରିଲେ ଦେଶକାର୍ଯ୍ୟ ମୁଁ ଆଉ କଣ କରିବି? ଏହିପରି ଭାବ ମଧ ମନକୁ ଚଞ୍ଚଳ କଲା। କିନ୍ତୁ ବିଦ୍ୟାଧରକୁ କଟକ ଆଣିବାକୁ ହେଲେ ତାହାର ସମସ୍ତ ଖର୍ଚ୍ଚ ମତେ ବହନ କରିବାକୁ ପଡ଼ିବ। ଘରୁ ତ ଗୋଟିଏ ପଇସା ମଧ ମିଳିବାର ସମ୍ଭାବନା ନାହିଁ। ଏଥିପାଇଁ ମୁଁ ଭାବେ ମୋର କର୍ତ୍ତବ୍ୟ କଣ? କିନ୍ତୁ ଭାବି କିଛି ସ୍ଥିର କରି ପାରେ ନାହିଁ। ବିଦ୍ୟାଧର କଟକ ଆସିଲେ ମତେ ମିଶନ ହିନ୍ଦୁ ହଷ୍ଟେଲ ଛାଡ଼ି ଆସିବାକୁ ହେବ, ପୁଣି ଦୁଃଖ କଷ୍ଟରେ ଚଳିବାପାଇଁ ପ୍ରସ୍ତୁତ ହେବାକୁ ହେବ।

ଏହିପରି ଭାବନା ମନରେ ଖେଳୁଛି, ଏପରି ସମୟରେ ଦଶପଲ୍ଲାରୁ ସଂବାଦ ପାଇଲି କକେଇ ଭୟଙ୍କର ପୀଡ଼ିତ। ତାହାଙ୍କର ବଞ୍ଚିବାର ଆଶା ନାହିଁ। ଏ ସଂବାଦ

ପାଇ ଦଶପଲ୍ଲା ଗଲି। ମାତ୍ର ଦଶପଲ୍ଲା ପହୁଞ୍ଚିବା ପୂର୍ବରୁ ବଢେଇ ଆଉ ନାହାନ୍ତି। ସେ ଇହଧାମ ଛାଡ଼ି ଚାଲି ଗଲେଣି। ଘରେ ପହୁଞ୍ଚି ଶୁଣିଲି, ମୃତ୍ୟୁ ପୂର୍ବରୁ ବଢେଇ ମତେ ଦେଖିବାକୁ ବଡ଼ ଅଧୀର ହେଉଥିଲେ।

ସେ ଯାହା ହେଉ କୌଣସି ପ୍ରକାରେ ବଢେଇଙ୍କ ଶୁଦ୍ଧିକ୍ରିୟା ଶେଷ କଲି। ବର୍ତ୍ତମାନ ମୋର କର୍ତ୍ତବ୍ୟ କଣ ଏ ପ୍ରଶ୍ନ ଅତି ଭୀଷଣ ଆକାରରେ ମୋ ସମ୍ମୁଖରେ ଦଣ୍ଡାୟମାନ। ବଢେଇ କୌଣସି ପ୍ରକାରେ ପରିବାର ଚଳାଚଳ କରାଉଥିଲେ। ବିଦ୍ୟାଧର ସ୍କୁଲରେ ପଢୁଛି, କିଛି ଜାଣେ ନାହିଁ। ମୁଁ ଯଦି ଏତେବେଳେ ଏମାନଙ୍କ ପ୍ରତି ଦୃଷ୍ଟି ନ ଦିଏ, ତେବେ ଏମାନଙ୍କ ଅବସ୍ଥା କଣ ହେବ, ତାହା କଳ୍ପନା କରି ହେବ ନାହିଁ। ମୁଁ କଣ କରିବି କିଛି ଭାବି ସ୍ଥିର କରି ପାରିଲି ନାହିଁ। ପାଠ ପଢ଼ା ଛାଡ଼ି କିଛି ଚାକିରି ନ କଲେ, ଏ ପରିବାରକୁ ପ୍ରତିପୋଷଣ କରାଯାଇ ନ ପାରେ। ଗଡ଼ଜାତରେ ବଡ଼ ହେଲେ ୧୦/୧୨ ଟଙ୍କାରେ ଖଣ୍ଡିଏ ଚାକିରି ମିଳିପାରେ। ତାହା ପୁଣି ସହଜ ନୁହେଁ। ମୋର ଭାବନାର କିଛି ଅନ୍ତ ରହିଲା ନାହିଁ। ଦେଶସେବା ଆଦି ସମସ୍ତ ପ୍ରକାର କଳ୍ପନା ଜଳ୍ପନା ମନରୁ କୁଆଡ଼େ ଉଭେଇଗଲା। ମୁଁ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ବସି ରହିଲି। ମୋତେ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଗଲା।

ଘରେ ଖୁଡ଼ୀ, ତାଙ୍କର ଦୁଇଟି କନ୍ୟା ଓ ଦୁଇଟି ପୁତ୍ର। ତାଙ୍କ ସାଙ୍ଗକୁ ମୋର ବୃଦ୍ଧା ପିଉସୀ। ଘରେ କିଛି ବୋଲି କିଛି ନାହିଁ। ନୟାଗଡ଼ ସମ୍ପତ୍ତି ଆଜି ପର୍ଯ୍ୟନ୍ତ ଋଣମୁକ୍ତ ହୋଇ ନାହିଁ। ଦଶପଲ୍ଲାରେ ଭୂସଂପତ୍ତି ହୋଇ କିଛି ନାହିଁ। ଏତେଗୁଡ଼ିଏ ଲୋକ କିପରି ଚଳିବେ? ଏମାନଙ୍କୁ ଏପରି ନିଃସହାୟ ଅବସ୍ଥାରେ ଛାଡ଼ିଦେଇ ମୁଁ ଚାଲିଯିବି କିପରି? ଏମାନଙ୍କୁ ଭୁଲିଯାଇ କଟକ ଯାଇ ପାଠ ପଢ଼ିବା ମୋ ପକ୍ଷରେ ଏକାବେଳକେ ଅସମ୍ଭବ। କଟକ ନ ଗଲେ ଘରେ ରହି କଣ କରିବି? କଟକ ଗଲେ ନୟାଗଡ଼ ଷ୍ଟେଟ୍ ସ୍କଲରସିପ୍ ମାସକୁ ନଟଙ୍କା ସିନା ପାଇବି। ଘରେ ବସିଲେ କଣ ମିଳିବ? ଏହିପରି ଭାବି ମାସରେ ଘରକୁ ଚାରୋଟି ଟଙ୍କା ସାହାଯ୍ୟ ଦେବାକୁ ସ୍ଥିର କରି ବିଦ୍ୟାଧରକୁ ସଙ୍ଗରେ ଧରି କଟକ ଆସିଲି।

କଟକ ଆସି ମିଶନ ହିନ୍ଦୁ ହଷ୍ଟେଲ ଛାଡ଼ି ଆସି ବର୍ତ୍ତମାନ ଅଦାଲତ ସମ୍ମୁଖ ଭାରତୀ କୋଠାରେ ରହିଲି। ଅନନ୍ତ ଓ ନିମାଇଁ ଏହିଠାରେ ରହିଥାନ୍ତି। ମୁଁ ଆସି ଏମାନଙ୍କ ସହିତ ରହିଲି, ବିଦ୍ୟାଧର ମୋ ସହିତ ରହିଲା। ମିଶନ ସ୍କୁଲରେ ବିଦ୍ୟାଧରର ନାମ ଲେଖାଇ ଦେଲି। ମିଶନ ସ୍କୁଲର ହେଡ଼ମାଷ୍ଟର ରେଭରେଣ୍ଡ ବ୍ରଜାନନ୍ଦ ଦାସ। ତାହାଙ୍କୁ ମୋର ସମସ୍ତ ଅବସ୍ଥା ଶୁଣାଇବାରେ ସେ ଆମ୍ଭ ଦୁଇଜଣଙ୍କ ସ୍କୁଲ ଦରମା ପୂରା ଛାଡ଼ କରିଦେଲେ। ଭାରତୀ କୋଠାରେ ମୁଁ ହାତରେ ରୋଷେଇ କରି ଖାଇଲି। ଏକାବେଳା ରୋଷେଇ କରୁ, ଜଣକ ଖାଦ୍ୟକୁ ଦୁଇଜଣ ବାଣ୍ଟି ଖାଉ। ଏହିପରି ଭାବରେ ଛାତ୍ର ଜୀବନ ପୁଣି ଚାଲିଲା।

ଏହି ସମୟରେ କଟକକୁ ବାବୁ ପ୍ରେମାନନ୍ଦ ଭାରତୀ ନାମରେ ଜଣେ ସିଦ୍ଧ ପୁରୁଷ ଆସିଲେ। ସେ କଟକ ଟାଉନ୍ ହଲରେ ଧର୍ମ ବିଷୟରେ ଗୋଟିଏ ବକ୍ତୃତା ଦେଲେ। ତାହାଙ୍କ ବକ୍ତୃତା ଶୁଣିବାକୁ ମୁଁ ଯାଇଥିଲି, ଏହା କହିବା ଅନାବଶ୍ୟକ। ସେ ଜଣେ ବଙ୍ଗାଳି, ବି.ଏ.ପାଶ୍ କରିଥାନ୍ତି। ସେ ଶ୍ରୀକୃଷ୍ଣଙ୍କ ଜଣେ ପରମ ଭକ୍ତ। ଶ୍ରୀକୃଷ୍ଣଙ୍କର ସାକ୍ଷାତ ଦର୍ଶନ ଲାଭ ସେ କିପରି ପାଇଛନ୍ତି ଏବଂ ଶ୍ରୀକୃଷ୍ଣଙ୍କ ଦର୍ଶନ ଲାଭ ପରେ, ଆମେରିକା, ଇଂଲଣ୍ଡରେ କିପରି ଧର୍ମ ପ୍ରଚାର କରି ହଜାର ହଜାର ଶିଷ୍ୟ କରିଛନ୍ତି, ଇତ୍ୟାଦି ବିଷୟ ଉଲ୍ଲେଖ କରି ସେ ବକ୍ତୃତା ଦେଇଥିଲେ। ବକ୍ତୃତା ପରେ ଶ୍ରୀକୃଷ୍ଣଙ୍କର ଗୋଟିଏ ଭଜନ ଗାନ କରି ସେ ଯେଉଁ କୀର୍ତ୍ତନ କରିଥିଲେ, ତହିଁରେ ଟାଉନ୍ ହଲର ସମସ୍ତେ ମୁଗ୍ଧ ହୋଇ ଯାଇଥିଲେ। କୀର୍ତ୍ତନ ଚାଲିବାବେଳେ ବାବା ପ୍ରେମାନନ୍ଦ ଭାରତୀ ଯେତେବେଳେ ନାଚିବାକୁ ଆରମ୍ଭ କଲେ, ସେତେବେଳେ ଟାଉନ୍ ହଲର ସମସ୍ତେ ଆତ୍ମବିସ୍ମୃତ ହେଲା ପ୍ରାୟ ତାଙ୍କ ସହିତ ନାଚି ଉଠିଥିଲେ। ସେପରି କୀର୍ତ୍ତନ ମୁଁ ଏପର୍ଯ୍ୟନ୍ତ ଦେଖି ନାହିଁ, କିମ୍ବା ବାବା ପ୍ରେମାନନ୍ଦଙ୍କ ପରି ସୁନ୍ଦର ମୂର୍ତ୍ତି ମଧ୍ୟ ମୁଁ ଦେଖିବାକୁ ପାଇ ନାହିଁ। ସେ ଯାହା ହେଉ, ତାହାଙ୍କ କୀର୍ତ୍ତନରେ ମୁଁ ମଧ୍ୟ ଭାସି ଗଲି। ମୁଁ ମୋର ଅସ୍ତିତ୍ୱ ଭୁଲିଗଲି କହିଲେ ଚଳେ। ମୁଁ ମୋର ପାଠପଢ଼ା ଭୁଲି ଗଲି। ବାବା ପ୍ରେମାନନ୍ଦ ଭାରତୀ କଟକରେ ଥିବା ପର୍ଯ୍ୟନ୍ତ ସବୁବେଳେ ମୁଁ ତାହାଙ୍କ ନିକଟରେ। ସ୍କୁଲକୁ ଯାଇ ନାହିଁ, କିମ୍ବା ବସାକୁ ମଧ୍ୟ ଆସି ନାହିଁ। ମୁଁ ତାହାଙ୍କୁ ଛାଡ଼ି ନ ଆସିବାର ଦେଖି ସେ ମତେ ତାହାଙ୍କ ଦଳଭୁକ୍ତ କରିବାକୁ ଇଙ୍ଗିତ ଦେଇଥିଲେ। କିନ୍ତୁ ବେକରେ ମାଳି ବାନ୍ଧି ବାବାଜୀ ହେବାକୁ ମତେ ଭଲ ଲାଗିଲା ନାହିଁ। ମୁଁ ଭାବିଲି, ମୁଁ ଦେଶପାଇଁ କାର୍ଯ୍ୟ କରିବି, ବାବାଜୀ ହେଲେ ଚଳିବ କିପରି ?

ମୁଁ ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲି ନାହିଁ, କିମ୍ବା ବାବା ପ୍ରେମାନନ୍ଦଙ୍କ ଦଳଭୁକ୍ତ ହେଲି ନାହିଁ। ସେ କଟକ ଛାଡ଼ି ଚାଲିଗଲେ, ମୁଁ ବସାକୁ ଫେରିଲି। ଚାରି ପାଞ୍ଚ ଦିନ ପରେ ସ୍କୁଲକୁ ଗଲି। ସ୍କୁଲରେ ଚାଉ୍ର ହୋଇ ଗଲାଣି ମୁଁ ବାବା ପ୍ରେମାନନ୍ଦଙ୍କ ଶିଷ୍ୟ ହୋଇ ତାଙ୍କ ସହିତ ଚାଲିଯାଉଛି। ମତେ ସ୍କୁଲରେ ଉପସ୍ଥିତ ହେବାର ଦେଖି କିଏ କେତେ ଥଟ୍ଟା ପରିହାସ କଲେ। ହେଡ୍ ପଣ୍ଡିତ ଦୀନବନ୍ଧୁ ଦାସ, ମୁଁ ସ୍କୁଲକୁ ନ ଯାଇଥିବା ହେତୁ ବିରକ୍ତ ହେଲେ। ସେ କହିଲେ, ''ଛାତ୍ରାଣାଂ ଅଧ୍ୟୟନ ତପଃ'' ଏହା ଯେଉଁ ଛାତ୍ର ଭୁଲିଯାଏ ସେ ପଥଭ୍ରଷ୍ଟ ହୁଏ। ସେ ଛାତ୍ର ନୁହେଁ, ସେ ଗୋଟାଏ ଅଧମ ଚାଣ୍ଡାଳ।

ପଣ୍ଡିତ ମହାଶୟ ବ୍ରାହ୍ମଣ। ତାହାଙ୍କ ବିବେଚନାରେ ବୈଷ୍ଣବ ଧର୍ମ ବ୍ରାହ୍ମଣର ଧର୍ମ ନୁହେଁ। ମୁଁ ବ୍ରାହ୍ମଣ ହୋଇ ଜଣେ ବୈଷ୍ଣବ ପଛରେ ଗୋଡ଼ାଉଥିଲି ଏଥିପାଇଁ ସେ ବଡ଼ ଅସନ୍ତୁଷ୍ଟ। ପଣ୍ଡିତ ମହାଶୟଙ୍କଠାରୁ ଏପରି ଯୁକ୍ତି ଶୁଣି ମୁଁ ତାହାଙ୍କ

ସହିତ ବାଦ ପ୍ରତିବାଦ କଲି। ମଧ୍ୟ, କୃତ୍ତିବାସ ମୋ ସଙ୍ଗରେ ଯୋଗ ଦେଲେ। ଛାତ୍ରାଣାଂ ଅଧ୍ୟୟନ ତପଃ ଏହି ଉକ୍ତିଟିର ଅର୍ଥ ନେଇ ଯୁକ୍ତି ଆରମ୍ଭ କଲୁ। ଆମର ଯୁକ୍ତିର ମର୍ମ ହେଉଛି, ବର୍ତ୍ତମାନ ଶିକ୍ଷା ଛାତ୍ରର ଅଧ୍ୟୟନ ରୂପକ ତପଃ ହୋଇ ନ ପାରେ। ଅଧ୍ୟୟନ ବେଳେ, ଦେଶ, ସମାଜ ଓ ଧର୍ମର ଆଲୋଚନା କରିବା ମଧ୍ୟ ଛାତ୍ରର ଅଧ୍ୟୟନ। ଏହିପରି ଅଧ୍ୟୟନ ଛାତ୍ରର ତପଃ। ଆମ୍ଭେମାନେ ପ୍ରକୃତରେ ଛାତ୍ର ଓ ଯଥାର୍ଥ ତପସ୍ୱୀ ଏପରି ଯୁକ୍ତି ଶୁଣି ପଣ୍ଡିତ ମହାଶୟ ଭାରୀ ରାଗିଗଲେ। ସେହି ଦିନୁ ଆମ୍ଭ ତିନିଜଣଙ୍କୁ ସେ ତପସ୍ୱୀ କହନ୍ତି। ବାଟରେ ଘାଟରେ ଦେଖିଲେ କହନ୍ତି, ''କି ହୋ ତପସ୍ୱୀ, ତୁମ୍ଭର ତପଃ କିପରି ଚାଲିଛି ?

ସେ ଯାହା ହେଉ ବାବା ପ୍ରେମାନନ୍ଦଙ୍କ ସାକ୍ଷାତ ପରେ, ଧର୍ମ ଆଡ଼କୁ ମୋର ମନ ଦୌଡ଼ିଲା। ମଧ୍ୟ ରାମକୃଷ୍ଣ କଲେଜରେ ଥାଏ। ତାଠାରୁ ସ୍ୱାମୀ ବିବେକାନନ୍ଦଙ୍କ ବିଷୟରେ ଅନେକ ସମୟରେ ଅନେକ କଥା ଶୁଣିବାକୁ ମିଳେ। ସ୍ୱାମୀଜୀଙ୍କ ଲେଖା ଓ ବକ୍ତୃତା ପାଠ କରିବାକୁ ମୋର ଆଗ୍ରହ ବଢ଼ିଲା। ରାମକୃଷ୍ଣ ଦେବଙ୍କ ଚରିତାମୃତ ପାଠ କଲି। ଏ ସବୁ ପାଠ ପରେ ଗୀତା ପୁସ୍ତକ ପ୍ରତି ଦୃଷ୍ଟି ପଡ଼ିଲା। ପ୍ରତିଦିନ ଗୀତା ପାଠ କରେ, ମାତ୍ର ତହିଁରୁ କିଛି ମାତ୍ର ବୁଝିପାରେ ନାହିଁ। ଏହିଠାରୁ ଧର୍ମ ଜୀବନ କଣ, ମନୁଷ୍ୟ ଜୀବନର ଲକ୍ଷ୍ୟ ଓ ଆଦର୍ଶ କଣ, ଏହା ଜାଣିବାକୁ ମନ ଉଦ୍‌ବିଗ୍ନ ହୋଇ ଉଠିଲା। ମନୁଷ୍ୟ ଜୀବନର ଲକ୍ଷ୍ୟ ଓ ଆଦର୍ଶ ନେଇ ଆମ୍ଭର ଗୁପ୍ତ ସମିତିରେ ଆଲୋଚନା ଚାଲିଛି। କିନ୍ତୁ ଏହି ଆଲୋଚନା କରି ଆମ୍ଭେମାନେ କୌଣସି ପ୍ରକାର ସ୍ଥିର ସିଦ୍ଧାନ୍ତରେ ପହୁଞ୍ଚି ପାରୁ ନାହୁଁ। ଅନେକ ସମୟରେ ଲକ୍ଷ୍ମୀନାରାୟଣ ବାବୁ ମଧ୍ୟ ଆମ୍ଭର ଏହି ଆଲୋଚନାରେ ଯୋଗ ଦିଅନ୍ତି। ସେ ରାଜା ରାମମୋହନ ରାୟ ଓ ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ ଜୀବନ କାହାଣୀ ଆମ୍ଭମାନଙ୍କ ଆଗରେ ବ୍ୟାଖ୍ୟା କରନ୍ତି। ଏହିପରି ବହୁ ଆଲୋଚନା ପରେ ଆମ୍ଭେମାନେ ସ୍ଥିର କଲୁ ଯେ ଈଶ୍ୱର ଲାଭରେ ମନୁଷ୍ୟର ମୁକ୍ତି। ଏହି ଈଶ୍ୱର ଲାଭହିଁ ପ୍ରତ୍ୟେକ ମନୁଷ୍ୟର ଲକ୍ଷ୍ୟ ଓ ମନୁଷ୍ୟର ସମସ୍ତ ପ୍ରକାର କର୍ମ ଓ ଚିନ୍ତାର ଆଦର୍ଶ କେବଳ ଈଶ୍ୱର ପ୍ରାପ୍ତି।

ମନୁଷ୍ୟର ଏହା ଯଦି ଲକ୍ଷ୍ୟ ଓ ଆଦର୍ଶ ହୁଏ ତେବେ ଏହି ଇଂରେଜୀ ଶିକ୍ଷାରେ ସମୟ ନଷ୍ଟ କରିବା ଦରକାର କଣ ? ଏ ଶିକ୍ଷାର କୌଣସି ଦରକାର ନାହିଁ। ଦେଶ ଓ ସମାଜର ସେବା କଥା ଭାବିବା ମଧ୍ୟ ବୃଥା। ଏହା ଈଶ୍ୱର ପ୍ରାପ୍ତିରେ ସାହାଯ୍ୟ କରି ପାରିବ ନାହିଁ। ଈଶ୍ୱର ପ୍ରାପ୍ତିର କାମନା କଲେ ସବୁ ତ୍ୟାଗ କରିବା ଦରକାର। ଗୃହ ତ୍ୟାଗ ଓ ଏହି ସମାଜ ତ୍ୟାଗ ଆବଶ୍ୟକ। ଜଙ୍ଗଲ ପାହାଡ଼ରେ ରହି ଫଳ ମୂଳ ଖାଇ ନିବିଷ୍ଟ ଚିତ୍ତରେ ଦିବାରାତ୍ରି ଈଶ୍ୱରଙ୍କ ଧ୍ୟାନ ଧାରଣା କରିବା ଦରକାର। ଏହିପରି ଭାବ ମନରେ ଜାଗି ଉଠିଲା। ଦେଲେ

ବେଳେ ମନ ହେଲା, ବାବା ପ୍ରେମାନନ୍ଦଙ୍କ ଦଳଭୁକ୍ତ ନ ହୋଇ ଭାରୀ ଭୁଲ କରିଛି। ବେଳେ ବେଳେ ଭାବିଲି, ସବୁ ଛାଡ଼ିଦେଇ ସନ୍ୟାସୀ ବେଶ ଧାରଣ କରି କୁଆଡ଼େ ନିରୁଦ୍ଦେଶ୍ୟ ହୋଇଯିବି। କିନ୍ତୁ ଏହିପରି ଭାବ ପ୍ରବଳ ଆକାର ଧାରଣ କଲା ବେଳେ ମୋର ପୁଣି ମନେ ପଡ଼ିଲା, ଆମେ ପରାଧୀନ ଜାତି। ପରାଧୀନତା ମହାପାପ। ଦେଶକୁ ଏବଂ ଜାତିକୁ ଏହି ମହାପାପରୁ ଉଦ୍ଧାର ନ କଲେ, ଈଶ୍ୱରପ୍ରାପ୍ତିର କଳ୍ପନା ବିଡ଼ମ୍ବନା ମାତ୍ର। ପରାଧୀନ ଦେଶରେ ଈଶ୍ୱର ନାହାନ୍ତି। ଏଠାରେ ଧର୍ମ ନାହିଁ। ବର୍ତ୍ତମାନ ଆମ୍ଭର ଏକମାତ୍ର ଧର୍ମ, ଦେଶର ସ୍ୱାଧୀନ ଚିନ୍ତା। ଏକମାତ୍ର ଈଶ୍ୱର ସ୍ୱାଧୀନ ଭାରତ। ଏହିପରି ଭାବ ପୁଣି ମନରେ ଖେଳିଯାଏ। ମୁଁ ଭାବି କିଛି ସ୍ଥିର କରି ପାରେ ନାହିଁ। ଈଶ୍ୱର ଲାଭ ପାଇଁ ସଂସାର ତ୍ୟାଗ କରିବି କିମ୍ବା ଦେଶର ମୁକ୍ତିପାଇଁ କାର୍ଯ୍ୟ କରି ଏ ଜୀବନକୁ ବଳିଦେବି–ଏହି ଦୁଇଟି ପଥ ମଧ୍ୟରୁ କେଉଁ ପଥ ମୁଁ ଅବଲମ୍ବନ କରିବି, ମୁଁ କିଛି ସ୍ଥିର କରିପାରେ ନାହିଁ। ଯାହାକୁ ପଚାରେ କେହି ମୋର ଏ ସନ୍ଦେହ ଦୂର କରି ପାରନ୍ତି ନାହିଁ। ଏ ଦୁଇଟିରୁ କେଉଁ ପଥ ଆମ୍ଭର ଅବଲମ୍ବନ କରିବା ଉଚିତ୍ ଏହା ଆମ୍ଭେମାନେ ବିଚାର କରୁ, କିନ୍ତୁ କିଛି ସ୍ଥିର କରି ହୁଏ ନାହିଁ। ଗୋଟିକର କଥା ସ୍ଥିର କଲା ବେଳକୁ ଅନ୍ୟଟି ପୁଣି ମନକୁ ବିଚଳିତ କରେ। ଏହିପରି ଭାବରେ ଆମ୍ଭର ସଂଗ୍ରାମ ଚାଲିଥାଏ। ଏପରି ଅବସ୍ଥାରେ ୧୯୧୩ ଶେଷ ହୋଇ ୧୯୧୪ ଆରମ୍ଭ ହେଲା। ମୁଁ ମାଟ୍ରିକ୍ ସେକେଣ୍ଡ କ୍ଲାସକୁ ପ୍ରମୋଶନ ପାଇଲି।

ଏହି ୧୯୧୩ ମସିହାରେ ଦଶପଲ୍ଲାର ବୃଦ୍ଧ ରାଜା ଶ୍ରୀ ନାରାୟଣ ଭଞ୍ଜ ଦେଓ ପରଲୋକ ଗମନ କଲେ। ସେ ବହୁଦିନରୁ ରୋଗ ଶଯ୍ୟାରେ ପଡ଼ି, ଯନ୍ତ୍ରଣା ଭୋଗ କରୁଥିଲେ। ତାହାଙ୍କ ମୃତ୍ୟୁ ପରେ ଦଶପଲ୍ଲାର ବର୍ତ୍ତମାନ ରାଜା ରାଜା ହେଲେ। ନୂତନ ରାଜା ନାବାଳକ, ସୁତରାଂ ଦଶପଲ୍ଲା ଷ୍ଟେଟ୍ କୋର୍ଟ ଅଫ୍ ଓ୍ୱାର୍ଡ୍ସ ହୋଇ ରହିଲା। ବାବୁ ଭାବଗ୍ରାହୀ ବିଶ୍ୱାଳ ଦଶପଲ୍ଲାର୍ ସୁପରିଂଟେଣ୍ଡେଣ୍ଟ ହେଲେ। ଏ କଥା ଏତିକିରେ ସରିଗଲା। ମାତ୍ର ଏହା ଭିତରେ ବହୁତ ରହସ୍ୟ ରହିଲା। ଏହି ସବୁ ରହସ୍ୟର ପରିଣାମ ହେଲା ଦଶପଲ୍ଲା କାଣ୍ଡମେଳି।

କବଡ଼େନ୍ ରାମସେ ସାହେବ ଗଡ଼ଜାତରେ ପ୍ରଥମ ପଲିଟ୍‌କେଲ ଏଜେଣ୍ଟ। ୧୯୦୫ରେ ସେ ଏହି ପଦରେ ନିଯୁକ୍ତ ହେଲେ। ନିୟମ ହେଉଛି ପ୍ରତି ପାଞ୍ଚବର୍ଷରେ ଥରେ ଜଣେ ନୂତନ ବ୍ୟକ୍ତି ଏହି ପଦରେ ପ୍ରତିଷ୍ଠିତ ହେବେ। କିନ୍ତୁ ରାମସେ ସାହେବଙ୍କର କେତେ ପାଞ୍ଚବର୍ଷ ଅତୀତ ହୋଇଗଲା ତାହାର ଇୟତା ନାହିଁ। ଭାରତର ଇତିହାସରେ ଓ୍ୱାରେନ୍ ହେଷ୍ଟିଙ୍ଗ୍‌ସ ଯାହା, ଓଡ଼ିଶାର ଗଡ଼ଜାତମାନଙ୍କରେ କବଡ଼େନ୍ ରାମସେଙ୍କର ଶାସନ ଅବିକଳ ତଦ୍ରୂପ। ଓ୍ୱାରେନ୍ ହେଷ୍ଟିଙ୍ଗ୍‌ସ ଭାରତରେ ଇଂରେଜ ସାମ୍ରାଜ୍ୟ ପରିବର୍ଦ୍ଧିତ କରିବାକୁ ନାନା ଉପାୟ ଅବଲମ୍ବନ କରିଥିଲେ। ରାମସେ ସାହେବ ସେହିପରି ଗଡ଼ଜାତ

ରାଜୁଡ଼ା ରାଜ୍ୟ ସବୁକୁ କୋର୍ଟ ଅଫ୍ ଓ୍ୱାର୍ଡ୍‌ସର ଅଧୀନ କରିବାକୁ କୌଣସି ଉପାୟ ଛାଡ଼ି ନ ଥିଲା ପରି ବୋଧ ହୁଏ।

ଆମ ଓଡ଼ିଶାର ଉଚ୍ଚ ଶିକ୍ଷିତ ଓ କେତେକ ଅର୍ଦ୍ଧ ଶିକ୍ଷିତ ବ୍ୟକ୍ତି ଗଡ଼ଜାତମାନଙ୍କରେ ଦେଓ୍ୱାନ କାର୍ଯ୍ୟ କରନ୍ତି। ଗଡ଼ଜାତ ରାଜ୍ୟରେ ଦେଓ୍ୱାନ ପଦ ପ୍ରାପ୍ତି କରିବା ଓଡ଼ିଶା ଉଚ୍ଚ ଶିକ୍ଷିତ ବ୍ୟକ୍ତିଙ୍କର ଥିଲା ଜୀବନର ଲକ୍ଷ୍ୟ। ଗଡ଼ଜାତ ରାଜାମାନଙ୍କର ଯେତେ ସବୁ ଦେଓ୍ୱାନ ଥିଲେ ସେମାନେ ସମସ୍ତେ ଓଡ଼ିଆ। ଏହି ଶିକ୍ଷିତ ଓଡ଼ିଆ ଗଡ଼ଜାତ ରାଜ୍ୟମାନଙ୍କରେ ସର୍ବୋଚ୍ଚ ଚାକିରି ପାଇ ଗଡ଼ଜାତର ତଥା ଓଡ଼ିଶା ଦେଶର ବହୁତ ଅନିଷ୍ଟ ସାଧନ କରିଛନ୍ତି। ଓଡ଼ିଶା ଗଡ଼ଜାତ ସବୁ କମିଶନ ସାହେବଙ୍କ ଅଧୀନରେ ଥିବାବେଳେ, ଅଧିକାଂଶ ସମୟରେ କମିଶନ ସାହେବଙ୍କ ଅଫିସରେ କିରାନି କାମ କରୁଥିବା ଲୋକେ ଗଡ଼ଜାତ ରାଜାମାନଙ୍କ ଦେଓ୍ୱାନ ହୋଇଯାନ୍ତି। ଏମାନେ ଗଡ଼ଜାତକୁ ଯିବାର ଏକମାତ୍ର ଉଦ୍ଦେଶ୍ୟ ସ୍ୱାର୍ଥସାଧନ; କୌଣସି ଉପାୟରେ ଗଡ଼ଜାତରୁ ବହୁତ ଅର୍ଥ ସଂଗ୍ରହ କରି ଦେଶକୁ ଫେରନ୍ତି। ଗଡ଼ଜାତ ଲୋକଙ୍କର ମଙ୍ଗଳ ସାଧନ କରିବା ଦୂରର କଥା, କିପରି କଣ କଲେ ପ୍ରଜାଙ୍କ ମଙ୍ଗଳ ହେବ, ସେପରି ଭାବନା ମଧ୍ୟ ଅନେକଙ୍କର ମନକୁ ସ୍ପର୍ଶ କରେ ନାହିଁ। ଏପରି କିଛି ଚିନ୍ତା କରିବାକୁ କର୍ତ୍ତବ୍ୟର ବହିର୍ଗତ କାର୍ଯ୍ୟ ବୋଲି ସେମାନେ ମନେ କରନ୍ତି। ଏହିପରି କେତେକ କାରଣରୁ ଆଜି ଗଡ଼ଜାତ—କଟକି ଭାବ ଗଡ଼ଜାତରେ ସୃଷ୍ଟି ହେଉଛି। ଗଡ଼ଜାତ ଲୋକେ କଟକିଆ ମୋଗଲବନ୍ଦିଆ କହି ଘୃଣା କରନ୍ତି। ଇଆଡ଼ ଲୋକେ, ଗଡ଼ଜାତ ଲୋକଙ୍କୁ ଜଙ୍ଗଲି କହି ଘୃଣା କରନ୍ତି।

ଗଡ଼ଜାତରେ ପଲିଟ୍‌କେଲ୍ ପଦ ସୃଷ୍ଟି ହେଲା ଦିନୁ, ଏହି ପଲିଟ୍‌କେଲ ଏଜେଣ୍ଟଙ୍କୁ ସନ୍ତୁଷ୍ଟ କରିବା ଦେଓ୍ୱାନମାନଙ୍କର ହେଲା ଆଉ ଗୋଟିଏ କର୍ତ୍ତବ୍ୟ। ଗଡ଼ଜାତରେ ପୁରୁଣାକାଳିଆ ରାଜା ଆଉ ନାହାନ୍ତି। ଯେଉଁମାନେ ଅଛନ୍ତି ସେମାନେ ଆଧୁନିକ ସଭ୍ୟତାର ବହୁ ପଛରେ। ବର୍ତ୍ତମାନ ଯୁଗରେ ଦିନକୁ ଦିନ କିପରି ପରିବର୍ତ୍ତନ ଘଟୁଛି, ତାହା ସେମାନେ ଜାଣନ୍ତି ନାହିଁ, କିମ୍ବା ଜାଣିବାକୁ ଇଚ୍ଛା କରନ୍ତି ନାହିଁ। ରାଜ୍ୟର ଶାସନଭାର ସମସ୍ତ ଦେଓ୍ୱାନଙ୍କ ହସ୍ତରେ ସମର୍ପଣ କରି ସେମାନେ ନିଶ୍ଚିନ୍ତ। ରାଜ୍ୟର ଆଉ କୌଣସି ଭଲମନ୍ଦ ଚିନ୍ତା ନାହିଁ। ଆଗେ ରାଜା ପ୍ରଜାଙ୍କୁ ଡରୁଥିଲେ। ପ୍ରଜାଙ୍କଠାରୁ ମତାମତ ଗ୍ରହଣ କରି ରାଜ୍ୟ ଚଳାଉଥିଲେ। କିନ୍ତୁ ଇଂରେଜ ସରକାରଙ୍କ ପ୍ରଭାବ ବିସ୍ତାର ସଂଗେ ସଂଗେ ରାଜାମାନେ ଆଉ ପ୍ରଜାମତକୁ ଅପେକ୍ଷା ରଖୁ ନାହାନ୍ତି। ସୁତରାଂ ଦେଓ୍ୱାନ ପ୍ରଜାକୁ କିପରି ଶାସନ କଲେ, ତହିଁର ଅନୁସନ୍ଧାନ ରଖିବାର ଆଉ କୌଣସି ଆବଶ୍ୟକ ନାହିଁ। ପ୍ରତିମାସରେ ଦେଓ୍ୱାନ ଯଦି ରାଜାଙ୍କର ମାସିକିଆ ଖର୍ଚ୍ଚତକ ଠିକ ସମୟରେ ହାଜର କଲେ ତେବେ ସବୁ ଠିକ। ଦଶପଲ୍ଲାର ଅବସ୍ଥା ଅବିକଳ ଏହିପରି। ବାବୁ ଭାବଗ୍ରାହୀ ବିଶ୍ୱାଳ ଦେଓ୍ୱାନ ହେଲେ ମଧ୍ୟ ରାଜ୍ୟର

ସର୍ବେସର୍ବା, ରାଜା କେବଳ ଖଟୁଲୀ ଶାଳଗ୍ରାମ। ଅନେକ ସମୟରେ ଏହି ଖଟୁଲୀ ଶାଳଗ୍ରାମ ଠିକ ସମୟରେ ପୂଜା ପାନ୍ତି ନାହିଁ। ମାସକୁ ଦୁଇ ହଜାର ଟଙ୍କା ରାଜା ହାତଖର୍ଚ୍ଚ ନିଅନ୍ତି। ତାହା ସେ ସବୁମାସରେ ନିୟମିତ ରୂପେ ପାନ୍ତି ନାହିଁ। ଭାଗଗ୍ରାହୀ ବାବୁ ନାନା ଆପତ୍ତି ଦେଖାଇ ଠକି ଦିଅନ୍ତି, ଏହା କହିଲେ କଦାପି ଅତ୍ୟୁକ୍ତି ହେବ ନାହିଁ। ମୁଁ ଜାଣେ ରାଜା ମାସୁଆରୀ ଖର୍ଚ୍ଚ ଠିକ ସମୟରେ ନ ପାଇଲେ, ତାଙ୍କର ଦେହପାଣୀ ବଢ଼େ ନାହିଁ, କିମ୍ବା ଠା ବଢ଼ା ହୁଏ ନାହିଁ।

ସେ ଯାହା ହେଉ ଭାବଗ୍ରାହୀ ବାବୁ ବୃଦ୍ଧ ରାଜାଙ୍କ ପରେ କିପରି ରାଜ୍ୟର ସର୍ବେସର୍ବା ହେବେ ତହିଁର ଯୋଗାଡ଼ କଲେ। ବୃଦ୍ଧ ରାଜାଙ୍କୁ ପୋଷ୍ୟପୁତ୍ର ଗ୍ରହଣ କରିବାକୁ ପରାମର୍ଶ ଦେଲେ।

ପୂର୍ବେ ଦଶପଲ୍ଲା ହୋଇ ଗୋଟିଏ ରାଜ୍ୟ ନଥିଲା। ବୌଦ ରାଜବଂଶର ଜଣେ କେହି ପଳାଇ ଆସି ଦଶପଲ୍ଲା ରାଜ୍ୟ ସ୍ଥାପନ କରିଥିଲେ। କୁଞ୍ଜବନ ମଲିକ ନାମରେ ଜଣେ କନ୍ଧ ଦଶଖଣ୍ଡି ପଲ୍ଲିର ସର୍ଦ୍ଦାର ଥିଲେ। ତାହାଙ୍କୁ କଳେ କୌଶଳେ ହତ୍ୟା କରି ଏହି ଦଶଖଣ୍ଡି ପଲ୍ଲିକୁ ନେଇ ଦଶପଲ୍ଲା ରାଜ୍ୟ ସ୍ଥାପିତ ହେଲା। କୁଞ୍ଜବନ ମଲିକର ମୃତ୍ୟୁ ସମୟରେ ତାହାଙ୍କ ନିକଟରେ ପ୍ରତିଶ୍ରୁତ ବାଣୀ ଅନୁସାରେ ଦଶପଲ୍ଲା ଗଡ଼ର ନାମ ହେଲା କୁଞ୍ଜବନ ଗଡ଼। ସେହି ସମୟରୁ ଦଶପଲ୍ଲାରେ ଗୋଟିଏ ପ୍ରଚଳିତ ପ୍ରଥା ଅଛି ଯେ, ରାଜାଙ୍କ ପୁତ୍ର ସନ୍ତାନ ନ ଥିଲେ ତାହାଙ୍କ ନିକଟ ସମ୍ପର୍କୀୟ ଭାଇ କେହି ରାଜଗାଦୀରେ ବସିବେ। ରାଜା ପୋଷ୍ୟପୁତ୍ର ଗ୍ରହଣ କରି ପାରିବେ ନାହିଁ। ଏହି ପ୍ରଚଳିତ ପ୍ରଥାକୁ ସ୍ମରଣ କରି ବୃଦ୍ଧ ରାଜା ଶ୍ରୀ ନାରାୟଣଭଞ୍ଜ ଦେଓ ପୋଷ୍ୟପୁତ୍ର ଗ୍ରହଣ କରିବାକୁ ପ୍ରଥମେ ଅସ୍ୱୀକାର କଲେ। କିନ୍ତୁ ନାନା କଳ କୌଶଳରେ ତାହାଙ୍କର ସମ୍ମତି ପରେ ଗ୍ରହଣ କରାଗଲା। ପାରିକୁଦ ରାଜାଙ୍କଠାରୁ ସେ ଗୋଟିଏ ପୋଷ୍ୟପୁତ୍ର ଗ୍ରହଣ କଲେ। ଯାହାଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କଲେ ସେ ହେଉଛନ୍ତି ଦଶପଲ୍ଲା ରାଜାଙ୍କର ନାତି। ଏହିପରି ଭାବରେ ପୋଷ୍ୟପୁତ୍ର ଗୃହୀତ ହେଲାପରେ ସେ ଦଶପଲ୍ଲା ରାଜବାଟୀକୁ ଅଣା ହେଲେ। ବୃଦ୍ଧ ରାଜା ସେତେବେଳେ ରୋଗଶଯ୍ୟାରେ ଶାୟିତ।

ବୈଷ୍ଣବଚରଣ ଦେଓ ରାଜାଙ୍କ ଦାଦୀପୁଅ ଭାଇ। ରାଜନଅରର ଭିତରେ ଏକ ଭାଗରେ ସେ ରହିଥାନ୍ତି। ପ୍ରଚଳିତ ପ୍ରଥାନୁସାରେ ବୃଦ୍ଧ ରାଜାଙ୍କ ପରେ, ଏହି ବୈଷ୍ଣବ ଦେଓ ଦଶପଲ୍ଲାର ରାଜା ହେବାର କଥା। କିନ୍ତୁ ପୋଷ୍ୟପୁତ୍ର ଗୃହୀତ ହେବାର ଦେଖି ବୈଷ୍ଣବ ଦେଓ ନିରୁପାୟ। ସେ କୌଶଳ ବାନ୍ଧିଥିଲେ, ରାଜାଙ୍କ ମୃତ୍ୟୁପରେ କଳେ ବଳେ କୌଶଳେ ଦଶପଲ୍ଲା ରାଜଗାଦି ମାଡ଼ି ବସିବେ। ଥରେ ଜଣେ ରାଜଗାଦିରେ ବସିଗଲା ପରେ ତାହାଙ୍କୁ ଗାଦିଚ୍ୟୁତ କରିବା କଠିନ। କାରଣ ତେଣିକି ଅର୍ଥବଳ ସବୁ କାମ କରାଯିବ। କିନ୍ତୁ ବୈଷ୍ଣବ ଦେଓଙ୍କ ଏହି ଇଚ୍ଛା ପୂରଣ

ହୋଇ ପାରିଲା ନାହିଁ। ଦିନେ ରାତ୍ରିରେ ହଠାତ୍ ବୃଦ୍ଧ ରାଜାଙ୍କ ମୃତ୍ୟୁ ହେଲା। ସେତେବେଳକୁ ବୈଷ୍ଣବଚରଣ ଦେଓ ଗଡ଼ ମୁକାମରେ ହାଜର ନ ଥିଲେ। ବିଶ୍ୱାଳେ ମଧ୍ୟ ଗଡ଼ରେ ନ ଥିଲେ। ବିଶ୍ୱାଳଙ୍କ ବିଶ୍ୱସ୍ତ ଦଶପଲ୍ଲା ଷ୍ଟେଟ୍ କର୍ମଚାରୀ ସବୁ ଗୃହୀତ ପୋଷ୍ୟପୁତ୍ରଙ୍କୁ ଗାଦିରେ ବସାଇ ଦେଲେ। ଶେଷରେ ପଲିଟ୍‌କେଲ ଏଜେଣ୍ଟଙ୍କଦ୍ୱାରା ବିତାଡ଼ିତ ହୋଇ ବୈଷ୍ଣବ ଦେଓ ମକଦ୍ଦମା କରିବାପାଇଁ କଟକ ଆସିଲେ। ବୈଷ୍ଣବ ଦେଓ କନିକା ରାଜାଙ୍କର ହେଉଛନ୍ତି ମଳାଶୁର। ବୈଷ୍ଣବ ଦେଓ ଆସି କଟକ କନିକା କୋଠିରେ ରହିଲେ।

ମୁଁ କଟକରେ ଥାଏ। ଦଶପଲ୍ଲାରେ ଘଟୁଥିବା ସମସ୍ତ ବ୍ୟାପାରର ସଂବାଦ ରଖୁଥାଏ। ପଲିଟ୍‌କେଲ ଏଜେଣ୍ଟଙ୍କ ନୀତି ମଧ୍ୟ ବୁଝି ପାରୁଥାଏ। ଦଶପଲ୍ଲା ରାଜା ପୋଷ୍ୟପୁତ୍ର ଗ୍ରହଣ କରିବା ଉଚିତ୍ କି ଅନୁଚିତ, ଏ ବିଷୟ ମୋ ମନକୁ ସ୍ପର୍ଶ କରି ନାହିଁ। ପୋଷ୍ୟପୁତ୍ର ଗ୍ରହଣ କଲେ ଦଶପଲ୍ଲାର ମଙ୍ଗଳ ହେବ, ଏପରି ମୋର ମନର ଗତି ଥାଏ। କିନ୍ତୁ ପଲିଟ୍‌କେଲ ଏଜେଣ୍ଟଙ୍କ ଯେପରି ନୀତି ଏବଂ ସେଥିରେ ଭାବଗ୍ରାହୀ ବାବୁ ଯଦି ଦଶପଲ୍ଲାର ସର୍ବେସର୍ବା ହେବେ ତେବେ ଦଶପଲ୍ଲା ରାଜପରିବାର ଓ ରାଜା ଉଭୟଙ୍କ ଅବସ୍ଥା କଣ ହେବ, ତାହା କଳ୍ପନା କରି ପାରୁଥିବାରୁ ବେଳେ ବେଳେ ଏପରି ଭାବରେ ପୋଷ୍ୟପୁତ୍ର ଗ୍ରହଣ କରିବାକୁ ସମର୍ଥନ କରବାପାଇଁ ମୋର ମନ ବଳେ ନାହିଁ। ପୋଷ୍ୟପୁତ୍ର ଗ୍ରହଣ ନ କଲେ ବୈଷ୍ଣବ ଦେଓ ପରି ପାଗଳ, ହିତାହିତଜ୍ଞାନଶୂନ୍ୟ ବ୍ୟକ୍ତି ରାଜଗାଦିରେ ବସିବା ମଧ୍ୟ କଦାପି ବାଞ୍ଛନୀୟ ନୁହେଁ। ଦଶପଲ୍ଲା କଥା ଚିନ୍ତା କଲାବେଳେ ଏହପରି ମୋର ମନ ଏପାଖ ସେପାଖ ହୁଏ। ଏହା ମଧ୍ୟରେ କେଉଁଟି ବାଞ୍ଛନୀୟ ତାହା ଭାବି ସ୍ଥିର କରି ପାରେ ନାହିଁ। ବେଳେବେଳେ ପୁଣି ଭାବେ, ଦଶପଲ୍ଲାରେ କିଏ ରାଜା ହେବ, ଏକଥା ନେଇ ମୋର ଏତେ ମୁଣ୍ଡ ବୁଲାଇବା ଦରକାର କଣ ଅଛି।

କିନ୍ତୁ ଭାବିବି ନାହିଁ କିପରି? ଭାବନା ତ ଜବରଦସ୍ତି ମୁଣ୍ଡରେ ପଶୁଛି। କେବଳ ମୁଁ ଭାବିବି ତା ନୁହେଁ, ଗଡ଼ଜାତର ପ୍ରତ୍ୟେକ ପ୍ରଜା ଭାବିବା ଉଚିତ। କେବଳ ନିଜ ଷ୍ଟେଟର କଥା ଭାବିବାକୁ ହେବ ତାହା ନୁହେଁ, ସମସ୍ତ ଗଡ଼ଜାତର କଥା ଭାବିବାକୁ ହେବ। ପଲିଟ୍‌କେଲ ଏଜେଣ୍ଟଙ୍କର ଶାସନ ପଦ୍ଧତି ଓ ନୀତି ମଧ୍ୟ ଭାବିବା ଦରକାର। କାରଣ ଏ ସବୁରେ ଗଡ଼ଜାତ ପ୍ରଜାଙ୍କ ସୁଖ ଦୁଃଖ ନିର୍ଭର କରେ। 'ରାଜା ଅନୁସାରେ ପ୍ରଜା' ଏହି ବାକ୍ୟଟି ଓଡ଼ିଶା ଗଡ଼ଜାତ ମାହାଲରେ କେବଳ ଖାଟୁଛି। ରାଜା ଟିକିଏ ଭଲ ହେଲେ ପ୍ରଜା ଟିକିଏ ସୁଖ ଶାନ୍ତିରେ ରହନ୍ତି। ରାଜା ଯଦି ଖାମ ଖିଆଲିଆ ହୁଅନ୍ତି ତେବେ ପ୍ରଜାଙ୍କ ଦୁଃଖର ସୀମା ରହେ ନାହିଁ। କାରଣ ଗଡ଼ଜାତ ଶାସନ ପଦ୍ଧତିରେ ପ୍ରଜାଙ୍କର କୌଣସି ହାତ ନାହିଁ। ଭଲ ମନ୍ଦ ବାଛିବାର ଅଧିକାର ନାହିଁ। ରାଜାଙ୍କ ଉପରେ ପ୍ରଜାଙ୍କ ଭାଗ୍ୟ ନିର୍ଭର କରେ।

ଏପରି ଅବସ୍ଥାରେ ରାଜ୍ୟର ରାଜା କିଏ ହେବ, ଏପରି ଗୋଟିଏ ସମସ୍ୟା ଉପସ୍ଥିତ ହେଲେ, ମନୁଷ୍ୟର ମନ ସ୍ଥିର ରହି ନ ପାରେ। ମନର ଗତି ଓ ଚିନ୍ତା ଧାରାକୁ ଅଟକ କରିବାକୁ ଦୁନିଆରେ କୌଣସି ଶକ୍ତି ନାହିଁ। ସୁତରାଂ ଦଶପଲ୍ଲାର ଏହି ପ୍ରଶ୍ନ ମୋ ମନକୁ ବିଚଳିତ କରିଥିବ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ମାତ୍ର କାରଣ ନାହିଁ।

ମୋର ଛାତ୍ର ଜୀବନର ବର୍ତ୍ତମାନ ଅବସ୍ଥାରେ ଏହିପରି ଗୋଟିଏ ପ୍ରଶ୍ନ ମୋ ମନକୁ ବେଳେବେଳେ ବିଚଳିତ କରେ। ବିଦ୍ୟାଧରକୁ ଧରି କଟକରେ ଅତି କଷ୍ଟରେ ଚଳୁଥାଏ। ଏପରି ଚଳାଚଳ ହେବାଦ୍ୱାରା ମୋର ଦେହ ଓ ମନ ଭଲ ରହିଲା ନାହିଁ। ମୋର ବର୍ତ୍ତମାନ ଅବସ୍ଥାର କୌଣସି ପରିବର୍ତ୍ତନ ନ ହେଲେ ପାଠ ପଢ଼ିବା ମୋତେ ଅସମ୍ଭବ ପରି ଜଣାଗଲା। କିନ୍ତୁ କିପରି ଭାବରେ କଣ ପରିବର୍ତ୍ତନ କରିବି କିଛି ଭାବି ସ୍ଥିର କରି ପାରେ ନାହିଁ। ବହୁତ ଭାବି, ଚିନ୍ତି, ସ୍ଥିର କଲି ଯେ କୌଣସି ଉପାୟରେ ମୁଁ ପୁଣି ମିଶନ ହିନ୍ଦୁ ହଷ୍ଟେଲକୁ ଫେରି ନ ଗଲେ ମତେ ଏହିଠାରୁ ସ୍କୁଲ ଛାଡ଼ି ଯିବାକୁ ପଡ଼ିବ। ମାସରେ ପାଞ୍ଚଟି ଟଙ୍କା। ଏଥିରେ ଦୁଇଜଣ ଚଳୁଥାଉ। ମିଶନ ହିନ୍ଦୁ ହଷ୍ଟେଲକୁ ଯାଉଛି କିପରି? ବିଦ୍ୟାଧର ପାଇଁ ସ୍କୁଲ ପୁଅର ପଣ୍ଡରୁ ମାସକୁ ଟଙ୍କାଟିଏ କରି ସାହାଯ୍ୟ କରାଇଲି।। ସୁଦାମଚରଣ ନାୟକଙ୍କ ନିକଟରେ ଉପସ୍ଥିତ ହୋଇ କିଛି ସାହାଯ୍ୟପାଇଁ ପ୍ରାର୍ଥୀ ହେବାରୁ, ସେ ମାସରେ ସେ ୧୫ ର ଚାଉଳ ଦେବାକୁ ପ୍ରତିଶ୍ରୁତ ହେଲେ। ଏହାପର ଶ୍ରୀ ଜାନକୀନାଥ ବୋଷଙ୍କ ନିକଟରୁ ମାସରେ ଟଙ୍କାଟିଏ ସାହାଯ୍ୟ ଆଣିଲି। ଏହିଠାରେ ସୁଭାଷ ବାବୁଙ୍କ ସହିତ ପରିଚିତ ହେଲା।

ସେ ଯାହ ହେଉ, ଏହି ସୁବିଧା କରି ମୁଁ ପୁଣି ମିଶନ ହିନ୍ଦୁ ହଷ୍ଟେଲକୁ ଆସିଲି। ବିଦ୍ୟାଧରକୁ ଉକ୍ତ ଚାଉଳ ସେ୧୫ର ଓ ଦୁଇଟି ଟଙ୍କା ଚଳିବାକୁ ଦିଏ। ଅବଶିଷ୍ଟ ପାଞ୍ଚୋଟି ଟଙ୍କାରେ ମୁଁ ଚଳେ।. ମିଶନ ହିନ୍ଦୁ ହଷ୍ଟେଲରେ ମାସକୁ ଟ୭.୫୦ପ: ଖର୍ଚ୍ଚ ପଡ଼େ। ମୁଁ ଚାରିଟା ବେଳେ ସ୍କୁଲରୁ ଆସି ଜଳଖିଆ ନ ଖାଇବାରୁ ସେହି ହିସାବରେ ମାସକୁ ଟ୧.୫୦ପ: କଟିଯାଏ। ଏହା ଛଡ଼ା ଏକାଦଶୀ, ପୂର୍ଣ୍ଣିମା, ଅମାବାସ୍ୟା ଓ ସଂକ୍ରାନ୍ତି ଦିବସ ପାଳନ କରିବା ବାହାନାରେ ଉପବାସ କରେ। ସମୟେ ସମୟେ ସୋମବାର ଦିବସ ମଧ୍ୟ ପାଳନ କରେ। ଯେ କୌଣସି ପ୍ରକାରେ ମାସ ଶେଷକୁ ମୋର ଖର୍ଚ୍ଚ ଟ୪/ ଅଣାରେ ଆଣି ରଖେ। ଏହିପରି ଭାବରେ ମିଶନ ହିନ୍ଦୁ ହଷ୍ଟେଲରେ ଚଳୁଥାଏ।

ଏହି ସମୟ ମୋର କଠୋର ସାଧନାର ବେଳ। ଦେଶର ସ୍ୱାଧୀନତା ପାଇଁ ଜୀବନ ଉତ୍ସର୍ଗ କରିବ, କିମ୍ବା ଈଶ୍ୱରପ୍ରାପ୍ତି ପାଇଁ ସନ୍ନ୍ୟାସ ଧର୍ମ ଅବଲମ୍ବନ କରିବ, ଏହି ପ୍ରଶ୍ନର ଏପର୍ଯ୍ୟନ୍ତ କୌଣସି ମୀମାଂସା କରି ପାରି ନାହିଁ। ଦେଶ ସେବା କରିବା ପାଇଁ ପ୍ରାଣରେ ପ୍ରବଳ ଆକାଂକ୍ଷା ନ ଥିଲେ ମୁଁ ସନ୍ନ୍ୟାସୀ ହୋଇ ଚାଲି

ଯାଇଥାନ୍ତି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। ପ୍ରବଳ ସ୍ୱାଧୀନତା ପିପାସା କେବଳ ମତେ ସନ୍ନ୍ୟାସ ପଥରୁ ନିବୃତ୍ତ କରାଇଅଛି। ଧର୍ମସାଧନା ଓ ଦେଶସେବା ଏହି ଉଭୟର ମେଳ କେଉଁଠାରେ ତାହା ମୁଁ ବୁଝିପାରେ ନାହିଁ, କିନ୍ତୁ କେହି ମଧ୍ୟ ମୋ ମନ ମାନିଲା ଭଳି ଯୁକ୍ତି ଦେଖାଇ ମତେ ବୁଝାଇ ପାରି ନାହାନ୍ତି। ମୋର ମନ ଓ ଅନ୍ତରରେ ମଧ୍ୟ ଏହି ଧର୍ମ ଓ ଦେଶସେବା ମଧ୍ୟରେ ଦ୍ୱନ୍ଦ୍ୱ ଚାଲେ। ପ୍ରତ୍ୟହ ଅନେକ ସମୟ ଏକାକୀ ବସି ଧ୍ୟାନ ଧାରଣା କରେ।

ଅନେକ ସମୟରେ ଦିନରେ ଏକବେଳା ଆହାର କରେ। ଧର୍ମର ଗୂଢ଼ ରହସ୍ୟ କେଉଁଠାରେ କିଛି ବୁଝିପାରେ ନାହିଁ। ସଂକୀର୍ତ୍ତନ ଓ ସଙ୍ଗୀତ ଭଲ ଲାଗେ। ସଂକୀର୍ତ୍ତନ ପାଇଁ ଅନେକ ସମୟରେ ରାମକୃଷ୍ଣ କଟେଜକୁ ଯାଏ। ପ୍ରତି ରବିବାର ଦିନ ସେଠାରେ ସଂକୀର୍ତ୍ତନ ହୁଏ। ପ୍ରତି ରବିବାର ଦିନ କଟକ ବ୍ରହ୍ମ ସମାଜରକୁ ଯାଏ। କେତେବେଳେ କିପରି ଖ୍ରୀଷ୍ଟିୟାନ ଗିରିଜାକୁ ମଧ୍ୟ ପ୍ରାର୍ଥନା କରିବାକୁ ଯାଏ। ରବିବାର ଦିନ ଖ୍ରୀଷ୍ଟଧର୍ମୀମାନେ ଗିରିଜା ଘରେ ଯେପରି ପ୍ରାର୍ଥନା କରନ୍ତି, ତାହା ମତେ ବଡ଼ ଭଲ ଲାଗେ। ବ୍ରହ୍ମ ସମାଜରେ ପ୍ରତି ରବିବାର ଦିନ ସାମାଜିକ ବିଷୟରେ କେତେକ ଆଲୋଚନା ହୁଏ। ଏହି ଆଲୋଚନା ମତେ ଭଲ ଲାଗେ। ଏଥିପାଇଁ ପ୍ରତି ରବିବାର ଦିନ ନିୟମିତ ଭାବରେ ମୁଁ ବ୍ରହ୍ମ ସମାଜକୁ ଯାଏ। ଏହିପରି ଭାବରେ ମୋର ଛାତ୍ର ଜୀବନ ଚାଲିଥାଏ। ମନରେ ସବୁବେଳେ ଗୋଟାଏ ବିମର୍ଷ ଭାବ। ଲେଖାପଢ଼ା ଭଲ ମଧ୍ୟ ହୁଏ ନାହିଁ। ମଙ୍ଗଳବାର ଓ ଶୁକ୍ରବାର ସପ୍ତାହରେ ଏହି ଦୁଇଟି ଦିନ ମୋ ମନ ଟିକିଏ ଆନନ୍ଦିତ ରହେ। ଏହି ଦୁଇ ଦିନ ଆମ୍ଭର ଗୁପ୍ତ ସମାଜର ବୈଠକ ହୁଏ। ଏ ସମାଜଟି ସ୍ଥାପନ କରିବାଦ୍ୱାରା ଆମ୍ଭେମାନେ ନିଜ ନିଜ ଜୀବନ ଗଠନ କରିବାକୁ ବହୁତ ଉପାଦାନ ପାଉଁ। ଏହାହିଁ ସେତେବେଳେ ମୋର ଜୀବନର ଗୋଟିଏ ଦୃଢ଼ ଅବଲମ୍ବନ ବୋଲି କହିଲେ ଚଳେ।

ଆମ୍ଭ ଗୁପ୍ତ ସମାଜ ଆଉ ଗୁପ୍ତ ହୋଇ ରହି ପାରିଲା ନାହିଁ। ସ୍କୁଲରେ ଶିକ୍ଷକ ଓ ଛାତ୍ର ସମସ୍ତେ ଆମ୍ଭମାନଙ୍କ ଏହି ବିଚାର ସଭାର ଗୁପ୍ତ ମନ୍ତ୍ରଣା ଜାଣି ପାରିଲେ। ଅଧିକାଂଶ ଛାତ୍ର ଆମ୍ଭର ଏଥିରେ ଯୋଗ ଦେବାକୁ ଆଗ୍ରହ ପ୍ରକାଶ କଲେ। ସ୍କୁଲରେ କୌଣସି ସାଧାରଣ କର୍ମୀ ବେଳକୁ ଶିକ୍ଷକମାନେ ଆମ୍ଭମାନଙ୍କ ସହିତ ପ୍ରଥମ ପରାମର୍ଶ କରନ୍ତି। ଏହିପରି ଭାବରେ ଆମ୍ଭେ କେତେଜଣ ସ୍କୁଲର ଯାବତୀୟ କାର୍ଯ୍ୟରେ ଅଗ୍ରଣୀ। ପାଠ ପଢ଼ାରେ, ରଚନା ଲେଖିବାରେ, ଡିବେଟିଙ୍ଗ କ୍ଲବରେ ବକ୍ତୃତା ଦେବାରେ, ପ୍ରତ୍ୟେକ ବିଷୟରେ ଆମ୍ଭେମାନେ ଏହି କେତେ ଜଣ ସେହି ସମୟରେ ସ୍କୁଲର ଆଦର୍ଶ ବୋଲି କହିଲେ କିଛିମାତ୍ର ଅତ୍ୟୁକ୍ତି ହେବ ନାହିଁ।

ଏହିପରି ଭାବରେ ଆମ୍ଭର ଏହି ସମିତିଟି ଦିନକୁ ଦିନ ଦୃଢ଼ରୁ ଦୃଢ଼ତର ହୋଇ ଉଠୁଛି। ପରସ୍ପର ମଧ୍ୟରେ ମନ ଓ ହୃଦୟର ମିଳନ ମଧ୍ୟ ଘନୀଭୂତ ହୋଇ ଉଠୁଛି। ଏଣିକି ସମସ୍ତେ ଏକାଠି ବାସ କରିବାର ଆବଶ୍ୟକତା ଅନୁଭବ

କରୁଛୁ। ବିନୋଦ ନନ୍ଦ ଓ ମଧୁସୂଦନ ମହାନ୍ତି ରାମକୃଷ୍ଣ କଟେଜରେ ରହିଥାନ୍ତି। ମୁଁ ଓ ଅନ୍ତର୍ଯ୍ୟାମୀ ମିଶନ ହିନ୍ଦୁ ହଷ୍ଟେଲରେ ରହିଥାଉ। କୃତ୍ତିବାସ ତାର ସୂତାହାଟ ବସାରେ ଥାଏ। ଏପରି ଛଡ଼ା ଛଡ଼ା ହୋଇ ସମସ୍ତେ ରହିଥାଉ। କିନ୍ତୁ ଏପରି ପରସ୍ପର ପରସ୍ପରଠାରୁ ଛଡ଼ାଛଡ଼ି ହୋଇ ରହିଲେ ଆମ୍ଭର ଉଦ୍ଦେଶ୍ୟ ଓ ଆଦର୍ଶ ଅନୁସାରେ ଜୀବନ ଗଠନ କରିବା ସୁବିଧାଜନକ ହେବ ନାହିଁ ବୋଲି ଆମ୍ଭେମାନେ ପ୍ରତ୍ୟେକ ଉପଲବ୍ଧି କଲୁ। ଏହି ଛାତ୍ର ଜୀବନରୁ ସଂଘବଦ୍ଧ ଜୀବନ ଯାପନ କରିବାକୁ ସ୍ଥିର କରି ସମସ୍ତେ ମିଳିମିଶି ଏକାଠି ରହିବାର କଳ୍ପନାକୁ କାର୍ଯ୍ୟରେ ପରିଣତ କରିବାର ଚେଷ୍ଟା ଚାଲିଲା।

ଆମ୍ଭେମାନେ ସ୍ଥିର କଲୁ ଗୋଟିଏ ସ୍ୱତନ୍ତ୍ର ଘର ଭଡ଼ା ନେଇ ସେହିଠାରେ ସମସ୍ତେ ରହିବୁ। ଏହିଠାରୁ ଆମ୍ଭମାନଙ୍କ ଭବିଷ୍ୟତ କର୍ମପନ୍ଥାର ମୂଳ ଭିତ୍ତି ସ୍ଥାପନ କରିବୁ। ଏହି ସମୟରୁ ଭଲ ଭଲ ପୁସ୍ତକ ସଂଗ୍ରହ କରି ଗୋଟିଏ ଲାଇବ୍ରେରୀ ଗଢ଼ି ତୋଳିବୁ। ଆମ୍ଭର ରହିବା ସ୍ଥାନକୁ କେନ୍ଦ୍ର କରି ଆମ୍ଭ ଦଳର ପୁଷ୍ଟିସାଧନ ଉଦ୍ଦେଶ୍ୟରେ ଛାତ୍ର ସମାଜ ମଧ୍ୟରେ ପ୍ରଚାର ଆରମ୍ଭ କରିବୁ। କ୍ରମଶଃ ଘରର ସଂବନ୍ଧକୁ ଛେଦନ କରି, ଦେଶସେବାପାଇଁ ଆମ୍ଭେମାନେ ଆଉ ଗୋଟିଏ ଘର ବାନ୍ଧିବୁ। ଏହି ନୂତନ ଘର ଆମ୍ଭମାନଙ୍କୁ ଏକାଠି ବାନ୍ଧି ରଖିବ। ଏହିଠାରେ ଆମ୍ଭର ସମସ୍ତ ପ୍ରକାର କର୍ମ ଓ ଚିନ୍ତା ଆମ୍ଭମାନଙ୍କୁ ସବୁବେଳେ ବଳ ଓ ସାହସ ଦେବ ଏବଂ ପ୍ରାଣରେ ନୂତନ ପ୍ରେରଣା ଜାଗ୍ରତ କରିବ। ଏହିପରି ଭାବନାଦ୍ୱାରା ପ୍ରଣୋଦିତ ହୋଇ ଆମ୍ଭେମାନେ ନିଜ ନିଜର ବାସସ୍ଥାନ ଛାଡ଼ି ଏକତ୍ର ରହିବାପାଇଁ ନିଶ୍ଚୟ କଲୁ।

କିନ୍ତୁ ଆମର ଏହି ନିଶ୍ଚୟ କାର୍ଯ୍ୟରେ ପରିଣତ କରିବାରେ ବିଳମ୍ବ ଘଟିଲା। ବିଳମ୍ବର କାରଣ ଆମ୍ଭମାନଙ୍କର ଆର୍ଥିକ ଅବସ୍ଥା। ସେ ଯାହାହେଉ, ମୁଁ ପୂର୍ବରୁ ଲେଖିଛି, ମୋର ଏପରି ଅବସ୍ଥାରେ ଅନେକ ସମୟରେ ଦଶପଲ୍ଲା ସମସ୍ୟା ମୋ ମନକୁ ବିଚଳିତ କରେ। କଟକରେ ବୈଷ୍ଣବଚରଣ ଦେଓ ରହିଛନ୍ତି। ମିଶନ ସ୍କୁଲର କେତେକ ଛାତ୍ର ମିଶି ଗୋଟିଏ କ୍ଲବ ଗଢ଼ିଥାଉ। କନିକା କୋଠି ସମ୍ମୁଖ ପଡ଼ିଆରେ ପ୍ରତ୍ୟହ ଏହି କ୍ଲବରେ ନାମ ଲେଖାଇଥିବା ଆମ୍ଭେମାନେ କେତେଜଣ ଖେଳିବାପାଇଁ ଏକତ୍ର ହେଉ। ଏହିଠାରେ ବୈଷ୍ଣବଚରଣ ଦେଓଙ୍କ ସହିତ ମୋର ଦେଖା ସାକ୍ଷାତ ହୁଏ। ତାଙ୍କର ମକଦ୍ଦମା କିପରି ଚାଲିଛି ତହିଁର ଘଟଣା ସମସ୍ତ ଶୁଣେ। ଦଶପଲ୍ଲାରୁ ଯେଉଁ ପ୍ରଜାମାନେ ବୈଷ୍ଣବ ଦେଓଙ୍କୁ ସାହାଯ୍ୟ ଦେଇ ସହାନୁଭୂତି ଦେଖାଇବା ପାଇଁ ଆସନ୍ତି ସେମାନଙ୍କ ସହିତ ଦେଖା ହୁଏ। ସେମାନଙ୍କଠାରୁ ବିଶ୍ୱାଳଙ୍କ ଶାସନ କିପରି ଚାଲିଛି ତହିଁର ସଂବାଦ ଶୁଣିବାକୁ ପାଉଥାଉ। ଅନେକ ସମୟରେ ଦଶପଲ୍ଲା ପ୍ରଜା କହନ୍ତି, "ବିଶାଳଙ୍କ ଜୁଲମ ଆଉ ସହି ହେଉ ନାହିଁ। ଆମ୍ଭେମାନେ କଣ କରିବୁ?" ଏହିସବୁ ଶୁଣି ମୁଁ ବଡ଼ ଅଧୀର ହୋଇ ଉଠେ ଏବଂ ନିଜର କର୍ତ୍ତବ୍ୟ କଣ କିଛି ସ୍ଥିର କରି ପାରେ ନାହିଁ।



# ତୃତୀୟ ଭାଗ

## ପ୍ରଥମ ପରିଚ୍ଛେଦ

### ଦଶପଲ୍ଲା ମେଳି

ଆମ୍ଭେମାନେ ଏକାଠି ରହିବାର ପ୍ରସ୍ତାବରୁ କାର୍ଯ୍ୟରେ ପରିଣତ କରିବାକୁ ନାନା ପ୍ରକାର ଉପାୟ ଅବଲମ୍ବନ କରିବାର ବିଚାର ଚାଲିଛି, ଏହି ସମୟରେ ଦଶପଲ୍ଲା ମେଳିର ସୂତ୍ରପାତ ହେଲା। ଦଶପଲ୍ଲା ମେଳି କାହିଁକି ହୋଇଥିଲା, ଅବା କିପରି ହୋଇଥିଲା ସେ ସବୁର ବିସ୍ତାରିତ ବିବରଣ ଉଲ୍ଲେଖ କରିବାକୁ ଏ ଲେଖା ତହିଁର ଉପଯୁକ୍ତ ସ୍ଥାନ ନୁହେଁ। ମାତ୍ର ଦଶପଲ୍ଲାର ଏହି କନ୍ଧମେଳି ଯେପରି ନୃଶଂସ ଭାବରେ ଦମନ କରାଗଲା ତହିଁରେ ଆକାଶ ପୃଥିବୀ ସତେ ଯେପରି ଥରହର ହୋଇ ଉଠିଲା, ସେପରି ମୋତେ ବୋଧ ହେଲା। ଏହି ଜଙ୍ଗଲ ରାଜ୍ୟରେ କଣ ଘଟିଲା ଅବା ଘଟୁଅଛି ତାହା ଜାଣିବାକୁ ଚାରିଆଡ଼େ ସମସ୍ତେ ଉଦ୍‌ବିଗ୍ନ ହୋଇ ଉଠିଲେ। ଏପରି ଅବସ୍ଥାରେ ନିଶ୍ଚିନ୍ତ ଭାବରେ ଅଧ୍ୟୟନରେ ମନ ନିବେଶ କରିବା ମୋ ପକ୍ଷରେ ଅସମ୍ଭବ। ମୋର ମନ ଅସ୍ଥିର ହୋଇ ଉଠିଲା। ଦଶପଲ୍ଲାରେ କଣ ହେଉଛି ତାହା ଜାଣିବାକୁ ଏବଂ ଦେଶରେ ସମସ୍ତଙ୍କୁ ଜଣାଇବାକୁ ମୋ ମନ ଉଦ୍‌ବିଗ୍ନ ହେଲା। ଦଶପଲ୍ଲା ପ୍ରଜାଙ୍କର ଏପରି ଘୋର ବିପତ୍ତି ବେଳେ ମୋର କର୍ତ୍ତବ୍ୟ କଣ ଏହି ପ୍ରଶ୍ନ ମୋ ମନକୁ ଅତିଶୟ ଆଲୋଡ଼ିତ କଲା। ଦେଶପାଇଁ ପ୍ରାଣ ଉତ୍ସର୍ଗ କରିବାପାଇଁ କେତେ କଳ୍ପନା ଜଳ୍ପନା କରିଛି, କେତେ ପ୍ରକାର ଯୁକ୍ତି ତର୍କ କରିଛି, କିନ୍ତୁ ଏହିସବୁ ଯୁକ୍ତି ଓ କଳ୍ପନାର ଯଥାର୍ଥ ପରୀକ୍ଷା ସମୟ ବର୍ତ୍ତମାନ ଉପସ୍ଥିତ। ଏହିପରି ଭାବ ସବୁବେଳେ ମୋ ମନରେ ଖେଳିଲା। ମୋର ଏପରି ମନୋଭାବ ଦେଖି ମୋର ବନ୍ଧୁମାନେ ସମସ୍ତେ ଟିକିଏ ଚଞ୍ଚଳ ହୋଇ ଉଠିଲେ। ଦଶପଲ୍ଲା ମେଳିରେ କୌଣସି ପ୍ରକାର ଜଡ଼ିତ ହେବା ବର୍ତ୍ତମାନ ମୋ ପକ୍ଷରେ ଉଚିତ ନୁହେଁ ବୋଲି ସମସ୍ତେ ମତେ ସାବଧାନ କରାଇଲେ। ଏପରି କି ଏହି ମେଳି ବିଷୟ ନେଇ ଚର୍ଚ୍ଚା କରିବାକୁ ମଧ୍ୟ ମତେ ବାରଣ କଲେ।

୧୯୧୪ ମସିହା ଅକ୍ଟୋବର ତା ୫ ରିଖରେ ଦଶପଲ୍ଲା କନ୍ଧମେଳିର ସୂତ୍ରପାତ ହୁଏ। ଏହି ସମୟରୁ ଡିସେମ୍ବର ମାସ ଶେଷ ହେବା ପର୍ଯ୍ୟନ୍ତ ମୁଁ କିଛି ସ୍ଥିର କରି ପାରିଲି ନାହିଁ। ଏହି ତିନିମାସ କିପରି ବିତିଗଲା ମତେ ଜଣା ନାହିଁ। ଶେଷରେ ବାର୍ଷିକ ପରୀକ୍ଷା ଦେଇ ମାଟ୍ରିକ ଫାଷ୍ଟକ୍ଲାସକୁ ପ୍ରମୋଶନ ପାଇଲି। ବଡ଼ଦିନ ଛୁଟି ଉପଲକ୍ଷେ ସ୍କୁଲ ବନ୍ଦ ହେଲା। ଦଶପଲ୍ଲାରେ କଣ ଘଟିଛି ଅବା ଘଟୁଅଛି ନିଜ ଆଖିରେ ଦେଖି ବୁଝି ଆସିବାପାଇଁ ମୁଁ ଦଶପଲ୍ଲା ବାହାରିଲି। କନ୍ଧମେଳି ଦମନ କରିବା ଲାଗି କେତେଖଣ୍ଡି ଗ୍ରାମ ଜଳାଇ ଦିଆ ଯାଇଛି। କେଉଁଗ୍ରାମ ସବୁ ଏପରି ଜଳି ଯାଇଛି, କେଉଁ ଗ୍ରାମରୁ କେତେ ଲୋକଙ୍କୁ ମାରି ଦିଆଯାଇଛି, ଗ୍ରାମର ନାମ ଏବଂ ଏପରି ମରିଥିବା ଲୋକର ନାମ ଇତ୍ୟାଦି ସଂବାଦ ନିଜେ ବୁଝି ସଂଗ୍ରହ କରିବି। ଏହିସବୁ ସଂବାଦ ସଂଗ୍ରହ କରି ବରହମପୁରରୁ ପ୍ରକାଶିତ ସାପ୍ତାହିକ 'ଆଶା'ରେ ପ୍ରକାଶ କରିବା ମୋର ଉଦ୍ଦେଶ୍ୟ। ଏହି ସମୟକୁ 'ଆଶା' ସାପ୍ତାହିକ ଆକାରରେ ପ୍ରକାଶିତ ହେଉଥାଏ। ଦଶପଲ୍ଲା ମେଳି ବିଷୟ ନେଇ ଏହି ଆଶା କାଗଜ ଯେପରି ଅଗ୍ର ଲେଖାମାନ ପ୍ରକାଶ କରିଛି, ତହିଁରେ ନୈରାଶ୍ୟଜଡ଼ିତ ଓଡ଼ିଶାରେ 'ଆଶା' କାଗଜ ପ୍ରକୃତ ଆଶାର ବାଣୀ ପ୍ରଚାର କରିଛି। ସଂବାଦପତ୍ର ହିସାବରେ 'ଆଶା' ଏହିଠାରେ ତାହାର କର୍ତ୍ତବ୍ୟ ସଂପାଦନ କରିଛି ବୋଲି ମୋର ବିଶ୍ବାସ। ସେ ଯାହା ହେଉ, ଏହି 'ଆଶା'କୁ ସଠିକ ସଂବାଦ ଯୋଗାଇବା ଉଦ୍ଦେଶ୍ୟରେ, ସଂବାଦ ସଂଗ୍ରହ କରିବାପାଇଁ ମୁଁ ଦଶପଲ୍ଲା ବାହାରିଲି। ଦଶପଲ୍ଲାରେ କଣ ଘଟିଛି ଏବଂ ଘଟୁଅଛି ତାହା ଦେଖିବାକୁ ଓ ଜାଣିବାକୁ ମୋ ମନ ମଧ୍ୟ ବ୍ୟଗ୍ର ଥାଏ।

କଟକରୁ ବାହାରି ହଠାତ୍ ଦଶପଲ୍ଲାରେ ଉପସ୍ଥିତ ହେବା ମତେ ନିରାପଦ ଜଣାଗଲା ନାହିଁ। ତେଣୁ ପ୍ରଥମେ ଖଣ୍ଡପଡ଼ା ଗଲି। ସେଠାରେ ଦଶପଲ୍ଲା ମେଳି ବିଷୟରେ ଲୋମହର୍ଷଣକାରୀ ବହୁତ ସମ୍ବାଦ ଶୁଣିବାକୁ ପାଇଲି। ଖଣ୍ଡପଡ଼ାରୁ ନୟାଗଡ଼ ଆସିଲି। ଦଶପଲ୍ଲା ମେଳିରେ ମୁଁ ଜଡ଼ିତ ଥିବାର ସନ୍ଦେହ କରି, ମତେ ତହିଁରେ ପକାଇବାକୁ କେତେ ପ୍ରକାର ଜାଲ ବିସ୍ତାର କରା ହେଲାଣି ସେ ସବୁ ମତେ ଜଣା ନାହିଁ। ଖଣ୍ଡପଡ଼ା ଛାଡ଼ି ନୟାଗଡ଼ରେ ଉପସ୍ଥିତ ହେବା ମାତ୍ରକେ ମୁଁ ସେହି ଜାଲରେ ଯାଇ ପଡ଼ିଲି। ବାବୁ ଅନିରୁଦ୍ଧ ପଟେଲ ସେତେବେଳେ ନୟାଗଡ଼ର ସୁପରିଂଟେଣ୍ଡେଣ୍ଟ। ଶ୍ରୀଯୁକ୍ତ ଗୌରୀଶ୍ୟାମ ମହାନ୍ତି ବହୁଦିନରୁ ନୟାଗଡ଼ରୁ ବିଦାୟ ନେଇ ଅଛନ୍ତି। ଦଶପଲ୍ଲା କନ୍ଧମେଳିର ପୋଲିସ ତଦନ୍ତପାଇଁ ବାବୁ ଦାମୋଦର ରଥ ନିଯୁକ୍ତ ହୋଇ ଅଛନ୍ତି। ଶହ ଶହ କନ୍ଧ ମେଳିରେ ଧରା ହେଲେଣି। ଦଶପଲ୍ଲାର ଅନେକ ବଡ଼ ବଡ଼ ପ୍ରଜା ମଧ୍ୟ ଧରା ହୋଇ ଅଛନ୍ତି। ମତେ ଧରି ସେଥିରେ ଜଡ଼ିତ କରିବାକୁ ବର୍ତ୍ତମାନ ଚେଷ୍ଟା ଚାଲିଛି। ମତେ ଧରିବାରେ ସାହାଯ୍ୟ କରିବାକୁ ବାବୁ ଦାମୋଦର ରଥ, ନୟାଗଡ଼ ସୁପରିଂଟେଣ୍ଡେଣ୍ଟ ବାବୁ ଅନିରୁଦ୍ଧ ପଟେଲଙ୍କ

ସହିତ ପରାମର୍ଶ କରି ଅଛନ୍ତି। ଏହି ଉଭୟଙ୍କ ପରାମର୍ଶରେ ପଟେଲ ଗୋଟିଏ ନୋଟିସ ଜାରୀ କରାଇ ଅଛନ୍ତି। ନୋଟିସରେ ଲେଖାଅଛି, ନୟାଗଡ଼ ଷ୍ଟେଟ୍ରୁ ସାହାଯ୍ୟ ପାଉଥିବ ପ୍ରତ୍ୟେକ ଛାତ୍ର, ତା୨୪-୧୨-୧୪ରେ ନୟାଗଡ଼ ମୁକାମରେ ଆସି ହାଜର ହେବେ। ସେମାନଙ୍କୁ ପରୀକ୍ଷା କରାଯିବ। ଏପରି ଗୋଟିଏ ନୋଟିସ୍ ହଠାତ୍ ଜାରୀ କରିବାର କିଛିମାତ୍ର କାରଣ ନାହିଁ। ଏପରି ନୋଟିସ ଜାରୀ ହେବାର ଏହାହିଁ ହେଉଛି ପ୍ରଥମ ଓ ଶେଷ। ଏଥିରୁ ମୁଁ ଅନୁମାନ କଲି ଯେ ମତେ ଧରିବାକୁ କେବଳ ଏହି ଫନ୍ଦି ବନ୍ଧା ହୋଇଛି। ନୟାଗଡ଼ ଷ୍ଟେଟର ଜଣେକ ପିଅନ ଏହି ନୋଟିସ ଜାରୀ କରିବାପାଇଁ କଟକ ଯାଇ ମତେ ସେଠାରେ ନ ପାଇ ଫେରି ଆସିଛି। ମତେ ନ ପାଇ ଫେରି ଆସିବାରୁ, ନାନା ସନ୍ଦେହ କରି ନିଜେ ଦାମବାବୁ କଟକ ଯାଇଅଛନ୍ତି। ଉଦ୍ଦେଶ୍ୟ, ମତେ ଖୋଜି ପାଇଲେ ସାଥିରେ ନେଇ ଆସିବେ। ଏହିପରି ଅବସ୍ଥାରେ ମୁଁ ନୟାଗଡ଼ ଗଡ଼ରେ ହାଜର। ଗଡ଼ ଭିତରକୁ ପ୍ରବେଶ କଲା ବେଳକୁ ବାଟରେ ହଠାତ୍ ନୋଟିସ ଜାରୀ କରିଥିବା ପିଅନଟି ସହିତ ମୋର ଦେଖା ହେଲା। ପିଅନଟି ଭିତରି ରହସ୍ୟ କିଛି ଜାଣେ ନାହିଁ। ତାହାର ନାମ ଦୁଃଖିଶ୍ୟାମ। ନୟାଗଡ଼ରେ ମୁଁ ପଢ଼ିଲା ବେଳେ ସେ ମଧ ସ୍କୁଲରେ ଅଧ୍ୟୟନ କରୁଥିଲା। ସେ ହଠାତ୍ ମତେ ଦେଖି ନୋଟିସ୍ କଥା କହି ମତେ ଷ୍ଟେଟ୍ର ନାଜରଙ୍କ ନିକଟକୁ ଡାକିନେଲା। ନାଜରବାବୁ ମତେ ପାଇ ହଠାତ୍ ପଟେଲଙ୍କ ନିକଟକୁ ବାହାରିଲେ। ମତେ ସଙ୍ଗରେ ନେଲେ ଏହା କହିବା ଅନାବଶ୍ୟକ। ଉଭୟେ ପଟେଲଙ୍କ ନିକଟରେ ହାଜର ହେଲୁ। ପଟେଲ ମତେ ଦେଖି ନାଜରବାବୁଙ୍କୁ ଆଉ କେହି ଛାତ୍ର ଆସିଛନ୍ତି କି ନାହିଁ ବୋଲି ପଚାରି, ତହିଁଆର ଦିନ କଚେରୀରେ ହାଜର ହେବାକୁ ମତେ ଆଦେଶ ଦେଲେ।

ପଟେଲଙ୍କ ନିକଟରୁ ଫେରି ଗଡ଼ରେ ମୁଁ ମୋର ଜଣେକ ବନ୍ଧୁଙ୍କ ଘରେ ରହିଲି। ନୋଟିସରେ ମୋର ଦସ୍ତଖତ କରାଇବା କାର୍ଯ୍ୟ। ତାହା ନ କରି ନାଜର ବାବୁ ମତେ ପଟେଲଙ୍କ ନିକଟକୁ ନେବାର କାରଣ କଣ? ଏହା ଭିତରେ କିଛି ଗୂଢ଼ ରହସ୍ୟ ନାହିଁ ତ? ଏହିପରି ଗୋଟିଏ ସନ୍ଦେହ ମୋ ମନକୁ ଛୁଇଁଲା। ନୟାଗଡ଼ରୁ ସାହାଯ୍ୟ ପାଉଥିବା ଆଉ କେତୋଟି ଛାତ୍ର ଏହି ନୋଟିସ ପାଇ ଆସିଥିବାର ଦେଖିଲି। ସମସ୍ତେ ହଠାତ୍ ଏପରି ନୋଟିସ ପାଇ ଆଶ୍ଚର୍ଯ୍ୟ ହୋଇ ଅଛନ୍ତି। କେହି କିଛି ବୁଝି ନାହାନ୍ତି। ମୋ ମନରେ ଟିକିଏ ସନ୍ଦେହ ଜାତ ହେଲେ ମଧ ମୁଁ କିଛି ବୁଝି ପାରୁ ନଥାଏ। "ଦଶପଲ୍ଲାରୁ ନିର୍ବାସିତ ମୋର ପୂର୍ବ ପରିଚିତ ଶ୍ରୀଯୁକ୍ତ ଲିଙ୍ଗରାଜ ଦାସଙ୍କ ସହିତ ଦେଖା ହେଲା। ସେ ମତେ ତାହାଙ୍କ ଘରକୁ ଡାକି କହିଲେ ଯେ, ଦଶପଲ୍ଲା ସଂକ୍ରାନ୍ତରେ ତତେ ଧରିବାକୁ ବୋଧହୁଏ ତୁମମାନଙ୍କୁ ଡକରା ହୋଇଛି। ତୁ ସାବଧାନରେ କଥାବାର୍ତ୍ତା କରିବୁ। ଭିତରି କଥା ମୁଁ ଅବଶ୍ୟ କିଛି ଜାଣେ ନାହିଁ। ମୋର ମନରେ ଯାହା ସନ୍ଦେହ ହୋଇଛି, ତାହା ତତେ କହିଲି।"

ଲିଙ୍ଗରାଜ ଦାସଙ୍କୁ ମୁଁ ମାମୁ ବୋଲି ଡାକେ। ତାହାଙ୍କ ସହିତ ମୋର ଘନିଷ୍ଠ ସମ୍ବନ୍ଧ ରହିଅଛି। ଏପରି ଅବସ୍ଥାରେ ତାହାଙ୍କ କଥା ଶୁଣି, ତାହାଙ୍କ ସନ୍ଦେହଜାତ କଥାକୁ ଅବିଶ୍ୱାସ କରିବାର କିଛି ମାତ୍ର କାରଣ ନାହିଁ। ମୋ ମନକୁ ତ ସନ୍ଦେହ ଅଳ୍ପ ମାତ୍ରାରେ ସ୍ପର୍ଶ କରିଥାଏ। ଶ୍ରୀଯୁକ୍ତ ଲିଙ୍ଗରାଜ ଦାସଙ୍କ କଥା ମୋର ସେହି ସନ୍ଦେହକୁ ଦୃଢ଼ କରି ଦେଲା। ଭିତରି ରହସ୍ୟ ଭଲ କରି ନ ଜାଣିଲେ, କେବଳ ସନ୍ଦେହରେ କିଛି କର୍ତ୍ତବ୍ୟ ସ୍ଥିର କରି ହେଉ ନାହିଁ। ଏହିପରି ମନର ଭାବ ନେଇ ତହିଁ ଆରଦିନ କଚେରୀରେ ପଟେଲଙ୍କ ସହିତ ଦେଖା କଲି। ମୋ ସହିତ ଆଉ କେତୋଟି ଛାତ୍ର ମଧ ଦେଖା କରିବାକୁ ଆସିଥିଲେ। କିନ୍ତୁ ପଟେଲ ସାହେବ ସେଦିନ କିଛି ନ କହି ପୁଣି ତହିଁ ଆରଦିନକୁ ହାଜର ହେବାକୁ ଆଦେଶ ଦେଲେ। ଏଥିରେ ମୁଁ ଟିକିଏ ମଧ ଆଶ୍ଚର୍ଯ୍ୟ ବୋଧକଲି। ମୋର ସନ୍ଦେହରେ ସନ୍ଦେହ ପୁଣି ଜାତ ହେଲା। ମୁଁ ଭାବିଲି ବୋଧହୁଏ, ମେଳି ସଂପର୍କରେ ମୋର ସନ୍ଦେହ ଠିକ୍ ନୁହେଁ। କାରଣ ମତେ ଧରିବାର ହୋଇଥିଲେ, ଏପରି ଭାବରେ ଦିନ କାହିଁକି ଗଡ଼ାଉଥାନ୍ତେ। ମତେ ଧରିବାର ହୋଇଥିଲେ ଧରି ସାରନ୍ତେଣି। ସୁତରାଂ ଦଶପଲ୍ଲା ମେଳି ସହିତ ଆମ୍ଭମାନଙ୍କୁ ତକରାର କୌଣସି ସମ୍ବନ୍ଧ ନାହିଁ। ମୋ ମନରେ ଏପରି ଭାବ ଜାତ ହେଲା ସତ୍ୟ, କିନ୍ତୁ ମନରେ ବଳ ପାଇଲି ନାହିଁ। ମୁଁ ଯାହା ନିକଟକୁ ଯାଏ, ସମସ୍ତେ ମୋ ସହିତ କଥା ହେବାରେ ଟିକିଏ ଜଗି ରହି କଥା କହିଲା ପରି ଜଣା ଯାଉଥାଏ। ନୟାଗଡ଼ରେ ସତେ ଯେପରି ମୁଁ ଜଣେ ନିହାତି ଅପରିଚିତ ବିଦେଶୀ। ଏସବୁ ଦେଖି ମତେ ବଡ଼ କଷ୍ଟ ହେଉଥାଏ, ମନରେ ମଧ ଭୟ ଜାତ ହେଉଥାଏ। ଭୟ ଜାତ ହେଲେ ମଧ ପଳାଇ ଆସିବାକୁ ମନ ଡାକେ ନାହିଁ। ସବୁବେଳେ ଭାବୁଥାଏ, ସୁପରିଂଟେଣ୍ଡେଣ୍ଟ କଣ ପରୀକ୍ଷା କରିବେ। ତାହା ସେ ସାରିଦେଲେ, ମୁଁ ଶୀଘ୍ର ଏଠାରୁ ଦଶପଲ୍ଲା ଚାଲିଯିବି।

ଏସବୁ ବ୍ୟାପାରର ରହସ୍ୟ ବାବୁ ଦାମୋଦର ରଥଙ୍କ ନିକଟରେ। ସେ କଟକରୁ ଫେରିଲା ପର୍ଯ୍ୟନ୍ତ ମତେ କୌଣସି କଥା କିଛି ନ କହି ଅଟକାଇ ରଖିବା ପଟେଲଙ୍କ ଉଦ୍ଦେଶ୍ୟ। ଏହି ମର୍ମରେ ଦାମ ରଥେ ବୋଧହୁଏ ପରାମର୍ଶ ଦେଇ ଯାଇଥିବେ। ସେ ଯାହା ହେଉ, ଦ୍ୱିତୀୟ ଥର ପଟେଲଙ୍କ ନିକଟରୁ ଫେରିଲା ଦିନ ରାତ୍ରିରେ ଦାମ ବାବୁ କଟକରୁ ଫେରିଲେ। ତହିଁ ଆରଦିନ ମୁଁ ଓ ଆଉ କେତେକ ଛାତ୍ର ପଟେଲଙ୍କ ନିକଟରେ ଉପସ୍ଥିତ ହେଲୁ। ପଟେଲ ବାହାନା କରି ଗୋଟିଏ ଦୁଇଟି ପ୍ରଶ୍ନ ପଚାରି ଆମ୍ଭମାନଙ୍କୁ ପରୀକ୍ଷା କଲେ। ଏହାପର ଅନ୍ୟାନ୍ୟ ସମସ୍ତ ଛାତ୍ରଙ୍କୁ ବିଦାୟ ଦେଇ ମତେ ଅଟକାଇ ରଖିଲେ। ମତେ କହିଲେ, ମୋର ବୃତ୍ତି ବିଷୟ ବିଚାର କରିବାର ଅଛି। ମୋର ଫାଷ୍ଟ କ୍ଲାସକୁ ବୃତ୍ତି ନ ଥାଏ। ଆଉ ବର୍ଷକ ସକାଶେ, ଷ୍ଟେଟ୍ ବୃତ୍ତି ମଞ୍ଜୁର କରିବାପାଇଁ ମୁଁ ପୂର୍ବରୁ ଦରଖାସ୍ତ କରିଥାଏ।

ମୋର ଏହି ଦରଖାସ୍ତ ବିଚାର କରାଯିବ କହି ମତେ ଅଟକାଇ ରଖି, ଏକଘଣ୍ଟା ପରେ ପୁଣି କାଲି ଆସି କଚେରୀରେ ହାଜର ହେବାକୁ ପଟେଲ ସାହେବ ହୁକୁମ ଦେଲେ।

ଅନ୍ୟାନ୍ୟ ଛାତ୍ରଙ୍କୁ ବିଦାୟ ଦେଇ ମତେ ଯେତେବେଳେ ଅଟକାଇ ରଖିଲେ, ସେତେବେଳେ ମେଳିରେ ଧରା ହେଲି ବୋଲି ମୋର ପୂର୍ଣ୍ଣ ବିଶ୍ୱାସ ଜନ୍ମିଗଲା। କିନ୍ତୁ ମୋର ବୃତ୍ତି ବିଷୟ ବିଚାର ପାଇଁ କଚେରୀରେ ପୁଣି ତହିଁ ଆରଦିନ ହାଜର ହେବାକୁ ଆଦେଶ ପାଇ ମୁଁ ଯେତେବେଳେ ଛାଡ଼ ପାଏ, ସେତେବେଳେ ମୋର ଆନନ୍ଦର ମଧ୍ୟ ସୀମା ରହିଲା ନାହିଁ। ମୁଁ ପଟେଲଙ୍କ କଚେରୀରୁ ମହା ଆନନ୍ଦରେ ଫେରିଲି। ଦଶପଲ୍ଲୀ ଯାଇଁ ମେଳି ଦମ କରିବାପାଇଁ ଚାଲିଥିବା ଅତ୍ୟାଚାର ଘଟଣାମାନ କିପରି ସଂଗ୍ରହ କରିବି, ଏହି ଚିନ୍ତା ମୋ ମନରେ ଖେଳିଲା। ମୋ ମନରୁ ଧରା ହେବାର ସନ୍ଦେହ ଦୂର ହୋଇଗଲା। ଏହିପରି ଭାବନାରେ ମୁଁ ଗଡ଼ ଭିତରକୁ ଆସୁଛି, ଏପରି ସମୟରେ ହଠାତ୍ ପଛରୁ ଜଣେ କିଏ ମତେ ଡାକ ପକାଇଲା। ମୁଁ ପଛକୁ ଚାହିଁ ଦେଖେ ତ ଗୋଟିଏ ପୋଲିସ କନେଷ୍ଟବଲ। 'ପୋଲିସ ଇନ୍ସପେକ୍ଟର ବାବୁ ଦାମୋଦର ରଥ ମତେ ଡକାଇ ଅଛନ୍ତି।' କହି ସେ ମତେ ସେଠାରୁ ଫେରାଇ ନେବାକୁ ଇଙ୍ଗିତ ଦେଲା। ତାହାର ସେହି ଡାକ, ସେହି ଇଙ୍ଗିତ ବଜ୍ରପାତ ପରି ମତେ ବୋଧ ହେଲା। ମୋର ବଳ ବୁଦ୍ଧି ସବୁ କୁଆଡ଼େ ହଜିଗଲା। ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇ ଠିଆ ହୋଇ ରହିଲି। କୁଆଡ଼କୁ ଯିବି କିଛି ଭାବି ପାରିଲି ନାହିଁ। ଏହିପରି ମୂକପରି ଠିଆହୋଇ ରହିବାର ମତେ ଦେଖି କନେଷ୍ଟବଲଟି କହିଲା, ''ଆପଣ ଠିଆହୋଇ ରହିଲେ ଯେ, ଇନ୍ସ୍‌ପେକ୍ଟର ବାବୁ ଡକାଇଛନ୍ତି। ଆପଣଙ୍କୁ ଏକ୍ଷଣି ମୋ ସହିତ ଯିବାକୁହେବ।'' ମୋର ଆଉ ଉପାୟ କଣ ଅଛି। ''ନିରାଶ୍ରୟମାଂ ଜଗଦୀଶ ରକ୍ଷ'' ଏହି ବାକ୍ୟଟି ଉଚ୍ଚାରଣ କରି କରି ଅତି ଭୟରେ କନେଷ୍ଟବଲ ସଙ୍ଗେ ବାବୁ ଦାମୋଦର ରଥଙ୍କ ବସାକୁ ମୁଁ ଚାଲିଲି।

## ଦ୍ୱିତୀୟ ପରିଚ୍ଛେଦ

ନୟାଗଡ଼ ଇନ୍‌ସପେକ୍‌ସନ ବଙ୍ଗଳାରେ ବାବୁ ଦାମୋଦର ରଥ ରହିଥାନ୍ତି। କନେଷ୍ଟବଲଟି ମତେ ନେଇ ତାହାଙ୍କ ନିକଟରେ ହାଜର କଲା। ଦାମବାବୁଙ୍କୁ ମୁଁ ଜେବେ ଦେଖି ନାହିଁ କିମ୍ବା ତାହାଙ୍କ ନାମ ମଧ୍ୟ ଶୁଣି ନାହିଁ। ଦାମ ରଥେ ଜାତିରେ ବ୍ରାହ୍ମଣ। ଦେଖିବାକୁ ଟିକିଏ ସ୍ଥୂଳକାୟ, ଗୌରବର୍ଣ୍ଣ, ଅତି ଉଚ୍ଚ ନୁହନ୍ତି କିମ୍ବା ନିହାତି ବାଙ୍ଗର ନୁହନ୍ତି। ମୁଣ୍ଡରେ ଗୋଟିଏ ବଡ଼ ଚନ୍ଦନଟୋପା। ଖଣ୍ଡିଏ ଧୋତି ପିନ୍ଧି ଖାଲି ଦେହରେ ବଙ୍ଗଳା ଘରେ ବସିଛନ୍ତି। ମତେ ଦେଖିଲାକ୍ଷଣି ରଥେ ଆପଣେ ଦୌଡ଼ି

ଆସି ମତେ କୁଣ୍ଢାଇ ପକେଇଲେ। ତାହାଙ୍କ ଭାବ ଭଙ୍ଗିରୁ ମତେ ବୋଧ ହେଲା ସତେ ଯେପରି ମତେ ଦେଖିବାକୁ ସେ ବଡ଼ ବ୍ୟାକୁଳ ଥିଲେ। ତାହାଙ୍କ କଥା ଶୁଣି ଏବଂ ତାହାଙ୍କ ରୂପ ଦେଖି ମୁଁ ଏକାବେଳକେ ଭୁଲିଗଲି। ତାହାଙ୍କ ପ୍ରତି ମୋର ଆନ୍ତରିକ ଭକ୍ତି ଭାବ ଟିକିଏ ମଧ ଜାଗି ଉଠିଲା। ସେ ମୋ କାନ୍ଧରେ ହାତ ପକାଇ ମତେ ନେଇ ଗୋଟିଏ ଚୌକି ଉପରେ ବସାଇ ମୋ ସହିତ କଥୋପକଥନ ଆରମ୍ଭ କଲେ। ତାହାଙ୍କର ସ୍ନେହବୋଳା କଥା ଓ ବ୍ୟବହାର ମତେ ତରଳାଇ ଦେଲା। ସେ ମୋ ନାମ ଶୁଣିଛନ୍ତି। ମୁଁ କିପରି ପଢ଼ୁଛି ତାହା ସେ ଜାଣନ୍ତି। ମତେ ଦେଖିବାକୁ ବହୁଦିନୁ ତାଙ୍କର ଇଚ୍ଛା ଥିଲା। ମତେ ଦେଖିବାକୁ ପାଇ ସେ ଭାରୀ ଖୁସି ହୋଇଛନ୍ତି। ଇତ୍ୟାଦି କଥା ରଥେ ଆପଣେ ମତେ କହିବାକୁ ଆରମ୍ଭ କଲେ। ମୁଁ ବର୍ତ୍ତମାନ କିପରି ଚଳୁଛି? ମୋର ଅଭାବ ଅସୁବିଧା କଣ? ଏବର୍ଷ ବହିପତ୍ର କିଣିବାକୁ ପଡ଼ିବ କି ନାହିଁ? ଯଦି କିଣିବାକୁ ହୁଏ ତେବେ କେତେ ଖର୍ଚ୍ଚ ହେବ? ଇତ୍ୟାଦି, ପ୍ରଶ୍ନ ମତେ ପଚାରିଲେ। ତାହାଙ୍କ ରୂପ ଓ ବ୍ୟବହାରରେ ମୁଁ ଯେପରି ଭୁଲି ଯାଇଥିଲି, ତାହାଙ୍କର ଏହିଭଳି ପ୍ରଶ୍ନରେ ମୋ ଚିତ୍ତ ସନ୍ଦିଗ୍ଧ ହୋଇ ଉଠିଲା। ମୁଁ ମନେ ମନେ ଭାବିଲି, ଏହାଙ୍କୁ ମୁଁ ଚିହ୍ନେ ନାହିଁ କିମ୍ବା ଜାଣେ ନାହିଁ। ଏପରି ଅବସ୍ଥାରେ ଏ ଏତେ କଥା ମତେ ପଚାରିବାର ଉଦ୍ଦେଶ୍ୟ କଣ। ଏ ସବୁ ଭିତରେ କିଛି ନା କିଛି ରହସ୍ୟ ନିଶ୍ଚୟ ଅଛି। ଏପରି ସନ୍ଦେହ ମୋ ମନକୁ ଛୁଇଁଲା। ମୁଁ ଟିକିଏ କଥାକୁ ଜଗି ଉତ୍ତର ଦେଲି। ଏହାପର ମୋର ଦଶପଲ୍ଲା ଯିବାର ଇଚ୍ଛା ଅଛି କି ନାହିଁ ବୋଲି ପଚାରିବାରେ ମୁଁ ଉତ୍ତର ଦେଲି, "ମୁଁ ଛୁଟିରେ ଦଶପଲ୍ଲା ଯାଉଛି। ଦଶପଲ୍ଲା ନ ଯାଇ ଆଉ ଯିବି କୁଆଡ଼େ?" ରଥେ ଆପଣେ କହିଲେ ଯେ, କାଲି ସକାଳୁ ସେ ଦଶପଲ୍ଲା ଯିବେ। ମୁଁ ତାଙ୍କ ସଙ୍ଗରେ ଗଲେ ସେ ମତେ ହାତୀରେ ବସାଇ ନେଇ ଯିବେ। କାଲି ସକାଳୁ ସେ କେତେବେଳେ ଯିବେ ମତେ କହିଲେ ମୁଁ ସେତବେଳକୁ ଆସି ହାଜର ହେବି, ଏହା କହି ମୁଁ ଯିବାକୁ ଉଦ୍ୟତ ହେଲି। ଏହା ଶୁଣି ଏବଂ ମତେ ଯିବାକୁ ଉଦ୍ୟତ ହେବାର ଦେଖି ରଥେ ଆପଣେ କହିଲେ, "ଗୋବିନ୍ଦ ତାହା ହେବ ନାହିଁ। ତୁ ରାତିରେ କାହିଁକି କୁଆଡ଼େ ଯିବୁ? ବହୁଦିନୁ ତତେ ଦେଖିବାକୁ ଇଚ୍ଛା କରି ଆଜି ପାଇଛି। ତତେ ମୁଁ ଛାଡ଼ି ଦେବି ନାହିଁ। ତୁ ଆଜି ମୋ ପାଖରେ ରହିବୁ। କାଲି ଅନ୍ଧାରୁ ଉଠି ହାତୀରେ ଚାଲିଯିବା।" ଏହା ଶୁଣି ମୁଁ କହିଲି, "ତାହା ହେଲେ ଭଲ କଥା। ମୁଁ ଆଉ କୁଆଡ଼େ ଯିବି ନାହିଁ, ତେବେ ମୋର ଲୁଗାପଟା ଦିଖଣ୍ଡ ଯାହା ଅଛି, ତାହା ଯାଇ ମୁଁ ନେଇ ଆସେ।" ଏହାଶୁଣି ସେ କହିଲେ, "ଲୁଗାପାଇଁ ତୋର ଯିବା ଦରକାର ନାହିଁ। ତୋର ଲୁଗା କେଉଁଠାରେ ଅଛି ମତେ କହ, ମୁଁ ମଗାଇ ଦେବି।"

ଏଥିରେ ମୋର ଆଉ କିଛି ଉତ୍ତର ନାହିଁ। ମୁଁ ଧରା ହେଲି ବୋଲି ବୁଝିବାରେ ଆଉ କିଛି ସନ୍ଦେହ ରହିଲା ନାହିଁ। ମାତ୍ର ବାବୁ ଦାମୋଦର ରଥ ମତେ ଏତକ ଜଣାଇ ଦେବାକୁ ଚାହାନ୍ତି ନାହିଁ। ମୁଁ ସେପରି ଧରା ହେଲି ବୋଲି ବୁଝି ପାରିଥିଲେ ମଧ, ମନକଥା ମୁଁ ମଧ ଜଣାଇ ଦେବାର ଅବସର ଦିଏ ନାହିଁ। କିଛି ନ ଜାଣିଲା ପରି ମୁଁ ବ୍ୟବହାର କରୁଥାଏ। ସେ ଯାହା କହୁଥାନ୍ତି, ତହିଁରେ ମୁଁ ରାଜି ହୋଇ ଯାଉଥାଏ। କାରଣ, ମୁଁ ବୁଝିଥାଏ, ତାଙ୍କ କବଳରୁ ଖସିବାର ଆଉ ଉପାୟ ନାହିଁ। ସୁତରାଂ ତାଙ୍କ କଥାର ବିରୋଧ କଲେ, ହାତକଡ଼ି ପଡ଼ି ଦୌଡ଼ିରେ ବନ୍ଧା ହୋଇ ଦଶପଲ୍ଲା ଓଟରା ହେବା ଛଡ଼ା ମୋ ଭାଗ୍ୟରେ ଅନ୍ୟ କିଛି ନାହିଁ। ଏପରି ଅବସ୍ଥାରେ ମୁଁ ମନକଥା ମନରେ ରଖି କିଛି ନ ଜାଣିଲା ପରି ତାଙ୍କ କଥାରେ ହଁ ମାରୁଥାଏ।

ସେ ଯାହାହେଉ, ରଥେ ଆପଣେ ଲୋକ ପଠାଇ ଜିନିଷ ପତ୍ର ମଗାଇ ଦେଲେ। ତାହାଙ୍କ ବ୍ୟବହାର ମୋ ପ୍ରତି ଅଶେଷ ଦୟା ଏହା ଅସ୍ୱୀକାର କରି ନ ପାରେ। ସେ ଇଚ୍ଛା କରିଥିଲେ, ମତେ ଧରି ପୋଲିସ ହାତରେ ଦେଇ ଚାଲି ଯାଇଥାନ୍ତେ। ତାହା ନ କରି ଅତି ସ୍ନେହରେ ମୋ ସହିତ ବ୍ୟବହାର କରି ମତେ ବସାରେ ରଖି, ତହିଁ ଆରଦିନ ହାତୀରେ ବସାଇ ନେବା, ଦାମବାବୁଙ୍କର ମୋ ପ୍ରତି ନିଶ୍ଚୟ ଦୟା। ସେ ଯାହାହେଉ ତହିଁ ଆର ଦିନ ସକାଳ ୫ଟାରେ ମୁଁ ଓ ଦାମବାବୁ ଦୁହେଁ ହାତୀ ଚଢ଼ି ଦଶପଲ୍ଲା ବାହାରିଲୁ। ବାଟରେ କେବଳ କଟକ ଗଳ୍ପ ବ୍ୟତୀତ ଦଶପଲ୍ଲା କଥା କିଛି କଥା ହୋଇ ନାହୁଁ। ନୟାଗଡ଼ ଦଶପଲ୍ଲା ରାସ୍ତାରେ ନୂଆଗାଁ ବୋଲି ଗୋଟିଏ ଡାକବଙ୍ଗଳା ଅଛି। ଚାରିଭାଗ ବାଟରୁ ତିନିଭାଗ ଗଲା ପରେ ଏହି ନୂଆଗାଁ ପଡ଼େ। ଏହିଠାରେ ରହି ଆମ୍ଭେମାନେ ଜଳଖିଆ କଲୁ। ଜଳଖିଆ ସାରି ହାତୀକୁ ଅପେକ୍ଷା କରି ବସିଛୁ, ଏହି ସମୟରେ ଦାମବାବୁ ଦୁଇଟି କନ୍ଧର ନାମ ଉଲ୍ଲେଖ କରି ମୁଁ ସେମାନଙ୍କୁ ଜାଣେ କି ନାହିଁ ବୋଲି ପ୍ରଶ୍ନ କଲେ। ମୁଁ ସେମାନଙ୍କୁ ଜାଣେ ନାହିଁ ବୋଲି ଉତ୍ତର ଦେବାରୁ ରଥେ ଆପଣଙ୍କ ସ୍ୱରୂପ ବଦଳିଗଲା। ସେ ହଠାତ୍ ସ୍ୱର ବଦଳାଇ କହିଲେ, "ତୁ ଜାଣି ନାହୁଁ, ଦଶପଲ୍ଲା ଚାଲ ସେଠାରେ ଜାଣିବୁ ଯେ। ସେମାନେ କଟକ ଆସିଥିଲେ। ତୁ ଆଉ ବୈଷ୍ଣବ ଦେଓ ଦୁହେଁ ମିଶି ମେଳି କରିବାକୁ ପରାମର୍ଶ ଦେଇଛ। ସେମାନେ ତତେ ଜାଣନ୍ତି। ତୁ ସେମାନଙ୍କୁ ମେଳି କରିବାକୁ ଶିଖାଇଅଛୁ ବୋଲି ସେମାନେ କହୁଛନ୍ତି, ତୁ କହୁଛୁ ସେମାନଙ୍କୁ ଜାଣି ନାହୁଁ ?"

ଦାମ ରଥଙ୍କ ହଠାତ୍ ଏପରି ପରିବର୍ତ୍ତନ ଦେଖି ମୁଁ ଟିକିଏ ଶଙ୍କି ଗଲି। ମୁଁ କହିଲି, "ଚାଲନ୍ତୁ। ମୁଁ ତ ଆପଣଙ୍କ ସଙ୍ଗରେ ଯାଉଛି, କୁଆଡ଼େ ପଳାଉ ନାହିଁ। ଆପଣ ଏତେ ଧମକ ଦେଖାଉଅଛନ୍ତି କାହିଁକି ?" ଏତିକ କହି ମୁଁ ନୀରବ

ରହିଲି। ମୁଁ ମେଲିରେ ଧରା ହୋଇଛି ବୋଲି କାଲିଠାରୁ ବୁଝି ଥାଏ। ଯାହା ଟିକିଏ ଅବା ସନ୍ଦେହ ଥିଲା, ତାହା ବର୍ତ୍ତମାନ ଦୂର ହୋଇଗଲା। ମୋଠାରୁ ଏପରି ଉତ୍ତର ପାଇ ରଥେ ଆପଣେ ମତେ ଆଉ କିଛି କହି ନାହାନ୍ତି। ମେଳି କଥା ଏଠାରେ ଏତିକିରେ ରହିଲା। ଆମ୍ଭେ ଦୁହେଁ ପୁଣି ହାତୀରେ ଚଢ଼ି ଦଶପଲ୍ଲା ବାହାରିଲୁ। ଅଳ୍ପ ସମୟ ମଧ୍ୟରେ ଦଶପଲ୍ଲା ରାଜ୍ୟରେ ପ୍ରବେଶ କଲୁ।

ଦଶପଲ୍ଲାରେ ଗ୍ରାମକୁ ଗ୍ରାମ ସଡ଼କ। ସଡ଼କ ଦୁଇପାର୍ଶ୍ୱରେ ଆମ୍ବ ପଣସ ଗଛ ସବୁ ଲାଗିଛି। ଏହା ହେଉଛି ବିଶ୍ୱାଳଙ୍କ କୀର୍ତ୍ତି। ଏହାକୁ ଦେଖିଲା ମାତ୍ରକେ ଯେ କେହି ବିଶ୍ୱାଳଙ୍କୁ ପ୍ରଶଂସା ନ କରି ରହି ପାରିବ ନାହିଁ। କିନ୍ତୁ ଏହି ସଡ଼କ ପକାଇବା ଓ ଗଛ ରୋପଣ କରି ତାହାକୁ ବଞ୍ଚାଇ ରଖିବା ପଛରେ କି ମର୍ମାନ୍ତିକ ଯନ୍ତ୍ରଣା ରହିଅଛି, ତାହା କେବଳ ଦଶପଲ୍ଲାର ନିରୀହ ପ୍ରଜା ଜାଣନ୍ତି। ଦଶପଲ୍ଲା ପ୍ରଜା ଏଥିପାଇଁ ଲୁହ ନ ନ କାନ୍ଦି ରକ୍ତ କାନ୍ଦିଛନ୍ତି ବୋଲି କୁହାଯାଇ ପାରେ। ଏହିସବୁ କାମ ବେଠିରେ କରା ହୋଇଛି। ଏହି କାମ କରାଇ ବିଶ୍ୱାଳ ଗୋଟିଏ ଅର୍ଥ ଆୟର ବାଟ ଖୋଲି ଅଛନ୍ତି। ଏହାଛଡ଼ା ଦଶପଲ୍ଲା ପରି ଅଶିକ୍ଷିତ ରାଜ୍ୟରେ ଗ୍ରାମକୁ ଗ୍ରାମ ସଡ଼କ ପକାଇବା କୌଣସି ଆବଶ୍ୟକ ନ ଥିଲା। ସଡ଼କଦ୍ୱାରା ପ୍ରଜାଙ୍କ ଦୁଃଖ ଦୂର ହୁଏ ନାହିଁ। ଏଥିରେ ପ୍ରଜାଙ୍କ ଦୁଃଖ ଲାଘବ ନ ହୋଇ ସହସ୍ର ଗୁଣରେ ବଢ଼ିଛି। ଏହି ସଡ଼କ ରାସ୍ତା କରିବା, ପୋଲ ନିର୍ମାଣ କରିବାପାଇଁ ଯେ ଦୁଃଖ ତାହା ସାମୟିକ ଅବଶ୍ୟ। କିନ୍ତୁ ପ୍ରଜାଙ୍କର ଅଭାବ ଅସୁବିଧା କଣ ଏବଂ ତାହା କେଉଁଠାରେ ତହିଁର କାରଣର ଅନୁସନ୍ଧାନ ନାହିଁ। ପ୍ରଜାଙ୍କର ଆର୍ଥିକ ଅବସ୍ଥା କିପରି ସୁଧୁରିବ, ପ୍ରଜାକୁଳ କିପରି ଶିକ୍ଷିତ ହେବେ, ସେଥିପ୍ରତି ଦୃଷ୍ଟି ନାହିଁ କିମ୍ବା ସେ ସବୁର ପ୍ରତିକାର ଉପାୟ ଅବଲମ୍ବନ କରିବାର କୌଣସି ଚେଷ୍ଟା ନାହିଁ। ନିରୀହ ଅଶିକ୍ଷିତ ପ୍ରଜାଙ୍କୁ ଭୟଭୀତ କରାଇ, ପଶୁ ପରି ସବୁବେଳେ ସେମାନଙ୍କୁ ଖଟାଇ କେତେକ କାର୍ଯ୍ୟ କରାଇବାରେ ମହତ୍ତ୍ୱ କେଉଁଠାରେ ତାହା ମୁଁ ବୁଝିପାରୁ ନାହିଁ। କିନ୍ତୁ ଦଶପଲ୍ଲା ରାଜ୍ୟରେ ପ୍ରବେଶ କଲା ମାତ୍ରକେ, ଏହି ସବୁ କାର୍ଯ୍ୟକୁ ଦେଖାଇ ଦାମ ବାବୁ ଭାବଗ୍ରାହୀ ବିଶ୍ୱାଳଙ୍କ ପ୍ରଶଂସା ଗାନ କଲେ। ଏପର୍ଯ୍ୟନ୍ତ ମୁଁ ନୀରବ ଥିଲି। କାଲିଠାରୁ ଆଜି ଏ ପର୍ଯ୍ୟନ୍ତ ମୁଁ ଦାମ ବାବୁଙ୍କ ସହିତ କୌଣସି ବିଷୟ ନେଇ କଦାପି ଯୁକ୍ତି କରି ନାହିଁ, କିମ୍ବା ଯୁକ୍ତି କରିବାକୁ ସାହସ ମଧ୍ୟ କରି ନାହିଁ। କିନ୍ତୁ ଭାବଗ୍ରାହୀ ବାବୁଙ୍କ ପ୍ରଶଂସା ଶୁଣି ମୁଁ ଆଉ ନୀରବ ରହି ପାରିଲି ନାହିଁ। କାରଣ ଏହି ସଡ଼କ ଓ ଗଛ ପାଇଁ ଦଶପଲ୍ଲାର ନିରୀହ ପ୍ରଜା ଯେପରି ନିଷ୍ପେଷିତ ହୋଇ ଅଛନ୍ତି ସେସବୁ ମତେ ନିହାତି ଅଜଣା ନୁହେଁ। ଯେଉଁସବୁ କାର୍ଯ୍ୟ ଭାବଗ୍ରାହୀ ବାବୁଙ୍କ ଖାମଖିଆଲି, ଜୁଲୁମର କୀର୍ତ୍ତିସ୍ତମ୍ଭ ସ୍ୱରୂପ ତହିଁର ପ୍ରଶଂସା ଶୁଣି ନୀରବ ରହିବା ନିଜର ମନୁଷ୍ୟତାକୁ ଓ ବିବେକକୁ ତ୍ୟାଗ କରିବା ସଂଗେ

ସମାନ। ଏପରି ଅବସ୍ଥାରେ ମୁଁ ଦାମବାବୁଙ୍କ ସହିତ ଏକମତ ନ ହୋଇ ତାହାଙ୍କ ସହିତ ଯୁକ୍ତି ଆରମ୍ଭ କଲି। ସେ ବିପ୍ଳବୀଙ୍କ କାର୍ଯ୍ୟାବଳି ବର୍ଣ୍ଣନା କରି ପ୍ରଶଂସା କରିବାକୁ ଲାଗିଲେ। ମୁଁ ସେହିସବୁ କାର୍ଯ୍ୟକୁ ନିହାତି ଅତ୍ୟାଚାର ଜୁଲୁମର କାହାଣୀ ବୋଲି ବର୍ଣ୍ଣନା କଲି। ଏହିପରି ଭାବରେ ଯୁକ୍ତିତର୍କ କରୁ କରୁ ହାତୀ ଯାଇ ଦଶପଲ୍ଲା ଗଡ଼ରେ ହାଜର ହେଲା। ମୁଁ ଘରକୁ ଯିବା କଥା କହିବାରୁ ରଥେ ଆପଣେ ଘରକୁ ଛାଡ଼ି ନ ଦେଇ ମତେ ତାଙ୍କ ବସାକୁ ନେଇ ଚାଲିଲେ।

## ତୃତୀୟ ପରିଚ୍ଛେଦ

ମୁଁ ଦାମରଥଙ୍କ ବସାରେ ପହୁଞ୍ଚିଲି। ଦାମବାବୁ ଜେଲଖାନା ନିକଟ ଗୋଟିଏ ଘରେ ରହିଥାନ୍ତି। ମେଳିପରେ କେତେ ନୂଆଲୋକ ଦଶପଲ୍ଲାକୁ ଆସିଥାନ୍ତି। ମେଳି ଦମନ ଓ ମେଳିରେ ଅନୁସନ୍ଧାନ ଉଭୟ କାର୍ଯ୍ୟ ଚାଲିଥାଏ। ସେ ଯାହା ହେଉ ଦାମବାବୁଙ୍କ ବସାରେ ପହଞ୍ଚିଲା ପରେ ଉଭୟେ ଏକାଠି ବସି କିଛି ଜଳପାନ କଲୁ। ତାହାପରେ ଦାମବାବୁ ବୁଲିଯିବା ବାହାନାରେ ବାହାରିଲେ। ମତେ ମଧ୍ୟ ସଙ୍ଗରେ ଡାକି ନେଲେ। ବୁଲିଯିବା ବେଳେ ଦାମ ବାବୁ ମତେ ପାଖକୁ ଟାଣିନେଇ କହିଲେ, "ଗୋବିନ୍ଦ, ମୁଁ ଯାହା କହିବି, ତୁ ମୋ କଥା ଶୁଣିବୁ ନା?" ମୁଁ ଜବାବ ଦେଲି, "ହଁ, ଆପଣ କ'ଣ କହିବେ କହୁ ନାହାନ୍ତି; କଥା ମାନିବାର ହେଲେ ମୁଁ ନ ମାନିବି କିଆଁ?" ଏହା ଶୁଣି ରଥେ କହିଲେ, "ଗୋବିନ୍ଦ, ଦେଖ୍, ତୁ ଛାତ୍ର, ପିଲାଲୋକ, ତୋର ଅନିଷ୍ଟ କରିବା ମୋର ଇଚ୍ଛା ନୁହେଁ। କିନ୍ତୁ ତୁ ଯଦି ସତକଥା କହିବୁ ତେବେ ତୋର କିଛି ହେବ ନାହିଁ। ବରଂ ଏହାଦ୍ୱାରା ତୋର ଅଶେଷ କଲ୍ୟାଣ ସାଧିତ ହେବ।" ଏହା ଶୁଣି ମୁଁ ଟିକିଏ ଉଦ୍‌ବିଗ୍ନ ହୋଇ ଉଠିଲି ଏବଂ ହଠାତ୍ ଉତ୍ତର ଦେଲି, "ଆପଣ କ'ଣ ମୋଠାରୁ ଚାହୁଁଛନ୍ତି, ତାହା ପ୍ରକାଶ ନ କରି ଏତେ କଥାକୁ ବୁଲାଇ କହୁଛନ୍ତି କାହିଁକି? ଯାହା ପଚାରିବାର ଶୀଘ୍ର ପଚାରନ୍ତୁ। ଆପଣଙ୍କ କଥା ନ ଶୁଣିଲେ ମୁଁ କିଛି ବୁଝିପାରୁ ନାହିଁ।" ମୋଠାରୁ ଏପରି ଉତ୍ତର ପାଇ ରଥେ ଆପଣେ କହିଲେ, "ଗୋବିନ୍ଦ, ବୈଷ୍ଣବ ଦେଓ କଟକରେ ଥିବାର ତୁ ଜାଣୁ। ତୁ ତା ନିକଟକୁ ଯିବା ଆସିବା କରୁ। ସେ କନ୍ଧମାନଙ୍କୁ ମେଳି କରିବାପାଇଁ ଶିଖାଇଛି ଏହା ମଧ୍ୟ ତତେ ଜଣା। ତୁ ମଧ୍ୟ ମେଳି କରିବାପାଇଁ ଉତ୍ତେଜନା ଦେଇଛୁ। କିନ୍ତୁ ତୁ କଣ କରିଛୁ ସେ କଥା ମୁଁ ପଚାରୁ ନାହିଁ। ବୈଷ୍ଣବ ଦେଓ ମେଳି କରାଇଛି ଏକଥା ତୁ ଜାଣୁ, ଏତକ ତତେ କହିବାକୁ ହେବ।" ଦାମବାବୁଙ୍କ ଏହିସବୁ କଥା ଶୁଣୁ ଶୁଣୁ ମୋ ମନ କୁଆଡ଼େ ନାହିଁ କୁଆଡ଼େ ଚାଲିଗଲା। କାଲିଠାରୁ ଏ ପର୍ଯ୍ୟନ୍ତ ପାଇଥିବା ସ୍ନେହ ଆଦରର ରହସ୍ୟ ସବୁ ମୋ ଆଖି ଆଗରେ ନାଚି

ଉଠିଲା । ମୁଁ ଅତି ଧୀର ଭାବରେ ଜବାବ ଦେଲି, "ମୁଁ କିଛି ଜାଣେ ନାହିଁ, ଏହା ମୁଁ କିପରି କହିବି ?" ମୋଠାରୁ ଏହି ଉତ୍ତର ପାଇ ଦାମବାବୁ ମତେ ବହୁତ ବୁଝାଇଲେ । ତାଙ୍କର ପ୍ରକୃତ ଇଚ୍ଛା ନୁହେଁ ମୋର କୌଣସି ଅନିଷ୍ଟ କରିବା । କାରଣ, ମୋର ଅନିଷ୍ଟରେ କାହାର କିଛି ଇଷ୍ଟ ସାଧିତ ହେବ ନାହିଁ । ସେମାନଙ୍କ ଉଦ୍ଦେଶ୍ୟ ମଧ୍ୟ ଏହାଦ୍ୱାରା ସାଧିତ ହେବ ନାହିଁ । ବିଶୃଙ୍ଖଳ ଅତ୍ୟାଚାର ଏବଂ ପଲିଟିକେଲ ଏଜେଣ୍ଟଙ୍କ ଅବୁଝାମଣା ହେତୁରୁ ଦଶପଲ୍ଲା ମେଳି । ମେଳି ସହିତ ପୋଷ୍ୟପୁତ୍ର ଗ୍ରହଣର କୌଣସି ସମ୍ପର୍କ ନାହିଁ । ଦଶପଲ୍ଲା ରାଜଗାଦୀ ବିଷୟକ ଘଟଣା ନେଇ ମେଳି ହୋଇ ନାହିଁ । ଯେ କୌଣସି କାରଣରୁ ମେଳି ହେଉ, ଏହି ମେଳି କାହିଁକି ହେଲା ଏହାର ମୂଳ କାରଣ କଣ, ତାହା କାଗଜପତ୍ର ଦେଖାଇବାକୁ ହେବ । ଗଭର୍ଣ୍ଣମେଣ୍ଟଙ୍କ ନିକଟକୁ ମେଳିର ସମସ୍ତ ରହସ୍ୟ ରିପୋର୍ଟ କରିବାକୁ ହେବ । ମତେ ଧରି ମେଳିରେ ଜଡ଼ିତ କରାଇ ଶାସ୍ତି ଦେବାରେ ଏହି ଉଦ୍ଦେଶ୍ୟ ସାଧିତ ହେବ ନାହିଁ । ବୈଷ୍ଣବ ଦେଓ ମେଳି କରାଇ ଅଛନ୍ତି, ଦଶପଲ୍ଲା ରାଜଗାଦି ନ ପାଇବାରୁ ସେ ଏହି ମେଳି କରାଇ ଅଛନ୍ତି, ଏହାହିଁ ପ୍ରମାଣ କରାଇବା ବର୍ତ୍ତମାନ ଏକମାତ୍ର ଉଦ୍ଦେଶ୍ୟ । ବୈଷ୍ଣବ ଦେଓ ଏହି ମେଳି କରାଇ ଅଛନ୍ତି କି ନାହିଁ ତହିଁର ସତ୍ୟତା ଅସତ୍ୟତା ପ୍ରମାଣ କରିବା ଏଠାରେ କୌଣସି ପ୍ରୟୋଜନ ନାହିଁ । ତେବେ ବୈଷ୍ଣବଚରଣ ଦେଓଙ୍କ ବିରୁଦ୍ଧରେ ସାକ୍ଷ୍ୟ ଦେଇ ମୁଁ ମୋର ମଙ୍ଗଳ କିଛି ସାଧିତ କରାଇ ନେବି, ଏପରି ଭାବିବା ମଧ ଅନ୍ୟାୟ । ଏପରି ଅବସ୍ଥାରେ ଏବଂ ଏପରି ଭାବରେ ବୈଷ୍ଣବ ଦେଓଙ୍କ ବିରୁଦ୍ଧରେ କିଛି କହିବାକୁ ମୁଁ ଏକାବେଳକେ ଅସ୍ୱୀକାର କଲି । ବୈଷ୍ଣବଚରଣ ଦେଓଙ୍କ ବିରୁଦ୍ଧରେ କିଛି କହିବାକୁ ଦୃଢ଼ ଭାବରେ ଅସ୍ୱୀକାର କରିବାର ମତେ ଦେଖି, ଦାମବାବୁ ମତେ ପ୍ରଭାବିତ କରାଇବାକୁ ବହୁତ ଚେଷ୍ଟା କଲେ । କିନ୍ତୁ ତାହାଙ୍କର ସମସ୍ତ ଚେଷ୍ଟା ବିଫଳ ହେବାରୁ ରାତ୍ର ଆଠଟାରେ ମତେ ପୋଲିସ ହାତରେ ସମର୍ପଣ କରିଦେଲେ । ପୋଲିସ ସବଇନ୍‌ସପେକ୍ଟର ମତେ ଧରି ଥାନାରେ ହାଜର ।

ଥାନାରେ ହାଜର ହେଲାପରେ ମତେ ଗୋଟିଏ କୋଠରୀରେ ନେଇ ରଖିଲେ । ସେଠାରେ ସବ୍‌ଇନ୍‌ସେକ୍ଟର ପ୍ରଭୃତି ୨/୩ ଜଣ ପୋଲିସ କର୍ମଚାରୀ ମିଳି ମୋଠାରୁ ବୈଷ୍ଣବ ଦେଓଙ୍କ ବିରୁଦ୍ଧରେ ସାକ୍ଷ୍ୟ ନେବାପାଇଁ ଯତ୍‌ପରୋନାସ୍ତି ଚେଷ୍ଟା କଲେ । ମତେ ବହୁତ ପ୍ରଲୋଭନ ଓ ଭୟ ମଧ ଦେଖାଇଲେ । ସେମାନଙ୍କ ବ୍ୟବହାର ମତେ ଅତିଶୟ ବିରକ୍ତିକର ଜଣାଗଲା । ଶେଷରେ ମୁଁ ନିହାତି ରାଗି ଉତ୍ତର ଦେଲି, "ସାବଧାନ, ତୁମ୍ଭେମାନେ କେହି ମତେ ଆଉ କିଛି କଥା କୁହ ନାହିଁ । ମୁଁ କୌଣସି ପ୍ରକାରେ ସାକ୍ଷ୍ୟ ଦେବି ନାହିଁ । ତୁମ୍ଭର ଯଦି କିଛି କରିବାର ଥାଏ ତେବେ ତାହା ତୁମ୍ଭେ କରି ପାର । କିନ୍ତୁ ମତେ ଭୁଲାଇବାକୁ ପ୍ରଯତ୍ନ କରି ମିଛରେ ମତେ ବିରକ୍ତ କର ନାହିଁ ।" ମୋ ଠାରୁ ଏପରି କଡ଼ା ଜବାବ ପାଇ ପୋଲିସ ନୀରବ ରହିଲେ ।

ସେତେବେଳକୁ ରାତ୍ର ବାରଟା। ଏହାପରେ ମତେ ନେଇ ହାଜତ ଘରେ ପୂରାଇ ଚାବି ପକାଇ ଦେଲେ।

ହାଜତ ଘରେ ତାଲା ପଡ଼ି ବନ୍ଦ ହୋଇ ରହିଲି। ସେହି ହାଜତ ଘରର ଅବସ୍ଥା କଣ ବର୍ଣ୍ଣନା କରିବି କିଛି ବୁଝିପାରୁ ନାହିଁ। ପ୍ରଥମତଃ ପୋଲିସ ଧରି ଯାହାକୁ ହାଜତ ଘରେ ରଖନ୍ତି, ସେପରି ମନୁଷ୍ୟକୁ ମନୁଷ୍ୟ ବୋଲି କେହି ବିଚାରନ୍ତି ନାହିଁ। ସେ ଗୋଟାଏ ଇତର ଜୀବ ମାତ୍ର। ତାହାର ଭଲ ମନ୍ଦ, ରୁଚି ଅଭିରୁଚି, ସୁବିଧା ଅସୁବିଧା ବୋଧ କରିବାର ଭାବନା, ଏସବୁ କିଛି ନ ଥାଏ ବୋଲି ପୋଲିସ କର୍ମଚାରୀମାନେ ମନେ କରି ନିଅନ୍ତି। ଯେଉଁଠାରେ ଲୋକମତ ପ୍ରକାଶ କରିବାର ପୂର୍ଣ୍ଣ ଅଧିକାର ରହିଅଛି, ଜନସାଧାରଣ ପ୍ରକାଶ୍ୟରେ ଶାସନତନ୍ତ୍ରର ସମାଲୋଚନା କରିପାରୁ ଅଛନ୍ତି, ସେପରି ସ୍ଥଳରେ ପୋଲିସ ଥାନାର ହାଜତ କଥା କହିଲେ ନ ସରେ। ସେଠାରେ ମଧ୍ୟ ମନୁଷ୍ୟକୁ ବେଳେବେଳେ ମନୁଷ୍ୟ ପରି ବ୍ୟବହାର କରାଯାଏ ନାହିଁ। ଏପରି ଅବସ୍ଥାରେ ଗଡ଼ଜାତ ପରି ଅନ୍ଧାରୀ ରାଜ୍ୟରେ ହାଜତ ଘର କଣ ହୋଇଥିବ ତାହା ସମସ୍ତେ କଳ୍ପନା କରିନେବା ଉଚିତ। ସେ ଯାହାହେଉ, ମୁଁ ଯେଉଁ ହାଜତ ଘରେ ବନ୍ଦୀ ହୋଇ ରହିଲି ତାହା ଏକାବେଳକେ ଅନ୍ଧକାର। ଘରଭିତର ବୋଧହୁଏ କେବେ କିପରି ପରିଷାର ହୁଏ। ଘର ଭିତର ଯେପରି ଗନ୍ଧ ହେଉଥିଲା ତହିଁରେ ସେ ଘର ଭଲ କରି ପରିଷାର ହୁଏ କି ନାହିଁ ସନ୍ଦେହ। ଘର ଭିତରେ ଖଣ୍ଡିଏ ଛିଣ୍ଡା ଖଜୁରିପଟି ପଡ଼ିଥାଏ। ସେହି ଛିଣ୍ଡା ପଟି ଖଣ୍ଡିକ ହେଲା ମୋର ବିଛଣା। କିନ୍ତୁ ସେଥିରେ ମୁଁ ଆଉ ଶୋଇବି କଣ, ମୋତେ ନିଦ ହେଲା ନାହିଁ। ଘରଭିତର ଯେ କେବଳ ମତେ ଅନ୍ଧକାର ଦେଖାଗଲା ତାହା ନୁହେଁ, ସମସ୍ତ ଦଶପଲ୍ଲା ମତେ ଅନ୍ଧକାର ଦେଖାଗଲା। କୌଣସି ପ୍ରକାର ଆଲୋକ ନାହିଁ କିମ୍ବା କୌଣସି ପ୍ରକାର ଶବ୍ଦ ମଧ୍ୟ ଶୁଣିବାକୁ ନାହିଁ। ଥାନା ଭିତରେ ଗୋଟିଏ ଘଣ୍ଟା ଥାଏ। ସେହି ଘଣ୍ଟା ଶବ୍ଦଛଡ଼ା ଅନ୍ୟ କିଛି ମୁଁ ଶୁଣିବାକୁ ପାଏ ନାହିଁ। ମୋତେ ବୋଧ ହେଲା ଦଶପଲ୍ଲାରେ କନ୍ଧମେଳି ଦମନ ପାଇଁ ଚାଲୁଥିବା ଅତ୍ୟାଚାରରେ ଦଶପଲ୍ଲାର ଜଳବାୟୁ ଭୀତ ଓ ତ୍ରସ୍ତ। ସବୁ ନିଃଶବ୍ଦ ଓ ନିଷ୍କଳ। ଏହିପରି ସବୁ ଭାବନା ମୋ ମନରେ ଖେଳିଲା। ମୁଁ ମଧ୍ୟ ଭୟରେ ଥରି ଉଠିଲି। ଏତେବେଳେ ମୋର ମନର ଯାହା ଅବସ୍ଥା ତାହା କଥାରେ ବ୍ୟକ୍ତ କରିପାରୁ ନାହିଁ। ମୋର ସେତବେଳର ମନର ଅବସ୍ଥା ମୋ ବ୍ୟତୀତ ଏ ଦୁନିଆରେ ଅନ୍ୟ କେହି ବୁଝିପାରିବ କି ନାହିଁ ସେ ବିଷୟରେ ମୋର ପୂର୍ଣ୍ଣ ସନ୍ଦେହ।

ଏହିପରି ମନର ଅବସ୍ଥାରେ ମୁଁ ହାଜତ ଘରେ ବସିଛି, ଘଣ୍ଟା ଏକ, ଦୁଇ ହୋଇ ତିନି ବାଜିଲା। ଏପରି ସମୟରେ ହଠାତ୍ ଗୋଟିଏ ଶବ୍ଦ ଶୁଣିଲି ଓ ଗୋଟିଏ ଆଲୋକ ଦେଖିବାକୁ ପାଇଲି। ଦେଖିଲି, ରାତ୍ର ୩ଟାରେ କିଏ ଆସି ହାଜତ ଘର

ତାଲା ଖୋଲୁଛି। ପ୍ରଥମେ ତ ମୁଁ କିଛି ବୁଝିପାରିଲି ନାହିଁ। ଏ କଣ ହେଲା ବୋଲି ଆଶ୍ଚର୍ଯ୍ୟ ହୋଇଗଲି। କିନ୍ତୁ ତାଲା ଖୋଲି ମୋ ନିକଟରେ ଦୁଇ ଜଣ କିଏ ଆସି ହାଜର ହେଲେ। ମତେ କହିଲେ, ''ଆପଣ ଚାଲନ୍ତୁ, ଇନ୍‌ସପେକ୍ଟର ବାବୁ ଆପଣଙ୍କ ଇଲେ ଡାକୁ ଅଛନ୍ତି।'' ଏ ରାତିରେ ଇନ୍‌ସପେକ୍ଟର ବାବୁଙ୍କର ପୁଣି ଡାକରା କାହିଁକି, ଏହା ଭାବି ମୁଁ ଟିକିଏ ଶଙ୍କିଗଲି। କିଛି ନ କହି ସେହି ଲୋକ ଦୁଇଟି ସଙ୍ଗରେ ଆସି, ଇନ୍‌ସପେକ୍ଟର ବାବୁ ଦାମୋଦର ରଥଙ୍କ ବସାରେ ହାଜର ହେଲି।

ଦାମ ରଥଙ୍କ ବସାରେ ହାଜର ହୋଇ ଦେଖେ ଯେ ସେ ବିଛଣାରେ ଉଠି ବସିଛନ୍ତି। ମତେ ଦେଖି ହଠାତ୍ ବିଛଣାରୁ ଓହ୍ଲାଇ ଆସି ମତେ ନେଇ ପାଖରେ ବସାଇ କହିଲେ, ''ଗୋବିନ୍ଦ, ତୁ ନିହାତି ଅବୁଝା ହେବାରୁ ମତେ ଭାରି ଚିଡ଼ି ମାଡ଼ିଲା। ମୁଁ ବିରକ୍ତିରେ ସେତେବେଳେ ତତେ ଥାନାକୁ ପଠାଇ ଦେଇ ଶୋଇ ପଡ଼ିଲି। ମୋର ନିଦ ହୋଇଗଲା। ଏକ୍ଷଣି ନିଦ ଭାଙ୍ଗିବାରୁ ପଚାରି ବୁଝିଲି ଯେ ତୁ ସେତେବେଳଠୁ ଥାନାରେ ଅଛୁ। ସେଥିପାଇଁ ଇଲେ ଡକାଇ ପଠାଇଲି। ତୁ ଏହିଠାରେ ଶୋଇ ପଡ଼।'' ଏହା କହି ମୋ ପାଇଁ ଗୋଟିଏ ଅଲଗା ବିଛଣା କରାଇ ଦେଲେ ଏବଂ ସେ ଶୋଇଗଲେ। ମୁଁ ଥାନା ହାଜତରୁ ଏପରି ଭାବରେ ଦାମବାବୁଙ୍କ ବସାକୁ ଆସିଲି। ମାତ୍ର ଥାନା ହାଜତ ଓ ଦାମବାବୁଙ୍କ ବସା ଉଭୟ ମୋ ପକ୍ଷରେ ସମାନ। ଦାମବାବୁଙ୍କ ବସାରେ ଉପସ୍ଥିତ ହେଲା ବେଳକୁ ଘଣ୍ଟା ୪ ବାଜିଲା। ଚାରିଟା ପରେ ମୁଁ ଆଉ ଶୋଇବି କଣ। ସକାଳ ପର୍ଯ୍ୟନ୍ତ ବସି ରହିଲି। ସକାଳୁ ଉଠି ନିତ୍ୟକର୍ମ ସାରି, ଜଳଖିଆ କରି ମୁଁ ବସିଛି, ରଥେ ଆପଣେ ମତେ ବୁଲି ଯିବାକୁ ଡାକିଲେ। ସକାଳ ସାତଟା ସମୟ ହେବ, ଉଭୟେ ବୁଲିବାକୁ ବାହାରିଲୁ।

ଦଶପଲ୍ଲାରେ ଦୋଳମୁଣ୍ଡେଇ ନାମରେ ଗୋଟିଏ ଆମ୍ବତୋଟା ଅଛି। ଏହି ତୋଟାରେ ଦୋଳଯାତ୍ରା ହୁଏ। ଏହି ତୋଟା ମେଳିଆ କନ୍ଧଙ୍କର ଏକାଠି ହେବାର ଗୋଟିଏ ସ୍ଥାନ ଥିଲା। ରଥେ ଆପଣଙ୍କ ବସାଠାରୁ ତୋଟା ଏକ ମାଇଲ ବାଟ ହେବ। ରଥେ ଆପଣଙ୍କ ସହିତ ମୁଁ ଏହି ତୋଟା ଆଡ଼କୁ ବୁଲିବାକୁ ବାହାରିଲି। ବାଟରେ ଗଲା ବେଳକୁ ଦେଖିଲି, ସଡ଼କ ଦୁଇ ପାଖରେ ଧାଡ଼ି ଧାଡ଼ି ହୋଇ କୁଡ଼ିଆଘର ତିଆରି ହୋଇଛି। ଏହି ଘର ଆଗ ପଛ ଦୁଇ ଆଡ଼େ ପୋଲିସ ପହରା ଦେଉଅଛନ୍ତି। କୁଡ଼ିଆଘର ସବୁ ଲୋକାରଣ୍ୟ ହୋଇଥିଲା ପ୍ରାୟ ଜଣା ପଡୁଛି। କିନ୍ତୁ କୁଡ଼ିଆଘରମାନଙ୍କ ଭିତରେ ଲୋକ ବାସ କରିଥିଲା ଭଳି କୌଣସି ପ୍ରକାର ପାଟି ତୁଣ୍ଡ କିଛି ଶୁଣାଯାଉ ନାହିଁ। ଏହିସବୁ ଧାଡ଼ି ଘରକୁ ଦେଖାଇ ରଥେ ଆପଣେ ମତେ କହିଲେ, ''ଗୋବିନ୍ଦ, ଏ ଘର ସବୁ କଣ ବୁଝି ପାରୁଛୁ। ଏହି ଘର

ଭିତରେ ମେଳିଆ କଣ୍ଠ ଧରା ହୋଇ ବନ୍ଦୀ ହୋଇଅଛନ୍ତି। ଜେଲଖାନାରେ ଶହ ଶହ ଲୋକ ରହିବାର ସ୍ଥାନ ନାହିଁ। ଯେଉଁମାନେ ମେଳିଆ ସର୍ଦ୍ଦାର, ସେମାନେ ଜେଲ ଭିତରେ ଅଛନ୍ତି। ଯେଉଁମାନଙ୍କ ବିରୁଦ୍ଧରେ ବିଶେଷ କିଛି ପ୍ରମାଣ ଯୋଗ୍ୟ ଅଭିଯୋଗ ନାହିଁ, ସେମାନଙ୍କୁ ଏଠାରେ ଏହିପରି ରଖାଯାଇଛି। ଏମାନଙ୍କ ବିଷୟ ତଦନ୍ତ କରି, ମୁଁ ପ୍ରତ୍ୟହ ଅନେକ କନ୍ଧଙ୍କୁ ଛାଡ଼ି ଦେଉଛି।''

ଏହିପରି ମର୍ମରେ ଦାମ ବାବୁ ମତେ କେତେକ କଥା କହି, ତା'ପର ମତେ ବୈଷ୍ଣବ ଦେଓଙ୍କ ବିଷୟ ପଚାରିବାକୁ ଆରମ୍ଭ କଲେ। କଥା ପ୍ରସଙ୍ଗରେ କହୁ କହୁ ମୁଁ କହି ପକାଇଲି, ''ହଁ, ମୁଁ, କେବେ କିପରି ଦେଓଙ୍କ ନିକଟକୁ ଯାଏ। ଦଶପଲ୍ଲାରୁ କନ୍ଧ ପ୍ରଜା ଦେଓଙ୍କ ନିକଟକୁ ଯିବା ଆସିବା କରିବାର ମଧ୍ୟ ମୁଁ ଦେଖିଛି। ମାତ୍ର ସେ କେତେବେଳେ କାହାକୁ କଣ କହନ୍ତି, ଅବା କହିଥିବେ, ସେ କଥା ମୋର କିଛି ମନେ ନାହିଁ। ମୁଁ କଣ କହିବି?'' ଏତିକି ମୋ ମୁହଁରୁ ଯେପରି ବାହାରି ପଡ଼ିଛି, ଦାମ ବାବୁ ସେପରି ଠିଆ ହୋଇ ହଠାତ୍ ମତେ ଧରି ପକାଇ କହିବାକୁ ଆରମ୍ଭ କଲେ, ''ଗୋବିନ୍ଦ, ବାସ୍ତବିକ କଥା। ତୁ କେତେବେଳେ କଣ ଶୁଣିଥିବୁ, ତାହା ମନେ ରହିବା ସହଜ ନୁହେଁ। କିଛି ଅବା ମନେ ପଡ଼ନ୍ତା, କିନ୍ତୁ ତୁ କାଲିଠାରୁ ଘରକୁ ନ ଯାଇ ଥିବାରୁ ତୋର ମନ ଚଞ୍ଚଳ ହେଉଛି। ଏପରି ଅବସ୍ଥାରେ କିଛି ମନେ କରି କହିବା ବଡ଼ କଠିନ। ତୁ ଭଲ କରି ମନେ ପକାଇଲେ ତୋର ନିଶ୍ଚୟ ମନେ ପଡ଼ିବ। ତୁ ଟିକିଏ ଘର ଆଡ଼େ ଯାଇ ବୁଲି ଆ। ଘର ଆଡ଼େ ବୁଲି ଆସିଲେ ତୋର ମନ ସ୍ଥିର ହୋଇଯିବ। ତୁ ଯାହା ମନେ କରିବୁ ତାହା ମନେ ପଡ଼ିବ। ସୁତରାଂ ତୁ ଇଲେ ଘରକୁ ଯା, ମାତ୍ର ୧୧ଟା ଭିତରେ ଫେରି ଆସିବୁ। ମୋ ବସାରେ ଆସି ଖାଇବୁ। ମୁଁ ତତେ ଚାହିଁ ବସିଛି, ଆସିଲେ ଦୁହେଁ ସାଙ୍ଗ ହୋଇ ଭୋଜନ କରିବା।''

ଏହିପରି କେତେକ କଥା କହି ଘରକୁ ଯିବାକୁ ମତେ ଛାଡ଼ି ଦେଲେ। ଦୋଳମୁଣ୍ଡେଇ ଜେଟୀଆଡ଼େ ବୁଲିବାକୁ ଯାଇ ବାଟରେ ମୁଁ ଯାହା ଦେଖିଲି, ତହିଁରେ ମୋର ହୃଦୟ ଥରି ଉଠିଲା। ଜେଲଖାନାର ଭୟ ପୂରା ମାତ୍ରାରେ ରହିଛି। ଦେଶପାଇଁ କାର୍ଯ୍ୟ କରି ଜେଲ ଯିବା ଜୀବନରେ ଗୋଟାଏ ଗୌରବ, ଏ ଭାବ ମୋର ନାହିଁ। ଦେଶରେ ମଧ୍ୟ ଏପରି ଭାବ ଫୁଟି ଉଠି ନାହିଁ। ଏହିପରି ଭାବରେ କେହି ଜେଲ ଖଟିବା କଥା ମୁଁ ମଧ୍ୟ କେବେ ଶୁଣି ନାହିଁ। ଦେଖିବା ତ ଦୂରର କଥା। ଏପରି ଅବସ୍ଥାରେ ଶହ ଶହ ଲୋକ ଧରା ହୋଇ ଏପରି ଭାବରେ ପଡ଼ି ଥିବାର ଦେଖିଲେ କାହାର ହୃଦୟ ଥରି ନ ଉଠିବ। ଆଜି ମୋର ସନ୍ଦେହ ହେଉଛି, ମତେ ଭୟଭୀତ କରାଇବା ଉଦ୍ଦେଶ୍ୟରେ ବୋଧହୁଏ, ଏ ଦୃଶ୍ୟ ମତେ ଦେଖାଇ ଦିଆ ଯାଉଥିଲା। ସେ ଯାହା ହେଉ, ଘରକୁ ଯିବା ପାଇଁ ଛାଡ଼ ପାଇ ଦାମ ବାବୁଙ୍କୁ ଛାଡ଼ି ଗଡ଼ ଅଭିମୁଖେ ମୁଁ ଯାତ୍ରା କଲି।

ପୂର୍ବରୁ ଭୟ ମୋର ହୃଦୟକୁ ପୂର୍ଣ୍ଣ ମାତ୍ରାରେ ଅଧିକାର କରିଥାଏ। ମନେ କଲି ଗଡ଼ ଭିତରକୁ ଗଲେ, ବହୁତ କଥା ଜାଣି ପାରିବି ଏବଂ ବର୍ତ୍ତମାନ ଅବସ୍ଥାରେ ମୋର କଣ କରିବା ଉଚିତ, ଏ ବିଷୟରେ କାହାରିଠାରୁ କିଛି ପରାମର୍ଶ ଗ୍ରହଣ କରି ପାରିବି। ଏହି ଭାବନା ଧରି ଗଡ଼କୁ ଗଲି। ମାତ୍ର ଦେଖିଲି। ଗଡ଼ ଦାଣ୍ଡ ଗୋଟାଏ ଶ୍ମଶାନ ପରି ନିର୍ଜନ ଦିଶୁଛି। ସମସ୍ତଙ୍କର ଟାଟି କବାଟ ପଡ଼ିଛି। ଗଡ଼ ବଡ଼ଦାଣ୍ଡ ଦୁଇ ସାହିକୁ ଚାହିଁ ଦେଲା ବେଳକୁ ମନେ ହେଉଛି ସତେ ଯେପରି ଏହି ଘର ସବୁ ଜନଶୂନ୍ୟ। କେହି କୁଆଡ଼େ ନାହିଁ। ଅନ୍ଧାର ରାତିରେ ଏକାକୀ ନିର୍ଜ୍ଜନ ସ୍ଥାନରେ ଗଲେ ଯେପରି ମାଡ଼ି ପଡ଼ିଲା ପରି ଲାଗେ, ଗଡ଼ ଭିତରଟା ମତେ ଅବିକଳ ସେହିପରି ବୋଧ ହେଉଛି। ଯେଉଁ ଆଡ଼କୁ ଆଖି ପକାଉଛି, ଚାରିଆଡ଼ୁ ନିଛାଟିଆ।

ସତେ କଣ ଗଡ଼ରେ କେହି ଲୋକ ନାହାନ୍ତି। ଲୋକ ଅଛନ୍ତି। ଲୋକ ଅଛନ୍ତି ମାତ୍ର ମୋତେ ଦେଖି ସମସ୍ତେ ଲୁଚି ଯାଉଛନ୍ତି। ମତେ ଦେଖା ଦେବାକୁ ଏବଂ ମୋ ସହିତ କଥା ହେବାକୁ ସମସ୍ତଙ୍କର ପ୍ରାଣରେ ଭୟ। ମୋ ସହିତ କଥା ହେଉଥିବାର ଜଣା ପଡ଼ିଲେ, ଧରିନେଇ ଜେଲରେ ପୂରାଇ, ମାଡ଼ ଦେବେ, ଏହି ଭୟରେ କେହି ଘରୁ ବାହାରିବାକୁ ନାରାଜ। ଏ ଦୃଶ୍ୟ ଦେଖି ମୁଁ ଆହୁରି ଭୀତ ହୋଇଗଲି। ଘରେ ଯାଇ ପହୁଞ୍ଚିଲି। ଘରେ ପହୁଞ୍ଚିଲା ମାତ୍ରକେ, କେତେଜଣ ଆମର ସାହି ପଡ଼ିଶା ଲୁଚି ବାଡ଼ିବାଟେ ଆସି ଆମ୍ଭ ଘରେ ହାଜର ହେଲେ। ମୁଁ ଘରକୁ ଆସି ଭାରୀ ଭୁଲ କରିଛି, ଏହି କଥା ସମସ୍ତଙ୍କ ମୁହଁରୁ ଆଗ ଶୁଣିଲି। ତା ପରେ, ଗଡ଼ର କିଏ ସବୁ କିପରି ମେଳିଆ ବୋଲି ଧରା ହୋଇ ଜେଲରେ ଅଛନ୍ତି, କିପରି ପ୍ରତିଦିନ ବିଶ୍ବାଳେ ନିଜେ ଉପସ୍ଥିତ ହୋଇ ସେମାନଙ୍କୁ ମାଡ଼ ଦେଉ ଅଛନ୍ତି, କନ୍ଧ ଗ୍ରାମ କିପରି ଜଳାଇ ଦିଆ ଯାଉଛି, ଗ୍ରାମ ସବୁ କିପରି ଲୁଟ କରା ଦିଆଯାଉଛି, ମତେ ଧରିବାକୁ କିପରି କେତେ ଦିନରୁ ଚେଷ୍ଟା ଚାଲିଛି, ଇତ୍ୟାଦି ସମ୍ବାଦ ଶୁଣିବାକୁ ପାଇଲି। ଏହିସବୁ ଶୁଣୁ ଶୁଣୁ ମୋର ହୃଦୟ ଭୟ ଓ କ୍ରୋଧରେ ଥରି ଉଠିଲା। ମୁଁ ଆଉ ଘରେ ରହିବି କଣ? ଶୀଘ୍ର ଘର ଛାଡ଼ି ପଳାଇବାକୁ ମତେ ସମସ୍ତେ ପରାମର୍ଶ ଦେଲେ। ଆହୁରି ମଧ ଶୁଣିଲି, ମୋର ଧରାହେବା ସମ୍ବାଦ ସମସ୍ତେ କାଲିଠାରୁ ଶୁଣିଲେଣି। ସମସ୍ତେ ମୋ ପାଇଁ ଦୁଃଖୀତ। କିନ୍ତୁ ଭୟରେ ମୋ ସହିତ କେହି ଦେଖା କରୁ ନାହାନ୍ତି। ମୋ ବୁଦ୍ଧି ବଳରେ ଯଦି ଖସି ଯିବାକୁ କିଛି ଉପାୟ ମୁଁ କରେ ତେବେ ରକ୍ଷା, ନଚେତ୍ ଅନ୍ୟ କେହି କିଛି କରି ପାରିବେ ନାହିଁ, ଏପରି କି ପଦେ କଥା ମଧ କହିବାକୁ ଠିଆ ହେବେ ନାହିଁ।

ଏ ସବୁ ଶୁଣି ଏବଂ ଦେଖି ତତ୍‌କ୍ଷଣାତ୍ ମୁଁ ଘରୁ ବିଦାୟ ନେଲି। ବେଶୀ ସମୟ ଘରେ ରହିଲେ, ମୋ ସହିତ ଯେଉଁମାନେ ଏପରି ଲୁଚି କରି ଆସି କଥା

ହେଲେ, ସେମାନଙ୍କୁ କେହି ସନ୍ଦେହ କରି ଧରିପାରେ, ଏହି ଭୟ ମଧ୍ୟ ମନକୁ ଅସ୍ଥିର କଲା। ମୁଁ ହଠାତ୍ ଘରୁ ବାହାରି ଦାମବାବୁଙ୍କ ବସାରେ ହାଜର ହେଲି। ମତେ ଶୀଘ୍ର ଫେରି ଆସିବାର ଦେଖି ଦାମବାବୁ ଖୁସି ହୋଇଗଲେ। ଦୁହେଁ ଏକାଠି ଭୋଜନ କଲୁ। ଭୋଜନ ପରେ, ନାନା ଉପାୟରେ ନାନା ଲୋଭ ଲଗାଇ ମତେ ବୈଷ୍ଣବ ଦେଓ ଓ ମେଳିଆ କନ୍ଧମାନଙ୍କ ବିରୁଦ୍ଧରେ ପ୍ରଧାନ ସାକ୍ଷୀ ରୂପେ ଠିଆ କରାଇବା ଉଦ୍ଦେଶ୍ୟରେ ପ୍ରଭାବିତ କରାଇବାର ଚେଷ୍ଟା ଚାଲିଲା। ସାକ୍ଷୀ ହୋଇ ଠିଆ ହେଲେ ମୋର କିପରି, କଣ ମଙ୍ଗଳ ହେବ ସେ କଥା କୁହାଗଲା। ସାକ୍ଷ୍ୟ ନ ଦେଲେ ମୋର ଅବସ୍ଥା କଣ ହେବ ତାହା ମଧ କହି ମଧ ଭୟତ୍ରସ୍ତ କରାଇବାରେ କିଛି ତ୍ରୁଟି ରହିଲା ନାହିଁ। କିନ୍ତୁ ଏ ସବୁରେ ଦାମ ବାବୁ ପ୍ରତ୍ୟକ୍ଷ ଭାବରେ ମତେ କିଛି କହୁ ନଥାନ୍ତି। ସେ ମତେ ଯାହା କହୁଥାନ୍ତି, ତହିଁରେ ସେ ମୋର ଅବସ୍ଥାକୁ ବିଚାର କରି ଜଣେ ମୋର ହିତାକାଂକ୍ଷୀ ଭାବରେ କଥା କହିଲା ଭଳି ସବୁବେଳେ କଥା କହୁଥାନ୍ତି। ଏ ସମସ୍ତ ଚେଷ୍ଟାରେ ମୁଁ ନ ଭୁଲିବାର ଦେଖି ଦିନ ୪ଟାରେ ଜେଲଖାନାରୁ ଦୁଇଟି ମେଳିଆ କନ୍ଧ ଡକରା ହୋଇ ଆସିଲେ। ମତେ ଦେଖାଇ କନ୍ଧ ଦୁଇଟିଙ୍କୁ ଦାମବାବୁ ପଚାରିଲେ, "କିରେ, ତୁମେ ଏ ବାବୁଙ୍କୁ ଚିହ୍ନ?" ଏହାର ଜବାବରେ ଉକ୍ତ କନ୍ଧ ଦୁଇଟି କହିଲେ, "ହଁ ମ, ଆମେ ଆକୁ ଜାଣୁ। ଏହାର ଘର ଗଡ଼ରେ। ଏ କଟକରେ ପାଠ ପଢ଼ିଛି। ବାବୁଙ୍କୁ ମାରିବାକୁ ଇଏ ଆମକୁ ଶିଖାଇଲା। ଇଏ ଶିଖାଇ ନଥିଲେ ଆମେ କଣ ମେଳି କରିଥାନ୍ତୁ?" ତାପରେ ଦାମବାବୁ ପୁଣି ସେମାନଙ୍କୁ ସତ କଥା କହିବାକୁ ତାଗିଦ କରି ପଚାରିଲା ପରି ପଚାରିଲେ। ସେମାନେ ପୁଣି କହିଲେ, "ଆମେ ସତ ନ କହି କଣ ମିଛ କହୁଛୁ। ଏଇ ତ ଆମକୁ ମତେଇ ଦେଲା। ବାବୁଙ୍କୁ ମାରି ଦବାକୁ ଶିଖେଇଲା। ଇଏ ଶିଖେଇ ନଥିଲେ, ଆମ୍ଭେ କଣ କେବେ ମେଳି କରିଥାନ୍ତୁ।"

କନ୍ଧ ଦୁଇଟି ଏହିପରି ମୋ ଆଗରେ ମତେ ଚୋର୍ହି କହିଗଲେ। ଏତକ କହିଲା ପରେ ସେମାନଙ୍କୁ ଜେଲକୁ ପଠାଇ ଦିଆଗଲା। ମୁଁ ମୂକ ପରି ଠିଆ ହୋଇ ରହିଲି। ଦାମବାବୁ ମତେ କହିଲେ, "ଗୋବିନ୍ଦ, ବର୍ତ୍ତମାନ ତୋର କଣ କହିବାର ଅଛି କହ। ତୁ ଏହିକ୍ଷଣି ଜେଲଖାନା ଭିତରକୁ ଯିବୁ। ମୋର ଆଉ କିଛି ହାତ ନାହିଁ। ମୋ ହାତରୁ ଖସିଗଲେ ତୁ ଆଉ ରକ୍ଷା ପାଇ ନ ପାରୁ। ମୁଁ ତତେ ଯେତେ ବୁଝାଇଲି ତୁ ମୋ କଥା ଶୁଣିଲୁ ନାହିଁ। ତୋର ଦଶା କଣ ହେବ, ତୁ ନିଜେ ବିଚାର କରି ଦେଖ। ଏହି କନ୍ଧ ଦୁଇଟି ଯାହା କହିଲେ ସେ ସବୁ ମୁଁ ତୋ ବିରୁଦ୍ଧରେ ନୋଟ କଲି। ମତେ ଆଉ ଦୋଷ ଦେବୁ ନାହିଁ।

ମୁଁ କଣ ଉତ୍ତର ଦେବି କିଛି ଭାବି ପାରିଲି ନାହିଁ। ମୋର ପାଟି ଫିଟିଲା ନାହିଁ। ମତେ ଚାରିଆଡ଼ ଅନ୍ଧକାର ଦେଖାଗଲା। ଆଖିବାଟେ ଜୁଳୁଜୁଳିଆ ପୋକ

ଭଡ଼ିଗଲା ପରି ମତେ ଜଣା ପଡ଼ିଲା। ମୁଁ ଠିଆ ହୋଇ ନ ପାରି ହଠାତ୍ ବସି ପଡ଼ି କାନ୍ଦି ପକାଇଲି। ଦାମ ବାବୁ ମତେ ଆଉ କିଛି ନ କହି, ଖାତା କଲମ ବାହାର କଲେ କହ ଦୁଇଟିର ଉକ୍ତ କଥାକୁ ମୋ ବିରୁଦ୍ଧରେ ଲେଖିବାକୁ। ମୁଁ ଦେଖିଲି, ଯାହା କରିବାକୁ ହେବ ଅବା କହିବାକୁ ହେବ, ତହିଁରେ ଆଉ କାଳ ବିଳମ୍ବ କଲେ ଚଳିବ ନାହିଁ। ମୁଁ ହଠାତ୍ ଏପରି ସଂକଟାପନ୍ନ ହେବି ବୋଲି ଜାଣିଥିଲେ ମଧ ଏହାର ଭୀଷଣତା ଉପଲବ୍ଧି କରି ପାରି ନଥିଲି। ବର୍ତ୍ତମାନ ପରିଣାମ କଣ ହେବ ତାହା ବୁଝି ପାରିଲି। ହୃଦୟଙ୍ଗମ ମଧ କରି ପାରିଲି। ଏଣେ ଜେଲ ଭିତରକୁ ମତେ ନେବାକୁ ପୋଲିସ ମଧ ଠିଆ ହୋଇଛି। ଏପରି ସମୟରେ ମତେ ଦେଖାଗଲା, କୌଣସି ଉପାୟରେ ମୁଁ ଭଲେ ନିଜକୁ ରକ୍ଷା ନ କଲେ ଆଉ ଉଦ୍ଧାର ପାଇବାର ବାଟ ନାହିଁ। "ଅଶ୍ୱତ୍ଥାମା ହତ ନରେ ବା ଗୁଞ୍ଜରେ ବା" ଏହି ନୀତି ଏଠାରେ ପ୍ରୟୋଗ କରିବି, ଏହା ଭାବି ମୁଁ ହଠାତ୍ କହିଲି, "ହଁ ମୁଁ ଜାଣେ, କହିବି।"

"ହଁ ମୁଁ ଜାଣେ କହିବି।" ଏହି ବାକ୍ୟଟି ମୁଁ କହିଲାବେଳେ ମତେ ବୋଧ ହେଲା ସତେ ଯେପରି ମୋ ଦେହରୁ ଗୋଟାଏ ରକ୍ତ ଧାର ବୋହି ଯାଉଛି। ଏହି ବାକ୍ୟଟି ବାୟୁ ତରଙ୍ଗରେ ତାଳ ପକାଇ ପ୍ରତିଧ୍ୱନିତ ହେଲା ପରି ମତେ ଶୁଣା ଯାଉଛି। "ହଁ, ମୁଁ କହିବି।" ଏହି ପ୍ରତିଧ୍ୱନି ପୁଣି ବାୟୁ ଲହରୀରେ ଭାସି ଯାଇ ମେଳିଆ ବୋଲି ବନ୍ଦୀ ହୋଇଥିବା ପ୍ରତ୍ୟେକ ବ୍ୟକ୍ତିକୁ କହି ଯାଉଛି "ହଁ, ମୁଁ କହିବି।" ଏହି ବାକ୍ୟ ଶୁଣି ବନ୍ଦୀ ଚମକି ପଡ଼ି ମୋ ଆଡ଼କୁ ଚାହିଁ କହୁଛି, "ତୁ କହିବୁ, ହଉ କହ।" ଏହି ପ୍ରକାର ଚିତ୍ର ମୋ ଆଗରେ ଖେଳି ଯାଉଛି। ଏହି ପ୍ରକାର ଧ୍ୱନି ମୋର କର୍ଣ୍ଣ କୁହରରେ ନିନାଦିତ ହୋଇ ଉଠୁଛି। ମୁଁ ନୀରବ ଓ ନିସ୍ପନ୍ଦ ହୋଇ ଠିଆ ହୋଇଛି। ମୋଠାରୁ ଏହି ବାକ୍ୟ ଶୁଣି ରଥେ ଆପଣେ, କଲମ ଛାଡ଼ି ଦେଇ ମତେ ଆସି ଧରି ମତେ ଭୁଲାଇବା ଭଳି କେତେ କଣ କହି ଯାଉଥାନ୍ତି। ଏହିପରି ଅବସ୍ଥାରେ ମୁଁ ଭାବୁଥାଏ ମତେ ପ୍ରକୃତିସ୍ଥ ହେବାକୁ ହେବ। କୌଶଳରେ ଏମାନଙ୍କ ହାତରୁ ଖସିବାକୁ ହେବ। ଭାବ-ତରଙ୍ଗରେ ବିହ୍ୱଳିତ ହେଲେ ଚଳିବ ନାହିଁ। ଏମାନେ ମତେ ବିଶ୍ୱାସ କଲା ଭଳି, ମୋର ଭାବଭଙ୍ଗୀ ହେବା ଦରକାର। ଏହିପରି ଭାବି, ମୁଁ ହସିକରି କହିଲି, "ଆପଣ କିଛି ସନ୍ଦେହ କରନ୍ତୁ ନାହିଁ, ମୁଁ ନିଶ୍ଚୟ କହିବି। ଆପଣ ଯେପରି ଯାହା କହିବାକୁ କହିବେ ତାହା କହିବି। ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ।"

ମୋଠାରୁ ଏହିପରି ପ୍ରତିଶ୍ରୁତି ପାଇ ରଥେ ଆପଣେ ମତେ ଧରି ବିଶ୍ୱାଳଙ୍କ ବସାକୁ ବାହାରିଲେ। ଉଭୟେ ଯାଇ ବିଶ୍ୱାଳଙ୍କ ବସାରେ ଉପସ୍ଥିତ ହେଲୁ। ମତେ ବାହର ବୈଠକଖାନାରେ ବସାଇ ରଥେ ଆପଣେ ବିଶ୍ୱାଳଙ୍କ ଘର ଭିତରକୁ ଗଲେ। କିଛି ସମୟ ପରେ ଦୁହେଁ ସାଥି ହୋଇ ଆସିବାରୁ ବିଶ୍ୱାଳେ ଆସି ମୋ କାନ୍ଧରେ

ହାତ ପକାଇ ଇଂରେଜୀରେ କହିଲେ, "Govind! you see, I shall never forget your services. On my part I promise, upon God, that I shall make you a man."

ଅର୍ଥାତ୍—"ଗୋବିନ୍ଦ, ତୁମେ ଦେଖ, ତୁମ୍ଭର ଏହି ସାହାଯ୍ୟ ମୁଁ କଦାପି ଭୁଲି ଯିବି ନାହିଁ। ଭଗବାନଙ୍କ ନାମରେ ମୁଁ ଶପଥ କରି ପ୍ରତିଜ୍ଞା କରୁଛି, ମୁଁ ତୁମ୍ଭକୁ ଜଣେ ମନୁଷ୍ୟ କରି ଦେବି।" "I shall make you a man, ଅର୍ଥାତ୍ ମୁଁ ତୁମକୁ ଜଣେ ମନୁଷ୍ୟ କରି ଦେବି।" ଏହି ବାକ୍ୟଟି ଭାବଗ୍ରାହୀ ବାବୁ ତିନିଥର କରି ଉଚ୍ଚାରଣ କରି ତାଙ୍କର ଦୁଇ ହାତ ମୋର ଦୁଇ କାନ୍ଧରେ ପକାଇ ମତେ ଚାହିଁ ରହିଲେ। ତାଙ୍କର କଥା ଶୁଣି ଏବଂ ତାହାଙ୍କ ମୁହଁକୁ ଚାହିଁ ମୋର ମନ ଭୁଲିଗଲା। ମନ୍ତ୍ର ମୁଗ୍ଧ ହେଲାପରି ମୁଁ ସବୁ ଭୁଲି ଗଲି। ଭାବଗ୍ରାହୀ ବାବୁଙ୍କ ପ୍ରତି ମୋର ହୃଦୟରେ ସ୍ନେହ ଓ ଭକ୍ତିଭାବ ଟିକିଏ କାହିଁକି ଜାଗି ଉଠିଲା। ତାହାଙ୍କୁ ଚାହିଁ ଦେଲେ ମୋର ମନେ ହେଲା, ସତେ ଯେପରି ସେ ଜଣେ ମୋର ଆତ୍ମୀୟ ଲୋକ।

ଭାବଗ୍ରାହୀ ବାବୁ ଦଶପଲ୍ଲୀକୁ ଆସିବାର ସେତବେଳକୁ ଦଶବାର ବର୍ଷ ହେବ। ଏହି କେତେକ ବର୍ଷ ଭିତରେ ଦଶପଲ୍ଲୀର ବହୁ ପରିବର୍ତ୍ତନ ଘଟିଅଛି। ଭୟରେ ହେଉ ଅବା ଭକ୍ତିରେ ହେଉ, ଦଶପଲ୍ଲୀର ପ୍ରତ୍ୟେକ ପ୍ରଜା ଭାବଗ୍ରାହୀ ବାବୁଙ୍କ ଅନୁଗ୍ରହ ଲାଭ କରିବା ପାଇଁ ଲାଳାୟିତ। ଦଶପଲ୍ଲୀର ଜଳବାୟୁ ବୃକ୍ଷଲତା, ବନ ପାହାଡ଼, ସର୍ବତ୍ର ଭାବଗ୍ରାହୀ ବାବୁଙ୍କର ନାମ ଉଚ୍ଚାରିତ। ବନ ଜଙ୍ଗଲର ଜୀବଜନ୍ତୁ ମଧ୍ୟ ତାହାଙ୍କ ନାମରେ ସଂଶଙ୍କିତ ଏକଥା କହିଲେ କଦାପି ବାହୁଲ୍ୟ ହେବ ନାହିଁ। ଦଶପଲ୍ଲୀ ରାଜ୍ୟରେ ଏପରି କେହି ବ୍ୟକ୍ତି ନାହିଁ ଯେ କି ପ୍ରତ୍ୟହ ପ୍ରତି କାର୍ଯ୍ୟରେ ଭାବଗ୍ରାହୀ ବାବୁଙ୍କର ପ୍ରଭାବକୁ ଓ କ୍ଷମତାକୁ କୌଣସି ନା କୌଣସି ଉପାୟରେ ହେଲେ, ପ୍ରତ୍ୟକ୍ଷ ଅନୁଭବ ନ କରେ। ସୁଖରେ ଦୁଃଖରେ, ମୌଜ ମଜଲିସରେ, ଘରେ ବାହାରେ, ଗ୍ରାମରେ ଏବଂ ବନ ଜଙ୍ଗଲ ପାହାଡ଼ରେ ମଧ୍ୟ ସର୍ବତ୍ର ଭାବଗ୍ରାହୀ ବାବୁଙ୍କର ଶାସନର ପ୍ରଭାବ ସମସ୍ତଙ୍କୁ ପ୍ରଭାବିତ କରେ। ଦଶପଲ୍ଲୀ କହିଲେ ଭାବଗ୍ରାହୀ ବିଶ୍ୱରାଜ। ଏପରି ଅବସ୍ଥାରେ, ତାହାଙ୍କ ପ୍ରତିଶ୍ରୁତି, ପ୍ରତିଜ୍ଞାବଦ୍ଧ ଅନୁଗ୍ରହ ଓ ଅଭୟବାଣୀ ପାଇଲେ ମନ ଟିକିଏ ତାହାଙ୍କ ଆଡ଼କୁ ଟାଣି ହୋଇଯିବା ଦେଶର ସେତେବେଳ ସମୟରେ, ଯେ କୌଣସି ମନୁଷ୍ୟ ପକ୍ଷରେ ସ୍ୱାଭାବିକ ବୋଲି ମୋର ମନେ ହୁଏ। ମୋର କଥା ପୁଣି ଅଲଗା। ଅତି ବାଲ୍ୟ କାଳରୁ ମୋର ଦୁଃଖ ଅସୀମ। ସ୍ନେହ ସହାନୁଭୂତି କଣ ମୁଁ କିଛି ଜାଣି ନାହିଁ। ପିଲାଦିନୁ ଭାବଗ୍ରାହୀ ବାବୁଙ୍କୁ ଭାରୀ ବଡ଼ ମଣିଷ ବୋଲି ଭାବି ଆସିଛି। ବେଳେ ବେଳେ ତାହାଙ୍କ ଅନୁଗ୍ରହ ପାଇବାକୁ ଆକାଂକ୍ଷିତ ହୋଇଅଛି। ଏପରି ଅବସ୍ଥାରେ ସେ ମୋ କାନ୍ଧ ଉପରେ ହାତ ପକାଇ ମୁଁ ଜଣେ ଯେପରି ବଡ଼ ମଣିଷ ହୋଇ ପାରିବି, ସେଥିପାଇଁ ସର୍ବପ୍ରକାର

ସାହାଯ୍ୟ କରିବାକୁ ସେ ଶପଥ କରି ପ୍ରତିଜ୍ଞା କରୁ ଅଛନ୍ତି। ତାହାଙ୍କ ପ୍ରତିଜ୍ଞା ସେ ପାଳନ କରିବେ, ତହିଁରେ ମୋର ମଧ ପୂର୍ଣ୍ଣ ବିଶ୍ୱାସ ଜନ୍ମି ଯାଇଛି। ଏପରି ଅବସ୍ଥାରେ ତାହାଙ୍କ କଥାରେ ଭୁଲି ତାହାଙ୍କୁ ଜଣେ ମୁଁ ମୋର ନିଜର ବ୍ୟକ୍ତି ବୋଲି ହଠାତ୍ ଭାବିନେବାରେ ବୈଚିତ୍ର୍ୟ କଣ ଅଛି ?

ସେ ଯାହ ହେଉ ମୁଁ ଭାବଗ୍ରାହୀ ବାବୁଙ୍କ ହାତ ଦୁଇଟି ମୋ କାନ୍ଧରୁ ଟାଣି ଧରି କହିଲି, "ଆପଣ ନିଶ୍ଚିନ୍ତ ରହନ୍ତୁ, ମୁଁ ନିଶ୍ଚୟ କହିବି। ସାକ୍ଷ୍ୟ ଦେବି। ମୋର ମଧ ଏହା ଅଟଳ ପ୍ରତିଜ୍ଞା।" ଏହା କହୁ କହୁ ମୋ ଆଖି ଛଳ ଛଳ ହୋଇଗଲା ଏବଂ କଣ୍ଠ ମୋର ରୁଦ୍ଧ ହୋଇ ଆସିଲା। ଆଉ କିଛି ଅବା କହିଥାନ୍ତି କିନ୍ତୁ ମୁହଁରୁ କଥା ବାହାରିଲା ନାହିଁ। ମୋର କଥା ଓ ଭାବଭଙ୍ଗୀ ଦେଖି ଦାମବାବୁ ଓ ଭାବଗ୍ରାହୀ ବାବୁ ଉଭୟଙ୍କର ବିଶ୍ୱାସ ଜନ୍ମିଗଲା। ମୁଁ ବର୍ତ୍ତମାନ ଗୋଟାଯାକ ତାଙ୍କର ଏହା ସେମାନଙ୍କର ଦୃଢ଼ ବିଶ୍ୱାସ ହେଲା। ମୋର ଉପସ୍ଥିତ ଦଶପଲ୍ଲା ଝର୍ଚ୍ଚ ପାଇଁ ଭାବଗ୍ରାହୀ ବାବୁ ଦଶଟି ଟଙ୍କା ଦେଇ ମତେ ଛାଡ଼ି ଦେଲେ। ବନ୍ଧନରୁ ମୁଁ ମୁକ୍ତ ହେଲି। ଦାମବାବୁଙ୍କ ବସା ଛାଡ଼ି ବର୍ତ୍ତମାନ ମୁଁ ଆସି ଘରେ ଉପସ୍ଥିତ।

ଘରେ ପହୁଞ୍ଚି ମୁଁ ଟିକିଏ ନିଶ୍ୱାସ ମାରିବାକୁ ଅବସର ପାଇଲି। କଣ ଘଟିଗଲା ସେ କଥା ଚିନ୍ତା କରିବାକୁ ସମୟ ନାହିଁ। ମୁଁ କିପରି ଏମାନଙ୍କ କବଳରୁ ଖସି ଆସିଛି ତହିଁର ରହସ୍ୟ କାହାରିକୁ ଅଛପା ରହିଲା ନାହିଁ। କିଏ କହିଲା, ଭଲ କରିଛୁ, କିଏ କହିଲା, ଭଲ ହେଲା ନାହିଁ। କିନ୍ତୁ ବର୍ତ୍ତମାନ ମୋ ସହିତ ମିଳାମିଶା କରିବାକୁ ଆଉ କାହାରି ଡର ରହିଲା ନାହିଁ। ସମସ୍ତେ ଜାଣିବାକୁ ମୁଁ ବର୍ତ୍ତମାନ ଜଣେ ଭାବଗ୍ରାହୀ ବିଶ୍ୱାଳଙ୍କ ତରଫ ଲୋକ। ଏହା ଜାଣି କେତେକ ଲୋକ ସେମାନଙ୍କ ଦୁଃଖର କାହାଣୀ ନେଇ ମୋ ନିକଟରେ ଉପସ୍ଥିତ। ସେମାନଙ୍କ ଆଶା, ମୁଁ ବିଶ୍ୱାଳଙ୍କୁ କହି ସେମାନଙ୍କ ଦୁଃଖର କାରଣ କେତେକ ମୋଚନ କରି ପାରିବି। ସେମାନଙ୍କ ବିଶ୍ୱାସ, ମୁଁ ଯାହା କହିବି ତାହା ବିଶ୍ୱାଳେ ନିଶ୍ଚୟ ଶୁଣିବେ। ସେମାନଙ୍କ ବିଶ୍ୱାସ ମଧ ଅଯଥା ନୁହେଁ। ବାସ୍ତବରେ ମୁଁ ବିଶ୍ୱାଳଙ୍କୁ କହି ଗଡ଼ର କେତେ ଲୋକଙ୍କୁ ଖଲାସ କରାଇ ଦେଲି। ମୋର ଅନୁରୋଧରେ ଗଡ଼ରୁ ଧରା ହୋଇଥିବା କେତେକ ଲୋକେ ମୁକ୍ତି ପାଇଲେ। ବୈଷ୍ଣବ ଶତପଥୀ ନାମରେ ମୋର ନିଜର ମାମୁ ମେଳିଆ ହୋଇ ପୋଲିସ୍ ସନ୍ଦେହରେ ପଡ଼ି ପ୍ରତିଦିନ ଥାନାକୁ ଯାଇ ହାଜରା ଦେବା ଆଦି ନାନା ପ୍ରକାର ଦୁଃଖ ଯନ୍ତ୍ରଣା ଭୋଗ କରୁଥାନ୍ତି। ମୋର ଅନୁରୋଧରେ ତାହାଙ୍କୁ ସେଥିରୁ ମୁକ୍ତି ଦିଆଗଲା। ଏହିପରି ଭାବରେ ମୁଁ ମଧ ଦଶପଲ୍ଲା ଗଡ଼ବାସୀଙ୍କ ମଧରୁ କାହାରି କାହାରିକୁ ସାହାଯ୍ୟ କରିଥିଲି। ବିଦ୍ୟାଧର ପଢ଼ା ଛାଡ଼ି ବର୍ତ୍ତମାନ ଘରେ ଉପସ୍ଥିତ। ଗଡ଼ ମି:ଇ: ସ୍କୁଲର ସେକେଣ୍ଡ ପଣ୍ଡିତ କାର୍ଯ୍ୟ ଖାଲି ଥାଏ। ବିଦ୍ୟାଧରକୁ ମୁଁ ସେହି ଚାକିରି ଖଣ୍ଡିକ କରାଇ ଦେଲି। ମୋର ଇଚ୍ଛା, ବିଦ୍ୟାଧର

କିଛି ରୋଜଗାର କରି ଘର ଚଳାଚଳା କଲେ ମୁଁ ଟିକିଏ ନିଶ୍ଚିନ୍ତ ହେବି। ସୁଖ ଶାନ୍ତିରେ କଟକରେ ପଢ଼ି ପାରିବି। ଏହି ଇଚ୍ଛା ବହୁଦିନୁ ଥାଏ। ବର୍ତ୍ତମାନ ତହିଁର ସୁବିଧା ମିଳିଯିବାରୁ ମୋର ଇଚ୍ଛା ଅନୁସାରେ ବିଦ୍ୟାଧରର ପଢ଼ା ବନ୍ଦ କରାଇ ତାହାକୁ ଗଡ଼ ସ୍କୁଲରେ ସେକେଣ୍ଡ ପଣ୍ଡିତ ପଦରେ ରଖାଇ ଦେଲି। ଗଡ଼ରେ ଦୁଇ ଚାରିଦିନ ରହିଛି କି ନାହିଁ, ଏହି ଅଳ୍ପ ସମୟ ମଧ୍ୟରେ ମୁଁ ଏହିସବୁ କାର୍ଯ୍ୟ କରାଇ ନେଲି। ଏହି ଅବସରରେ ମଧ୍ୟ ଦଶପଲ୍ଲା ଅତ୍ୟାଚାର ବିବରଣୀ ବହୁତ ଶୁଣିବାକୁ ପାଇଲି। ମୁଁ ଯେଉଁ ଉଦ୍ଦେଶ୍ୟରେ କଟକ ଛାଡ଼ି ଆସିଥିଲି, ସେଥି ନିମିତ୍ତ କାର୍ଯ୍ୟ କରିବା ମତେ ବର୍ତ୍ତମାନ ଅବସ୍ଥାରେ ସୁବିଧା ଜନକ ମନେ ହେଲା ନାହିଁ। ପ୍ରଥମତଃ କନ୍ଧଗ୍ରାମ ସବୁ ଗଡ଼ଠାରୁ ବହୁଦୂର। ଘୋର ଜଙ୍ଗଲ ପାହାଡ଼ ଅତିକ୍ରମ ନ କଲେ କନ୍ଧଗ୍ରାମକୁ ଯିବା ସହଜ ନୁହେଁ। ଦଶପଲ୍ଲା ବାୟୁମଣ୍ଡଳ ଯେପରି ତହିଁରେ ଏତେଦୂର ଯାଇ କୌଣସି ବିଷୟ ଅନୁସନ୍ଧାନ କରିବାକୁ ହେଲେ, ତାହା ବିଶ୍ୱାଳଙ୍କୁ କଦାପି ଅଗୋଚର ରହି ନ ପାରେ। ସୁତରାଂ ମୁଁ ଯାଉଛି କିପରି ? କନ୍ଧଗ୍ରାମକୁ ଯାଇ କୌଣସି ବିଷୟ କୌଣସି ପ୍ରକାରେ ଅନୁସନ୍ଧାନ କରିବା ଏକାବେଳକେ ଆପଦପୂର୍ଣ୍ଣ। ଯେ ଏହା କରିବ ସେ ବିଶ୍ୱାଳଙ୍କ କୋପାନଳରେ ପଡ଼ି ଭସ୍ମ ହେବାର ପୂର୍ଣ୍ଣ ସମ୍ଭାବନା। ମୁଁ ତ ବର୍ତ୍ତମାନ ତାଙ୍କ ଲୋକ ବୋଲି ସେ ଜାଣନ୍ତି। ମୋର ମନ ମଧ୍ୟ ତାଙ୍କ ଆଡ଼କୁ ଢଳି ପଡ଼ିଛି। କଟକ ଯାଇ ମୁଁ ମୋର ବନ୍ଧୁମାନଙ୍କ ସହିତ ପରାମର୍ଶ କରିବା ପର୍ଯ୍ୟନ୍ତ ଅନ୍ୟ କିଛି ଚିନ୍ତା ମୁଁ କଳ୍ପନା କରି ପାରୁ ନାହିଁ। ଏହିପରି ନାନା କାରଣରୁ ମୁଁ ଯେଉଁ ଉଦ୍ଦେଶ୍ୟ ନେଇ କଟକରୁ ଆସିଥିଲି ତାହାକୁ ଭୁଲି ଯାଉଥାଏ। ଭୁଲି ଯିବାକୁ ବାଧ୍ୟ ହେଉଥାଏ।

ଏହିପରି ଭାବରେ ଦଶପଲ୍ଲାରେ ଅଛି, କଥା ହେଲା, ମୁଁ କଟକ ଯାଇ ସ୍କୁଲରେ ଯୋଗ ଦେବି। ସାକ୍ଷୀ ଦେବାର ସମୟ ଉପସ୍ଥିତ ହେଲେ, ମତେ ଡକାଇଲେ ମୁଁ ଆସି ଉପସ୍ଥିତ ହେବି। ଏହା ସ୍ଥିର ହୋଇ ମୁଁ କଟକ ଯିବାକୁ ଉଦ୍ୟତ ହେଉଛି, ବିଶ୍ୱାଳେ ମତେ ଡକାଇ କହିଲେ ଯେ, ମତେ ନୟାଗଡ଼ ଯିବାକୁ ହେବ। ସେଠାରେ ପଲିଟିକେଲଏଜେଣ୍ଟ ଅଛନ୍ତି। ସେ ମତେ ଦେଖିବାକୁ ଚାହାନ୍ତି। ଏହାପରେ ଭାବଗ୍ରାହୀ ବାବୁ, ଦାମ ବାବୁ ଓ ମୁଁ ସମସ୍ତେ ନୟାଗଡ଼ ଆସିଲୁ। ନୟାଗଡ଼ କୁସୁମୀ ନଦୀ ପୋଲ ପ୍ରତିଷ୍ଠା ହେବାର ଥାଏ। ଏହି ପୋଲ ଉଦ୍‌ଘାଟନ କ୍ରିୟା ନିଜେ ରାମ୍‌ସେ ସାହେବ କରୁଥାନ୍ତି। ତାଙ୍କ ନାମ ଅନୁସାରେ ପୋଲର ନାମ 'ରାମ୍‌ସେ ବ୍ରିଜ୍'। ଏହି ପୋଲ ପ୍ରତିଷ୍ଠା କାର୍ଯ୍ୟ ଗୋଟିଏ ବିରାଟ କାରଖାନା। ନୟାଗଡ଼, ଖଣ୍ଡପଡ଼ା, ଦଶପଲ୍ଲା, ରଣପୁର ଆଦି କେତେକ ଗଡ଼ଜାତମାନଙ୍କର ରାଜା ଓ ସୁପରିଣ୍ଟେଣ୍ଡେଣ୍ଟମାନେ ଏଠାକୁ ନିମନ୍ତ୍ରିତ ହୋଇ ଆସିଥାନ୍ତି। ନିମନ୍ତ୍ରିତ ରାଜା, ଦେୱାନ ଓ ସୁପରିଂଟେଣ୍ଡେଣ୍ଟମାନଙ୍କ ରହିବା ପାଇଁ ନୂତନ ଘରମାନ ତିଆରି ହୋଇ ଥାଏ। ଖାଇବାପାଇଁ ବହୁ ସାମଗ୍ରୀ

ସଂଗ୍ରହ କରା ଯାଇଥାଏ। ରାସ୍ତା ଘାଟ ଛାଇ ଫୁଲରେ ସୁସଜ୍ଜିତ ହୋଇଥାଏ। ଏହିସବୁ କାର୍ଯ୍ୟ ବେଠିରେ ସମ୍ପାଦିତ। ନୟାଗଡ଼ ପ୍ରଜା ରସଦ ଯୋଗାଇ, ଘର ତୋଳିବାପାଇଁ ବେଠି ଖଟି ପ୍ରାଣାନ୍ତକ ହୋଇ ଯାଇଥାନ୍ତି। ସହସ୍ର ସହସ୍ର ପ୍ରଜାଙ୍କ ଯନ୍ତ୍ରଣା ଭୋଗ ଦ୍ୱାରା ପୋଲ ପ୍ରତିଷ୍ଠା ଉତ୍ସବ ପ୍ରତିପାଳିତ ହେଉଥାଏ। ଟିକିଏ ଅନ୍ତର୍ଦୃଷ୍ଟିରେ ଦେଖିଲେ ନିରୀହ ପ୍ରଜାଙ୍କ ଯନ୍ତ୍ରଣା ଓ ଆର୍ତ୍ତନାଦ ଏହି ଉତ୍ସବର କୋଳାହଳ ଭିତରେ ଯେ କେହି ଦେଖି ପାରିବ ଓ ଶୁଣି ପାରିବ। ମୁଁ ଏସବୁ ବୁଝି ପାରୁଥାଏ। କିନ୍ତୁ ଗଡ଼ଜାତ ରାଜ୍ୟରେ ଘର କଲେ ସେଠାରେ ନିର୍ଯ୍ୟାତନା ଭୋଗ କରିବା, ସତେ ଯେପରି ଗୋଟିଏ ବିଧିର ବିଧାନ। ଗଡ଼ଜାତ ପ୍ରଜାଙ୍କର ଯେଉଁମାନେ ଭାଗ୍ୟବିଧାତା ସେମାନେ ବିଚାରନ୍ତି, ପ୍ରଜାକୁଳ ସେମାନଙ୍କ ଭୋଗ ବିଳାସର ଗୋଟିଏ ଉପଭୋଗ୍ୟ ଉପକରଣ। ସେମାନଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟତାପାଇଁ ପ୍ରଜାକୁଳ ସୃଷ୍ଟି। ଅତଏବ ସେମାନଙ୍କୁ ଯେତେବେଳେ ଯାହା କରିବାକୁ ଆଦେଶ ମିଳିବ, ତାହା ସେମାନେ କରିବେ। ପ୍ରଜାକୁଳ ପ୍ରତିକୂଳ ଅବସ୍ଥା ପ୍ରତି ଦୃଷ୍ଟି ଦେବା, ତଥାକଥିତ ଭାଗ୍ୟବିଧାତାମାନେ ବୋଧହୁଏ ଭାବନ୍ତି ଏହା ସେମାନଙ୍କ ଚିନ୍ତାର ବହିର୍ଭୂତ। ଏପରି ଅବସ୍ଥାରେ ମନେହୁଏ ଗଡ଼ଜାତ ରାଜାଙ୍କ ପ୍ରଜା ହବା ଅପେକ୍ଷା ବ୍ରିଟିଶ ସରକାରଙ୍କ ପ୍ରଜା ହେବା ସହସ୍ର ଗୁଣରେ ଅଧିକ। କାରଣ ଗଡ଼ଜାତ ପ୍ରଜା ଦାସର ଦାସ। ଏହି ପ୍ରକାର ଭାବନା ସବୁବେଳେ ମୋର ମନରେ ଜାଗି ଉଠେ। ସେଦିନ ସେହି କୁସୁମୀ ନଦୀର ପୋଲ ପ୍ରତିଷ୍ଠା କାର୍ଯ୍ୟ ଦେଖି ଏହିସବୁ ଭାବ ମନରେ ଖେଳିଯିବା ସ୍ୱାଭାବିକ।

ସେ ଯାହା ହେଉ, ଦାମ ବାବୁ ଓ ଭାବଗ୍ରାହୀ ବାବୁ ନିମନ୍ତ୍ରିତ ହୋଇ ଏଠାକୁ ଆସିଥାନ୍ତି। ପଲିଟିକେଲ ଏଜେଣ୍ଟ ମତେ ଦେଖିବାକୁ ଇଚ୍ଛା କରୁ ଅଛନ୍ତି କହି ମତେ ମଧ ସଂଗରେ ଆଣିଥାନ୍ତି। ଆମ୍ଭେମାନେ ଆସି କୁସୁମୀ ନଦୀ ନିକଟରେ ନିର୍ମିତ ଅସ୍ଥାୟୀ ସହରରେ ବାସ କଲୁ। ଯେଉଁ ଘରସବୁ ଯେତେ ଯେପରି ନିର୍ମିତ ହୋଇଥିଲା, ତାହାକୁ ଗୋଟିଏ ଛୋଟ ସହର ଆଖ୍ୟା ଦିଆଯାଇ ପାରେ। ସହର ପରି ଏଠାରେ ସହସ୍ର ସହସ୍ର ଲୋକଙ୍କର ସମାଗମ ହୋଇଥିଲା। ଦୋକାନ ବଜାର, ନାଟ ତାମସା ଆଦି ନାନା ପ୍ରକାର ଆମୋଦ ପ୍ରମୋଦର ମଧ ଅଭାବ ନ ଥିଲା। ଏପରି ଅବସ୍ଥାରେ ଏହାକୁ ଗୋଟିଏ କ୍ଷୁଦ୍ର ସହର କହିବାରେ ଆପତ୍ତି କିଛି ଅଛି କି? ଯାହା ହେଉ ଆମ୍ଭେମାନେ ତ ଆସି ଏଠାରେ ବାସ କଲୁ। ବର୍ତ୍ତମାନ ମତେ ପଲିଟିକେଲ୍ ଏଜେଣ୍ଟଙ୍କର ନିକଟରେ ଦେଖା କରାଇବାର କଥା। ଦାମବାବୁ ଓ ବିଶ୍ୱାଳେ ଦୁହେଁ ମତେ କହିଲେ, "ଗୋବିନ୍ଦ, ତୁମେ ଦେଖ, ତୁମ କଥା ଜାଣି ସାହେବ ଭାରୀ ଖୁସି ହୋଇଅଛନ୍ତି। ତୁମେ ଯାହା କହିବ, ତାହା ଭଲ କରି କହିବା ଦରକାର। ପୁଣି ତୁମର ଇଂରେଜୀ ସୁନ୍ଦର ହେବା ଦରକାର। ତୁମେ ସୁନ୍ଦର ଇଂରେଜୀ କହି ପାରୁଛ, ଏହା ଶୁଣିଲେ ସାହେବ ଆହୁରି ଖୁସି ହେବେ। ଅତଏବ

ଆମେ ତୁମକୁ ଇଂରେଜୀରେ ଗୋଟିଏ ଲେଖି ଦେଉଛୁ। ତୁମେ ତାହାକୁ ଘୋଷି ନିଅ। ଏହାକୁ ସାହେବଙ୍କ ଆଗରେ କହିବ। ଆମକୁ ମଧ୍ୟ ସେଥିରୁ ଗୋଟିଏ ଲେଖି ଦେଇଯିବ।'' ଏହା କହି ସେ ଗୋଟିଏ ଲେଖା ମତେ ଦେଲେ। ମୁଁ ଉକ୍ତ ଲେଖାଟି ୨୦/ ୨୫ ଥର ପାଠ କରିନେଲି। ତହିଁ ଆର ଦିନ ସକାଳୁ ଦାମବାବୁ ମତେ ନେଇ ସାହେବଙ୍କ ନିକଟରେ ହାଜର ହେଲେ। ମତେ ଯେପରି ଯାହା ଶିଖାଇଥିଲେ ମୁଁ ତାହା ସାହେବଙ୍କ ଆଗରେ କହିଲି। ମୋଠାରୁ ଶୁଣି ସାହେବ ମୋ ସହିତ ସେକ୍‌ହାଣ୍ଡ କରି ମତେ ବିଦାୟ ଦେଲେ। ସେ କଣ କହିଲେ, ସାହେବୀ ଆବାଜ ତ, ମୁଁ ଭଲ କରି ବୁଝି ପାରିଲି ନାହିଁ। ମୁଁ ଆସିବାର କେତେକ ସମୟ ପରେ ଦାମ ବାବୁ ଆସି ମତେ ଏବଂ ମୋର ଭାଗ୍ୟକୁ ବହୁତ ପ୍ରଶଂସା କରିବାକୁ ଆରମ୍ଭ କଲେ। ତାଙ୍କର କହିବାର ମର୍ମ ହେଉଛି, ସାହେବ ମୋ ଉପରେ ଭାରି ସନ୍ତୁଷ୍ଟ। ସେ ହେଉଛନ୍ତି ଚବିଶ ଗଡ଼ଜାତର ହର୍ତ୍ତା କର୍ତ୍ତା ବିଧାତା। ତାହାଙ୍କର ଅନୁଗ୍ରହ ଲାଭ କମ୍ ଭାଗ୍ୟର କଥା ନୁହେଁ। ଆଜି ତାହାଙ୍କ ଅନୁଗ୍ରହରୁ ଅନୁରୁଦ୍ଧ ପଟେଲ, ମାଟ୍ରିକ ପାଶ ନ କରି ମଧ୍ୟ ନୟାଗଡ଼ ପରି ରାଜ୍ୟର ସୁପରିଂଟେଣ୍ଡେଣ୍ଟ। ସେ ଇଚ୍ଛା କଲେ କାହାର କଣ କରି ନ ପାରନ୍ତି। ତାଙ୍କ ଅନୁଗ୍ରହ ପାଇଲେ ଗଡ଼ଜାତ ରାଜ୍ୟରେ ପଙ୍ଗୁ ମଧ୍ୟ ଗିରି ଲଙ୍ଘନ କରିପାରେ। ଏହିପରି ଏକ ଶକ୍ତିଶାଳୀ ବ୍ୟକ୍ତିଙ୍କର ଦୃଷ୍ଟି ମୋ ଉପରେ ପଡ଼ିଛି। କେବଳ ଏତିକି ନୁହେଁ, ତାହାଙ୍କର ଅନୁଗ୍ରହ ମଧ୍ୟ ମୁଁ ଲାଭ କରିଅଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ଏହିପରି ଭାବରେ ରଥେ ଆପଣେ ମତେ ବହୁତ କଥା କହିଲେ। ମାତ୍ର ପଲିଟିକେଲ ଏଜେଣ୍ଟଙ୍କ ଦୃଷ୍ଟି ମୋ ଉପରେ ପଡ଼ିଛି, ମୁଁ ତାହାଙ୍କର ଅନୁଗ୍ରହ ଲାଭ କରିଛି, ଏହା ମୁଁ ଜାଣିବାର କୌଣସି ସଂକେତ ପାଇ ନଥାଏ। ଏତେ ଶୀଘ୍ର ଅବା ସେ ସଂକେତ ପାଇବି କିପରି? ସୁତରାଂ ଦାମ ବାବୁଙ୍କ କଥା ବୁଝୁଥିଲେ ମଧ୍ୟ କିଛି ବୁଝି ପାରିଲି ନାହିଁ। ପଲିଟିକେଲ ଏଜେଣ୍ଟଙ୍କର ନୀତି ଗତି ଯେପରି ତହିଁରେ ଦଶପଲ୍ଲା ମେଳି ସମ୍ପର୍କରେ ମୁଁ ମେଳିଆଙ୍କ ବିରୁଦ୍ଧରେ ସାକ୍ଷୀ ଦେବାର ଦେଖି ସେ ଯେ ଖୁସି ହୋଇଥିବେ ଏଥିରେ ଅବିଶ୍ୱାସ କରିବାର କିଛି ମାତ୍ର କାରଣ ନାହିଁ। ଦାମବାବୁ ମଧ୍ୟ ଯାହା କହିଲେ ତହିଁରେ ବାହୁଲ୍ୟ କିଛି ନାହିଁ। ସେ ମତେ ଭୁଲାଇବା ପାଇଁ ମିଥ୍ୟା କହିଲେ ବୋଲି ମୋର ମଧ୍ୟ ସେପରି କିଛି ସନ୍ଦେହ ହୋଇ ନାହିଁ। ସେ ପ୍ରକୃତରେ ମୋର ହିତାକାଂକ୍ଷୀ। ତାଙ୍କର ଇଚ୍ଛା ଗଭର୍ଣ୍ଣମେଣ୍ଟ ତରଫର ସାକ୍ଷୀ ହୋଇ ମୁଁ ଠିଆ ହୁଏ। ଏଥିରେ ମୋର ବହୁତ ମଙ୍ଗଳ ହେବ। ତାହା ନ ହେଲେ ମୋର ଜୀବନ ଘୋର ଦୁଃଖପୂର୍ଣ୍ଣ ହେବ। ଏଥିରେ କିଛି ମାତ୍ର ସନ୍ଦେହ ନାହିଁ। ସାହେବ ମୋ କଥାରେ ଖୁସି ହୋଇଥିବାର ଜାଣି, ସେ ଖୁସି ହୋଇ ମୋତେ ଏବଂ ମୋ ଭାଗ୍ୟକୁ ପ୍ରଶଂସା କରିଛନ୍ତି।

ଗତ କେତେଦିନ ହେବ, ମୋର ଜୀବନ ଓ ଚିନ୍ତା ଘୋର ସନ୍ଧି ସ୍ଥଳରେ। ମୁଁ କ'ଣ କରିବି, କେଉଁ ପଥ ଅବଲମ୍ବନ କରିବି? ଏହି ପ୍ରଶ୍ନ ମୋ ମନକୁ

ସବୁବେଳେ ଆଲୋଡ଼ିତ କରୁଅଛି। ଦଶପଲ୍ଲା ମେଳିରେ ସରକାରୀ ତରଫର ପ୍ରଧାନ ସାକ୍ଷୀ ହୋଇ ଠିଆହେବାକୁ ମୁଁ ହଁ ମାରି ଦେଇଛି। କର୍ତ୍ତାମାନଙ୍କ ପ୍ରଲୋଭନ ମତେ ମଧ୍ୟ ସେମାନଙ୍କ ଆଡ଼କୁ ଟାଣି ନେଇଛି। କିନ୍ତୁ କ୍ଷୋଭ ଅଣାରେ ମୁଁ ତାଙ୍କର ହେଉ ନାହିଁ। ଏହି ହେତୁ ତାଙ୍କ କହିବାନୁସାରେ ସାହେବଙ୍କ ଆଗରେ ଯାହା କହିଗଲି ତହିଁର ଗୋଟିଏ ଲେଖା ନେଖି ଦାମବାବୁଙ୍କ ହାତକୁ ନ ଦେବାର ଫିକର କରିଛି। ମୁଁ ସାକ୍ଷୀ ଦେବି ବୋଲି ସ୍ୱୀକାର କରି ଦେବାରୁ ସେମାନେ ଏତେ ଆନନ୍ଦିତ ହୋଇ ଅଛନ୍ତି ଯେ ମୋଠାରୁ କିଛି ଲେଖାଇ ନେବାର କଥା ଏକାବେଳକେ ଭୁଲିଯାଇ ଅଛନ୍ତି। ମୁଁ ସାକ୍ଷୀ ସମ୍ବାଦ ପାଇ ସାହେବ ନିଜେ ମତେ ଦେଖିବାକୁ ଡକାଇଥାନ୍ତୁ, ନତୁବା ସାହେବଙ୍କ ଆଗରେ ଠିଆ ହୋଇ ଥରେ ମୁଁ ସାକ୍ଷୀ କଣ ଦେବି ତାହା କହିଗଲେ ତାହା ଅସ୍ୱୀକାର କରିବାକୁ ଆଉ ସାହସ କରିବି ନାହିଁ ଏହା ଭାବି ଦାମ ବାବୁ ଓ ବିଶ୍ୱାଳେ ମତେ ସାହେବଙ୍କ ଆଗରେ ହାଜର କରାଇଥାନ୍ତୁ—ସାହେବଙ୍କ ଆଗକୁ ଆସିବାର କାରଣ ଯାହା କିଛି ହେଲା, ସାହେବଙ୍କ ନିକଟକୁ ଆସିବା କଥା ଶୁଣିଲା ଦିନୁ ମୋ ମନ ଆହୁରି ଦବି ଯାଇଛି। ସାହେବଙ୍କ ସହିତ ଦେଖା ସାକ୍ଷାତ ପରେ ମୁଁ ଏକପ୍ରକାର ନିର୍ଜୀବ। ଏଁ ପର୍ଯ୍ୟନ୍ତ ଭାବୁଥିଲି ଏମାନଙ୍କ ହାତରୁ ଉପସ୍ଥିତି ବିପଦରୁ ଖସିଯାଇ କଟକ ଗଲେ, ମୋର ବନ୍ଧୁମାନଙ୍କ ସହିତ ପରାମର୍ଶ କରି କର୍ତ୍ତବ୍ୟ ନିରୂପଣ କରିବି। କିନ୍ତୁ ବର୍ତ୍ତମାନ ମୋର କର୍ତ୍ତବ୍ୟ ଅକର୍ତ୍ତବ୍ୟର ପ୍ରଶ୍ନ ସ୍ୱତଃ କୁଆଡ଼େ ଉଭେଇ ଯାଉଛି। ମୋର ହୃଦୟ ଦବି ଯାଉଛି। ମୁଁ ଜଡ଼ ଓ ମୂକ ପରି ହୋଇଗଲା ପ୍ରାୟ ମତେ ବୋଧ ହେଉଛି। ଏସବୁର ଏକମାତ୍ର କାରଣ ପଲିଟିକେଲ ଏଜେଣ୍ଟ।

ମୁଁ ସାକ୍ଷୀ ଦେଲି ମୋର ପ୍ରଭୁତ ମଙ୍ଗଳ ସାଧିତ ହେବ ଏଥିରେ ଆଉ ଅଣୁ ମାତ୍ର ସନ୍ଦେହ ନାହିଁ। କିନ୍ତୁ ସାକ୍ଷୀ ନ ଦେବାକୁ ହେଲେ ମୁଁ କଣ କରିବି? ଏଥିରୁ ଉଦ୍ଧାର ପାଇବାର ବାଟ କାହିଁ? ଗଡ଼ଜାତ ରାଜ୍ୟରେ ଜନ୍ମ ହୋଇ ଜଳ ସ୍ଥଳ ଆକାଶରେ ମୋର ଆଉ ସ୍ଥାନ ନାହିଁ। ଦଶପଲ୍ଲା ନ ଆସି ବିଶ୍ୱାଳଙ୍କୁ ଠକି ଦେଇ ପାରେ। କିନ୍ତୁ ପଲିଟିକେଲ୍ ଏଜେଣ୍ଟଙ୍କ କଥାରୁ ବାହାରି ଯିବି କୁଆଡ଼େ। ସାହେବଙ୍କ ନିକଟରୁ ଫେରି ମୋ ମନରେ ଏହିପରି ପ୍ରଶ୍ନ ସବୁ ଜାଗି ଉଠିଲା। ମୁଁ କୌଣସି ଲେଖା ଦାମବାବୁଙ୍କୁ ନ ଦେଇ କିପରି ଶୀଘ୍ର କଟକ ଚାଲି ଆସିବି ଏହି କଥା ସ୍ଥିର କଲି। ଶେଷରେ କଟକ ଆସିବା ପାଇଁ ବିଶ୍ୱାଳଙ୍କଠାରୁ ଅନୁମତି ଆଣି କଟକ ଯାତ୍ରା କଲି। ସାହେବଙ୍କ ଆଗରେ ସେମାନେ କହିବାନୁସାରେ ମୁଁ ସବୁକଥା କହି ଆସିଥିବାରୁ ସେମାନଙ୍କର ମୋଠାରେ ଆଉ କୌଣସି ଅବିଶ୍ୱାସ ନ ଥିଲା। ମୁଁ କଟକ ଯିବାକୁ କହିଲା ମାତ୍ରେ ଅନୁମତି ମିଳିଗଲା। ନୟାଗଡ଼ ଛାଡ଼ି ମୁଁ ଆସି କଟକରେ ଉପସ୍ଥିତ ହେଲି।

# ଚତୁର୍ଥ ପରିଚ୍ଛେଦ

କଟକ ଆସି ମିଶନ ହିନ୍ଦୁ ହଷ୍ଟେଲରେ ମୁଁ ଉପସ୍ଥିତ। ମତେ ଦେଖି ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ଓ ଆନନ୍ଦିତ ହୋଇ ଉଠିଲେ। କାରଣ କଟକରେ ସେତେବେଳକୁ ପ୍ରଚାରିତ ହୋଇଗଲାଣି, ମୁଁ ମେଳିଆ ବୋଲି ଧରାହୋଇ ଦଶପଲ୍ଲା ଜେଲରେ ଅଛି। ଏହି କଥା କଟକରେ ମୋର ଜଣାଶୁଣା ଲୋକେ ସମସ୍ତେ ଜାଣିଛନ୍ତି। ସ୍କୁଲରେ ଶିକ୍ଷକ ଓ ଛାତ୍ର ସମସ୍ତେ ମଧ୍ୟ ଏହି କଥାକୁ ନାନାପ୍ରକାରରେ ଶୁଣି ଅଛନ୍ତି। ଏପରି ଅବସ୍ଥାରେ ମୁଁ ଆସି କଟକରେ ଉପସ୍ଥିତ। ତେଣୁ ମତେ ଦେଖି ସମସ୍ତେ ଟିକିଏ ଆଶ୍ଚର୍ଯ୍ୟାନ୍ୱିତ ହେଉ ଅଛନ୍ତି ଏବଂ ଆନନ୍ଦ ମଧ୍ୟ ପ୍ରକାଶ କରୁଅଛନ୍ତି। ମତେ ଦେଖିବାକୁ, ମୋ ସହିତ କଥାହୋଇ ମୋଠାରୁ ସମସ୍ତ ବୃତ୍ତାନ୍ତ ଶୁଣିବାକୁ ଅନେକ ବଡ଼ ଆଗ୍ରହାନ୍ୱିତ। ସେ ଯାହାହେଉ ମୁଁ କଟକକୁ ଆସିବା ପରେ ଆମ ଗୁପ୍ତ ସମାଜର ବୈଠକ ବସି ମୋ ବିଷୟ ବିଚାର ଚାଲିଲା। ମୁଁ କଣ କରିବି, ସାକ୍ଷୀ ଦେବି କି ନାହିଁ, ଏହି କଥା ଆମ୍ଭେମାନେ ବସି ବିଚାର କଲୁ।

ଓଡ଼ିଶାରେ ରାଜନୈତିକ ଜୀବନ କିଛି ନାହିଁ। ରାଜନୀତିର କୌଣସି ଚର୍ଚ୍ଚା ନାହିଁ। ଦେଶର ସାଧାରଣ କର୍ମକ୍ଷେତ୍ରରେ ପ୍ରମୁଖ ବ୍ୟକ୍ତି କେହି ନାହାନ୍ତି। ଦେଶସେବା କହିଲେ ବହୁତ ପାଠ ପଢ଼ି, ସଭା ସମିତିରେ ବକ୍ତୃତା ଦେବା ଛଡ଼ା ଅନ୍ୟ କିଛି ନାହିଁ। ଦେଶରେ ସଭା ସମିତି ତେତେ ମଧ୍ୟ ନାହିଁ। ଏପରି ଅବସ୍ଥାରେ ମୋର ସାକ୍ଷୀ ଦେବା ସମସ୍ୟା ନିଷ୍ପତ୍ତି କରିବା ଆମ୍ଭମାନଙ୍କୁ ବଡ଼ କଠିନ ଜଣାଗଲା। ଦେଶର ସେତେବେଳର ଅବସ୍ଥା ପ୍ରତି ଦୃଷ୍ଟିଦେଇ ବହୁତ କଥା ବିଚାର କଲା ପରେ ଆମ୍ଭେମାନେ ସ୍ଥିର କଲୁ ଯେ ମୋର ସାକ୍ଷୀ ଦେବା ନିହାତି ଦରକାର। କାରଣ ମୁଁ ସାକ୍ଷୀ ନ ଦେଲେ ବୈଷ୍ଣବ ଦେଓ ରକ୍ଷା ପାଇବେ ନାହିଁ କିମ୍ବା ଦଶପଲ୍ଲା ମେଳିଆ କଣ ମଧ୍ୟ କେହି ରକ୍ଷା ପାଇ ପାରିବେ ନାହିଁ। ନିହାତି ଅମୂଳକ ମିଥ୍ୟାକଥା ମଧ୍ୟ ମତେ କହିବାକୁ ହେଉ ନାହିଁ। ଏପରି ଅବସ୍ଥାରେ ସାକ୍ଷୀ ନ ଦେଇ ମୁଁ ମୋର ଜୀବନର ସମସ୍ତ ପ୍ରକାର ଉଚ୍ଚ ଆଶା ଆହୁତି ଦେବାରେ କାହାର କି ଉପକାର ସାଧିତ ହେବ। ଏହାଦ୍ୱାରା ମୋର ଅବସ୍ଥା କଣ ହେବ ତାହା କଳ୍ପନା କରି ହେବ ନାହିଁ। ମୁଁ ସାକ୍ଷୀ ନ ଦେବାଦ୍ୱାରା ଆହୁରି ଅନ୍ୟାନ୍ୟ ଅନେକ ଲୋକଙ୍କର ମଧ୍ୟ ବହୁତ ଅନିଷ୍ଟ ହେବ। ଏପରି ଅବସ୍ଥାରେ ସାକ୍ଷୀ ଦେଇ ସେମାନଙ୍କର ସାହାଯ୍ୟରେ ଉଚ୍ଚଶିକ୍ଷା ଲାଭ କରି ପାରିଲେ ମୁଁ ଦେଶର ଅନେକ ମଙ୍ଗଳ ସାଧନ କରି ପାରିବି। ଯଦି ସେମାନଙ୍କ ସାହାଯ୍ୟ ପାଏ ତେବେ ବିଦେଶକୁ ଯାଇ କିଛି ନା କିଛି ଉଚ୍ଚଶିକ୍ଷା ଲାଭ କରିବା ଦରକାର। ବିଦେଶରେ କିଛି ଉଚ୍ଚଶିକ୍ଷା ଲାଭ କରି ଦେଶକୁ ଫେରିଲେ ଦେଶର କୌଣସି ହିତକର କାର୍ଯ୍ୟ ସାଧନ କରିବା ମୋ ପକ୍ଷରେ କେତେ ସୁବିଧା ହେବ। ଏହା ନ କରି ଛାତ୍ର ଅବସ୍ଥାରେ ବର୍ତ୍ତମାନ ସରକାରର ବିପକ୍ଷ ହେଲେ

ମୋଦ୍ୱାରା କାହାର ତ କିଛି ମଙ୍ଗଳ ହେବ ନାହିଁ ବରଂ ମୋର ଜୀବନ ଏହାର ପରିଣାମରେ ଦୁଃଖମୟ ହେବ। ଦେଶସେବା କାର୍ଯ୍ୟ କରିବା ଦୂରର କଥା ମୁଁ ନିଜର ମଧ୍ୟ କିଛି ମଙ୍ଗଳ ସାଧନ କରି ପାରିବି ନାହିଁ। ଅକାରଣରେ ମୋର ଜୀବନ ନଷ୍ଟ ହୋଇଯିବ। ଏହି ମର୍ମରେ ଆମ୍ଭମାନଙ୍କର ଅନେକ ଆଲୋଚନା ଚାଲିଲା। ଶେଷରେ ମୁଁ ସାକ୍ଷୀ ଦେବାର ସ୍ଥିର ହେଲା।

ମୋର ବନ୍ଧୁମାନଙ୍କ ସାହାଯ୍ୟରେ ସାକ୍ଷୀ ଦେବାକୁ ସ୍ଥିର କଲି ସତ୍ୟ କିନ୍ତୁ ମନରେ ଆନନ୍ଦ ରହିଲା ନାହିଁ। ମୁଁ ସ୍କୁଲକୁ ଯାଏ ମାତ୍ର କ୍ଲାସର ପାଠ ପଢ଼ାରେ ମୋର ମନ ନ ଥାଏ। ଦଶପଲ୍ଲାର ଚିତ୍ର ମୋ ଆଖି ଆଗରେ ନାଚିଯାଏ। ହଷ୍ଟେଲରେ ସାଥିପିଲାମାନଙ୍କ ସହିତ ଖେଳେ, ମାତ୍ର ଖେଳରେ ମୋର ମନେ ଲାଗେ ନାହିଁ। ସକାଳେ ଓ ସନ୍ଧ୍ୟାରେ ବସାରେ ବସି କ୍ଲାସପାଠ ପଢ଼ିବା ଇଚ୍ଛାରେ ବହି ଖୋଲି ବସେ। କିନ୍ତୁ କିଛି ଆଉ ପଢ଼ିପାରେ ନାହିଁ। ସକାଳେ ଓ ସନ୍ଧ୍ୟାରେ ମୁଁ ଏକାନ୍ତ ସ୍ଥାନରେ ବସି ଅନେକ ସମୟ ପର୍ଯ୍ୟନ୍ତ ଧ୍ୟାନ କରିବାର ଅଭ୍ୟାସ କରିଥାଏ। କିନ୍ତୁ ଏହି ଧ୍ୟାନରେ ବସିଲା ବେଳେ ମୋର ମନରେ ଶାନ୍ତି କିମ୍ବା ଆନନ୍ଦ ପାଏ ନାହିଁ। ମନ ଧ୍ୟାନ-ନିମଗ୍ନ ହୁଏ ନାହିଁ। ଦଶପଲ୍ଲାର ଚିତ୍ର ମୋ ଆଖି ଆଗରେ ଆସି ନାଚିଯାଏ। ରାତ୍ରିରେ ନିଦ ହୁଏ ନାହିଁ। ଶୋଇଲା ବେଳେ ମଧ୍ୟ ଦଶପଲ୍ଲା ଦୃଶ୍ୟ ସ୍ୱପ୍ନ ଦେଖି, ବେଳେବେଳେ ଚମକି ଉଠେ। ସାକ୍ଷୀ ଦେଇ ବିଶ୍ୱାଳଙ୍କ ପଇସାରେ ପାଠ ପଢ଼ି, ଭବିଷ୍ୟତ କଳ୍ପନାର ଚିତ୍ର ମୋ ମନରେ ଉତ୍ସାହ କିମ୍ବା ହୃଦୟରେ ବଳ ଦିଏ ନାହିଁ। ମୋତେ ବୋଧ ହେଉଥାଏ ମୋର ହୃଦୟ ଯେପରି ଶୁଷ୍କ ହୋଇ ଯାଇଛି।

ଅନେକ ସମୟରେ ସନ୍ଧ୍ୟାବେଳେ ମହାନଦୀ କୂଳକୁ ବୁଲିବାକୁ ଯାଏ। ଅନେକ ରାତି ପର୍ଯ୍ୟନ୍ତ କିଲା ନିକଟ ନଦୀବନ୍ଧରେ ବସି ନାନା କଥା ଚିନ୍ତା କରେ। ଦିନେ ସନ୍ଧ୍ୟାରେ ଏହି ନଦୀବନ୍ଧରେ ବସିଛି, ଆକାଶରେ ତାରସବୁ ଗୋଟି ଗୋଟି ହୋଇ ଫୁଟି ଉଠୁଛନ୍ତି, ଏପରି ସମୟରେ ମୋର ଚେତନା ଜାଗି ଉଠିଲା। ମତେ ବୋଧହେଲା ସତେ ଯେପରି ଏହି ସଜୀବ ଜଗତ ନିସ୍ତବ୍ଧ, ଆକାଶ ନିସ୍ତବ୍ଧ, ପବନ ମଧ୍ୟ ନିଶ୍ଚଳ। ଆକାଶରେ ତାରାଗୁଡ଼ିକ ଜୁଳୁ ଜୁଳୁ କରି ମତେ ଅନାଇ ଅଛନ୍ତି। ମତେ ଦେଖିବାକୁ ଗୋଟି ଗୋଟି ହୋଇ ସତେ ଯେପରି କୁଆଡୁ ଅନ୍ଧାରେ ତେଙ୍କି ପଡ଼ୁଛନ୍ତି। ଚାରିପାଖ ଗଛଗୁଡ଼ିକ ମୋରି କଥା ଭାବି, ମତେ ଅନାଇ ଧୀର ସ୍ଥିର ଭାବରେ ଠିଆ ହୋଇଛନ୍ତି। ମୁଁ ଯେଉଁ ବାଟରେ ଯାଉଛି, ସେହି ବାଟରୁ ମତେ ଫେରାଇ ଆଣିବାକୁ ସମସ୍ତେ ମତେ ନୀରବରେ ଇଙ୍ଗିତ ଦେଉ ଅଛନ୍ତି। ବାଟରେ ଚାଲିଗଲା ଲୋକ ମଧ୍ୟ ମତେ ଚାହିଁ ଚାଲି ଯାଉଛି, କିନ୍ତୁ କଥା କହୁ ନାହିଁ। କିଏ ମତେ ଅସ୍ପଷ୍ଟ ଭାବରେ କହି ଦେଉଛି, "ଆରେ ମୂର୍ଖ, ତୁ ଦଶପଲ୍ଲାର ନିଃସହାୟ ପ୍ରଜାଙ୍କ ବିରୁଦ୍ଧରେ ସାକ୍ଷୀ ରୂପେ ଠିଆ ହୋଇ ବିଶ୍ୱାଳଙ୍କ ପଇସାରେ ପାଠ ପଢ଼ି ଦେଶସେବା

କରିବାକୁ ବିଚାର ବାନ୍ଧିଛୁ। ଏହା ତୋର ମହାଭ୍ରମ ବୋଲି ଜାଣ। ତୁ ବେଶୀ ପାଠ ପଢ଼ିପାରୁ, କିନ୍ତୁ ଦେଶର କୌଣସି କଲ୍ୟାଣ ତୋଦ୍ୱାରା ସାଧିତ ହୋଇ ପାରିବ ନାହିଁ। ଦେଶର ଲୋକେ କେହି ତୋ କଥା ଶୁଣିବେ ନାହିଁ। ସମସ୍ତେ ବିଚାରିବେ ତୁ ଗୋଟାଏ ଦେଶଦ୍ରୋହୀ। ତୋତେ କେହି ବିଶ୍ୱାସ କରିବେ ନାହିଁ। ତୋର କଥା କେହି ଶୁଣିବେ ନାହିଁ। ସମସ୍ତେ କହିବେ, ଏ ନିଜ ଦେଶ ଲୋକଙ୍କ ବିରୁଦ୍ଧରେ ସାକ୍ଷୀ ଦେଇଛି। ଏ ଗୋଟାଏ ଭୀରୁ। ଗୋଟାଏ ପାପୀ। ଏହି ପାପୀର ମୁହଁ ଚାହିଁବାର ନୁହେଁ। ଏହାକୁ ବିଶ୍ୱାସ କରିବାର ନୁହେଁ। ଏହାକୁ ଦୂରରୁ ବର୍ଜନ କରିବା ବିଧେୟ।''

ଏ ସବୁ କଥା କିଏ ଅସଷ୍ଟ ସ୍ୱରରେ କହିଲା ପରି ମୋତେ ବୋଧ ହେଲା। ମୁଁ ନଦୀବକ୍ଷର ଉପରେ ଶୋଇ ଆକାଶର ତାରାସବୁ ଗଣୁଥିଲି। ହଠାତ୍ ଚମକି ପଡ଼ିଲା ପରି ମୁଁ ଉଠି ବସିଲି। ଚାରିଆଡ଼କୁ ଚାହିଁଲି କେହି ନାହିଁ। ଏ କଣ ଶୁଣିଲି, ମତେ କିଏ ଏସବୁ କହିଲା। ମୁଁ କିଛି ବୁଝି ନ ପାରି ଅବାକ୍ ହୋଇ ଠିଆହୋଇ ପଡ଼ିଲି। ହଠାତ୍ କୁଆଡ଼େ ଯିବି କିଛି ବୁଝି ପାରିଲି ନାହିଁ। ମତେ ଚାରିଆଡ଼େ ଅନ୍ଧକାର ଦେଖାଗଲା। ମୁଁ ପାଗଳ ପ୍ରାୟ ଅବସ୍ଥାରେ ହଷ୍ଟେଲରେ ହାଜର ହେଲି।

ହଷ୍ଟେଲକୁ ଫେରି ମୁଁ ଶୋଇ ପଡ଼ିଲି। ସେ ରାତ୍ରିରେ ଆଉ ଖାଇଲି ନାହିଁ। ସକାଳୁ ଉଠିଲି। କାହିଁରେ ମୋର ମନ ଲାଗିଲା ନାହିଁ। କାହାରି ସହିତ କଥା ହେବାକୁ ଇଚ୍ଛା ହେଲା ନାହିଁ। ମୋର ହୃଦୟ ବ୍ୟାକୁଳ ହୋଇ ଉଠିଲା। ମୁଁ କଣ କରିବି କିଛି ସ୍ଥିର କରି ପାରିଲି ନାହିଁ। ଯଦି ସାକ୍ଷୀ ନ ଦିଏ, ତେବେ ଦ୍ୱୀପାନ୍ତର କିମ୍ବା ଦୀର୍ଘ କାରାଦଣ୍ଡ ହେବ ଏଥିରେ ସନ୍ଦେହ ନାହିଁ। ଦଶପଲ୍ଲାରେ ମୋର ହୋଇ ଯେଉଁମାନେ ଅଛନ୍ତି ସେମାନେ ସମସ୍ତେ ଧରା ହେବେ। ସମସ୍ତଙ୍କ ଘର ଲୁଟ କରାଇ ଦିଆଯାଇ ପାରେ। ମୋର ଅନୁରୋଧରେ ଯେଉଁମାନେ ଛାଡ଼ ପାଇ ଅଛନ୍ତି ସେମାନେ ପୁଣି ଧରାହେବେ। ସେମାନଙ୍କ ମଧ୍ୟରୁ କିଏ କି ଦଣ୍ଡ ଭୋଗ କରିବ ତାହା କିଏ ଜାଣେ। ବିଦ୍ୟାଧରକୁ ହୁଏତ ଜେଲ ଦେବେ। କଟକରୁ ମୁଁ ଯଦି କୁଆଡ଼େ ପଳାଇଯାଏ, ସେମାନେ ଯଦି ମୋତେ ଧରି ନ ପାରନ୍ତି, ତେବେ ଲୁଚି ରହିବି କେଉଁଠାରେ। କେତେଦିନ ଅବା ଲୁଚି ରହିବି। ଗଡ଼ଜାତ ମତେ ମନା ହେବ। ପାଠ ପଢ଼ା ମୋର ଏହିଠାରେ ଶେଷ ପାଇବ। ସବୁବେଳେ ପୁଲିସ ମତେ ଅନୁସନ୍ଧାନ କରି ମୋର ପିଛା ଧରିବ। ଭୟରେ ହୁଏତ ମତେ କେହି ସ୍ଥାନ ଦେବେ ନାହିଁ। ଏପରି ଅବସ୍ଥାରେ ଲୋକଦୃଷ୍ଟିର ଅନ୍ତରାଳରେ ପଡ଼ି ମୋର ଜୀବନ ଯିବ। କେହି ପଦେ କଥା କହିବାକୁ ନ ଥିବେ କିମ୍ବା କେହି ଦେଖିବାକୁ ନ ଥିବେ।

ଯଦି ସାକ୍ଷୀ ଦେବି, ତେବେ ମୁଁ ଆଉ ସମାଜରେ ଓ ଦେଶରେ ମନୁଷ୍ୟ ବୋଲି ବିବେଚିତ ହେବି ନାହିଁ। ଚିରକାଳ ପାଇଁ ମୁଁ ମୋ ଜୀବନରେ ଏବଂ

ନିଜ ବଂଶରେ ମଧ ଗୋଟାଏ କଳଙ୍କ ଲଗାଇବି। ଏପରି ଜୀବନ ବୃଥା। କଳଙ୍କିତ ଜୀବନ ଧାରଣ କରିବା ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର।

ଏହି ଦୁଇ ମାର୍ଗରୁ କେଉଁ ମାର୍ଗ ମୁଁ ଅବଲମ୍ବନ କରିବି କିଛି ବୁଝି ପାରିଲି ନାହିଁ। କିଛି ଭାବି ସ୍ଥିର କରିବା ମୋତେ ଅସମ୍ଭବ ଜଣାଗଲା। ଗୋଟିଏ କଥା ଭାବିଲା ବେଳକୁ ଅନ୍ୟଟିର ଭୀଷଣ ପରିଣାମ ଆଖି ଆଗରେ ଆସି ନାଚିଗଲା। ମତେ ବଡ଼ ଅଶାନ୍ତି ବୋଧ ହେଲା। ବିଚାରିଲି ଆତ୍ମହତ୍ୟା କରିଦେଲେ ଏ ସଂକଟରୁ ନିସ୍ତାର ପାଇଯିବି। କେହି କିଛି ଆଉ ମତେ କହିବାକୁ ନଥିବେ। ଆଉ ସାକ୍ଷୀ ଦେବାକୁ ଡକରା ପଡ଼ିବ ନାହିଁ କିମ୍ବା ସାକ୍ଷୀ ଦେଇ ମୁଁ ଆତ୍ମହତ୍ୟା କଲି ବୋଲି ମୋ ପାଇଁ କେହି ଆଉ ହଇରାଣ ହେବେ ନାହିଁ।

ଏହିପରି ମୋର ମନ ଚଞ୍ଚଳ ହୋଇ ଉଠିଲା। ଆତ୍ମହତ୍ୟା କରି ନିସ୍ତାର ପାଇବାର ଦୁର୍ବଳତା ମଧ ବେଳେ ବେଳେ ମନକୁ ଅଧିକାର କଲା। ଆତ୍ମହତ୍ୟା କଲେ ନିହାତି କାପୁରୁଷତାର ଲକ୍ଷଣ ପ୍ରକାଶ ପାଇବ, ଏହା ଭାବି ସେପରି ଭାବନାକୁ ମନରୁ ଫିଙ୍ଗିଦେଲି। ଏ ସଂକଟରୁ ମୁଁ କିପରି ଉଦ୍ଧାର ପାଇବି ? ମତେ ବାଟ ଦେଖାଇବ କିଏ ? ଏହି ପ୍ରଶ୍ନ ସବୁବେଳେ ମୋର ହୃଦୟରେ ଜାଗି ଉଠିଲା। ହଠାତ୍ ପଣ୍ଡିତ ଗୋପବନ୍ଧୁ ଦାସଙ୍କର ନାମ ମୋର ମନେ ପଡ଼ିଲା। ଗୋପବନ୍ଧୁ ବାବୁ ସେତେବେଳକୁ ପୁରୀରେ ଓକିଲାତି କରୁଥାନ୍ତି। ମୁଁ ଯାଇ ପୁରୀରେ ଉପସ୍ଥିତ ହେଲି। ଗୋପବନ୍ଧୁ ବାବୁଙ୍କ ବସାରେ ପହଞ୍ଚିଲା ବେଳକୁ ସେ କଚେରୀରୁ ଫେରି ନ ଥାନ୍ତି।

ଗୋପବନ୍ଧୁ ବାବୁ କଚେରୀରୁ ଫେରି ସନ୍ଧ୍ୟା–ନିତ୍ୟକ୍ରିୟା ସାରି ଆସି ବାହାର ଘରେ ବସିଲେ। ଖଣ୍ଡିଏ ଚୌକି, ଖଣ୍ଡିଏ ଟେବୁଲ ଆଉ ଖଣ୍ଡିଏ ବେଞ୍ଚ ପଡ଼ିଥାଏ। ପୋଲାଙ୍ଗ ତେଲର ଗୋଟିଏ ଦୀପ ଜଳୁଥାଏ। ଗୋପବନ୍ଧୁ ବାବୁ ଚୌକି ଖଣ୍ଡକ ଉପରେ ଠୁକାଁହୋଇ ବସି ମତେ ଡାକି ତାହାଙ୍କ ନିକଟକୁ ମୁଁ ଆସିବାର କାରଣ ପଚାରିଲେ। ଗୋପବନ୍ଧୁ ବାବୁ ମୋ କଥା ଶୁଣୁ ଶୁଣୁ ତାହାଙ୍କ ଆଖିରୁ ଲୁହ ବୋହିଗଲା। ସେ ହଠାତ୍ କହି ଉଠିଲେ, "ଗୋବିନ୍ଦ, ତୁମେ ମୋ ନିକଟକୁ ଆସିଛ, ମୋର ପରାମର୍ଶ ମାଗୁଛ। ତୁମେ କଣ କରିବ, ତୁମର କର୍ତ୍ତବ୍ୟ କଣ, ଏହା ତୁମକୁ ବୁଝାଇ ଦେବାକୁ ମତେ ପଚାରୁ ଅଛ। ମୁଁ କଣ ବୁଝାଇବି। ଦଶପଲ୍ଲା ବଣ ଜଙ୍ଗଲ ମଧ୍ୟରେ କେତେ ଲୋକ ମରିଛନ୍ତି ତାହା କିଏ ଜାଣେ। ସେମାନଙ୍କ ମଧରେ କେତେ ନିରୀହ ପ୍ରାଣୀଙ୍କର ଜୀବନ ଯାଇ ନ ଥିବ ? ଯେଉଁମାନେ ଏପରି ଲୋକ ଅନ୍ତରାଳରେ ମରିଛନ୍ତି ସେମାନଙ୍କ ମଧରେ ହୁଏତ ଏପରି କେହି ଥାଇ ପାରନ୍ତି ଯେ କି ବଞ୍ଚିଥିଲେ, ଦିନେ ଜଣେ ମହାପୁରୁଷ ହୋଇ ପାରିଥାନ୍ତେ। ତୁମେ ସେହି ଜଙ୍ଗଲ ରାଜ୍ୟରୁ ଆସିଛ। ଈଶ୍ୱରଙ୍କ କୃପାରୁ କିଛି ଆଲୋକ ପାଇଛ। ଦଶପଲ୍ଲା କନ୍ଧ ପ୍ରଜା ଜଙ୍ଗଲି ଓ ମୂର୍ଖ। ସେମାନେ ଆଜି ନ୍ୟାୟ ଓ ସତ୍ୟ ବୋଲି ଯାହା ମନେକଲେ ସେଥିପାଇଁ ନିଜର ଧନ, ଜୀବନ, ସ୍ତ୍ରୀ, ପୁତ୍ର, କନ୍ୟା ଆଦି ସମସ୍ତ ବଳି ଦେଇଅଛନ୍ତି।

ଦଣ୍ଡପଲ୍ଲୀରେ ଅଗ୍ନି ଜଳୁଛି। ସେ ଅଗ୍ନି କେବେ କିପରି ଶାନ୍ତ ହେବ ଏବଂ କାହାଦ୍ୱାରା ହେବ, ସେକଥା କେବଳ ସେହି ମଙ୍ଗଳମୟ ବିଭୁଙ୍କୁ ଜଣା। ଏପରି ଅବସ୍ଥାରେ ସେହି ଜ୍ୱଳନ୍ତ ଅଗ୍ନିରେ ତୁମ୍ଭେ ଆହୁତି ଦେଇ ସେହି ଅଗ୍ନିର ଦାଉକୁ ବଢ଼ାଇବ କିମ୍ବା ତାହାକୁ ନିର୍ବାପିତ କରିବା ପାଇଁ ନିଜକୁ ବଳି ଦେବ, ଏହା ଭାବି ତୁମ୍ଭେ ସ୍ଥିର କର। ମୁଁ ତୁମ୍ଭକୁ କଣ କହିବି, କି ପରାମର୍ଶ ଦେବି। ପ୍ରଭୁ ତୁମ୍ଭକୁ ସୁବୁଦ୍ଧି ଦିଅନ୍ତୁ ମୁଁ କେବଳ ଏତିକି କହିବାକୁ ଚାହେଁ।

ଗୋପବନ୍ଧୁ ବାବୁ ଏହିସବୁ କଥା କହି ଆଁ କରି ମୋ ଆଡ଼କୁ ଅନାଇ ରହିଲେ। ତାହାଙ୍କ ଆଖିରୁ ଲୁହ ଧାର ବୋହି ଯାଉଥାଏ। ମତେ ବୋଧହେଲା ସତେ ଯେପରି ସେ ମତେ ତାଙ୍କର ଲୁହ ଧାରରେ ଭସାଇ ନେଇ ଯାଉଅଛନ୍ତି। ମୋର ହୃଦୟ ଥରି ଉଠିଲା। ତାଙ୍କର କଥା ଶୁଣି ଏବଂ ତାହାଙ୍କୁ ଏପରି କାନ୍ଦିବାର ଦେଖି ମୋର ରୋମ ଟାଙ୍କୁରି ଉଠିଲା। ଆଉ ସମ୍ଭାଳି ନ ପାରି ମୁଁ କାନ୍ଦି ଉଠିଲି। ମତେ କାନ୍ଦିବାର ଦେଖି ସେ ପୁଣି କହିଲେ, "ଗୋବିନ୍ଦ, କାନ୍ଦିଲେ କଣ ହେବ। ଯାହା ସତ୍ୟ, ଯାହା ନ୍ୟାୟ ବୋଲି ତୁମ୍ଭେ ଭାବୁଛ, ସେହି ପଥ ତୁମ୍ଭେ ଅନୁସରଣ କର। ପ୍ରଭୁ ତୁମ୍ଭର ସହାୟ ହେବେ। ମନୁଷ୍ୟର ସାହାଯ୍ୟ କିଛି ନୁହେଁ। ଈଶ୍ୱରଙ୍କର କୃପା ଓ ତାହାଙ୍କର ଅନୁଗ୍ରହ ମନୁଷ୍ୟର ଏକମାତ୍ର ସମ୍ବଳ। ତୁମ୍ଭେ ସେହି ସମ୍ବଳ ଲାଭ କରିବାକୁ ପ୍ରସ୍ତୁତ ହୁଅ।"

ଗୋପବନ୍ଧୁ ବାବୁଙ୍କ ନିକଟରୁ ଫେରି କଟକରେ ଆସି ଉପସ୍ଥିତ ହେଲି। ମନେ ମନେ ସ୍ଥିର କଲି ମୁଁ ଆଉ ସାକ୍ଷୀ ଦେବି ନାହିଁ। କେବଳ ଏହା ସ୍ଥିର କଲି ତାହା ନୁହେଁ, ସାକ୍ଷୀ ଦେବାର ସମୟ ହେଲେ ଦଣ୍ଡପଲ୍ଲୀ ଯିବି। ମେଳି ମକଦ୍ଦମା ବିଚାର କରୁଥିବା ଜଜ୍ ସାହେବଙ୍କ ଆଗରେ ସତ୍ୟ ଘଟଣା ସବୁ କହିବି। ସେତେବେଳକୁ ଦଣ୍ଡପଲ୍ଲୀ ମେଳି ମକଦ୍ଦମା ବିଚାର କରିବାପାଇଁ ଅନୁଗୁଳର ଡିପୋଟି କମିସନର ଲୁକସ୍ ସାହେବ ଜଜ୍ ହୋଇ ନିଯୁକ୍ତ ହେଲେଣି। ସେ ଯାଇ ଦଣ୍ଡପଲ୍ଲୀରେ ବର୍ତ୍ତମାନ ମେଳି ମକଦ୍ଦମା ବିଚାର କରୁଅଛନ୍ତି। ମେଳିଆ ବୋଲି ଯେଉଁମାନେ ଧରା ହୋଇ ଅଛନ୍ତି ସେମାନଙ୍କ ବିଚାର ଚାଲିଛି। ଦଣ୍ଡପଲ୍ଲୀ ମେଳିର ଯେପରି ନ୍ୟାୟ ବିଚାର ହେଲା ସେ ପୁଣି ଆଉ ଗୋଟିଏ ରହସ୍ୟ। ଏଥିରେ ବିହାର-ଓଡ଼ିଶା ସରକାର ମୁଖ୍ୟତଃ ଦାୟି। ଦଣ୍ଡପଲ୍ଲୀ ମେଳିକୁ ଇଂରେଜ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରାଯାଇଥିଲା ବୋଲି ଚିତ୍ରଣ କରାଯାଇଛି—Waging war againest British Government. ଏହି ଅପରାଧରେ ଦଣ୍ଡପଲ୍ଲୀର ମେଳିଆ କନ୍ଧଙ୍କ ବିଚାର ଚାଲିଛି। ଏତେ ବଡ଼ ଗୁରୁତର ଅପରାଧରେ ଅଭିଯୁକ୍ତ କରାହୋଇ ବିଚାର ଚାଲିଛି। ଅଥଚ ଅଭିଯୁକ୍ତ ବ୍ୟକ୍ତିମାନଙ୍କ ପକ୍ଷ ସମର୍ଥନ କରିବା ପାଇଁ କୌଣସି ବ୍ୟବସ୍ଥା କରାଯାଇ ନାହିଁ। ଓକିଲ ମୁକ୍ତିଆର କେହି ନାହାନ୍ତି। ସରକାରଙ୍କ ତରଫରୁ ମଧ୍ୟ ତହିଁର କୌଣସି ବ୍ୟବସ୍ଥା ହୋଇ ନାହିଁ। ଏପରି ଅବସ୍ଥାରେ ଲୁକସ୍ ସାହେବଙ୍କ ବୁଝାମଣା କିପରି

ହେଉଥିବ ତାହା କଳ୍ପନା କରି ନେବା ଉଚିତ। ଏସବୁ କଥା ମୁଁ ଜାଣୁଛି। ଦଶପଲ୍ଲା ମେଳିର ବିଚାର କିପରି ଚାଲଛି ତାହା ମଧ ବୁଝୁଛି। ଏସବୁ ଜାଣି ଓ ଶୁଣି ମୁଁ ଆହୁରି ଭୟଭୀତ ହୋଇ ଯାଉଛି। ତଥାପି ଭାବୁଛି, ମୁଁ ଦଶପଲ୍ଲା ଯିବି, ମେଳିର ଅସଲ ରହସ୍ୟ ମୁଁ ଯାହା ଜାଣେ ତାହା ଜଜ୍ ସାହେବଙ୍କ ଆଗରେ କହିବି। ଏଥିପାଇଁ ମତେ ଯାହା ଦଣ୍ଡ ଭୋଗ କରିବାକୁ ହେବ ତାହା ଭୋଗ କରିବି। କାରଣ ଜଜ୍ ଲୁକ୍ସ୍ ସାହେବଙ୍କ ଆଗରେ ଜଣେ କେହି ସତ୍ୟକଥା କହିବା ଦରକାର। ସେ ତ କିଛି ବୁଝି ପାରୁ ନ ଥିବେ। ବିଶ୍ୱାଳେ ଓ ଦାମ ବାବୁ ଯେଉଁ ଘଟଣା ଯେପରି ଆକାରରେ ତାହାଙ୍କ ଆଗରେ ଥୋଉଥିବେ, ସେ ତାହାକୁ ସେପରି ଭାବରେ ଦେଖୁଥିବେ। ଏପରି ସ୍ଥଳେ ମୁଁ ସତ୍ୟକଥା କହିବି। ଦଶପଲ୍ଲାରୁ ଏତେ ଲୋକ ମରିଗଲେ। ଏତେ ଲୋକ ସର୍ବସ୍ୱାନ୍ତ ହୋଇଗଲେ। ଏତେ ଲୋକ ଦଣ୍ଡ ପାଇବେ। ମୁଁ ଆଉ ଜଣେ ସେମାନଙ୍କ ସାଙ୍ଗକୁ ହେବି। ଏଥିପାଇଁ ଆଉ ଭୟ କରିବି ନାହିଁ।

To every man upon this earth,
Death comes soon or late.
But how can man die better,
Than facing fearful odds.

ମ୍ୟାକଲେଙ୍କର ଏହି ପଦ୍ୟଟି ମୋର ବରାବର ଏତେବେଳେ ମନେ ପଡ଼ିଲା। ଏହାକୁ ଉଚ୍ଚାରଣ କରି ମୁଁ ହୃଦୟରେ ଅଭୂତପୂର୍ବ ବଳ ଓ ସାହସ ଅନୁଭବ କଲି।

ଏହିପରି ନିଶ୍ଚୟ କରି ମୁଁ ଅଛି, ଏହି ସମୟରେ ଦଶପଲ୍ଲାରୁ ଦୀନବନ୍ଧୁ ପଣ୍ଡା ନାମରେ ଜଣେ ସ୍କୁଲ ଶିକ୍ଷକ ମତେ ନେବାକୁ କଟକ ଆସିଲେ। ସେ ଆସିଲା ମାତ୍ରକେ ମୁଁ ଦଶପଲ୍ଲା ବାହାରିଲି। ଦଶପଲ୍ଲାରୁ ମତେ ନେବାକୁ ହାତୀ ଖୋରଧାରୋଡ଼ ପର୍ଯ୍ୟନ୍ତ ଆସିଥାଏ। ଖୋରଧାରୋଡ଼ରେ ଉପସ୍ଥିତ ହୋଇ ପଣ୍ଡିତେ ଓ ମୁଁ ଦୁହେଁ ହାତୀରେ ବସି ଦଶପଲ୍ଲାରେ ଯାଇ ଉପସ୍ଥିତ ହେଲୁ। ଦଶପଲ୍ଲାରେ ଉପସ୍ଥିତ ହେବା ମାତ୍ରକେ ବିଶ୍ୱାଳେ ମତେ ଡକାଇ ପଠାଇଲେ। ଆଉଥର ମୋ ନିକଟରୁ କିଛି ଲେଖାଇ ରଖି ନାହାନ୍ତି। ମୋଠାରୁ ଲେଖାଇ ରଖିବାକୁ ସେମାନେ ଭୁଲି ଯାଇଥିଲେ ବୋଲି ମୋର ମନେ ହୁଏ ନାହିଁ। ସେମାନେ ଜାଣି ଶୁଣି ମୋଠାରୁ ବୋଧହୁଏ ଲେଖା ରଖି ନାହାନ୍ତି। ପ୍ରଥମତଃ ମୋ ଉପରେ ସେମାନଙ୍କର ପୂର୍ଣ୍ଣ ବିଶ୍ୱାସ ଜନ୍ମି ଯାଇଥିଲା। ତା'ପରେ, ଯଦି ମୁଁ ଭବିଷ୍ୟତରେ କିଛି ଗୋଳମାଳ କରେ, ଅର୍ଥାତ୍ ସେମାନଙ୍କ କଥାର ବହିର୍ଭୂତ ହୋଇ ସାକ୍ଷୀ ନ ଦିଏ, ତେବେ ସେମାନେ ମୋ ବିରୁଦ୍ଧରେ ମେଳି କରାଉଥିବା ଅପରାଧଟି ସହଜରେ ଖଞ୍ଜି ଦେଇ ପାରିବେ। ଏହା ଭାବି ସେମାନେ ସେତେବେଳେ ମୋଠାରୁ କିଛି ଲେଖାଇ ରଖି ନାହାନ୍ତି ବୋଲି ମୋର ସନ୍ଦେହ। ସେ ଯାହାହେଉ ବିଶ୍ୱାଳେ ଡକାଇଲା ମାତ୍ରକେ

ମୁଁ ତାଙ୍କ ନିକଟରେ ହାଜର ହେଲି। ପ୍ରଥମତଃ କେତେକ ବ୍ୟକ୍ତିଗତ ସୁଖ ଦୁଃଖ ପରେ ବିଶ୍ବାଳେ କହିଲେ ଯେ ସେ ମାଜିଷ୍ଟ୍ରେଟ ଭାବରେ ମୋଠାରୁ ଗୋଟିଏ ଇସ୍ତାହାର ଲେଖାଇ ନେବାକୁ ଚାହାନ୍ତି। ମୁଁ ଜଜ୍ ସାହେବଙ୍କ ଆଗରେ ଯାହା କହିବି, ସେସବୁ ବିଶ୍ବାଳଙ୍କ କୋର୍ଟରେ ଆଗ କହିବାକୁ ହେବ। ସେ ହେଉଛନ୍ତି ଦଶପଲ୍ଲା ଷ୍ଟେଟର ମାଜିଷ୍ଟ୍ରେଟ।

ବିଶ୍ବାଳଙ୍କ ନିକଟରୁ ଏହା ଶୁଣି ମୁଁ ସ୍ପଷ୍ଟ ମନା କରିଦେଲି ଯେ ମୁଁ କିଛି କହି ପାରିବି ନାହିଁ। ମୁଁ ସେତେବେଳେ ଡରି, ହଁ ଜାଣେ ବୋଲି କହି ଦେଇଥିଲି। କିନ୍ତୁ ବର୍ତ୍ତମାନ ମୁଁ ଆଉ କିଛି କହି ନ ପାରେ। ଏଥିପାଇଁ ମତେ କ୍ଷମା ଦିଅନ୍ତୁ। ମୋ ମୁହଁରୁ ଏତକ ବାହାରିଛି କି ନାହିଁ ବିଶ୍ବାଳଙ୍କ ରୂପ ବଦଳିଗଲା। ତାଙ୍କ କ୍ରୋଧର ସୀମା ରହିଲା ନାହିଁ। ସେ ଟେବୁଲ ଉପରେ ହାତକୁ କଚାଡ଼ି ଦେଇ ଅତି ପାଟିକରି ନାନା କଥା କହିବାକୁ ଆରମ୍ଭ କଲେ। ମୁଁ ଜଣେ ଛାତ୍ର ନ ହୋଇ ଦଶପଲ୍ଲାର ଜଣେ ଯଦି ଇତର ଲୋକ ହୋଇଥାନ୍ତି ତେବେ ମୋର ଅବସ୍ଥା କଣ ହୋଇଥାନ୍ତା ମୁଁ ମଧ ତାହା କଳ୍ପନା କରି ପାରୁ ନ ଥାଏ।

ହଠାତ୍ ଦାମ ରଥଙ୍କ ନିକଟକୁ ଲୋକ ଦୌଡ଼ିଲା। ରଥେ ଆପଣେ ଆସି ମଧ ତତ୍‌କ୍ଷଣାତ୍ ହାଜର ହୋଇଗଲେ। ସେ ଉପସ୍ଥିତ ହୋଇ ମତେ କିଛି ନ କହି ବିଶ୍ବାଳଙ୍କ ଉପରେ ରାଗିଲା ପରି କଥା କହିବାକୁ ଆରମ୍ଭ କଲେ। ଦାମ ରଥେ କହୁଥାଆନ୍ତି, "ଭାବଗ୍ରାହୀ ବାବୁ, ଆପଣଙ୍କୁ ସୁପରିନ୍‌ଟେଣ୍ଡେଣ୍ଟ କିଏ କଲା ମୁଁ ବୁଝିପାରୁ ନାହିଁ। ଦେଖୁଛି, ଆପଣଙ୍କର କିଛି ବୁଦ୍ଧି ନାହିଁ। ଗୋବିନ୍ଦ ଉପରେ ଆପଣ ମିଛରେ ରାଗୁଛନ୍ତି। ସେ କଟକ ଯାଇଥିଲା, କାହାଠାରୁ କଣ ଶୁଣି, ସବୁ ଭୁଲି ଯାଇଛି। ସେ ପିଲାଲୋକ, ବାରଲୋକ ବାରକଥା ତାକୁ କହିଥିବେ, ସେ ସବୁ ଶୁଣି ତାର ମନ ବଦଳିଯିବା ସ୍ବାଭାବିକ। ଆପଣ ଏତିକି ବୁଝି ନ ପାରି ମିଛରେ ତା' ଉପରେ ରାଗିଛନ୍ତି।" ଦାମବାବୁ ଏତକ ସେଠାରେ କହି, ମୋ କାନ୍ଧରେ ହାତ ପକାଇ ମତେ ସଂଗରେ ଧରି ତାଙ୍କ ବସାରେ ଆସି ହାଜର ହେଲେ। ରଥେ ଆପଣଙ୍କୁ ମଧ ସେହି କଥା କହିଲି। ମୁଁ କହିଲି, "ସେତେବେଳେ ଭୟରେ ମୁଁ ହଁ ମାରି ଦେଇଥିଲି। କିନ୍ତୁ ବୈଷ୍ଣବ ଦେଓ କିମ୍ବା ମେଳିଆ କନ୍ଧଙ୍କ ବିରୁଦ୍ଧରେ ସାକ୍ଷୀ ହୋଇ ଠିଆ ହେବା ମୋର ଆଉ ଇଚ୍ଛା ନୁହେଁ।" ଦାମବାବୁ ମୋ ଠାରୁ ଏସବୁ ଶୁଣି ମତେ ବହୁତ ବୁଝାଇଲେ। ପଲିଟିକେଲ ଏଜେଣ୍ଟଙ୍କ ସମ୍ମୁଖରେ ମୁଁ ସାକ୍ଷୀ ଦେବା କଥା କହି ବର୍ତ୍ତମାନ ନାହିଁ କରିବାରେ ମୋର କଣ କିପରି ଅନିଷ୍ଟ ଘଟିବ ତାହା ମଧ କହିଲେ। ସାକ୍ଷୀ ଦେବା ଓ ନ ଦେବାରେ କିପରି କଣ ହୋଇପାରେ ସେ ସବୁ ରଥେ ଆପଣେ ମତେ ବିଶ୍ଳେଷଣ କରି ବୁଝାଇ ଦେଲେ। ତାହାଙ୍କର କଥା ଶୁଣି ମୁଁ ପୁଣି କହିଲି, "ହଁ ମୁଁ ଜାଣୁଛି ଏବଂ ବୁଝୁଛି

ସେ ସାକ୍ଷୀ ଦେଲେ ମୋର ବହୁତ ମଙ୍ଗଳ ସାଧିତ ହୋଇ ପାରିବ। ଏପରିକି ପଲିଟିକେଲ ଏଜେଣ୍ଟଙ୍କ ଅନୁଗ୍ରହରେ ମୁଁ ମଧ୍ୟ କୌଣସି ଗୋଟିଏ ଷ୍ଟେଟରେ ଦେୱାନ୍ ସୁପରିଂଟେଣ୍ଡେଣ୍ଟ ହୋଇପାରେ। ମୁଁ ଇଚ୍ଛାକଲେ ଏକ୍ଷଣି କିଛି ଅର୍ଥ ମଧ୍ୟ ପାଇପାରେ। ଯଥେଷ୍ଟ ଭୂସମ୍ପତ୍ତି ଲାଭ କରିପାରେ। କିନ୍ତୁ ଏସବୁ ମତେ କିମ୍ୱା ମୋର ଆତ୍ମାକୁ ଶାନ୍ତି ଦେବ ନାହିଁ। ମୁଁ ଆପଣଙ୍କୁ ପ୍ରାର୍ଥନା କରୁଛି ଆପଣ ମତେ ଆଉ ସେଥିରେ ବଳାନ୍ତୁ ନାହିଁ। ମୁଁ କଦାପି ସାକ୍ଷୀ ଦେବି ନାହିଁ। ଆପଣ ଏସବୁ ମୋର ମଙ୍ଗଳପାଇଁ କହୁ ଅଛନ୍ତି। ଏହା ମଧ୍ୟ ମୁଁ ବୁଝୁଛି। ଏଥିପାଇଁ ଆପଣଙ୍କୁ ଅନ୍ତରର ଧନ୍ୟବାଦ ଅର୍ପଣ କରୁଛି।''

ମୋଠାରୁ ଏପରି କଥା ଶୁଣି ରଥେ ଆପଣେ ମତେ ଆଉ କିଛି କହିଲେ ନାହିଁ। ସେ ଭାବିନେଲେ ଯାକୁ ଆଉ କିଛି କହି ଲାଭ ନାହିଁ। କିନ୍ତୁ ମତେ କିଛି ନ କହିଲେ ମଧ୍ୟ ମତେ ତହିଁରୁ ମୁକ୍ତ କରାଉ ନାହାନ୍ତି। ସେମାନେ ଏଣିକି ସେମାନଙ୍କ ଦେଖିଲା କାମ କରିବ, ଏହି ପରାମର୍ଶ ଚାଲିଛି। ମୁଁ ଏକପ୍ରକାର ବର୍ତ୍ତମାନ ସେମାନଙ୍କ ନିକଟରେ ବନ୍ଦୀ।

ମତେ ବୁଝାଇ ସୁଝାଇ କାହିଁରେ ମୋର ମନ ନ ବଦଳିବାରୁ ସେଦିନ ରାତ୍ର ୯ଟା ସମୟରେ ମତେ ନେଇ ଗୋଟିଏ କୋଠରୀରେ ଭର୍ତ୍ତି କଲେ। ବିଶ୍ୱାଳେ, ଦାମବାବୁ, ଜଣେ ପୋଲିସ୍ ସବ୍‌ଇନ୍‌ସ୍ପେକ୍ଟର, ଆଉ ପୁଲିସ ହେଡ୍ କନେଷ୍ଟବଳ, ଏହି ଚାରିଜଣ ସେହି କୋଠରୀରେ ଉପସ୍ଥିତ ହେଲେ। ପଲିଟିକେଲ ଏଜେଣ୍ଟଙ୍କ ଆଗରେ ମୁଁ ଯେପରି ଯାହା କହି ଯାଇଥିଲି ରଥେ ଆପଣଙ୍କ କହିବା ଅନୁସାରେ ପୋଲିସି ଇନ୍‌ସ୍ପେକ୍ଟରେ ସେସବୁ ସେହିପରି ଖଣ୍ଡିଏ କାଗଜରେ ଲେଖି ପକାଇ ମତେ ତହିଁରେ ଦସ୍ତଖତ କରିବାକୁ କହିଲେ। ଦସ୍ତଖତ ଦେବାକୁ ମୁଁ ଟିକିଏ ଇତସ୍ତତଃ ହେବାରୁ ମତେ ଧମକ ଦେଇ ଏକପ୍ରକାର ମୋଠାରୁ ଜବରଦସ୍ତ ଦସ୍ତଖତ କରାଇ ନେଲେ, ଏକଥା କହିଲେ ତିଳେମାତ୍ର ଅତ୍ୟୁକ୍ତି ହେବ ନାହିଁ। ମୁଁ ମଧ୍ୟ ଦେଖିଲି ଯେ ଏଠାରେ ଏମାନଙ୍କ ସହିତ ଟଣା ଓଟରା କରିବାରେ କିଛି ଲାଭ ନାହିଁ? ସୁତରାଂ ମୁଁ ମଧ୍ୟ ବଙ୍କାଟଙ୍କା କରି ଯାହା ତାହାରେ ଗୋଟାଏ ଦସ୍ତଖି କରିଦେଇ ସେମାନଙ୍କ ଜୁଲୁମରୁ ସେ ରାତି ଖଲାସ ପାଇଲି। ମନେ ମନେ ବିଚାରି ନେଲି ଏହି ସମସ୍ତ ଘଟଣା ଜଜ୍ ସାହେବଙ୍କ ଆଗରେ କହିବି।

ତହିଁ ଆରଦିନ ସକାଳେ ଜଜ୍ ସାହେବଙ୍କ ବିଚାର ଦେଖିବାକୁ ହାଜର ହେଲି। ସେଦିନ ବିଚରା ହାଡ଼ିବନ୍ଧୁ ପଟ୍ଟନାୟକଙ୍କର ବିଚାର ଚାଲିଥାଏ। ହାଡ଼ିବନ୍ଧୁ ଦଶପଲ୍ଲାର କୋର୍ଟ ଇନ୍‌ସ୍ପେକ୍ଟର କାର୍ଯ୍ୟ କରୁଥିଲେ। ଏହି ହାଡ଼ିବନ୍ଧୁଙ୍କ ସାହାଯ୍ୟ ଓ ପରାମର୍ଶରେ ଭାବଗ୍ରାହୀ ବିଶ୍ୱାଳ ଦଶପଲ୍ଲାରେ କେତେ କାଣ୍ଡ ସୃଷ୍ଟି କରିଛନ୍ତି। ଏହାଙ୍କ ପରାମର୍ଶରେ ଭାବଗ୍ରାହୀ ଦଶପଲ୍ଲାରେ ଆଜି ସର୍ବଶକ୍ତିମାନ୍। ହାଡ଼ିବନ୍ଧୁ ବିଶ୍ୱାଳଙ୍କ ପରମ ସ୍ନେହୀ ଓ

ପରମ ବନ୍ଧୁ। ତଥାପି ବୃଦ୍ଧ ରାଜାଙ୍କ ମୃତ୍ୟୁ ପରେ ରାଜନବର ଅବସ୍ଥା ଛାରଖାର ହୋଇ ଯାଉଥିବାର ଉପଲବ୍ଧି କରି ହାଡ଼ିବନ୍ଧୁ ସହ୍ୟ କରି ପାରିଲେ ନାହିଁ। ବିଶ୍ୱାଳଙ୍କ ବିରୁଦ୍ଧରେ ଅନେକ କଥା ଉଲ୍ଲେଖ କରି ଖଣ୍ଡିଏ ଭିତିରିଆ ଚିଠି ପଲିଟିକେଲ ଏଜେଣ୍ଟଙ୍କ ନିକଟକୁ ପଠାଇଲେ। ସାହେବ ସେହି ଚିଠି ପାଇ ବିଶ୍ୱାଳଙ୍କ ନିକଟକୁ ଓ୍ୱାପସ୍ କରିଦେଲେ। ତହିଁରେ ହାଡ଼ିବନ୍ଧୁଙ୍କୁ ଧରି ବିଶ୍ୱାଳେ ଦେଢ଼ ବର୍ଷ ଜେଲଦଣ୍ଡ ଦେଇଥାନ୍ତି। ମେଳ ସମୟରେ ମେଳିଆମାନେ ଜେଲଖାନା ଭାଙ୍ଗିଦେବାରୁ ହାଡ଼ିବନ୍ଧୁ ପ୍ରାଣଭୟରେ ପଳାଇ ଅନ୍ୟ ଜିଲ୍ଲାରେ ଲୁଚି ରହିଥିଲେ। ତାହାଙ୍କୁ ଧରି ମେଳି କରାଇଥିବା ଅପରାଧରେ ଆଜି ତାହାଙ୍କର ବିଚାର ଚାଲିଛି। ତାହାଙ୍କର ଘର ଲୁଟ କରାଇ ଦିଆ ଯାଇଛି। ହାଡ଼ିବନ୍ଧୁଙ୍କ ସ୍ତ୍ରୀ, ବାଳକ ସେତେବେଳକୁ ଦାଣ୍ଡର ଭିକାରୀ କହିଲେ ଚଳେ। ଏହି ହାଡ଼ିବନ୍ଧୁଙ୍କ ବିଚାର କିପରି ଚାଲିଛି ତାହା ଦେଖିବାକୁ ମୁଁ ଆଜି ହାଜର ହୋଇଛି।

ବିଚାରା ହାଡ଼ିବନ୍ଧୁଙ୍କ ବିଚାର ଦେଖି ମୋର ଭ୍ରମ ଦୂର ହୋଇଗଲା। ମୋର ଆଖି ଖୋଲିଗଲା। ମୁଁ ଭାବିଥିଲି ଜଜ୍ ସାହେବଙ୍କ ଆଗରେ ସମସ୍ତ ଘଟଣା ପ୍ରକାଶ କରି ଦଶପଲ୍ଲା ମେଳିଆ ପ୍ରଜାଙ୍କର ଦୁଃଖ ଯନ୍ତ୍ରଣା କିଛି ହ୍ରାସ କରିବାକୁ ଚେଷ୍ଟା କରିବି। କିନ୍ତୁ ମୋର ସେହି ଚିନ୍ତା, ସେହି ଭାବନା ସବୁ ଭୁଲ। ମୁଁ ଯାହା ଆଖିରେ ଦେଖୁଛି, ତାହା କଥାରେ ପ୍ରକାଶ କରିପାରୁ ନାହିଁ। ମୁଁ ଦେଖୁଛି, ମୁଁ କହିବି, କିନ୍ତୁ ମୋ କଥା କେହି ଶୁଣିବେ ନାହିଁ। ମୁଁ ଏଠାରେ ଯାହା କହିବି, ସେସବୁ ହେବ ଅରଣ୍ୟ-ରୋଦନ। ମୁଁ କାହାରି କିଛି କରି ପାରିବି ନାହିଁ। ନିଜ ଜୀବନକୁ ବରଂ ବିପଦଗ୍ରସ୍ତ କରିବି। ଦଶପଲ୍ଲା ପ୍ରଜାଙ୍କର ଦୁଃଖ ଯନ୍ତ୍ରଣା ଦୂର କରିବାକୁ ଯଦି ଇଚ୍ଛା ଥାଏ, ତେବେ ଏଠାରୁ ଏମାନଙ୍କ କବଳରୁ ଖସିଯାଇ ଏ ସମସ୍ତ ବ୍ୟାପାର ଦେଶରେ ଯାଇ ପ୍ରଚାର କରି ବୁଲିବା ଦରକାର। ତାହା ନ କରି ଏଠାରେ ଜଜ୍ ସାହେବଙ୍କ ଆଗରେ ସେସବୁ କହିବାରେ କିଛି ମୂଲ୍ୟ ନାହିଁ। ମୋ କଥା କେହି ଶୁଣିବେ ନାହିଁ।

ଏହି ବିଚାର ମନରେ ପ୍ରବେଶ କରିବା ମାତ୍ରକେ ଦଶପଲ୍ଲା ଛାଡ଼ି ପଳାଇ ଆସିବାର କଳ୍ପନା ବାନ୍ଧିଲି। କିନ୍ତୁ ଆସିବି କିପରି ? ମୁଁ ଯେ ଏକ ପ୍ରକାର ବନ୍ଦୀ। ସବୁବେଳେ ମୋ ପଛରେ ଗୁପ୍ତ ପହରା। ମୁଁ ଏଠାରୁ ପଳାଉଛି କିପରି ? ଦଶପଲ୍ଲା ଗଡ଼ରେ ଶ୍ରୀଧର ମିଶ୍ର ନାମରେ ଜଣେ ମୋର ହିତାକାଂକ୍ଷୀ ବନ୍ଧୁ ଅଛନ୍ତି। ତାହାଙ୍କ ଘର ଗଡ଼ରେ। ସେ ଦଶପଲ୍ଲା କଚେରୀରେ ନବିସନ୍ଧା କାର୍ଯ୍ୟ କରନ୍ତି। ସେ ମଧ୍ୟ ମେଳିରେ ଧରାହୋଇ ବିଶ୍ୱାଳଙ୍କ ଠାରୁ ନାନା ନିର୍ଯ୍ୟାତନା ଭୋଗ କରନ୍ତି। ସହନଲାଲ ନାମରେ ଦଶପଲ୍ଲାରେ ଜଣେ ମାରବାଡ଼ି ବ୍ୟବସାୟୀ ଥାନ୍ତି। ତାହାଙ୍କୁ ମଧ୍ୟ ମୁଁ ଭଲ କରି ଜାଣେ। ସେ ମତେ ଅନେକ ସମୟରେ କଟକ ଆସିବାକୁ କିଛି କିଛି ସାହାଯ୍ୟ କରନ୍ତି। ମେଳିରେ ସେ ମଧ୍ୟ ବହୁତ ଦୁଃଖ କଷ୍ଟ ସହ୍ୟ କରିଛନ୍ତି।

ଅପର୍ଯ୍ୟାପ୍ତ ଅର୍ଥ ବିଶ୍ୱାଳଙ୍କୁ ଦେଇ ମେଳିରୁ ଖଲାସ ପାଇଅଛନ୍ତି। ଏହି ଦୁଇ ଜଣଙ୍କୁ ମୁଁ ମୋର ମନକଥା ଜଣାଇଲି। ଏମାନେ ପରାମର୍ଶ ଦେଲେ ଯେ ମୁଁ ଯଦି ପଳାଇ ଯାଇ ଜଣେ ଓକିଲ ଧରି ଦଶପଲ୍ଲାରେ ହାଜର ହୋଇପାରେ ତେବେ ହଜାର ହଜାର ଲୋକ ମୋତେ ସାହାଯ୍ୟ କରିବାକୁ ବାହାରି ପଡ଼ିବେ। ଟଙ୍କା ପଇସାରେ କୌଣସି ଅଭାବ ପଡ଼ିବ ନାହିଁ। ଓକିଲ ଧରି ଆସିବାର ଅସୁବିଧା ହେଲେ ଅତିଶୀଘ୍ର ଲାଟ, ବଡ଼ଲାଟଙ୍କ ନିକଟକୁ ଦଶପଲ୍ଲା ଅତ୍ୟାଚାରର କଥା ଲେଖି ଜଣାଇବାର ପ୍ରଯତ୍ନ କରିବା ଦରକାର। ଏ ଦୁଇଜଣ ମତେ ଏହିପରି ପରାମର୍ଶ ଦେଲେ। ସହନଲାଲ ବାଟଖର୍ଚ୍ଚ ପାଇଁ ମତେ ଦଶଟି ଟଙ୍କା ଦେଲେ। ମୁଁ ସେହିଦିନ ଯେ କୌଣସି ପ୍ରକାରେ ଦାମ ବାବୁ ଓ ବିଶ୍ୱାଳଙ୍କ ଆଖିରେ ଧୂଳି ପକାଇ ଦଶପଲ୍ଲାରୁ ଖସି ପଳାଇ ଆସିବାପାଇଁ ସଂକଳ୍ପ କଲି। ଏହା ଯଦି ନ କରେ ଦଶପଲ୍ଲା ପରି ଅନ୍ଧାରି ରାଜ୍ୟରେ ଯାହାସବୁ ଘଟୁଛି ଅବା ଘଟିଅଛି, ସେସବୁ ଅନ୍ଧକାର ଭିତରେ କୁଆଡ଼େ ଉଭେଇ ଯିବ। କେହି କିଛି ଜାଣି ପାରିବେ ନାହିଁ।

ଦଶପଲ୍ଲା ଗଡ଼ ନିକଟରେ କୁଆଁରିଆ ନାମରେ ଗୋଟିଏ ନଦୀ ଅଛି। ନଦୀର ଅପର ପାର୍ଶ୍ୱ ଜଙ୍ଗଲ। ଦିନ ଚାରିଟା ବେଳେ ମୁଁ ଘରେ ହାଜର ହୋଇ କହିଲି ଯେ ମତେ ଯଦି କେହି ଖୋଜିବାକୁ ଆସେ ତେବେ କହିଦେବ, ଗୋବିନ୍ଦ ଘରକୁ ଆସିଥିଲା, କୁଆଡ଼କୁ ଯାଇଛି; କହିଛି ରାତି ଆଠଟାରେ ଆସିବ।' ଏହି କଥା କହି ଘରୁ ବାହାରିଲି। ଏହି ନଦୀକୂଳରେ ହାଜର ହେଲି। ନଦୀ ଆରପାଖକୁ ପୋଖରୀ ଯିବା ବାହାନାରେ ନଦୀ ପାର ହୋଇ ଜଙ୍ଗଲରେ ପ୍ରବେଶ କଲି। ଜଙ୍ଗଲ ଭିତରେ ପ୍ରବେଶ କଲା ମାତ୍ରକେ ସେହି ଜଙ୍ଗଲ ଭିତର ଦେଇ ଦୌଡ଼ି ଦୌଡ଼ି ସନ୍ଧ୍ୟା ସାତଟାରେ ଆସି ଗଣିଆ ନାମକ ସ୍ଥାନରେ ହାଜର ହେଲି। ଗଣିଆରେ ଗୋଟିଏ ପୋଲିସ ଷ୍ଟେସନ ଅଛି । ଏଠାରେ ରାତ୍ରରେ ରହିଲେ ପୁଲିସ ଜାଣି ପାରିବ, ଏହି ଭୟରେ ବେଲପଡ଼ା ନାମକ ଗ୍ରାମକୁ ଗଲି। ବେଲପଡ଼ାରେ ନରସିଂହର ଘର।

ନରସିଂହ ନିକଟରେ ରାତ୍ର ୮ଟାରେ ମୁଁ ଯାଇ ହାଜର ହେଲି। ନରସିଂହ ସବୁ ଜାଣେ। ମୁଁ ଧରା ହୋଇ ସାକ୍ଷୀ ଦେବା କଥା ଜାଣେ। ସାକ୍ଷୀ ନ ଦେବାକୁ ମୁଁ ପ୍ରତିଜ୍ଞା କରିଥିବା କଥା ଜାଣେ। ସାକ୍ଷୀ ନ ଦେବାକୁ ମୋର ପ୍ରତିଜ୍ଞା ଜାଣି ନରସିଂହ ମୋର ଧୈର୍ଯ୍ୟ ଓ ସାହସକୁ ବହୁ ପ୍ରଶଂସା କରିଛି। ଆଜି ମୁଁ ହଠାତ୍ ଅଚାନକ ଭାବରେ ତାହା ନିକଟରେ ହାଜର ହେବାର ଦେଖି ସେ ଅବାକ୍ ହୋଇ ଗଲା। ନରସିଂହକୁ ଦେଖି ମୋର ବାକ୍-ରୁଦ୍ଧ ହୋଇଗଲା। ନରସିଂହ ମାଟ୍ରିକ ପରୀକ୍ଷା ଦେଇ ଘରେ ଅଛି। ତାହା ଦାଦା ତାଙ୍କ ପରିବାରକୁ ଭରଣପୋଷଣ କରୁଥିଲେ। ସେ ହେଉଛନ୍ତି ନରସିଂହ ଘରର ଏକମାତ୍ର ମୁରବୀ, ପୋଷଣକର୍ତ୍ତା। ନରସିଂହ ବଡ଼ ଗରୀବ। ଆଜି ତାହାର ଦାଦା ମେଳିରେ ଧରା ହୋଇଥିବାରୁ ନରସିଂହର ଚଳାଚଳ

ବଡ଼ କଷ୍ଟ। ନରସିଂହ ଘରେ ସମସ୍ତେ ଦିନେ ଦୁଇ ଦିନ ଧରି ଉପବାସ ରହି ଯାଉଛନ୍ତି। ଏହିପରି ଅବସ୍ଥାରେ ମୁଁ ତାର ଅତିଥି। ପ୍ରଥମେ ନରସିଂହ ମତେ ଦେଖି ମୁଁ ତାକୁ ଦେଖି କେହି କିଛି କହିପାରୁ ନାହୁଁ। ନରସିଂହ ମତେ ଦେଖି କାନ୍ଦୁଛି। ମୁଁ ମଧ୍ୟ ନରସିଂହକୁ ଦେଖି କାନ୍ଦୁଛି। କିଛି ସମୟ ପରେ ମୁଁ ନିଜକୁ ସମ୍ଭାଳି ନେଇ କହିଲି, ''ଭାଇ ନରସିଂହ, ମୁଁ ଯାଉଛି, ଏ ଜୀବନରେ ଆଉ ଦେଖା ହେବ କି ନାହିଁ କିଏ ଜାଣେ। ମୋର ଭବିଷ୍ୟତ ବଡ଼ ଅନ୍ଧକାର।'' ଏତିକି କହି ମୁଁ ନୀରବରେ ଠିଆ ହୋଇଛି। ମୋର ଆଖିରୁ ଲୁହ ବୋହି ଯାଉଛି। ମତେ ଏପରି ବ୍ୟାକୁଳ ହେବାର ଦେଖି ନରସିଂହ ବଡ଼ ଅଧୀର ହୋଇ ପଚାରିଲା, ''ଭାଇ, କଣ ହେଉଛି, ମୁଁ କିଛି ବୁଝି ପାରୁ ନାହିଁ, ମତେ ଶୀଘ୍ର କହ।' ନରସିଂହକୁ ମୁଁ ସବୁକଥା କହିଲି। ମୋର ପଳାଇ ଆସିବାର ଉଦ୍ଦେଶ୍ୟ ମଧ୍ୟ ବୁଝାଇଲି। ମୋଠାରୁ ଏସବୁ ଶୁଣି ନରସିଂହ ମୁହଁରୁ କଥା ବାହାରୁ ନଥାଏ। ଭୟ ଓ ଆନନ୍ଦରେ ସେ ଥରି ଉଠିଲା ପରି ଜଣା ଯାଉଥାଏ। ମୁଁ ତାହା ନିକଟକୁ ଆସିଛି, ଏହା ଜଣା ପଡ଼ିଲେ ତାକୁ ଧରିନେବେ ଏଥିପାଇଁ ତାର ଭୟ ଏବଂ ମୋର ସାହସରେ ତାର ଆନନ୍ଦ। ଏହିପରି ଭାବରେ ଆମ୍ଭ ଦୁଇ ବନ୍ଧୁଙ୍କ ମଧ୍ୟରେ କିଛି ସମୟ ଆଳାପ ଚାଲିଲା ପରେ ନରସିଂହ ଘରେ ସେଦିନ ରାତିକ ମୁଁ ଲୁଚି ରହିଲି। ତହିଁ ଆରଦିନ ରାତି ନ ପାହୁଣୁ ନରସିଂହ ଘର ଛାଡ଼ି ଚାଲି ଆସିଲି। ନରସିଂହ ମତେ ବାଟ ବଳେଇ ଦେବାକୁ ଆସିଲା। ରାତ୍ର ପାହି ସୂର୍ଯ୍ୟ ଉଦୟ ହେଲେ। ନରସିଂହ ମୋ ଠାରୁ ବିଦାୟ ନେଇ ଫେରିଲା। ମୁଁ ତା ଆଡ଼କୁ ଅନାଇଁ ଅନାଇଁ ବାଟ ଚାଲିଲି। ମୁଁ ଅଦୃଶ୍ୟ ହେବା ପର୍ଯ୍ୟନ୍ତ ନରସିଂହ ମତେ ଚାହିଁ ଠିଆହୋଇ ରହିଲା। ମୁଁ ଦଶପଲ୍ଲାରୁ ବିଦାୟ ନେଉଛି, ଦଶପଲ୍ଲାର ବଣ ଜଙ୍ଗଲ, ମାଟି ପଥର, ଆଜି ସବୁ ମତେ ଟାଣି ଧରିଲା ପରି ବୋଧ ହେଉଛି। ଏସବୁ ମାୟା ମମତାକୁ ପିଙ୍ଗଦେଇ ଆଜି ସମୁଦ୍ର ଗଡ଼କୁ ଡିଆଁ ମାରୁଛି। ମୋର ଆଜି ସବୁ ଅନିଶ୍ଚିତ। ମୁଁ କୁଆଡ଼େ ଯିବି, କେଉଁଠାକୁ ଯିବି, କଣ କରିବି ସବୁ ଅନିଶ୍ଚିତ।

ନରସିଂହ ନିକଟକୁ ବିଦାୟ ନେଲାବେଳେ ନରସିଂହ ଏସବୁ ବୁଝି ପାରିଛି। ମୁଁ ତା ନିକଟରୁ ଚିରକାଳପାଇଁ ଅନ୍ତର ହୋଇ ଚାଲି ଯାଉଛି। ଏହି ଭାବନା ମଧ୍ୟ ମୋ ମନରେ ଖେଳି ଯାଉଛି। ସେଥିପାଇଁ ନରସିଂହକୁ ମୁଁ ଭୁଲିପାରୁ ନାହିଁ। ଛାଡ଼ି ପାରୁ ନାହିଁ। ବାଟ ଚାଲିଲାବେଳେ ପଛକୁ ଚାହିଁ ଚାହିଁ ତାକୁ ଦେଖୁଛି। ନରସିଂହ ଅଦୃଶ୍ୟ ହୋଇ ଯାଉଛି। ଆଜି ମଧ୍ୟ ସେ ଅଦୃଶ୍ୟ ହୋଇଅଛି। ସେ ନରସିଂହ ଆଉ ଇହଜଗତରେ ନାହିଁ। ନରସିଂହ ଦଶପଲ୍ଲାରୁ ପ୍ରଥମେ ବି.ଏ. ପାଶ୍ କରିଥିଲା। ଖୋରଧା ସ୍କୁଲରେ ଶିକ୍ଷକ କାମ କରୁଥିଲା। ସେହିଠାରେ ସାନ୍ନିପାତିକ ଜ୍ୱର ହୋଇ ତାହାର ମୃତ୍ୟୁ ଘଟିଲା। ନରସିଂହ ମୋର ଅତି ପ୍ରିୟ ବନ୍ଧୁ। ମୋଠାରେ

ତାର ସ୍ନେହ ଶ୍ରଦ୍ଧା ଓ ଭକ୍ତି ଅସୀମ। ଜୀବନରେ ମୁଁ ଯଦି କାହାଠାରୁ ସ୍ନେହ ପାଇଥାଏ, ତେବେ ସେ ହେଉଛି ନରସିଂହ। ନରସିଂହକୁ ମୁଁ ଭୁଲି ନାହିଁ। ଜୀବନରେ ମଧ୍ୟ ଭୁଲି ପାରିବି ନାହିଁ। ନରସିଂହ ଆଜି ମୋର ପ୍ରତ୍ୟେକ କର୍ମ କ୍ଷେତ୍ରରେ ମନେ ପଡୁଛି। ଶାନ୍ତ, ସୌମ୍ୟ ଓ ଋଷିପ୍ରାଣ ନରସିଂହ ମୋ ଆଖିରେ ନାଚି ଯାଉଛି। ନରସିଂହର ମୃତ୍ୟୁରେ ଦଶପଲ୍ଲାର ବନ ଜଙ୍ଗଲ କାନ୍ଦିଛି ଏବଂ ଆଜି ମଧ୍ୟ ନରସିଂହକୁ ଝୁରୁଅଛି। ମୁଁ ଭୁଲିବି କିପରି ?

ସେ ଯାହାହେଉ ନରସିଂହକୁ ମୁଁ ଛାଡ଼ିଲି। ପ୍ରିୟଭୂମି ଦଶପଲ୍ଲାକୁ ଛାଡ଼ିଲି। ଦୌଡ଼ିବାକୁ ଆରମ୍ଭ କଲି। କେତେବେଳେ ଦୌଡ଼େ, କେତେବେଳେ ଚାଲେ। ଅପ୍ରେଲ ମାସ ଖରା, ବାଟ ତାତି ଯାଇଥାଏ। କିନ୍ତୁ ତାତିକୁ ଡରି ବିଶ୍ରାମ ନେବାକୁ ଡର କାହିଁ? ଭୟ ଥାଏ, କାଳେ ଦଶପଲ୍ଲାରୁ ପୋଲିସ ମୋ ପଛ ଧରିଥିବ ପରା। ସୁତରାଂ ଖରା, ତାତି କିଛି ନ ମାନି ମୁଁ ଦୌଡ଼ି ଦୌଡ଼ି ୫୫ ମାଇଲ ବାଟ ଚାଲି ଆସି ଖୋରଧା ଷ୍ଟେସନରେ ପହଞ୍ଚିଲି। ସେଠାରୁ ଗାଡ଼ିରେ ଚଢ଼ି କଟକରେ ଉପସ୍ଥିତ।

## ପଞ୍ଚମ ପରିଚ୍ଛେଦ

ଖୋରଧା-ରୋଡ଼ରେ ରାତି ୧୦ଟାରେ ଗାଡ଼ିରେ ଚଢ଼ି ରାତ୍ରି ପ୍ରାୟ ଗୋଟାକ ସମୟକୁ ମୁଁ ଆସି କଟକ ମିଶନ ସ୍କୁଲ ହିନ୍ଦୁ ହଷ୍ଟେଲରେ ହାଜର ହେଲି। ଦଶପଲ୍ଲାରୁ ପଳାଇ ଆସିଲା ବେଳେ ମୁଁ ଶୁଣିଥାଏ ଯେ, ବୈଷ୍ଣବ ଦେଓଙ୍କୁ ଧରିବାପାଇଁ ଓ୍ୟାରଣ୍ଟ କଟକ ଚାଲି ଗଲାଣି। ଏହି ସଂବାଦଟି ମୋର ଏତେ ଦ୍ରୁତ ଗତିରେ ଦୌଡ଼ିବାର ମଧ୍ୟ ଅନ୍ୟ ଗୋଟିଏ କାରଣ। ମୋର ଇଚ୍ଛା ବୈଷ୍ଣବ ଦେଓ ଧରା ହେବା ପୂର୍ବରୁ ମୁଁ ଯାଇ ତାହାଙ୍କୁ ଏହି ସଂବାଦ ଦେଇ ପାରିଲେ, ତାହାଙ୍କ ଦ୍ୱାରା କୌଣସି ଓକିଲକୁ ଦଶପଲ୍ଲା ଆଣିବାକୁ ସୁବିଧା ହେବ। କିନ୍ତୁ ମୋର ଏହି ଇଚ୍ଛା ପୂରଣ ହୋଇ ପାରିଲା ନାହିଁ। ମିଶନ ହିନ୍ଦୁ ହଷ୍ଟେଲରେ ଉପସ୍ଥିତ ହୋଇ ଶୁଣିଲି ବୈଷ୍ଣବ ଦେଓ ସେହିଦିନ ଦିବା ୨ଟା ସମୟରେ କଟକରେ ଧରା ହୋଇ ଅଛନ୍ତି। ବୈଷ୍ଣବ ଦେଓଙ୍କ ଧରା ହେବା ଘଟଣାଟି କଟକରେ ଗୋଟିଏ ଚହଳ ପକାଇ ଦେଇଛି ଓ ମିଶନ ହିନ୍ଦୁ ହଷ୍ଟେଲର ଛାତ୍ରମାନେ ସମସ୍ତେ ଜାଣିଛନ୍ତି। ମୁଁ ଉପସ୍ଥିତ ହେବା ମାତ୍ରକେ ଏ ସଂବାଦ ପାଇବାରୁ ମୁଁ ଚମକି ପଡ଼ିଲି। ଯାହାଙ୍କ ସାହାଯ୍ୟରେ ଓକିଲ ଧରି ଦଶପଲ୍ଲା ଫେରିବାକୁ ବିଚାର ବାନ୍ଧି ଦଶପଲ୍ଲାରୁ ପଳାଇ ଆସିଲି, ସେ ଧରା ହୋଇଗଲେ। ମୁଁ କାହାକୁ କହିବି ? ମୋ କଥାରେ ବିଶ୍ୱାସ କରି କୌଣସି ଓକିଲ ଦଶପଲ୍ଲା ଯିବାକୁ ରାଜି ହେବେ କାହିଁକି ? ଦଶପଲ୍ଲାରୁ ପଳାଇ ଆସି ବଡ଼ ବିପଦରେ

ପଡ଼ିଲି। କଅଣ କରିବି, କୁଆଡ଼େ ଯିବି, କାହାକୁ କହିବି, କିଛି ବୁଝି ପାରିଲି ନାହିଁ। ଏହିପରି ନାନା ପ୍ରଶ୍ନ ମନରେ ଆସି ଖେଳିଗଲା। ମୋ ମନ ଅତି ଚଞ୍ଚଳ ହୋଇଉଠିଲା। ମତେ ଏପରି ପାଗଳ ପରି କଥାବାର୍ତ୍ତା କରିବାର ଦେଖି, କିଏ କେତେ ପ୍ରକାର ପ୍ରଶ୍ନ କଲେ। ମୁଁ ଦେଖିଲି ବୋଡ଼ିଙ୍ଗରେ ରହିବା ମୋ ପକ୍ଷରେ ନିରାପଦ ନୁହେଁ। ତହିଁ ଆରଦିନ ସକାଳୁ ସ୍କୁଲକୁ ଗଲି। ସକାଳ ବେଳା ସ୍କୁଲ ହେଉଥାଏ। ସ୍କୁଲରେ ଉପସ୍ଥିତ ହେଲି। ସେଠାରେ ମଧ୍ୟ ମନ ଥୟ ହୋଇ ରହିଲା ନାହିଁ। ମୁଁ ଯାଇ କନିକା ରାଜାଙ୍କ ନିକଟରେ ପହଞ୍ଚିଲି। ବୈଷ୍ଣବ ଦେଓ କନିକା ରାଜାଙ୍କ ମଉଳା ଶୁର, ଏହା ଆଗରୁ ଉଲ୍ଲେଖ କରିଛି। ଏହାଙ୍କୁ କହି ବୈଷ୍ଣବ ଦେଓଙ୍କ ସକାଶେ ଜଣେ ଓକିଲ ପଠାଇବାର ବନ୍ଦୋବସ୍ତ କରିବି। ଏହି ଇଚ୍ଛାରେ କନିକା କୋଠିରେ ହାଜର ହେଲି। କନିକା ରାଜାଙ୍କ ସହିତ ଦେଖା ହେଲା। ସମସ୍ତ ଘଟଣା ମୁଁ ତାହାଙ୍କୁ ଶୁଣାଇ କିଛି ଟଙ୍କା ପଇସା ଅନ୍ତତଃ ଧାର ସ୍ୱରୂପ ସାହାଯ୍ୟ କରିବାକୁ ଅନୁରୋଧ କଲି। ମୋଠାରୁ ଏସବୁ ଶୁଣି କିଏ ଓକିଲ ଯିବେ, କେତେ ଟଙ୍କା ପ୍ରଥମେ ଦରକାର, ଏସବୁ ବୁଝି ଜଣାଇବାକୁ ସେ ମତେ ଆଦେଶ ଦେଲେ। ତାହାଙ୍କ ଆଦେଶ ପାଇ ମୁଁ ଯାଇ ବାବୁ ଶରତଚନ୍ଦ୍ର ମୁଖାର୍ଜି ନାମକ ଓକିଲଙ୍କ ସହିତ ପରାମର୍ଶ କଲି। ସେ ଦଶପଲ୍ଲା ଯିବାକୁ ରାଜି ହେଲେ। ଦିନକୁ ଶହେ ଟଙ୍କା ସେ ନେବେ। ତାହାଙ୍କ ସହିତ ଦୁଇଜଣ ସାନ ଓକିଲ ଯିବେ। ସେମାନେ ଦିନକୁ ପଚାଶ ଟଙ୍କା କରି ନେବେ। ପ୍ରଥମତଃ ପନ୍ଦର ଦିନର ଖର୍ଚ୍ଚ ଆଗତୁରା ନ ପାଇଲେ ସେମାନେ ଯିବେ ନାହିଁ। ହିସାବ କରି ଦେଖିଲି ଅତି କମ୍‌ରେ ତିନି ହଜାର ଟଙ୍କା ନ ହେଲେ ନ ଚଳେ। ଏସବୁ ଠିକ କରି ମୁଁ ପୁଣି କନିକା କୋଠିରେ ହାଜର ହେଲି। କିନ୍ତୁ ଶୁଣିଲି କନିକା ରାଜା କୌଣସି ବିଶେଷ କାର୍ଯ୍ୟ ଉପଲକ୍ଷରେ କଟକ ଛାଡ଼ି ରାତ୍ରି ଚାଲିଗଲେଣି। ତାହାଙ୍କ ସହିତ ଦେଖା ହୋଇ ନ ପାରିବାରୁ ଓକିଲ ଧରି ଦଶପଲ୍ଲା ଫେରିବାର ମୋର ସମସ୍ତ ଆଶା ବୃଥା ହେଲା। ଏହାପରେ ମୁଁ ଯାଇ ମଧୁବାବୁଙ୍କ ନିକଟରେ ହାଜର ହେଲି। ଏଥି ପୂର୍ବରୁ ଆଉ ଥରେ ମଧୁବାବୁଙ୍କ ନିକଟକୁ ଦଶପଲ୍ଲା ମେଳି ବିଷୟ କହିବାକୁ ଯାଇଥିଲି। ସେ ମୋଠାରୁ ମେଳି ବିଷୟ ଶୁଣି ଅତ୍ୟାଚାର ଭୋଗିଥିବା ଜଣେ ଦୁଇଜଣ ଲୋକଙ୍କୁ କଳ କୌଶଳରେ ଦଶପଲ୍ଲାରୁ ଆଣି ତାହାଙ୍କ ନିକଟରେ ପହଞ୍ଚାଇବାକୁ ମତେ ପରାମର୍ଶ ଦେଇଥିଲେ। ତାହା ମୁଁ କହି ପାରି ନାହିଁ। ଦଶପଲ୍ଲାରେ କଟକ, ପୁରୀ ନାମ ଉଚ୍ଚାରଣ କଲେ, ନାନା ପ୍ରକାର ସନ୍ଦେହ କରି ଲୋକଙ୍କୁ ଧରି ନେଇ ମାଡ଼ ଦିଆଯାଉଛି। ଏପରି ଅବସ୍ଥାରେ ଦଶପଲ୍ଲାରୁ ଲୋକ ଆସି ମଧୁବାବୁଙ୍କ ନିକଟରେ ହାଜର ହେବେ କିପରି। ସେ ଯାହାହେଉ, ମୁଁ ପୁଣି ଆଉଥରେ ମଧୁବାବୁଙ୍କ ନିକଟକୁ ଗଲି। ସେ ମତେ ଦେଖିଲା ମାତ୍ରେ ରାଗିକରି କହିଲେ, "ଛାତ୍ରମାନଙ୍କର ଏସବୁ

କାର୍ଯ୍ୟ ନୁହେଁ। ମୁଁ ତୁମକୁ କହିଲି, ଅତ୍ୟାଚାର ଭୋଗିଥିବା ଦୁଇ ଚାରିଜଣ ଲୋକଙ୍କୁ ମୋ ନିକଟକୁ ନେଇ ଆସ। ମୁଁ ଚେଷ୍ଟା କରି ଦେଖିବି, କଣ କରାଯାଇ ପାରେ। ତାହା ନ କରି ମୋ ପାଖକୁ ମିଛରେ ଦୌଡ଼ିଲେ ମୁଁ କଣ କରି ପାରେ। ତୁମେ ଯାଅ, ମୋ ନିକଟରୁ ଯାଅ।''

ମଧୁବାବୁଙ୍କ ଠାରୁ ଏହିପରି ବାକ୍ୟ ଶୁଣି ମୁଁ ଅତି ନିରାଶରେ ଫେରିଲି। ମଧୁବାବୁ ଅବଶ୍ୟ ଯାହା କହିଲେ ତାହା ଠିକ କଥା। କିନ୍ତୁ ଦଶପଲ୍ଲାରୁ କାହାକୁ କଟକ ଆଣିବାର ବାଟ ମତେ କିଛି ଦେଖାଗଲା ନାହିଁ। ମଧୁବାବୁଙ୍କ ନିକଟରୁ ଫେରି ମୁଁ ଜାନକୀ ବାବୁଙ୍କ ନିକଟରେ ହାଜର ହେଲି। ଜାନକୀ ବାବୁ ବୈଷ୍ଣବ ଦେଓଙ୍କ ଓକିଲ ଥିଲେ। ବୈଷ୍ଣବ ଦେଓଙ୍କ ତରଫ ଓକିଲ ହୋଇ ଦଶପଲ୍ଲା ଯିବାପାଇଁ ତାହାଙ୍କୁ ଅନୁରୋଧ କଲି। ସେ କହିଲେ, ''ଦଶପଲ୍ଲା ଯାଇ ସେଠାରେ ବର୍ତ୍ତମାନ କଣ କରାଯାଇ ପାରେ। ବୈଷ୍ଣବ ଦେଓଙ୍କ ବିଚାର ସେଠାରେ କିପରି କଣ ହେଉଛି ତାହା ହୋଇ ଯାଉ। ଏଠାରେ ତହିଁର ଅପିଲ ଦାଏର କରିବା।'' ତାହାଙ୍କଠାରୁ ଏତକ ଶୁଣିଲି। କିନ୍ତୁ ତାହାଙ୍କ କଥାରେ ମୋର ମନ ମାନିଲା ନାହିଁ। ମୁଁ ବର୍ତ୍ତମାନ କରେ କଣ। ମତେ କିଛି ବୁଦ୍ଧି ଦେଖାଗଲା ନାହିଁ।

ଇତିମଧ୍ୟରେ ମୋ ନାମରେ ଦଶପଲ୍ଲାରୁ ଓ୍ୱାରେଣ୍ଟ ନେଇ ପୋଲିସ ଆସି କଟକରେ ହାଜର ହେଲା। ମିଶନ ହିନ୍ଦୁ ହଷ୍ଟେଲରେ ସବୁବେଳେ ଜଗି ରହିଲା। କଟକରେ ସ୍ଥାନ ବିଶେଷରେ ମତେ ଧରିବାକୁ ଅନୁସନ୍ଧାନ ଚାଲିଲା। ମୁଁ ଦିନେ ଦୁଇ ଦିନ କଟକରେ ଲୁଚି ରହିଲି। ରାତିରେ ଯାଇ ହରହରି ଘାଟ ନଦୀ ବନ୍ଧରେ ଶୋଇ ରହେ। ଦିନ ତମାମ ଗୋରାକବର ଆଡ଼େ ଯାଇ ବୁଲୁଥାଏ। ଏହିପରି ଅବସ୍ଥାରେ, ସେତେବେଳକୁ ବାବୁ ବର୍ତ୍ତମାନ ସୁପରିଚିତ ସ୍ୱାମୀ ବିଚିତ୍ରାନନ୍ଦ ଦାସ ଓକିଲଙ୍କ ନିକଟରେ ପହଞ୍ଚିଲି। ଦଶପଲ୍ଲା ମେଳିରେ ମୁଁ ଯଦି ଧରା ହୁଏ, ତେବେ ସେ ମତେ ଓକିଲ ଭାବରେ ସାହାଯ୍ୟ କରିବାପାଇଁ ତାହାଙ୍କୁ ଅନୁରୋଧ କଲି। ସେ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଲେ। କିନ୍ତୁ ତାହାଙ୍କ କଥାରେ ମୋର ଆତ୍ମ ବିଶ୍ୱାସ ଜନ୍ମିଲା ନାହିଁ। ଦଶପଲ୍ଲା ମେଳି ପରି ଅତ୍ୟାଚାରରେ ତାହାଙ୍କ ଓକିଲାତି ମତେ କିମ୍ୱା ଦଶପଲ୍ଲା ପ୍ରଜାଙ୍କୁ ରକ୍ଷା କରିପାରିବ, ଏଭଳି ବିଶ୍ୱାସ କାହିଁକି ମୋର ହୃଦୟରେ ସ୍ଥାନ ପାଇଲାନାହିଁ। ବିଚିତ୍ରାନନ୍ଦ ବାବୁ ସେତେବେଳକୁ ଓକିଲାତି କରିବାର ଅଳ୍ପ ଦିନ ହେବ। ତାହାଙ୍କୁ ମୁଁ ମଧ୍ୟ ଭଲ କରି ଜାଣି ନଥାଏ। କିନ୍ତୁ ମୋର ସେତେବେଳ ସମୟରେ କଟକରେ ସମସ୍ତେ ମୋ ସହିତ କଥା ହେବାକୁ କିମ୍ୱା ମତେ ପାଖରେ ରଖିବାକୁ ଭୟ କଲେ। ଏପରି ସମୟରେ ବିଚିତ୍ରାନନ୍ଦ ବାବୁ ସେ ଘଟଣାରେ କଣ କରିପାରିଥାନ୍ତେ ସେ କଥା ନ ଜାଣି କିଛି କହିହେଉ ନାହିଁ। ତଥାପି ତାହାଙ୍କ ସହାନୁଭୂତି-ସୂଚକ କଥା ଦୁଇପଦ ମତେ ସେତେବେଳେ ଅତ୍ୟନ୍ତ

ଭଲ ଲାଗିଥିଲା । ମୋର ମନେ ହେଲା ସତେ ଯେପରି ସେ ଜଣେ ମୋର ବହୁଦିନର ପରିଚିତ ଆତ୍ମୀୟ ବ୍ୟକ୍ତି ।

ସେ ଯାହାହେଉ କଟକ ଆସି ଓକିଲ ଧରି ଦଶପଲ୍ଲା ଫେରି ଯିବାର ସମସ୍ତ ଆଶାଦୂର ହେଲା । କଟକରୁ କାହାରିଠାରୁ କୌଣସି ପ୍ରକାର ବିଶେଷ ସାହାଯ୍ୟ ପାଇବାର ବିଶ୍ୱାସଯୋଗ୍ୟ ଆଶ୍ୱାସନା ପାଇଲି ନାହିଁ । କଟକରେ ଏଣିକି ରହିବା ମତେ ନିରାପଦ ଜଣାଗଲା ନାହିଁ । ମୁଁ ଦୁଇଖଣ୍ଡି ଚିଠି ରେଜିଷ୍ଟରୀ କଲି । ଖଣ୍ଡିଏ ପଲିଟିକାଲ୍ ଏଜେଣ୍ଟଙ୍କ ନିକଟକୁ, ଆଉ ଖଣ୍ଡିଏ ଦଶପଲ୍ଲା ମେଳି ମକଦ୍ଦମା ବିଚାର କରୁଥିବା ଲୁକ୍ ସାହେବଙ୍କ ପାଖକୁ । ସେଥିରେ ମତେ ଧରିନେଇ ମିଥ୍ୟା ସାକ୍ଷୀ ଦେବାକୁ ଯେପରି ଯାହା କରାଯାଇଥିଲା, ସେ ସମସ୍ତ ବିଷୟ ଉଲ୍ଲେଖ କରି ପତ୍ର ଲେଖିଲି । ମୋ ନାମରେ ଯଦି କିଛି ଲେଖା ବିଶ୍ୱାକେ କିମ୍ବା ବାବୁ ଦାମୋଦର ରଥ କୋର୍ଟରେ ଦାଖଲ କରନ୍ତି ତେବେ ତାହା ସେମାନେ ଜାଲ୍‌ରେ କରିବେ ଜଣାଇ ସେପରି ଲେଖା ଗ୍ରହଣ ନ କରିବାକୁ ଉକ୍ତ ପତ୍ରରେ ଅନୁରୋଧ କଲି । ଏହିପରି ଦଶପଲ୍ଲା ଅତ୍ୟାଚାର କାହାଣୀ ଦେଶରେ କିପରି ପ୍ରଚାର ହେବ, ଲାଟ ବଡ଼ ଲାଟଙ୍କ ନିକଟରେ ଜଣାଇବାକୁ କିପରି ସୁବିଧା ମିଳିବ, ଏହି ପ୍ରଶ୍ନ ମୋ ମନରେ ଜାଗି ଉଠିଲା । କିନ୍ତୁ ଏହି କାର୍ଯ୍ୟ ମୁଁ କିପରି କରିବି ଭାବି କିଛି ସ୍ଥିର କରି ପାରିଲି ନାହିଁ । ଓଡ଼ିଶାରେ ମତେ କେହି ଦେଖାଗଲେ ନାହିଁ, ଯେ କି ମତେ ଏହି କାର୍ଯ୍ୟରେ ସାହାଯ୍ୟ କରି ପାରିବେ । ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ବାନାର୍ଜିଙ୍କ ନାମ ଶୁଣିଥାଏ । ତାହାଙ୍କ ନିକଟକୁ ଖଣ୍ଡିଏ ପତ୍ର ରେଜିଷ୍ଟରୀ କଲି । ଏହିସବୁ କାର୍ଯ୍ୟ ମୁଁ ୩/୪ ଦିନ ଭିତରେ କରିଛି । କଟକରେ ରହିବା ମତେ ଅସମ୍ଭବ ଜଣାଗଲା । କଟକ ଛାଡ଼ି କଲିକତା ପଳାଇବାକୁ ସ୍ଥିର କଲି । କଟକ ଛାଡ଼ିବା ପୂର୍ବରୁ ଥରେ ମିଶନ ହିନ୍ଦୁ ହଷ୍ଟେଲର ସାଥି ପିଲାଙ୍କୁ ଦେଖି ଯିବାକୁ ଭାରି ଇଚ୍ଛା ହେଲା । ବିଶେଷରେ ଉପେନ୍ଦ୍ରଚନ୍ଦ୍ର ମିଶ୍ର ଓ ହୃଦାନନ୍ଦ ଶତପଥୀ ନାମକ ଦୁଇଟି ଛାତ୍ରଙ୍କ ସହିତ କଥା ନ ହୋଇ କଟକ ଛାଡ଼ିବାକୁ ଇଚ୍ଛା ହେଲାନାହିଁ । ଉପେନ୍ଦ୍ର ଓ ହୃଦାନନ୍ଦ ବୟସରେ ମୋଠାରୁ ବହୁତ ସାନ । ମୋର ତଳ କ୍ଲାସରେ ସେ ଦୁଇଜଣ ପଢୁଥାନ୍ତି । ମିଶନ ସ୍କୁଲ ହିନ୍ଦୁ ହଷ୍ଟେଲରେ ଏକାଠି ରହିଛୁ । ଅନେକ କଥାରେ ସେ ଦୁହେଁ ମୋର ପରାମର୍ଶରେ ଚଳନ୍ତି । ମୋତେ ଜ୍ୟେଷ୍ଠ ଭ୍ରାତୃତୁଲ୍ୟ ଭକ୍ତି ମଧ୍ୟ କରନ୍ତି । ଏପରି କି ଇତିମଧ୍ୟରେ ଉପେନ୍ଦ୍ରଙ୍କ ଗ୍ରାମ ମଉଦାକୁ ଯାଇ ମୁଁ ବୁଲି ଆସିଛି । ଉପେନ୍ଦ୍ରଙ୍କ ପିତା ଶ୍ରୀଯୁକ୍ତ ପଣ୍ଡିତ ଆର୍ତ୍ତତ୍ରାଣ ମିଶ୍ର ମଉଦାର ଜମିଦାର । ଉପେନ୍ଦ୍ର ଘର କଟକ ସାଲେପୁର ଥାନା ଭିତରେ । ଜଣେ ପ୍ରସିଦ୍ଧ ଜମିଦାର ଘର । ମୁଁ ତାଙ୍କ ଘରକୁ ଯାଇଛି । ଉପେନ୍ଦ୍ରଙ୍କ ପିତା ମୋ ପ୍ରତି ପୁତ୍ରବତ୍ ସ୍ନେହ ଦେଖାଇଅଛନ୍ତି । ଏହିପରି ଭାବରେ ଉପେନ୍ଦ୍ରଚନ୍ଦ୍ର ମିଶ୍ରଙ୍କ ସହିତ ମୋର ଘନିଷ୍ଠତା ଅଛି । ଏ ଦୁଇଜଣଙ୍କୁ ଛାଡ଼ି

ବେଳେ ମଧ ହଷ୍ଟେଲରେ ଅନ୍ୟାନ୍ୟ ସମସ୍ତ ଛାତ୍ର ମତେ ଟିକିଏ ଭକ୍ତିଭାବରେ ଦେଖନ୍ତି। ଅନେକ ସମୟରେ କେତେକ ବିଷୟରେ କେହି କେହି ମୋର ପରାମର୍ଶ ମଧ ଲୋଡ଼ନ୍ତି। ସିତିକଣ୍ଠ କର, ବନମାଳୀ କର ନାମରେ ଆଉ ଦୁଇଟି ଛାତ୍ର ମଧ ମୋର ଅତ୍ୟନ୍ତ ସ୍ନେହୀ ବନ୍ଧୁ ଥାନ୍ତି। ଏ ସମସ୍ତଙ୍କୁ ଦେଖା ନ କରି କଟକ ଛାଡ଼ି ଆସିବାକୁ ମୋର ମନ ବଳିଲା ନାହିଁ। କଟକ ଆସିଲା ଦିନ ରାତିରେ ଯାହା ମୁଁ ହଷ୍ଟେଲରେ ଥିଲି। ତହିଁଆର ଦିନ ସକାଳୁ ଆଉ ହଷ୍ଟେଲକୁ ଯାଇ ନାହିଁ।

ସେ ଯାହାହେଉ କଲିକତା ଗଲା ବେଳକୁ ଦିନ ଗୋଟାକ ବେଳେ ମୁଁ ଯାଇ ହଷ୍ଟେଲ ପଛ କିଲା ପଡ଼ିଆରେ ଥିବା କେତୋଟି ଆମ୍ବ ଗଛର ଆଢୁଆଳରେ ଲୁଚି ବସି ପିଲାମାନଙ୍କୁ ସଂବାଦ ଦେଲି। ସକାଳ ସ୍କୁଲ ହେତୁ ପିଲାମାନେ ସମସ୍ତେ ସେତେବେଳକୁ ହଷ୍ଟେଲରେ ଥାନ୍ତି। ମୁଁ ଡାକୁଛି ଶୁଣି ପିଲାମାନେ ସମସ୍ତେ ଦୌଡ଼ିଆସିଲେ। ସେମାନେ ହଷ୍ଟେଲର ହତାଭିତରେ, ମୁଁ ହତା ବାହାର ଠିଆ ହୋଇଥାଏ। ପିଲାମାନଙ୍କୁ ଦେଖି ମୋର ଆଖି ଲୋତକପୂର୍ଣ୍ଣ ହୋଇଗଲା। ମୁଁ କାନ୍ଦ କାନ୍ଦ ହୋଇ କହିଲି, ''ଭାଇ, ଏତେଦିନ ଏକାଠି ଥିଲେଇଁ। ବର୍ତ୍ତମାନ ମୁଁ ତୁମ୍ଭମାନଙ୍କ ନିକଟରୁ ଅନ୍ତର ହେଉଅଛି। ଆଉ ଏ ଜୀବନରେ ଦେଖା ମିଳିବ କି ନାହିଁ ସନ୍ଦେହ। ମୋର ଦୋଷ ତ୍ରୁଟି ସବୁ କ୍ଷମା କରିବ। ମତେ ଭୁଲି ଯିବ ନାହିଁ। ମୁଁ ଯାଉଛି, ମତେ ବିଦାୟ ଦିଅ। ତୁମ୍ଭମାନଙ୍କୁ ଟିକିଏ ଦେଖି ବିଦାୟ ନେବାକୁ ମୁଁ ଚାଲି ଆସିଛି।'' ଏହି କେତୋଟି ବାକ୍ୟ କହୁ କହୁ ମୋର ବାକ୍‌ରୁଦ୍ଧ ହୋଇଗଲା। ପିଲାମାନେ ସମସ୍ତେ ମଧ କାନ୍ଦି ପକାଇଲେ। ମୁଁ ଆଉ କିଛି ନ କହି, କିଏ କଣ କହୁଛି, ତାହା ନ ଶୁଣି ଗୋଟିଏ ନମସ୍କାର କରି ଏକ ମୁଖରେ ଷ୍ଟେସନ ଆଡ଼କୁ ଗତି କଲି। ମନରେ ଭୟ ହେଲା, ପୋଲିସ ଜାଣିପାରିଲେ ମତେ ଧରିନେବ। ଏହି ଭୟ ହଷ୍ଟେଲ ପିଲା ବନ୍ଧୁମାନଙ୍କୁ ଛାଡ଼ି ଆସୁଥିବାରୁ ଦୁଃଖରେ ଅଭିଭୂତ ହୋଇ ମୁଁ ଷ୍ଟେସନରେ ହାଜର ହେଲି। ପୁରୀ-କଲିକତା ପାସେଞ୍ଜର ଗାଡ଼ିରେ ଟିକଟ କରି କଲିକତା ଚାଲିଲି। କଟକ ଛାଡ଼ିଲାବେଳର ଏହି ସବୁଘଟଣା ଅଦ୍ୟାପି ମୋର ମନେ ପଡୁଛି। ସେ ସବୁ ମନେ ପଡ଼ିଗଲା ବେଳେ ମନରେ କେତେ ଭାବନା ଖେଳିଯାଏ। ଏ ସବୁ ଜୀବନରେ ଭୁଲିବାର ନୁହେଁ। ଏହିସବୁ ସ୍ମୃତି ବର୍ତ୍ତମାନ ମୋର ରାଜନୈତିକ ଜୀବନର ଏକମାତ୍ର ସମ୍ବଳ ଓ ସାଥି ବୋଲି ମୁଁ କହିପାରେ।

■ ■

## ଚତୁର୍ଥ ଭାଗ

## ପ୍ରଥମ ପରିଚ୍ଛେଦ

୧୯୧୫ ମସିହା ଏପ୍ରିଲ କିମ୍ବା ମଇ ମାସ ହବ, ମୁଁ ଯାଇ ସକାଳୁ କଲିକତା ନଗରୀରେ ଉପସ୍ଥିତ ହେଲି। କଲିକତା ନଗରୀ ବିଷୟରେ ବହୁବାର ବହୁ ଲୋକଙ୍କଠାରୁ ବହୁ ଗଳ୍ପ ସବୁ ଶୁଣିଥାଏ। କଲିକତା ଦେଖିବା ଜୀବନର ଗୋଟିଏ ବଡ଼ ଆକାଂକ୍ଷା ଥାଏ। କଲିକତା ଦେଖିବାର ସୌଭାଗ୍ୟ ହଠାତ୍ ଏପରି ଅଚାନକ ଭାବରେ ଉପସ୍ଥିତ ହେବ ବୋଲି କିଏ ଜାଣିଥିଲା! କଟକ ଷ୍ଟେସନରେ ଗାଡ଼ିରେ ଚଢ଼ିଲା ବେଳୁ କଲିକତା ନଗରୀ କଥା ମୋର ମନେ ପଡ଼ୁଛି। ମୁଁ ଦଶପଲ୍ଲାର ଦୁଃଖ ଯନ୍ତ୍ରଣା ଭୁଲି ଯାଉଛି। କଲିକତାରେ କିପରି ଶୀଘ୍ର ପହୁଞ୍ଚିବି ଏଥିପାଇଁ ମନ ଉଦ୍‌ବେଗ ହେଉଛି। କଲିକତାରେ ପହୁଞ୍ଚି କାହା ପାଖକୁ ଯିବି, କିପରି କଣ କଲେ ଦଶପଲ୍ଲାର ଦୁଃଖ ଦୂର କରିବା ପାଇଁ ସମର୍ଥ ହେବି, ଏହି ଭାବନା ମଧ୍ୟ ମନରେ ଖେଳୁଛି। ଏହିପରି ଅବସ୍ଥାରେ କଲିକତାରେ ଉପସ୍ଥିତ ହେଲି। ତିନି ନମ୍ବର ମିରଜାପୁର ଷ୍ଟ୍ରିଟ୍‌ରେ ଡାକ୍ତରୀ ପାଠ ପଢୁଥିବା ଛାତ୍ରମାନଙ୍କର ଗୋଟିଏ ମେସ୍ ଥାଏ। କଟକ ଛାଡ଼ି ଆସିଲାବେଳେ ଏହି ମେସ୍‌ରେ ଥିବା ଶ୍ରୀଯୁକ୍ତ ଯୋଗେନ୍ଦ୍ରନାଥ ଶାହାଙ୍କ ନିକଟକୁ ଖଣ୍ଡିଏ ପତ୍ର ଆଣିଥାଏ। ଏହି ପତ୍ର ଖଣ୍ଡି ଧରି ଉକ୍ତ ମେସ୍‌ରେ ଉପସ୍ଥିତ ହେଲି। ଯାଗେନ୍ଦ୍ର ବାବୁଙ୍କୁ କହିଲି। ମେସ୍‌ରେ ଥିବା ଅନ୍ୟ ଜଣେ ଦୁଇଜଣ ଛାତ୍ରଙ୍କ ସହିତ ଯୋଗେନ୍ଦ୍ରବାବୁ ମତେ ପରିଚୟ କରାଇ ଦେଲେ। ଏ ଦୁଇଜଣଙ୍କ ମଧ୍ୟରୁ ଜଣଙ୍କର ନାମ ବାବୁ ବିଶେଶ୍ୱର ବୋଷ। ସେ ଡାକ୍ତରୀ ପାଠ ପଢୁଥାନ୍ତି। ଆଉ ଜଣକ ନାମ ବାବୁ ସୁରେନ୍ଦ୍ରନାଥ ମିତ୍ର। ସେ ଏମ୍.ଏ. ପାଠ ପଢୁଥାନ୍ତି। ଏ ଦୁଇଜଣ ମୋଠାରୁ ସମସ୍ତ ବୃତ୍ତାନ୍ତ ଶୁଣି କହିଥିଲେ, ''ଏ ଘଟଣା ବଡ଼ ଗୁରୁତର। ଏଥିରେ ସାହାଯ୍ୟ କରିବା ଭଳି ଭାରତରେ ଏକମାତ୍ର ବ୍ୟକ୍ତି ମିଷ୍ଟର ଗାନ୍ଧି। ମିଷ୍ଟର ଗୋଖଲେ ବଞ୍ଚିଥିଲେ ଅବଶ୍ୟ କିଛି ସାହାଯ୍ୟ କରି ପାରିଥାନ୍ତେ, କିନ୍ତୁ ସେ ଆଉ ନାହାନ୍ତି। ମିଷ୍ଟର ଗାନ୍ଧି ହେଉଛନ୍ତି କେବଳ ଏକମାତ୍ର ବ୍ୟକ୍ତି। ତାହାଙ୍କ ନିକଟକୁ ଯାଇ ତୁମେ ତାହାଙ୍କୁ ଏ ସବୁ ଘଟଣା ଶୁଣାଅ।''

ମହାତ୍ମା ଗାନ୍ଧିଙ୍କୁ ସେତେବେଳକୁ ସମସ୍ତେ ମିଷ୍ଟର ଗାନ୍ଧି ବୋଲି କହୁଥାନ୍ତି। ସେ ଅଳ୍ପ କେତେ ମାସ ହେବ ଦକ୍ଷିଣ ଆଫ୍ରିକାରୁ ଫେରି ବୋଲପୁର 'ଶାନ୍ତିନିକେତନରେ'

ରହିଥାନ୍ତି। ସାବରମତି ଆଶ୍ରମ ସ୍ଥାପନ କରି ନଥାନ୍ତି। ତିନି ନମ୍ବର ମିରଜାପୁର ମେସରେ ଯେଉଁମାନଙ୍କ ସହିତ ପରିଚୟ ହେଲା ସେମାନେ ସମସ୍ତେ ବୋଲପୁର ଶାନ୍ତିନିକେତନକୁ ଯାଇ ମହାତ୍ମାଗାନ୍ଧୀଙ୍କ ସହିତ ଦେଖା କରିବାକୁ ପରାମର୍ଶ ଦେଲେ।

ବାବୁ ବିଶେଶ୍ୱର ବୋଷ ଯାହାଙ୍କ ନାମ ଉପରେ କହିଗଲି ସେ ବୋଲପୁର ଶାନ୍ତିନିକେତନରେ ପାଠ ପଢୁଥିଲେ। ବାବୁ କାଳୀମୋହନ ଘୋଷ ନାମକ ଜଣେକ ଶିକ୍ଷକଙ୍କ ନିକଟକୁ ସେ ଖଣ୍ଡିଏ ପତ୍ର ଦେଲେ। ଏମ୍.ଏ. ପାଠ ପଢୁଥିବା ଛାତ୍ର ବାବୁ ସୁରେନ୍ଦ୍ରନାଥ ମିତ୍ର ମତେ ସଙ୍ଗରେ ଧରି ଶାନ୍ତି ନିକେତନ ବାହାରିଲେ। କଲିକତାରେ ଦୁଇଦିନ ରହି ଏହିପରି ଭାବରେ ମୁଁ ଶାନ୍ତିନିକେତନକୁ ଯାଉଛି। ଗାନ୍ଧୀଙ୍କ ନାମ ମାତ୍ର ମୁଁ ଶୁଣିଥାଏ। ସେ କିଏ, କଣ କରିଛନ୍ତି ଇତ୍ୟାଦି କଥା ତାହାଙ୍କ ବିଷୟରେ ଭଲ କରି କିଛି ଜାଣି ନଥାଏ କିମ୍ବା ଶୁଣି ନଥାଏ। କାରଣ କଟକ ଛାତ୍ର ସମାଜରେ କିମ୍ବା ଓଡ଼ିଶାର କୌଣସି ସମ୍ବାଦ ପତ୍ରରେ ଗାନ୍ଧୀ, ତିଳକଙ୍କ ନାମ ଜାଣିଲା ଶୁଣିଲା ଭଳି ବିଶେଷ କିଛି ଶୁଣାଯାଏ ନାହିଁ। କେବଳ ଆମେ କେତୋଟି ଛାତ୍ର ଦେଶସେବା କରିବା ଇଚ୍ଛାରେ ଏକାଠି ହୋଇଥାଉ ବୋଲି ଅନେକ ସମୟରେ ଏମାନଙ୍କ ବିଷୟ କିଛି କିଛି ଆଲୋଚନା କରୁ। କିନ୍ତୁ ଆମର ଜ୍ଞାନ ବଡ଼ ସୀମାବଦ୍ଧ। ବର୍ତ୍ତମାନ ପରି ଦୁନିଆର କେଉଁ କୋଣରେ କଣ ଘଟୁଛି, ତାହା ଯେପରି ସମସ୍ତେ ଅକ୍ଳେଶରେ ଏବଂ ସବିଶେଷ ଭାବରେ ଜାଣି ପାରୁ ଅଛନ୍ତି, ଦେଶର ସେତେବେଳେ ଅବସ୍ଥାରେ ଆମ୍ଭେମାନେ ସେପରି କିଛି ଜାଣିପାରୁ ନଥିଲୁଁ। ଏପରି ଅବସ୍ଥାରେ ଗାନ୍ଧୀଙ୍କ ବିଷୟରେ ଭଲକରି ଜାଣିବାର ସୁଯୋଗ ସୁବିଧା ମୁଁ ପାଇ ନାହିଁ। କଲିକତା ଆସି ତାହାଙ୍କ ବିଷୟ ବହୁତ ଶୁଣିବାକୁ ପାଉଛି। ତାହାଙ୍କ ସହିତ ଦେଖା କରି ଦଶପଲ୍ଲା ଦୁଃଖ କାହାଣୀ ଶୁଣାଇ ପାରିବାକୁ ସୁଯୋଗ ସୁବିଧା ପାଇ ପାରିଲେ ସେ ନିଶ୍ଚୟ କିଛି କରି ପାରିବେ, ଏହିପରି ଦୃଢ଼ ବିଶ୍ୱାସ ମୋର ଜନ୍ମିଅଛି। ସୁତରାଂ କଲିକତା ଛାଡ଼ି ମୁଁ ବୋଲପୁର ଯାଉଛି। କଲିକତାକୁ ଆସି ମୁଁ ଯାହାସବୁ ଦେଖୁଛି, ଯାହାସବୁ ଶୁଣୁଛି, ଯେଉଁ ସ୍ନେହ ସହାନୁଭୂତି ପାଉଛି, ସବୁ ମତେ ଆଶ୍ଚର୍ଯ୍ୟବୋଧ ହେଉଛି। ଦଶପଲ୍ଲା ପ୍ରଜାଙ୍କର ଦୁଃଖ ଦୂର କରି କିପରି ଦଶପଲ୍ଲା କାହାଣୀ ଶୁଣାଇବି ଏଥିପାଇଁ ମନ ଉଦ୍‌ବିଗ୍ନ ହୋଇ ଉଠୁଛି। ଏହିପରି ଭାବନାରେ ସନ୍ଧ୍ୟା ସାତଟାରେ ଆମେ ଦୁହେଁ ଯାଇ ବୋଲପୁର ଶାନ୍ତିନିକେତନରେ ଉପସ୍ଥିତ ହେଲୁ। ଶାନ୍ତିନିକେତନରେ ଉପସ୍ଥିତ ହେବା ମାତ୍ରକେ ଶୁଣିଲି ଯେ ଗାନ୍ଧୀ ସେଠାରେ ଆଉ ନାହାନ୍ତି। ଆମ୍ଭେ ପହୁଞ୍ଚିବା ପୂର୍ବଦିନ ସେ ସ୍ଥାନ ଛାଡ଼ି ମାନ୍ଦ୍ରାଜ ଚାଲିଗଲେଣି। ତାହାଙ୍କ ସଂଗରେ ଯେଉଁମାନେ ଥିଲେ, ସେମାନଙ୍କୁ ସେ ସ୍ୱାମୀ ଶ୍ରଦ୍ଧାନନ୍ଦଜୀଙ୍କ ଗୁରୁକୁଳକୁ ପଠାଇ ଦେଇ ଅଛନ୍ତି। ସେ ଆଉ ଶାନ୍ତିନିକେତନକୁ ଫେରି ଆସିବାର ନାହିଁ। ଏ ସମ୍ବାଦ ପାଇ ମୁଁ ଓ ସୁରେନ୍ ବାବୁ ଦୁହେଁ ଅତ୍ୟନ୍ତ ଦୁଃଖିତ ହେଲୁ। ଶାନ୍ତି ନିକେତନ ଛାଡ଼ି ସେହି

ରାତି ଗାଡ଼ିରେ କଲିକତା ଫେରିବାକୁ ସ୍ଥିର କଲୁ। ଶାନ୍ତି ନିକେତନ ଆସି ଶ୍ରୀଯୁକ୍ତ କାଳୀମୋହନ ଘୋଷଙ୍କୁ ଆମ୍ଭ ଆସିବାର କାରଣ ନ କହି ଫେରିଯିବା ଠିକ୍ ହେବ ନାହିଁ ଭାବି, କାଳୀମୋହନ ବାବୁଙ୍କୁ ମୁଁ ସବୁ କଥା କହିଲି। କାଳୀମୋହନ ବାବୁ ମୋଠାରୁ ସମସ୍ତ ଘଟଣା ଶୁଣି ଆଣ୍ଡ୍ରୁଜ ସାହେବଙ୍କ ସହିତ ଦେଖା କରିବାକୁ ପରାମର୍ଶ ଦେଲେ। ତାହାଙ୍କ କହିବାରେ ଆଣ୍ଡ୍ରୁଜ ସାହେବ ହେଉଛନ୍ତି ବଡ଼ଲାଟ ଲର୍ଡ଼ ହାଡ଼ିଞ୍ଜଙ୍କର ଜଣେ ପରମ ବନ୍ଧୁ। ସେ ଇଚ୍ଛା କଲେ ଏହି ଘଟଣାରେ ନିଶ୍ଚୟ କିଛି ନା କିଛି କରି ପାରିବେ। ତେବେ ଆଣ୍ଡ୍ରୁଜ ସାହେବଙ୍କ ସହିତ ଦେଖା କରିବାକୁ ହେଲେ ପ୍ରଥମେ ଗୁରୁଦେବଙ୍କ ସହିତ ଦେଖା କରିବା ଦରକାର। ଗୁରୁଦେବ ଯଦି ଟିକିଏ ଆଣ୍ଡ୍ରୁଜ ସାହେବଙ୍କୁ କହନ୍ତି ତେବେ ଆଣ୍ଡ୍ରୁଜ ତାହାଙ୍କ କଥାକୁ ନିଶ୍ଚୟ ଶୁଣିବେ ଏବଂ ଏହି ଘଟଣାରେ ସାହାଯ୍ୟ କରିବାକୁ ଯତ୍‌ପରୋନାସ୍ତି ଚେଷ୍ଟା କରିବେ। ଶ୍ରୀଯୁକ୍ତ ରବୀନ୍ଦ୍ରନାଥ ଠାକୁରଙ୍କୁ ଶାନ୍ତିନିକେତନରେ ଛାତ୍ର, ଶିକ୍ଷକ ସମସ୍ତେ ଗୁରୁଦେବ ବୋଲି ଡାକନ୍ତି। ଏପରି କି ଗୁରୁଦେବଙ୍କୁ ରବିବାବୁ ବୋଲି, ଭୁଲରେ ମଧ କାହାରି ମୁହଁରେ କହି ପକାଇବାର ମୁଁ ଶୁଣି ନାହିଁ। ଶାନ୍ତିନିକେତନର ଛାତ୍ର ଓ ଶିକ୍ଷକଙ୍କ ଆଗରେ ରବିବାବୁଙ୍କୁ ଗୁରୁଦେବ ନ କହି ରବିବାବୁ କହିଲେ, ସେମାନଙ୍କୁ ଭଲ ଲାଗେ ନାହିଁ। ଶାନ୍ତି ନିକେତନ ନ ଦେଖିଲେ, ସେଠାରେ ନ ରହିଲେ, ରବିବାବୁଙ୍କୁ କାହିଁକି ଗୁରୁଦେବ ବୋଲି ଡାକନ୍ତି, ତହିଁର ମହତ୍ତ୍ୱ ହୃଦୟଙ୍ଗମ କରିହେବ ନାହିଁ। ବୋଲପୁର ଶାନ୍ତିନିକେତନରେ ଯେ ରବୀନ୍ଦ୍ରନାଥ ଠାକୁର ଗୁରୁଦେବ ବୋଲି ପୂଜା ପା'ନ୍ତି ତାହା ନୁହେଁ, ଆଜି ସମସ୍ତ ଭାରତରେ, ଏପରି କି ସମସ୍ତ ଜଗତରେ ମଧ ସେ ହେଉଛନ୍ତି ଗୁରୁଦେବ। ସେ ହେଉଛନ୍ତି ବିଶ୍ୱକବି। କବିତା ଲେଖି ଜଗତରେ ସେ ଶ୍ରେଷ୍ଠ ପୁରୁଷ ହୋଇଛନ୍ତି। ଜଗତର ଶ୍ରେଷ୍ଠ ପୁରସ୍କାର 'ନୋବେଲ ପ୍ରାଇଜ୍' ସେ ଲାଭ କରିଛନ୍ତି। ରବୀବାବୁ ନୋବୋଲ ପ୍ରାଇଜ୍ ପାଇବାର ସମ୍ବାଦ ଦେଶରେ ପ୍ରଚାରିତ ହେଲାଦିନୁ ମୁଁ ତାହାଙ୍କ ନାମ ଶୁଣିବାକୁ ପାଇଛି। ତାହାଙ୍କ କବିତା ମଧ ଆଗ୍ରହର ସହିତ ପାଠ କରିଛି। ତାହାଙ୍କ ବିଷୟରେ ବୀରେନ୍ ବାବୁ ନାମକ ମିଶନ ସ୍କୁଲର ଜଣେ ଶିକ୍ଷକଙ୍କ ଠାରୁ ବହୁତ କଥା ଶୁଣିବାକୁ ପାଇଛି। ତାହାଙ୍କୁ ଦେଖିବାର ସୁଯୋଗ ଓ ସୁବିଧା ପାଇବା ବ୍ୟକ୍ତି ଜଣେ ବଡ଼ ଭାଗ୍ୟବାନ୍ ଲୋକ ବୋଲି ମୋର ଧାରଣା ଜନ୍ମିଛି। ଆଜି ତାହାଙ୍କ ଦର୍ଶନ ଲାଭ ଆକାଂକ୍ଷାରେ ଲାଳାୟିତ ହୋଇ ଜଗତର ପ୍ରତ୍ୟେକ ଦେଶରୁ ମଧ ପ୍ରତିଦିନ କେତେ ଲୋକ ବୋଲପୁର ଶାନ୍ତିନିକେତନକୁ ଯାତ୍ରା କରୁଅଛନ୍ତି। ଆଜି ସେହି ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କୁ ଦେଖିବାର ସୌଭାଗ୍ୟ ଲାଭ କରିବାର ଏକ ଅବସର ମୋତେ ମିଳୁଅଛି। କେବଳ ବିଶ୍ୱକବିଙ୍କୁ ଦେଖିବି ତାହା ନୁହେଁ, ତାହାଙ୍କ ନିକଟରେ ବସି ତାହାଙ୍କ ସହିତ କଥୋପକଥନ କରିବି। ଦଶପଲ୍ଲା ଦୁଃଖ କାହାଣୀ ତାହାଙ୍କ ଆଗରେ ବର୍ଣ୍ଣନା କରିବି ବୋଲି ଶ୍ରୀଯୁକ୍ତ କାଳୀମୋହନ ଘୋଷ

ପରାମର୍ଶ ଦେଉ ଅଛନ୍ତି । ଏପରି ଅବସ୍ଥାରେ ମହାତ୍ମା ଗାନ୍ଧୀଙ୍କୁ ବୋଲପୁର ଶାନ୍ତିନିକେତନରେ ଦେଖିବାକୁ ନ ପାଇ ମୋ ମନ ଯେତେ ନିରାଶରେ ବୁଡ଼ି ଯାଇ ନଥିଲା, ତାହାଠାରୁ ବଳି ଦୁଇଗୁଣ ଉତ୍ସାହରେ ମୋ ମନ ଜାଗି ଉଠୁଛି । କାଳୀମୋହନ ବାବୁଙ୍କ ପ୍ରସ୍ତାବ ଶୁଣୁ ଶୁଣୁ ମୋ ରୋମ ଟାଙ୍କରି ଉଠୁଛି । ମୁଁ କହୁଛି, "ହଁ, ଆପଣ ଯାହା କହୁଛନ୍ତି ତାହାଛଡ଼ା ଅନ୍ୟ ଉପାୟ କିଛି ନାହିଁ । ଗାନ୍ଧୀଙ୍କ ସହିତ ଦେଖା ହେବାର ଆଉ ସୁବିଧା ନାହିଁ । ଆଣ୍ଡ୍ରୁଜ ସାହେବଙ୍କୁ ନ ଧରିଲେ ନ ଚଳେ । ଗୁରୁଦେବଙ୍କ ସହିତ କିପରି ଦେଖା ମିଳିବ, ଆପଣ ତହିଁର ସୁବନ୍ଦୋବସ୍ତ କରାଇ ଦିଅନ୍ତୁ ।" ଏହା କହି ମୁଁ ନୀରବ ରହୁଛି । କାଳୀମୋହନ ବାବୁ ତହିଁଆର ଦିନ ସକାଳେ ଗୁରୁଦେବଙ୍କ ସହିତ ମତେ ସାକ୍ଷାତ କରାଇ ଦେବାକୁ ପ୍ରତିଶ୍ରୁତି ଦେଇ ଆମ୍ଭ ଦୁହିଙ୍କର ରହିବା ଖାଇବାର ବନ୍ଦୋବସ୍ତ କରାଇ ଦେଲେ । ସେଦି ରାତି ଆମେ ଦୁହେଁ ସେଠାରେ ରହିଲୁ ।

ତହିଁ ଆରଦିନ ସକାଳୁ ରବିବାବୁଙ୍କ ସହିତ ଦେଖା ହେଲା । ଦଶପଲ୍ଲୀର ସମସ୍ତ ଘଟଣା ମୁଁ ତାହାଙ୍କ ଆଗରେ ବର୍ଣ୍ଣନା କଲି । ମୋ କଥା ଶୁଣୁ ଶୁଣୁ ରବିବାବୁ ବଡ଼ ଚଞ୍ଚଳ ହୋଇ ଉଠିଲେ । ସେ ହେଉଛନ୍ତି କବି । ସବୁବେଳେ ତାହାଙ୍କ ମନ ଭାବ-ରାଜ୍ୟରେ । କବିଙ୍କ ହୃଦୟ ଅତିଶୟ କୋମଳ । ସେ କାହାରି ଦୁଃଖ ଦେଖିବା ଦୂରେ ଥାଉ ଶୁଣିଲେ ମଧ ତାହାଙ୍କ ହୃଦୟ ଥରି ଉଠେ । ଦେଶରେ ପଲ୍ଲୀବାସୀଙ୍କ ଦୁଃଖ ଦେଖି ତାହା ଦୂର କରିବା ଉଦ୍ଦେଶ୍ୟରେ ଆଜି ଶାନ୍ତିନିକେତନରେ ସେ ନାନାପ୍ରକାର କାର୍ଯ୍ୟ ଆରମ୍ଭ କରି ଅଛନ୍ତି । ଦଶପଲ୍ଲୀର ଦୁଃଖ କାହାଣୀ ଶୁଣୁ ଶୁଣୁ ସେ ଅଧୀର ହେବା ସ୍ୱାଭାବିକ । ସେ ଯାହାହେଉ ମୁଁ ମୋର କଥା ଶେଷ କରିବା ମାତ୍ରକେ, କବି ମହୋଦୟ ମତେ ସଙ୍ଗରେ ଧରି ହଠାତ୍ ଆଣ୍ଡ୍ରୁଜ ସାହେବଙ୍କ ଘରେ ଉପସ୍ଥିତ ହେଲେ । ଇଂରେଜିରେ ଆଣ୍ଡ୍ରୁଜ ସାହେବଙ୍କୁ କହିଲେ:—

"Mr. Andreus, Here is a boy from orissa. Please hear him, what he has to say, and try your utmost, to help him."

ଅର୍ଥାତ୍, "ମିଷ୍ଟର ଆଣ୍ଡ୍ରୁଜ ଏହି ବାଳକଟି ଓଡ଼ିଶାରୁ ଆସିଛି । ସେ କଣ କହୁଛି ଅନୁଗ୍ରହ କରି ଶୁଣି ଏବଂ ଏହାକୁ ଯେତେଦୂର ପାର ସାହାଯ୍ୟ କର ।" ଏହି କେତୋଟି କଥା ଆଣ୍ଡ୍ରୁଜ ସାହେବଙ୍କୁ କହି ରବିବାବୁ ସେ ଘରୁ ବାହାରିଗଲେ । ଆଣ୍ଡ୍ରୁଜ ସାହେବଙ୍କ ଘରେ ରବିବାବୁ ପ୍ରବେଶ କରିବା ମାତ୍ରକେ ଆଣ୍ଡ୍ରୁଜ ସାହେବ ଉଠି ପଡ଼ି ଦରଜା ନିକଟକୁ ଦୌଡ଼ି ଆସିଥିଲେ । କବିଙ୍କୁ ବିଦାୟ ଦେଇ ଆଣ୍ଡ୍ରୁଜ ସାହେବ ମୋ କାନ୍ଧରେ ହାତ ପକାଇ ମତେ ନେଇ ଗୋଟିଏ ଚୌକି ବସିବାକୁ ଦେଲେ । ସେ କଣ ବସି ଲେଖୁଥାନ୍ତି । ସେ ଲେଖା ଛାଡ଼ି ମୋ କଥା ଶୁଣିବାକୁ ମୋ ମୁହଁକୁ ଚାହିଁ ବସିଲେ । ମୁଁ ଆଣ୍ଡ୍ରୁଜ ସାହେବଙ୍କ ଆଗରେ ସମସ୍ତ ଘଟଣା

ବର୍ଣ୍ଣନା କଲି। ଆଣ୍ଡ୍ରୁଜ ସାହେବ ମୋଠାରୁ ଶୁଣିସାରି ହଠାତ୍ ଠିଆ ହୋଇ ପଡ଼ିଲେ। ମୋ କାନ୍ଧରେ ହାତ ପକାଇ ମୋତେ କହିଲେ:–

"Well you have done your duty to your country and your people by approaching me. Believe me now I am the man to do every-thing for you and for your people."

ତୁମେ ମୋ ନିକଟକୁ ଆସି ତୁମେ ତୁମର କର୍ତ୍ତବ୍ୟ ପୂର୍ଣ୍ଣ କରି ସାରିଛ। ମୋତେ ବିଶ୍ୱାସ କର, ବର୍ତ୍ତମାନ ତୁମ୍ଭପାଇଁ ଓ ତୁମ୍ଭ ଦେଶ ଲୋକଙ୍କପାଇଁ ଯାହା କିଛି କରିବାର ମୁଁ କରିବି।"

ଆଣ୍ଡ୍ରୁଜ ସାହେବ ଏହି କେତୋଟି କଥା ମତେ କହିଗଲେ। ସେ ଠିଆ ହେବାରୁ ମୁଁ ମଧ ଠିଆ ହେଲି। ତାହାଙ୍କ ମୁହଁକୁ ଚାହିଁ ରହିଲି। ତାହାଙ୍କ କଥାଗୁଡ଼ିକ ମତେ ସ୍ୱପ୍ନ ପ୍ରାୟ ବୋଧ ହେଲା। ଏ କଣ ସତ, ମୁଁ ମୋର କର୍ତ୍ତବ୍ୟ ପାଳନ କରୁଛି। ଆଉ କିଛି ମତେ କରିବାକୁ ପଡ଼ିବ ନାହିଁ। ଆଣ୍ଡ୍ରୁଜ ସାହେବ ଏଣିକି ସବୁ କରିବେ। ଏ ମହାନ୍ ବ୍ୟକ୍ତି କିଏ? ଏହାଙ୍କର ଏ ଆଶ୍ୱାସନା ଓ ଅଭୟ ବାଣୀ ମତେ ଦୈବ ବାଣୀ ପ୍ରାୟ ବୋଧ ହେଉଛି। ମୁଁ କିଛି ବୁଝି ପାରୁ ନାହିଁ। ମୋ ମୁହଁରୁ କଥା ବାହାରୁ ନାହିଁ। ମୁଁ କିଛି ଉତ୍ତର ନ ଦେବାରୁ ଆଣ୍ଡ୍ରୁଜ ସାହେବ ମନେ କରୁ ଅଛନ୍ତି, ବୋଧହୁଏ ମୁଁ ଦଶପଲ୍ଲାର ଏ ଘଟଣାରେ ଏତେ ଭୟଭୀତ ହୋଇ ଯାଇଛି ଯେ, ସେ ଭୟ ମୋଠାରୁ ଛାଡ଼ି ନାହିଁ। ସେହି ଭୟରେ ତାହାଙ୍କ କଥାର କିଛି ଜବାବ ମୁଁ ଦେଉ ନାହିଁ। ତେଣୁ ସେ ପୁଣି କହୁଅଛନ୍ତି:–"Well, my boy you have now nothing to fear. You stay with me I shall try my best to help you.

ଆଚ୍ଛା ବାବା, ତୁମ୍ଭେ ଆଉ ଭୟ କରିବାର କିଛି ମାତ୍ର କାରଣ ନାହିଁ। ତୁମ୍ଭେ ମୋ ନିକଟରେ ରହ, ମୁଁ ମୋର ଯଥାସାଧ ଚେଷ୍ଟା କରିବି ତୁମ୍ଭଙ୍କୁ ସାହାଯ୍ୟ କରିବାକୁ।" ଆଣ୍ଡ୍ରୁଜ ସାହେବଙ୍କ ଏହି କେତୋଟି କଥା ମୋର ହୃଦୟରେ ଏକପ୍ରକାର ବିଦ୍ୟୁତ ଶକ୍ତି ଖେଳାଇ ଦେଲା। ସେହି ଦିନ, ସେହି କଥା ଅଦ୍ୟାପି ମୋର ମନେ ଅଛି। ଆଣ୍ଡ୍ରୁଜ ସାହବଙ୍କର ଏହି ଆଶ୍ୱାସନା ମୋ ମନରେ କି ଆନନ୍ଦ ଦେଇଥିଲା ତାହା କହି ହେଉ ନାହିଁ। ଦଶପଲ୍ଲାର ଦୁଃଖ ନିର୍ଯ୍ୟାତନା ଲାଘବ କରିବାର ସଂପୂର୍ଣ୍ଣ ସମ୍ଭାବନା ମତେ ଦେଖାଗଲା। ମୋ ମନରେ କେତେ କଣ ସୁଖ-ସ୍ୱପ୍ନ ଜାଗି ଉଠିଲା ତାହା କହି ହେବ ନାହିଁ। ଶାନ୍ତି ନିକେତନକୁ ଆସିଲା ବେଳୁ ମତେ ବୋଧ ହେଉଛି ସତେ ଯେପରି ଗୋଟିଏ ଦେବଭୂମିକୁ ମୁଁ ଆସିଛି। ଶାନ୍ତି ନିକେତନ ଛାତ୍ରବୃନ୍ଦଙ୍କୁ ଦେଖିଲେ ପୂର୍ବକାଳର ଋଷି ଆଶ୍ରମ ଚିତ୍ର ଆଖି ଆଗରେ ନାଚି ଯାଉଛି। ଛାତ୍ରମାନେ ଏଠାରେ କି ଆନନ୍ଦରେ ଅଛନ୍ତି। ସବୁବେଳେ ଆଇନ ଶୃଙ୍ଖଳା ନାମ

ଦେଇ, ପିଲାମାନଙ୍କ ସ୍ୱାଧୀନତା ଲୋପ କରିବାର କୌଣସି ଚିହ୍ନ ଏଠାରେ ନାହିଁ। ଛାତ୍ର ଓ ଶିକ୍ଷକ ପରସ୍ପର ଭାଇ, ସାଙ୍ଗ ଓ ସାଥୀ। ଛାତ୍ର ଶିକ୍ଷକ ଏକତ୍ର ଖେଳ କରୁଛନ୍ତି, ଏକତ୍ର ଗୀତ ଗାଇ ବୁଲୁଛନ୍ତି। ପିଲାମାନେ ଦଳ ଦଳ ହୋଇ ବୁଲୁଛନ୍ତି। କିଏ ଗଛରେ ଚଢ଼ି ଗୀତ ଗାଉଛି, କିଏ ଗୋଟିଏ ଦୋଳିରେ ବସି ଗୀତ ଗାଉଛି। ଆଉ ଦଳେ ପିଲା କେଉଁଠାରେ ଖେଳୁଛନ୍ତି। କେଉଁଠାରେ କେଉଁ ଗଛମୂଳରେ ବସି କିଏ ପଢ଼ୁଛି। ଦେଖିଲେ ଜଣା ଯାଉଛି ପିଲାମାନେ ସେମାନଙ୍କ ଇଚ୍ଛାନୁସାରେ ଖେଳୁଛନ୍ତି, ବୁଲୁଛନ୍ତି ଓ ପାଠ ପଢ଼ୁଛନ୍ତି। ବେଳେ ବେଳେ ରବିବାବୁ ଆସି ଏହି ପିଲାମାନଙ୍କ ସହିତ ମଧ୍ୟ ଖେଳ ରହସ୍ୟ କରନ୍ତି। ଏସବୁ ସ୍ୱପ୍ନ କିମ୍ବା ବାସ୍ତବରେ ମୁଁ ଆଖିରେ କିଛି ବୁଝିପାରୁ ନାହିଁ। ଶାନ୍ତିନିକେତନ ନାମ ମଧ୍ୟ ମୁଁ ଶୁଣି ନାହିଁ। ଛାତ୍ରମାନେ ଏପରି ଆନନ୍ଦରେ ଏବଂ ସ୍ୱାଧୀନ ଭାବରେ ଖେଳି ବୁଲି ଅଧ୍ୟୟନ କରନ୍ତି, ଏହା ମୁଁ କଳ୍ପନା କରି ନାହିଁ। ଯାହା କେବେ ଶୁଣି ନାହିଁ, ଯାହା କଳ୍ପନା କରି ନାହିଁ ସେପରି ଦୃଶ୍ୟ ଦେଖିଲେ ମନର ଭାବ କିପରି ହୁଏ ତାହା ସହଜେ ଅନୁମେୟ।

ଏହି ଆନନ୍ଦମୟ ସ୍ଥାନଟିକୁ ଆସି ମୁଁ ସବୁ ଭୁଲି ଯାଉଛି, ଦଶପଲ୍ଲା ଅତ୍ୟାଚାର ପାସୋର ଯାଉଛି। ଆଣ୍ଡ୍ରୁଜ ସାହେବ ଓ ବିଶ୍ୱକବି ରବୀନ୍ଦ୍ର ନାଥଙ୍କୁ ପାଇଛି। ଆଣ୍ଡ୍ରୁଜ ସାହେବଙ୍କ ଅଭୟ ବାଣୀ ପାଇ, ଦଶପଲ୍ଲା ପ୍ରଜାଙ୍କର ଦୁଃଖ ଅପନୋଦନ କରି ପାରିବାର ଦୃଢ଼ ବିଶ୍ୱାସ ହୃଦୟରେ ଜାଗି ଉଠିଛି। ଏହାଠାରୁ ମୋ ପକ୍ଷରେ ଅଧିକ ଆନନ୍ଦଦାୟକ ଘଟଣା ଆଉ କଣ ହୋଇପାରେ। ଏହି ସମୟରେ ହୃଦୟରେ ମୁଁ ଯେପରି ଆନନ୍ଦ ଉପଲବ୍ଧି କରିଥିଲି, ଭାରତ ସ୍ୱାଧୀନତା ଘୋଷଣା କରିବା ଦିନ ସେହିପରି ଆନନ୍ଦ ଅନୁଭବ କରି ପାରିବି କି ନାହିଁ ସନ୍ଦେହ।

## ଦ୍ୱିତୀୟ ପରିଚ୍ଛେଦ

ଏହିପରି ଭାବରେ ବୋଲପୁର ଶାନ୍ତିନିକେତନରେ ମୁଁ ରହିଲି ଦଶପଲ୍ଲାର ନିର୍ଯ୍ୟାତିତ ପ୍ରଜାଙ୍କ ପାଇଁ କଣ କିପରି କରାଯାଇ ପାରେ ଏହି ବିଷୟରେ ମୋର ମତାମତ ଜାଣିବାକୁ ଆଣ୍ଡ୍ରୁଜ ସାହେବ ମତେ ପଚାରିଲେ। ସେତେବେଳକୁ ଦେଶର ରାଜନୈତିକ ପରିସ୍ଥିତି ବିଷୟରେ ମୋର କୌଣସି ଜ୍ଞାନ କିମ୍ବା ଅଭିଜ୍ଞତା ନ ଥାଏ। ତଥାପି ମତେ କିଛି କହିବାକୁ ହେବ। ଗୋଟିଏ ତଦନ୍ତ କମିଟି ବସି ଦଶପଲ୍ଲା ଅତ୍ୟାଚାରର ସମସ୍ତ ବ୍ୟାପାର ତଦନ୍ତ କଲେ ଦଶପଲ୍ଲା ପ୍ରଜା ସନ୍ତୁଷ୍ଟ ହେବେ ବୋଲି ମୁଁ କହିଥିଲି। କମିଟିରେ ସରକାରୀ ବେ-ସରକାରୀ ଉଭୟ ଲୋକେ ରହିବେ। ମୋର ଏହି ପ୍ରସ୍ତାବଟିକୁ ଆଣ୍ଡ୍ରୁଜ ସାହେବ ପସନ୍ଦ କଲେ। ଦଶପଲ୍ଲାର ସମସ୍ତ ଘଟଣା ଉଲ୍ଲେଖ କରି ଗୋଟିଏ ଲେଖା ଲେଖି ଦେବାକୁ ସେ ମତେ ଆଦେଶ କଲେ।

ଇଂରେଜୀରେ ମୁଁ ଗୋଟିଏ ଲେଖା ଲେଖିଲି। ଆଣ୍ଡ୍ରୁଜ ସାହେବ ମୋର ସେହି ଲେଖାଟିକୁ ଦେଖି ସଂଶୋଧନ କରି ଦେଲେ। ବଡ଼ଲାଟ ଲର୍ଡ଼ ହାଡ଼ିଞ୍ଜଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖି ଆଣ୍ଡ୍ରୁଜ ସାହେବ ମୋର ସେହି ଲେଖାଟିକୁ ବଡ଼ଲାଟଙ୍କ ନିକଟକୁ ପଠାଇ ଦେଲେ। ରବୀନ୍ଦ୍ରନାଥ ଠାକୁର ମଧ୍ୟ ଖଣ୍ଡିଏ ପତ୍ର ଦେଲେ। ଏହିପରି ଭାବରେ ଭାରତର ବଡ଼ଲାଟ ସାହେବଙ୍କ କାନକୁ ଦଶପଲ୍ଲା ଅତ୍ୟାଚାର କଥା ଗଲା। ତାହାଙ୍କ ଉତ୍ତରକୁ ଅପେକ୍ଷା କରି ଶାନ୍ତି ନିକେତନରେ ମତେ ରହିବାକୁ ପଡ଼ିଲା। କିଛି ସମୟ ପରେ ବଡ଼ଲାଟ ସାହେବଙ୍କ ନିକଟରୁ ଉତ୍ତର ଆସିଲା:–"Keep that youngman with you, I am inquirying into the matter and shall see what can be done."

ଅର୍ଥାତ୍ "ତୁମେ ସେହି ଯୁବକଟିକୁ ତୁମ୍ଭ ନିକଟରେ ରଖିଥାଅ। ମୁଁ ଏହାର ଅନୁସନ୍ଧାନ କରୁଛି। ତାପରେ କଣ କରାଯାଇ ପାରେ ତହିଁର ବିଚାର କରିବି।"

ବଡ଼ଲାଟ ଲର୍ଡ଼ ହାଡ଼ିଞ୍ଜଙ୍କଠାରୁ ଏପରି ଉତ୍ତର ପାଇ ମୋର ଆଶା ଓ ଆନନ୍ଦ ଆହୁରି ବଢ଼ିଗଲା। ଏ ଆନନ୍ଦ ସଂବାଦ ମୁଁ ନରସିଂହ ଓ ଦୟାନିଧି ଦଳବେହେରା ପ୍ରଭୃତି ଦଶପଲ୍ଲା ଛାତ୍ରଙ୍କୁ ଜଣାଇଲି। ଏ ସଂବାଦ ପାଇ ସେମାନଙ୍କର ଆନନ୍ଦର ସୀମା ରହିଲା ନାହିଁ। ମୋର ଦୃଢ଼ ବିଶ୍ୱାସ, ଦଶପଲ୍ଲା ପ୍ରଜାଙ୍କ ଦୁଃଖ ନିଶ୍ଚୟ ଦୂର ହେବ। ଏହିପରି ଆଶା ଓ ବିଶ୍ୱାସ ନେଇ ବୋଲପୁର ଶାନ୍ତିନିକେତନରେ ମୁଁ ଦେଢ଼ମାସ ପର୍ଯ୍ୟନ୍ତ ରହିଲି। ରାଜନୀତି କ୍ଷେତ୍ରର ଜଟିଳତା ମୋ ମନକୁ ସ୍ପର୍ଶ କରି ନଥାଏ। ବର୍ତ୍ତମାନ ଜର୍ମାନ ଯୁଦ୍ଧର ସମୟ। ବଡ଼ଲାଟ ସାହେବ ଯାହା ଉତ୍ତର ଦେଲେ ତହିଁରେ ରାଜନୈତିକ ଚାଲବାଜି ଅଛି, ଏହା ଜାଣିବା ମୋ ପକ୍ଷରେ ସମ୍ଭବପର ନୁହେଁ। ଆଣ୍ଡ୍ରୁଜ ସାହେବ ମଧ୍ୟ ବୁଝିପାରି ନାହାନ୍ତି। ଆଣ୍ଡ୍ରୁଜ ସାହେବଙ୍କ ପୂର୍ଣ୍ଣ ବିଶ୍ୱାସ ଯେ, ବଡ଼ଲାଟ ସାହେବଙ୍କୁ ଲେଖି ସେ କିଛି କରିପାରିବେ। ଯୁଦ୍ଧ ସମୟରେ ଏ ବିଷୟ ନେଇ କୌଣସି ଆନ୍ଦୋଳନ କରିବାକୁ ଗଲେ ବିଶେଷ କିଛି ଲାଭ ହେବ ନାହିଁ। ବର୍ତ୍ତମାନ ପରି ସେ ସମୟକୁ ଦେଶରେ ମଧ୍ୟ ଜନମତ ଏତେ ପ୍ରବଳ ହୋଇ ନାହିଁ। କଂଗ୍ରେସ ଆଜିକାଲି ପରି ଏଡ଼େ ପ୍ରଭାବଶାଳୀ ହୋଇ ନାହିଁ। ସୁତରାଂ ଆନ୍ଦୋଳନ କଲେ କେହି ଶୁଣିବେ ନାହିଁ। ଏହି ବିଶ୍ୱାସରେ ଆଣ୍ଡ୍ରୁଜ ସାହେବ ଯେପରି ଉଚିତ ବିବେଚନା କଲେ ସେପରି କରିଛନ୍ତି।

ମୁଁ ଗୋଟିଏ ସ୍ଥାନରେ ରହିଗଲେ ଦଶପଲ୍ଲା ଘଟଣା ଦେଶରେ ପ୍ରଚାର ହୋଇ ପାରିବ ନାହିଁ। ଯୁଦ୍ଧ ସମୟରେ ସରକାର ଭାରତରେ ସାହାଯ୍ୟ ଓ ସହାନୁଭୂତି ଭିକ୍ଷା କରୁଛନ୍ତି। ଏହି ସମୟରେ କୌଣସି ଘଟଣା ପ୍ରକାଶ କଲେ ଯଦ୍ଵାରା ଭାରତରେ ଗୋଟାଏ ଚାଞ୍ଚଲ୍ୟ ଉପସ୍ଥିତ ହେବ ସେପରି ଘଟଣା ଘୋଡ଼ାଇ ରଖିବା ଉଚିତ। ଏହା ବିଚାରି ବଡ଼ଲାଟ ସାହେବ ମତେ ଶାନ୍ତିନିକେତନରେ ରଖାଇ ଦେଲେ ବୋଲି

ଆଜି ମୋ ମନରେ ସନ୍ଦେହ ହୁଏ। ଏହି ଘଟଣା ଜାଣିବାକୁ ବଡ଼ଲାଟ ସାହେବ ବିହାର-ଓଡ଼ିଶା ସରକାରଙ୍କ ନିକଟକୁ ରିପୋଟ ମାଗିଥିଲେ। ବିହାର-ଓଡ଼ିଶା ସରକାର ଗଡ଼ଜାତର ପଲିଟ୍‌କେଲ୍ ଏଜେଣ୍ଟ କବ୍‌ଡ଼େନ୍ ରାମସେ ସାହେବଙ୍କ ରିପୋଟ ଅନୁସାରେ ଉପରକୁ ରିପୋଟ କରିଥିବେ। ଏପରି ଅବସ୍ଥାରେ ଦଶପଲ୍ଲାରେ ଯାହାସବୁ ଘଟିଲା ତହିଁର ସଠିକ ସଂବାଦ ବଡ଼ଲାଟଙ୍କ କାନକୁ ହୁଏତ ଗଲା ନାହିଁ। ଦେଢ଼ମାସ କାଳ ବୋଲପୁର ଶାନ୍ତିନିକେତନରେ ରହିଲା ପରେ ବଡ଼ଲାଟ ସାହେବଙ୍କ ନିକଟରୁ ଉତ୍ତର ଆସିଲା। ଆଣ୍ଡ୍ରୁଜ ସାହେବ ମତେ ଡାକି ଏହି ଉତ୍ତରର ସାରମର୍ମ ବୁଝାଇ ଦେଲେ। ସାରମର୍ମ ହେଉଛି, ଦଶପଲ୍ଲାରେ ସେପରି କିଛି ଘଟି ନାହିଁ ଯହିଁରେ ବଡ଼ଲାଟ ସାହେବ ମହୋଦୟଙ୍କୁ କିଛି କରିବାକୁ ହେବ।

ଏହି ପରି ମର୍ମରେ ଆଣ୍ଡ୍ରୁଜ ସାହେବ ବଡ଼ଲାଟଙ୍କଠାରୁ ଆସିଥିବା ଉତ୍ତର ଶୁଣାଇ ଦେଲେ। ଏହି ଉତ୍ତର ଶୁଣି ହଠାତ୍ ମୁଁ ଅବାକ୍ ହୋଇ ଗଲି। ମୁହଁରୁ କିଛି କଥା ବାହାରିଲା ନାହିଁ। ମୋର ସମସ୍ତ ପ୍ରକାର ଆଶା ଓ ଆନନ୍ଦ ମୁହୂର୍ତ୍ତ ମାତ୍ରକେ କୁଆଡ଼େ ଲୋପ ପାଇଗଲା। କିଛି ଉତ୍ତର ଦେଇ ନ ପାରି ହଠାତ୍ ବସି ପଡ଼ିଲି। ଆଣ୍ଡ୍ରୁଜ ସାହେବ, ତାଙ୍କର ବନ୍ଧୁ ପିଅରସନ୍ ସାହେବ ମତେ ଏପରି ବସି ପଡ଼ିବାର ଦେଖି, ଦୁହେଁ ଆସି ମତେ ଧରି ପକାଇ ବହୁତ ବୁଝାଇ କହିଲେ। ଦଶପଲ୍ଲା ପ୍ରଜାଙ୍କପାଇଁ ବର୍ତ୍ତମାନ ବିଶେଷ କିଛି କରିବାର ବାଟ ଆଉ ନାହିଁ। ଦେଶରେ ଏକଥା ନେଇ କିଛି ଆନ୍ଦୋଳନ କରିବା ସମ୍ଭବ ନୁହେଁ। ଜର୍ମାନ ଯୁଦ୍ଧ ବେଳେ ସରକାର ମଧ୍ୟ ଏକଥା ଶୁଣିବେ ନାହିଁ। ଅତଏବ ସେ ବିଷୟରେ ଚିନ୍ତା କରି ବ୍ୟଥିତ ହେବାରେ କିଛି ଲାଭ ନାହିଁ। ଭବିଷ୍ୟତରେ ଭଲ ଭାବରେ ମୁଁ ଯେପରି ଦେଶର ସେବା କାର୍ଯ୍ୟ କରି ପାରିବି, ସେଥିପାଇଁ ନିଜକୁ ପ୍ରସ୍ତୁତ କରିବା ଦରକାର। ମୁଁ ପାଠ ପଢ଼ିବା ଉଚିତ। ପଢ଼ିବାପାଇଁ ଆଣ୍ଡ୍ରୁଜ ସାହେବ ମତେ ସାହାଯ୍ୟ କରିବେ ବୋଲି କହିଲେ। ଶ୍ରୀଯୁକ୍ତ ରବୀନ୍ଦ୍ରନାଥ ଠାକୁର ମଧ୍ୟ ସେହି ଉପଦେଶ ଦେଲେ। କିନ୍ତୁ ପଢ଼ିବାପାଇଁ ମୋର ମନ ବଳିଲା ନାହିଁ। ଦଶପଲ୍ଲାର ଶହ ଶହ ପ୍ରଜା ଧରା ହୋଇ ବିଚାର ଚାଲିଛି। ସେମାନଙ୍କ ଦଶା କଣ ହେବ? ବିଚରା ବୈଷ୍ଣବ ଦେଓକୁ ଧରି ନେଇ କିପରି ଶାସ୍ତି ବିଧାନ କରିବେ? ଇତ୍ୟାଦି। ଦଶପଲ୍ଲା ଘଟଣାବଳିର ଦୃଶ୍ୟ ଗୋଟି ଗୋଟି ହୋଇ ମୋ ଆଖି ଆଗରେ ନାଚିଗଲା। ଏସବୁ ଏକାବେଳକେ ଭୁଲିଯାଇ, ନିଶ୍ଚିନ୍ତ ମନରେ ବସି ପାଠ ପଢ଼ିବା ଭଳି ମନର ଅବସ୍ଥା ନ ହେଲେ ପାଠପଢ଼ା କଦାପି ସମ୍ଭବପର ହୋଇ ନ ପାରେ।

ସୁତରାଂ ମତେ 'ଶାନ୍ତି-ନିକେତନ' ଛାଡ଼ି ଆସିବାକୁ ହେଲା। ସେଠାରୁ ଆସି କଲିକତାରେ ଉପସ୍ଥିତ ହେଲି। କଲିକତାରେ ବାବୁ ସୁରେନ୍ଦ୍ରନାଥ ବାନାର୍ଜି, ମୋତିଲାଲ ଘୋଷ ଓ ରାମାନନ୍ଦ ଚାଟାର୍ଜି ପ୍ରମୁଖ ବ୍ୟକ୍ତିମାନଙ୍କ ସହିତ ଦେଖାକରି ଦଶପଲ୍ଲାରେ

ଘଟିଥିବା ସମସ୍ତ ବିବରଣୀ ଶୁଣାଇ ଏହାର ପ୍ରତିକାର ପାଇଁ କି ଉପାୟ ଅବଲମ୍ବନ କରାଯାଇ ପାରେ, ଏ ବିଷୟରେ ସେମାନଙ୍କର ପରାମର୍ଶ ଲୋଡ଼ିଥିଲି। ସୁରେନ୍ଦ୍ରନାଥ ବାନାର୍ଜିଙ୍କ 'The Bengalee' (ଦି ବେଙ୍ଗଲୀ) ନାମକ କାଗଜରେ ଏଥିପୂର୍ବରୁ ଦଶପଲ୍ଲା ମେଳି ବିଷୟରେ ଗୋଟିଏ ଦୁଇଟି ଅଗ୍ରଲେଖା ପ୍ରକାଶ ପାଇଛି। ଏହିଠାରେ ବାବୁ ଶ୍ୟାମସୁନ୍ଦର ଚକ୍ରବର୍ତ୍ତୀଙ୍କ ସହିତ ମୋର ସାକ୍ଷାତ ହେଲା। ସେ ମତେ ବହୁତ ସହାନୁଭୂତି ଦେଖାଇଥିଲେ। ଦଶପଲ୍ଲା ପ୍ରଜାଙ୍କ ପାଇଁ କିପରି କିଛି କରାଯାନ୍ତା ଏଥିପାଇଁ ସେ ବଡ଼ ବ୍ୟାକୁଳ। ଯୁଦ୍ଧ ସମୟ ହୋଇ ନଥିଲେ ସରକାରୀ ସାହାଯ୍ୟରେ ନିଶ୍ଚୟ କିଛି ନା କିଛି ଦଶପଲ୍ଲା ପ୍ରଜାଙ୍କପାଇଁ ପ୍ରତିକାର କରାଯାଇ ପାରିଥାନ୍ତା। ସେତେବେଳକୁ ଦେଶରେ ରାଜନୈତିକ ଆନ୍ଦୋଳନ ବର୍ତ୍ତମାନ ପରି ସରକାରଙ୍କ ବିରୁଦ୍ଧରେ ଏତେ ପ୍ରବଳ ଆକାର ଧାରଣ କରି ନ ଥାଏ। ଦେଶର ନେତୃସ୍ଥାନୀୟ ବ୍ୟକ୍ତିମାନେ କିଛି କହିଲେ ସରକାର ଟିକିଏ ଶୁଣୁଥାନ୍ତି। ସେ ଯାହା ହେଉ ଜର୍ମାନୀ ଯୁଦ୍ଧ ଦଶପଲ୍ଲାର ହେଲା କାଳ।

ଯୁଦ୍ଧହେତୁ ଦେଶରେ 'ଭାରତ-ରକ୍ଷା-ଆଇନ' ନାମରେ ଏକ କଡ଼ା ଆଇନ ଜାରି ହୋଇଥାଏ। ସରକାରଙ୍କ ବିରୁଦ୍ଧରେ କିଛି ଆନ୍ଦୋଳନ କରିବା ଅସମ୍ଭବ।।

ଏହା ହେଲେ ମଧ୍ୟ 'ଅମୃତ ବଜାର' ପତ୍ରିକାରେ ସମ୍ପାଦକ ବାବୁ ମୋତିଲାଲ ଘୋଷ ବଡ଼ଲାଟ ସାହେବଙ୍କ ନିକଟକୁ ଦଶପଲ୍ଲା ବିବରଣୀ ଉଲ୍ଲେଖ କରି ଖଣ୍ଡିଏ ଖୋଲା ଚିଠି ଲେଖିବାକୁ ମତେ ପରାମର୍ଶ ଦେଲେ। ସେହି ଖୋଲା ଚିଠି ପାଇଲେ ସେ ତାହାଙ୍କ କାଗଜରେ ଦଶପଲ୍ଲା ବିଷୟ ନେଇ ଲେଖାମାନ ପ୍ରକାଶ କରିବେ—ସରକାରୀ କାର୍ଯ୍ୟକୁ ସମାଲୋଚନା କରି ଦଶପଲ୍ଲା ପ୍ରଜାଙ୍କ ସପକ୍ଷରେ ଦେଶରେ ଗୋଟିଏ ଲୋକମତ ଗଠନ କରିବେ।

ବାବୁ ମୋତିଲାଲ ଘୋଷଙ୍କର ଏ ପ୍ରସ୍ତାବ ଶୁଣି ମୋର ନିରାଶ ପ୍ରାଣରେ ପୁଣି ଟିକିଏ ଆଶାରେଖା ଡେଇଁ ଉଠିଲା। କଲିକତାରେ ବର୍ତ୍ତମାନ ମୁଁ ତିନି ନମ୍ବର ମିରିଜାପୁର ଷ୍ଟ୍ରିଟରେ ଅଛି। ବଙ୍ଗଦେଶରେ 'କୁମୀଲା ଅଭୟ ଆଶ୍ରମ'ର ଜନ୍ମ ଏହିଠାରେ। ଡାକ୍ତର ସୁରେଶଚନ୍ଦ୍ର ବାନାର୍ଜି କେତୋଟି ଛାତ୍ରଙ୍କୁ ସଂଗ୍ରହ କରି ଦେଶସେବା ପାଇଁ ଗୋଟିଏ ଦଳ ଗଠନ କରୁଥାନ୍ତି। କଟକରୁ କଲିକତା ପଳାଇ ଆସିଲା ବେଳକୁ ଏହି ସୁରେଶ ବାବୁ କଟକ ଯାଇଥିଲେ। କଟକରୁ ସେ ମତେ ଏହି ମେସରେ ଥିବା ତାଙ୍କ ଦଳଭୁକ୍ତ ଶ୍ରୀଯୁକ୍ତ ଯୋଗେନ୍ଦ୍ରନାଥ ଶାହଙ୍କ ନିକଟକୁ ପତ୍ର ଲେଖି ମତେ ସାହାଯ୍ୟ କରିବାକୁ ଅନୁରୋଧ କରିଥିଲେ। ମୁଁ ବର୍ତ୍ତମାନ ତାହାଙ୍କ ସାହାଯ୍ୟରେ କଲିକତାରେ ରହିଛି। ସୁଭାଷଚନ୍ଦ୍ର ବୋଷ କଟକ ଛାଡ଼ି କଲିକତା ପଢ଼ିବାକୁ ଆସିବା ପରେ ସୁରେଶ ବାବୁଙ୍କ ନିକଟକୁ ଯିବା ଆସିବା କରୁଛନ୍ତି। ଏହି ପ୍ରକାର ଏହି ଦଳରେ ସେ ଯୋଗ ଦେଇଛନ୍ତି କହିଲେ ଚଳେ। ସେ ପ୍ରତ୍ୟହ ଏହି ତିନି ନମ୍ବର

ମିରଜାପୁରରେ ଥିବା ମେସକୁ ଆସନ୍ତି । ତାହାଙ୍କ ସହିତ ବିଶେଷ ଘନିଷ୍ଠତା ହୋଇଅଛି । ସୁତରାଂ ମୁଁ ବର୍ତ୍ତମାନ ଯାହା କରୁଛି, ଏମାନଙ୍କୁ ଜଣାଇ କରୁଛି । ଏମାନଙ୍କୁ ନ ଜଣାଇ ଥିବା ଏମାନଙ୍କ ପରାମର୍ଶ ନେଇ ମୁଁ କିଛି କରି ନ ପାରେ । କାରଣ ଦେଶର ରାଜନୀତି ବିଷୟରେ ମୋର କୌଣସି ଅଭିଜ୍ଞତା ନାହିଁ । ଏପରି ଅବସ୍ଥାରେ ବାବୁ ମୋତିଲାଲ ଘୋଷଙ୍କ ପ୍ରସ୍ତାବ ସୁଭାଷ ବାବୁ ଓ ଯୋଗେନ ବାବୁ ପ୍ରଭୃତିଙ୍କୁ ଜଣାଇଲି । ସୁରେଶ ବାବୁ ମେସରେ ନ ଥାନ୍ତି । ଯୋଗେନ ବାବୁଙ୍କ ଉପରେ ମେସର ସବୁ ଭାର । ତେଣୁ ତାଙ୍କୁ ପଚାରିବା ଦରକାର ।

ଦଶପଲ୍ଲା ମେଳି ମକଦ୍ଦମାର ବିଚାର ଏତେବେଳକୁ ସମାପ୍ତ ହେଲାଣି । ବିଚରା ବୈଷ୍ଣବ ଦେଓ ଦ୍ୱୀପାନ୍ତର ଦଣ୍ଡ ପାଇଛନ୍ତି । ଅନେକ ଲୋକଙ୍କୁ ଫାଶି ହୁକୁମ ହୋଇଛି । ଅନେକ ଦ୍ୱୀପାନ୍ତର ହୋଇଛନ୍ତି । ବିଚାରା ହାଡ଼ିବନ୍ଧୁ ୧୪ ବର୍ଷ ଜେଲ ଦଣ୍ଡ ପାଇଛି । ଦଶପଲ୍ଲା ଅଭିନୟର ଶେଷ ପରଦା ପଡ଼ି ସାରିଲାଣି । ଏସବୁ ମୁଁ ଶୁଣିଲିଣି । ସୁଭାଷ ବାବୁ ପ୍ରଭୃତି ସମସ୍ତେ ମଧ ଏହା ଜାଣିଲେଣି । ଏପରି ଅବସ୍ଥାରେ ମୋତିଲାଲ ବାବୁଙ୍କ ପ୍ରସ୍ତାବ ଅନୁସାରେ କାର୍ଯ୍ୟ କରି ଆନ୍ଦୋଳନ କରିବାରେ କିଛି ଫଳ ଫଳିବାର ଆଶା ଆଉ ନାହିଁ ବୋଲି ସୁଭାଷ ବାବୁ ପ୍ରଭୃତି ମତାମତ ବ୍ୟକ୍ତ କଲେ । ସେମାନେ ସମସ୍ତେ ଭାବି ବିଚାରି ବାବୁ ମୋତିଲାଲ ଘୋଷଙ୍କ ପ୍ରସ୍ତାବକୁ କାର୍ଯ୍ୟରେ ପରିଣତ କରିବାକୁ ମତେ ମନାକଲେ । ସେମାନଙ୍କ କହିବାର ମର୍ମ ହେଉଛି—ଯୁଦ୍ଧ ସମୟରେ ସରକାର୍ ଏଭଳି କଥାକୁ ଶୁଣିବେ ନାହିଁ । ଏହା ବିରୁଦ୍ଧରେ ପ୍ରବଳ ଲୋକମତ ଗଠନ କରିବା କଳ୍ପନା ମଧ ବୃଥା । ଦଶପଲ୍ଲାରେ ଯାହା ଘଟିବାର ଘଟିଗଲା । ଏଥିରେ ସଂପୃକ୍ତ ହୋଇ ମୁଁ ମୋର ଜୀବନକୁ ବିପଦଗ୍ରସ୍ତ କରିଛି । ବର୍ତ୍ତମାନ ପ୍ରକାଶ୍ୟରେ ସମ୍ବାଦପତ୍ରରେ ଲେଖାଲେଖି କଲେ ମୋର ଜୀବନ ଆହୁରି ବିପଦପୂର୍ଣ୍ଣ ହୋଇ ଉଠିବ । ମୁଁ କଲିକତାରେ ଥିବାର ସମ୍ବାଦ କଟକ ପୋଲିସ ଜାଣିବ । କଲିକତା ପୋଲିସ ମଧ ମତେ କଲିକତାରେ ରଖାଇ ଦେବ ନାହିଁ । defence of india act ଅର୍ଥାତ୍ 'ଭାରତ-ରକ୍ଷା-ଆଇନ' ପରି କଡ଼ା ଆଇନ ଜାରୀ ଥିଲାବେଳେ ମତେ ମଧ କେହି କୌଣସି ପ୍ରକାରେ ପ୍ରକାଶ୍ୟ ସାହାଯ୍ୟ ଦେଇ ପାରିବେ ନାହିଁ । ମୋର ଏପରି ଖୋଲା ପତ୍ର ବଡ଼ଲାଟଙ୍କୁ ଲେଖିବାଦ୍ୱାରା ବୃଥାରେ ମୋର ଜୀବନ ନଷ୍ଟ ହୋଇଯିବ । ଅତଏବ ଦଶପଲ୍ଲା ଇତିବୃତ୍ତିକୁ ଭୁଲିଯାଇ ନିଜକୁ ଦେଶସେବା ପାଇଁ ପ୍ରସ୍ତୁତ କରିବା ଦରକାର । ଏହା ହେଲେ ସେମାନେ ମଧ ମେସରେ ସ୍ଥାନ ଦେଇ ମତେ ସାହାଯ୍ୟ କରି ପାରିବେ ।

ସୁଭାଷ ବାବୁ ପ୍ରଭୃତିଙ୍କ ଏହି ପରାମର୍ଶ ଶୁଣିଲି । ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ଚକ୍ରବର୍ତ୍ତୀ ଓ ବାବୁ ରାମାନନ୍ଦ ଚାଟାର୍ଜିଙ୍କୁ ପଚାରିବାରେ ସେ ମଧ ସେହିପରି ପରାମର୍ଶ ଦେଲେ । ଅତଏବ ବାବୁ ମୋତିଲାଲ ଘୋଷଙ୍କ ପରାମର୍ଶ ଅନୁସାରେ ବଡ଼ଲାଟ ସାହେବଙ୍କୁ

ଖୋଲା ପତ୍ର ଲେଖି ସମ୍ବାଦପତ୍ର ଜରିଆରେ ଆନ୍ଦୋଳନ କରିବା କାର୍ଯ୍ୟକୁ ଏହିପରି ଭାବରେ ମୁଁ ରହିତ ହେଲି ସତ୍ୟ, କିନ୍ତୁ ମନରେ ଶାନ୍ତି ପାଇଲି ନାହିଁ। ଆମ୍ଭେମାନେ କିପରି ନିରୁପାୟ, ଆମ ଦେଶ କିପରି ଦୁର୍ବଳ, କୌଣସି ପ୍ରକାର ଅନ୍ୟାୟ, ଅତ୍ୟାଚାରର ପ୍ରତିକାର କରିବାକୁ ଆମର କୌଣସି ଉପାୟ ନାହିଁ, ଇତ୍ୟାଦି ଭାବନା ମୋ ମନରେ ଜାଗି ଉଠିଲା। ମୋର ହୃଦୟ ଭିତରୁ ପ୍ରତିଧ୍ୱନିତ ହେବାକୁ ଲାଗିଲା–"So long we have not been able to drive-out these white people from India, there is very little chance of even thinking, to do any good to our country." ଅର୍ଥାତ୍ ଯେତେଦିନ ପର୍ଯ୍ୟନ୍ତ ଏହି ଧଳା ଲୋକଙ୍କୁ ଏ ଦେଶରୁ ତଡ଼ି ଦେଇ ନ ପାରିବୁଁ ସେତେଦିନ ପର୍ଯ୍ୟନ୍ତ ଦେଶର କୌଣସି ମଙ୍ଗଳ ଚିନ୍ତା କରିବା ମଧ୍ୟ ସମ୍ଭବପର ନୁହେଁ। ମୋ ମନରେ ଏହିସବୁ ଭାବନା ଯେପରି ଭାବରେ ଏବଂ ଯେପରି ଅବସ୍ଥାରେ ଜାଗରୁକ ହୋଇଥିଲା, ସେସବୁ ଅଦ୍ୟାବଧି ମନେ ଅଛି। ସେହି ଶବ୍ଦଗୁଡ଼ିକ ହୃଦୟ ଭିତରେ ନିନାଦିତ ହୋଇ ଉଠୁଛି। ସେହି ଅବସ୍ଥା ଆଖି ଆଗରେ ନାଚି ଯାଉଛି। ଏସବୁ ମନେ ପଡ଼ି ଗଲାବେଳେ ହୃଦୟ ଥରି ଉଠେ। ଆମ୍ଭେମାନେ କିପରି ନିରାଶ୍ରୟ, ବିଦେଶୀ ଶାସନ ପ୍ରଭାବରେ ଦେଶ ଓ ଜାତିର କି ଦୁର୍ଦ୍ଦଶାଘଟିଲା ତାହା ବୁଝିବାକୁ ଆଉ କିଛି ବାକୀ ରହେ ନାହିଁ।

## ତୃତୀୟ ପରିଚ୍ଛେଦ

### (ବିପ୍ଳବୀ ଜୀବନ)

କଲିକତାରେ ନାନା ଚେଷ୍ଟା କରି ଦଶପଲ୍ଲାର ଦୁଃଖ ଦୂର କରିବାକୁ କୌଣସି ଉପାୟ ନ ପାଇ ନିରାଶ ଭାବରେ ବୋଲପୁର 'ଶାନ୍ତି ନିକେତନ'କୁ ପୁଣି ଫେରିଲି। ମୁଁ ବର୍ତ୍ତମାନ କଣ କରିବି, କେଉଁ ପଥ ଅବଲମ୍ବନ କରିବି କିଛି ଭାବି ସ୍ଥିର କରି ପାରୁନାହିଁ। ଯେ ଯେତେ ଉପଦେଶ ଦେଲେ ମଧ୍ୟ ଉଛୁଳି ଉଠୁଥାଏ। ବେଳେବେଳେ ଭଗବାନଙ୍କ ନାମ ଧରିଲେ ମତେ ବିରକ୍ତ ବୋଧ ହୁଏ। ସତ୍ୟ, ନ୍ୟାୟ ଓ ଭଗବାନ ବୋଲି ଲୋକେ ଯାହା କହନ୍ତି ଏସବୁର ମୂଲ୍ୟ କିଛି ନାହିଁ। ଈଶ୍ୱର ନାହାନ୍ତି। ସତ୍ୟ ଓ ନ୍ୟାୟ କଥା କହି ନିଜକୁ ଆଶ୍ୱାସନା ଦେବା ହେଉଛି ଦୁର୍ବଳର ଲକ୍ଷଣ। "The mighty is right" ଅର୍ଥାତ୍ ବଳ ଯାହାର ରାଜ୍ୟ ତାହାର'; ବଳ, ପରାକ୍ରମ ଯେଉଁଠାରେ, ସତ୍ୟ ନ୍ୟାୟ ଭଗବାନ ସେହିଠାରେ–ଏହା ବୋଧହୁଏ ସତ୍ୟ। ଏହିପରି କେତେ ସବୁ ଭାବନା ମଧ୍ୟରେ ଖେଳିଯାଏ। ମନର କିଛି ସ୍ଥିରତା ନ ଥାଏ। ରାତ୍ରିରେ ନିଦ ହୁଏ ନାହିଁ। ଅଧିକାଂଶ ଦିନ ଦଶପଲ୍ଲା ଘଟଣା ସବୁର ଦୃଶ୍ୟ

ସ୍ୱପ୍ନ ଦେଖି ଚମକି ଉଠେ। ଦଶପଲ୍ଲାର କରୁଣ ଚିତ୍ର ସବୁବେଳେ ମୋ ଆଖି ଆଗରେ ନାଚୁଥାଏ। କଣ କରିବି, କେଉଁଠାରେ ରହିବି କିଛି ସ୍ଥିର କରି ପାରେ ନାହିଁ।

ଆଣ୍ଡ୍ରୁଜ ସାହେବ କଲିକତା ଯାଇଥାନ୍ତି। ବୋଲପୁର ଶାନ୍ତିନିକେତନ ଗ୍ରୀଷ୍ମଛୁଟି ହେତୁ ବନ୍ଦ ଥାଏ। ପିଲାମାନେ ସବୁ ଘରକୁ ଚାଲି ଯାଇଥାନ୍ତି। ସାମାନ୍ୟ କେତେଜଣ ଛାତ୍ର ଛୁଟିରେ ରହିଥାନ୍ତି। ଆଣ୍ଡ୍ରୁଜ ସାହେବ କଲିକତାରୁ ଫେରି ହଇଜା ରୋଗରେ ଆକ୍ରାନ୍ତ ହେଲେ। ତାହାଙ୍କର ଜୀବନ ସଂକଟାପନ୍ନ ହୋଇ ଉଠିଲା। ମୋର ବର୍ତ୍ତମାନ ପରିସ୍ଥିତିରେ ଆଣ୍ଡ୍ରୁଜ ସାହେବଙ୍କୁ ମରଣାପନ୍ନ ଦେଖି ମୁଁ ବଡ଼ ଅଧୀର ହୋଇ ପଡ଼ିଲି। ପ୍ରାଣର ମାୟା ମମତା କାଟି ମୁଁ ତାହାଙ୍କ ସେବା ଶୁଶ୍ରୁଷା କରିବାରେ ଲାଗିଗଲି। ଈଶ୍ୱରଙ୍କ କୃପାରୁ ଆଣ୍ଡ୍ରୁଜ ସାହେବ ମରୁ ମରୁ ବଞ୍ଚିଗଲେ। ସ୍ୱାସ୍ଥ୍ୟ ପରିବର୍ତ୍ତନ କରିବା ପାଇଁ ସେ ବୋଲପୁର ଶାନ୍ତିନିକେତନ ଛାଡ଼ି ଅନ୍ୟତ୍ର ଚାଲିଗଲେ। ମୁଁ ଶାନ୍ତିନିକେତନରେ ରହିଲି।

ମୁଁ କଣ କରିବି, ବୋଲପୁର ଶାନ୍ତିନିକେତନରେ ରହିବି କିମ୍ବା କଲିକତା ଯିବି ସ୍ଥିର କରି ପାରିଲି ନାହିଁ। ଶାନ୍ତିନିକେତନରେ ରହି ଅଧ୍ୟୟନ କରିବାକୁ ହେଲେ, ପୂର୍ବ ସ୍କୁଲର ଖଣ୍ଡିଏ ସାର୍ଟିଫିକେଟ ଆବଶ୍ୟକ ହେବ। କଟକ ମିଶନ ସ୍କୁଲରେ ମୁଁ ପଢୁଥିଲି। ସେଠାରୁ ସାର୍ଟିଫିକେଟ ଅଣାଯାଇ ନ ପାରେ। ଓଡ଼ିଶାରେ ମୋ ନାମରେ ଓ୍ୟାରଣ୍ଟ ଜାରୀ ହୋଇଛି। ମତେ ଧରିବାପାଇଁ ବାବୁ ଦାମୋଦର ରଥ ପ୍ରଭୃତି ଓଡ଼ିଶାର ଅଳିକଳି ଅଣ୍ଡାଳୁ ଥିବେ। ମୁଁ ଓଡ଼ିଶାରେ 'କେଉଁଠାରେ ଲୁଚି ଯାଇଛି ଏହା ସେମାନଙ୍କ ବିଶ୍ୱାସ। ମୁଁ ବଙ୍ଗଦେଶକୁ ପଳାଇ ଆସିଛି ଏହା ସେମାନେ କଳ୍ପନା ମଧ୍ୟ କରି ନାହାଁନ୍ତି। ଏପରି ଅବସ୍ଥାରେ କଟକ ମିଶନ ସ୍କୁଲରୁ ସାର୍ଟିଫିକେଟ ଆଣିବା ଅସମ୍ଭବ। ଅତଏବ ଶାନ୍ତିନିକେତନରେ ରହି ଅଧ୍ୟୟନ କରିବାର କୌଣସି ସୁବିଧା ଦେଖିଲି ନାହିଁ।

ଶାନ୍ତି ନିକେତନ ଛାଡ଼ି କଲିକତା ଫେରିଲି। ସ୍କୁଲରେ ନାମ ଲେଖାଇ ମୋର ଅଧ୍ୟୟନ କରିବା ବର୍ତ୍ତମାନ ପାଇଁ ସ୍ଥଗିତ ରହିଲା। ସ୍କୁଲ କଲେଜରେ ପାଠପଢ଼ା ସହିତ ଦେଶସେବାର ସେପରି କିଛି ବିଶେଷ ସମ୍ବନ୍ଧ ନାହିଁ। ଘରୋଇ ଭାବରେ କିଛି ଜ୍ଞାନ ଲାଭ କଲେ ହେଲା। ସୁଭାଷବାବୁ ପ୍ରଭୃତି ମତେ ଏହି ପରାମର୍ଶ ଦେଲେ। ମୁଁ ମିରଜାପୁର ଷ୍ଟ୍ରିଟ ମେସରେ ରହିଲି। ଏହି ସମୟରେ କେତେକ ଭଲ ଭଲ ବହି ମୁଁ ପଢ଼ିବାର ସୁବିଧା ଓ ସୁଯୋଗ ପାଇଛି। ଦେଶର ଅର୍ଥନୀତି, ଇତିହାସ, ରାଜନୈତିକ କେତେକ ବହି ଅଧ୍ୟୟନ କରିଥିଲି। ଧର୍ମ ବିଷୟରେ ମଧ୍ୟ କେତେ ଖଣ୍ଡି ପୁସ୍ତକ ପାଠ କରିଥିଲି।

ମୁଁ ଯେଉଁ ଛାତ୍ରବାସଟିରେ ରହିଲି ତହିଁର ଇତିହାସ ଅତି ବିରଳ। ମେସ୍‌ରେ ଯେ କେତେଜଣ ଛାତ୍ର ରହିଥାନ୍ତି ତାହା ନୁହେଁ। ପ୍ରତିଦିନ ବାହାରେ ରହିଥିବା ଅନ୍ୟ

କେତୋଟି ଛାତ୍ର ମଧ୍ୟ ଏଠାକୁ ଯିବା ଆସିବା କରନ୍ତି। ଏହାର ଉଦ୍ଦେଶ୍ୟ ଛାତ୍ର ସମାଜରୁ ବାଛି କେତୋଟି ଛାତ୍ରଙ୍କୁ ନେଇ ଦେଶକାର୍ଯ୍ୟ ପାଇଁ ଗୋଟିଏ ସଂଘ ତିଆରି କରିବା। ଏହି କଳ୍ପନାର ଜନ୍ମଦାତା ଡାକ୍ତର ସୁରେଶଚନ୍ଦ୍ର ବନ୍ଦୋପାଧ୍ୟାୟ। ସୁରେଶବାବୁଙ୍କୁ ସମସ୍ତେ ସୁରେଶଦା ବୋଲି ଡାକନ୍ତି। ସୁରେଶଦା ଅର୍ଥ ସୁରେଶ-ଦାଦା। ବଙ୍ଗଳାରେ ବଡ଼ ଭାଇକୁ ଦାଦା ବୋଲି ସମ୍ବୋଧନ କରନ୍ତି। ଆମ୍ଭ ମେସ୍‌ରେ ଯେ ଯାହାଠାରୁ ବଡ଼, ସେ ତାହାକୁ ଦାଦା ବୋଲି ଡାକେ। ସମସ୍ତେ ପରସ୍ପରକୁ ଭ୍ରାତୃଭାବରେ ଦେଖନ୍ତି। ସେ ଯାହାହେଉ, ସୁରେଶଦା ଡାକ୍ତରୀ M.B. ପାଶ୍ କରି କାଶୀରେ ରହି, ହିନ୍ଦୁ ଦର୍ଶନଶାସ୍ତ୍ର ଅଧ୍ୟୟନ କରୁଅଛନ୍ତି। ମେସ୍‌ର ଭାର ଶ୍ରୀଯୁକ୍ତ ଯୋଗେନ୍ଦ୍ରନାଥ ଶାହଙ୍କ ଉପରେ। ତାଙ୍କୁ ମଧ୍ୟ ସମସ୍ତେ ଯୋଗେନଦା ବୋଲି ଡାକନ୍ତି। ଯୋଗେନଦା ଜଣେ ବଡ଼ ହୃଦୟବାନ୍ ବ୍ୟକ୍ତି। ମୁଁ ଗଲାବେଳକୁ ସେ ବି.ଏ. ପଢୁଥାନ୍ତି। ଯୋଗେନଦା ଛାତ୍ରମାନଙ୍କ ମନ ଭୁଲାଇ ଦେଇ ପାରନ୍ତି। ସୁଭାଷବାବୁ ଓ ପ୍ରମଥବାବୁ ଏହି ମେସ୍‌ରେ ଆସି ଅନେକ ସମୟ ରହନ୍ତି। ସୁଭାଷବାବୁ କଲେଜର ଆଇ.ଏ.ର ପ୍ରଥମ ଶ୍ରେଣୀରେ ପଢୁଥାନ୍ତି। ପ୍ରମଥବାବୁ ମଧ୍ୟ ତାହାଙ୍କର ସହାଧ୍ୟାୟୀ। ସୁଭାଷବାବୁ ମାଟ୍ରିକୁଲେସନ ପରୀକ୍ଷାରେ କଲିକତା ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ। ପ୍ରମଥବାବୁ ସେହିବର୍ଷ ପ୍ରଥମ ସ୍ଥାନ ଅଧିକାର କରିଥିଲେ। କଲିକତା ବିଶ୍ୱବିଦ୍ୟାଳୟର ଏହି ଦୁଇଟି ବିଶିଷ୍ଟ ଛାତ୍ର ଏହି ମେସ୍ ସହିତ ଯୋଗ ଦେବାରୁ ମେସ୍‌ର ଖାତିର ମଧ୍ୟ ଛାତ୍ର ସମାଜରେ ଖୁବ୍ ବେଶୀ।

ବର୍ତ୍ତମାନ ମିରଜାପୁର ଷ୍ଟ୍ରିଟ୍ ଘର ଛାଡ଼ି ଓଏଲିଙ୍ଗଟନ୍ ଷ୍ଟ୍ରିଟରେ ଗୋଟିଏ ସ୍ୱତନ୍ତ୍ର ଘର ଭଡ଼ା ନେଇ ମେସ୍‌ଟି ରହିଛି। ଏଠାରେ ଯେ କେତେଜଣ ଅଛନ୍ତି ସମସ୍ତେ ସମାନ ଭାବରେ ଚଳନ୍ତି। ଯାହାର ଯାହା ଖର୍ଚ୍ଚ ଆସେ, ସେ ତାହା ଯୋଗେନଦାଙ୍କୁ ଦେଇ ଦିଏ। ଯାହାର ଘରୁ ବେଶୀ ଟଙ୍କା ଆସେ ତାହା ପାଇଁ ସ୍ୱତନ୍ତ୍ର କିଛି ବ୍ୟବସ୍ଥା ନ ଥାଏ। ଏପରି କି ମେସରେ ପିନ୍ଧିବା ଲୁଗା କାହାରି ନିର୍ଦ୍ଦିଷ୍ଟ ହୋଇ ରହେ ନାହିଁ। ଧୋବା ଲୁଗା ସଫା କରି ଆଣିଦେଲେ, ଏ ଲୁଗା ଖଣ୍ଡି ମୋର, ସେ ଲୁଗା ଖଣ୍ଡି ତାର ଏପରି ବଛାବଛି ହୁଏ ନାହିଁ। ଛୋଟ ବଡ଼ ଆକାର ନେଇ ଛୋଟ ବଡ଼ ଲୁଗା ପ୍ରତ୍ୟେକ ପ୍ରତ୍ୟେକ ପାଇଁ ବାଛି ନିଅନ୍ତି।

ମେସରେ ଗୋଟିଏ ଲାଇବ୍ରେରୀ ଥାଏ। ପ୍ରତି ସପ୍ତାହରେ ଗୋଟିଏ ଆଲୋଚନା ସଭା ବସେ। ବାହାରର ଛାତ୍ର ଏହି ଆଲୋଚନା ସଭାରେ ଯୋଗ ଦିଅନ୍ତି। ଏଠାରେ ଦେଶର ରାଜନୀତି, ଧର୍ମ ଓ ଅର୍ଥନୀତି ବିଷୟରେ ଆଲୋଚନା ପଡ଼େ। ପ୍ରତି ମାସରେ ଥରେ ଦୁଇଥର ବାହାରେ ଥିବା ଦଳଭୁକ୍ତ ଛାତ୍ରମାନେ ସମସ୍ତେ ଆସି ମେସ୍‌ରେ ଭୋଜନ କରନ୍ତି। ସେଦିନ ମେସ୍‌ରେ ଗୋଟିଏ ଭୋଜି ହୁଏ କହିଲେ ଚଳେ। ମେସ୍ ଚଳିବାକୁ ଅନେକ ଛାତ୍ର ଟିଉସନ୍ କରି ଟଙ୍କା ଯୋଗାନ୍ତି। ଏହା

ହେଉଛି ଏହି ମେସ୍‌ଟିର ସଂକ୍ଷିପ୍ତ ଇତିହାସ। ଏହି ମେସ୍ ହେଉଛି ବଙ୍ଗଦେଶର ବିଖ୍ୟାତ କୁମିଲା ଅଭୟ ଆଶ୍ରମର ମୂଳଭିତ୍ତି।

ଏହିଠାରେ ମୁଁ ପ୍ରାୟ ଦେଢ଼ବର୍ଷ ପର୍ଯ୍ୟନ୍ତ ରହିଲି। ଏହିଠାରେ ମୁଁ ଅନେକ କଥା ଜାଣି ପାରିଛି। ଏହି ସମୟଟକ ମୋ ଜୀବନର ଏକ କଠୋର ସାଧନା କହିଲେ ଚଳେ। ମୁଁ ଇଚ୍ଛା କରି ଦିନରେ ବେଳାଏ ଖାଏ। ରାତ୍ରିରେ ଆଠଟାରେ ଶୋଇପଡ଼େ। ପ୍ରଥମ ନିଦ ଭାଙ୍ଗିଗଲେ ଆଉ ଶୟନ କରେ ନାହିଁ। ଦିନେ ଦିନେ ଏପରି ହୋଇଛି, ମୁଁ ରାତି ଆଠଟାରେ ଶୋଇ ନଅଟା କିମ୍ବା ଦଶଟାରେ ନିଦ ଭାଙ୍ଗି ଯାଇଛି, ତଥାପି ମୁଁ ଆଉ ଶୋଇ ନାହିଁ। ରାତ୍ରି ତମାମ ବସି, କିଛି ସମୟ ଅଧ୍ୟୟନ କରେ। ଘୋର ରାତ୍ରି ବେଳେ ଏକାକୀ ବସି ଧ୍ୟାନ ଉପାସନା କରେ। ପ୍ରତିଦିନ ରାତ୍ରି ୩ଟାରୁ ବାହାରି ଗଙ୍ଗା ନଦୀକୁ ସ୍ନାନ କରିବାକୁ ଯାଏ। ଗଙ୍ଗାରେ ସ୍ନାନ କରି ବସାକୁ ଫେରିଲା ବେଳକୁ ସମସ୍ତେ ଶୋଇଥାନ୍ତି। ମୋର କାର୍ଯ୍ୟକ୍ରମ ଏପରି ଦେଖି ଯୋଗେନଦା ମୋର ନାମ ଦେଇଥାନ୍ତି dr. gavin ଅଭୟାଶ୍ରମରେ ଏବେ ମଧ୍ୟ ମତେ ଅନେକ ଏହି ନାମରେ ଡାକନ୍ତି, ଏବଂ ଅଭୟାଶ୍ରମର ମୁଁ ଜଣେ କର୍ମୀ ଏହି ଦୃଷ୍ଟିରେ ମତେ ଦେଖନ୍ତି।

ସେ ଯାହାହେଉ କଲିକତାରେ ରହି ମୁଁ ଅନେକ୍ ବିଷୟ ଜାଣି ପାରିଲି। ଦେଶ-ସେବା କଣ, ରାଜନୈତିକ ଜୀବନ କଣ, ଏସବୁ ମୁଁ ହୃଦୟଙ୍ଗମ କରିବାରେ କିଛି ବାକି ରହିଲା ନାହିଁ। କଲିକତାରେ ରହିଲେ ଭାରତର କେଉଁ କୋଣରେ କି ରାଜନୈତିକ ଚର୍ଚ୍ଚା ହେଉଛି ସେ ସବୁ ଜଣାଯାଏ। କଲିକତା ହେଉଛି ଭାରତର ରାଜନୈତିକ ଜୀବନର ନାଡ଼ୀ। ନାଡ଼ୀ ଦେଖି ମନୁଷ୍ୟ ଶରୀରର ଭଲ ମନ୍ଦ ବୁଝିହୁଏ। କଲିକତାରେ ରହି, ରାଜନୈତିକ ଜୀବନ ଅତିବାହିତ କଲେ ଭାରତର ରାଜନୈତିକ ସମସ୍ତ ପ୍ରକାର ଆନ୍ଦୋଳନ କଥା ଜାଣି ହୁଏ। ଭାରତରେ ରାଜନୈତିକ କ୍ଷେତ୍ରରେ ମତଭେଦ କେଉଁଠାରେ? ବିଭିନ୍ନ ରାଜନୈତିକ ଦଳ ସୃଷ୍ଟି କାହିଁକି ହୁଏ ଅବା ହୋଇଛି? ବିଭିନ୍ନ ଦଳର ଲକ୍ଷ୍ୟ ଓ ପନ୍ଥା କଣ? ଇତ୍ୟାଦି ବିଷୟରେ ମୁଁ କିଛି କିଛି ବୁଝି ପାରିଲି। ମୋର ଏପରି ବୁଝିବା ସଂଗେ ସଂଗେ ମଧ୍ୟ ଦେଶ ଓ ରାଜନୀତିର ପରିସ୍ଥିତି ବିଷୟରେ ମୋର ଜ୍ଞାନ ଓ ଅଭିଜ୍ଞତା କ୍ରମଶଃ ବୃଦ୍ଧି ପାଇଲା। ଦେଶକୁ ଅଧିକ ପରିମାଣରେ ବୁଝି ପାରିଲି। ସେତେବେଳକୁ ଦେଶରେ ସ୍ୱରାଜ୍ୟ ଆନ୍ଦୋଳନ କଂଗ୍ରେସ ସୃଷ୍ଟି କରି ନାହିଁ। ସରକାର ବିରୁଦ୍ଧରେ ସଭା ସମିତିରେ ବର୍ତ୍ତମାନ ପରି ବକ୍ତୃତା ଦେବାର ମୁଁ ଶୁଣି ନାହିଁ। ସ୍ୱରାଜ୍ୟ ଅବା ସ୍ୱାଧୀନତା ଏକଥା ପ୍ରକାଶ୍ୟ ଉଚ୍ଚାରଣ କରିବା ରାଜଦ୍ରୋହ-ସୂଚକ। ଭାରତ ଔପନିବେଶିକ ସ୍ୱାୟତ୍ତ-ଶାସନ ଦାବୀ କରେ ଏହା ମଧ୍ୟ କଂଗ୍ରେସ ଘୋଷଣା କରି ସେଥିପାଇଁ ଆନ୍ଦୋଳନ ସୂତ୍ରପାତ କରି ନାହିଁ। ଔପନିବେଶିକ ଶାସନ ବିଷୟ ନେଇ, ମଧ୍ୟେ

ମଧ୍ୟେ କେତେକ ବିଶିଷ୍ଟ ରାଜନୈତିକମାନେ ଗୋଟିଏ ଗୋଟିଏ ଲେଖା ପାଠ କରିବାର ମୁଁ ଶୁଣିଛି।

କଲିକତାରେ ରହି ଦେଶର ରାଜନୈତିକ ପରିସ୍ଥିତି ବିଷୟରେ ମୋର ଜ୍ଞାନ ଓ ଅଭିଜ୍ଞତା ବଢ଼ିଲା ସତ୍ୟ, କିନ୍ତୁ ଦଶପଲ୍ଲା କଥା ପାସୋର ଗଲା ନାହିଁ। ଦଶପଲ୍ଲା କଥା ମନେ ପଡ଼ିଲେ ହୃଦୟରେ ପ୍ରତିଶୋଧ-ବହ୍ନି ଜଳି ଉଠେ। ରାଜନୈତିକ ଜ୍ଞାନ ଓ ଅଭିଜ୍ଞତା ସଂଗେ ସଂଗେ ଏହି ପ୍ରତିଶୋଧ ନେବାର ଭାବନା କାହିଁକି ତୀବ୍ର ହୋଇ ଉଠୁଥାଏ। ଦଶପଲ୍ଲା ପ୍ରଜାଙ୍କ ଦୁଃଖ ପାଇଁ ଯେଉଁମାନେ ଦାୟୀ ସେମାନଙ୍କୁ ଛାଡ଼ିଦେବା ଉଚିତ ନୁହେଁ—ଏହିପରି ଭାବ ମନରେ ଜାଗି ଉଠେ। ଏପରି ଭାବନା ମଧ୍ୟ ମନରେ ଆନନ୍ଦ ଦାନ କରେ। ସେତେବେଳକୁ ମୁଁ ଅହିଂସାର ନାମ ଶୁଣି ନାହିଁ। ଅହିଂସାଦ୍ୱାରା ଦେଶ ସ୍ୱାଧୀନ ହେବ ଏହା ସ୍ୱପ୍ନରେ ମଧ୍ୟ ଭାବି ନାହିଁ। ମୋର ବିଶ୍ୱାସ, ହିଂସାପଥ ଅବଲମ୍ବନ ନ କଲେ ଏ ଦେଶରୁ ବିଦେଶୀ ଶାସନ ଲୋପ ପାଇବା ଅସମ୍ଭବ। ସେତେବେଳେ କଲିକତାରେ ବେଳେ ବେଳେ ରାଜନୈତିକ ଡକାୟତି ଓ ରାଜନୈତିକ ହତ୍ୟା ହୁଏ। ଦେଶରେ ଗୋଟିଏ ବିପ୍ଳବୀ ଦଳ ଅଛନ୍ତି ସେମାନେ ଦେଶ କାର୍ଯ୍ୟ ପାଇଁ ଡକାୟତି କରନ୍ତି ଏବଂ ତାହାଙ୍କ କାର୍ଯ୍ୟରେ ବାଧା ଦେବା ବ୍ୟକ୍ତି ତଥା ପୋଲିସ କର୍ମଚାରୀମାନଙ୍କୁ ସୁବିଧା ସୁଯୋଗ ଦେଖି ହତ୍ୟା କରନ୍ତି। ଏହି ରାଜନୈତିକ ଡକାୟତି ଓ ହତ୍ୟାର ସମ୍ବାଦ ଦୈନିକ ପତ୍ର ପତ୍ରିକାରେ ପ୍ରକାଶ ପାଏ। ଏହିପରି ସମ୍ବାଦ ଯେଉଁଦିନ ଥାଏ ସେଦିନ ସମ୍ବାଦପତ୍ରର ଭାରି କାଟତି। ଏହି ସମ୍ବାଦ ଜାଣିଲେ ମୋ ମନ ଭାରି ଜାଗି ଉଠେ। ମୁଁ ମନେ ମନେ ଭାବେ, ଦଶପଲ୍ଲାର ଅତ୍ୟାଚାରୀମାନଙ୍କୁ ଏପରି ହତ୍ୟା କରି ପାରିଲେ କିଛିମାତ୍ର ଦୋଷ ଘଟନ୍ତା ନାହିଁ। କିନ୍ତୁ ପୁଣି ମନରେ ଭାବନା ଆସେ ଏମାନଙ୍କୁ ମାରିବାରେ କିଛି ଲାଭ ନାହିଁ। ଏମାନେ ଦେଶର ସ୍ୱାଧୀନତା ସଂଗ୍ରାମର ଶତ୍ରୁ ନୁହନ୍ତି। ଆମ୍ଭର ସମସ୍ତ କର୍ମ ଓ ଭାବନା ମୂଳରେ ଦେଶକୁ ସ୍ୱାଧୀନ କରିବାର ଆକାଂକ୍ଷା ଓ ଲକ୍ଷ୍ୟ ରହିବା ଦରକାର। ପୁଣି ଯାହା କରିବାକୁ ହେବ, ତାହା ବ୍ୟକ୍ତିଗତ କଳ୍ପନାରେ ପ୍ରଭାବିତ ହୋଇ କରିବାକୁ ଗଲେ ସେପରି କର୍ମ, ଦେଶର ରାଜନୈତିକ ଚିନ୍ତାଧାରାର ବହିର୍ଭୂତ ହେବ। ସମସ୍ତ କର୍ମ ଓ ଚିନ୍ତା ସଙ୍ଗଠିତ ଓ ଦଳଭୁକ୍ତ ହୋଇ କରିବା ଦରକାର।

ଏହିପରି ଭାବନା ମନରେ ପ୍ରବେଶ କରିବା ମାତ୍ରକେ, ବଙ୍ଗଳାର ବିପ୍ଳବୀ ଦଳରେ ଯୋଗ ଦେବାପାଇଁ ବ୍ୟଗ୍ରତା ଅନୁଭବ କଲି। ଠିକ ଏହି ସମୟରେ ସମ୍ବାଦପତ୍ରରେ ପାଠ କଲି, "ବାଲେଶ୍ୱରର ଖଣ୍ଡ-ଯୁଦ୍ଧ।" ବଙ୍ଗଳାର ବିପ୍ଳବୀ ଦଳର ଯତୀନ୍ଦ୍ରନାଥ ମୁଖାର୍ଜି ନାମରେ କେହି ଜଣେ ପ୍ରଧାନ ବ୍ୟକ୍ତି ଥିଲେ। ସେ ତାଙ୍କର ବିପ୍ଳବୀ ସାଥି ୩/୪ ଜଣଙ୍କୁ ସଙ୍ଗରେ ଧରି ଓଡ଼ିଶାରେ ପ୍ରବେଶ କରିଥିଲେ। ଭାରତ-ରକ୍ଷା-ଆଇନ

ବଙ୍ଗରେ, କଲିକତାରେ ଧରପଗଡ଼ ଆରମ୍ଭ ହେବାରୁ ସେ ବଙ୍ଗ ଦେଶ ଛାଡ଼ି ଓଡ଼ିଶାକୁ ଚାଲିଗଲେ। ବାଲେଶ୍ବର ଜିଲ୍ଲାରେ ସେ ବୁଲୁଥିଲାବେଳେ, ଗୁପ୍ତ ପୋଲିସ ତାଙ୍କର ସନ୍ଧାନ ପାଇ ତାହାଙ୍କୁ ଧରିବାକୁ ସଶସ୍ତ୍ର ପୋଲିସ୍ ଘେରାଉ କଲେ। ସରକାରଙ୍କ ପୋଲିସ ଫଉଜ ସହିତ ଯତୀନ୍ଦ୍ରନାଥ ମୁଖାର୍ଜି ଲଢ଼ାଇ କରି ପୋଲିସ ଗୁଳିଦ୍ୱାରା ହତ ହୋଇ ପଡ଼ିଗଲେ କିନ୍ତୁ ଆତ୍ମ ସମର୍ପଣ କରି ନ ଥିଲେ। ପୋଲିସ ସହିତ ତାହାଙ୍କର ୩/୪ ଘଣ୍ଟା କାଳ ଏହି ଯେଉଁ ଲଢ଼ାଇ ଚାଲିଲା, ତାହାକୁ 'ବାଲେଶ୍ବର ଖଣ୍ଡ ଯୁଦ୍ଧ' ନାମ ଦେଇ, କଲିକତାର ସଂବାଦପତ୍ର ସମସ୍ତ ବିବରଣୀ ପ୍ରକାଶ କଲେ। ଏହି ସଂବାଦ ପାଠ କରି ମୋ ମନରେ ଯେତିକି ଦୁଃଖ ହେଲା ତେତିକି ଆନନ୍ଦ ମଧ ହେଲା। ସେମାନଙ୍କ ବୀରତ୍ୱରେ ଆନନ୍ଦ ଏବଂ ସେମାନଙ୍କ ମୃତ୍ୟୁରେ ଦୁଃଖ। ମୋର ମନେ ହେଲା, ସେମାନଙ୍କ ଦଳରେ ଜଣେ କେହି ଓଡ଼ିଆ ଥିଲେ ବୋଧହୁଏ ସେମାନେ ଏତେ ସହଜରେ ଧରା ପଡ଼ି ନଥାନ୍ତେ। ଏହିଠାରୁ ଏବଂ ଏପରି ଭାବନା ସଂଗେ ସଂଗେ ବିପ୍ଲବୀ ଦଳରେ ଯୋଗ ଦେବା ପାଇଁ ମୋର ମନ ଦୌଡ଼ିଲା।

ଦଶପଲ୍ଲା ଗଣ୍ଡଗୋଳ କଥା ବିପ୍ଲବୀ ଦଳ ମଧ୍ୟରୁ କେହି କେହି ଜାଣିଥାନ୍ତି। ଦଶପଲ୍ଲା ମେଳି ସଂବାଦ ଖବରକାଗଜରେ ପ୍ରକାଶ ପାଇଲା ପରେ କନ୍ଧମାନଙ୍କୁ ଯାଇ ସାହାଯ୍ୟ କରିବା କଥା କାହାରି କାହାରି ମନକୁ ସ୍ପର୍ଶ କରିଥିଲା। ନାନା କାରଣରୁ ତାହା କେହି କରି ନାହାନ୍ତି, ନ କରି ମଧ ବୁଦ୍ଧିମାନର କାର୍ଯ୍ୟ କରିଛନ୍ତି। ଏହି ସୂତ୍ରରେ କେହି କେହି ମୋର ନାମ ଶୁଣିଛନ୍ତି ଏବଂ ମୁଁ ବଙ୍ଗ ଦେଶକୁ ପଳାଇ ଆସି ବୋଲପୁର ଶାନ୍ତି ନିକେତନରେ ଆଶ୍ରୟ ନେଇଥିବା କଥା ମଧ କେହି କେହି ଜାଣନ୍ତି। ଶାନ୍ତି ନିକେତନରେ ଥିବା ସମୟରେ ବିପ୍ଲବୀ ଦଳର କେହି ସେଠାକୁ ଯାଇ ମୋ ସହିତ କଥା ହୋଇ ଆସିବାର କଥା ମୁଁ ପରେ ଅନୁମାନ କରି ବୁଝି ପାରିଛି। ବିପ୍ଲବୀ ଦଳରେ କେହି କେହି ବେଳେ ବେଳେ ଭାବିଥାନ୍ତି, ସୁବିଧା ପାଇଲେ କେତୋଟି ଓଡ଼ିଆ ଯୁବକଙ୍କୁ ଦଳଭୁକ୍ତ କରି ନେବେ।

କଲିକତାରେ ଓଡ଼ିଆ ବହୁତ ଅଛନ୍ତି। ଓଡ଼ିଆଙ୍କ ଉପରେ ପୋଲିସର ନଜର ନାହିଁ। ଓଡ଼ିଆ ଯୁବକ କେତୋଟି ପାଇଲେ, ଅନେକ କାର୍ଯ୍ୟ ସହଜରେ ସାଧିତ ହୋଇ ପାରିବ, ଏହି ଇଚ୍ଛାରେ କେହି କେହି ମତେ ସେମାନଙ୍କ ଦଳଭୁକ୍ତ କରିବାକୁ ଇଚ୍ଛା ପ୍ରକାଶ କରିଥିବାରୁ ମୁଁ ପରେ ଜାଣିଛି। ଦେଶ ପ୍ରତି ପ୍ରଗାଢ଼ ଅନୁରାଗ ଏବଂ ଦେଶକାର୍ଯ୍ୟରେ ଅକାତରରେ ପ୍ରାଣବଳି ଦେବା ପାଇଁ ପ୍ରସ୍ତୁତ ନ ଥିଲେ ବିପ୍ଲବୀ ଦଳରେ ଯୋଗ ଦେଇ କାର୍ଯ୍ୟ କରିବା ସହଜସାଧ ନୁହେଁ। କଲିକତାରେ ରହିଲା ଦିନୁ ମୋତେ କେହି କେହି ଆସି, ଜାଣି ଯାଇଛନ୍ତି। ସେମାନେ କାହାକୁ

ଚିହ୍ନିବାକୁ ଇଚ୍ଛାକଲେ, ସେମାନେ କି କୌଶଳରେ ତାହା ସାଧନ କରନ୍ତି, ବେଳେ ବେଳେ ସ୍ୱୟଂ ଅନ୍ତର୍ଯ୍ୟାମୀ ତାହା ଜାଣି ପାରୁଥିବେ କି ନା ସନ୍ଦେହ। ସେ ଯାହା ହେଉ, ବିପ୍ଳବୀ ଦଳରେ ଯୋଗ ଦେବାକୁ ମୋର ମନ ବଳିଛି, ଏବଂ କୌଣସି ଗୋଟିଏ ଦଳ ମତେ ସେମାନଙ୍କ ଦଳଭୁକ୍ତ କରିବାକୁ ମଧ ସେମାନଙ୍କ ଆଗ୍ରହ ଅଛି। କିନ୍ତୁ କେହି କାହାର ମନ କଥା ଜାଣିବାର କୌଣସି ସୁବିଧା ଘଟି ପାରୁ ନାହିଁ।

ମୁଁ ଏହି ମେସ୍‌ରେ ଥିବା ସମୟରେ ଜଣେ କେହି ଆସି ମୋତେ ପ୍ରଶ୍ନ କରିଥିଲେ "ଭାରତ କାହାଦ୍ୱାରା ସ୍ୱାଧୀନ ହୋଇ ପାରିବ?" ଉତ୍ତରରେ ମୁଁ ଗାନ୍ଧୀ ଓ ଅରବିନ୍ଦଙ୍କ ନାମ ପ୍ରକାଶ କରିଥିଲି। ଏ ପ୍ରଶ୍ନ ପଚରା ହେଲା ବେଳେ, ଏ ପ୍ରଶ୍ନର ଉଦ୍ଦେଶ୍ୟ ମୁଁ ବୁଝି ପାରି ନାହିଁ କିମ୍ବା ପ୍ରଶ୍ନକାରୀକୁ ଚିହ୍ନି ନାହିଁ। ପ୍ରଶ୍ନ ପଚାରିବା ବ୍ୟକ୍ତି ଜଣେ କେହି ମୁଖ୍ୟ ବିପ୍ଳବବାଦୀ ଏକଥା ମୁଁ ପରେ ବୁଝିଲି। କଲିକତାରେ କିଏ କଣ ଏହା ଚିହ୍ନିବା ଏକାବେଳକେ ଅସମ୍ଭବ ପରି ଜଣାଯାଏ। ଯାହାକୁ ତୁମ୍ଭେ ନିଜର ପରମ ମିତ୍ର ବୋଲି ଭାବୁଛ, ସେ ହୁଏତ ଜଣେ ବିପ୍ଳବବାଦୀ କିମ୍ବା ସେ ଜଣେ ଇଂରେଜୀ ସରକାରଙ୍କ ଚୋରା ପୋଲିସ। ଏପରି ଅବସ୍ଥାରେ କିଏ କଣ ଚିହ୍ନିବ କିପରି?

ଏଥିପାଇଁ ଦେଶର ସ୍ୱାଧୀନତା କାମନା କରି ଯେଉଁମାନେ ବିପ୍ଳବୀ ଦଳଭୁକ୍ତ ହୋଇ କାର୍ଯ୍ୟ କରନ୍ତି ସେମାନଙ୍କ ଭିତର ବାହାର ସମାନ ନ ଥାଏ। ସେମାନଙ୍କ ହୃଦୟର ଭାବ ଯାହା ତହିଁର ବିପରୀତ କାର୍ଯ୍ୟ ସେମାନଙ୍କୁ କରିବାକୁ ହୁଏ। ଲୋକଦୃଷ୍ଟିର ଅନ୍ତରାଳରେ ରହିବା ପାଇଁ ସେମାନଙ୍କ ବାହ୍ୟିକ ବ୍ୟବହାର କ୍ରିୟାକଳାପ ସହିତ, ଅନ୍ତରର ଚିନ୍ତାଧାରାର ମିଳନ ନ ଥାଏ। ଏଥିପାଇଁ ମନୁଷ୍ୟର ଗତିବିଧି ଦେଖି ଲୋକ ଚିହ୍ନିବା ସହଜ ନୁହେଁ।

ପ୍ରତିଦିନ ସନ୍ଧ୍ୟାରେ ମୁଁ ଗଡ଼ମାଠକୁ ବୁଲିବାକୁ ଯାଏ। ଏହି ପଡ଼ିଆଟି ଅତି ବିସ୍ତୃତ। ଏହାର ଏକ ପାଖରେ ଗଙ୍ଗାନଦୀ। ଅପର ପାର୍ଶ୍ୱରେ ଚୌରଙ୍ଗୀ ରାସ୍ତା। ପଡ଼ିଆରେ ଗଙ୍ଗାକୂଳକୁ ଲାଗି ଫୋର୍ଟ ଉଇଲିୟମ ଦୁର୍ଗ। ଏହି ଦୁର୍ଗର ଏକ ପାର୍ଶ୍ୱରେ ଇଡ଼ନ୍ ଗାର୍ଡ଼ନ ଅର୍ଥାତ୍ ପ୍ରମୋଦ ଉଦ୍ୟାନ। ଏହି ଉଦ୍ୟାନକୁ ଲାଗି ଲାଟ-ପ୍ରାସାଦ। କଲିକତା ଭାରତର ରାଜଧାନୀ ଥିଲାବେଳେ ଏହି ଉଦ୍ୟାନ ଭିତରକୁ କେହି ଭାରତବାସୀ ପ୍ରବେଶ କରିବାକୁ ନିଷେଧ ଥିଲା। ସେ ଯାହା ହେଉ ସେହି ପଡ଼ିଆରେ ଅନେକଗୁଡ଼ିଏ ପ୍ରସ୍ତର ମୂର୍ତ୍ତି ସ୍ଥାପିତ ହୋଇଛି। ସେମାନଙ୍କ ନାମ ଓ ପରିଚୟ ମଧ ପ୍ରସ୍ତରରେ ଲେଖାଅଛି। ଏହି ମୂର୍ତ୍ତିଗୁଡ଼ିକ ସବୁ ଇଂରେଜ ସେନାଧକ୍ଷ ଓ ଶାସକମାନଙ୍କ ପ୍ରତିମୂର୍ତ୍ତି। ଏହିମାନେ ଏ ଦେଶରେ ଇଂରେଜ ରାଜ୍ୟ ସ୍ଥାପନ କରି ଭାରତର ସ୍ୱାଧୀନତା

ଲୋପ କରିଛନ୍ତି। ଇଂରେଜ ସରକାର ତାଙ୍କର ଗୌରବ ଅକ୍ଷୁର୍ଣ୍ଣ ରଖିବା ପାଇଁ ସେମାନଙ୍କ ପ୍ରତିମୂର୍ତ୍ତି ସ୍ଥାପନ କରିଛନ୍ତି। ଏହିସବୁ ପ୍ରତିମୂର୍ତ୍ତି ଦେଖିଲେ ଭାରତ କିପରି ପରାଧୀନ ଓ ପଦଦଳିତ, ଏହି ଭାବ-ତରଙ୍ଗ ହୃଦୟରେ ଖେଳିଯାଏ। ଯେଉଁଦିନ ମୁଁ ଏହି ପଡ଼ିଆକୁ ବୁଲିବାକୁ ଯାଏ, ସେଦିନ ରାତିରେ ମୋର ଭଲ ନିଦ ହୁଏ ନାହିଁ।

ସେ ଯାହା ହେଉ ଏହି ପଡ଼ିଆ ଭିତରେ ଗୋଟିଏ ଦୀର୍ଘକାୟ ଉଚ୍ଚ ଘର ଅଛି। ଏହାର ନାମ ମନୁମେଣ୍ଟ। ମୁଁ ଦିନେ ସନ୍ଧ୍ୟାରେ ଏହି ମନୁମେଣ୍ଟ ନିକଟରେ ଯାଇ ବସିଲି। ଯଥା ନିର୍ଦ୍ଦିଷ୍ଟ ସମୟରେ ମୋର ଜଣେ କେହି ମୁଖ ଚିହ୍ନା ଲୋକ ଆସି ମୋ ନିକଟରେ ହାଜର ହେଲେ। ତାହାଙ୍କ ସହିତ ମୋର ସେପରି କିଛି ପରିଚୟ ନାହିଁ। ସେ ମୋ ନିକଟରେ ବସି ମୋ ଡେଣାରେ ହାତ ପକାଇ ମତେ କହିଲେ, ‘‘ତୁମି ଏତ ଦୁର୍ବଳ କେନ?’’ ତାଙ୍କର ଏ ପ୍ରଶ୍ନ ଶୁଣି ମୋର ବୁଝିବାର ଆଉ କିଛି ବାକି ରହିଲା ନାହିଁ। ମୁଁ ଉତ୍ତର ଦେଲି, ‘‘ଆମି ଦୁର୍ବଳ କେ ବଲ୍‌ଚେ? ମନେର ବଲ୍ ଥାକିଲେ ହଲ, ଗାଏର ବଲ୍ ଏକମାତ୍ର ବଲ୍ ନଏ।’’

ଏହି ହେଲା ପ୍ରଥମ ସମ୍ଭାଷଣ। ତାପରେ ସେ କହିଲେ, ‘‘କଲିକତାରେ ରହିବାକୁ ହେଲେ କୌଣସି ଗୋଟିଏ ସ୍କୁଲରେ ନାମ ଲେଖାଇ ନେବା ଦରକାର। ତା ନ ହେଲେ, ଜଣେ ଯୁବକ କଲିକତାରେ ବିନା କାମରେ ରହି, ଏଠାକୁ ସେଠାକୁ ଯିବା ଆସିବା କଲେ ପୋଲିସର ଦୃଷ୍ଟି ନିଶ୍ଚୟ ପଡ଼ିବ। ପୋଲିସର ସନ୍ଦେହ ଜାତ ହେବ। ପୋଲିସର ସନ୍ଦେହ-ଚକ୍ଷୁରେ ପଡ଼ିଲେ କିଛି କରି ହେବ ନାହିଁ। ଯେ କୌଣସି ଉପାୟରେ କୌଣସି ଗୋଟିଏ ସ୍କୁଲରେ ନାମ ଲେଖାଇ ନେବା ଦରକାର। ମୁଁ ଆସେଁ, ପରେ ଦେଖା ହେବ।’’ ଏତିକି କହି ଦେଇ ଉକ୍ତ ଭଦ୍ରବ୍ୟକ୍ତିଟି ସେଠାରୁ ଚାଲିଗଲେ।

ସେ ଲୋକଟି କେବଳ ଟିକିଏ ମୁଖଚିହ୍ନା ଲୋକ। ସେ କିଏ, କଣ କରନ୍ତି, କେଉଁସ୍ଥାନରେ ଥାନ୍ତି ସେ ସବୁ ମୁଁ ଭଲ କରି ଜାଣେ ନାହିଁ। ସେ ଜଣେ ଛାତ୍ର ହୋଇଥିବେ ମୁଁ କେବଳ ଏହା ଅନୁମାନ କରିଛି। ସେ ଚାଲିଗଲା ପରେ ସେ ସ୍ଥାନରେ ଅନେକ ସମୟ ପର୍ଯ୍ୟନ୍ତ ମୁଁ ବସି ରହିଲି। ମନ ମଧ୍ୟରେ କେତେ କଣ ଭାବନା ଖେଳିଗଲା। କିପରି କିଛି ନୂଆ କଥା ମୁଁ ଶୁଣିବି, ଏପରି ବିଚାରିଲି। କିନ୍ତୁ ଉପର କଥାର ରହସ୍ୟ କିଛି ବୁଝି ପାରିଲି ନାହିଁ। କେତେଦିନ ପରେ ବୁଝିଲି, ସ୍କୁଲରେ ନାମ ଲେଖାଇବା ଗୋଟିଏ କାର୍ଯ୍ୟ। ଏ କାର୍ଯ୍ୟଟି ହାସଲ କରି ପାରିବାର ଦେଖାଗଲେ, ପରେ ଅନ୍ୟ କଥା। ପ୍ରକାରାନ୍ତରେ ମତେ ଏହି କାର୍ଯ୍ୟ ସାଧନ କରିବାର ଆଦେଶ ମିଳିଲା।

# ଚତୁର୍ଥ ପରିଚ୍ଛେଦ

କଲିକତା ମେସ୍ ମଧ୍ୟରେ ଆମ୍ଭ ମେସ୍‌ଟିର କିଛି ବିଶେଷତ୍ୱ ଅଛି ଏଥିରେ ଆଦୌ ସନ୍ଦେହ ନାହିଁ। କିନ୍ତୁ ଏହା ଉପରେ ପୋଲିସର ଚକ୍ଷୁ ନ ପଡ଼ିଛି ତାହା ନୁହେଁ। ମେସ୍ ପ୍ରତି ପୋଲିସର ଦୃଷ୍ଟି ରହିଛି। ପୋଲିସର ସନ୍ଦେହ ଚକ୍ଷୁରେ ପଡ଼ିଲେ ମେସ୍‌ଟି ଭାଙ୍ଗିଯିବ ଏଥିପାଇଁ ଯୋଗେନ୍‌ଦା ପ୍ରଭୃତିଙ୍କର ଯେ ଡର ନ ଥାଏ ତାହା ନୁହେଁ। କଲିକତାରେ ପ୍ରତ୍ୟେକ ବଙ୍ଗାଳୀ ଛାତ୍ରଙ୍କ ପଛରେ ଗୋଇନ୍ଦା ପୋଲିସ ରହି ଗତିବିଧି ନିରୀକ୍ଷଣ କରେ। କାହାଠାରେ କିଛି ଅସାଧାରଣ ଦେଖିଲେ ତା ପଛରେ ବରାବର ଚୋରା ପୋଲିସ ରହନ୍ତି। ସୁତରାଂ ମୋ ପରି ଜଣେ ଯୁବକ ମେସ୍‌ରେ ଅଛି। କୌଣସି ସ୍କୁଲ କିମ୍ବା କଲେଜରେ ନାମ ନ ଥାଇ ମେସ୍‌ରେ ରହିବାର ହେତୁ କଣ, ଏହି ବିଷୟ ଅନୁସନ୍ଧାନ କରୁ କରୁ କାଳେ ମୁଁ ଧରା ପଡ଼ିବି ଏହି ଭୟରେ ଯୋଗେନଦା ପ୍ରଭୃତି ମଧ୍ୟ ଠିକ କରିଥାନ୍ତି ଯେ କୌଣସି ଗୋଟିଏ ସ୍କୁଲରେ ମୋର ନାମ ଲେଖାଇ ଦେବା ନିରାପଦ। କିନ୍ତୁ କଟକରୁ ଟ୍ରାନସଫର ସାର୍ଟିଫିକେଟ ନ ଆଣିଲେ ସ୍କୁଲରେ ନାମ ଲେଖା ହେବ କିପରି? ସୁତରାଂ ଯେ କୌଣସି ପ୍ରକାରେ ଖଣ୍ଡିଏ ସାର୍ଟିଫିକେଟ ହାସଲ କରିବାକୁ ହେବ।

କଲିକତାଠାରୁ ତିରିଶ ମାଇଲ ଦୂରରେ ବାଗନାନ୍ ନାମକ ଗୋଟିଏ ଗ୍ରାମ ଅଛି। ବେଙ୍ଗଲ-ନାଗପୁର ରେଳରେ ଆସିବାକୁ ହୁଏ। ଏହି ଗ୍ରାମରେ ଗୋଟିଏ ହାଇସ୍କୁଲ ଅଛି। ଜଣେ କେହି ବନ୍ଧୁ ଏହି ସ୍କୁଲର ହେଡ୍‌ମାଷ୍ଟରଙ୍କ ନିକଟକୁ ଖଣ୍ଡିଏ ପତ୍ର ଦେଲେ। ଉକ୍ତ ପତ୍ର ଖଣ୍ଡି ଧରି ମୁଁ ଆସି ବାଗନାନ୍ ସ୍କୁଲରେ ଉପସ୍ଥିତ ହେଲି। ହେଡ୍‌ମାଷ୍ଟରଙ୍କ ପରାମର୍ଶ ଅନୁସାରେ ଖଣ୍ଡିଏ ପତ୍ର ମୁଁ ମୋର ଜ୍ୱେଜଙ୍କ ସ୍ୱାକ୍ଷରରେ ଲେଖିଲି। ମୋ ଜ୍ୱେଜ ଲେଖୁଛନ୍ତି:—"ହେଡ୍‌ମାଷ୍ଟର ମହାଶୟ॥

ମୋର ଭାତୃଷ୍ପୁତ୍ର ଶ୍ରୀମାନ୍ ଗୋବିନ୍ଦଚନ୍ଦ୍ର ମିଶ୍ରଙ୍କୁ ମୁଁ ମୋର କଲିକତା ବସାରେ ରଖି ଘରୋଇ ଭାବରେ କିଛି ପାଠ ପଢ଼ାଇଅଛି। କୌଣସି ଗୋଟିଏ ସ୍କୁଲରେ ନାମ ଲେଖାଇ ଦେବା ମୋର ଇଚ୍ଛା। ଏଣୁ ମୁଁ ତାହାଙ୍କୁ ଆପଣଙ୍କ ସ୍କୁଲକୁ ପଠାଉଛି। କାରଣ, କଲିକତାରେ ରଖି ତାହାଙ୍କୁ ସ୍କୁଲରେ ପଢ଼ାଇବା ମୋ ପକ୍ଷରେ ସହଜ ସାଧ୍ୟ ନୁହେଁ। ତେଣୁ ଆପଣ ଅନୁଗ୍ରହ କରି, ତାହାଙ୍କୁ ପରୀକ୍ଷା କରି ଯେଉଁ କ୍ଲାସରେ ଉପଯୁକ୍ତ ମନେ କରିବେ ସେହି କ୍ଲାସରେ ନାମ ଲେଖାଇଦେଲେ ବିଶେଷ ଉପକୃତ ହେବି। ଇତି ।

ଆପଣଙ୍କର ବିଶ୍ୱନାଥ ମିଶ୍ର

ପତ୍ର ଖଣ୍ଡିକ ଏହିପରି ଭାବରେ ଓଡ଼ିଆରେ ଲେଖି ତାହାକୁ ଇଂରେଜୀରେ ଅନୁବାଦ କରି ହେଡ୍‌ମାଷ୍ଟର ମହାଶୟଙ୍କୁ ଦେଲି। ସେ ମୋର ନାମ ମାଟ୍ରିକ୍ ଫାଷ୍ଟ କ୍ଲାସରେ ଲେଖି ଦେଲେ। ମୁଁ କଲିକତା ଫେରି ଆସିଲି। କିଛିଦିନ ପରେ ପୁଣି ଯାଇ ସେହି ସ୍କୁଲରେ ହାଜର ହେଲି। ଆଉ ଖଣ୍ଡିଏ ପତ୍ର କକେଇ ଲେଖିଛନ୍ତି:—

''ହେଡ୍‌ମାଷ୍ଟର ମହାଶୟ।

ଆପଣ ଅନୁଗ୍ରହ ପୂର୍ବକ ଶ୍ରୀମାନ୍ ଗୋବିନ୍ଦର ନାମ ଫାଷ୍ଟ କ୍ଲାସରେ ଲେଖିଛନ୍ତି, ଏଥିପାଇଁ ଅନ୍ତରର ଧନ୍ୟବାଦ ଜଣାଉଅଛି। କିନ୍ତୁ ଇତି ମଧ୍ୟରେ କେତେକ ଘଟଣା ଘଟି ଯାଇଛି, ଯେଉଁ ସକାଶେ ଶ୍ରୀମାନ ଗୋବିନ୍ଦଙ୍କୁ ମୁଁ ମୋର ନିକଟରେ ରଖିବାକୁ ବାଧ ହେଉଛି। ଦୟା କରି ଆପଣ ଖଣ୍ଡିଏ ଟ୍ରାନ୍‌ସଫର ସାର୍ଟିଫିକେଟ ଦେଲେ ମୁଁ ବିଶେଷ ଉପକୃତ ହେବି। ଇତି ।

ଆପଣଙ୍କର ଅନୁଗ୍ରହାକାଂକ୍ଷୀ
ଶ୍ରୀ ବିଶ୍ବନାଥ ମିଶ୍ର''

ଏହିପରି ଖଣ୍ଡିଏ ଓଡ଼ିଆରେ ପତ୍ର ଓ ତହିଁର ଇଂରେଜୀ ଅନୁବାଦ ହେଡ୍‌ମାଷ୍ଟର ମହାଶୟଙ୍କୁ ଦେଲି। ସେ ଏ ପତ୍ର ପାଇ ଖଣ୍ଡିଏ ସାର୍ଟିଫିକେଟ ଦେଲେ। ଉକ୍ତ ସାର୍ଟିଫିକେଟ ଧରି ମୁଁ କଲିକତା ଫେରିଲି। ଏହିପରି ଭାବରେ ନାମ ଲେଖାଇ ସାର୍ଟିଫିକେଟ ଆଣିବାରେ ବାଗନାନ୍ ସ୍କୁଲର ଅନ୍ୟାନ୍ୟ ଶିକ୍ଷକଙ୍କ ମଧ୍ୟରୁ କେହି କିଛି ଆପତ୍ତି ନ କରିଛନ୍ତି ତାହା ନୁହେଁ। କିନ୍ତୁ ହେଡ୍‌ମାଷ୍ଟର ମହାଶୟ କାହାରି ଆପତ୍ତି ଶୁଣି ନାହାନ୍ତି। କାରଣ ସବୁ ତାହାଙ୍କ ପରାମର୍ଶରେ ହୋଇଛି। ସେ ଜଣେ ବିପ୍ଳବବାଦୀ। କିନ୍ତୁ ମୁଁ ତାହାଙ୍କୁ ଜାଣି ନଥିଲି। ତାହାଙ୍କ ସହିତ ମୋର ପରିଚୟ ହେବାର କେତେକ ମାସ ପରେ ଭାରତ ରକ୍ଷା ଆଇନ ଅନୁସାରେ ସେ ଧରାହୋଇ ଅନ୍ତରୀପ ବନ୍ଦୀରୂପେ ଅଟକ ରହିଲେ। ଏଥିରୁ ସେ ବିପ୍ଳବବାଦୀ ବୋଲି ମୁଁ ଅନୁମାନରେ ବୁଝି ନେଲି।

ଏହିପରି ଭାବରେ ସାର୍ଟିଫିକେଟ ହାସଲ ହେଲା। ଏହା ପଛରେ ଆଉ ଯାହା ରହସ୍ୟ ରହିଲା ତାହା ଉଲ୍ଲେଖ କରିବା କୌଣସି ଦରକାର ନାହିଁ। ବର୍ତ୍ତମାନ କୌଣସି ଗୋଟିଏ ସ୍କୁଲରେ ନାମ ଲେଖାଇଲେ ହେଲା। କଲିକତା ବଡ଼ବଜାର ଷ୍ଟ୍ରିଟରେ ଖେଲାତଚାନ୍ଦଇନ୍‌ଷ୍ଟିଚିଉଟ୍ ନାମରେ ଗୋଟାଏ ସ୍କୁଲ ଥାଏ। ବ୍ୟବସାୟୀ ହିସାବରେ କେତେ ଜଣ ମିଶି ଏହି ସ୍କୁଲଟିକୁ ସ୍ଥାପନ କରିଥାନ୍ତି। ସ୍କୁଲ କଲେଜ ସ୍ଥାପନ କରିବା ଗୋଟାଏ ବ୍ୟବସାୟ, ଏହା ମୁଁ ଏହି ସ୍କୁଲରୁ ଜାଣିଲି। କଲିକତାରେ ଗୋଟିଏ ସ୍କୁଲ ସ୍ଥାପନ କରି ପାରିଲେ ଛାତ୍ରଦତ୍ତ ବେତନରୁ ବେଶ ରୋଜଗାର ହୁଏ। ଦୁଇ ଚାରିଜଣ ମିଶି ସ୍କୁଲ କରନ୍ତି। ଅନ୍ୟାନ୍ୟ ଶିକ୍ଷକଗୁଡ଼ିକ ସେମାନଙ୍କ ଚାକର କହିଲେ ଚଳେ। ସେମାନେ ନିୟମିତରୂପେ ଦରମା ପା'ନ୍ତି ନାହିଁ। ଏଥି ପାଇଁ ଶିକ୍ଷକମାନେ

କେତୋଟି ଛାତ୍ରଙ୍କୁ ନିଜର କରି ରଖିଥାନ୍ତି। ଦରମା ଅସୁଲର ବେଳ ପଡ଼ିଲେ ଶିକ୍ଷକମାନେ ସେମାନଙ୍କ ହାତରେ ଯେ କେତେ ଜଣ ପ୍ରିୟଛାତ୍ର ଥାନ୍ତି, ସେମାନଙ୍କଠାରୁ ନିଜ ବେତନ ବାବଦକୁ ସ୍କୁଲ ଦରମା ନେଇଯାନ୍ତି। ଏହି ସ୍କୁଲର ହେଡ୍ ପଣ୍ଡିତ ବିଚାରା ଏହିପରି କେତେ ଥର ମୋ ନିକଟରୁ ଦରମା ମାଗି ନେଇଛନ୍ତି। ଦିନେ ମୁଁ ଦରମା ଦେବାକୁ ଯିବା ସମୟରେ ହେଡ୍ ପଣ୍ଡିତ ମତେ କହିଲେ, "ଗୋବିନ୍ଦ, ଦରମା ଟାକା ଆମାକେ ଦାଓ। ଆମି ନିଏଛି, ବଲେ ବଲେଦିବି। ଶାଲାରା ଆମାର ଦରମା ବାକୀ ରେକେଛେ।" ଏହିପରି ଭାବରେ ଅନେକ ସମୟରେ ଶିକ୍ଷକ କେହି କେହି ଛାତ୍ରମାନଙ୍କ ନିକଟରୁ ଦରମା ନେଇ ନିଅନ୍ତି। ଏଥିରୁ ସ୍କୁଲର ଅବସ୍ଥା କଣ ହୋଇଥିବ ବୁଝିନେବା ଉଚିତ। ଜାଣି ଶୁଣି ଏପରି ଗୋଟିଏ ରଦି ସ୍କୁଲରେ ମୁଁ ନାମ ଲେଖାଇଲି। ସ୍କୁଲରେ ପାଠ ପଢ଼ିବା ମୋର ତ ଉଦ୍ଦେଶ୍ୟ ନୁହେଁ। ନିଜକୁ ଛାତ୍ର ବୋଲି ପରିଚୟ ଦେବା ମୋର ଉଦ୍ଦେଶ୍ୟ। ଏପରି ଗୋଟିଏ ସ୍କୁଲରେ ନାମ ଲେଖାଇ ନ ଥିଲେ, ଅନ୍ୟ କୌଣସି ପ୍ରସିଦ୍ଧ ସ୍କୁଲରେ ନାମ ଲେଖାଇଲାବେଳେ ଏ ଟ୍ରାନସ୍‌ଫର ସାର୍ଟିଫିକେଟ ନେଇ କାଳେ କିଛି ପ୍ରଶ୍ନ ଉଠିପାରେ, ଏହି ଭୟ ମଧ୍ୟ ଥାଏ। ସେ ଯାହା ହେଉ ଏହିପରି ଭାବରେ ସ୍କୁଲରେ ମୋର ନାମ ଲେଖା ହେଲା।

ଏହି ବର୍ଷ କଲିକତା ପ୍ରେସିଡେନ୍ସି କଲେଜରେ ଓଟେନ୍ ସାହେବ ନାମକ ଜନୈକ ଅଧ୍ୟାପକଙ୍କ ସହିତ ଛାତ୍ରମାନଙ୍କର ଗୋଳମାଳ ସୃଷ୍ଟି ହେଲା। ଓଟେନ୍ ସାହେବ ଛାତ୍ରମାନଙ୍କଠାରୁ ମାଡ଼ ଖାଇଲେ। ସନ୍ଦେହ କରି ଏ ଦୋଷପାଇଁ ସୁଭାଷ ବାବୁଙ୍କୁ ଦୁଇବର୍ଷ ପାଇଁ ତଡ଼ି ଦିଆଗଲା। ସେ କଲିକତା ଛାଡ଼ି କଟକରେ ଆସି ରହିଲେ। ଆମ ମେସ୍ ଉପରେ ପୋଲିସର କଡ଼ା ନଜର ପଡ଼ିଲା। ମେସ୍‌ଟି ଅନେକବାର ଖାନତଲାସ ହେଲା। ଫଳରେ ମେସ୍ ଭାଙ୍ଗିଗଲା। ମେସ୍‌ର ଛାତ୍ରମାନେ କିଏ କେଉଁଠାରେ ଯାଇ ରହିଲେ। କିଛିଦିନ ପାଇଁ ମୁଁ ବୋଲପୁର ଶାନ୍ତିନିକେତନକୁ ଗଲି। ଶାନ୍ତିନିକେତନକୁ ଯିବା ପୂର୍ବରୁ ସ୍କୁଲରେ ଟେଷ୍ଟ ପରୀକ୍ଷା ଦେଇ ବିଶ୍ୱବିଦ୍ୟାଳୟରେ ମାଟ୍ରିକ୍ ପରୀକ୍ଷା ଦେବାପାଇଁ ମୁଁ ବଛା ହୋଇଥାଏ। ସେହି ବର୍ଷ ଶାନ୍ତିନିକେତନରୁ ଯେ କେତୋଟି ଛାତ୍ର ପରୀକ୍ଷା ଦେବାର ଥାଏ, ମୁଁ ସେମାନଙ୍କ ସହିତ ରହି କ୍ଲାସରେ ଯୋଗ ଦିଏ। ଶାନ୍ତି ନିକେତନରେ ଛାତ୍ର ଓ ଶିକ୍ଷକ ସମସ୍ତେ ମତେ ବଡ଼ ଭଲ ପାଉଥାନ୍ତି। ରବୀନ୍ଦ୍ରନାଥ ଠାକୁରଙ୍କ ଅନୁଗ୍ରହରୁ ଶାନ୍ତିନିକେତନ ସବୁବେଳେ ମୋପାଇଁ ଉନ୍ମୁକ୍ତ ଥାଏ।

ପରୀକ୍ଷା ଦେବାର ସମୟ ଉପସ୍ଥିତ ହେଲା। ଶାନ୍ତିନିକେତନର ଛାତ୍ରମାନେ ଚାନ୍ଦା କରି ମତେ କଲିକତା ଆସି ପରୀକ୍ଷା ଦେବାପାଇଁ ଖର୍ଚ୍ଚ ଦେଇଥିଲେ। ମୁଁ ଆସି ପରୀକ୍ଷା ଦେଇ ମାଟ୍ରିକ ସେକେଣ୍ଡ ଡିଭିଜନରେ ପାଶ୍ କଲି। ବର୍ତ୍ତମାନ କଲେଜରେ ନାମ ଲେଖାଇବାର ସମୟ।



## ପଞ୍ଚମ ଭାଗ

# ପ୍ରଥମ ପରିଚ୍ଛେଦ

## ଡିଫେନ୍ସ ଅଫ୍ ଇଣ୍ଡିଆ ଆକ୍ଟ

'Defence of India Act' ଆଇନ ବଳରେ କଲିକତାରେ ଧରପଗଡ଼ ଭାରି ଚାଲିଛି। ଅନେକ ଯୁବକ ଛାତ୍ର ଧରା ହୋଇ ଅନ୍ତରୀଣ ବନ୍ଦୀ ରୂପେ ଅଟକ ଅଛନ୍ତି। କଟକରେ ବାବୁ ଆଶୁତୋଷ ରାୟ ବୋଲି ଜଣେ ଓକିଲ ଥିଲେ। ତାଙ୍କର ପୁଅଙ୍କ ନାମ ଶଶାଙ୍କଶେଖର ରାୟ। ସେ କଲିକତାରେ ଏମ୍.ଏ. ପଢୁଥିଲେ। ତାଙ୍କୁ ଧରି ପୋଲିସ ଅଟକ ରଖିଛି। ସେ ତାଙ୍କ ଘରେ ଅନ୍ତରୀଣ ବନ୍ଦୀରୂପେ ରହିଛନ୍ତି। ତାହାଙ୍କ ନିକଟରୁ କେତେକ ବିଷୟ ପଚାରି ବୁଝିବାର କୌଣସି ଆବଶ୍ୟକ ପଡ଼ିଲା। ଏହି କାର୍ଯ୍ୟଟି ସାଧନ କରିବା ପାଇଁ ମୋ ଉପରେ ହୁକୁମ ଜାରୀ ହେଲା। ମତେ କଟକ ଯାଇ ଶଶାଙ୍କ ବାବୁଙ୍କ ସହିତ ଦେଖା କରିବାକୁ ହେବ। ମୁଁ କଟକ ଯାଉଚି କିପରି ? ଓଡ଼ିଶାରେ ମୋ ନାମରେ ଓ୍ୟାରଣ୍ଟ ଜାରୀ ଅଛି। କଟକ ଗଲେ ମୁଁ ଧରା ପଡ଼ିବି, ଏଥିରେ ସନ୍ଦେହ କରିବାର କିଛି ନାହିଁ। ସେ ଯାହା ହେଉ ଯେ କୌଣସି ପ୍ରକାରେ ଏହି କାର୍ଯ୍ୟଟି ମତେ ସାଧନ କରିବାକୁ ହେବ। ଏହା ହେଉଛି ମୋର ଦ୍ୱିତୀୟ ପରୀକ୍ଷା।

କଟକ ଆସି ମୁଁ ସୂତାହାଟରେ ଲୁଚି ରହିଲି। ଶଶାଙ୍କ ବାବୁଙ୍କ ସହିତ ଦେଖା ସାକ୍ଷାତ କିପରି ହେବ ସେ ମୋର ଭାବନା। ସେ Home intern ହୋଇ ଥିବାରୁ ଘରୁ ବାହାରକୁ ଆସୁ ନଥିବେ। ସବୁବେଳେ ଚୋରା ପୋଲିସ ତାଙ୍କ ଘରଠାରେ ପହରା ଥିବ। ବାହାର ଲୋକଙ୍କ ସହିତ ଦେଖା କରି କଥା ହେବା ତାହାଙ୍କୁ ମନା। ତାଙ୍କର ବାପ ଭାଇ ମଧ୍ୟ ବଡ଼ ସାବଧାନ ରହିଥିବେ। ଏପରି ଅବସ୍ଥାରେ ତାହାଙ୍କ ସହିତ ସାକ୍ଷାତ କରି କୌଣସି ଗୁପ୍ତ ବିଷୟ ପଚାରି ବୁଝିବା ଅସମ୍ଭବ ପରି ବୋଧ ହେଲା। ଯାହାହେଉ ଦୁଇ ତିନି ଦିନ କଟକରେ ରହିଲା ପରେ ଦିନେ ସନ୍ଧ୍ୟାରେ ଅଚାନକ ଭାବରେ ତାଙ୍କ ଘରଠାରେ ଉପସ୍ଥିତ ହେଲି। ତାଙ୍କ ଦାଣ୍ଡଘରେ ଗୋଟିଏ ଦୁଇଟି ପିଲା ଆଲୋକ ଜାଳି ବସି ପଢୁଥାନ୍ତି। ମୋପରି ଜଣେ ଅଚିହ୍ନା ଲୋକଙ୍କୁ ହଠାତ୍ ଦେଖି ପିଲା ଦୁଇଟି ବିସ୍ମୟରେ ମତେ ଚାହିଁ ରହିଲେ। ''ଶଶାଙ୍କ ବାବୁଙ୍କ ସହିତ ମୋର କାମ ଅଛି, ତାଙ୍କୁ ଟିକିଏ ଡାକି ଦିଅ।''–

ଏହା କହିବାରୁ ଉକ୍ତ ପିଲା ଦୁଇଟି ଶଶାଙ୍କ ବାବୁଙ୍କ ବାପାଙ୍କୁ ଡାକ ପକାଇଲେ। ପିଲା ଦୁଇଟିର ଡାକ ଶୁଣି ଶଶାଙ୍କ ବାବୁଙ୍କ ବାପା ଆସି ମୁଁ କିଏ, ଏବଂ କଣ ପାଇଁ ଆସିଛି ବୋଲି ପ୍ରଶ୍ନ କଲେ। ମୁଁ କହିଲି, "ଶଶାଙ୍କ ବାବୁଙ୍କୁ କେତେକ କଥା ପଚାରି ବୁଝିବାର ଅଛି। ଆପଣ ତାଙ୍କୁ ଡାକି ଦିଅନ୍ତୁ। ମୁଁ ଥାନାରୁ ଆସିଛି।" ମୁଁ ଥାନାରୁ ଆସିଛି ଶୁଣି ତାଙ୍କ ବାପା ଟିକିଏ ଡରିଗଲେ। ଇତି ମଧ୍ୟରେ ଶଶାଙ୍କ ବାବୁ ଆସି ଉପସ୍ଥିତ ହୋଇଗଲେ। ସେ ମୋତେ ହଠାତ୍ ଦେଖି ଟିକିଏ ଅବାକ୍ ହୋଇଗଲେ। ତାଙ୍କର ମୋତେ ଚିହ୍ନିବାର ଅବା ମୋର ଏପରି ଭାବରେ ତାଙ୍କ ଦୁଆରେ ଉପସ୍ଥିତ ହେବାର କାରଣ ତାଙ୍କର ଅଜଣା ରହିଲା ନାହିଁ। ସେ ତାଙ୍କ ବାପାଙ୍କୁ କହିଲେ, 'ଉନି ଥାନାଥେକେ ଏସେଛେନ୍; ଆପନି ଯାନ୍; କି ଆଛେ ଆମି ବୁଝେ ଯାଛି।" କିନ୍ତୁ ତାଙ୍କ ବାପା ଛାଡ଼ି ଯିବା ସହଜ ନୁହେଁ। ଥାନାରୁ ପୁଣି କାହିଁକି କିଏ ଆସିଲା ଏହା ଦେଖି ସେ ଟିକିଏ ଭୀତ ହୋଇଛନ୍ତି। ତେଣୁ ସେ ଆମ୍ଭ ଦୁହିଁଙ୍କି ଛାଡ଼ି ଗଲେ ନାହିଁ। ମୁଁ ଦେଖିଲି ବ୍ୟାପାର ବିଷମ ଆକାର ଧାରଣା କରୁଛି, କାଳ ବିଳମ୍ବ କଲେ ସବୁ ଧରା ପଡ଼ିଯିବ। ତେଣୁ ହଠାତ୍ ମୁଁ ପଚାରିଲି, "ଶଶାଙ୍କବାବୁ, ସକାଳେ ଆପଣ ବୁଲିବାକୁ କୁଆଡ଼େ ଯାନ୍ତି, କେତେବେଳେ ଯାନ୍ତି ଏବଂ କାହା ସହିତ ବାଟରେ କଥା ହୁଅନ୍ତି କି ନାହିଁ? ଏହିପରି କେତୋଟି ପ୍ରଶ୍ନ ପଚାରି ତାହାର ଉତ୍ତର ନେଇ ମୁଁ ସେଠାରୁ ପଳାଇ ଆସିଲି। ତହିଁ ଆରଦିନ ସକାଳୁ ଖାନ୍‌ନଗର ଶ୍ମଶାନରେ ଯାଇ ଉପସ୍ଥିତ ହେଲି। ଶଶାଙ୍କ ବାବୁ ସକାଳ ଆଠଟା ବେଳକୁ ବୁଲିବାକୁ ଗଲେ। ସେହିଠାରେ ମୋର ଯାହା ତାଙ୍କଠାରୁ ବୁଝିବାର ଥିଲା, ତାହା ପଚାରି ବୁଝି, ସେହିଦିନ ରାତିରେ କଲିକତା ଫେରିଲି।

କଟକରୁ ଫେରି କଲିକତାରେ ଅଛି। କଲେଜରେ ନାମ ଲେଖାଇ ଅଧ୍ୟୟନ କରିବାର ଯୋଗାଡ଼ କରୁଛି। ଏଥର କଲିକତାକୁ ଆସି ରବୀନ୍ଦ୍ରନାଥ ଠାକୁରଙ୍କ ଯୋଡ଼ାଶଙ୍କ ଘରଠାରେ ରହିଛି। ଦିନେ ସକାଳୁ ମୋର ଜନୈକ ବନ୍ଧୁ ଆସି ମତେ ଡାକି ନେଲେ। ମୁଁ ତାଙ୍କୁ ଦାଦା ବୋଲି ଡାକେ। ତାଙ୍କର ନାମ କଣ ଜାଣେ ନାହିଁ। ସେ ହେଉଛନ୍ତି ଜଣେ ବିପ୍ଳବବାଦୀ କର୍ମୀ। ସେ ମଧ୍ୟସ୍ଥର କାର୍ଯ୍ୟ କରନ୍ତି। ମୋଠାରେ କିଛି କାର୍ଯ୍ୟ ଥିଲେ ଏହି ବନ୍ଧୁଟି ଆସି ମତେ ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଉପସ୍ଥିତ ହେବାପାଇଁ କହିଯାନ୍ତି। ଏହିପରି ନିର୍ଦ୍ଦିଷ୍ଟ ସମୟ ଓ ନିର୍ଦ୍ଦିଷ୍ଟ ସ୍ଥାନରେ ଉପସ୍ଥିତ ହେଲେ ଜଣେ ଦୁଇଜଣଙ୍କ ସହିତ ଦେଖା ସାକ୍ଷାତ ହୁଏ। ଯେଉଁମାନଙ୍କ ସହିତ ଦେଖା, ସାକ୍ଷାତ ହୁଏ ସେମାନେ ମୋର ମୁଖଚିହ୍ନା ଲୋକ, କିନ୍ତୁ ସେମାନଙ୍କ ନାମ ମୁଁ ଜାଣେ ନାହିଁ।

ସେ ଯାହା ହେଉ ଆଜି ସକାଳେ ଯେଉଁ ବନ୍ଧୁଟି ମତେ ଡାକିବାକୁ ଆସିଲେ, ସେ ମତେ ନେଇ ବିଡ଼ନ୍ ଷ୍ଟ୍ରିଟରେ ଗୋଟିଏ ଗଳିରେ ଥିବା ଗୋଟିଏ ଦୋତାଲା

କୋଠା ଘରେ ଛାଡ଼ିଦେଇ ଚାଲିଗଲେ। ଘରର ତଳ କୋଠରୀରେ ମୁଁ ବସି ରହିଲି। ସେ ଘରେ ଜଣେ କେହି ପରିବାର ନେଇ ରହିଲାପରି ଜଣା ପଡୁଥାଏ। ମୋର ଜଣେକ ମୁଖଚିହ୍ନା ଲୋକ ସେ ଘରୁ ବାହାରି ଗୋଟିଏ ପିଅନ୍ ପୋଷାକ ପିନ୍ଧିବାକୁ ମତେ ଦେଲେ। କଲିକତା କରୋପରେସନର ପିଅନ୍‌ମାନେ ପିନ୍ଧିଲା ପୋଷାକ ପରି ଖାକି କନାରେ ଗୋଟିଏ ନୂଆ ପୋଷାକ ତିଆରି ହୋଇଥାଏ। ମୁଁ ଉକ୍ତ ପିଅନ ପୋଷାକ ପିନ୍ଧି ଖଣ୍ଡିଏ ଚଦର ଘୋଡ଼େଇ ହୋଇ ପଡ଼ିଲି। ଘୋଡ଼େଇ ହେବାର ଉଦ୍ଦେଶ୍ୟ ବାଟରେ ପୋଷାକଟି ଯେପରି ଚିହ୍ନା ନ ପଡ଼ିବ। ଅନ୍ୟ ବନ୍ଧୁଟି ଗୋଟିଏ ପୋଷାକ ପିନ୍ଧି, ମାପିବାର ଖଣ୍ଡିଏ ଫିତା, ଗୋଟିଏ କମ୍ପାସ ବାକ୍ସ ଓ ଗୋଟିଏ କାଗଜ ଇଥି ଫାଇଲ ଲୁଚାଇ କରି ଧରିଲେ। ଦୁହେଁ ଗଳି ରାସ୍ତା ଦେଇ ବଡ଼ ବଜାରରେ ଆସି ଉପସ୍ଥିତ ହେଲୁ। ବଡ଼ ବଜାରରେ ଗୋଟିଏ ଗଳି ଭିତରେ ଜଣେକ ମାରବାଡ଼ି ଘରେ ଉପସ୍ଥିତ ହେଲୁ। ତାହାଙ୍କ ଇଙ୍ଗିତରେ ମୁଁ ଘୋଡ଼େଇ ହୋଇଥିବା ଚଦରଟି ବାହାର କରିଦେଲି ଏବଂ ତାଙ୍କ ହାତରୁ କାଗଜ ଲଥିଟି ଧଇଲି। ସେ ହେଲେ କଲିକତା କରୋପରେସନର ଜଣେ ଓଭରସିଅର, ମୁଁ ହେଲି ଜଣେ ପିଅନ। ଏହିପରି ବେଶରେ ଜଣେ ମାରବାଡ଼ି ଘରେ ଉପସ୍ଥିତ ହେଲୁ। ଉକ୍ତ ମାରବାଡ଼ି ଘରବାଲାର ଦରବାନ୍ ଆମ୍ଭେମାନେ କିଏ, କୁଆଡ଼େ ଆସିଛୁ ବୋଲି ପଚାରିବାରେ ମୋର ବନ୍ଧୁଟି ଉତ୍ତର କଲେ, "ଆମ୍ଭେମାନେ କରୋପରେସନ ଲୋକ। ଏ ଘରର ଆସେସମେଣ୍ଟ ନେଇ କେତେକ କାର୍ଯ୍ୟ ଅଛି। ବାବୁ ସାହେବଙ୍କୁ ଟିକିଏ ଡାକିଦିଅ।" କରୋପରେସନ୍‌ରୁ ଆମ୍ଭେମାନେ ଆସିଛୁ ଶୁଣି ଦରବାନ ଯାଇ ଉକ୍ତ ମାରବାଡ଼ି ଭଦ୍ରବ୍ୟକ୍ତିଙ୍କୁ ଡାକିଆଣିଲା। ସେ ଆସିବାରୁ ତାହା ସହିତ ଦୁଇଚାରିପଦ କଥା ହୋଇ, ତାର ଘରକୁ ଫିତା ଟାଣି ମାପ କରାଗଲା। ଦୁଇ ଚାରି ଜାଗା ମାପିବା ପରେ, ଉକ୍ତ ମାରବାଡ଼ି ଭଦ୍ରବ୍ୟକ୍ତିଙ୍କର ପାଣି କଳ କେତୋଟା ଓ କେଉଁଜାଗାରେ ଅଛି, ବିଜୁଳିବତୀ ମୋଟରେ କେତେଟା ତାଙ୍କ ଘରେ ଜଳେ, ବିଜୁଳିପଙ୍ଖା କେତୋଟା ଅଛି, ଇତ୍ୟାଦି ପ୍ରଶ୍ନ ପଚରାଗଲା। ତାରପର ଟେଲିଫୋନ୍ କେତୋଟା କେଉଁଠାରେ ଅଛି ପଚାରି ବୁଝିବାରେ, ଜଣାଗଲା ଯେ ଗୋଟିଏ ତଳ ଅଫିସ୍ ଘରେ, ଆଉ ଗୋଟିଏ ତିତାଲା ଉପରେ ଅଛି। ତାପରେ ସଦର ରାସ୍ତା ନିକଟରୁ ତାଙ୍କ ଘର କେତେ ଦୂରରେ ଇତ୍ୟାଦି ସମ୍ବାଦ ବୁଝି ଆମ୍ଭେ ଦୁହେଁ ସେଠାରୁ ଫେରିଲୁ। ସେ ସ୍ଥାନ ଛାଡ଼ିଆସିଲା ପରେ ଦୁହେଁ ଦୁଇଟି ଭିନ୍ନ ଭିନ୍ନ ରାସ୍ତା ଦେଇ ବସାକୁ ଫେରିଲୁ। ଆମ୍ଭେ ଦୁହେଁ ଏପରି ବେଶ ପିନ୍ଧି ସେଠାକୁ ଯିବାର କାରଣ କଣ ମୁଁ ବୁଝିପାରିଲି ନାହିଁ। ତାହାର ରହସ୍ୟ ଏବେ ମଧ ମୁଁ ବୁଝିନାହିଁ। କିନ୍ତୁ ଅନୁମାନ କରି ଜାଣୁଛି, ରାଜନୈତିକ ଡକାଇତି କରିବା ପାଇଁ ଉକ୍ତ ମାରବାଡ଼ି ଘର ସୁବିଧା ହେବ କି ନାହିଁ, ଏହି ଉଦ୍ଦେଶ୍ୟରେ ବୋଧହୁଏ ଏପରି କରାଯାଇଥିଲା।

ସେ ଯାହା ହେଉ ଏହି ଘଟଣା ପରେ ମୁଁ ଉପଲବ୍ଧି କଲି ଯେ ଏ ଦଳର ବିଶ୍ୱାସ ମାତ୍ରା ଟିକିଏ ମୋ ପ୍ରତି ବେଶି ହେଲା। କାରଣ ଜଣେ ଦୁଇଜଣ ଲୋକଙ୍କୁ ଚିହ୍ନିବାର ସୁବିଧା ମତେ ଦିଆଗଲା। ଜଣକଠାରୁ କୌଣସି ସମ୍ବାଦ ନେଇ ଅନ୍ୟ ଜଣକୁ ଦେବାର କାର୍ଯ୍ୟ ମଧ ମୋତେ ଅର୍ପଣ କରାଗଲା। କ୍ରମଶଃ ମୁଁ ଏହିସବୁ କାର୍ଯ୍ୟରେ ବିଶେଷ ଭାବରେ ଜଡ଼ିତ ହୋଇ ପଡ଼ିଲି। ଦିନ ରାତ୍ରି ମୋ ମନରେ ଏହି ଚିନ୍ତା ଖେଳିଲା। କର୍ମପନ୍ଥା ମଧ ମତେ ଅନେକ ଦେଖାଗଲା। ଗୋଟିଏ କର୍ମପଦ୍ଧତି ମୁଁ ଶୁଣାଇଥିଲି। ସେ ସବୁ ଆଜି ଆଉ ଉଲ୍ଲେଖ କରିବାର କୌଣସି ପ୍ରୟୋଜନ ନାହିଁ। ମନର ଅବସ୍ଥା ସେତେବେଳେ ଯାହା ଥିଲା ବର୍ତ୍ତମାନ ତାହା ନାହିଁ। ସେଥିରୁ ମଧ ମୋର ବିଶ୍ୱାସ ଉଠିଯାଇଛି। ସୁତରାଂ ସେ ସବୁର ଆଲୋଚନା ମୋର ଏହି ଆତ୍ମଜୀବନୀରେ ବିଶେଷ ଭାବରେ ଦର୍ଶାଇବାପାଇଁ କୌଣସି ଆବଶ୍ୟକତା ମୁଁ ବୋଧ କରୁନାହିଁ।

କେବଳ ଏଠାରେ ଏତିକି କହିପାରେ ଯେ ବଙ୍ଗଳା ଦେଶରେ ବିପ୍ଳବବାଦୀ ଯେତେ ସବୁ କାର୍ଯ୍ୟ କରୁଥିଲେ, ସେମାନେ ସମସ୍ତେ ଗୋଟିଏ ଦଳଭୁକ୍ତ ନ ଥିଲେ। ପ୍ରତ୍ୟେକ ଦଳର କାର୍ଯ୍ୟପ୍ରଣାଳୀ, ନିୟମାବଳୀ କିମ୍ବା କେତେଜଣ କେଉଁ ଦଳରେ ଅଛନ୍ତି ସେ ସବୁ ଜାଣିଲେ କୌଣସି ଉପାୟ ନ ଥିଲା। ପ୍ରତ୍ୟେକ ଦଳର କାର୍ଯ୍ୟକୁ ଦୁଇଚାରିଜଣ ଚାଳକ ନିୟନ୍ତ୍ରଣ କରନ୍ତି। ଚାଳକମାନେ ମଧସ୍ଥ ଲୋକଦ୍ୱାରା ଦଳଭୁକ୍ତ ଅନ୍ୟାନ୍ୟ କର୍ମୀଙ୍କଠାରୁ କାର୍ଯ୍ୟ ଆଦାୟ କରନ୍ତି। ସବୁ ମଧସ୍ଥ ଲୋକେ ମଧ ଚାଳକଙ୍କୁ ଜାଣିବାର ଉପାୟ ନାହିଁ। ମଧସ୍ଥ ଓ ଚାଳକ ମଧରେ ଭିତରି ଲୋକ ରହି ମଧ ମଧସ୍ଥ କାର୍ଯ୍ୟ କରନ୍ତି। ଗୋଟିଏ ଦଳରେ ଅନେକ ମଧସ୍ଥର କାର୍ଯ୍ୟ କରନ୍ତି। ଜଣେ ମଧସ୍ଥ ସହିତ ୩/୪ ଜଣ କର୍ମୀଙ୍କ ଚିହ୍ନା ପରିଚୟ ଥାଏ। କେତେଜଣ ମଧସ୍ଥଙ୍କୁ ଜଣେ ଚାଳକଙ୍କ ଆଦେଶ ଅନୁସାରେ କର୍ମ କରିବାକୁ ହୁଏ। ଏହି ଘଟଣା ପରେ ମୁଁ ଜଣେ ସାମାନ୍ୟ ମଧସ୍ଥର କାର୍ଯ୍ୟ କରିଥିଲି। ମଧସ୍ଥର କାର୍ଯ୍ୟ ହେଉଛି, ଦୁଇଚାରିଜଣ କର୍ମୀଙ୍କୁ ଚିହ୍ନିବା; ସମ୍ବାଦ ନେବା ଆଣିବା କରିବା। ସ୍ଥାନ ଓ ସମୟ ଜାଣି ଦୁଇଜଣଙ୍କୁ କୌଣସି ସ୍ଥାନରେ ମିଳନ କରାଇବାର ସ୍ଥିର କରିଦେବା। କିନ୍ତୁ ଯେଉଁମାନେ ଏକତ୍ର ହୋଇ କଥା ହେବେ, ସେମାନଙ୍କ ନିକଟରେ ମଧସ୍ଥ କାର୍ଯ୍ୟ କରୁଥିବା ଲୋକେ ରହିବ ନାହିଁ, କିମ୍ବା ସେମାନେ କେଉଁ ବିଷୟରେ କଣ କଥା ହେଲେ ତାହା ମଧସ୍ଥ ଜାଣିପାରିବ ନାହିଁ। ମଧସ୍ଥ କେବଳ ସେମାନଙ୍କୁ ଚିହ୍ନିବ, ସେମାନେ ରହିଥିବା ସ୍ଥାନ ଜାଣିବ। ଏତିକି କାର୍ଯ୍ୟ କରିବାପାଇଁ ଦାୟିତ୍ୱ ଦେବା ପୂର୍ବରୁ କର୍ମୀଙ୍କୁ ଭଲକରି ପରୀକ୍ଷା କରାଯାଏ ଏବଂ ଏପରି ଭାବରେ ତାହାକୁ ଏଥିରେ ଜଡ଼ିତ କରିଦେବାକୁ ହୁଏ ଯଦ୍ୱାରା ଏଥିରୁ ସହଜରେ ସେ ଆଉ ଖସି ଯାଇ ପାରିବ ନାହିଁ। କେହି ଯଦି ଖସି ବାହାରିଗଲା, କିମ୍ବା କୌଣସି ବିଶ୍ୱାସଘାତକତା କଲା ତେବେ ତାହାଦ୍ୱାରା ଦଳର ବିଶେଷ କିଛି କ୍ଷତି ହୁଏ ନାହିଁ।

# ଦ୍ୱିତୀୟ ପରିଚ୍ଛେଦ

## ସତ୍ୟବାଦୀ ଯିବା ସଂକଳ୍ପ

ମାଟ୍ରିକ ପରୀକ୍ଷା ଦେଇ ମୁଁ କଲିକତାରେ ଅଛି। City Collegeର ଲାଇବ୍ରେରୀରେ କାର୍ଯ୍ୟ କରୁଛି। କଲେଜ ଲାଇବ୍ରେରୀର ଗୋଟିଏ ସୂଚୀପତ୍ର ତିଆରି ହୋଇ ଛପାହେବାର ଥାଏ। ଏହି ସୂଚୀପତ୍ର ତିଆରି କରିବା କାର୍ଯ୍ୟରେ ସାହାଯ୍ୟ କରିବାକୁ ମୁଁ ନିଯୁକ୍ତ ହୋଇଥାଏ। କଲିକତାରେ ରହିବା ପାଇଁ କୌଣସି ଗୋଟିଏ କାର୍ଯ୍ୟ ଖୋଜି ବାଛି ନେବାର କଥା। ପରୀକ୍ଷା ଫଳ ପ୍ରକାଶ ପାଉ ପାଉ ୩/୪ମାସ ଚାଲିଯିବ। ଇତିମଧ୍ୟରେ କଲେଜରେ ନାମ ଲେଖାଇ ହେବ ନାହିଁ। ଏଣୁ ମୁଁ ଏହି କାର୍ଯ୍ୟଟି ଖୋଜି ବାଛି ନେଇଥାଏ।

ଏହିପରି ଭାବରେ କଲିକତାରେ ଥିବା ସମୟରେ ମୋର ଜନୈକ ଶାନ୍ତିନିକେତନର ପ୍ରିୟ ବନ୍ଧୁ ଦେଖା ହେଲେ। ତାଙ୍କର ନାମ ସରସୀ ଦତ୍ତ। ତାଙ୍କର ଛୋଟ ଭାଇଟିର ନାମ ନଳିନୀ ଦତ୍ତ। ଏହାଙ୍କ ଭଉଣୀ ମିସ୍ ଦତ୍ତ ଡାକ୍ତରୀ ପାଶ୍ କରି, ଶାନ୍ତିନିକେତନରେ ଡାକ୍ତରୀ କରୁଥିଲେ। ଏହି ଭାଇ ଭଉଣୀଙ୍କ ସହିତ ମୋର ଭଲ ପରିଚୟ ଥାଏ। ଏମାନେ ଖ୍ରୀଷ୍ଟିୟାନ। କିନ୍ତୁ ସରସୀ ବାବୁ ବି.ଏ.ପାଶ୍ କରିଛନ୍ତି। କଲେଜରେ ଅଧ୍ୟୟନ କଲାବେଳେ ସ୍ୱାମୀ ବିବେକାନନ୍ଦଙ୍କର କିଛି ପୁସ୍ତକ ପଢ଼ି ତାଙ୍କ ମନ ବଦଳି ଯାଇଛି। କଲେଜରୁ ବାହାରି ସେ ରାମକୃଷ୍ଣ ମିଶନରେ ଯୋଗ ଦେଇଛନ୍ତି। ଏଣୁ ଏହି ଭାଇ ଭଉଣୀ ସମସ୍ତଙ୍କ ବିଚାର ବୁଦ୍ଧି ବର୍ତ୍ତମାନ ହିନ୍ଦୁଧର୍ମମାର୍ଗାବଲମ୍ବୀ। ଯେଉଁ ସୁରେନ୍ଦ୍ରନାଥ ମିତ୍ର ମତେ ପ୍ରଥମେ ସଙ୍ଗରେ ନେଇ ଶାନ୍ତିନିକେତନ ଯାଇଥିଲେ, ସେ ଶାନ୍ତିନିକେତନରେ ବର୍ତ୍ତମାନ ଶିକ୍ଷକ। ସେ ସ୍ୱାମୀଜୀଙ୍କର ଜଣେ ଭକ୍ତ। ଅନେକ ସମୟରେ ଏହି ସୁରେନ୍ଦ୍ର ବାବୁଙ୍କ ବସାରେ ସରସୀ ବାବୁ ପ୍ରଭୃତି ଆମ୍ଭମାନଙ୍କର ମିଳନ ହୁଏ। ଖ୍ରୀଷ୍ଟିୟାନ ମିସନାରୀମାନେ କିପରି ଏ ଦେଶ ଲୋକଙ୍କୁ ଖ୍ରୀଷ୍ଟିୟାନ କରାଇ ନେଉଛନ୍ତି ଆଦି କଥାଠାରୁ ଆରମ୍ଭ କରି ରାମକୃଷ୍ଣ ମିଶନର ସନ୍ୟାସୀମାନେ ଆମେରିକାରେ କିପରି କାର୍ଯ୍ୟ କରୁଥିଲେ ଇତ୍ୟାଦି କଥାର ବହୁତ ଆଲୋଚନା ପଡ଼େ। ସରସୀ ବାବୁ ଓ ତାଙ୍କର ଭାଇ ଭଉଣୀ ସମସ୍ତେ ରାମକୃଷ୍ଣ ଦେବଙ୍କ ଭକ୍ତ ପାଲଟିଛନ୍ତି। ଏହିପରି କେତେ କାରଣରୁ ତାହାଙ୍କ ସହିତ ମୋର ଟିକିଏ ଘନିଷ୍ଠତା ଜନ୍ମିଯାଇଥାଏ।

ତାଙ୍କ ସହିତ କଲିକତାରେ ମୋର ଦେଖା ହେଲା ବେଳକୁ ସେମାନେ ଶାନ୍ତିନିକେତନ ଛାଡ଼ି ଆସିଲେଣି। ସରସୀ ବାବୁ ରାମକୃଷ୍ଣ ମିଶନ ଛାଡ଼ି, ପୁଣି ଖ୍ରୀଷ୍ଟିୟାନମତାଗ୍ରହୀ ହେଲେଣି ବୋଲି ମତେ ଜଣା ନାହିଁ। ସେ ମତେ ତାଙ୍କ ଗ୍ରାମକୁ ଯିବାପାଇଁ ଆଗ୍ରହ ପ୍ରକାଶ କଲେ। ତାଙ୍କର ପୂର୍ବ ସ୍ନେହ ମନେ କରି ମୁଁ ତାହାଙ୍କ ସହିତ

ତାଙ୍କ ଗ୍ରାମକୁ ଗଲି। ସେ ଗ୍ରାମଟି ନାମ ମୋର ମନେ ପଡୁ ନାହିଁ। ସେଠାରେ ଖ୍ରୀଷ୍ଟିୟାନମାନଙ୍କର ଗୋଟିଏ ଅନୁଷ୍ଠାନ ଅଛି। ସରସୀ ବାବୁ ସେହି ଅନୁଷ୍ଠାନରେ ଯୋଗ ଦେଇଛନ୍ତି। ତାଙ୍କର ଭଉଣୀ ଦିଲ୍ଲୀରେ ପୁଣି ଉନ୍ନତ ଡାକ୍ତରୀ ବିଦ୍ୟା ପଢୁଛନ୍ତି। ତାଙ୍କର ସାନଭାଇ ନଳିନୀ ସେଠାରେ ଅଛି। କିନ୍ତୁ ଏମାନଙ୍କର ପୂର୍ବ ମତିଗତି ଏକାବେଳକେ ବଦଳି ଯାଇଛି। ମତେ ସେଠାରେ ପାଇ ଖ୍ରୀଷ୍ଟିୟାନ କରିବା ପାଇଁ ବହୁତ ଚେଷ୍ଟା କରାହେଲା। ବହୁତ ପ୍ରଲୋଭନ ଦେଖାଇଲେ। ବସିବା, ଶୋଇବା, ଚାଲିବା, ବୁଲିବା ସବୁବେଳେ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିବାପାଇଁ ମତେ ପ୍ରବର୍ତ୍ତାଇବାକୁ ଲାଗିଲେ। ଅନ୍ୟ କିଛି କଥା ନାହିଁ, କୌଣସି ଆଲୋଚନା ନାହିଁ, କେବଳ ଗୋଟିଏ କଥା–ମତେ କିପରି ଖ୍ରୀଷ୍ଟିୟାନ କରିବେ। ଏ ବ୍ୟବହାରରେ ମୁଁ ଅତିଶୟ ଉତ୍ୟକ୍ତ ହୋଇ ଉଠିଲି। ସେଠାରେ ସାନ ବଡ଼ ସମସ୍ତଙ୍କ ସହିତ ବହୁତ ଯୁକ୍ତିତର୍କ ଲାଗିଲା। ସେମାନଙ୍କ ପ୍ରଲୋଭନରେ ନ ଭୁଲି ସେଠାରୁ ମୁଁ ଚାଲି ଆସିଲି। ସେହିଦିନୁ ଏହି ପରିବାର ସହିତ ମୋର ଆଉ କିଛି ସମ୍ବନ୍ଧ ନାହିଁ। ମୋର ସ୍ନେହ ସମ୍ବନ୍ଧ ସେହିଦିନ୍ ସବୁ ଛିଣ୍ଡି ଯାଇଛି।

କଲିକତାକୁ ଫେରିଲି। ମତେ ଖ୍ରୀଷ୍ଟିୟାନ ଧର୍ମରେ ଦୀକ୍ଷିତ କରାଇବା ପାଇଁ କେତେକ ଖ୍ରୀଷ୍ଟଧର୍ମପ୍ରଚାରକ ଚେଷ୍ଟା କରୁଥିବା କଥା କ୍ରମଶଃ ମୋର ବନ୍ଧୁମାନେ ଜାଣିବାକୁ ପାଇଲେ। ବର୍ତ୍ତମାନ କଲିକତାର ଅବସ୍ଥା ଦିନକୁ ଦିନ ଭୟଙ୍କର ଆକାର ଧାରଣ କରୁଛି। ଗତ ଦୁଇବର୍ଷ ମଧ୍ୟରେ ଅନେକ ଷଡ଼ଯନ୍ତ୍ର ମାମଲା ଚାଲିଲାଣି। ବିପ୍ଲବୀଦଳ ମଧ୍ୟରୁ ଅନେକ ଧରା ପଡ଼ି ଜେଲ, ଦ୍ୱୀପାନ୍ତର, ଫାଶି, ସଜା ସବୁ ପାଇଲେଣି। କଲିକତାରେ ପ୍ରତିଦିନ ଘର ଖାନତଲାସୀ ଓ ଧରପଗଡ଼ ଚାଲିଛି। ଏହାରି ଫଳରେ ମୋର ଅନେକ ଚିହ୍ନା ପରିଚିତ ବନ୍ଧୁ ସବୁ ଧରା ହୋଇ ଅଟକ ରହିଲେଣି। ବିପ୍ଲବୀ ଦଳ ସହିତ ମୋର ସମ୍ବନ୍ଧ ବେଳେ ବେଳେ ଛିଣ୍ଡି ଯାଉଥାଏ। ମୋ ସହିତ ମଧ୍ୟସ୍ଥର କାର୍ଯ୍ୟ କରୁଥିବା କର୍ମୀ ଧରା ହୋଇଗଲେ ସମ୍ବନ୍ଧ ଛିଣ୍ଡିଯାଏ। ପୁଣି ଜଣେ କୌଣସି ଉପାୟରେ ମତେ ଖୋଜି ମୋର ସମ୍ବନ୍ଧ ଯୋଡ଼ିଦିଏ। ଏପରି ହେବାଦ୍ୱାରା ମୋର ବିପ୍ଲବୀ ଦଳ ସହିତ ସମ୍ବନ୍ଧ ଥିବାର ସମ୍ବାଦ ପୋଲିସ ଜାଣି ସାରିଲାଣି। ମତେ ଧରିବାକୁ ମଧ୍ୟ କଲିକତାରେ ପୋଲିସ ଅନୁସନ୍ଧାନ ଆରମ୍ଭ ହୋଇଗଲାଣି। କଲିକତାରେ ରହିବାପାଇଁ ମୋର ଆଉ ସ୍ଥାନ ନାହିଁ। ଅନେକ ସମୟରେ ମତେ ଲୁଚି ରହିବାକୁ ପଡୁଛି। ଦିନ ତମାମ ମୁଁ କଲିକତା ନଗରୀରେ ଇତସ୍ତତଃ ବୁଲୁଥାଏ। ରାତ୍ରିରେ ଯାଇ ମୁଁ ଯେଉଁ ସ୍କୁଲରେ ନାମ ଲେଖାଇଥିଲି, ସେହି ସ୍କୁଲରେ ରହେ। ସ୍କୁଲ ଘରଟିରେ କେହି ନ ଥାନ୍ତି। ଘର ଜଗିବାକୁ ଦୁଇଟି ହିନ୍ଦୁସ୍ଥାନ ଦରବାନ୍ ରହିଥାନ୍ତି। ସେହି ହିନ୍ଦୁସ୍ଥାନୀ ଦରବାନ୍ ଦୁଇଟିଙ୍କୁ ଫୁସୁଲେଇ ମୁଁ ଯାଇ ରାତିରେ ରହିଯାଏ।

ଏହିପରି ଭାବରେ ମାସେକାଳ ବିତିଗଲା। କ୍ରମଶଃ ମୁଁ ଉପଲବ୍ଧ କଲି ଯେ ଜର୍ମାନୀ ଯୁଦ୍ଧ ଶେଷ ନ ହେବା ପର୍ଯ୍ୟନ୍ତ ପ୍ରକାଶ୍ୟରେ ମୁଁ ଆଉ ରହିବାକୁ ସ୍ଥାନ ପାଇବି ନାହିଁ। କିଛି ସମୟ ମତେ ଆତ୍ମଗୋପନ କରି ଲୁଚି ରହିବାକୁ ପଡ଼ିବ। କେତେକ ବନ୍ଧୁ ମଧ ମତେ ଏହି ମର୍ମରେ ଉପଦେଶ ଦେଲେ। ବର୍ତ୍ତମାନ ଆତ୍ମଗୋପନ କରି ରହିବା ଏବଂ ସମ୍ବନ୍ଧ ଯୋଡ଼ି ରଖିବା ହେଉଛି ଏକମାତ୍ର କାର୍ଯ୍ୟ। ମୁଁ ଖ୍ରୀଷ୍ଟିୟାନ ହେବାପାଇଁ ମତେ ପ୍ରବର୍ତ୍ତାଇବା କଥା ମୋର କେତେକ ବନ୍ଧୁ ଶୁଣିଥାନ୍ତି। ବର୍ତ୍ତମାନ ଅବସ୍ଥାରେ ମୁଁ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କଲେ ଭଲ ହୁଅନ୍ତା ବୋଲି କେହି କେହି ବନ୍ଧୁ ମତେ ସୂଚନା ଦେଲେ। ଏ ସୂଚନାର ଅର୍ଥ ଏବଂ ଉଦ୍ଦେଶ୍ୟ ମୁଁ କିଛି ବୁଝି ପାରିଲି ନାହିଁ। ପରେ ମତେ ବୁଝାଇ ଦିଆ ଯାଇଥିଲା। ଏପରି ଗୋଟିଏ ପ୍ରସ୍ତାବରେ ପ୍ରଥମେ ସମ୍ମତି ପ୍ରଦାନ କରିବା ସହଜ ନୁହେଁ। କିନ୍ତୁ ଅନେକ କଥା ଭାବି ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିବା ପାଇଁ ମୁଁ ଶେଷରେ ସ୍ୱୀକୃତ ହୋଇଥିଲି। ଖ୍ରୀଷ୍ଟିୟାନ ଧର୍ମ କେବଳ ଗ୍ରହଣ କରିବାର ହେବ ତାହା ନୁହେଁ, ଆବଶ୍ୟକ ହେଲେ ଜଣେ଼ କ ଖ୍ରୀଷ୍ଟିୟାନ ରମଣୀକୁ ବିବାହ କରିବାକୁ ହେବ, ଏହା ମଧ ମୋର ବନ୍ଧୁମାନେ ପରାମର୍ଶ ଦେଲେ। ଏଥିରେ ମଧ ମୁଁ ଏକମତ ହେଲି।

ଏହିପରି ପ୍ରସ୍ତାବକୁ ମୁଁ ସମର୍ଥନ କଲି, ଏହା ଜାଣିଲେ ଯେ କେହି ବିସ୍ମିତ ହୋଇଯିବ, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ। କିନ୍ତୁ ବହୁତ ଭାବିଚିନ୍ତି ଏଥିରେ ମୁଁ ରାଜି ହୋଇଥିଲି। ମୁଁ ଭାବିଲି, ମୋର ମନ ଓ ହୃଦୟ ଯଦି ଅଟଳ, ମୁଁ ଯଦି ମୋର ଆଦର୍ଶକୁ ଭୁଲି ନ ଯାଏ ଏବଂ ମୋର ଉଦ୍ଦେଶ୍ୟ ଯଦି ସତ୍ ଓ ମହତ୍, ତାହାହେଲେ ଆଦର୍ଶର ସାଧନ ପାଇଁ ପ୍ରତ୍ୟେକ୍ କାର୍ଯ୍ୟ କରିବାକୁ ପଶ୍ଚାତ୍‌ପଦ ହେବା ଉଚିତ ନୁହେଁ। ଦେଶର ସ୍ୱାଧୀନତା ଲାଭ କରିବାପାଇଁ ଯେତେବେଳେ ଯାହା ଦରକାର ପଡ଼ିବ ତାହା କରିବାକୁ ହେବ। ଦଳର ପରିପୁଷ୍ଟି ଓ କାର୍ଯ୍ୟ ସାଧନା ପାଇଁ ଯଦି ଡକାଇତି କରିବା ଅନ୍ୟାୟ ନୁହେଁ, ସରକାରୀ କର୍ମଚାରୀକୁ ହତ୍ୟା କରିବା ଯଦି ଅନ୍ୟାୟ ନୁହେଁ, ତେବେ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରି, ଖ୍ରୀଷ୍ଟିୟାନ ରମଣୀକୁ ବିବାହ କରିବା କଦାପି ଅନ୍ୟାୟ ହୋଇ ନ ପାରେ। ଏହିପରି ଭାବରେ ନାନାପ୍ରକାର ଯୁକ୍ତି ମନରେ ପ୍ରବେଶ କଲା। ଖ୍ରୀଷ୍ଟିୟାନ ହୋଇ ମତେ ଯେଉଁ କାର୍ଯ୍ୟଭାର ଗ୍ରହଣ କରିବାକୁ ପଡ଼ିବ, ତହିଁର ଗୁରୁତ୍ୱ ଉପଲବ୍ଧ କରି ମୁଁ ଏହିପରି ପ୍ରସ୍ତାବରେ ସମ୍ମତି ପ୍ରଦାନ କଲି।

ଖ୍ରୀଷ୍ଟିୟାନ ହୋଇ ମତେ କି କାର୍ଯ୍ୟ ସାଧନ କରିବାକୁ ହେବ ? କଲିକତାରେ ଜଣେ଼ କ ଖ୍ରୀଷ୍ଟିୟାନ ପରିବାର ପରି ମତେ ରହିବାକୁ ହେବ। ଗୋଟିଏ ଖ୍ରୀଷ୍ଟିୟାନ ହୋଟେଲ ସ୍ଥାପନ କରିବାକୁ ପଡ଼ିବ। ଏହା କରି ପାରିଲେ ଅନେକ ଗୁପ୍ତ କାର୍ଯ୍ୟ ସାଧିତ ହୋଇ ପାରିବ। କେତେ ଜଣ ବଡ଼ ବଡ଼ ବିପ୍ଳବବାଦୀ ଲୋକଙ୍କୁ ମୁଁ

ଲୁଚାଇ ରଖି ପାରିବି। କେତେକ ଜିନିଷ ପତ୍ର ନିରାପଦରେ ରହି ପାରିବ। ଡାକରେ ଚିଠିପତ୍ର ଦ୍ୱାରା ଅନେକ ସଂବାଦ ନେଣ ଦେଣ କରିବା ପାଇଁ ସୁବିଧା ହେବ। ଏସବୁ କାର୍ଯ୍ୟ କରିବାକୁ ହେଲେ ପୋଲିସର ଦୃଷ୍ଟି ପଡ଼ିବା ସହଜ ନୁହେଁ। କିନ୍ତୁ ଜଣେ ଖ୍ରୀଷ୍ଟିୟାନ ପରିବାର ଉପରେ ରହି ଗୋଟିଏ ଖ୍ରୀଷ୍ଟିୟାନ ହୋଟେଲ କରିପାରିଲେ ଏସବୁ କରିବା ପାଇଁ ବହୁତ ସୁବିଧା ଓ ସୁଯୋଗ ନିଶ୍ଚୟ ଘଟିବ। ପୋଲିସ ସନ୍ଦେହର ସହଜ କାରଣ କିଛି ରହିବ ନାହିଁ। ଏଥିପାଇଁ ମୋର ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିବା ଓ ଖ୍ରୀଷ୍ଟିୟାନ ରମଣୀ ବିବାହ କରିବାର ପ୍ରସ୍ତାବ। ଅନ୍ୟାନ୍ୟ କର୍ମୀ ଯେବେ ଭୀଷଣ କାର୍ଯ୍ୟ କରି ଜୀବନ ଦେବାକୁ କୁଣ୍ଠିତ ନୁହନ୍ତି, ତେବେ କର୍ତ୍ତବ୍ୟ କର୍ମ ସାଧନ ପାଇଁ ମୋର ଖ୍ରୀଷ୍ଟଧର୍ମ ଅବଲମ୍ବନ କରିବା ଲାଗି ପଶ୍ଚାଦ୍‌ପଦ ହେବା ଉଚିତ ନୁହେଁ।

ମାଟ୍ରିକ ପରୀକ୍ଷା ପରେ ମୁଁ City College (ସିଟି କଲେଜ) ପୁସ୍ତକାଳୟରେ କାର୍ଯ୍ୟ କରୁଥିଲି। ପୋଲିସ ଅନୁସନ୍ଧାନ ହେତୁ ସେ କାର୍ଯ୍ୟଟି ମତେ ଛାଡ଼ି ଦେବାକୁ ପଡ଼ିଲା। ବିପ୍ଳବୀ ଦଳ ସହିତ ମୋର Link (ସମ୍ବନ୍ଧ) ଛିଣ୍ଡିଗଲା। ଛିଣ୍ଡିଗଲା ଖିଅ ଯୋଡ଼ିବାର କୌଣସି ସଂକେତ ମିଳିଲା ନାହିଁ କିମ୍ବା ଆଶା ମଧ ରହିଲା ନାହିଁ। କଲିକତାରେ ରହିବା କଠିନ ଜଣାଗଲା। ହଠାତ୍ କଲିକତା ଛାଡ଼ିବାକୁ ବାଧ ହେଲି। ମୁଁ ପୁଣି ଶାନ୍ତିନିକେତନରେ ଯାଇ ହାଜର ହେଲି। ବୋଲପୁର ଶାନ୍ତିନିକେତନ ଗ୍ରୀଷ୍ମାବକାଶ ନିମିର ବନ୍ଦ ଥାଏ। ସେଠାରେ କେତୋଟି ଛାତ୍ର ରହିଥାନ୍ତି।

ଆଜିପର୍ଯ୍ୟନ୍ତ ଶାନ୍ତିନିକେତନକୁ ଯେତେଥର ଆସିଛି ପ୍ରତ୍ୟେକ ଥର ମୁଁ ଜଣେକ ଛାତ୍ର ଭାବରେ ରହେ। କିନ୍ତୁ ମାଟ୍ରିକ ପରୀକ୍ଷା ଦେଇ ପାଶ୍ କଲା ପରେ ଶାନ୍ତିନିକେତନରେ ଛାତ୍ର ଭାବରେ ରହିବାର ମୋର ସ୍ଥାନ ନାହିଁ। ସେତେବେଳକୁ ଶାନ୍ତିନିକେତନରେ ବିଶ୍ୱଭାରତୀ ଅନୁଷ୍ଠାନ ସ୍ଥାପିତ ହୋଇ ନାହିଁ। ତାହା ହୋଇଥିଲେ, କିଏ କହିବ ମୋର ଜୀବନର ଗତି କେଉଁ ଆକାର ଧାରଣ କରିଥାନ୍ତା। କାରଣ ବିଶ୍ୱଭାରତୀରେ ରହି ଅଧୟନ କରିବାର ସମସ୍ତ ସୁବିଧା ମୁଁ ପାଇ ପାରିଥାନ୍ତି। ଶାନ୍ତିନିକେତନରେ ବିଶ୍ୱଭାରତୀ ସ୍ଥାପିତ ହୋଇଥିଲେ କଲିକତାରେ ରହିବାକୁ ହୋଇ ନ ଥାନ୍ତା ଏବଂ ବିପ୍ଳବବାଦୀ ହୋଇ ପାରିଥାନ୍ତି କି ନା ସନ୍ଦେହ। ସେ ଯାହାହେଉ ଶାନ୍ତିନିକେତନରେ ଉପସ୍ଥିତ ହୋଇ ମୁଁ ସ୍ୱଇଚ୍ଛାରେ ରହିଥିବା ଛାତ୍ରମାନଙ୍କର ଖାଇବା ପିଇବା ବୁଝିବାର ଭାର ଗ୍ରହଣ କଲି। କୌଣସି କାର୍ଯ୍ୟ ନ କରି ଶାନ୍ତିନିକେତନରେ ରହି ଗୋଟିଏ ବୋଝ ହେବା ମତେ ଭଲ ଲାଗିଲା ନାହିଁ। ଏପରି ସ୍ୱଇଚ୍ଛାରେ କାର୍ଯ୍ୟ ଭାର ଗ୍ରହଣ କରିବାର ଦେଖି ଶାନ୍ତିନିକେତନର ପ୍ରଧାନ ଅଧକ୍ଷ ମୋ ଉପରେ ବଡ଼ ସନ୍ତୁଷ୍ଟ ହୋଇଥିଲେ। ଏହି କଥା ସେ ମଧ କବି ମହୋଦୟଙ୍କ କର୍ଣ୍ଣଗୋଚର କରାଇଥିଲେ।

ଶ୍ରୀଯୁକ୍ତ ରବୀନ୍ଦ୍ରନାଥ ଠାକୁର ମଧ୍ୟ ମୋର ଏପରି ଭାବରେ କର୍ମଭାର ବହନ କରି ସୁଚାରୁ ରୂପେ କର୍ମ ପରିଚାଳନା କରିବା କଥା ଶୁଣି ମତେ ଡକାଇ ବହୁତ ପ୍ରଶଂସା କରିଥିଲେ। ଶାନ୍ତି ନିକେତନରେ ରହି ଆଶ୍ରମର ମାନେଜର କାର୍ଯ୍ୟଭାର ବହନ କରିବାକୁ ସେ ଅନୁରୋଧ କରିଥିଲେ ଏବଂ ଘରୋଇ ଭାବରେ କେତୋଟି ବିଷୟ ଅଧ୍ୟୟନ କରିବା ପାଇଁ ଉପଦେଶ ଦେଇଥିଲେ। ତାହାଙ୍କ କଥାକୁ ଭାଙ୍ଗି ଅନ୍ୟ କିଛି କହିବା ଅବା କରିବା ମତେ ଅସମ୍ଭବ ଜଣାଗଲା। କବି ମହୋଦୟଙ୍କ କଥାରେ ମୁଁ ବୋଲପୁର ଶାନ୍ତିନିକେତନ ଭୋଜନାଳୟର ପରିଚାଳନା ଭାର ଗ୍ରହଣ କଲି। ଏହି କାର୍ଯ୍ୟ ପ୍ରାୟ ଦୁଇମାସ ପର୍ଯ୍ୟନ୍ତ ମତେ କରିବାକୁ ପଡ଼ିଥିଲା। ତାପରେ କେତେକ କାରଣରୁ ଏହି କାର୍ଯ୍ୟ ମତେ ଛାଡ଼ିବାକୁ ପଡ଼ିଲା। କବି ମହୋଦୟଙ୍କ ଇଚ୍ଛାନୁସାରେ ଏଲ୍ଲାବାଦ ଯାଇ, ସେଠାରେ ଥିବା ଇଣ୍ଡିୟାନ୍ ପ୍ରେସରେ, ପ୍ରେସ କାର୍ଯ୍ୟ ଶିଖି ଆସି ଶାନ୍ତିନିକେତନର ଗୋଟିଏ ପ୍ରେସ ପରିଚାଳନାର ଭାର ଗ୍ରହଣ କରିବାର କଥା ହେଲା। କିନ୍ତୁ ମୁଁ କଣ କରିବି କିଛି ସ୍ଥିର କରି ନ ପାରିବାରୁ ଏଲ୍ଲାବାଦ ଯିବାର ସ୍ଥିର ହୋଇ ନଥାଏ। କବି ମହୋଦୟଙ୍କ କଥାରେ ମୁଁ ସବୁ ଭୁଲି ଯାଉଥାଏ। ବୋଲପୁର ଶାନ୍ତିନିକେତନର ଜଳବାୟୁରେ କବିଙ୍କର କବିତା ଫୁଟି ଉଠୁଥିଲା ପରି ବୋଧ ହୁଏ। ସେଠାରେ ରହିଲେ ମୁଁ ସବୁ ଭୁଲିଯାଏ। ସେଠାରେ ସାରା ଜୀବନ ରହିବାର ଗୋଟିଏ ସୁବିଧା ସୁଯୋଗ ପାଇବାର ପ୍ରଲୋଭନ ପାଇଲେ ମନ ଟିକିଏ ଆହୁରି ଭୁଲିଯିବା ସ୍ୱାଭାବିକ। କେବଳ ମୁଁ ଇତସ୍ତତଃ ହେଉଥିବାରୁ ଯିବାର ବିଳମ୍ବ ଘଟୁଥାଏ।

ଏହି ସମୟରେ ପଣ୍ଡିତ ଗୋପବନ୍ଧୁ ଦାସ ବୋଲପୁର ଶାନ୍ତି ନିକେତନ ଦେଖିବାପାଇଁ ଯାଇ ଉପସ୍ଥିତ ହେଲେ। ତାଙ୍କ ସଙ୍ଗରେ କଲିକତାରେ ଓକିଲାତି ପଢୁଥିବା ଦୁଇଟି ଓଡ଼ିଆ ଛାତ୍ର ମଧ୍ୟ ଯାଇଥାନ୍ତି। ଗୋପବନ୍ଧୁ ବାବୁ ଶାନ୍ତିନିକେତନରେ ଦୁଇଦିନ ରହିଥିଲେ। ସେ ଯେଉଁ ଦୁଇଦିନ ରହିଲେ, ସବୁବେଳେ ମୁଁ ତାହାଙ୍କ ସହିତ ରହୁଥିଲି। ଏହା କହିବା ଅନାବଶ୍ୟକ, ଏହି ଦୁଇଦିନ ତାହାଙ୍କଠାରୁ ଓଡ଼ିଶା ବିଷୟରେ ନାନା କଥା ଶୁଣିବାକୁ ପାଇଥିଲି। ଦଶପଲ୍ଲା ବିଷୟ ନେଇ ମୁଁ କିପରି କଣ ଚେଷ୍ଟା କରିଥିଲି, କଲିକତାରେ ରହି କିପରି ମାଟ୍ରିକ ପରୀକ୍ଷା ଦେଇ ପାଶ୍ କରିଛି ଇତ୍ୟାଦି କଥା ତାହାଙ୍କୁ ଶୁଣାଇଲି। ମୋର ଅଧ୍ୟବସାୟ କଥା ଶୁଣି ଗୋପବନ୍ଧୁ ବାବୁ ମତେ କୁଣ୍ଢାଇ ପକାଇଲେ। ମୋର ପ୍ରେସ କାର୍ଯ୍ୟ ଶିଖି ଯିବାର କଥା ଶୁଣି ମତେ ସତ୍ୟବାଦୀକୁ ଯାଇ କାର୍ଯ୍ୟ କରିବା ପାଇଁ ଅନୁରୋଧ କଲେ। ଶାନ୍ତି ନିକେତନରେ ରହି କୌଣସି କାର୍ଯ୍ୟ କରିବା ଅପେକ୍ଷା ଓଡ଼ିଶାକୁ ଫେରି ଯାଇ ସତ୍ୟବାଦୀରେ ରହି କିଛି କାର୍ଯ୍ୟ କରିବା ମୋ ପକ୍ଷରେ ଉଚିତ ବୋଲି କହି ଗୋପବନ୍ଧୁ ବାବୁ ମତେ ଅନେକ କଥା କହିଲେ। ସତ୍ୟବାଦୀକୁ ଯିବା ଆବଶ୍ୟକ ହେଲେ ମୁଁ ନିଶ୍ଚୟ ଯିବି ବୋଲି

ସ୍ୱୀକାର କଲି। ମୋର ପ୍ରତିଶ୍ରୁତି ଶୁଣି ଗୋପବନ୍ଧୁ ବାବୁ କହିଲେ, ମୋ ପରି ଲୋକ ସବୁବେଳେ ଲୋଡ଼ା, ଏବଂ ମୋର ସତ୍ୟବାଦୀକୁ ଯିବା ନିହାତି ଦରକାର। ଗୋପବନ୍ଧୁବାବୁଙ୍କର ଏହି ଉକ୍ତିର କୌଣସି ଜବାବ ଦେଇ ପାରିଲି ନାହିଁ। ସେ ଶାନ୍ତିନିକେତନରୁ କଲିକତା ଫେରିଲେ। ଗୋପବନ୍ଧୁ ବାବୁ ଆସିଲା ପରେ, ତାଙ୍କ କଥା ସବୁ ମନେ ପଡ଼ି ମୋ ମନ ଅସ୍ଥିର ହେଲା। ମୁଁ କଣ କରିବି କିଛି ସ୍ଥିର କରି ପାରିଲି ନାହିଁ। ସତ୍ୟବାଦୀକୁ ଗଲେ, ମୁଁ ମୋର ଆଦର୍ଶ ଅନୁସାରେ କାର୍ଯ୍ୟ କରିବାକୁ କେତେଦୂର ସୁବିଧା ପାଇବି ତାହା ଭାବି କିଛି ସ୍ଥିର କରି ହେଲା ନାହିଁ। ଏହି କାରଣରୁ ଗୋପବନ୍ଧୁ ବାବୁଙ୍କ ସହିତ ମୁଁ ସତ୍ୟବାଦୀକୁ ଫେରିଲି ନାହିଁ। ଏହାର କିଛିଦିନ ପରେ ବୋଲପୁର ପୋଲିସ ମୋ ବିଷୟରେ କେତେକ କଥା ଜାଣିବା ପାଇଁ ଶାନ୍ତିନିକେତନରେ ଅନୁସନ୍ଧାନ କଲା। ମାତ୍ର ମୁଁ ସେତେବେଳକୁ ସେଠାରେ ରହିଥିବା ସମ୍ବାଦ ପୋଲିସକୁ ଜଣା ନାହିଁ। ପୋଲିସ ମୋତେ ଅନୁସନ୍ଧାନ କରୁଥିବାର ଜାଣି ଶାନ୍ତିନିକେତନର ଅଧକ୍ଷ ମତେ ସେହି ସ୍ଥାନ ଛାଡ଼ି ଚାଲି ଯିବାପାଇଁ ପରାମର୍ଶ ଦେଲେ। ମତେ ଶାନ୍ତିନିକେତନ ଛାଡ଼ିବାକୁ ହେଲା।

ଶାନ୍ତିନିକେତନ ଛାଡ଼ି କଲିକତାରେ ଉପସ୍ଥିତ ହେଲି। ମାତ୍ର କେଉଁଠାରେ ରହିବି, କଣ କରିବି କିଛି ସ୍ଥିର କରି ପାରିଲି ନାହିଁ। ଦିନଯାକ ଏଠା ସେଠା ହୋଇ ବୁଲେ। ରାତ୍ରିରେ ଯାଇ ସେହି ଖେଲାତ୍‌ଚାନ୍ଦ ଇନ୍‌ଷ୍ଟିଚିଉଟରେ ଶୁଏ। ସେତେବେଳକୁ ଅନେକ ଓଡ଼ିଆ ଛାତ୍ର କଲିକତାରେ ଏମ୍.ଏ. ଓ ବି.ଏ. ପଢୁଥାନ୍ତି। ପାଟନା ଇଉନିଭରସିଟି ସ୍ଥାପିତ ହୋଇ ନଥାଏ। କଟକ କଲେଜରେ ଏ ଦୁଇ ବିଷୟ ପଢ଼ିବାପାଇଁ କ୍ଲାସ ନ ଥାଏ। ପଞ୍ଚାନନ ଘୋଷ ଗଳିର ୯ନମ୍ବର କୋଠାଟି ବହୁଦିନୁ ଓଡ଼ିଆ ଛାତ୍ରଙ୍କ ରହିବା ସ୍ଥାନ। ଏଠାରେ ଓକିଲାତି ପଢୁଥିବା ଛାତ୍ରମାନେ ରହନ୍ତି। ଏହାଛଡ଼ା ଶ୍ରୀ ଗୋପାଳ ମଲ୍ଲିକ ଲେନ୍‌ରେ ଡାକ୍ତରୀ ପଢୁଥିବା ଓଡ଼ିଆ ଛାତ୍ରଙ୍କ ମେସ୍ ଥାଏ। କଲିକତାରେ ଏ ଦୁଇଟିସ୍ଥାନ ଶିକ୍ଷିତ ଓଡ଼ିଆଙ୍କର ଆଡ଼ା।

ପଞ୍ଚାନନ ଘୋଷ ଗଳିରେ ବର୍ତ୍ତମାନ କଟକରେ ଓକିଲ କୃଷ୍ଣଚନ୍ଦ୍ର ମିଶ୍ର, ଅଧାପକ ରତ୍ନାକର ପତି ରହିଥାନ୍ତି। ଏହି ଦୁଇ ଜଣଙ୍କ ସହିତ ମୋର ଟିକିଏ ଘନିଷ୍ଠତା ଥାଏ। ବିଶେଷରେ ଏ ଦୁଇଜଣଙ୍କ ନିକଟକୁ ମୁଁ ବହୁତ ସମୟ ଯିବା ଆସିବା କରେ। ଏହିଠାରେ ତେତେବେଳକୁ ବାବୁ ଗୋପବନ୍ଧୁ ଚୌଧୁରୀ ରହି ଏମ୍.ଏ.ପଢୁଥାନ୍ତି। କଟକର ଓକିଲ ବାବୁ ନିଶାମଣି ଦାସ ମଧ ରହିଥାନ୍ତି। ଶ୍ରୀ ଗୋପାଳ ମଲିକ ଲେନ ବସାରେ ବାବୁ ସତ୍ୟବାଦୀ ମିଶ୍ର ଡାକ୍ତରୀ ପଢୁଥାନ୍ତି। ଡାକ୍ତର ସତ୍ୟବାଦୀ ମୋର ଜଣେ ପରମବନ୍ଧୁ। ଏହି ସମୟରେ ସେ ମତେ ବହୁତ ସାହାଯ୍ୟ କରିଛନ୍ତି। ଏହିମାନଙ୍କ ନିକଟକୁ ମୁଁ ବହୁତ ସମୟ ଯିବା ଆସିବା କରେ। କଲିକତାରେ ମଧ ପୋଲିସ ମତେ ଭଲ ଭାବରେ ଅନୁସନ୍ଧାନ କରିବାକୁ ଆରମ୍ଭ କଲାଣି। ଚୋରା

ପୁଲିସ ଅନେକ ବାର ବାବୁ ସତ୍ୟବାଦୀ ମିଶ୍ର ଓ କୃଷ୍ଣଚନ୍ଦ୍ର ମିଶ୍ର ପ୍ରଭୃତିଙ୍କୁ ମୋ ବିଷୟରେ ପଚାରି ସାରିଲାଣି। କଲିକତାର ଚୋରା ପୋଲିସ ମୋତେ ଖୋଜୁଥିବାର ଜାଣି ଏହିସବୁ ଓଡ଼ିଆ ମେସକୁ ପ୍ରକାଶ୍ୟରେ ଯିବା ଆସିବା କରିବାକୁ ମତେ ସମସ୍ତେ ମନା କଲେ। କେହି କେହି ମତେ Very dangerous, ଅର୍ଥାତ ମୁଁ ଜଣେ ଅତି ଭୀଷଣ ଲୋକ ବୋଲି ଭାବି ମୋ ସହିତ କଥା ହେବାକୁ ଭୟ କଲେ। ଏପରି ଅବସ୍ଥାରେ ଏଣିକି କୌଣସି ଓଡ଼ିଆ ମେସକୁ ଯିବା ଆସିବା କରିବା ମତେ ନିରାପଦ ଜଣାଗଲା ନାହିଁ। ଦିନକୁ ଦିନ କଲିକତାରେ ରହିବା ମତେ ଅସମ୍ଭବ ଜଣାଗଲା। ଭାବିଲି, କଲିକତା ଛାଡ଼ି ଚାଲିଯିବି; କିନ୍ତୁ କୁଆଡ଼କୁ ଯିବି ତାହା ଭାବି ସ୍ଥିର କରିବା କଠିନ ଜଣାଗଲା। ଏପରି ସମୟରେ ପଣ୍ଡିତ ଗୋପବନ୍ଧୁ ଦାସ କଲିକତାରେ ଉପସ୍ଥିତ ହେଲେ। କାଉନ୍‌ସିଲ ମିଟିଙ୍ଗରେ ଯୋଗ ଦେବାପାଇଁ ସେ ପାଟଣା ଯିବା ରାସ୍ତାରେ କଲିକତା ଆସିଥାନ୍ତି। ସେ ଆସିଥିବା ସମ୍ବାଦ ପାଇ ମୁଁ ତାହାଙ୍କ ସହିତ ଦେଖାକଲି। ଶାନ୍ତିନିକେତନକୁ ସେ ଯାଇଥିବା ସମୟର କଥୋପକଥନ ଅନୁସାରେ ମୁଁ ସତ୍ୟବାଦୀ ଯିବାପାଇଁ ଇଚ୍ଛା ପ୍ରକାଶ କଲି। ତାହାଙ୍କ ଅନୁମତି ପାଇ କଲିକତା ଛାଡ଼ି ମୁଁ ସତ୍ୟବାଦୀରେ ୧୯୧୭ ମସିହା ଡିସେମ୍ବର ମାସରେ ଆସି ଉପସ୍ଥିତ ହେଲି।

## ତୃତୀୟ ପରିଚ୍ଛେଦ

### ସତ୍ୟବାଦୀରେ ଅବସ୍ଥିତ

ସତ୍ୟବାଦୀକୁ ଆସି ଗୋପବନ୍ଧୁ ବାବୁଙ୍କ ବସାରେ ରହିଲି। ସ୍କୁଲ ସହିତ ମୋର କୌଣସି ସମ୍ପର୍କ ନ ଥାଏ। ସତ୍ୟବାଦୀ ସ୍କୁଲ ସେତେବେଳକୁ ତାର ଉନ୍ନତିର ଚରମ ସୀମାରେ। ପଣ୍ଡିତ ଗୋପବନ୍ଧୁ ଦାସ ସେତେବେଳକୁ ବିହାର ଓଡ଼ିଶା କାଉନ୍‌ସିଲର ଅନରେବଲ୍ ମେମ୍ବର। ସେ କାଉନ୍‌ସିଲ୍‌କୁ ଯାଇ କାଉନ୍‌ସିଲରେ ଦେଶପାଇଁ କଣ କରାଯାଇ ପାରେ ତାହା ଦେଶବାସୀଙ୍କୁ ଦେଖାଇ ପାରିଛନ୍ତି। ସେତେବେଳେ କାଉନ୍‌ସିଲରେ ଗୋଟିଏ ପ୍ରଶ୍ନ ପଚାରିବା କିମ୍ବା କୌଣସି ବିଷୟରେ ସରକାରୀ କାର୍ଯ୍ୟକୁ ସମାଲୋଚନା କରି ଗୋଟିଏ ବକ୍ତୃତା ଦେବା ଓଡ଼ିଶାରେ ବଡ଼ କାର୍ଯ୍ୟ ବୋଲି ବିବେଚିତ ହେଉଥାଏ। ଗୋପବନ୍ଧୁ ବାବୁ କାଉନ୍‌ସିଲକୁ ଯିବାଦ୍ୱାରା ଏତିକ ଲାଭ ହେଉଛି–ମର୍ଲେ–ମିଣ୍ଟୋ ସଂସ୍କାର ଫଳରେ ଦେଶ କଣ କେତେ ଅଧିକାର ପାଇଲା ତାହା ପୂର୍ବ ମେମ୍ବରମାନଙ୍କ କାର୍ଯ୍ୟରୁ ଲୋକେ କିଛି ବୁଝିପାରୁ ନ ଥିଲେ, କିନ୍ତୁ ଗୋପବନ୍ଧୁ ବାବୁ କାଉନ୍‌ସିଲ୍‌କୁ ଯିବାଦିନୁ ଓଡ଼ିଶାର ଅନେକ ଲୋକ ଏହା ବୁଝିଛନ୍ତି। ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ

ବିଭିନ୍ନ ପ୍ରସଙ୍ଗ ନେଇ କାଉନ୍‌ସିଲରେ ପ୍ରଶ୍ନ କରିବା ପାଇଁ ଲୋକେ ଗୋପବନ୍ଧୁ ବାବୁଙ୍କ ନିକଟରେ ଆବେଦନ କରୁଛନ୍ତି। ତାହାଙ୍କଦ୍ୱାରା ଦେଶର ଏତିକି ଆଖି ଫିଟିଛି ବୋଲି କୁହାଯାଇ ପାରେ।

ଗୋପବନ୍ଧୁ ବାବୁ ସତ୍ୟବାଦୀ ସ୍କୁଲର ପ୍ରତିଷ୍ଠାତା, ଏଣେ କାଉନ୍‌ସିଲର ମେମ୍ବର। ଦେଶରେ ତାଙ୍କର ବେଶ ଖ୍ୟାତି ଅଛି। ସରକାରୀ ଓ ବେସରକାରୀ ଉଭୟ ମହଲରେ ମଧ୍ୟ ତାଙ୍କର ସୁନାମ ଓ ପ୍ରତିପତ୍ତି ଅଛି। ତାହାଙ୍କ କଥାକୁ ଉଭୟ ଲୋକେ ମନଦେଇ ଶୁଣୁଛନ୍ତି। ଦଶପଲ୍ଲା ମେଳି ସମୟରେ ଗୋପବନ୍ଧୁ ବାବୁଙ୍କୁ ଓକିଲାତି କରୁଥିବାର ମୁଁ ଦେଖିଥିଲି। କିନ୍ତୁ ଗୋପବନ୍ଧୁ ବାବୁ ଆଉ ଓକିଲ ନାହାନ୍ତି। ସେ ବର୍ତ୍ତମାନ ଦେଶର ଜଣେ ପ୍ରଧାନ ନେତୃସ୍ଥାନୀୟ ବ୍ୟକ୍ତି। ତାହାଙ୍କ କାର୍ଯ୍ୟ ଓ ଚିନ୍ତା ଦେଶରେ ଗୋଟିଏ ନୂତନ ଜୀବନ ସୃଷ୍ଟି କରିଥିଲା ପରି ଜଣାପଡୁଛି। ଅନେକ ଲୋକ ଅନେକ ବିଷୟରେ ତାହାଙ୍କ ସାହାଯ୍ୟ ଓ ପରାମର୍ଶ ଲୋଡୁଛନ୍ତି। (ବୋଧ ହେଉଛି ଗୋପବନ୍ଧୁ ଦାସ ଓଡ଼ିଶାର ପ୍ରାଣ ଓ ମନ। ତାହାଙ୍କର କାର୍ଯ୍ୟ ଓଡ଼ିଶାର କର୍ତ୍ତବ୍ୟ। ସେ ଯାହା ଚିନ୍ତା କରିଛନ୍ତି ସମଗ୍ର ଓଡ଼ିଶା ତାହାହିଁ ଚିନ୍ତା କରୁଛି ବୋଲି ପ୍ରତୀୟମାନ ହେଉଛି।)

ବର୍ତ୍ତମାନ ମୁଁ ଗୋପବନ୍ଧୁ ବାବୁଙ୍କ ନିକଟରେ ଆସି ରହିଲି। ତାହାଙ୍କ ନିକଟରେ ଥିବା ପର୍ଯ୍ୟନ୍ତ ମୁଁ ଟିକିଏ ନିରାପଦରେ ରହିପାରିବି ବୋଲି ମୋର ଆତ୍ମବିଶ୍ୱାସ ଜନ୍ମିଛି। ଏହାଙ୍କ ନିକଟରେ ରହିଥିବା ପର୍ଯ୍ୟନ୍ତ ପୋଲିସ ମୁଁ ଏଠାରେ ଥିବାର ଜାଣିଲେ, ମୋର ଭୟର କିଛି କାରଣ ନାହିଁ ବୋଲି ମୁଁ ମନେ ମନେ ଭାବୁଛି। ଭୟ କହିଲେ, ମୁଁ ଧରା ହେବାକୁ ଭୟ କରୁଛି, ଠିକ ତାହା ନୁହେଁ। ପୋଲିସ ଧରିବା ଭୟରେ ମୁଁ ଡରି ଅସ୍ଥିର ହେଉଛି, ଏହା ମଧ୍ୟ ନୁହେଁ। ଦଶପଲ୍ଲାରୁ ପଳାଇ ଆସିବା ଦିନୁ ମୁଁ ଜୀବନର ମାୟା ମମତା ଏକପ୍ରକାର ତ୍ୟାଗ କରିଛି। ମୋର ଜୀବନ ପ୍ରତି ଲୋଭ ନାହିଁ। କୌଣସି ପ୍ରକାର ଦୁଃଖ କଷ୍ଟ ସହ୍ୟ କରିବାକୁ ମୋର ହୃଦୟ ଟିକେ ମାତ୍ର ସଂକୁଚିତ ହୁଏ ନାହିଁ। ବିପ୍ଲବୀବାଦୀ ହେଲା ଦିନୁ ଜୀବନକୁ ହାତମୁଠାରେ ଧରି ପ୍ରତି ମୁହୂର୍ତ୍ତରେ ଜୀବନ ଦାନ କରିବାକୁ ପ୍ରସ୍ତୁତ। ଜୀବନ ଦାନ କରିବାରେ ମୂଲ୍ୟ ରହିବା ଆବଶ୍ୟକ। ଦୁଃଖ ନିର୍ଯ୍ୟାତନା ଭୋଗ କରିବାଦ୍ୱାରା ଦେଶର ସ୍ୱାଧୀନତା-ସଂଗ୍ରାମପଥ ଅଗ୍ରଗାମୀ ହେବା ଉଚିତ। ତାହା ନ ହେଲେ ମିଛରେ କାହିଁକି ପୋଲିସ ହାତରେ ଧରା ଦେଇ ଅକାରଣ ଦୁଃଖ ନିର୍ଯ୍ୟାତନା ସହ୍ୟ କରିବି। ପୋଲିସ ଆଖିରେ ଧୂଳି ପକାଇ ପଳାଇ ପାରିଲେ ଜୀବନରେ ଅଧିକ ସାହସର ସହିତ କାର୍ଯ୍ୟ କରିବା ପାଇଁ ମନ ସବୁବେଳେ କଳ୍ପନା ରାଜ୍ୟରେ ଭାସୁଥାଏ। ଏହି ସବୁ କାରଣରୁ ମୁଁ ଏପରି ଲୁଚି ଆତ୍ମରକ୍ଷା କରୁଛି। ଯୁଦ୍ଧ ଶେଷ ନ ହେବା ପର୍ଯ୍ୟନ୍ତ ଭାରତ ରକ୍ଷା ଆଇନ ଜାରୀ ରହିଥିବ। କଲିକତାରେ ଧର ପଗଡ଼ ଚାଲିଥିବ। ବିପ୍ଲବୀଦଳ ସହିତ ମୋର ଖିଅ ଲଗାଇବା ସମ୍ଭବପର ହେବ ନାହିଁ।

ଏଥିପାଇଁ କଲିକତା ଛାଡ଼ି ମୁଁ ଇତସ୍ତତଃ ହେଉଛି। ଏବେ ସତ୍ୟବାଦୀ ଆସିଛି। କିନ୍ତୁ ଏଠାରେ ମୁଁ କେତେଦିନ ରହିପାରିବି? ଏଠାରେ ମୋ ବିଷୟ ନେଇ ପୋଲିସ ଅନୁସନ୍ଧାନ ହେବ କି ନାହିଁ? ମୁଁ ଏଠାରେ ଥିବାର ପୋଲିସକୁ ଜଣାପଡ଼ିଲେ ପୋଲିସ ହାତରୁ ଗୋପବନ୍ଧୁ ବାବୁ ମତେ ରକ୍ଷା କରିପାରିବେ କି ନାହିଁ? ଏ ସବୁ ଭଲ କରି ନ ଜାଣିଲା ପର୍ଯ୍ୟନ୍ତ ମୁଁ କୌଣସି କାର୍ଯ୍ୟଭାର ଗ୍ରହଣ କରିବା ଉଚିତ ନୁହେଁ। ସତ୍ୟବାଦୀରେ କିଛିଦିନ ରହିବାକୁ ହେବ। ରହି କଣ କରିବି କିଛି ସ୍ଥିର କରିପାରୁ ନାହିଁ। ଗୋପବନ୍ଧୁ ବାବୁ ଗୋଟିଏ ଛାପାଖାନା କରିବାକୁ ଇଚ୍ଛା ରଖିଥାନ୍ତି। ଛାପାଖାନା କଲେ ତହିଁର ଭାର ମତେ ଦେବେ ବୋଲି ସେ ଭାବିଥାନ୍ତି। ଗୋପବନ୍ଧୁ ବାବୁ ଜାଣନ୍ତି ନାହିଁ ଯେ ପୋଲିସ ମତେ ଏପରି ତୀବ୍ର ଭାବରେ ଖୋଜୁଛି।

ସତ୍ୟବାଦୀରେ ଅବଶ୍ୟ ମୁଁ ରହିଲି; କିନ୍ତୁ କୌଣସି କାର୍ଯ୍ୟରେ ମୋର ମନ ଲାଗିଲା ନାହିଁ। ମନରେ ଆନନ୍ଦ ଆସିଲା ନାହିଁ। ମୋର ବ୍ୟବହାର କାହାରି ସହିତ ଖାପ ଖାଇଲା ନାହିଁ। ଅଧିକାଂଶ ସମୟ ମୁଁ ବଡ଼ ବିମର୍ଷ ଥାଏ। ଟିକିଏ କଥାରେ ମୋ ମନରେ କ୍ରୋଧ ଜାତ ହୁଏ। ମୋର ବ୍ୟବହାର କାହାକୁ ଭଲ ଲାଗେ ନାହିଁ। ମୁଁ ଯେଉଁ ଭାବ ଦ୍ୱାରା ପ୍ରଣୋଦିତ ହୋଇ କାର୍ଯ୍ୟ କରୁଥିଲି ଅବା ଅଧିକ କାର୍ଯ୍ୟ କରିବାର କଳ୍ପନା ବାନ୍ଧିଛି, ତହିଁର କୌଣସି ଆଭାସ କାହାରିଠାରୁ ପାଉ ନାହିଁ। କାହାରି ସହିତ ମନ ଖୋଲି କଥା ହେବାକୁ କେହି ନାହାନ୍ତି। ଓଡ଼ିଶାରେ କୌଣସି ପ୍ରକାର ରାଜନୈତିକ ଚର୍ଚ୍ଚା ନାହିଁ। ରାଜନୈତିକ ଅନୁଷ୍ଠାନ କହିଲେ 'ଉତ୍କଳ ସମ୍ମିଳନୀ'। କଂଗ୍ରେସର କୌଣସି ନାମଗନ୍ଧ ନାହିଁ। ଏପରି ଅବସ୍ଥାରେ ଭାରତର ସ୍ୱାଧୀନତା କଳ୍ପନା କରିବା ଅସମ୍ଭବ।

ସତ୍ୟବାଦୀକୁ ଆସିଲା ଦିନୁ ଦଶପଲ୍ଲା କାହାଣୀ ମନେ ପଡୁଛି। ବେଳେ ବେଳେ ମନେ ହେଉଛି କଲିକତାରେ ରହିଥିଲେ ବିପ୍ଳବବାଦୀ ଦଳ ସହିତ ଖିଅ ଯୋଖି ହେବାର ସମ୍ଭାବନା ରହିଥାନ୍ତା, କିନ୍ତୁ ଏଠାରେ ତହିଁର କୌଣସି ସମ୍ଭାବନା ନାହିଁ। ପୁଣି ମୁଁ ଯଦି ଧରାପଡ଼େ ତେବେ ଗୋପବନ୍ଧୁ ବାବୁ ମତେ କଣ ପୋଲିସ ହାତରୁ ବଞ୍ଚାଇ ପାରିବେ? କଲିକତା ପୋଲିସ ମୋର ସନ୍ଧାନ ପାଇଲେ ମତେ ଅନ୍ତରୀଣ ବନ୍ଦୀରୂପେ ଅଟକାଇ ରଖିବ। ଏପରି ସ୍ଥଳେ ଗୋପବନ୍ଧୁ ବାବୁଙ୍କ ନିକଟରେ ମୁଁ ଅନ୍ତରୀଣ ରହିଥିବାର ସମ୍ଭବପର ହୋଇପାରେ। କିନ୍ତୁ ଦଶପଲ୍ଲା ଓ୍ୟାରଣ୍ଟରେ ଧରା ହେଲେ ସେଥିରୁ ମୁକ୍ତି ପାଇବାର ଉପାୟ କିଛି ନାହିଁ। ଜାଣି ଶୁଣି ଜୀବନଟା ଜେଲଖାନାରେ କଟିବ। ଦେଶପାଇଁ କୌଣସି କାର୍ଯ୍ୟ କରିବାର ସୌଭାଗ୍ୟ ଏ ଜୀବନରେ ଆଉ ଘଟିବ କି ନା ସନ୍ଦେହ। ଏହିପରି ନାନା ପ୍ରକାର ଭାବନା ମନରେ ଖେଳିଯାଏ। ମନ ବଡ଼ ଅସ୍ଥିର ହୁଏ। ମୋତେ ଏପରି ଅସ୍ଥିର ଏବଂ ଅବ୍ୟବସ୍ଥିତ ଅବସ୍ଥାରେ ଦେଖି ଗୋପବନ୍ଧୁ ବାବୁ ବେଳେ ବେଳେ ବଡ଼ ଚିନ୍ତିତ ହେବାର ମୁଁ ବୁଝିପାରୁଥାଏ।

ମତେ ସବୁବେଳେ ଅନ୍ୟମନସ୍କ ଓ ବିମର୍ଷ ଦେଖି ସେ ବେଳେ ବେଳେ ଅନେକ କଥା ମତେ ବୁଝାଇ କହନ୍ତି। ତାହାଙ୍କ କଥା ମନ ଦେଇ ଶୁଣିଲେ ମଧ୍ୟ, ମୋର ମନର ଚାଞ୍ଚଲ୍ୟ ଦୂର ହୁଏ ନାହିଁ। ମୁଁ ଭାବୁଥାଏ, ଭାରତ ରକ୍ଷା ଆଇନ ଜାରୀ ରହିଥିବା ପର୍ଯ୍ୟନ୍ତ ମତେ କୌଣସି ପ୍ରକାରେ ଏଠାରେ ରହିବାକୁ ପଡ଼ିବ। ମୋର ବିଶ୍ୱାସ, ଗୋପବନ୍ଧୁ ବାବୁଙ୍କ ନିକଟରେ ନ ରହି ଅନ୍ୟ କୌଣସି ସ୍ଥାନରେ ଥିଲେ ମୁଁ କଦାପି ଏଠାରୁ ଅଧିକ ଶାନ୍ତିରେ ନ ଥାନ୍ତି।

ସେ ଯାହାହେଉ ଇତିମଧ୍ୟରେ ସତ୍ୟବାଦୀ ସ୍କୁଲର ଛାତ୍ରମାନେ ଖଣ୍ଡପଡ଼ା ଗଡ଼ଜାତ ବୁଲିଯିବାର ପ୍ରସ୍ତାବ ହେଲା। ଛାତ୍ର ଶିକ୍ଷକ ସମସ୍ତେ ବୁଲିବାକୁ ଯିବେ। ପ୍ରତିବର୍ଷ ସତ୍ୟବାଦୀ ସ୍କୁଲର ଛାତ୍ରବୃନ୍ଦ ଏହିପରି ଭାବରେ ଭ୍ରମଣ କରିବା ସତ୍ୟବାଦୀ ସ୍କୁଲର ବିଶେଷତ୍ୱ। ଓଡ଼ିଶାର ଇତିହାସପ୍ରସିଦ୍ଧ କୌଣସି ଗୋଟିଏ ସ୍ଥାନବିଶେଷକୁ ଯାଇ ସେହି ସ୍ଥାନର ଐତିହାସିକ, ଭୌଗୋଳିକ ଓ ରାଜନୈତିକ ବିଶିଷ୍ଟତା ଆଲୋଚନା କରି ଛାତ୍ରମାନଙ୍କ ମନରେ ଦେଶପ୍ରୀତି ଭାବ ଜାଗରୂକ କରିବା ସତ୍ୟବାଦୀ ସ୍କୁଲ ଶିକ୍ଷା ପ୍ରଣାଳୀର ଗୋଟିଏ ପ୍ରଧାନ ଅଙ୍ଗ। ଏଥି ପୂର୍ବରୁ ଛାତ୍ର ଶିକ୍ଷକ ବହୁସ୍ଥାନ ବୁଲିଛନ୍ତି। ଏଥର ଖଣ୍ଡପଡ଼ା ଗଡ଼ଜାତ ବୁଲି ଯିବାର ପ୍ରସ୍ତାବ ହେଉଛି। ଏ ପ୍ରସ୍ତାବ ଶୁଣି ମୁଁ ସେମାନଙ୍କ ସହିତ ଯିବାକୁ ଇଚ୍ଛା ପ୍ରକାଶ କଲି। ଦଶପଲ୍ଲାକୁ ଖଣ୍ଡପଡ଼ା ରାଜ୍ୟ ଲାଗିଛି। ଦଶପଲ୍ଲା ମେଳିରେ ମୋ ନାମରେ ଓ୍ୱାରଣ୍ଟ ହୁଏତ ଖଣ୍ଡପଡ଼ା ପୋଲିସ ପାଖକୁ ଆସିଥିବ। ଏପରି ଅବସ୍ଥାରେ ମୋର ସେଠାକୁ ଯିବାକୁ ଗୋପବନ୍ଧୁ ବାବୁ ପସନ୍ଦ କରି ନଥିଲେ। କିନ୍ତୁ ମୁଁ ଟିକିଏ ବୁଲି ଆସିଲେ ମନ ପରିବର୍ତ୍ତନ ହୋଇପାରେ, ଏହା ଭାବି ଗୋପବନ୍ଧୁ ବାବୁ ଶେଷରେ ମତେ ଅନୁମତି ଦେଲେ। ଛାତ୍ର ଓ ଶିକ୍ଷକମାନଙ୍କ ସହିତ ମୁଁ ମଧ୍ୟ ବୁଲିବାକୁ ବାହାରିଲି। ଆମ୍ଭେମାନେ ସମସ୍ତେ ଚାଲିକରି ଗଲୁ। ଖଣ୍ଡପଡ଼ାରେ ପହୁଞ୍ଚିବାକୁ ତିନି ଦିନ ଲାଗିଲା। ଏହି ତିନି ଦିନ ମୁଁ ସବୁ ଭୁଲି ଯାଇଛି। ଏହି ତିନି ଦିନର ଭ୍ରମଣ ବୃତ୍ତାନ୍ତ ଭୁଲି ହେବ ନାହିଁ। ସାଙ୍ଗରେ ନୀଳକଣ୍ଠ ବାବୁ ଓ ଆଚାର୍ଯ୍ୟ ହରିହର ଦାସ ଥାନ୍ତି। ଛାତ୍ର ଶିକ୍ଷକ ସମସ୍ତେ ଆମ୍ଭେମାନେ ପ୍ରାୟ ଦୁଇ ଶହରୁ ଅଧିକ ଲୋକ ଯାତ୍ରା କରୁଥାଉଁ। ଖାଇବା, ବସିବା, ଶୋଇବା ଓ ଚାଲିବା ସମୟରେ ନାନା ପ୍ରକାର ଗଳ୍ପ, ନାନାପ୍ରକାର ଚର୍ଚ୍ଚା ହୁଏ। ବାଟରେ ଯେତେ ସବୁ ବିଶିଷ୍ଟ ସ୍ଥାନ ଅବା ଗ୍ରାମ ପଡ଼େ ସେ ବିଷୟରେ ନୀଳକଣ୍ଠ ବାବୁଙ୍କର କେତେ ପ୍ରକାର ଟୀକା ଟିପଣୀ, ହାସ୍ୟପୂର୍ଣ୍ଣ କଥା ଓ ଶିକ୍ଷାପୂର୍ଣ୍ଣ ବକ୍ତୃତା ଚାଲେ ତାହା ସବୁ ଲେଖି ହେବ ନାହିଁ। ଏହିସବୁ ମନେ ପଡ଼ିଲେ କେବଳ ଗୋଟିଏ ଭାବ ମନରେ ଜାତ ହୁଏ। ସତ୍ୟବାଦୀ ସ୍କୁଲପରି ଓଡ଼ିଶାରେ ସ୍କୁଲ ନ ହେଲେ ଏ ଦେଶର ଆଖି ସହଜରେ ଫିଟିବ ନାହିଁ।

ସେ ଯାହା ହେଉ ଶେଷରେ ଆମ୍ଭେମାନେ ଯାଇ ଖଣ୍ଡପଡ଼ା ଗଡ଼ ମୁକାମରେ ହାଜର ହେଲୁ। ଗଡ଼ରେ ପହୁଞ୍ଚିଲା ବେଳକୁ ରାତ୍ରି ପ୍ରାୟ ୯ଟା ହେବ। ସମସ୍ତେ ରାଜାଘର ଅତିଥି ହୋଇ ରହିଲେ। ସତ୍ୟବାଦୀ ସ୍କୁଲର ଛାତ୍ର ଓ ଶିକ୍ଷକ ଆସୁଛନ୍ତି ବୋଲି ଖଣ୍ଡପଡ଼ା ରାଜାସାହେବ ଅନେକ ବନ୍ଦୋବସ୍ତ କରାଇଥାନ୍ତି। କିନ୍ତୁ ମୁଁ ସମସ୍ତଙ୍କ ସହିତରେ ରହି ନ ଥିଲି। ମୋର ଭଉଣୀଘର ଖଣ୍ଡପଡ଼ା ନିଜ ଗଡ଼ରେ। ପୁଣି ଗଡ଼ ମୁକାମରେ ମତେ ଟିକିଏ ଲୁଚି ରହିବାକୁ ହେବ। ଏଥିପାଇଁ ମୁଁ ସେମାନଙ୍କ ସାଙ୍ଗ ଛାଡ଼ି ରାତ୍ରି ୧୦ଟା ସମୟରେ ମୋର ଭଉଣୀଘର ଠାରେ ଉପସ୍ଥିତ ହେଲି। ଦଶପଲ୍ଲା ମେଳିରେ ଧରାହୋଇ, ଦଶପଲ୍ଲା ଛାଡ଼ି ପଳାଇ ଆସିଲା ଦିନୁଁ ମୋର କୌଣସି ସମ୍ବାଦ ମୋର ଭଉଣୀ ପାଇ ନାହିଁ। ପିଲାଦିନୁଁ ଆମ୍ଭେମାନେ ପିତୃମାତୃଶୂନ୍ୟ। ଆମ୍ଭେ ଭାଇ ଭଉଣୀ ଦୁଇଟି ପିତାମାତାଙ୍କର କେବଳ ସନ୍ତାନ। ବାପଘରର ସୁଖ ସୁଲଭ କଣ ତାହା ମୋର ଭଉଣୀ କିଛି ଜାଣେ ନାହିଁ। କଟକରେ ମୁଁ ପାଠ ପଢ଼ିଲା ବେଳେ ତାହା ମନରେ ନାନାପ୍ରକାର ସୁଖ ସ୍ୱପ୍ନ ଜାଗି ଉଠିବା ସ୍ୱାଭାବିକ, ମାତ୍ର ଦଶପଲ୍ଲା ମେଳିରେ ଜଡ଼ିତ ହୋଇ ମୁଁ ପଳାଇ ଆସିଲା ଦିନୁ ତାର ଦୁଃଖର ସୀମା ନାହିଁ। ମୋର କୌଣସି ସମ୍ବାଦ ନ ପାଇ ମନ କଣ ହେଉଥିବ ତାହା କେବଳ ସେ ଜାଣେ। ଏପରି ଅବସ୍ଥାରେ ଏପରି ଅଚାନକ ଭାବରେ ମୁଁ ରାତି ଦଶଟାରେ ଯାଇ ତାଙ୍କ ଘରେ ଉପସ୍ଥିତ ହେଲି। ହଠାତ୍ ମତେ ଦେଖିବାକୁ ପାଇ ଶୋକ ଓ ଆନନ୍ଦରେ ତାର ପ୍ରାଣ ଉଚ୍ଛୁଳି ଉଠିଲା। ତାଙ୍କ ଘରକୁ ଲାଗି ମୋର ନିଜ ମାଉସୀ ଘର। ମୋର ଭଉଣୀ ଘରର ପାଟିତୁଣ୍ଡ ଶୁଣି ମୁଁ ଆସି ଥିବାର ସମ୍ବାଦ ପାଇ ସେ ମଧ ଦୌଡ଼ି ଆସିଲା। ମୋର ଅଜାଙ୍କର ଦୁଇଟି କନ୍ୟା ଓ ଦୁଇଟି ଜନ୍ମିତ ପୁତ୍ର। ମୋର ମାଉସୀକୁ ଛାଡ଼ିଦେଲେ ଅଜା ଘରର ଆଉ କେହି ନାହାନ୍ତି। ତାଙ୍କର ସମସ୍ତେ ମରିଛନ୍ତି। ମୋର ଅଜା ଆଈ ମରିବାଦିନୁ ସେ ଆଉ ଦଶପଲ୍ଲା ଯାଇ ନାହିଁ। ଆଜି ମତେ ହଠାତ୍ ଦେଖି ତାହାର ଦୁଃଖ ଶୋକର ବନ୍ଧ ଭାଙ୍ଗି ଯାଉଛି। ମୋର ପିଲା ଦିନର ସମସ୍ତ ସୁଖ ସୁଲଭ କଥା ମନେକରି ସେ କାନ୍ଦୁଛି। ମୁଁ ଯେତେ ବୁଝାଇଲେ ମୋ କଥା କେହି ଶୁଣିବାକୁ ନାହାନ୍ତି। ଏସବୁ ଦେଖି ମୋର ହୃଦୟ ମଧ ତରଳି ଗଲା। ଏପରି ଦୃଶ୍ୟ ଦେଖିଲେ ପଥର ମଧ ପାଣି ହୋଇଯିବ। ମନୁଷ୍ୟର ଧୈର୍ଯ୍ୟ କେତେ? କୌଣସି ପ୍ରକାରେ ବୁଝାଇ ସୁଝାଇ ନୀରବ କରାଇଲି। ଖଣ୍ଡପଡ଼ାରେ ଦୁଇଦିନ ରହଣି ହେଲା। ଏ ଦୁଇଦିନ ଏକପ୍ରକାର ମୁଁ ଲୁଚି ରହିଲି ବୋଲି କହିଲେ ଚଳେ। ତାପରେ କଣ୍ଟିଲୋ ଯାତ୍ରା ଆରମ୍ଭ ହେଲା।

ମୁଁ ଖଣ୍ଡପଡ଼ା ଗଡ଼ ଛାଡ଼ି ଆସିବା ଦିନର ଦୃଶ୍ୟ ଆଜୁରି ହୃଦୟ ବିଦାରକ। ସେହି ଦୃଶ୍ୟ ଅଦ୍ୟାପି ମୋର ମନେ ପଡ଼ିଯାଏ। ମୋର ସେହି ଭଉଣୀ ଅଛି

ଏବଂ ମାଉସୀ ମଧ୍ୟ ଅଛି। ସାଧାରଣ ଗୃହସ୍ଥ ପରି ମତେ ସଂସାର ନ କରିବାର ଦେଖି ସେମାନେ ଏବେ ମଧ୍ୟ ସବୁବେଳେ କାନ୍ଦୁଛନ୍ତି। ହୃଦୟ କେତେ ଟାଣ କଲେ ମନୁଷ୍ୟ ସଂସାର ବନ୍ଧନ କାଟି ପାରିବ ତାହା ମୁଁ ଆଜି ବେଶ ଅନୁଭବ କରି ପାରୁଛି। ମୋର ଦୈନନ୍ଦିନ ଜୀବନରେ ଶତ ପରିବାରଙ୍କ ସୁଖ ଦୁଃଖର ଚିନ୍ତାରେ ନିଜକୁ ଭସାଇ ଦେଇ ପାରିଥିବାରୁ ମୁଁ ମୋର ଭଉଣୀର ଦୁଃଖକୁ ଅନୁଭବ କରିବା ମୋ ପକ୍ଷରେ ବଡ଼ ସହଜ ହୋଇ ପାରିଛି। ଏସବୁ କଥା ହୃଦୟରେ ଅନୁଭବ କରି ପାରୁଥିଲେ ମଧ୍ୟ କ୍ଷଣକପାଇଁ ମୁଁ ଦୁଃଖ କିମ୍ବା ଶୋକରେ ଅଧୀର ହୋଇ ନାହିଁ। ଦେଶପ୍ରତି କର୍ତ୍ତବ୍ୟ ମୁଁ ଭୁଲି ଯାଇ ନାହିଁ। ଦେଶ କିପରି ସ୍ୱାଧୀନ ହେବ, ଏହି କଥା ମତେ ପାଗଳ କରିଥିବାରୁ ମୁଁ ସମସ୍ତ ପ୍ରକାର ସାଂସାରିକ ବନ୍ଧନକୁ ଛେଦନ କରିବା ପାଇଁ ସକ୍ଷମ ହୋଇଛି। ଏହି ତ୍ୟାଗ ଏବଂ କର୍ତ୍ତବ୍ୟଜ୍ଞାନ କେବଳ ରାଜନୀତି, ଉତ୍‌ଥାନପତନ, ବାଦ, ବିବାଦ, ବିସମ୍ବାଦ ଭିତରେ ମତେ ଧୈର୍ଯ୍ୟଚ୍ୟୁତ ନ କରାଇ ସବୁବେଳେ ମୋର ହୃଦୟରେ ବଳ ଓ କର୍ମ ପ୍ରେରଣା ଭାବ ଜାଗ୍ରତ କରାଇ ମତେ ଜୀବିତ ରଖିଛି ଏବଂ ମୋ ମନରେ ଆନନ୍ଦ ଦେଉଛି।

ସେ ଯାହାହେଉ ଆମ୍ଭେମାନେ କଣ୍ଟିଲୋ ଆସିଲୁ। ଏହି ସ୍ଥାନଟି ପ୍ରାଚୀନ ଓଡ଼ିଶାର ଗୋଟିଏ ପ୍ରାଚୀନ ବାଣିଜ୍ୟପେଣ୍ଠ। କଣ୍ଟିଲୋ କଂସାବାସନ ପାଇଁ ପ୍ରସିଦ୍ଧ। ନୀଳମାଧବ ନାମରେ ଏକ ଠାକୁର–ମନ୍ଦିର ଏଠାରେ ଅଛି। ଏଥିପାଇଁ ଏହା ଗୋଟିଏ ତୀର୍ଥ ସ୍ଥାନ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ଏହି ନୀଳମାଧବଙ୍କ ସ୍ଥାନଟି ଓଡ଼ିଶାରେ ଗୋଟିଏ ଅତି ରମଣୀୟ ଦୃଶ୍ୟ। ଏହି ନୀଳମାଧବ ମନ୍ଦିର କେବେ କାହାଦ୍ୱାରା ନିର୍ମିତ ହୋଇଅଛି ତାହା ମୁଁ କହିପାରିବି ନାହିଁ। ଲୋକମୁଖରୁ ଶୁଣାଯାଏ, ନୀଳମାଧବଙ୍କ ମନ୍ଦିର ପୁରୀ ଜଗନ୍ନାଥ ମନ୍ଦିରଠାରୁ ପୁରାତନ। ଏହି ନୀଳମାଧବଙ୍କ ଭୋଗ ମହାପ୍ରସାଦ ହେବାର ଥିଲା। କିନ୍ତୁ କି କାରଣରୁ ତାହା ହୋଇ ପାରିଲା ନାହିଁ ତାହା କହି ହେବ ନାହିଁ। ମହାନଦୀ କୂଳରେ ଗୋଟିଏ ଛୋଟ ପାହାଡ଼ ଉପରେ ଏହି ମନ୍ଦିରଟି ଅବସ୍ଥିତ। ଏହି ସ୍ଥାନର ପ୍ରାକୃତିକ ସୌନ୍ଦର୍ଯ୍ୟର ତୁଳନା ନାହିଁ। ଓଡ଼ିଶାରେ ଜନ୍ମଗ୍ରହଣ କରି କଣ୍ଟିଲୋ ନୀଳମାଧବଙ୍କ ସ୍ଥାନର ରମଣୀୟ ଦୃଶ୍ୟ ଯେ ନ ଦେଖିଛି ତାହାର ଜୀବନ ବୃଥା ବୋଲି କୁହାଯାଇ ପାରେ। କେବଳ ଏହି ସ୍ଥାନଟିର ଦୃଶ୍ୟ ଦେଖିବାକୁ ସତ୍ୟବାଦୀ ସ୍କୁଲର ଛାତ୍ର ଓ ଶିକ୍ଷକ ସେଠାକୁ ଯାଇଛନ୍ତି। ସମସ୍ତେ ଏହି ସ୍ଥାନର ସୌନ୍ଦର୍ଯ୍ୟରେ ମୁଗ୍ଧ। ଛାତ୍ର ଓ ଶିକ୍ଷକ ସମସ୍ତେ ଦଳ ଦଳ ହୋଇ ବସିଛନ୍ତି। ଓଡ଼ିଶାର ପୂର୍ବ କୀର୍ତ୍ତି ବିଷୟ ସ୍ମରଣ କରି ବହୁତ ଆଲୋଚନା ପଡ଼ିଛି। ଏହି ସ୍ଥାନର ସୌନ୍ଦର୍ଯ୍ୟ ସମସ୍ତଙ୍କ ମନରେ ଓଡ଼ିଶାର ପୂର୍ବ ଗୌରବ ଗାଥା ସ୍ମରଣ କରାଇ ଦେଇଛି। ସମସ୍ତେ ଆତ୍ମବିସ୍ମୃତ ହେଲା ପ୍ରାୟ ବୋଧ ହେଉଛି। କିନ୍ତୁ ଏହି ସ୍ଥାନକୁ ଆସିଲା ମୁହୂର୍ତ୍ତରୁ ମୋର ମନର ଅବସ୍ଥା

ଭଲ ନାହିଁ। ଏହି ସ୍ଥାନର ସୌନ୍ଦର୍ଯ୍ୟ ଅନୁଭବ କରିବା ଭଳି ପ୍ରାଣରେ ଉଲ୍ଲାସ ନାହିଁ। କଣ୍ଟିଲୋର ଅଳ୍ପ ଦୂରରେ ଦଶପଲ୍ଲା ରାଜ୍ୟ। ଦଶପଲ୍ଲାରୁ ପଳାଇ ଆସିଲା ଦିନ ଏହି କଣ୍ଟିଲୋ ବାଟେ ମୁଁ ଆସିଥିଲି। ନୀଳମାଧବଙ୍କ ପାହାଡ଼ ଉପରେ ଠିଆହେଲେ ଦଶପଲ୍ଲାର ବନ ପାହାଡ଼ ଦେଖା ପଡ଼ୁଛି। ଦଶପଲ୍ଲା ଆଡ଼କୁ ମୋର ମନ ଟାଣିହୋଇ ଯାଉଛି। ଦଶପଲ୍ଲା ମେଳି ସଂକ୍ରାନ୍ତ ସମସ୍ତ ଘଟଣା ମୋର ହୃଦୟପଟରେ ନାଚି ଉଠୁଛି। ଦଶପଲ୍ଲା ରାଜ୍ୟ ନିକଟରେ ଉପସ୍ଥିତ ହେଲେ ଏପରି ଭାବ ମନରେ ଖେଳିଯିବ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ଏପରି ଅବସ୍ଥାରେ କଣ୍ଟିଲୋର ମନୋମୁଗ୍ଧକର ସୌନ୍ଦର୍ଯ୍ୟରେ ଆନନ୍ଦ ଉପଭୋଗ କରିବି କିପରି ? ଏଠାକୁ ଆସି ମୋ ମନରେ ଏକ ପ୍ରକାର ଦୁଃଖ ଓ ଶୋକ ମିଶ୍ରିତ କ୍ରୋଧର ତରଙ୍ଗ ଖେଳି ଯାଉଛି। କଣ୍ଟିଲୋ ଛାଡ଼ି ପଳାଇ ଆସିବାକୁ ମନ ଡାକୁଛି। ଯଥା ସମୟରେ କଣ୍ଟିଲୋ ଆମ୍ଭେମାନେ ଛାଡ଼ି ଆସି ସତ୍ୟବାଦୀରେ ହାଜର ହେଲୁ। ଫେରିଲା ବେଳକୁ କିପରି ଆସିଲୁ, କଣ ଘଟିଲା ସେସବୁ ଆଉ ମନେ ରହିଲା ନାହିଁ।

ସତ୍ୟବାଦୀକୁ ଫେରିଲା ପରେ ଗୋପବନ୍ଧୁ ବାବୁଙ୍କ ବସାରେ ମୁଁ ରହିଲି। କିଛିଦିନ ପରେ ଗୋପବନ୍ଧୁ ବାବୁଙ୍କ ବସାରୁ ଚୋରୀ ହେଲା। ଛାପାଖାନା କରିବା ପାଇଁ ଗୋପବନ୍ଧୁ ବାବୁ ବାରଶହ ଟଙ୍କା ରଖିଥିଲେ। ରାତିରେ ଚୋର ପଶି ସେ ଟଙ୍କା ଯାକ ସବୁ ନେଇଗଲା। ଚୋରୀ ଗଲାଦିନ ମୁଁ ଓ ଗୋପବନ୍ଧୁ ବାବୁ ଦୁଇଜଣ କେବଳ ବସାରେ ଥିଲୁ। ପୋଲିସ ଥାନାରେ ଚୋରୀ ସମ୍ବାଦ ପାଇ ସତ୍ୟବାଦୀ ଆସିଲେ। ଚୋରୀରେ ମୋର କିଛି ହାତ ଅଛି ବୋଲି ପୋଲିସର ସନ୍ଦେହ ଜାତ ହେଲା। ମତେ ପୋଲିସ ହାତରେ ଦେଇ ଦେବାକୁ ପୋଲିସ ଗୋପବନ୍ଧୁ ବାବୁଙ୍କୁ ଅନୁରୋଧ କଲେ। ପୋଲିସର ଏପରି ସନ୍ଦେହ ଓ ଅନୁରୋଧ ଶୁଣି ଗୋପବନ୍ଧୁ ବାବୁ କହିଥିଲେ, "ଗୋବିନ୍ଦକୁ ସନ୍ଦେହ କରିବା ଠିକ ନୁହେଁ। ମୋର ତାହା ଉପରେ ତିଳେ ମାତ୍ର ସନ୍ଦେହ ନାହିଁ। ସ୍ୱୟଂ ଭଗବାନ ଯଦି କହନ୍ତି ଯେ ଗୋବିନ୍ଦ ଚୋରୀ କରିଛି କିମ୍ବା ଚୋରୀ କଥା କିଛି ଜାଣେ, ତଥାପି ମୁଁ ବିଶ୍ୱାସ କରିବି ନାହିଁ। ତୁମ ସନ୍ଦେହରେ ମୁଁ ତାକୁ ଥାନାକୁ ପଠାଇ ନ ପାରେ।" ଗୋପବନ୍ଧୁ ବାବୁଙ୍କଠାରୁ ଏପରି ଉତ୍ତର ପାଇ ପୋଲିସ ନିରୁତ୍ତର। ଅବଶ୍ୟ ଚୋରୀ ବିଷୟ ନେଇ ପୋଲିସର ସନ୍ଦେହ ଦୂର ହେଲା। କିନ୍ତୁ ମୁଁ କିଏ, କେଉଁ ଗୋବିନ୍ଦ ମିଶ୍ର ତାହା ଅନୁସନ୍ଧାନ କରି ପୋଲିସ ଜାଣି ପାରିଲା ଯେ ମୁଁ ଜଣେ Political suspect, ସୁତରାଂ a very dangerous man। ପୁରୀ ପୋଲିସ ସୁପରିଂଟେଣ୍ଡେଣ୍ଟ ମୋ ବିଷୟ ନେଇ ଗୋପବନ୍ଧୁ ବାବୁଙ୍କୁ କିଛି ପଚାରି ଥିବ। କିନ୍ତୁ ଏହାପରେ ସତ୍ୟବାଦୀରେ ରହିବାକୁ ମୋର ଇଚ୍ଛା ବଳିଲା ନାହିଁ। ସତ୍ୟବାଦୀ ଛାଡ଼ିଯିବା ପାଇଁ ମଧ ଗୋପବନ୍ଧୁ ବାବୁ ପ୍ରଭୃତି ସମସ୍ତେ ମତେ ପରାମର୍ଶ ଦେଲେ। ଅବଶେଷରେ ୧୯୧୮ ମସିହା ଜୁଲାଇ ମାସରେ ମତେ ସତ୍ୟବାଦୀ ଛାଡ଼ି ଯିବାକୁ ପଡ଼ିଲା।

# ଚତୁର୍ଥ ପରିଚ୍ଛେଦ

## ପଳାତକ ଜୀବନ (Fugetive life)

ସତ୍ୟବାଦୀ ଛାଡ଼ିବାର କଥା—ମୁଁ ଛାଡ଼ି ଆସିଲି। କେବଳ ପୋଲିସ ଅନୁସନ୍ଧାନ ଯୋଗୁ ସତ୍ୟବାଦୀ ଛାଡ଼ିବା ଏକମାତ୍ର କାରଣ ନୁହେଁ। ସତ୍ୟବାଦୀ ରାଜନୈତିକ ଚର୍ଚ୍ଚା କରିବାର କ୍ଷେତ୍ର ନ ଥିଲା। ଦେଶକୁ ସ୍ୱାଧୀନ କରିବା ପାଇଁ କୌଣସି ପ୍ରକାର ରାଜନୈତିକ ଆଲୋଚନା ସେଠାରେ ହେଉ ନ ଥିଲା। ରାଜନୈତିକ ଆଦର୍ଶର ମଧ୍ୟ ଅଭାବ ଥିଲା। ଯୁଦ୍ଧ ହେତୁ ରାଜନୈତିକ ପରିସ୍ଥିତିରେ କିପରି ପରିବର୍ତ୍ତନ ଘଟୁଛି ସେଥିପ୍ରତି କାହାରି ଦୃଷ୍ଟି ନାହିଁ। ପରିବର୍ତ୍ତିତ ପରିସ୍ଥିତି ପ୍ରତି ଦୃଷ୍ଟି ରଖି ଦେଶରେ କୌଣସି ପ୍ରକାର ଆନ୍ଦୋଳନ ସୃଷ୍ଟି କରିବାର କଳ୍ପନା ସତ୍ୟବାଦୀରେ କାହାରି ମନକୁ ସ୍ପର୍ଶ କରୁଥିଲା ଭଳି ମତେ ଦେଖା ଗଲା ନାହିଁ।

ଯୁଦ୍ଧ ଆରମ୍ଭରେ ଇଂରେଜ ସରକାର ଭାରତର ସାହାଯ୍ୟ ଓ ସହାନୁଭୂତି ଭିକ୍ଷା କରିଥିଲେ। ସେତେବେଳେ ଏ ଦେଶରେ ଇଂରେଜ ସରକାରଙ୍କ ଉଦ୍ଦେଶ୍ୟ ଓ ଆଦର୍ଶ ବିଷୟରେ ସେତେବେଳର ଭାରତ ସଚିବ ମଣ୍ଟାଗୁ ସାହେବ ବିଲାତର ପାର୍ଲିଆମେଣ୍ଟରେ ଗୋଟିଏ ଘୋଷଣା ଜାରୀ କରିଥିଲେ। ଏହି ଘୋଷଣା ଶୁଣି ଭାରତର ସେତେବେଳର ରାଜନୈତିକ ନେତାମାନେ ଏକ ସ୍ୱରରେ ମଣ୍ଟାଗୁ ସାହେବଙ୍କ ଏହି ଘୋଷଣାକୁ ପ୍ରଶଂସା କରିଥିଲେ। ଭାରତର ଜନମତ ଜାଣିବା ପାଇଁ ଭାରତ ସଚିବ ମଣ୍ଟାଗୁ ସାହେବ ଏ ଦେଶକୁ ବୁଲି ଆସିଥିଲେ। ମଣ୍ଟାଗୁ ସାହେବ ଏ ଦେଶକୁ ଆସି ବିଭିନ୍ନ ରାଜନୈତିକ ନେତାମାନଙ୍କ ସହିତ କଥୋପକଥନ କରି ଭାରତବାସୀଙ୍କର ଇଚ୍ଛା ଓ ଆକାଂକ୍ଷା ଜାଣିବାକୁ ପ୍ରଯତ୍ନ କରିଥିଲେ। ମଣ୍ଟାଗୁ ସାହେବ ଭାରତକୁ ଆଗମନ କରିବାଦ୍ୱାରା ଦେଶରେ ଗୋଟିଏ ରାଜନୈତିକ ଆନ୍ଦୋଳନ ସୃଷ୍ଟି ହୋଇଥିଲା। ବିଭିନ୍ନ ପ୍ରଦେଶରେ ସ୍ଥାନେ ସ୍ଥାନେ ସଭା କରି, ଦେଶ କଣ ଦାବୀ କରେ ଏହା ଜଣାଇବା ପାଇଁ ଲୋକମତ ସୃଷ୍ଟି କରା ଯାଇଥିଲା। ବିଭିନ୍ନ ପ୍ରଦେଶରୁ ହଜାର ହଜାର ଲକ୍ଷ ଲକ୍ଷ ଦସ୍ତଖତରେ ଦେଶର ଦାବୀ ଉଲ୍ଲେଖ କରି ମଣ୍ଟାଗୁ ସାହେବଙ୍କ ନିକଟକୁ ଦରଖାସ୍ତ ପଠାଗଲା। ଏହି ସମୟରେ ବଙ୍ଗଳାର ନେତା ଦେଶବନ୍ଧୁ ଦାସ ବଙ୍ଗ ଦେଶରେ ବୁଲି ପ୍ରଚାର କରିଥିଲେ। ସେ ସେତେବେଳକୁ ବାରିଷ୍ଟରୀ କରୁଥାନ୍ତି। ସେ ଜଣେ ବଡ଼ ବାରିଷ୍ଟର ଓ ଜଣେ ହୃଦୟବାନ୍ ଲୋକ ବୋଲି ଦେଶରେ ଖ୍ୟାତି ଥାଏ। ସେ ତାଙ୍କ ବକ୍ତୃତାରେ ବୁଝାଉଥାନ୍ତି—ଆମ୍ଭର ଦାବୀ ଉପସ୍ଥାପିତ କଲାବେଳେ ଇଂରେଜ ସରକାର ଆମକୁ ଏତେ ଅଧିକାର ଦେବେ କି ନାହିଁ ଏ କଥାଟି ଭୁଲିଯାଇ ଦେଶ କଣ ଚାହେଁ ସେ କଥାଟି ପୂର୍ଣ୍ଣମାତ୍ରାରେ ଜଣାଇବା ଦରକାର।

ଆମ ଦାବୀ ଇଂରେଜ ସରକାର କେତେ ଗ୍ରହଣ କରିବେ ଓ କେତେ ନ କରିବେ, ଏ ଭାବକୁ ମନରେ ସ୍ଥାନ ଦେବା ଉଚିତ ନୁହେଁ। ମଣ୍ଟାଗୁ ସାହେବଙ୍କ ଆଗମନ ପରେ ଏ ଦେଶରେ ଆନି ବେଶାନ୍ତ 'Home Rules' ଆନ୍ଦୋଳନ ସୃଷ୍ଟି କରିଥିଲେ। ଇଂରେଜ ସାମ୍ରାଜ୍ୟ ଭିତରେ ଦକ୍ଷିଣ ଆଫ୍ରିକା, କାନେଡ଼ା ରାଜ୍ୟମାନେ ଯେପରି ଔପନିବେଶିକ ସ୍ୱାୟତ୍ତ ଶାସନ ଅଧିକାର ପାଇଛନ୍ତି ଭାରତ ସେହିପରି ଅଧିକାର କିପରି ପାଇବ, ଏଥିପାଇଁ ଶ୍ରୀମତୀ ଆନି ବେଶାନ୍ତଙ୍କର 'Home Rules' ଆନ୍ଦୋଳନର ସୃଷ୍ଟି। ଶ୍ରୀମତୀ ବେଶାନ୍ତ ଯୁଦ୍ଧବେଳେ ଏପରି ଗୋଟିଏ ଆନ୍ଦୋଳନ ସୃଷ୍ଟି କରିବାରୁ ସରକାର ତାହାଙ୍କୁ ଭାରତ ରକ୍ଷା ଆଇନ ବଳରେ ଗିରିଫ କରି ଅଟକ ରଖିଲେ। ତାହାଙ୍କ ସଙ୍ଗରେ ଆରୁଣ୍ଡେଲ ନାମକ ଆଉ ଜଣେ ତାହାଙ୍କ ସହକର୍ମୀ ମଧ୍ୟ ଅଟକ ରହିଲେ। ଶ୍ରୀମତୀ ଆନି ବେଶାନ୍ତଙ୍କୁ ଅଟକ ରଖିବା ଦ୍ୱାରା ଦେଶରେ ଗୋଟିଏ ଚହଳ ପଡ଼ିଗଲା। ହୋମରୁଲ ଆନ୍ଦୋଳନ ପ୍ରବଳ ଆକାର ଧାରଣା କଲା। ଆନି ବେଶାନ୍ତଙ୍କୁ ଛାଡ଼ି ଦେବା ପାଇଁ ଚାରିଆଡ଼େ ସଭା ସମିତି ହୋଇ, ଭୀଷଣ ଆନ୍ଦୋଳନ ସୃଷ୍ଟି ହେଲା। ଏହି ଆନ୍ଦୋଳନ ଫଳରେ ଆନି ବେଶାନ୍ତ ପ୍ରଭୃତି ଛାଡ଼ ପାଇଲେ। କଲିକତା କଂଗ୍ରେସରେ ବେଶାନ୍ତ ସଭାପତି ହେଲେ। ଏହି କଂଗ୍ରେସରେ ମୁସଲିମ୍ ଲିଗ ଓ କଂଗ୍ରେସ ମିଶି, କଂଗ୍ରେସ ଲିଗ ନାମକ ସ୍ୱାୟତ୍ତ ଶାସନ ପାଇଁ ଗୋଟିଏ ଦାବୀ କରାଗଲା।

ମଣ୍ଟାଗୁ ସାହେବ ଏ ଦେଶକୁ ଆସିଲା ବେଳକୁ ଚେମ୍ସଫୋର୍ଡ଼ ସାହେବ ଏ ଦେଶର ବଡ଼ଲାଟ ଥିଲେ। ବଡ଼ଲାଟ ଚେମ୍ସଫୋର୍ଡ଼ ଓ ମଣ୍ଟାଗୁ ସାହେବ ମିଶି ଭାରତର ସ୍ୱାୟତ୍ତ ଶାସନ ପାଇଁ ଗୋଟିଏ ରିପୋର୍ଟ ଅନୁସାରେ ବିଲାତର ପାର୍ଲିୟାମେଣ୍ଟରେ ଗୋଟିଏ ଆଇନ ପାସ ହେଲା। ତାହା ଦେଶରେ ମଣ୍ଟାଗୁ-ଚେମ୍ସଫୋଡ଼ ଶାସନ ସଂସ୍କାର ନାମରେ ପରିଚିତ ହୋଇ ପ୍ରଚଳିତ ହୋଇଅଛି। ମଣ୍ଟାଗୁ-ଚେମ୍ସଫୋର୍ଡ଼ ଶାସନ ସଂସ୍କାର ଆଇନରେ ଭାରତ ଯାହା କିଛି ପାଇଛି ତାହା କିଛି ନୁହେଁ। ତଥାପି ଭାରତରେ କ୍ରମଶଃ ସ୍ୱାୟତ୍ତ ଶାସନ ସ୍ଥାପନ କରିବା ଇଂରେଜ ସରକାରଙ୍କର ଉଦ୍ଦେଶ୍ୟ ବୋଲି ମଣ୍ଟାଗୁ ସାହେବ ଘୋଷଣା କରି ଏ ଦେଶରୁ ଯୁଦ୍ଧ ପାଇଁ ସାହାଯ୍ୟ ମାଗିଲାବେଳେ, ତିଳକ ମହାରାଜ କହିଥିଲେ, "ଇଂରେଜ ସରକାର ଆଗ ଆମକୁ ସ୍ୱାୟତ୍ତ ଶାସନ ଦିଅନ୍ତୁ ତାରପର ଆମେ ତାହାଙ୍କୁ ସାହାଯ୍ୟ କରିବୁ। ଇଂରେଜ ସରକାର ଏ ଦେଶକୁ କି ଅଧିକାର ଦେବେ ତାହା ନ ଦେଖିଲା ପର୍ଯ୍ୟନ୍ତ ଦେଶବାସୀ କୌଣସି ପ୍ରକାର ସାହାଯ୍ୟ କରିବା ଉଚିତ ନୁହେଁ।" ତିଳକ ମହାରାଜ ଏ କଥା ପ୍ରଚାର କଲା ବେଳକୁ ମହାତ୍ମା ଗାନ୍ଧୀ କହିଲେ, "ବିପଦ ବେଳେ ସାହାଯ୍ୟ କରିବା ବନ୍ଧୁର କାର୍ଯ୍ୟ।" ଏହା କହି ମହାତ୍ମା ଗାନ୍ଧୀ ସରକାରଙ୍କୁ ଧନ ଜନ ସାହାଯ୍ୟ କରିବା ପାଇଁ ଗୁଜରାତ ପ୍ରଦେଶରେ ପ୍ରଚାର କରିଥିଲେ। ଗାନ୍ଧିଜୀଙ୍କର ଏହି କାର୍ଯ୍ୟ

ସେତେବେଳେ ମୋତେ ବିରକ୍ତିକର ବୋଧ ହୋଇଥିଲା। ଗାନ୍ଧୀ ଅହିଂସାବାଦୀ ହୋଇ ଯୁଦ୍ଧରେ ସାହାଯ୍ୟ କରିବା ପାଇଁ କିପରି କହିଥିଲେ ଏହା ସେତେବେଳେ ମୁଁ ବୁଝି ନାହିଁ କିମ୍ବା ଅଦ୍ୟାବଧି ମଧ ତାହା ବୁଝି ପାରି ନାହିଁ।

ସେ ଯାହା ହେଉ ଜର୍ମାନ ଯୁଦ୍ଧରେ ମିତ୍ରଶକ୍ତିର ଅବସ୍ଥା ଦିନକୁ ଦିନ ସାଂଘାତିକ ହୋଇ ଉଠିଲା। ଇଂରେଜ ସରକାର ତାଙ୍କର ପ୍ରମାଦ ଗଣିଲେ। ଏହି ବିପଦବେଳେ ଭାରତବାସୀ ସରକାରଙ୍କୁ କିପରି କଣ ସାହାଯ୍ୟ କରିବେ, ଏହା ବୁଝାଇବା ପାଇଁ ବଡ଼ଲାଟ ଲର୍ଡ଼ ଚେମ୍‌ସଫୋର୍ଡ଼ ଦିଲ୍ଲୀଠାରେ ଗୋଟିଏ ବୈଠକ ବସାଇଥିଲେ। ଏହି ବୈଠକରେ ଅନେକ ରାଜା ମହାରାଜା ନିମନ୍ତ୍ରିତ ହୋଇଥିଲେ ଅନେକ ରାଜନୈତିକ ନେତା ମଧ୍ୟ ଡକରା ଦେଇଥିଲେ। ଗାନ୍ଧିଜୀ ଯାଇଥିଲେ। ଏହା କହିବା ଅନାବଶ୍ୟକ। କିନ୍ତୁ ଏହି ସମ୍ମିଳନୀକୁ ତିଳକ ମହାରାଜା ଓ ଆନିବେଶାନ୍ତଙ୍କୁ ଡକା ଯାଇ ନ ଥିଲା। ଏଥିପାଇଁ ମହାତ୍ମାଗାନ୍ଧୀ ପ୍ରତିବାଦ କରିଥିଲେ। ଗାନ୍ଧୀଜୀଙ୍କର ଏହି ପ୍ରତିବାଦ ସେତେବେଳର ରାଜନୈତିକ ମହଲରେ ଗୋଟିଏ ଚାଞ୍ଚଲ୍ୟ ସୃଷ୍ଟି କରି ଦେଇଥିଲା। ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ଗାନ୍ଧିଜୀ କହିଥିଲେ ବୋଲି ତାଙ୍କ ପ୍ରତି ମୋ ମନରେ ଯାହା ଟିକିଏ ବିରକ୍ତି ଜାତ ହୋଇଥିଲା, ବର୍ତ୍ତମାନ ତାହାଙ୍କର ଏହି ପ୍ରତିବାଦ ଶୁଣି ମୋର ମନ ତାଙ୍କ ଆଡ଼କୁ ଟାଣି ହେଲା। ଗାନ୍ଧିଜୀ କଣ କହୁଛନ୍ତି ଅବା କଣ କରୁଛନ୍ତି ତାହା ଜାଣିବା ପାଇଁ ସବୁବେଳେ ମୋ ମନ ଉଦ୍‌ବେଗ ଥାଏ। ତାଙ୍କ କଥା ଜାଣିବାରେ ମନ ଏକପ୍ରକାର ଆନନ୍ଦ ଅନୁଭବ କରେ। ସତ୍ୟବାଦୀ ସ୍କୁଲ ଛାଡ଼ି ଆସିଲା ବେଳେ ମନେ ମନ ମୁଁ ଭାବୁଥାଏ ସୁବିଧା ସୁଯୋଗ ପାଇଲେ ଗାନ୍ଧିଜୀଙ୍କ ଆଶ୍ରମରେ ଯାଇ ଯୋଗ ଦେବି। କିନ୍ତୁ ଅହିଂସା ବାଦ ଉପରେ ମୋର ବିଶ୍ୱାସ ଜନ୍ମି ନ ଥାଏ। ତେଣୁ ଗାନ୍ଧିଜୀଙ୍କ କଥା ଶୁଣିବାକୁ ମନରେ ଆଗ୍ରହ ଜାତ ହେଉଥିଲେ ମଧ ତାଙ୍କ ନିକଟକୁ ଯିବାକୁ ହୃଦୟରେ ଆବେଗ ଆସେ ନାହିଁ। କୌଣସି ପ୍ରକାରେ ପୁଣି ବିପ୍ଳବୀ ଦଳ ସହିତ ସମ୍ବନ୍ଧ ଲଗାଇବାକୁ ମନରେ ତୀବ୍ର ଇଚ୍ଛା ଜାଗି ଉଠେ। ଗାନ୍ଧିଜୀଙ୍କ କଥା ମନରୁ ପାସୋର ଯାଏ। ଏହିପରି ଭାବରେ ସେତେବେଳର ମୋ ଜୀବନ ଓ ଚିନ୍ତା ବଡ଼ ଅବ୍ୟବସ୍ଥିତ ଥାଏ ବୋଲି ମୁଁ କହିପାରେ।

ଏହିପରି ଅବ୍ୟବସ୍ଥିତ ଚିତ୍ତରେ ମୁଁ ସତ୍ୟବାଦୀ ଛାଡ଼ି ଆସିଲି ସତ୍ୟବାଦୀ ଛାଡ଼ି ଆସିଲା ବେଳେ ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ରଙ୍କଠାରୁ ବିଦାୟ ନେବାକୁ ଉପସ୍ଥିତ ହେଲି। ମୁଁ କୃପାସିନ୍ଧୁ ବାବୁଙ୍କ ସହିତ ଅନେକ ସମୟରେ ବସି ଦେଶର ଭଲ ମନ୍ଦ ଆଲୋଚନା କରେ। ସେ ଜଣେ ଐତିହାସିକ। ଦେଶ ବିଦେଶର ଇତିହାସ ସେ ବହୁତ ଆଲୋଚନା କରୁଥାନ୍ତି। ଓଡ଼ିଶାର ଧାରାବାହିକ ଇତିହାସ ଲେଖିବାକୁ ସେ ସବୁବେଳେ ତଥ୍ୟ ସଂଗ୍ରହ କରୁଥାନ୍ତି। ତାହାଙ୍କ ଦ୍ୱାରା ଲିଖିତ କୋଣାର୍କ ଓ ବାରବାଟୀ ଦୁର୍ଗର ବହି ତାହାଙ୍କ ଐତିହାସିକ ଗବେଷଣାର ପରିଚୟ ଦେବ। ସେ

ସତ୍ୟବାଦୀର ଅନ୍ୟାନ୍ୟ କର୍ମୀଙ୍କ ପରି ଏମ୍.ଏ.ପାସ କରି ସତ୍ୟବାଦୀ ଅନୁଷ୍ଠାନ ଗଢ଼ିବାକୁ ଜୀବନ ଉତ୍ସର୍ଗ କରିଥିଲେ। ସତ୍ୟବାଦୀ ଅନୁଷ୍ଠାନ ମୌଳିକ କଳ୍ପନାର ନିଦର୍ଶନ, ଏହା କେବଳ କୃପାସିନ୍ଧୁ ମିଶ୍ରଙ୍କ ଦ୍ୱାରା ଲିଖିତ 'କୋଣାର୍କ ଓ ବାରବାଟି ବହି ଦୁଇଖଣ୍ଡି ପରିଚୟ ଦିଏ। ସେ ଯାହା ହେଉ ଦେଶର ପ୍ରତ୍ୟେକ ଘଟଣାକୁ ଐତିହାସିକ ଦୃଷ୍ଟିରେ କୃପାସିନ୍ଧୁ ବାବୁ ଦେଖିଲେ। ରାଜନୈତିକ ଚର୍ଚ୍ଚା ଇତିହାସର ପ୍ରଧାନ ଅଙ୍ଗ, ଦେଶର ପ୍ରତ୍ୟେକ କଳ୍ପନା ଓ କାର୍ଯ୍ୟକ୍ରମ ଦେଶ ଓ ଜାତିର ଇତିହାସକୁ ଗଠନ କରେ ବୋଲି ସେ ସବୁବେଳେ କହନ୍ତି। ଏହିପରି କେତେକ କାରଣରୁ ତାହାଙ୍କ ସହିତ ମୋର ହୃଦୟର ଭାବତରଙ୍ଗର ଟିକିଏ ମିଳନ ଥାଏ। ମୁଁ ତାହାଙ୍କୁ ସ୍ନେହ ଓ ଭକ୍ତି କରୁଥାଏ। ସତ୍ୟବାଦୀ ଛାଡ଼ିଲା ବେଳେ ତାହାଙ୍କ ଠାରୁ ବିଦାୟ ନେବା ସ୍ୱାଭାବିକ। ବିଦାୟ ନେବା ପାଇଁ ମୁଁ ତାହାଙ୍କ ନିକଟରେ ଉପସ୍ଥିତ ହେଲି। ମତେ ଦେଖି କୃପାସିନ୍ଧୁ ବାବୁ ଉଠି ଆସି ମତେ କୁଣ୍ଢେଇ ପକାଇଲେ। ସ୍ନେହ ସ୍ୱରରେ କହିଲେ, "ଗୋବିନ୍ଦ, ତୁମକୁ ବିଦାୟ ଦେବା ବଡ଼ କଷ୍ଟ। ଆଜି ତୁମକୁ ଏଠାରୁ ବିଦାୟ ଦେବା ଅର୍ଥ ତୁମକୁ କୌଣସି ଅନିର୍ଦ୍ଦିଷ୍ଟ ଅଜଣା ରାଜ୍ୟକୁ ଠେଲିଦେବା। ତୁମେ ଯାଉଛ ଓ ଯିବ, କିନ୍ତୁ କେଉଁଠାରେ ରହିବ, କଣ କରିବ ମତେ ଜଣାଇବ। ତୁମ ବିଷୟ ଜାଣିବାକୁ ମୁଁ ସବୁବେଳେ ସତୃଷ୍ଣ ନୟନରେ ଚାହିଁ ରହିଲା ପରି ଚାହିଁଥିବି।"

ସତ୍ୟବାଦୀ ଛାଡ଼ି ଆସି କଟକରେ ଉପସ୍ଥିତ ହେଲି। କଟକରେ ଦଶପଲ୍ଲାର କେତୋଟି ଛାତ୍ର କଟକ ତିନିକୋଣିଆ ବଗିଚା ନିକଟ ଗୋଟିଏ ବଙ୍ଗାଳୀ ଘରେ ମେସ୍ କରି ରହିଥାନ୍ତି। ଦଶପଲ୍ଲା ସ୍କୁଲର ପଣ୍ଡିତ କାର୍ଯ୍ୟ କରିଥିବା ଦୀନବନ୍ଧୁ ପଣ୍ଡା ଉକ୍ତ ମେସର ସୁପରିଂଟେଣ୍ଡେଣ୍ଟ। ଦୀନବନ୍ଧୁ ପଣ୍ଡା ଦଶପଲ୍ଲା ଛାଡ଼ି, ମାସକୁ ଟ୧୦ଙ୍କା ଦରମାରେ କଟକ ସେମିନାରୀ ସ୍କୁଲରେ ଜଣେକ ଶିକ୍ଷକ କାର୍ଯ୍ୟ କରୁଥାନ୍ତି। ଦୀନବନ୍ଧୁ ପଣ୍ଡା ଦଶପଲ୍ଲାରେ ଜଣେ ଲୋକପ୍ରିୟ ପଣ୍ଡିତ ଥିଲେ। ଦଶପଲ୍ଲା ରାଜ୍ୟରେ ସମସ୍ତେ ତାଙ୍କୁ ଜାଣିଥିଲେ ଓ ବଡ଼ ଆଦର ମଧ କରୁଥିଲେ। ଉଚ୍ଚ ଶିକ୍ଷା ପାଇଁ ଦଶପଲ୍ଲା ଛାତ୍ରମାନଙ୍କୁ ସେ ସବୁବେଳେ ଉତ୍ସାହ ଦିଅନ୍ତି। ଏହିପରି କେତେକ କାରଣରୁ ସେ ବିଶ୍ୱାଳଙ୍କର କୋପଦୃଷ୍ଟିରେ ପଡ଼ି ସେଠାରୁ ବିତାଡ଼ିତ ହୋଇଛନ୍ତି। ଦଶପଲ୍ଲାରୁ ବିତାଡ଼ିତ ହେଲେ ମଧ ଦଶପଲ୍ଲାକୁ ସେ ଭୁଲି ପାରୁ ନାହାନ୍ତି। ତାଙ୍କର ଘର କଟକ ଜିଲ୍ଲା ଯାଜପୁର ସବଡ଼ିଭିଜନ ରାମବାଗ ଗ୍ରାମ ନିକଟ ଖଣ୍ଡିଏ ପଲ୍ଲିଗ୍ରାମ। କିନ୍ତୁ ସେ ଦଶପଲ୍ଲାକୁ ନିଜ ଜନ୍ମଭୂମି ଅପେକ୍ଷା ଭଲ ପା'ନ୍ତି। ଦଶପଲ୍ଲାକୁ ଯେତେ ନିଜର ବୋଲି ଭାବନ୍ତି ନିଜ ଗ୍ରାମକୁ ସେତେ ଭାବି ପାରନ୍ତି ନାହିଁ। ଦଶପଲ୍ଲାର ହିତ କରିବାପାଇଁ ସେ ସବୁବେଳେ ବ୍ୟଗ୍ର। ଦଶପଲ୍ଲାରୁ ବିତାଡ଼ିତ ହେଲେ ମଧ କଟକରେ ପଢୁଥିବା ଦଶପଲ୍ଲାର କେତୋଟି ଛାତ୍ରଙ୍କୁ ନେଇ ସେ ଗୋଟିଏ ମେସ୍ କରିଛନ୍ତି।

ଶ୍ୟାମସୁନ୍ଦର ହୋତା ନାମକ ଗୋଟିଏ ଛାତ୍ରକୁ ତାଙ୍କର ନିଜ ଖର୍ଚ୍ଚରେ କଟକରେ ପଢ଼ାଉ ଅଛନ୍ତି। ପଣ୍ଡିତ ଦୀନବନ୍ଧୁ ପଣ୍ଡା ମାସରେ ଦଶଟି ଟଙ୍କା ଦରମା ପାନ୍ତି। ସେଥିରେ ସେ ନିଜେ ଉପବାସ ରହି ମଧ୍ୟ ଶ୍ୟାମସୁନ୍ଦରଙ୍କ ଶିକ୍ଷାର ବ୍ୟୟଭାର ବହନ କରିଥାନ୍ତି। ସତ୍ୟବାଦୀରେ ଥିଲାବେଳେ ଏହା ମୁଁ ଜାଣିଥାଏ। କଟକ ଆସି ମୁଁ ଏହି ପଣ୍ଡିତଙ୍କ ବସାରେ ରହିଲି। ଦଶପଲ୍ଲାରୁ ବାଉରିବନ୍ଧୁ ପୃଷ୍ଟି, ରଘୁନାଥ ପଟ୍ଟନାୟକ, ଶ୍ୟାମସୁନ୍ଦର ହୋତା ଓ ତ୍ରିଲୋଚନ ଦଳବେହେରା ନାମକ ଛାତ୍ର କେତୋଟି ରହିଥାନ୍ତି। ଏମାନଙ୍କ ନିକଟରେ ମୁଁ ୩/୪ ଦିନ ରହିଲି। ଦଶପଲ୍ଲା ବିଷୟ ସବୁବେଳେ ଏମାନଙ୍କ ନିକଟରୁ ଶୁଣେ। ଏହି ଛାତ୍ର କେତୋଟିଙ୍କ ନିକଟରେ ବସି ଦେଶର ଭଲ ମନ୍ଦ କଥୋପକଥନ ହେଲାବେଳେ ମୁଁ ଅତ୍ୟନ୍ତ ଆନନ୍ଦ ପାଏ। ଏହିପରି ଭାବରେ କଟକରେ ଗୋଟିଏ ଦଶପଲ୍ଲା ମେସ୍ ସ୍ଥାପନ କରି ଦଶପଲ୍ଲାରୁ ଛାତ୍ର ଉଚ୍ଚଶିକ୍ଷା ପାଇଁ କିପରି କଟକ ଆସିବେ ତହିଁର ସୂତ୍ରପାତ କରିବା ପାଇଁ ମୁଁ ସବୁବେଳେ କହେ। କେତୋଟି ଛାତ୍ରକୁ ଏକାଠି କରି ସେମାନଙ୍କ ମନରେ ଦେଶସେବା ଭାଗ ଜାଗ୍ରତ କରିବା ପାଇଁ ଉପଦେଶ ଦିଏ। ଏହିଠାରୁ କଟକରେ ଗୋଟିଏ ଦଶପଲ୍ଲା ମେସ୍ ସ୍ଥାପନ କରିବାର କଳ୍ପନା ମୋର ଜାଗି ଉଠିଲା। ସେହିକଥା ମଧ୍ୟ ପଣ୍ଡିତ ଦୀନବନ୍ଧୁ ପଣ୍ଡାଙ୍କୁ ବୁଝାଇବାରେ ସେ ତହିଁର ଆବଶ୍ୟକତା ଉପଲବ୍ଧି କଲେ ମଧ୍ୟ ଆର୍ଥିକ ଅବସ୍ଥାରୁ ତାହା ସେତେବେଳେ ସମ୍ଭବପର ହେଉ ନ ଥିଲା।

ଦଶପଲ୍ଲାର ସେହି କେତୋଟି ଛାତ୍ର ସେତେବେଳକୁ ମ୍ୟାଟ୍ରିକ ଚତୁର୍ଥ ଶ୍ରେଣୀରେ ଆସି ନାମ ଲେଖାଇ ଥାନ୍ତି। ସେମାନେ ମୋର କଥା ଶୁଣନ୍ତି। କିନ୍ତୁ ବୁଝୁଥିଲା ପରି ମୋର ବିଶ୍ୱାସ ହୁଏ ନାହିଁ। କିନ୍ତୁ ମୋର କଥାଗୁଡ଼ିକ ପିଲାମାନଙ୍କ ହୃଦୟକୁ ସ୍ପର୍ଶ କରୁଥାଏ, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ। ତାହା ନ ହେଉଥିଲେ ୧୯୨୫-୨୬ ପରେ କଟକରେ ଦଶପଲ୍ଲା ମେସ୍ ସ୍ଥାପିତ ହୋଇ ଦଶପଲ୍ଲା ଛାତ୍ର ଉଚ୍ଚଶିକ୍ଷା ପାଇବାରେ ଯେପରି ଯାହା କାର୍ଯ୍ୟ କରିଛି ତାହା କଦାପି ସମ୍ଭବପର ହେଉ ନ ଥାନ୍ତା। ସେ ଯାହା ହେଉ କଟକରେ ଏହିପରି ଭାବରେ ୨/୩ ଦିନ ରହି ଶେଷରେ କଲିକତା ଯିବାକୁ ସ୍ଥିର କଲି।

କଲିକତା ଯାଇ ଏଥର କେଉଁ ସ୍ଥାନରେ ରହିବି, କଣ କରିବି, କିଛି ଭାବି ସ୍ଥିର କରିପାରୁ ନ ଥାଏ। କିପରି ଚଳିବି, କିଛି ବୁଦ୍ଧି ଦେଖା ଯାଏ ନାହିଁ। କୌଣସି ଓଡ଼ିଆ ମେସକୁ ଯିବା ନିରାପଦ ନୁହେଁ। ମୁଁ ଶୁଣୁଥାଏ ଯେ କଲିକତାର ପୋଲିସ କମିଶନର ଟେଗାର୍ଟ ସାହେବ ମତେ ଧରିବାକୁ ବହୁତ ଅନୁସନ୍ଧାନ ଚଳାଇ ଅଛନ୍ତି। ମୋର ବାଲ୍ୟସଖା ଓ ସହାଧ୍ୟାୟୀ ପଣ୍ଡିତ ବିନାୟକ ମିଶ୍ରଙ୍କୁ କଲିକତାରେ ପୋଲିସ ବୁଲାଉଛି। ବିନାୟକ ମିଶ୍ର ମତେ ଦେଖି ଚିହ୍ନାଇଦେବେ, ମୁଁ ହେଉଛି ସେହି ଗୋବିନ୍ଦ ମିଶ୍ର। ମୋର ନାମ ଗୋବିନ୍ଦ ଚନ୍ଦ୍ର ମିଶ୍ର ଏବଂ ବିପ୍ଳବୀ ଗୋବିନ୍ଦ ଚନ୍ଦ୍ର ମିଶ୍ର

ଏହା ପୋଲିସ ଜାଣିବ କିପରି। ମୋ ନାମରେ କଲିକତାରେ ଆଉ କେହି ଓଡ଼ିଆ ନାହାନ୍ତି ତାହା କିଏ ଜାଣେ। ଯଦି କେହି ଥାଏ ତେବେ, କେଉଁ ଗୋବିନ୍ଦଚନ୍ଦ୍ର ମିଶ୍ର ବିପ୍ଳବୀ ତାହାଙ୍କୁ ଚିହ୍ନାଇ ଦେବା ପାଇଁ ଜଣେ ଆବଶ୍ୟକ। କାରଣ ମୋର ଫଟୋ ସେତେବେଳେ ନେଇ ନାହିଁ। ମତେ ଚିହ୍ନି ଧରିବାର କୌଣସି ସଂକେତ ନାହିଁ ଏପରି ଅବସ୍ଥାରେ ପଣ୍ଡିତ ବିନାୟକ ମିଶ୍ରଙ୍କ ସାହାଯ୍ୟ ପୋଲିସ ଦରକାର କରୁଛି। ବିନାୟକ ମିଶ୍ରଙ୍କୁ କଲିକତା ପୋଲିସ କିପରି କେଉଁଠାରେ ପାଇଲେ, ମୋର ତାହାଙ୍କ ସହିତ ଘନିଷ୍ଠତା ଅଛି ବୋଲି ପୋଲିସଙ୍କୁ କିପରି ଜଣାଗଲା ସେ ବିଷୟରେ ମୁଁ ଏବେ ମଧ କିଛି ଜାଣେ ନାହିଁ। ବିନାୟକ ମିଶ୍ରଙ୍କ ଘର ନୟାଗଡ଼ ଗଡ଼ଜାତ ରାଜ୍ୟରେ। ମୁଁ ନୟାଗଡ଼ ମାଇନର ସ୍କୁଲରେ ପଢୁଥିଲା ବେଳେ ବିନାୟକ ମିଶ୍ର ମୋର ସହାଧାୟୀ ଥିଲେ। ଆମ୍ଭେ ଦୁହେଁ ମଧ ଏକତ୍ର ଗୋଟିଏ ବସାରେ ଏବଂ ଗୋଟିଏ ଘରେ ରହିଥିଲୁ। ତାହାଙ୍କ ସହିତ ମୋର ନାନା ଭାବରେ ଘନିଷ୍ଠ ବନ୍ଧୁତା ଅଛି। ସେ ମାଇନର ପାଶ୍ କରି, କଟକ ନରମାଲ୍ ସ୍କୁଲରେ ଅଧ୍ୟୟନ କରି ନରମାଲ୍ ଟ୍ରେନିଙ୍ଗ ପଣ୍ଡିତ। ନିଜର ଅଧ୍ୟବସାୟ ବଳରେ ଆଜି ସେ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଅଧ୍ୟାପକ। ଓଡ଼ିଶାର ଐତିହାସିକ ଗବେଷଣା କରି ସେ ଅନେକ ଲେଖା ପ୍ରକାଶ କରିଛନ୍ତି ; ୨/୩ ଖଣ୍ଡ ବହି ମଧ ଛପାଇ ଅଛନ୍ତି।

ସେ ଯାହା ହେଉ, ଏହିପରି ଭାବରେ କଲିକତାରେ ମତେ ଧରିବାକୁ ପୋଲିସ ଅନୁସନ୍ଧାନ ତୀବ୍ର ଭାବରେ ଚାଲିଛି। ଏହି ସମୟରୁ କଲିକତା କମିସନର ଟେଗାଟ ସାହେବଙ୍କ ରିପୋର୍ଟ ଅନୁସାରେ ଓଡ଼ିଶା ଗଡ଼ଜାତ ମାହାଲର ପଲିଟିକେଲ ଏଜେଣ୍ଟ କବଡ଼େନ ସମରୀ ସାହେବ ମତେ ଗଡ଼ଜାତ ପ୍ରବେଶର ନିଷେଧ ଆଜ୍ଞା ଜାରି କରିଅଛନ୍ତି। ସେହି ଦିନୁ ସମସ୍ତ ଗଡ଼ଜାତ ମତେ ମନା। ଗଡ଼ଜାତ ରାଜ୍ୟରୁ ମୁଁ ବହିଷ୍କୃତ। ଏହିପରି ଅବସ୍ଥାରେ ମୁଁ କଲିକତାରେ ଯାଇ ଉପସ୍ଥିତ ହେଲି। କଟକରୁ ମାନ୍ଦ୍ରାଜ ଡାକଗାଡ଼ିରେ କଲିକତା ଯାତ୍ରା କଲି। ରେଲରେ ନିଦ ନାହିଁ। କଲିକତାରେ ପହୁଞ୍ଚି କେଉଁଠାରେ ଯାଇ ରହିବି ଭାବି ଭାବି କିଛି ସ୍ଥିର କରି ପାରେ ନାହିଁ। ଗାଡ଼ି ଯାଇ ହାବଡ଼ାରେ ସକାଳ ୭ଟାରେ ପହୁଞ୍ଚିଲା। ମୁଁ ଗାଡ଼ିରୁ ଓହ୍ଲାଇ କଲିକତା ଭିତରେ ପ୍ରବେଶ କଲି। କିନ୍ତୁ କେଉଁଠାକୁ ଯିବି ଭାବି କିଛି ସ୍ଥିର କରି ପାରିଲି ନାହିଁ। ହଠାତ୍ ବାଟରେ ଗୌର ସହିତ ଦେଖା ହେଲା। ଗୌରରୁ ପୂରାନାମ ଗୌରଚନ୍ଦ୍ର ମୁଖାର୍ଜୀ। ସେ ବୋଲପୁର ଶାନ୍ତିନିକେତନରେ ପଢୁଥିଲା। ଦୁହେଁ ଏକାଘରେ ଥାଇ ମ୍ୟାଟ୍ରିକ ପରୀକ୍ଷାପାଇଁ ଏକତ୍ର ଅଧ୍ୟୟନ କରିଛୁ। ମ୍ୟାଟ୍ରିକ ପାଶ୍ କରି ଗୌର କଲିକତା ସିଟି କଲେଜରେ ନାମ ଲେଖାଇଛି। ଗୌରର ବଡ଼ ଭାଇ ସୁଶୀଳ ମଧ ଶାନ୍ତିନିକେତନର ଛାତ୍ର। ଏହିପରି ଭାବରେ ମୁଁ ତାକୁ ଜାଣେ। ତା' ସହିତ ତାର ଘରଠାରେ ଉପସ୍ଥିତ ହେଲି ଏବଂ ତାରି ଘରେ ମଧ ରହିଲି।

କିନ୍ତୁ ଗୌରର ଘରର ଅବସ୍ଥା ଭଲ ନୁହେଁ। ସେମାନେ ଭାଇ ଭଉଣୀ ହୋଇ ଚାରୋଟି। ପିତାଙ୍କ ନିକଟରୁ ପୃଥକ। ଗୌରର ପିତା ଦ୍ୱିତୀୟବାର ଜଣେ ବ୍ରାହ୍ମ ମହିଳାଙ୍କ ସହିତ ବିବାହ କରି ଏମାନଙ୍କଠାରୁ ଅଲଗା ହୋଇ ରହିଛନ୍ତି। ଗୌରର ଭଉଣୀ ହେଉଛନ୍ତି ଏହି ତିନି ଭାଇଙ୍କର ମୁରବି। ସେ ଧାତ୍ରୀ କାର୍ଯ୍ୟ କରି ଭାଇଟିମାନଙ୍କୁ ପାଠ ପଢ଼ାଉ ଅଛନ୍ତି। ଭାଇମାନଙ୍କ ପାଇଁ ସେ ବିବାହ କରି ନାହାନ୍ତି। ଏହିପରି ତାଙ୍କ ଘରର ଅବସ୍ଥା ସତ୍ତ୍ୱେ ମୁଁ ଗୌର ଘରେ ରହିଲି। ଗୌରର ଦିଦି ଓ ଦାଦା ଆଦି ସମସ୍ତେ ମତେ ତାଙ୍କ ଘରର ଜଣେ ବୋଲି ମନେ କଲେ। ସେମାନଙ୍କର ସ୍ନେହ ମୋର ସେତେବେଳର ଅନିଶ୍ଚିତ ଜୀବନରେ ମନରେ ସୁଖ ଶାନ୍ତି ଦେଉଥିଲା। ଗୃହରେ ଭାଇ ଭଉଣୀଙ୍କୁ ସ୍ନେହ କିପରି ତାହା ଏହିଠାରେ ମୁଁ ଉପଲବ୍ଧି କରି ପାରୁଥିଲି। ସେ ଯାହା ହେଉ ଏହିପରି ଭାବରେ ମୁଁ କଲିକତାରେ ରହିଲି। କିନ୍ତୁ ଗୌର ଉପରେ ଗୋଟିଏ ଭାର ହେବି କାହିଁକି? କଲିକତାରେ ରହିବାକୁ ହେଲେ କିଛି ନା କିଛି ଦରକାର। କୌଣସି ପ୍ରକାର ଗୋଟିଏ ବ୍ୟବସାୟ କରିବାକୁ ଅର୍ଥ ଦରକାର। ଅର୍ଥ ମିଳିଲେ ମଧ୍ୟ ମୁଁ ପ୍ରକାଶ୍ୟରେ କିଛି କରି ପାରିବି ନାହିଁ। ପୋଲିସ ନଜରକୁ ଏଡ଼ିଦେଇ ଲୁକ୍କାୟିତ ଭାବରେ କିଛି କରିବାକୁ ହେବ। ଜର୍ମାନୀଯୁଦ୍ଧ ଶେଷ ନ ହେବା ପର୍ଯ୍ୟନ୍ତ ମତେ ଲୁଚି ରହିବାକୁ ପଡ଼ିବ। ତେବେ ଇତିମଧ୍ୟରେ ବିପ୍ଳବୀ ଦଳ ସହିତ ଯଦି ଖିଅ ପୁଣି ଲାଗିଯାଏ ଏହି ଇଚ୍ଛାରେ କଲିକତା ଆସିଛି; ଏବଂ ସେହି ଇଚ୍ଛା ସବୁବେଳେ ମନରେ ଖେଳୁଛି। କୌଣସି ପ୍ରକାରେ ଜୀବନ ନିର୍ବାହ କରିବା ଏ ଜୀବନର ଉଦ୍ଦେଶ୍ୟ ନୁହେ। ଦେଶର ସ୍ୱାଧୀନତା କାର୍ଯ୍ୟ କରି ପ୍ରାଣବଳି ଦେବା ମୋର ଏକମାତ୍ର ଚିନ୍ତା। ଏପରି ଅବସ୍ଥାରେ ବ୍ୟବସାୟ କଥାଟି ମୋର ମନରେ ଉତ୍ସାହ ଦିଏ ନାହିଁ। କେବଳ ନିଜର ଖର୍ଚ୍ଚ ଚଳାଇବା ପାଇଁ ଅସ୍ଥାୟୀ ଭାବରେ ଯଦି କିଛି କରି ହୁଅନ୍ତା ତେବେ ମନ୍ଦ ନୁହେଁ।

ଏହି ସମୟରେ ନାନା ଲୋକେ ମତେ ନାନା ପ୍ରକାର ଉପଦେଶ ଦେଇଛନ୍ତି। କେତେ ଲୋକଙ୍କର ଉଦାହରଣ ଦେଇ ଭିନ୍ନ ଭିନ୍ନ କର୍ମ ମାର୍ଗ ମତେ ବତାଇ ଅଛନ୍ତି। ଏହି ସବୁ ମୁଁ ଶୁଣେ। କିନ୍ତୁ କାହିଁରେ ମୋର ମନ ଲାଗେ ନାହିଁ। ମୋର ମନର କଥା ଖୋଲି କହିବାକୁ ମୋର ମନ ଡାକେ ନାହିଁ। ମୁଁ ସବୁ ଶୁଣେ କିନ୍ତୁ ନୀରବ ରହେ। ମୋର ଭିତରି କଥା କିଛି ସମସ୍ତେ ଜାଣନ୍ତି ନାହିଁ। ମୁଁ ଅକର୍ମା ହୋଇ କଲିକତାରେ ଏଠା ସେଠା ହୋଇ ବୁଲିବାର ଦେଖି କେତେ ଲୋକ କେତେ ପ୍ରକାର କଥା କହନ୍ତି। ଏପରି ଉପଦେଶ ଦେବା ଲୋକଙ୍କ ପରେ ମୁଁ ମନେ ମନେ ବିରକ୍ତ ହୁଏ। ଉପଦେଶ ନ ଲୋଡ଼ିଲା ବ୍ୟକ୍ତିକୁ, ଉପରେ ପଡ଼ି ଯାଚି ଉପଦେଶ ଦେବା କିପରି ବିରକ୍ତିକର ତାହା ମୁଁ ବେଶ୍ ବୁଝିଛି। ଏହିଠାରେ ମୋର ହୃଦୟରେ ଏପରି ଗୋଟାଏ ଭାବ ଜନ୍ମି ଯାଇଛି ଯେ ମୁଁ କାହାରି କଥା

ଶୁଣି କିଛି କରିବାକୁ ମୋର ତିଳେ ମାତ୍ର ଆଗ୍ରହ ନାହିଁ। ସେ ଯାହା ହେଉ ମୁଁ ଏପରି ଭାବରେ କଲିକତାରେ ଅଛି ପୋଲିସ ଅନୁସନ୍ଧାନ କରିବାର କଥା ମୋର ଅନେକ ବନ୍ଧୁ ଜାଣନ୍ତି। ଦିନେ ରାତ୍ର ୧୦ଟାରେ ମୋର ଜଣେକ ବନ୍ଧୁ ହଠାତ୍ ଆସି ମତେ କହିଲେ ଯେ ପୋଲିସ ମୋର ଠିକଣା ପାଇଛି। ଆଜି ରାତ୍ରରେ ପୋଲିସ ଆସି ଏହି ଘର ଘେରାଉ କରିବ। ମତେ ସେହି ମୁହୂର୍ତ୍ତରେ ଗୌର ଘର ନ ଛାଡ଼ିଲେ ସକାଳକୁ ମୁଁ ନିଶ୍ଚୟ ଧରା ହେବି। ଏ ସମ୍ବାଦ ପାଇ ଗୌର ପ୍ରଭୃତି ବଡ଼ ଭୟ କଲେ। ମୁଁ ଗୌର ଘରେ ଗୋଟିଏ ପୋଲିସ ଭୟର କାରଣ ହେଲି ଏହା ଭାବି ମୁଁ ଅତିଶୟ ଦୁଃଖିତ ହେଲି। ମତେ ସେହି ମୁହୂର୍ତ୍ତରେ ଗୌର ଘର ଛାଡ଼ିବାକୁ ହେଲା। ଗଞ୍ଜାମର ଶ୍ରୀଯୁକ୍ତ ବିଶ୍ୱନାଥ ଦାସ ସେତେବେଳକୁ କଲିକତାରେ ଓକିଲାତି ପଢୁଥାନ୍ତି। ତାହାଙ୍କ ସହିତ ମୋର ଟିକେ ଘନିଷ୍ଠତା ଥାଏ। ମୁଁ ହଠାତ୍ ଯାଇ ତାଙ୍କ ବସାରେ ରହିଲି। ତାଙ୍କ ନିକଟରେ ୩/୪ ଦିନ ରହିଲା ପରେ କଲିକତାରେ ରହିବା ମତେ ଅସମ୍ଭବ ଜଣାଗଲା। କଲିକତା ଛାଡ଼ିବାକୁ ନିଶ୍ଚୟ କଲି। ଗୌର ଘର ଛାଡ଼ି ଆସିଲା ପରେ ପୋଲିସ ସେଠାକୁ ଯାଇ ମୋତେ ଖୋଜିଥିବାର ମଧ୍ୟ ସମ୍ବାଦ ପାଇଲି। ଏହିପରି ବହୁତ କାରଣରୁ କଲିକତା ଛାଡ଼ିବାକୁ ବାଧ ହେଲି।

କଲିକତା ଛାଡ଼ି ମୁଁ ରାମପୁର ହାଟ ନାମକ ଗୋଟିଏ ସ୍ଥାନରେ ଉପସ୍ଥିତ ହେଲି। ରାମପୁର ହାଟରେ ବିଶୁବାବୁଙ୍କ କାକା ରେଲବିଭାଗରେ କାମ କରନ୍ତି। ପ୍ରଥମେ କଲିକତା ଆସି ତିନି ନମ୍ବର ମିରିଜାପୁର ଷ୍ଟ୍ରିଟରେ ଯେଉଁ ବିଶ୍ୱେଶ୍ୱର ଘୋଷଙ୍କ ସହିତ ପରିଚୟ ହୋଇଥିଲା, ଏ ସେହି ବିଶୁବାବୁ। ବିଶୁବାବୁ ବୋଲପୁର ଶାନ୍ତିନିକେତନରେ ପଢୁଥିଲେ। କବିବର ରବୀନ୍ଦ୍ରନାଥ ଠାକୁରଙ୍କର ଜଣେ ପ୍ରିୟ ଛାତ୍ର। ତାହାଙ୍କ ସହିତ ମୋର ଅତିଶୟ ଘନିଷ୍ଠତା ଜନ୍ମିଅଛି। ମୁଁ ତାଙ୍କୁ 'ବିଶୁଦା' ବୋଲି ଡାକେ। ତାଙ୍କ ସଙ୍ଗରେ ତାଙ୍କର ସାହେବଗଞ୍ଜରେ ଥିବା ଘରଠାକୁ ଯାଇଛି। ତାଙ୍କର ପିତା ଶ୍ରୀଯୁକ୍ତ ପଶୁପତି ଘୋଷ ସାହେବଗଞ୍ଜର ଜଣେ ବଡ଼ ଡାକ୍ତର। ଏହି ପଶୁପତି ବାବୁ ଥରେ ଭୟଙ୍କର ବେମାର ହୋଇ କଲିକତା ଆସିଥିଲେ। ବିଶୁବାବୁଙ୍କ କାକା ମଧ୍ୟ ଆସିଥିଲେ। ଏହି ସମୟରେ ମୁଁ ପଶୁପତି ବାବୁଙ୍କର ସେବା ଶୁଶ୍ରୂଷା କରିବାକୁ ସୁଯୋଗ ପାଇଥିଲି। ଏହିପରି ଅନେକ କାରଣରୁ ବିଶୁବାବୁଙ୍କ ପରିବାର ସହିତ ମୋର ଟିକିଏ ଜଣା ଶୁଣା ହୋଇଛି। ବିଶୁବାବୁଙ୍କ କାକା ଥରେ ମତେ ତାଙ୍କ ନିକଟକୁ ଯିବାକୁ କହିଥିଲେ। ମୁଁ ବର୍ତ୍ତମାନ ତାହାଙ୍କ ନିକଟରେ ଉପସ୍ଥିତ। ସେ ରେଲ ବିଭାଗରେ କାର୍ଯ୍ୟ କରୁଥିବାରୁ ତାଙ୍କ ନିକଟରୁ ଖଣ୍ଡିଏ ରେଲପାସ ଯୋଗାଡ଼ କରି କୁଆଡ଼େ ବହୁଦୂରକୁ ଚାଲି ଯିବାକୁ ଇଚ୍ଛା କରି ମୁଁ ରାମପୁର ହାଟକୁ ଯାଇଛି। କିନ୍ତୁ କିଛିଦିନ ପୂର୍ବରୁ ସେ ଖଣ୍ଡିଏ ରେଳପାସ ଦେଇଥିବାରୁ ଆଉ ଖଣ୍ଡିଏ ଆଣିବାର ସୁବିଧା ହେବ ନାହିଁ

ବୋଲି କହିବାରୁ ମୁଁ ରାମପୁର ହାଟରେ ୨/୩ ଦିନ ରହି ସାହେବଗଞ୍ଜ ଗଲି। ସେଠାରେ ବିଶୁବାବୁଙ୍କ ଉପରେ ୪/୨ ଦିନ ରହି ସେଠାରୁ ବେନାରସ ଗଲି।

ଶୁଣିଥାଏ ବେନାରସରେ ସୁରେନବାବୁ ଅଛନ୍ତି ଯେଉଁ ସୁରେନ୍ଦ୍ରନାଥ ମିତ୍ର ମତେ ନେଇ ଶାନ୍ତିନିକେତନରେ ଛାଡ଼ି ଆସିଥିଲେ, ଏ ହେଉଛନ୍ତି ସେହି ସୁରେନ ବାବୁ। କିନ୍ତୁ ବେନାରସରେ ଉପସ୍ଥିତ ହୋଇ ଶୁଣିଲି ଯେ, ସୁରେନ ବାବୁ ଆଉ ବେନାରସରେ ନାହାନ୍ତି। ସେ ଜବାଲପୁରକୁ ଗୋଟିଏ ସ୍କୁଲ ଶିକ୍ଷକ ହୋଇ ଚାଲି ଯାଇଛନ୍ତି। କିନ୍ତୁ ବେନାରସରେ ତାଙ୍କର ଖଣ୍ଡିଏ ଭଡ଼ାଘର ଥାଏ। ସୁରେନ ବାବୁ ନ ଥିଲେ ମଧ୍ୟ ମୁଁ ତାହାଙ୍କ ଘରେ ରହିଲି। ସୁରେନ ବାବୁ ନ ଥିବା ସ୍ଥଳେ ତାଙ୍କ ଘରେ ବେଶିଦିନ ରହିବା ମତେ ଭଲ ଲାଗିଲା ନାହିଁ। ଶେଷରେ ବେନାରସ ଛାଡ଼ି ଏହ୍ଲାବାଦରେ ଉପସ୍ଥିତ ହେଲି। ଏହିଠାରେ ଭାରତ ସେବକ ସମିତିର ଗୋଟିଏ କେନ୍ଦ୍ରଅଛି। ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ନୂଆ ହୋଇ ଭାରତ ସେବକ ସମିତିର ସଭ୍ୟ ହୋଇଛନ୍ତି। ସେ ଏହି ଏହ୍ଲାବାଦ ଶାଖା କେନ୍ଦ୍ରରେ ଅଛନ୍ତି। ମୁଁ ଯାଇ ତାଙ୍କର ନିକଟରେ ରହିଲି।

ଭାରତ ସେବକ ସମିତି ଉପରେ ପୋଲିସର କଡ଼ା ନଜର ନ ଥାଏ। ସେଠାକୁ କିଏ ଗଲା ଅଇଲା ତହିଁର ଅନୁସନ୍ଧାନ ପୋଲିସ କରେ ନାହିଁ। ସୁତରାଂ ଏହିଠାରେ କିଛି ସମୟ ମୁଁ ନିଶ୍ଚିନ୍ତରେ ରହି ପାରିଥିଲି। ଏହି ପଳାତକ ଜୀବନରେ ମନର ଚିନ୍ତାସ୍ରୋତ ମଧ୍ୟ ପଳାତକ ପରି ଅସ୍ଥିର ଥାଏ। ମନରେ ନାନାପ୍ରକାର ଭାବନା ଖେଳିଯାଏ। କୌଣସି କାର୍ଯ୍ୟରେ ବେଶି ଦିନ ମନ ରହେ ନାହିଁ। ଗୋଟିଏ କଥା କିଛି ଦିନ ଚିନ୍ତାକଲା ବେଳକୁ ଆଉ ଗୋଟିଏ କଥା ମନରେ ଆସି ତୀବ୍ର ଆନ୍ଦୋଳନ ସୃଷ୍ଟି କରାଏ। ଏହିଠାରେ ଯେ କେତେଦିନ ରହିଲି, ସେ କେତେ ଦିନ ଲେଖା ପଢ଼ାରେ ମନ ଦେଇଥିଲି। ଭାରତ ସେବକ ସମିତିର ଗୋଟିଏ ପୁସ୍ତକାଗାର ଥାଏ। ପଢ଼ିବାକୁ ବହିର ଅଭାବ ନ ଥାଏ। ଦିନରେ ୭/୮ ଘଣ୍ଟା ଲେଖାପଢ଼ା କରେ। ପୂଜା ଉପାସନାରେ ୪/୬ ଘଣ୍ଟା କାଳ କଟାଇ ଦିଏ। ଏକାଧାରରେ ୩/୪ ଘଣ୍ଟା ଧ୍ୟାନ ଧାରଣାରେ କଟାଇବାର ଅଭ୍ୟାସ ଥାଏ। କେତେକ ଯୌଗିକ ଆସନ ମଧ୍ୟ ଅଭ୍ୟାସ କରୁଥାଏ। ରାତ୍ର ଦୁଇଟାରୁ ଉଠି ସକାଳ ଚାରିଟା ପର୍ଯ୍ୟନ୍ତ ଧ୍ୟାନ ଧାରଣାରେ ବସି କଟାଇ ଦିଏ। ଦିନରେ ବେଳାଏ ଆହାର କରେ। ଲୁଣ, ତେଲ, ଘିଅ, ଦୁଧ, ଚିନି ଓଗେର ସମସ୍ତ ଜିନିଷ ତ୍ୟାଗ କରି ଥାଏ। ହାତରେ ରୋଷେଇ କରି ଖାଏ। ଏହିପରି ଭାବରେ ଜୀବନ କଟାଉ ଥାଏ। ଏହି ସମୟରେ କେତେଗୁଡ଼ିଏ ଭଲ ଭଲ ଲେଖା ମୁଁ ଲେଖିଥିଲି। ଓଡ଼ିଆ ଜାତୀୟ ଜୀବନର ମୂଳଭିତ୍ତି ଓ ଓଡ଼ିଆ ଜାତିର ଆଦର୍ଶ ନାମକ ଗୋଟିଏ ଲେଖା ମୁଁ ଲେଖିଥିଲି। ଲକ୍ଷ୍ମୀନାରାୟଣ ବାବୁ ସେହି ଲେଖାଟି ପାଠ କରି ବହୁତ ପ୍ରଶଂସା କରିଥିଲେ। ତାହାଙ୍କ ନିକଟରେ

ସେହି ଲେଖାଟି ଥିଲା। ସେ କୁଆଡ଼େ ତାକୁ ହଜାଇ ଦେଇଛନ୍ତି। ପଳାତକ ଅବସ୍ଥାରେ ମନରେ ସବୁବେଳେ ଉଚ୍ଚ କଳ୍ପନା ସବୁ ଜାତ ହେଉଥାଏ। ସେତେବେଳେ ମନର ଅବସ୍ଥାରେ ଯେଉଁ ଲେଖା ଲେଖିଥିଲି ଆଉ ସେପରି ଭାବନାପୂର୍ଣ୍ଣ ଲେଖା ଲେଖି ହେବ ନାହିଁ। ସେହି ଲେଖାଟି ଲକ୍ଷ୍ମୀନାରାୟଣ ବାବୁ ହଜାଇ ଦେଇଥିବାରୁ ମୋର ମନରେ ଭାରି ଦୁଃଖ। ଏବେ ମଧ୍ୟ ସେଥିପାଇଁ ବେଳେ ବେଳେ ଦୁଃଖ ହୁଏ।

ସେ ଯାହା ହେଉ ଏହିଠାରେ ମୋର ଜୀବନ ଓ ଚିନ୍ତାରେ ଘୋର ପରିବର୍ତ୍ତନ ଘଟିଥିଲା। ମୁଁ ଏପରି ପଳାଇ ବୁଲୁଛି, ଲୁଚି କରି ରହିବାକୁ ହେଉଛି, ଯେଉଁ ଉଦ୍ଦେଶ୍ୟରେ ଲୁଚି ରହିଛି, ତାହା କିଛି ହେଉ ନାହିଁ, ଏହିପରି ଭାବରେ ମନରେ ଜାତ ହୋଇ ମନ ଅସ୍ଥିର ହେଉଛି। ମତେ ବୋଧ ହେଉଛି ଭାରତର ମୁକ୍ତିପାଇଁ କାର୍ଯ୍ୟ କରିବାକୁ ହେଲେ ଭାରତବର୍ଷ ତହିଁର ଉପଯୁକ୍ତ କର୍ମକ୍ଷେତ୍ର ନୁହେଁ। ଏ ଦେଶରେ ରହି କିଛି କରି ହେବ ନାହିଁ। ଭାରତ ଦେଶ ଛାଡ଼ିଦେଇ ବିଦେଶ ପଳାଇବାକୁ ହେବ। ବିଦେଶ ନ ଗଲେ ଭାରତରେ ରହି କିଛି କାର୍ଯ୍ୟ ସାଧନ କରିବାର ସମ୍ଭାବନା ମତେ ଦେଖାଗଲା ନାହିଁ। ଏପରି ଭାବ ମନରେ ପ୍ରବେଶ କରିବା ମାତ୍ରକେ ବିଦେଶ ପଳାଇବାର ଭାବନା ମନକୁ ଚଞ୍ଚଳ କଲା। ଏହି କଥା ଉଲ୍ଲେଖ କରି ଆଣ୍ଡୃଜ ସାହେବଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖିଲି। ବିଦେଶ ଯିବାପାଇଁ କିଛି ସୁବିଧା କରିଦେବା ପାଇଁ ତାହାଙ୍କୁ ଅନୁରୋଧ କଲି। ମୋର ଏହି ପତ୍ର ପାଇଁ ଆଣ୍ଡୃଜ ସାହେବ ଉତ୍ତର ଦେଲେ। ମୋତେ ବିଦେଶ ପଠାଇବାପାଇଁ କୌଣସି ସୁବିଧା ସେ କରାଇ ଦେଇ ପାରିବେ ନାହିଁ ବୋଲି ଜଣାଇଲେ। କେବଳ ସେତିକି ନୁହେଁ, ମହାତ୍ମା ଗାନ୍ଧିଙ୍କ ସାବରମତୀ ସତ୍ୟାଗ୍ରହ ଆଶ୍ରମରେ ଯୋଗ ଦେବାପାଇଁ ସେ ତାଙ୍କ ଉତ୍ତରରେ ମତେ ମଧ୍ୟ ପରାମର୍ଶ ଦେଇଥିଲେ।

ଆଣ୍ଡୃଜ ସାହେବଙ୍କ ଏହି ପରାମର୍ଶ ମୋ ମନକୁ ଗଲା ନାହିଁ। ଗାନ୍ଧିଜୀଙ୍କ ଆଶ୍ରମକୁ ଗଲେ ଦେଶର ମୁକ୍ତି ସଂଗ୍ରାମରେ କିଛି କାର୍ଯ୍ୟ କରିବାର ବିଶ୍ୱାସ ମୋର ନ ଥାଏ। ସୁତରାଂ ତାହାଙ୍କ ପରାମର୍ଶ ମୁଁ ଗ୍ରହଣ କରି ପାରିଲି ନାହିଁ। କ୍ରମଶଃ ବିଦେଶ ପଳାଇବାପାଇଁ ମନ ଚଞ୍ଚଳ ହୋଇ ଉଠିଲା। ଏହି ସମୟରେ ମିତ୍ରଶକ୍ତି ଜର୍ମାନୀର ସାଥି ବୁଲ୍‌ଗେରିଆକୁ ଯୁଦ୍ଧରେ ହରାଇଲେ। ଜର୍ମାନୀର ଏହି ହେଉଛି ପ୍ରଥମ ପରାଜୟ। ବୁଲ୍‌ଗେରିଆ ହାରିବାରେ ମୋର ମନ ବଡ଼ ଆନ୍ଦୋଳିତ ହେଲା। ଏ ଜୟରେ ଇଂରେଜ ସରକାରଙ୍କର ଆନନ୍ଦ। ଭାରତରେ ମଧ୍ୟ ଏହି ଆନନ୍ଦ ଉତ୍ସବ କରାଯାଇଥିଲା। ଆନନ୍ଦ ଉତ୍ସବରେ ମୁଁ ଅତିଶୟ କ୍ଷୁବ୍ଧ ଓ ବ୍ୟଥିତ ହେଲି। ବୁଲଗେରିଆ କିମ୍ବା ଜର୍ମାନୀର ହାରଜିତରେ ଆମ୍ଭର ଦୁଃଖ କିମ୍ବା ଆନନ୍ଦ କରିବା କିଛି ମାତ୍ର କାରଣ ନାହିଁ। ଇଂରେଜ ସରକାରଙ୍କର ଜୟ ସମ୍ବାଦ ମନରେ ଆନନ୍ଦ ଦେଲା ନାହିଁ।

ସରକାର ଆମ ଦେଶରୁ ଯୁଦ୍ଧପାଇଁ ଧନ ଜନ ବହୁତ ନେଇଛନ୍ତି। ଭାରତବାସୀଙ୍କ ଇଚ୍ଛା ବିରୁଦ୍ଧରେ, ଧନ ଜନ ଏ ଦେଶରୁ ଯାଉଛି। ଭାରତବାସୀ ତାହାର ଇଚ୍ଛା ଅନୁସାରେ କାର୍ଯ୍ୟ କରିପାରୁ ନାହିଁ। ସବୁ ବିଷୟରେ ଆମ୍ଭେମାନେ ନିରୁପାୟ। ଆମ୍ଭ ଦେଶ ନିଗଡ଼ ବନ୍ଧନରେ ବନ୍ଧା। ଗୋଡ଼ ହାତ ହଲଚଲ କରିବାର ଶକ୍ତି ନାହିଁ। ମୁହଁ ଖୋଲି କଥା କହିବାକୁ ସାହସ ନାହିଁ। ହୃଦୟର ଉଚ୍ଚାଭିଳାଷକୁ କାର୍ଯ୍ୟରେ ଦେଖାଇବାକୁ ହେଲେ ମନୁଷ୍ୟର ଯେଉଁସବୁ ମାନସିକ ଉଚ୍ଚବୃତ୍ତି ସବୁ ବିକଶିତ ହୋଇ ଉଠେ, ସେହି ସବୁକୁ ବିକାଶ କରିବାର ସୁଯୋଗ ଓ ସୁବିଧା ଭାରତବାସୀଙ୍କ ଭାଗ୍ୟରେ ନାହିଁ। ମୋ ପରି କେତେ ଯୁବକ ଆତ୍ମବଳି ଦାନ କରିବାକୁ ପ୍ରସ୍ତୁତ ନାହାନ୍ତି? କିନ୍ତୁ ତାହା କରିବାକୁ ଅନୁକୂଳ ପରିସ୍ଥିତି କାହିଁ?' ବିପ୍ଳବୀ ଯୁବକର ଆଶା ଓ ଆକାଙ୍କ୍ଷା ପୂର୍ଣ୍ଣ ହେବ କିପରି? ଏହିପରି ଅନେକ ପ୍ରଶ୍ନ ମନରେ ଜାଗି ଉଠିଲା। ଏ ଦେଶ ଛାଡ଼ି ବିଦେଶ ପଳାଇବାକୁ ମନ ଚଞ୍ଚଳ ହେଲା।

ବିଦେଶ ପଳାଇବାକୁ ଯେତେ ପ୍ରକାର ଚିନ୍ତା କଲେ ମଧ୍ୟ ତାହା କାର୍ଯ୍ୟରେ ପରିଣତ କରିବାର କିଛି ସୁବିଧା ଦେଖାଯାଉ ନାହିଁ। ମନରେ ଏକପ୍ରକାର ବିଷାଦ ଭାବ ଜାଗି ଉଠୁଛି। ମନ ନୀରସ ହୋଇ ଯାଉଛି। କିଛି କାର୍ଯ୍ୟ କରିବା ପାଇଁ ମଧ୍ୟ ସୁବିଧା ନାହିଁ। କେଉଁଠାରେ କିଛି କାର୍ଯ୍ୟ ଆରମ୍ଭ କଲେ ପୋଲିସ ତାହା କରାଇ ଦେବେ ନାହିଁ। ସେତେବେଳକୁ ଦେଶରେ ଲୋକଙ୍କ ମନର ଗତି ଯେପରି, ସେଥିରେ ଲୋକ ସାଧାରଣଙ୍କ ନିକଟରୁ ପ୍ରକାଶ୍ୟ ସାହାଯ୍ୟ ଓ ସହାନୁଭୂତି ପାଇବା ସହଜ ନୁହେଁ। ପୋଲିସ ମୋ ପଛ ଧରିଛି ଏକଥା ଜାଣିଲେ ଲୋକ ସାଧାରଣ ହୁଏତ ମୋ ସହିତ ମିଳାମିଶା କରିବାକୁ ଭୟ କରିବେ। ଏପରି ଅବସ୍ଥାରେ ମୁଁ ବର୍ତ୍ତମାନ କଣ କରିବି କିଛି ସ୍ଥିର କରି ପାରିଲି ନାହିଁ। ମନେ ହେଲା ସତେ ଯେପରି ମୁଁ ଆଉ କିଛି କରିପାରିବି ନାହିଁ। ମୋର ଜୀବନଟା ଏପରି ବୃଥାରେ କଟିଯିବ। ଏହିପରି ନିରାଶ ଭାବ ମନରେ ଜାଗ୍ରତ ହେଲା। ଏହି ସମୟରେ ମୋର ମନର କଥା ଠିକ ପ୍ରକାଶ କରିପାରୁ ନାହିଁ। ଏପରି ସଂକଟରେ ନ ପଡ଼ିବା ଲୋକ ମୋର ସେତେବେଳର ମନର ଅବସ୍ଥା ହୃଦୟଙ୍ଗମ କରିପାରିବ କି ନାହିଁ ସନ୍ଦେହ।

ଜୀବନରେ କିଛି କାର୍ଯ୍ୟ କରି ନାହିଁ। ଯାହା କରିଛି ତହିଁରେ ମୋର ମନ ସନ୍ତୁଷ୍ଟ ନୁହେଁ। ତଥାପି ପୋଲିସର ଏତେ କଡ଼ା ନଜର। ଦେଶର ବର୍ତ୍ତମାନ ପରିସ୍ଥିତି ସହିତ ସେତେବେଳର ପରିସ୍ଥିତିକୁ ତୁଳନା କରାଯାଇ ନ ପାରେ। ଦେଶରେ ସେତେବେଳେ କୌଣସି ପ୍ରକାର ରାଜନୈତିକ ଆନ୍ଦୋଳନ ନାହିଁ। ମୁକ୍ତି ସଂଗ୍ରାମ ପାଇଁ କର୍ମପଦ୍ଧତି ପ୍ରଶ୍ନ କାହାରି ମନକୁ ସ୍ପର୍ଶ କରିଛି କି ନାହିଁ ସନ୍ଦେହ। ଏପରି ଅବସ୍ଥାରେ ପୋଲିସର ତୀବ୍ର ଦୃଷ୍ଟି ପଡ଼ିଲେ, ଦେଶରେ ଓ ସମାଜରେ ରହି କିଛି କାର୍ଯ୍ୟ କରିବା ଅସମ୍ଭବ

ପରି ଜଣା ପଡୁଥାଏ। କାରଣ ଯାହା କିଛି କରିବ ସମସ୍ତ କାର୍ଯ୍ୟକୁ ପୋଲିସ ନିରୀକ୍ଷଣ କରି ଦେଖିବ। ଯାହା ସହିତ ମିଳାମିଶା କରିବ, ତାହାର ମଧ୍ୟ ପୋଲିସ ଅନୁସନ୍ଧାନ ଚାଲିବ। ଏପରି ପୋଲିସର ତୀବ୍ର କଟାକ୍ଷରେ ପଡ଼ିବା ବ୍ୟକ୍ତିର ଅବସ୍ଥା ଗୋଟିଏ ଶାପକାମୁଡ଼ା ସୁପକ୍ୱ ଫଳ ସଦୃଶ ବୋଲି ତୁଳନା କରାଯାଇ ପାରେ। ଗୋଟିଏ ସୁସ୍ୱାଦୁ ଓ ସୁନ୍ଦର ଫଳକୁ ବିଷାକ୍ତ ଶାପ ଛୁଇଁଦେଲେ ସେହି ଫଳଟି ଯେପରି ଆଉ କାହାରି ଉପକାରରେ ଆସେ ନାହିଁ, ସେହିପରି ରାଜନୈତିକ କାରଣରୁ ପୋଲିସ କଟାକ୍ଷରେ ପଡ଼ିଲେ ଦେଶର କୌଣସି ହିତ କାର୍ଯ୍ୟ କରିବା ଆଉ ସମ୍ଭବପର ହୋଇ ଉଠେ ନାହିଁ। ଦେଶର ସେତେବେଳ ପରିସ୍ଥିତିରେ ଅବସ୍ଥା ଠିକ ଏହାହିଁ ଥିଲା। ମୋର ଅବସ୍ଥା ମଧ୍ୟ ଠିକ୍ ସେହିପରି ହୋଇଛି।

ଦେଶର ସ୍ୱାଧୀନତା କଳ୍ପନା କରି ବିପ୍ଳବୀ ଦଳରେ ଯୋଗ ଦେଇଛି। ବିପ୍ଳବୀ ଦଳର ବଡ଼ ବଡ଼ କର୍ମୀ ସବୁ ଧରା ହୋଇ ଯିବାରୁ ମୁଁ ଗୋଟିଏଟା ହୋଇ ଏଣେ ତେଣେ ବୁଲୁଛି। ଦେଶପାଇଁ କିଛି ତ କରିପାରୁ ନାହିଁ, ନିଜ ପାଇଁ ମଧ୍ୟ କିଛି କରି ହେଉ ନାହିଁ। ଏପରି ଭାବରେ ପଳାତକ ଜୀବନ କେତେଦିନ କଟାଇବି— ଏହି ପ୍ରଶ୍ନ ମନରେ ଖେଳୁଛି। ଯେଉଁ ଆଦର୍ଶକୁ ଧରି ଜୀବନକୁ ଭୟ ସଂକଟସଂକୁଳ କରିଛି, ସେହି ଆଦର୍ଶ ପଥରେ ଅଗ୍ରଗାମୀ ହେବା ପାଇଁ ଦେଶରେ କିଛି କାର୍ଯ୍ୟ କରିବା ଦରକାର। ବିଦେଶକୁ ପଳାଇବାର କଳ୍ପନା ଫଳବତୀ ହେବାର କିଛି ସମ୍ଭାବନା ଦେଖାଯାଉ ନାହିଁ। ଏପରି ଅବସ୍ଥାରେ ଦେଶର ସାଧାରଣ ଲୋକ ସମାଜରେ ପ୍ରବେଶ କରି ଦେଶର ଅବସ୍ଥା ବିଷୟ ଲୋକଙ୍କୁ ବୁଝାଇବା ଦରକାର। ଦେଶରେ ସାଧାରଣଙ୍କ ଭାବ ପରିବର୍ତ୍ତନ କରିବା ଦରକାର। ଦେଶ ବିଷୟରେ ଲୋକ ସାଧାରଣ ଚିନ୍ତା କରିବା ଦରକାର। ଦେଶପ୍ରୀତି ଭାବ ଲୋକ ସାଧାରଣଙ୍କ ମନରେ ଖେଳିବା ଉଚିତ। ସ୍ୱାଧୀନ ଓ ପରାଧୀନ ଦେଶ ମଧ୍ୟରେ ପ୍ରଭେଦ କଣ ତାହା ଦେଶର ଜନସାଧାରଣ ନ ଜାଣିଲେ କିଛି ହେବ ନାହିଁ। ଦେଶର ଜନସାଧାରଣଙ୍କ ମନରେ ଦେଶକୁ ସ୍ୱାଧୀନ କରିବା ପାଇଁ ଯେ ପର୍ଯ୍ୟନ୍ତ ଭବନା ନ ଖେଳିଛି ସେପର୍ଯ୍ୟନ୍ତ ବିପ୍ଳବବାଦୀ କିଛି କରି ନ ପାରନ୍ତି। ସେ ପର୍ଯ୍ୟନ୍ତ ଦେଶର ମୁକ୍ତିସଂଗ୍ରାମ ମଧ୍ୟ ଅସମ୍ଭବ। ଏହି କାର୍ଯ୍ୟ କିପରି ହେବ, କିଏ କରିବ। ବିପ୍ଳବୀ ଦଳର ଲୋକଙ୍କ ଏହି କର୍ମସାଧନ କରିବାକୁ ହେବ। ସେମାନଙ୍କ ନିଷ୍ଠା, ତ୍ୟାଗ ଓ ତନ୍ମୟ ଭାବ କେବଳ ଲୋକହୃଦୟକୁ ଆକର୍ଷଣ କରିବ। ସେମାନଙ୍କ ଅଟଳ ବିଶ୍ୱାସ, ଅସାଧାରଣ ଧୈର୍ଯ୍ୟ ଓ ସାହସ କେବଳ ଅସମ୍ଭବକୁ ସମ୍ଭବ କରି ପାରିବ।

ବିଦେଶ ପଳାଇବାର କଳ୍ପନା ବ୍ୟର୍ଥ ହେବା ପରେ ଏହିପରି ଭାବନା ମନରେ ଖେଳିଲା। କ୍ରମଶଃ ଏହି ଭାବନା ଦୃଢ଼ ବିଶ୍ୱାସରେ ପରିଣତ ହେଲା। ଲୋକ ସାଧାରଣଙ୍କ ଭିତରେ ପ୍ରବେଶ କରି କାର୍ଯ୍ୟ କରିବା ମତେ ଏକମାତ୍ର ପନ୍ଥା ରୂପେ ଦେଖାଗଲା।

କିନ୍ତୁ ଲୋକ ସାଧାରଣଙ୍କ-ଭିତରେ କାର୍ଯ୍ୟ କରିବାକୁ ହେଲେ ସମସ୍ତ କାର୍ଯ୍ୟ ପ୍ରକାଶ୍ୟରେ କରିବାକୁ ପଡ଼ିବ। ପ୍ରକାଶ୍ୟ ଭାବରେ ଲୋକଙ୍କୁ ଦେଶର କଥା ବୁଝାଇବାକୁ ହେବ। ସ୍ୱାଧୀନ ଓ ପରାଧୀନ ଦେଶର ପାର୍ଥକ୍ୟ, ପରାଧୀନ ଦେଶ ଓ ବିଦେଶୀ ଶାସନର ଅପକାରିତା ବୁଝାଇବାକୁ ହେବ। ଏହା ଚୋରା ଛପା ଭାବରେ ହୋଇ ନ ପାରେ। ପ୍ରକାଶ୍ୟରେ କାର୍ଯ୍ୟ କରି ସରକାରଙ୍କ ଦ୍ୱାରା ଧରା ହୋଇ ଦଣ୍ଡ ପାଇଲେ, ପ୍ରଚାରିତ କାର୍ଯ୍ୟ ଶୀଘ୍ର ଜନସାଧାରଣରେ ପ୍ରଚାରିତ ହୋଇଯିବ। ଲୋକେ ଜାଣିବେ ଯେ ଅମୁକ ବ୍ୟକ୍ତି, ଅମୁକ ପ୍ରକାର କାର୍ଯ୍ୟ କରି କିମ୍ବା ଅମୁକ ପ୍ରକାର କଥା କହି ଦଣ୍ଡ ପାଇଛି। ଲୋକେ ସେହି କାର୍ଯ୍ୟ ଜାଣିବେ, ସେହି କଥା ଶୁଣିବେ, ଏବଂ ତାହା କିପରି କାର୍ଯ୍ୟ ଏବଂ ସେହି କଥାର ମର୍ମ କଣ ଇତ୍ୟାଦି ବିଷୟ ଚିନ୍ତିଏ ଚିନ୍ତା କରିବେ।

ମାନବ ଜାତିର ଇତିହାସ ଦେଖିଲେ ଏହାର ପ୍ରମାଣ ଯଥେଷ୍ଟ ମିଳିବ। ପ୍ରକାଶ୍ୟରେ ଯେଉଁ ତ୍ୟାଗ କରାଯାଏ, ଆତ୍ମୋତ୍ସର୍ଗ ଦ୍ୱାରା ଯେଉଁ କର୍ମ ସାଧନ କରାଯାଏ ତହିଁର ମହତ୍ତ୍ୱ ଯେତେ ଶୀଘ୍ର ଲୋକ ଦୃଷ୍ଟିରେ ପ୍ରକାଶ ପାଏ ଅନ୍ୟ ଉପାୟରେ ସେପରି ହୁଏ ନାହିଁ। ଅକାତର ଭାବରେ ଅଥବା ଅକୁଣ୍ଠିତ ଚିତ୍ତରେ ଆତ୍ମୋତ୍ସର୍ଗ ନ କଲେ କାର୍ଯ୍ୟର ଗୁରୁତ୍ୱ ଲୋକ ସାଧାରଣଙ୍କର ହୃଦ୍‌ବୋଧ ହୁଏ ନାହିଁ। ଆତ୍ମୋତ୍ସର୍ଗ ଯଦି ପ୍ରତ୍ୟେକ କର୍ମର ମୂଳଭିତ୍ତି ତେବେ ତାହା ଲୁଚାୟିତ ଭାବରେ କରିବା ଦରକାର କ'ଣ ? ଗୁପ୍ତ ଭାବରେ କାର୍ଯ୍ୟ କରି ଜଗତରେ କୌଣସି ସତ୍ୟ ପ୍ରତିଷ୍ଠା ଲାଭ କରି ନାହିଁ। ଶିଖ ଗୁରୁ ପ୍ରକାଶ୍ୟରେ ନିଜର ଧର୍ମ ପ୍ରଚାର କରି ଜୀବନ ଯନ୍ତ୍ରଣା ଭୋଗ କରି ନ ଥିଲେ ଶିଖ ଜାତି ବୋଧହୁଏ ଏପରି ବୀର ଜାତି ହୋଇ ପାରିଥାନ୍ତା କି ନାହିଁ ସନ୍ଦେହ। ସେ ଯାହା ହେଉ ଭାରତକୁ ସ୍ୱାଧୀନ କରିବାକୁ ହେଲେ ଏଥିପାଇଁ ପ୍ରକାଶ୍ୟ କର୍ମ ସାଧନ କରିବା ଆବଶ୍ୟକ। କିନ୍ତୁ ପ୍ରକାଶ୍ୟ କର୍ମ, Violent method କିମ୍ବା secret society ଦ୍ୱାରା ହେବା ସମ୍ଭବପର ନୁହେଁ। ଏପରି ପ୍ରଶ୍ନ ସବୁ ମନରେ ଖେଳିଲା। କ୍ରମଶଃ ଅହିଂସାର ପ୍ରଶ୍ନ ମନରେ ଜାଗି ଉଠିଲା। ହିଂସାନୁମୋଦିତ ବିପ୍ଳବବାଦୀ ହୋଇ ଜୀବନ କଟାଇବି, କିମ୍ବା ଅହିଂସାର ପଥ ଅବଲମ୍ବନ କରି ଲୋକହିତକର କୌଣସି ପ୍ରକାର ଗୋଟିଏ ଅନୁଷ୍ଠାନ ଗଢ଼ିବି ଏହିପରି ପ୍ରଶ୍ନ ମନକୁ ବିଚଳିତ କଲା। ଏପର୍ଯ୍ୟନ୍ତ Leading an absconded life with a view to embrace greater risk, କିନ୍ତୁ ତାହା କାର୍ଯ୍ୟରେ ପରିଣତ ହେଉ ନାହିଁ। ଏପରି ଲୁଚାୟିତ ଭାବରେ ଜୀବନ ବ୍ୟର୍ଥ କରିବାରେ ଲାଭ କଣ ? ହିଂସାନୁମୋଦିତ ପଥ ଦେଶର ବର୍ତ୍ତମାନ ପରିସ୍ଥିତିରେ ବୋଧହୁଏ, ଯଥାର୍ଥ ମାର୍ଗ ନୁହେଁ। ଏହିପରି ଭାବନା ମନରେ ଜାଗି ଉଠିବା ସଙ୍ଗେ ସଙ୍ଗେ ମହାତ୍ମା ଗାନ୍ଧିଙ୍କ କଥା ସ୍ୱତଃ ମନରେ ଜାଗି ଉଠିଲା। କ୍ରମେ ତାହାଙ୍କ

ଆଡ଼କୁ ମୋର ମନ ଆକୃଷ୍ଟ ହେଲା। ତାଙ୍କର ଜୀବନୀ ଓ ଲେଖା ପାଠ କରିବାକୁ ଆରମ୍ଭ କଲି। ଏହି ପାଠର ଫଳରେ ମୋର ମନ ବଦଳିଗଲା। ହିଂସାନୁମୋଦିତ ବିପ୍ଳବ ପଥ ଅକାରଣ ବୋଲି ମନରେ ବିଶ୍ୱାସ ଜନ୍ମିଲା। ଦେଶର ବର୍ତ୍ତମାନ ପରିସ୍ଥିତିରେ ହିଂସାନୁମୋଦିତ ଗୁପ୍ତ କର୍ମ ଯଥାର୍ଥ ମାର୍ଗ ନୁହେଁ ଏହା ଦୃଢ଼ ଆକାର ଧାରଣ କଲା। ଏହିଠାରୁ ମହାତ୍ମା ଗାନ୍ଧିଙ୍କ ସତ୍ୟାଗ୍ରହ ଆଶ୍ରମକୁ ଯିବାପାଇଁ ମନରେ ଆଗ୍ରହ ଜାତ ହେଲା। ଗାନ୍ଧୀଜୀଙ୍କ ନିକଟକୁ ଯିବା କଥା ମୁଁ ଲକ୍ଷ୍ମୀନାରାୟଣ ସାହୁଙ୍କୁ ଜଣାଇଲି। ଆଣ୍ଡ୍ରୁଜ ସାହେବଙ୍କୁ ମଧ ଲେଖିଲି। ସାବରମତୀର ସତ୍ୟାଗ୍ରହ ଆଶ୍ରମକୁ ଶୀଘ୍ର ଯିବାପାଇଁ ଆଣ୍ଡ୍ରୁଜ ସାହେବ ମଧ ମତେ ଉତ୍ତର ଦେଲେ। ଏହିପରି ଭାବରେ ସାବରମତୀ ସତ୍ୟାଗ୍ରହ ଆଶ୍ରମରେ ଯୋଗ ଦେବାପାଇଁ ମୁଁ ନିଶ୍ଚୟ କଲି।

## ପଞ୍ଚମ ପରିଚ୍ଛେଦ

### ସାବରମତୀ ଯାତ୍ରା

୧୯୧୮ ମସିହା ନଭେମ୍ବର ମାସ। ବମ୍ବେଇରେ ଭାରତ Liberal party ନରମପନ୍ଥୀ ଦଳର ପ୍ରଥମ ବୈଠକ ବସୁଥାଏ। ମଣ୍ଟାଗୁ ଚେମ୍ସ ଫୋର୍ଡ଼ ଶାସନ ସଂସ୍କାର ନେଇ ଦେଶରେ ରାଜନୀତି କ୍ଷେତ୍ରରେ ମତାନ୍ତର ଉପସ୍ଥିତ ହୋଇଥାଏ। ଏହି ଶାସନ ସଂସ୍କାର ଆଇନରେ ଦେଶକୁ ଯାହା କିଛି ଅଧିକାର ମିଳିଲା ତାହା କିଛି ନୁହେଁ ବୋଲି କଂଗ୍ରେସର ଅଧିକାଂଶ ଲୋକ ମତ ବ୍ୟକ୍ତ କରୁଥାନ୍ତି। ବମ୍ବେଇଠାରେ କଂଗ୍ରେସର ଯେଉଁ ବିଶେଷ ଅଧିବେଶନ ହେଲା, ତହିଁରେ ମଣ୍ଟାଗୁଚେମ୍ସ ଫୋର୍ଡ଼ ଶାସନ ସଂସ୍କାରକୁ ତୀବ୍ର କଟାକ୍ଷପାତ କରି ସମାଲୋଚନା କରାଗଲା। ଏଥିରେ କଂଗ୍ରେସରୁ ଅଲଗା ହୋଇ ସୁରେନ୍ଦ୍ରନାଥ ବାନାର୍ଜିଙ୍କ ସଭାପତିତ୍ୱରେ ବମ୍ବେଇଠାରେ ଭାରତ ଲିବରାଲ ପାର୍ଟିର ପ୍ରଥମ ବୈଠକ ବସୁଥାଏ। ଭାରତ ସେବକ ସମାଜର ମେମ୍ବରମାନେ ଏହି ଲିବରାଲ ଦଳର ପ୍ରଧାନ ଉଦ୍ୟୋକ୍ତା କହିଲେ ଚଳେ। ସୁତରାଂ ଏଲ୍ଲାବାଦ ଶାଖାର ଭାରତ ସେବକ ସମିତିର ମେମ୍ବରମାନେ ଏଥିରେ ଯୋଗ ଦେବାକୁ ବମ୍ବେଇ ବାହାରିଲେ। ଲକ୍ଷ୍ମୀନାରାୟଣ ବାବୁ ଯିବାର କଥା। ତାହାଙ୍କ ସହିତ ମୁଁ ବମ୍ବେଇ ଗଲି। ବମ୍ବେଇରେ ଉପସ୍ଥିତ ହୋଇ ଏହି ଲିବରାଲ ସଭା ଦେଖିବାକୁ ମୁଁ ଯାଇଥିଲି। ସେ ସଭାରେ ବଡ଼ ବଡ଼ ବକ୍ତୃତା କେବଳ ଶୁଣିଲି। ସେତେବେଳକୁ କଂଗ୍ରେସ ରାଜନୀତ ଚର୍ଚ୍ଚା ମୁଁ ଆଲୋଚନା କରି ନାହିଁ। କଂଗ୍ରେସଦ୍ୱାରା ଏ ଦେଶର ସ୍ୱାଧୀନତା ସଂଗ୍ରାମ ସମ୍ଭବପର ହେବ ଏହି କଳ୍ପନା ମଧ ସ୍ୱପ୍ନରେ ମୋ ମନକୁ ସ୍ପର୍ଶ କରି ନାହିଁ। ନରମପନ୍ଥୀ ଦଳର ସଭାରେ କଣ ହେଲା ସେସବୁ ଜାଣି

ମନେ ରଖିବାକୁ ମୋର ଇଚ୍ଛା ନ ଥାଏ। କିପରି ଶୀଘ୍ର ଅହମଦାବାଦ ଯାଇ ଗାନ୍ଧିଜୀଙ୍କ ସତ୍ୟାଗ୍ରହ ଆଶ୍ରମରେ ଯୋଗ ଦେବି ଏହି ଚିନ୍ତା ମୋର ଏକମାତ୍ର ଭାବନା ଥାଏ। ତଥାପି ବମ୍ବେଇକୁ ଆସି ବମ୍ବେଇର ଐଶ୍ୱର୍ଯ୍ୟରେ ମୁଁ ବିହ୍ୱଳିତ ହୋଇ ଯାଉଥାଏ। କଲିକତା ଓ ବମ୍ବେଇର ତଫାତ୍ କେଉଁଠାରେ ତାହା ବୁଝି ପାରିବାର ଅବସ୍ଥା ମୋର ସେତେବେଳେ ନ ଥାଏ। ଏଠାକୁ ଆସି ମୋ ମନରୁ ଚିନ୍ତାଭାର ଟିକିଏ ଉଶ୍ୱାସ ହୋଇଗଲା ପରି ମନେ ହେଲା। ମତେ ଟିକିଏ ଭଲ ଲାଗିଲା।

ଲିବରାଲ କନଫରେନ୍‌ସ ଶେଷ ହେଲା। ଲକ୍ଷ୍ମୀନାରାୟଣ ବାବୁ ମତେ ନେଇ ଅହମଦାବାଦ ଗାଡ଼ିରେ ବସାଇ ଦେଇ ଆସିଲେ। ୧୯୧୮ ମସିହା ନଭେମ୍ବର ମାସ ତା ୧୮ ରିଖ ଦିନ ମୁଁ ଯାଇ ସାବରମତୀ ଆଶ୍ରମରେ ଉପସ୍ଥିତ ହେଲି। ଆଶ୍ରମକୁ ଆସିବା ପୂର୍ବରୁ ମହାତ୍ମାଗାନ୍ଧୀ ଭୟଙ୍କର ଡିସେଣ୍ଟ୍ରି ରୋଗରେ ପୀଡ଼ିତ ଥିଲେ। ତାହାଙ୍କ ଜୀବନ ସଂକଟପୂର୍ଣ୍ଣ ହୋଇ ପଡ଼ିଥିଲା। ସେ ସେଥିରୁ ସାମାନ୍ୟ ମାତ୍ର ଆରୋଗ୍ୟ ଲାଭ କରିଥାନ୍ତି, କିନ୍ତୁ ତାହାଙ୍କ ଶାରିରୀକ ବଳ ଭାଙ୍ଗି ଯାଇଥାଏ। ସେହିଦିନୁ ସେ ଶାରୀରିକ ଭାବରେ ଦୁର୍ବଳ। ସାବରମତୀ ଆଶ୍ରମରେ ଉପସ୍ଥିତ ହେଲା ବେଳକୁ ସକାଳ ନଟା ସମୟ ହେବ। ମହାତ୍ମାଜୀ ଆଶ୍ରମର ବାରଣ୍ଡାରେ ବାଡ଼ି ଖଣ୍ଡିଏ ଧରି ପଦାଚରଣ କରୁଛନ୍ତି। ମୁଁ ହଠାତ୍ ଯାଇ ସାଷ୍ଟାଙ୍ଗ ପ୍ରଣିପାତ କଲି। ମତେ ଦେଖି ମୁଁ କିଏ, କୁଆଡ଼େ ଆସିଛି ବୋଲି ମହାତ୍ମାଜୀ ପ୍ରଶ୍ନ କଲେ। ଉତ୍ତରରେ ମୁଁ କହିଲି, "ମୁଁ ଓଡ଼ିଶାରୁ ଆସିଛି। ଆଶ୍ରମର ଆଜୀବନ ସଭ୍ୟ ହେବାକୁ ମୋର ଇଚ୍ଛା। ଏହି ବିଷୟରେ ଆଣ୍ଡୃଜ ସାହେବ ଆପଣଙ୍କୁ ବୋଧହୁଏ ଲେଖିଥିବେ। ଭାରତ ସେବକ ସମିତିର ସଭ୍ୟ ଶ୍ରୀ ସାହୁ ମଧ ଆପଣଙ୍କୁ ଖଣ୍ଡିଏ ପତ୍ର ଲେଖିଛନ୍ତି। ଆଣ୍ଡୃଜ ସାହେବ ଶୀଘ୍ର ଏଠାକୁ ଆସିବେ ବୋଲି ମତେ ଲେଖିଛନ୍ତି। ସେ ଆସିଲେ ମୋର ସବିଶେଷ ପରିଚୟ ଆପଣ ପାଇବେ।" ମୋଠାରୁ ଏହିସବୁ କଥା ଶୁଣି ମହାତ୍ମାଜୀ କହିଲେ, "ଆଛି ବାତ୍, ଆପ୍ ରହିଏ।"



## ଷଷ୍ଠ ଭାଗ

# ପ୍ରଥମ ପରିଚ୍ଛେଦ

## ସତ୍ୟାଗ୍ରହ ଆଶ୍ରମ ଜୀବନ

ସତ୍ୟାଗ୍ରହ ଆଶ୍ରମରେ ମୁଁ ରହିଲି। ଏହାର ଦୁଇ ଚାରିଦିନ ପରେ ଆଣ୍ଡ୍ରୁଜ ସାହେବ ଆଶ୍ରମକୁ ଆସିଲେ। ସେ ଗାନ୍ଧିଜୀଙ୍କୁ ଦେଖିବାକୁ ଆସିଥାନ୍ତି। ମୋ ବିଷୟରେ ମହାତ୍ମାଜୀଙ୍କୁ ସେ ଅନେକ କଥା କହି ମତେ ଆଶ୍ରମରେ ସ୍ଥାନ ଦେବାପାଇଁ ଅନୁରୋଧ କରିଥିଲେ। ଆଣ୍ଡ୍ରୁଜ ସାହେବଙ୍କ ଆସିବା ପରେ ମତେ ଆଶ୍ରମବାସୀ ରୂପେ ଗ୍ରହଣ କରା ଯାଇଥିଲା। ଆଶ୍ରମର ଅନ୍ୟାନ୍ୟମାନଙ୍କ ସହିତ ମୁଁ ଜଣେ ହୋଇ ଚଳିଲି। ଆଶ୍ରମ ସେତେବେଳକୁ ନୂଆ ହୋଇ ଗଢ଼ା ହେଉଥାଏ। ବର୍ତ୍ତମାନ ସେହି ସ୍ଥାନରେ ଯେତେ ଘର ସବୁ ଅଛି ସେତେବେଳେ କିଛି ନ ଥିଲା। ମୁଁ ଯାଇ ଗୋଟିଏ ତମ୍ବୁରେ ରହିଲି। ବିନୋବାଜୀ ସେହି ତମ୍ବୁରେ ରହିଥାନ୍ତି। ଆଶ୍ରମ ସମସ୍ତ କାର୍ଯ୍ୟ ଆଶ୍ରମବାସୀମାନେ କରନ୍ତି। ସେଠାରେ ଚାକର ନାହିଁ। ଆଶ୍ରମର ନିୟମାବଳୀ ବଡ଼ କଡ଼ା। ସମସ୍ତ କାର୍ଯ୍ୟ ହାତରେ କରିବାକୁ ହୁଏ। ରୋଷେଇ କରିବାଠାରୁ ବାସନ ମାଜିବା ପର୍ଯ୍ୟନ୍ତ ସବୁ କାମ ସମସ୍ତେ ହାତରେ କରନ୍ତି। ସେତେବେଳେ ଆଶ୍ରମରେ ୨୦/୨୫ ଜଣରୁ ଅଧିକ ଲୋକ ନ ଥାନ୍ତି। ସମସ୍ତଙ୍କର ଏକାଠି ରୋଷେଇ ହୁଏ। ସବୁବେଳେ ସମସ୍ତେ କାମରେ ଲାଗିଥାନ୍ତି। ଦିନରାତି କେତେବେଳେ ହେଲେ ଦୁଇ ଚାରିଜଣ ଏକାଠି ବସି କୌଣସି ବିଷୟ ଆଲୋଚନା କରିବାକୁ ସମୟ ନ ଥାଏ। ଦୁଇବେଳା ପିତଳ ବର୍ତ୍ତନରେ ରୋଷେଇ ହୁଏ। ଦୁଇବେଳା ଏହି ରୋଷେଇ ବାସନ ମାଜିବାକୁ ପଡ଼େ। ଏହିଠାରେ ସମସ୍ତେ ଏକାଠି ହେଉଁ। ଏତିକିବେଳେ ଯାହା କିଛି କଥାବାର୍ତ୍ତା।

ବୋଲପୁର ଶାନ୍ତିନିକେତନରେ ମୁଁ ଅନେକ ଦିନ କଟାଇଛି। ବଙ୍ଗଳା ଦେଶରେ ମଧ୍ୟ ରହିଛି। ବଙ୍ଗଳାର ବାୟୁମଣ୍ଡଳରେ ଚଳି, ମନରେ ଟିକିଏ ବାବୁଗିରୀ ଭାବଟା ସ୍ଥାନ ପାଇଥାଏ। ଶାରୀରିକ କାର୍ଯ୍ୟ ବାବୁମାନଙ୍କ କାର୍ଯ୍ୟ ନୁହେଁ, ଏପରି ଗୋଟିଏ ସଂସ୍କାର ମନରେ ଥାଏ। ଅନ୍ୟାନ୍ୟ ସମସ୍ତ ପ୍ରକାର ଦୁଃଖ କଷ୍ଟ ସହ୍ୟ କରିବାକୁ ମନରେ ଉତ୍ସାହ ଓ ଆନନ୍ଦ ପାଉଥିଲେ ମଧ୍ୟ ଯେଉଁସବୁ କାର୍ଯ୍ୟ ଚାକର ଓ କୁଲିମାନେ କରନ୍ତି,

ସେହିପରି କାର୍ଯ୍ୟ କରିବାକୁ ଆମ୍ଭ ଦେଶରେ ପଢ଼ାଶୁଣା କରିଥିବା ଯୁବକଙ୍କୁ ଲାଜମାଡ଼େ। କିନ୍ତୁ ସତ୍ୟାଗ୍ରହ ଆଶ୍ରମରେ ସମସ୍ତେ ସମାନ। ଜଣେ ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ଅପରକୁ ଖଟାଇବା ଅନ୍ୟାୟ। ଭଗବାନଙ୍କ ସୃଷ୍ଟିରେ ମନୁଷ୍ୟ ଉତ୍ତମ ପ୍ରାଣୀ। ଜଗତ ତଥା ମାନବ ସମାଜର ସେବା ମନୁଷ୍ୟର ଜୀବନର ଏକମାତ୍ର ଆଦର୍ଶ। ଏହି ଆଦର୍ଶ ପ୍ରତି ଦୃଷ୍ଟି ରଖି ପ୍ରତ୍ୟେକ ମନୁଷ୍ୟ ତାହାର କର୍ତ୍ତବ୍ୟ ପାଳନ କରିବ। ସେବା ହେଉଛି ମନୁଷ୍ୟର କର୍ତ୍ତବ୍ୟ। ମନୁଷ୍ୟ ଯାହା କିଛି କରିବ, ସବୁ ସେ ସମାଜ ତଥା ଦେଶର ସେବା ପାଇଁ କରିବ। ସୂକ୍ଷ୍ମ ଦୃଷ୍ଟିରେ ଦେଖିଲେ ସେବା କାର୍ଯ୍ୟରେ ଉଚ୍ଚା ନୀଚା ଭାବ ନାହିଁ। ଜଣେ ମାନସିକ ଉଚ୍ଚ କାମ କରି ଯେପରି ସମାଜ ତଥା ଦେଶର ସେବା କରେ, ଅନ୍ୟ ଜଣେ ଶାରୀରିକ କାର୍ଯ୍ୟ କରି ସମାଜର ସେହିପରି ସେବାକରେ। ବ୍ରାହ୍ମଣ ଜ୍ଞାନ ଉପଦେଶ ଦେଇ ଯେପରି ସମାଜର ସେବା କରେ ଚାଣ୍ଡାଳ ମଇଳା ସଫା କରି ସେହିପରି ସେବା କରେ। ଏଥିପାଇଁ ବ୍ରାହ୍ମଣ ନିଜକୁ ଅନ୍ୟଠାରୁ ବଡ଼ ବୋଲି ଭାବିବା ଉଚିତ ନୁହେଁ। ବ୍ରାହ୍ମଣ ବ୍ରାହ୍ମଣର କାର୍ଯ୍ୟ କରିବ, ଶୂଦ୍ର ଶୂଦ୍ରର କାର୍ଯ୍ୟ କରିବ। କେବଳ ଅଧିକାର ଭେଦରେ ସେବା କରିବାର କର୍ମ ପୃଥକ କରାହୋଇଛି।

କିନ୍ତୁ ବର୍ତ୍ତମାନ ଲୋକେ ସେବାର ଏହି ମହତ୍ ଆଦର୍ଶକୁ ଭୁଲିଯାଇ ସେବାର ପାର୍ଥକ୍ୟକୁ ଦେଖି ମନୁଷ୍ୟକୁ ମନୁଷ୍ୟଠାରୁ ନୀଚ କରି ଦେଖିବାରୁ ନାନା ପ୍ରକାର ଅସ୍ୱାଭାବିକ ଭେଦଭାବର ସୃଷ୍ଟି ହେଉଛି। ମନୁଷ୍ୟ ମନୁଷ୍ୟକୁ ନୀଚ ଦୃଷ୍ଟିରେ ଦେଖୁଛି। ଅସ୍ପୃଶ୍ୟ ବୋଲି ଘୃଣା କରୁଛି। ଏହିସବୁ କାରଣରୁ ସତ୍ୟାଗ୍ରହ ଆଶ୍ରମରେ କୌଣସି କାର୍ଯ୍ୟ ନୀଚ ନୁହେଁ। ସମସ୍ତଙ୍କୁ ସବୁ କାମ କରିବାକୁ ହୁଏ, ପାଳି କରି ପାଇଖାନା ମଧ୍ୟ ସଫା କରିବାକୁ ପଡ଼େ। ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବା, ସବୁ ପ୍ରକାର କାମକୁ ଆନନ୍ଦରେ କରିନେବା, ହଠାତ ମୋର ହୃଦ୍‌ବୋଧ ହେଲା ନାହିଁ। ପ୍ରଥମେ କେତେଦିନ ପର୍ଯ୍ୟନ୍ତ ମତେ ଟିକିଏ ଅଡୁଆ ବୋଧ ହେଲା। ତଥାପି ସମସ୍ତଙ୍କ ସହିତ ମୁଁ କାମ କରିଯାଏ। କୌଣସି କାର୍ଯ୍ୟ କରିବାକୁ ମନରେ କୁଣ୍ଠା କିମ୍ବା ଘୃଣାଭାବ ସ୍ଥାନ ପାଏ ନାହିଁ। ବାସନ ମାଜିବାରୁ ପାଇଖାନା ସଫା କରିବା କାମ ସବୁ ମୁଁ ଆନନ୍ଦରେ କରେ। ସବୁ କାର୍ଯ୍ୟରେ ମନରେ ଏକପ୍ରକାର ନୂଆଭାବ ଖେଳିଯାଏ। ଅବଶ୍ୟ ଏକାଦିନକେ ମତେ ସବୁ କାମ କରିବାକୁ ପଡ଼ି ନ ଥିଲା। ଏହିପ୍ରକାର କାର୍ଯ୍ୟରେ ଅଭ୍ୟସ୍ତ ହେବା ସଙ୍ଗେ ସଙ୍ଗେ ନୂଆ ନୂଆ କାର୍ଯ୍ୟ କରିବାକୁ ପଡ଼େ। ଆଶ୍ରମରେ ସେତେବେଳେ ପଚିଶି ତିରିଶ ଜଣରୁ ବେଶୀ ଲୋକ ନ ଥାନ୍ତି। ଆଶ୍ରମରେ ବର୍ତ୍ତମାନ ଯେତେ ଘର ଦେଖିବାକୁ ମିଳିବ ସେତେବେଳେ ଏତେ ଘର ନ ଥାଏ। ଆଶ୍ରମର ଯେଉଁ ଘରେ, ସୂତାକଟା ଲୁଗାବୁଣା ଅଫିସ ସବୁ ଅଛି, ସେହି ବଡ଼ ଘରଟି ଛଡ଼ା ଆଉ ଘର ନ ଥାଏ ବୋଲି କୁହାଯାଇ ପାରେ। ଆଶ୍ରମର ବର୍ତ୍ତମାନ

ଆବାଦୀ ଜମି ସବୁ କଣ୍ଟାପୂର୍ଣ୍ଣ ପଡ଼ିଆ ଜମି ଥାଏ। ଏହିସବୁ ଜଙ୍ଗଲ କାଟି ଜମି ଆବାଦ କରିବାକୁ ହୋଇଛି। ବୃକ୍ଷଲତା ରୋପଣ କରାଯାଇଛି। ଘରସବୁ ତୋଳାଯାଇଛି। ଏଥି ମଧ୍ୟରେ ମୋର ପରିଶ୍ରମ ରହିଛି। ମୁଁ ଲଗାଇଥିବା ଗଛ ଆଜି ହୁଏତ ବଡ଼ ଗଛ ହୋଇଛି, କିଏ ହୁଏତ ମଲାଣି। ସେ ଯାହା ହେଉ ଦିନ ପରେ ମୁଁ ଆଶ୍ରମ କାର୍ଯ୍ୟରେ ନିଜକୁ ଭସାଇ ଦେଲି।

ସେତେବେଳେ ଆଶ୍ରମର ନିୟମାନୁସାରେ ସମସ୍ତଙ୍କୁ ସକାଳ ୪ଟା ରେ ଶଯ୍ୟାତ୍ୟାଗ କରିବାକୁ ପଡ଼େ। ୪ଟାରୁ ୫ଟା ପର୍ଯ୍ୟନ୍ତ ଚକିରେ ଗହମ ଚୂରିବା କାର୍ଯ୍ୟ। ୫ଟାରୁ ୬ଟା ପର୍ଯ୍ୟନ୍ତ ସ୍ନାନାଦି ନିତ୍ୟକର୍ମ। ୬ଟାରୁ ୬/୩୦ ସକାଳ ସମବେତ ପ୍ରାର୍ଥନା। ତାରପର ଜଳପାନ କରି ୭ଟା ସମୟକୁ ଆଶ୍ରମ କାର୍ଯ୍ୟପାଇଁ ସମସ୍ତଙ୍କୁ ପ୍ରସ୍ତୁତ ହେବାକୁ ପଡ଼େ। ଯାହାଙ୍କୁ ଯେଉଁ କାମ ଦିଆଯାଏ ସେ ତାହା କରେ ୬ରୁ ୧୦.୩୦ ପର୍ଯ୍ୟନ୍ତ ଆଶ୍ରମ କାର୍ଯ୍ୟ। ୧୧ଟାରେ ସକାଳ ଭୋଜନ ପାଇଁ ଘଣ୍ଟାପଡ଼େ। ଘଣ୍ଟାପଡ଼ିଲେ ସମସ୍ତେ ନିଜ ନିଜର ବାସନ ଧରି ଖାଇବା ସ୍ଥାନରେ ଉପସ୍ଥିତ ହୁଅନ୍ତି। ଖାଇବା ପରେ ବାସନ ମାଜିବା କାର୍ଯ୍ୟ। ଏହି ବାସନ ମାଜିବା ବେଳେ ନାନା କଥାର ଆଲୋଚନା ପଡ଼େ। ଏହାପରେ ପୁଣି ଗୋଟାକରେ କାମକୁ ଯିବାକୁ ହୁଏ। ଗୋଟାକରୁ ଚାରିଟା ପର୍ଯ୍ୟନ୍ତ କାର୍ଯ୍ୟ। ଚାରିଟାରେ ଆଶ୍ରମ କାର୍ଯ୍ୟ ବନ୍ଦ। ୫ଟାରେ ସନ୍ଧ୍ୟା ଭୋଜନ୍। ସନ୍ଧ୍ୟା ୭ଟାରେ ପୁଣି ସମବେତ ପ୍ରାର୍ଥନା। ଏହାପରେ ଆଶ୍ରମର ଦୈନିକ କାର୍ଯ୍ୟ ଶେଷ ହୁଏ। ସମସ୍ତେ ରାତ୍ରି ଆଠଟାରେ ଶୟନ କରିବାର ନିୟମ ଥାଏ। ଏହିପରି ଭାବରେ ସେତେବେଳର ଆଶ୍ରମର ଦୈନିକ କର୍ମର ନିୟମ ବନ୍ଧା ହୋଇଥାଏ। ଏହି ନିୟମ ଅନୁସାରେ ସକାଳ ସାତଟାରୁ ୧୦ଟା ପର୍ଯ୍ୟନ୍ତ ପାଣି ଯୋଗାଇବା କାର୍ଯ୍ୟ ମୋ ଭାଗରେ ପଡ଼େ। ଦୁଇଟା ଟିଣରେ ଭାର କରି ପାଣି ସବୁ ମୁଁ ଯୋଗାଏ। ପ୍ରାୟ ୨୫/୩୦ ହାତ ଗଭୀର କୁଅଁରୁ ପାଣି ଟାଣିବାକୁ ହୁଏ। ପ୍ରାୟ ଶଏ ଭାର ପର୍ଯ୍ୟନ୍ତ ପାଣି ଟାଣିବାକୁ ମତେ ପଡ଼େ। ଉପର ବେଳା ମୁଁ ଲୁଗା ବୁଣା କାମ ଶିଖେ। ସେତେବେଳକୁ କଳ ସୂତାରେ ଆଶ୍ରମରେ ଲୁଗାବୁଣା ହେଉଥାଏ। ସମସ୍ତେ ମିଲ୍‌ଲୁଗା ବ୍ୟବହାର କରୁଥାନ୍ତି। ଖଦଡ଼ ଓ ସୂତାକଟା କଥା କେହି ସ୍ୱପ୍ନରେ ମଧ୍ୟ କଳ୍ପନା କରି ନ ଥାନ୍ତି। ରାତ୍ର ୯ଟା ପର୍ଯ୍ୟନ୍ତ ମୁଁ କିଛି ଲେଖା ପଢ଼ା କରେ। ଭୋର ତିନିଟାରେ ଶଯ୍ୟା ତ୍ୟାଗ କରି ୪ଟା ପୂର୍ବରୁ ସ୍ନାନ ଶୌଚାଦି ନିତ୍ୟକର୍ମ ମୁଁ ଶେଷ କରିଦିଏ। ସକାଳ ୪ଟାରେ ଘଣ୍ଟା ଦେବା କାର୍ଯ୍ୟ ମୋ ଉପରେ ଥାଏ। ୪ଟାରେ ଘଣ୍ଟା ଦେଇ ୫ଟା ପର୍ଯ୍ୟନ୍ତ ମୁଁ ଓ ଆଉ ଜଣେ ଆଶ୍ରମବାସୀ ଗୋଟିଏ ଚକିରେ ଏକାଠି ବସି ଏକଘଣ୍ଟା ଗହମ ଚୂରିବା କାର୍ଯ୍ୟ କରୁଁ। ୫ଟାରୁ ୬ଟା ପର୍ଯ୍ୟନ୍ତ ମୁଁ ଏକାକୀ ନୀରବରେ ବସି ଏକାନ୍ତ ପ୍ରାର୍ଥନା କରେ। ଏହିପରି ଭାବରେ ମୋର ଆଶ୍ରମ ଜୀବନ ଚାଲିଯାଏ। କିନ୍ତୁ ମନରେ

ସ୍ଥିରତା ଆସି ନ ଥାଏ। ଏଣିକି ଜୀବନ କିପରି ଆକାର ଧାରଣ କରିବ, ଜୀବନରେ ଦେଶର ସ୍ୱାଧୀନତା ପାଇଁ କାର୍ଯ୍ୟ କରିବାକୁ ହେଲେ, କିପରି କେଉଁଠାରେ କରିବି ତାହା ଭାବି କିଛି ସ୍ଥିର କରି ପାରୁ ନ ଥାଏ। ତେବେ ସତ୍ୟାଗ୍ରହ ଆଶ୍ରମ ଦେଶରେ ଗୋଟିଏ ବଡ଼ ଅନୁଷ୍ଠାନ। ମହାତ୍ମାଗାନ୍ଧୀ ଏହାର ପ୍ରାଣପ୍ରତିଷ୍ଠାତା। ଏହିପରି ଗୋଟିଏ ଅନୁଷ୍ଠାନରେ ରହିବା ହେଉଛି, ଏକପ୍ରକାର ଦେଶସେବା କରିବା। ଏହିପରି ଗୋଟିଏ ଭାବ ମନରେ ଖେଳୁଥାଏ। ସତ୍ୟାଗ୍ରହ ଆଶ୍ରମରେ ମୁଁ ଆସି ଯୋଗ ଦେଇ ପାରିଛି ଏଥିପାଇଁ ମଧ ବେଳେ ବେଳେ ମନରେ ଟିକିଏ ଗର୍ବ ଓ ଅହଂକାର ଆସେ।

ଆଶ୍ରମକୁ ଆସିଲା ବେଳକୁ ମହାତ୍ମାଜୀଙ୍କ ଦେହ ଭଲ ନ ଥାଏ ବୋଲି ପୂର୍ବରୁ କହିଛି। ମୁଁ ଆଶ୍ରମରେ ଯୋଗ ଦେବାକୁ ଅଳ୍ପ ସମୟ ପରେ ମହାତ୍ମାଜୀ ଜଳବାୟୁ ପରିବର୍ତ୍ତନ କରିବା ପାଇଁ ଆଶ୍ରମଛାଡ଼ି ଅନ୍ୟତ୍ର ଗଲେ। ଆଶ୍ରମ ପରିଚାଳନା ଭାର ମଗନଲାଲ ଗାନ୍ଧିଙ୍କ ଉପରେ ଥାଏ। ମହାତ୍ମାଜୀଙ୍କ ଅନୁପସ୍ଥିତିରେ ବର୍ତ୍ତମାନ ସବୁ ଭାର ତାହାଙ୍କ ଉପରେ। ମଗନଲାଲ ଭାଇ ଆଶ୍ରମର ପରିଚାଳକ। ମଗନଲାଲ ଭାଇ ଗାନ୍ଧିଜୀଙ୍କର ଭାତୃଷ୍ପୁତ୍ର। ଏହି କାରଣରୁ ସମସ୍ତେ ତାହାଙ୍କୁ ଭାଇ ବୋଲି ସମ୍ବୋଧନ କରନ୍ତି, ତାହା ନୁହେଁ। ଗୁଜରାତରେ ସମସ୍ତେ ସମସ୍ତଙ୍କୁ ଭାଇ ବୋଲି ଡାକନ୍ତି। ପୁଅ ବାପକୁ ଭାଇ ବୋଲି ଡାକେ, ବାପ ମଧ ପୁଅକୁ ଭାଇ ବୋଲି ଡାକେ। ଏହି ପ୍ରଥାନୁସାରେ ଆଶ୍ରମରେ ସମସ୍ତେ ସମସ୍ତଙ୍କୁ ଭାଇ ବୋଲି ସଂବୋଧନ କରନ୍ତି। ସେ ଯାହା ହେଉ ଆଶ୍ରମରେ ୩/୪ ମାସ ରହିଲା ପରେ ମୁଁ ଅନେକ କଥା ଜାଣି ପାରିଲି। ଆଶ୍ରମରେ ସମସ୍ତେ ଗୁଜରାତି କିମ୍ବା ହିନ୍ଦୀ ଭାଷାରେ କଥାବାର୍ତ୍ତା ହୁଅନ୍ତି। ମୁଁ ହିନ୍ଦୀ ଜାଣି ନ ଥାଏ। ଗୁଜରାତି ଭାଷା ଅବା ଜାଣିବି କିପରି। ଏଣୁ ସେତେବେଳେ ହିନ୍ଦୀ ପଢ଼ିବା ପାଇଁ ମତେ ଏକ ଘଣ୍ଟା ସମୟ ଦିଆଗଲା। ପ୍ରତ୍ୟହ ୨ଟାରୁ ୩ଟା ପର୍ଯ୍ୟନ୍ତ ମୁଁ କାକା କାଲେଲ୍‌କରଙ୍କ ନିକଟରେ ହିନ୍ଦୀ ଅଭ୍ୟାସ କରେ। ଆଶ୍ରମରେ ଗୋଟିଏ ଶିକ୍ଷାବିଭାଗ ଥାଏ। ପ୍ରଥମେ ଶିକ୍ଷାବିଭାଗରେ କାର୍ଯ୍ୟ କରୁଥିବା ସଭ୍ୟମାନେ ଆଶ୍ରମର ସବୁ ନିୟମ ପାଳୁ ନ ଥିଲେ। କିନ୍ତୁ ମୋ ସମୟକୁ ପୂର୍ବ ନିୟମ ଆଉ ନାହିଁ। ସମସ୍ତେ ଆଶ୍ରମ ନିୟମରେ ବନ୍ଧା। କିନ୍ତୁ ଟିକିଏ ବେଶି ସମୟ ଲେଖାପଢ଼ା କରିବା ପାଇଁ ମୋର ମନ। ପୁଣି ଲୁଗା ବୁଣା କାମ ଭଲ କରି ଶିଖିବା ପାଇଁ ମନରେ ଭାରି ଆଗ୍ରହ ଜାଗ୍ରତ ହୋଇଥାଏ। କିନ୍ତୁ କୌଣସି କାର୍ଯ୍ୟ କରିବା ନ କରିବା ମୋର ଇଚ୍ଛାଧୀନ ନୁହେଁ। ମଗନଲାଲ ଭାଇ ଯେତେବେଳେ ଯାହାକୁ ଯେଉଁ କାର୍ଯ୍ୟ ଦେବେ ସେ ତାହା କରିବାକୁ ବାଧ୍ୟ।

ମଗନଲାଲ ଭାଇ ଦେବତା ନୁହନ୍ତି। ସେ ମନୁଷ୍ୟ। ଆଶ୍ରମର କାର୍ଯ୍ୟ ବାଣ୍ଟ କଲାବେଳେ ନିଜ ପାଇଁ ଟିକିଏ ସମୟ ଓ ସୁବିଧା କରିବା ସ୍ୱାଭାବିକ। କୌଣସି ବିଷୟ ନେଇ ତାହାଙ୍କ ସହିତ ଯୁକ୍ତି ତର୍କ କଲେ ତାହାଙ୍କ ମନରେ ଟିକିଏ ବିରକ୍ତିଭାବ

ସ୍ଥାନ ପାଇବା ମଧ୍ୟ ଏକାବେଳକେ ଅସ୍ୱାଭାବିକ ନୁହେଁ। ଲେଖାପଢ଼ା କରିବା ପାଇଁ ଏବଂ ଲୁଗାବୁଣା ଶିଖିବାପାଇଁ ମୁଁ ଟିକିଏ ସମୟ ସୁବିଧା ଖୋଜେ। ମଗନଲାଲ ଭାଇ ମତେ ସେତକ ଦିଅନ୍ତି ନାହିଁ। ତାହା ନ ଦେବା ମଧ୍ୟ ଯଥାର୍ଥ। କାରଣ କୌଣସି ଅନୁଷ୍ଠାନ ପରିଚାଳନା କରିବାର ଭାର ଯାହା ଉପରେ ଥାଏ ସେ ତାଙ୍କର ଦାୟିତ୍ୱ ହୃଦୟଙ୍ଗମ କରିଥାଏ। ଅନ୍ୟ କେହି ତାହା କଦାପି କରି ନ ପାରେ। ସୁତରାଂ ପଚିଶ ପଚାଶ ଜଣଙ୍କୁ ଧରି ଦେଶରେ ସାଧାରଣ ଗୋଟିଏ ଅନୁଷ୍ଠାନ ଚଳାଇବା ସହଜ ନୁହେଁ। କାରଣ ସାଧାରଣ ଅନୁଷ୍ଠାନରେ କେହି କାହାରି ଭୃତ୍ୟ ନୁହେଁ। ଏଠାରେ ହାକିମ ହୁକୁମାର ଭାବ ନାହିଁ। ସମସ୍ତଙ୍କ ମନ ଧରି, ସମସ୍ତଙ୍କ ମନକୁ ଯୋଗେଇ କାମ କରିବାକୁ ହେବ, କାମ ଅନ୍ୟଠାରୁ ନେବାକୁ ହେବ। ସମସ୍ତେ ଯଦି ନିଜ ନିଜର ସୁବିଧା ଖୋଜନ୍ତି, ଦେଶରେ କୌଣସି Public Institution (ଲୋକ ସାଧାରଣ ଅନୁଷ୍ଠାନ) ଚଳି ନ ପାରେ, ମୋର ସେତେବେଳଙ୍କୁ ଏ ଜ୍ଞାନ ହୋଇ ନ ଥାଏ। ମୁଁ ଉପରୋକ୍ତ କାମ ପାଇଁ ଟିକିଏ ବେଶୀ ସମୟ ଓ ସୁବିଧା ଖୋଜି ବସେ। ମଗନଲାଲ ଭାଇ ତାହା ମତେ ଦିଅନ୍ତି ନାହିଁ। ତେଣୁ ତାହାଙ୍କ ଉପରେ ମୁଁ ମନେ ମନେ ଅସନ୍ତୁଷ୍ଟ ହୁଏ। ଯେଉଁଠାରେ ସେ ନିଜ ପାଇଁ ଟିକିଏ ସୁବିଧା ସୁଯୋଗ ରଖିଥାନ୍ତି ସେତକ ମୁଁ ସମାଲୋଚନା କରେ। ମତେ ଯେଉଁ କାମ ଦିଆଯାଏ, ସେହି କାମଟିକୁ ପୂରଣ କରି ଦେଇ ସମୟ ବଞ୍ଚିଲେ ମୁଁ ବସି ପଢ଼ା ଶୁଣା କରେ। ଏହିଠାରେ ମଗନଲାଲ ଭାଇ ମୋର ସମାଲୋଚନା କରନ୍ତି। ସେ କହନ୍ତି, ତିନି ଘଣ୍ଟା କାମକୁ ଦୁଇଘଣ୍ଟାରେ ସାରି ଦେଇ ଘଣ୍ଟାଏ ବଞ୍ଚାଇଲେ ସେ ଘଣ୍ଟାକ ସମୟ ମୁଁ ମୋର ଇଚ୍ଛାନୁସାରେ ଖଟାଇ ନ ପାରେ। କାରଣ, ଆଶ୍ରମର ଆଦର୍ଶ ଓ ନିୟମ ଅନୁସାରେ ଏପରି କରିବା ଅର୍ଥ ଚୋରୀ କରିବା। ଆଶ୍ରମ କାର୍ଯ୍ୟ କରିବା ପାଇଁ ଆମ୍ଭେମାନେ ଆଶ୍ରମରେ ଯୋଗ ଦେଇଛୁ। ଯେ ଯେତେ କାର୍ଯ୍ୟ କରିପାରିଲା ସେ ସେତିକି ପରିମାଣରେ ଆଦର୍ଶ ଅନୁକୂଳ କାର୍ଯ୍ୟ କଲା। ତିନିଘଣ୍ଟା କାମକୁ ମୁଁ ଯଦି ଦୁଇଘଣ୍ଟାରେ ଶେଷ କଲି, ତାହା ହେଲେ ଘଣ୍ଟାଏ ସମୟ ଆଶ୍ରମର ଲାଭ ହେଲା। ସେହିଘଣ୍ଟାକ ସମୟ ଆଶ୍ରମର ଆଉ ଗୋଟାଏ କାର୍ଯ୍ୟରେ ଦେବା ଉଚିତ। ତାହା ନ କରି, ଆଶ୍ରମର କାର୍ଯ୍ୟ କରିବା ପାଇଁ ଦିଆଯାଇଥିବା ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ, ସମୟ ବଞ୍ଚିଲା ବୋଲି ତାହା ବ୍ୟକ୍ତିଗତ କାର୍ଯ୍ୟରେ ଖଟାଇବା କଦାପି ଉଚିତ ନୁହେଁ। ଏହି ଭାବରେ ମଗନଲାଲ ଭାଇ ବୋଧହୁଏ କହନ୍ତି। ଏହିପରି ଭାବ ମୋର ହୃଦୟରେ ସ୍ଥାନ ପାଇ ନ ଥାଏ। ମୁଁ ନିଜେ ଗାନ୍ଧି ସେବାଶ୍ରମ ଅନୁଷ୍ଠାନ ସ୍ଥାପନ କରି ତାହାର ସମସ୍ତ ପରିଚାଳନା ଭାର ଗ୍ରହଣ କରିଥିବାରୁ ଆଜି ଏହାର ଅର୍ଥ ହୃଦୟଙ୍ଗମ କରି ପାରୁଛି। ସେତେବେଳେ ମଗନଲାଲ ଭାଇଙ୍କ ସହିତ ଝଗଡ଼ା କରୁଥିବା କଥା ମନେ କରି ଦୁଃଖିତ ହେଉଛି।

ସେ ଯାହା ହେଉ, ସକାଳେ ପାଣି ଯୋଗାଇବା କାର୍ଯ୍ୟଟି ତିନିଘଣ୍ଟାର କାର୍ଯ୍ୟ। ପ୍ରଥମେ ଦୁଇଜଣ ଏହି କାର୍ଯ୍ୟଟି କରୁଥିଲୁ। ଏହାକୁ ଦୁଇଘଣ୍ଟାରେ ସାରିଦେବାରୁ ମଗନଲାଲ ଭାଇ ପରେ ମତେ ଏକା କରିବାକୁ ଏହି କାର୍ଯ୍ୟ ଦେଇଥିଲେ। ଏକା ମଧ ଦୁଇଘଣ୍ଟାରେ ସାରି ଦିଏ। ଏହା ଦେଖି ପାଣି ଯୋଗାଇବା କାମକୁ ସେ ବଢ଼ାଇ ଦେଲେ। ତାହା ମଧ ମୁଁ ଦୁଇଘଣ୍ଟା ମଧରେ ସାରି ଦେଇ ଅବଶିଷ୍ଟ ଘଣ୍ଟାକ ପଢ଼ାଶୁଣା କରେ। କେଉଁଦିନ ଘଣ୍ଟାଏ କେଉଁଦିନ ଅଧଘଣ୍ଟାଏ ମିଳେ। ଏତକ ମଧ ମଗନଲାଲ ଭାଇଙ୍କୁ ଭଲ ଲାଗେ ନାହିଁ। ସେ କହନ୍ତି, କାମ ସରିଗଲେ ଯଦି ଛୁଟି ଘଣ୍ଟା ବାଜିବାକୁ ବାକି ଥାଏ, ତେବେ, ଅନ୍ୟ କିଛି କାର୍ଯ୍ୟ ମାଗିନେବା ଦରକାର। ମୁଁ ଏହା କରେ ନାହିଁ। ମୁଁ ବିଚାରେ, ଏପରି କହିବା ମଗନଲାଲ ଭାଇଙ୍କ ଅନ୍ୟାୟ। ଅନ୍ୟାୟ ବୋଲି ମୋର ମନରେ ଧାରଣା ଜନ୍ମିଗଲା ପରେ, ମୁଁ ଆଉ କାହାରି କଥା ଶୁଣେ ନାହିଁ। ଦରକାର ହେଲେ ଆଶ୍ରମରୁ ପଳେଇ ବାହାରିଯିବି କିନ୍ତୁ ମୁଁ କାମ ସାରି ଦେଇ ସମୟ ବଳିଲେ ନିଶ୍ଚୟ ବସି ପଢ଼ିବି। ଆଉ କିଛି କରିବି ନାହିଁ। ମଗନଲାଲ ଭାଇଙ୍କଠାରୁ ଅଧିକା କାମ ମାଗିବାକୁ ଯିବି ନାହିଁ। ଦେଲେ ମଧ କରିବି ନାହିଁ। ଏହିପରି ଭାବରେ ମଗନଲାଲ ଭାଇଙ୍କ ସହିତ ମୋର ଝଗଡ଼ା ହେଲା। ଶେଷରେ ସେ ଦିନେ ମତେ ଆଶ୍ରମରୁ ବାହାରି ଯିବା ପାଇଁ ଆଦେଶ ଦେଲେ। କିନ୍ତୁ ମୁଁ ଆଶ୍ରମ ନ ଛାଡ଼ି ସତ୍ୟାଗ୍ରହ କଲି।

ମୁଁ କହିଲି, ଆଶ୍ରମ ଛାଡ଼ିବା ଅର୍ଥ ଆଶ୍ରମରୁ କୌଣସି ଜିନିଷ ଗ୍ରହଣ ନ କରିବା। ଆଶ୍ରମ ଭିତରେ ନ ରହିବା। କିନ୍ତୁ ଆଶ୍ରମ ପାଇଁ ମୁଁ ଜୀବନ ଦେବାକୁ ପ୍ରସ୍ତୁତ। ସୁତରାଂ ଆଶ୍ରମ କାର୍ଯ୍ୟ ମୁଁ କରିବି। ଆଶ୍ରମ ହତା ବାହାରେ ଯାଇ ରହିବି। ଆଶ୍ରମରୁ କିଛି ଖାଦ୍ୟ ପାନୀୟ ଗ୍ରହଣ କରିବି ନାହିଁ। ଏହା କହି ମୁଁ ଆଶ୍ରମର କାର୍ଯ୍ୟ କଲି, ଆଶ୍ରମ ବାହାରେ ଯାଇ ଗୋଟିଏ ଗଛ ତଳେ ଉପବାସରେ ରହିଲି। ଏହାଦ୍ୱାରା ଆଶ୍ରମରେ ଗୋଟିଏ ଚହଳ ପଡ଼ିଗଲା। ଏ ସଂବାଦ ମହାତ୍ମାଗାନ୍ଧୀଙ୍କ ନିକଟକୁ ଗଲା।

ଇମାମ୍ ସାହେବ ନାମରେ ଜଣେ ମୁସଲମାନ ଭଦ୍ରବ୍ୟକ୍ତି ସପରିବାରରେ ଆଶ୍ରମରେ ରହିଥାନ୍ତି। ଦକ୍ଷିଣ ଆଫ୍ରିକାରେ ସେ ଜଣେ ବଡ଼ ଧନୀ ବ୍ୟବସାୟୀ ଥିଲେ। ଜଣେ ଡଚ୍ ମହିଳାକୁ ବିବାହ କରିଛନ୍ତି। ଦକ୍ଷିଣ ଆଫ୍ରିକାରୁ ଭାରତକୁ ଫେରିଲା ବେଳେ ଇମାମ୍ ସାହେବ ତାହାଙ୍କ ସଙ୍ଗରେ ଏ ଦେଶକୁ ଆସି, ଆଶ୍ରମର ଆଜୀବନ ସଭ୍ୟ ରୂପେ ଅଛନ୍ତି। ତାହାଙ୍କ ସହିତ ମୋର ବେଶ୍ ଘନିଷ୍ଠତା ଜନ୍ମିଥାଏ। ସେ ଓ ତାହାଙ୍କ ପରିବାରର ସମସ୍ତେ ମତେ ବଡ଼ ସ୍ନେହ କରୁଥାନ୍ତି। ଏହି ଲଢ଼ାଇରେ ସେମାନେ ସଂପୂର୍ଣ୍ଣ ମୋତେ ସାହାଯ୍ୟ କରୁଥାନ୍ତି। ତାହାଙ୍କ ପରାମର୍ଶରେ ମୁଁ ଆଶ୍ରମ ଛାଡ଼ି ନ ଆସି ସତ୍ୟାଗ୍ରହ କରିଛି ବୋଲି କହିପାରେ। ଅନ୍ୟାନ୍ୟ ଯେଉଁମାନେ

ମଗନଲାଲ ଭାଇଙ୍କ କଡ଼ା ନିୟମ ଜାରୀରେ ଅସନ୍ତୁଷ୍ଟ ସେମାନେ କେହି କିଛି ତାଙ୍କୁ କହନ୍ତି ନାହିଁ। ଏଣେ ମୋ ପ୍ରତି ଭିତରେ ସହାନୁଭୂତି ଦେଖାଉଥାନ୍ତି। ବିନୋବାଜୀଙ୍କ ସହିତ ମୁଁ ଗୋଟିଏ ଘରେ ରହିଥାଏ। ବିନୋବାଜୀ ଜଣେ ମହାରାଷ୍ଟ୍ରୀୟ ଯୁବକ। ଆଶ୍ରମରେ ତାଙ୍କର ଖାତିରୀ ଅଛି। ଆଜି ତାଙ୍କରି ଲାଗି ମହାତ୍ମାଜୀ ୱାର୍ଦ୍ଧାରେ ଆସି ରହିଛନ୍ତି। ସେତେବେଳକୁ ୱାର୍ଦ୍ଧାରେ ସତ୍ୟାଗ୍ରହ ଆଶ୍ରମ ସ୍ଥାପନ ହୋଇ ନାହିଁ। ତାଙ୍କର ମୋର ମନ ମିଳୁଥାଏ। ଅନେକ ସମୟରେ ତାଙ୍କ ମୋ ମଧ୍ୟରେ ଦେଶ ଓ ଧର୍ମ ବିଷୟ ନେଇ ବହୁତ ଚର୍ଚ୍ଚା ପଡ଼େ। ସେ ମତେ ବାଳକ ଆଖ୍ୟା ଦେଇଥାନ୍ତି। ଅତି ସ୍ନେହରେ ଆଶ୍ରମରେ ସମସ୍ତେ ମତେ ବେଳେ ବେଳେ ବାଳକ ଗୋବିନ୍ଦ ବାବୁ ବୋଲି ଡାକନ୍ତି। ବିନୋବାଜୀଙ୍କର ମୋ ସହିତ ଯେପରି ମନର ମେଳଥାଏ, ମଗନଲାଲ ଭାଇଙ୍କ ସହିତ ତାହାଠାରୁ ତାଙ୍କର ଅଧିକ ଥାଏ। ତାଙ୍କର ଇଚ୍ଛା ନୁହେଁ ଏପରି ଭାବରେ ମୁଁ ଆଶ୍ରମରୁ ଚାଲିଯିବି। ସୁତରାଂ ଉପସ୍ଥିତ କ୍ଷେତ୍ରରେ ସେ ମଧ୍ୟସ୍ଥ ହୋଇ ଆମ ଦୁହିଁଙ୍କୁ ମିଳାମିଶା କରାଇ ଦେଲେ। କଥା ହେଲା ମହାତ୍ମାଜୀ ଆଶ୍ରମକୁ ଫେରିବା ପର୍ଯ୍ୟନ୍ତ ମୁଁ ଯେପରି ଥିଲି ସେପରି ରହିବି। ସେ ଆସିଲେ ତାହାଙ୍କ ଆଗରେ ସମସ୍ତ କଥା ପଡ଼ିବ। ସେ ଯାହା ନିଷ୍ପତ୍ତି କରିବେ।

ଏହି ଘଟଣାର ଅଳ୍ପଦିନ ପରେ ମହାତ୍ମାଜୀ ଆଶ୍ରମକୁ ଫେରିଲେ। ସମସ୍ତ ଆଶ୍ରମବାସୀ ଓ ଶିକ୍ଷା ବିଭାଗର ସମସ୍ତ କର୍ମୀଙ୍କୁ ଡକାଇ ସେ ଆଶ୍ରମ ବିଷୟରେ ଅନେକ କଥା ପଚାରି ବୁଝିଲେ। ମଗନଲାଲ ଭାଇ କଠୋର ଭାବରେ ନିୟମକୁ ଖଟାଉ ଥିବାରୁ ଆଉ ଯାହା ମନରେ ଯାହା ଥିଲା ତା ସମସ୍ତେ କହିଲେ। ମହାତ୍ମାଜୀ ମଗନଲାଲ ଭାଇଙ୍କ କଥା ଶୁଣିଲେ। ଯାହା ସବୁ ଯେପରି ଘଟିଥିଲା ସେ ସମସ୍ତ ମୋ ଠାରୁ ମଧ ଶୁଣିଲେ। ସବୁ ଶୁଣି ମହାତ୍ମାଜୀ କହିଲେ, ମଗନଲାଲ ଭାଇ ଆଶ୍ରମର ପରିଚାଳକ। ଆଶ୍ରମର ସମସ୍ତ ଭାର ତାହାଙ୍କ ଉପରେ। ଯେଉଁମାନେ ତାହାଙ୍କ ବ୍ୟବହାରରେ ସନ୍ତୁଷ୍ଟ ନୁହଁନ୍ତି କିମ୍ବା ତାଙ୍କୁ ସନ୍ତୁଷ୍ଟ କରି ନ ପାରିବେ, ସେମାନେ ଆଶ୍ରମ ଛାଡ଼ି ଚାଲିଯିବା ଦରକାର। ସ୍ୱତନ୍ତ୍ର ଭାବରେ ମତେ ଆଉ କିଛିଦିନ ଆଶ୍ରମରେ ରହି ମଗନଲାଲ ଭାଇଙ୍କୁ ସନ୍ତୁଷ୍ଟ କରିବା ଭଳି କାର୍ଯ୍ୟ କରିବା ପାଇଁ ଚେଷ୍ଟା କରିବା ପାଇଁ ଆଦେଶ ଦେଲେ। ମହାତ୍ମାଜୀଙ୍କ ଏହିପରି ବିଚାରରେ ଇମାମ୍ ସାହେବ ବିଶେଷ ଦୁଃଖିତ ହେଲେ। ଆଶ୍ରମରୁ ଖାଇବା ବନ୍ଦ କରିଦେଇ ସେ ଉପବାସ ରହିଲେ। ସେ ଜଣେ ଆଶ୍ରମବାସୀ। ମଗନଲାଲ ଭାଇଙ୍କୁ ସନ୍ତୁଷ୍ଟ କରି ନ ପାରିଲେ କେହି ଆଶ୍ରମରେ ରହିପାରିବେ ନାହିଁ। ଏଥିରେ ସେ ବଡ଼ ମର୍ମାହତ ହେଲେ। କିନ୍ତୁ ମହାତ୍ମାଜୀ ଇମାମ୍ ସାହେବଙ୍କୁ ଡାକି କଣ ବୁଝାଇଲେ ମୁଁ ଜାଣେ ନାହିଁ। ବୋଧ ହୁଏ ଏହି ନିୟମ ଇମାମ୍ ସାହେବଙ୍କ ପ୍ରତି ପ୍ରଯୁଜ୍ୟ ନୁହେଁ, ଏହି ମର୍ମରେ ମହାତ୍ମାଜୀ କିଛି କହିଥିଲେ। କାରଣ ଇମାମ୍ ସାହେବ ଆଶ୍ରମବାସୀ

ହେଲେ ମଧ୍ୟ ସେ ଜଣେ ମହାତ୍ମାଜୀଙ୍କର ପୁରୁଣା ସାଥି ଓ ସହକର୍ମୀ। ସେ ବୃଦ୍ଧ ତାଙ୍କ ପ୍ରତି ଏ ନିୟମ ଖାଟି ନ ପାରେ। ଖାଟିବା ଉଚିତ ନୁହେଁ। ସେ ଯାହା ହେଉ ଇମାମ୍ ସାହେବ ପୁଣି ଆଦେଶର ଅଧୀନ ନୁହନ୍ତି ବୋଲି ମୁଁ ବୁଝିଲି। ମୁଁ ମଧ୍ୟ ରହିଲି। ପୁଣି ମୁଁ ଆଶ୍ରମ କାର୍ଯ୍ୟରେ ନିଜକୁ ଭୁଲିଗଲି। ଏଣିକି କାମ ଶେଷ କରି ସମୟ ଥିଲେ ମୁଁ ମନ ଇଚ୍ଛା ଯାହା କରେ ସେଥିପାଇଁ ମଗନଲାଲ ଭାଇ ମତେ ଆଉ କିଛି କହନ୍ତି ନାହିଁ। ସେ ଯାହା କାର୍ଯ୍ୟ ମତେ ଦିଅନ୍ତି ତାହା ସେ ସନ୍ତୁଷ୍ଟ ହେଲାଭଳି ମୁଁ କରିଦିଏ। ସମୟ ବଳିଲେ ମୁଁ କିଛି ଲେଖା ପଢ଼ା କରେ।

## ଦ୍ୱିତୀୟ ପରିଚ୍ଛେଦ

### ରଓଲାଟ୍ ବିଲ୍ ସତ୍ୟାଗ୍ରହ

ଭାରତ ସଚିବ ମଣ୍ଟାଗୁ ସାହେବ ଭାରତ ଜନସାଧାରଣଙ୍କ ମତାମତ ଜାଣିବା ପାଇଁ ଏ ଦେଶକୁ ବୁଲିବାକୁ ଆସିଥିଲେ। ସେ ଭାରତରେ ଥିବା ସମୟରେ ଭାରତ ବିପ୍ଳବବାଦୀମାନଙ୍କର ପ୍ରସାର, ପ୍ରତିଷ୍ଠା ଓ ପ୍ରଭାବ କିପରି ତାହା ଜାଣିବାପାଇଁ ଗୋଟିଏ ତଦନ୍ତ କମିଟି ବସାଇଲେ। ଏହି କମିଟି, ବିପ୍ଳବବାଦ ଦଳର ସୃଷ୍ଟି ଓ ପୁଷ୍ଟି କିପରି, ଏହାର ପ୍ରଭାବ ଓ ପ୍ରସାର କେତେଦୂର ପ୍ରତିଷ୍ଠିତ, ଇତ୍ୟାଦି ବିଷୟ ଅନୁସନ୍ଧାନ କରିବ ଏବଂ ଏହି ବିପ୍ଳବବାଦକୁ ଏ ଦେଶରୁ ଦୂର କରିବା ପାଇଁ କି ପ୍ରକାର ଆଇନ୍ ବାନ୍ଧିବା ଆବଶ୍ୟକ, ସେ ବିଷୟରେ ପରାମର୍ଶ ଦେବ। ଏହି ଉଦ୍ଦେଶ୍ୟରେ ଗୋଟିଏ କମିଟି ବସିଲା। ରଓଲାଟ୍ ସାହେବ ନାମରେ ବିଲାତର ଜନୈକ ଆଇନଜ୍ଞ ବ୍ୟକ୍ତି ଏହାର-ସଭାପତି ରୂପେ ନିଯୁକ୍ତ ହେଲେ। ଏହାଙ୍କ ନାମାନୁସାରେ ଏହି କମିଟିର ନାମ ହେଲା ରଓଲାଟ୍ କମିଟି। ବିପ୍ଳବବାଦ ଦମନ କରିବା ପାଇଁ ଏହାଙ୍କ ରିପୋଟରେ ଯେଉଁ ବ୍ୟବସ୍ଥା ଦିଆଗଲା ସେହିସବୁ ଗୋଟିଏ ବିଲ୍ (ଆଇନ) ଆକାରରେ ବଡ଼ଲାଟ ତାଙ୍କ ସଭାରେ ପକାଇ ଆଇନରେ ପରିଣତ କରାଇ ନେବାରୁ ତାହା ରଓଲାଟ୍ ବିଲ୍ ନାମରେ ପରିଚିତ। ରଓଲାଟ୍ ଆଇନ୍‌ରେ ଯେଉଁସବୁ ବ୍ୟବସ୍ଥା ଥିଲା ତହିଁରୁ ଅଧିକ କଡ଼ା ଆଇନ ବର୍ତ୍ତମାନ ଆଡ଼ିନାନ୍ସ ଆକାରରେ ଦେଶରେ ଜାରୀ ହୋଇଛି। ତଥାପି ଭାରତର ସେତେବେଳର ରାଜନୈତିକ ପରିସ୍ଥିତିରେ ଏପରି ଗୋଟିଏ ଆଇନକୁ ନତମସ୍ତକରେ ମାନି ନେବା ଉଚିତ ନୁହେଁ ବୋଲି ଅନେକଙ୍କର ମତ।

ଯୁଦ୍ଧ ସମୟରେ ନାନା ପ୍ରକାର କଥା କହି ସରକାର ଏ ଦେଶରୁ ଧନଜନ ସାହାଯ୍ୟ ନେଇଛନ୍ତି। ଯୁଦ୍ଧ ସମୟରେ ଶତ୍ରୁର ଷଡ଼ଯନ୍ତ୍ରରୁ ଏ ଦେଶକୁ ରକ୍ଷା କରିବା ପାଇଁ ଭାରତ ରକ୍ଷା ଆଇନ୍ ଜାରୀ ହୋଇଥିଲା। ଯୁଦ୍ଧ ସମୟରେ ଭାରତ ରକ୍ଷା

ଆଇନ୍ ପରି ଗୋଟିଏ ନିଷ୍ଠୁର ଆଇନ୍ ଜାରୀ କରିବାରେ ମଧ୍ୟ ଏ ଦେଶରେ କାହାରି କାହାରି ଆପତ୍ତି ନ ଉଠିଛି ତାହା ନୁହେଁ। କିନ୍ତୁ ଯୁଦ୍ଧ ଅବସାନର ଛ ମାସ ପରେ ପୁଣି ରଓଲାଟ୍ ଆଇନ୍ ପରି ଗୋଟିଏ କଠୋର ଆଇନ୍ ଜାରୀ କରିବା ପାଇଁ ବଡ଼ଲାଟ ଚେମସ୍ ଫୋର୍ଡ଼ଙ୍କୁ ଉଦ୍ୟତ ହେବାର ଦେଖି ଏ ଦେଶର ସେତେବେଳର ରାଜନୈତିକ ନେତାମାନଙ୍କ ମନରେ ନାନା ପ୍ରକାର ସନ୍ଦେହ ଜାତ ହୋଇଥିଲା। ଯୁଦ୍ଧ ପରେ ଏ ଦେଶକୁ ସ୍ୱାୟତ୍ତଶାସନ ଦେବା ପାଇଁ ଇଂରେଜ ସରକାର ପ୍ରତିଶ୍ରୁତି ଦାନ କରିଥିଲେ। ସ୍ୱାୟତ୍ତଶାସନର ଯେଉଁ ଖସଡ଼ା ପ୍ରସ୍ତୁତ ହେଉଛି, ତାହା କିପରି ଆକାର ଧାରଣ କରିବ, ଏହି ରଓଲାଟ୍ ଆଇନ୍ ତହିଁର ସୂଚନା ବୋଲି ଜନସାଧାରଣଙ୍କ ମନରେ ଏକ ଅଦ୍ଭୁତ ଧାରଣା ଜାତ ହେଲା। ଏଥିପାଇଁ ଭାରତରେ ସର୍ବତ୍ର ରଓଲାଟ୍ ଆଇନ ବିରୁଦ୍ଧରେ ତୁମୁଳ ପ୍ରତିବାଦର ସୂତ୍ରପାତ ହେଲା। ଭାରତର ପ୍ରତ୍ୟେକ ପ୍ରଦେଶରେ ବଡ଼ ବଡ଼ ସଭା ବସି ଏହି ଆଇନ ଜାରୀ ନ କରିବା ପାଇଁ ବଡ଼ଲାଟ ସାହେବଙ୍କୁ ଅନୁରୋଧ କରାଗଲା।

ଏହିପରି ଭାବରେ ରଓଲାଟ ଆଇନ ବିରୁଦ୍ଧରେ ତୁମୁଳ ଆନ୍ଦୋଳନ କରାଗଲେ ମଧ୍ୟ ବଡ଼ଲାଟ ଚେମସ୍‌ଫୋର୍ଡ଼ ଭାରତର ଲୋକମତ ପ୍ରତି ଭ୍ରୂକ୍ଷେପ ନ କରି ରଓଲାଟ୍ ଆଇନକୁ ବଡ଼ଲାଟ ସଭାରେ ଆଲୋଚନା କରାଇ ଜାରୀ କରିବାକୁ ଦୃଢ଼ସଂକଳ୍ପ କଲାପରି ଜଣାଗଲା। ସେତେବେଳେ ଏ ଦେଶରେ ମର୍ଲେମିଣ୍ଟୋ ଶାସନ ସଂସ୍କାର ପ୍ରଚଳନ ଥାଏ। ଲାଟ ବଡ଼ଲାଟ ସଭାର ସଭ୍ୟମାନେ ସରକାରଙ୍କ କାର୍ଯ୍ୟର ସମାଲୋଚନା କରିବାର କେବଳ ମାତ୍ର ଅଧିକାର ଥାଏ। ଭୋଟଦ୍ୱାରା କୌଣସି ବିଷୟ ସ୍ଥିର ହୁଏ ନାହିଁ। ବଡ଼ଲାଟ ସାହେବ ସଭ୍ୟମାନଙ୍କ ସମାଲୋଚନା ଶୁଣି ନିଜର ରାୟରେ ସବୁ ବିଷୟ ସିଦ୍ଧାନ୍ତ କରନ୍ତି। ରଓଲାଟ୍ ବିଲ୍ ତାହାହିଁ ହେଉଛି। ଏହିପରି ସମୟରେ ମହାତ୍ମା ଗାନ୍ଧି ବଡ଼ଲାଟ ସାହେବଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖିଲେ। ସେ ସେହି ପତ୍ରରେ ରଓଲାଟ୍ ଆଇନକୁ ଜାରୀ ନ କରିବା ପାଇଁ ବଡ଼ଲାଟ ସାହେବଙ୍କୁ ଅନୁରୋଧ କଲେ। ଭାରତର ପ୍ରବଳ ଜନମତ ବିରୁଦ୍ଧରେ ବଡ଼ଲାଟ ସାହେବ ଯଦି ରଓଲାଟ୍ ବିଲକୁ ଜାରୀ କରନ୍ତି, ତେବେ ଇଂରାଜୀ ସରକାର ଏ ଦେଶକୁ ଶାସନ କରିବାକୁ ଉପଯୁକ୍ତ ନୁହନ୍ତି। ଭାରତର ପ୍ରବଳ ଲୋକମତ ପ୍ରତି ଅବମାନନା ଦେଖାଇଲେ, ଇଂରାଜୀ ସରକାରଙ୍କୁ ଏ ଦେଶରୁ ବିତାଡ଼ିତ କରିବା ଭାରତବାସୀଙ୍କର ଏକମାତ୍ର କର୍ତ୍ତବ୍ୟ ହୋଇ ଉଠିବ। ମହାତ୍ମା ଗାନ୍ଧି ନିଜେ ସରକାରଙ୍କ ଆଇନ ବିରୁଦ୍ଧରେ ସତ୍ୟାଗ୍ରହ ସଂଗ୍ରାମର ସୂତ୍ରପାତ କରିବେ। ଏହିପରି ମର୍ମରେ ଗାନ୍ଧିଜୀ ବଡ଼ଲାଟ ଚେମସ୍‌ଫୋର୍ଡ଼ଙ୍କ ନିକଟକୁ ଖଣ୍ଡିଏ ପତ୍ର ଦେଲେ।

ବଡ଼ଲାଟ ସାହେବ ମହାତ୍ମାଗାନ୍ଧୀଙ୍କ ଠାରୁ ଏହିପରି ମର୍ମରେ ଖଣ୍ଡିଏ ପତ୍ର ପାଇ ଟିକିଏ ଚମକି ପଡ଼ିଲା ପରି ବୋଧହେଲା। ସେ ହଠାତ୍ ମହାତ୍ମାଜୀଙ୍କୁ ଦିଲ୍ଲୀଠାରୁ

ଡକାଇ ନେଲେ। ବଡ଼ଲାଟଙ୍କ ଠାରୁ ଆହ୍ୱାନ ପାଇ ମହାତ୍ମାଜୀ ଯାତ୍ରା କଲେ। ବଡ଼ଲାଟଙ୍କ ସହିତ ମହାତ୍ମାଜୀଙ୍କର ଭେଟ ହୋଇ କଥୋପକଥନ ହେଲା। କଥୋପକଥନରେ ବଡ଼ଲାଟ ଚେମସ୍‌ଫୋର୍ଡ଼ ସାହେବ ମହାତ୍ମାଜୀଙ୍କ ବିନୀତ ଅନୁରୋଧ ପ୍ରତି କର୍ଣ୍ଣପାତ କଲେ ନାହିଁ। ନିରାଶ ହୋଇ ଗାନ୍ଧିଜୀ ଦିଲ୍ଲୀରୁ ସାବରମତି ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କଲେ। ସାବରମତି ଆଶ୍ରମରେ ଉପସ୍ଥିତ ହୋଇ ମହାତ୍ମାଜୀ ରଓଲାଟ୍ ବିଲ୍ ବିରୁଦ୍ଧରେ ସବିନୟ ଆଇନ ଭଙ୍ଗ କରିବା ପାଇଁ ଗୋଟିଏ ଘୋଷଣା ପତ୍ର ଛପାଇ ଦେଶବାସୀଙ୍କୁ ଆହ୍ୱାନ କଲେ। ଇଂରେଜୀ ସରକାରଙ୍କ ଆଇନ ଅମାନ୍ୟ କରିବା ପାଇଁ ପ୍ରକାଶ୍ୟରେ ଦେଶବାସୀଙ୍କୁ ଆହ୍ୱାନ କରିବା ଭାରତର ସେତେବେଳର ରାଜନୈତିକ ପରିସ୍ଥିତିରେ ଏକ ଅଭିନବ ଘଟଣା। ଭାରତର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ଏହି ସଂବାଦ ବିଜୁଳି ପରି ବ୍ୟାପିଗଲା। ସମସ୍ତ ଭାରତରେ ଏକ ଅପୂର୍ବ ଅଶ୍ରୁତପୂର୍ବ ଜୀବନର ଢେଉ ଖେଳିଗଲା। ଭାରତର ଅଶିକ୍ଷିତ ପଲ୍ଲିବାସୀ ମନେ କଲେ, ଜଣେ କେହି ମହାପୁରୁଷ ଇଂରେଜୀ ସରକାରଙ୍କ ଆଇନ ଭାଙ୍ଗି ଦେବାପାଇଁ ଆହ୍ୱାନ କରୁଅଛନ୍ତି। ଏଭଳି ମହାପୁରୁଷ କିଏ ଓ କିପରି, ତାହାଙ୍କୁ ଦେଖିବା ପାଇଁ ଓ ତାହାଙ୍କ କଥା ଶୁଣିବା ପାଇଁ ଭାରତର ଲୋକ ସାଧାରଣ ବ୍ୟଗ୍ର ହୋଇ ଉଠିଲେ। ବୋଧହେଲା, ନିଦ୍ରିତ ଭାରତ ସତେ ଯେପରି ଜାଗି ଉଠୁଛି।

'ୟଙ୍ଗ ଇଣ୍ଡିଆ' ଓ 'ନବ ଜୀବନ' କାଗଜର ଜନ୍ମ ସେତେବେଳକୁ ହୋଇନାହିଁ। କୌଣସି ପତ୍ରପତ୍ରିକା ଛପାଇ ପରିଚାଳନା କରିବାର ଆବଶ୍ୟକତା ଗାନ୍ଧିଜୀ ଅନୁଭବ କରିନାହାନ୍ତି। ସୁତରାଂ ମହାତ୍ମାଜୀଙ୍କ ଏହି ସମୟରେ ଯାହା କିଛି ଲେଖା ପ୍ରକାଶ ପାଇଛି, ସବୁ ଦେଶର ସଂବାଦପତ୍ର ସାହାଯ୍ୟରେ। ମହାତ୍ମାଜୀଙ୍କ ଘୋଷଣା ପତ୍ର ପାଠ କରି ବିଭିନ୍ନ ପ୍ରଦେଶର ଶତ ଶତ ଲୋକ ଆଇନ ଭଙ୍ଗ ସତ୍ୟାଗ୍ରହରେ ଯୋଗ ଦେବା ପାଇଁ ନାମ ପ୍ରକାଶ କଲେ। କଲିକତାରେ ସେତେବେଳକୁ ବାରିଷ୍ଟର ଚିତରଞ୍ଜନ ଦାସ ମଧ ରଓଲାଟ୍ ବିଲ୍ ସତ୍ୟାଗ୍ରହରେ ନାମ ଲେଖାଇଥିଲେ। ବମ୍ବେଇରେ 'ବମ୍ବେ କ୍ରନିକ୍ଲ'ର ସଂପାଦକ, ବି.ଜି. ହାର୍ଣ୍ଣିମାନ ସାହେବ ଯୋଗ ଦେଲେ। ବମ୍ବେଇ କ୍ରନିକ୍ଲ କାଗଜ ରଓଲାଟ୍ ବିଲ୍ ବିରୁଦ୍ଧରେ ସତ୍ୟାଗ୍ରହ ଆନ୍ଦୋଳନର ମୁଖ୍ୟ ପତ୍ର ହୋଇଥିଲା ବୋଲି କୁହାଯାଇପାରେ। ଏହିପରି ଭାବରେ ମହାତ୍ମା ଗାନ୍ଧିଙ୍କ ପ୍ରେରଣାରେ ରଓଲାଟ୍ ବିଲ୍ ବିରୁଦ୍ଧରେ ଭାରତର ଜନଶକ୍ତି ସଂଗଠିତ ହୋଇଉଠିଥିଲା।

ବଡ଼ଲାଟ ଚେମସ୍‌ଫୋର୍ଡ଼ ସାହେବ ଏହି ସବୁ ଦେଖି ଶୁଣି ମଧ ରଓଲାଟ୍ ବିଲ୍‌ର ଆଲୋଚନା ତାଙ୍କ ସଭାରେ କରାଇଲେ। ବଡ଼ଲାଟ ସଭାର ପ୍ରତ୍ୟେକ ସଭ୍ୟ ଏହା ବିରୁଦ୍ଧରେ ତୀବ୍ର ପ୍ରତିବାଦ କଲେ। ୧୯୧୯ ମସିହା ମାର୍ଚ୍ଚ ତା ୨୪ ତାରିଖ ଦିନ ବଡ଼ଲାଟ ସଭାରେ ରଓଲାଟ୍ ବିଲ୍ ଆଲୋଚିତ ହୋଇ ଆଇନରେ ପରିଣତ ହେଲା। ଦିନ ଶେଷ ହୋଇ ରାତ୍ର ବାର ବାଜିଲେ ମଧ ସେ ଦିନ ବଡ଼ଲାଟ

ସାହେବ ସଭା କାର୍ଯ୍ୟ ସ୍ଥଗିତ ରଖି ନ ଥିଲେ। ରାତ୍ରି ବାରଟାରେ ରଓଲାଟ ବିଲର ଆଲୋଚନା ଶେଷ ହୋଇ ଆଇନ ରୂପେ ପରିଣତ ହେଲା। ମୋର ମନେ ହୁଏ ବଡ଼ଲାଟଙ୍କ ସଭାକାର୍ଯ୍ୟ ସେ ଦିନ ରାତି ବାରଟାରେ ସରିଲା ସିନା, ସେହିଦିନ ଅର୍ଦ୍ଧ ରାତ୍ରିରେ ଭାରତରେ ସୌଭାଗ୍ୟ-ତପନ ଉଦିତ ହୋଇଛି। ସେହି ଶୁଭକ୍ଷଣରୁ ଭାରତବାସୀର ଆଖି ଫିଟିଛି। ତେଣୁ ଆଜି ଭାରତ ପୂର୍ଣ୍ଣ ସ୍ୱାଧୀନତା ଦାବୀ କରୁଛି। ରଓଲାଟ ଆଇନକୁ ଏପରି ଜବରଦସ୍ତି ଭାବରେ ଜାରୀ ନ କରିଥିଲେ ସତ୍ୟାଗ୍ରହ ଆୟୋଜନ ସୃଷ୍ଟି ହୋଇ ନ ଥାନ୍ତା। ଏହି ସତ୍ୟାଗ୍ରହ ହେତୁ ପଞ୍ଜାବ ଗୋଳମାଳ ହୋଇ ଜାଲିଆନାବାଗ ହତ୍ୟାକାଣ୍ଡ ସୃଷ୍ଟି ହେଲା। ଏଥିରୁ ଅସହଯୋଗର ଜନ୍ମ। ଏ ସବୁ ଇତିହାସ କଥା; କିନ୍ତୁ ଏହି ସବୁ ଘଟଣା ମୋ ଆଖି ଆଗରେ ଘଟିଛି। ମୁଁ ସବୁ ଶୁଣିଛି, ସବୁ ଦେଖିଛି। ଏ ସବୁ କାର୍ଯ୍ୟ ମଧ୍ୟ କରିଛି। ଏହି ସବୁ ଘଟଣା ମୋ ଜୀବନକୁ ନାନା ଭାବରେ ପ୍ରଭାବିତ କରିଛି। ତେଣୁ ଏ ସବୁ ନ ଲେଖିଲେ ମୋର ଜୀବନବୃତ୍ତାନ୍ତ ଅପୂର୍ଣ୍ଣ ରହିବ। ଏହା ଭାବି, ମୁଁ ଏହିଠାରେ ସେହି ଅଭିନବ ଘଟଣା ସବୁ ସଂକ୍ଷିପ୍ତ ବିବରଣୀ ଦେଲି।

ଏହିପରି ଭାବରେ ରଓଲାଟ ବିଲ ବଡ଼ଲାଟ ସାହେବ ୧୯୧୯ ମାର୍ଚ୍ଚ ତା ୨୪ ରିଖ ଦିନ ଆଇନରେ ପରିଣତ କଲେ। ମହାତ୍ମା ଗାନ୍ଧି ତା ୨୫ ରିଖ ଦିନ ଘୋଷଣା କଲେ ଯେ, ଯେଉଁ ଦେଶକୁ ଶାସନ କରିବା ପାଇଁ ରଓଲାଟ ଆଇନ ପରି ଏକ ପୈଶାଚିକ ଆଇନ ଆବଶ୍ୟକ ହୁଏ, ସେହି ଦେଶ ଗୋଟିଏ ବର୍ବର ଦେଶ ବୋଲି ବୁଝିବାକୁ ହେବ। ଭାରତ ପ୍ରଜା ଅଶିକ୍ଷିତ, ଭାରତର କୌଣସି ଶିକ୍ଷା ସଭ୍ୟତା ନାହିଁ, ଏଥିରୁ ପ୍ରମାଣିତ ହେବ। ସୁତରାଂ ଭାରତ ପରି ଏକ ପବିତ୍ର ଭୂମି ରଓଲାଟ ଆଇନଦ୍ୱାରା ଅପବିତ୍ର ହେଲା ବୋଲି ବୁଝିବାକୁ ହେବ। ଏଥିପାଇଁ ଭାରତବାସୀ ପ୍ରାୟଶ୍ଚିତ୍ତ କରିବା ଦରକାର। ଏହିପରି ମର୍ମରେ ଗୋଟିଏ ଘୋଷଣା ପତ୍ର ପ୍ରକାଶ କରି ମାର୍ଚ୍ଚ ମାସ ତା ୩୧ ରିଖ ଦିବସକୁ ସତ୍ୟାଗ୍ରହ ସଂଗ୍ରାମର ପ୍ରଥମ ଦିବସ ରୂପେ ପାଳନ କରିବାକୁ ମହାତ୍ମାଜୀ ପ୍ରଚାର କଲେ। ଏହି ସତ୍ୟାଗ୍ରହର ପ୍ରଥମ ଦିବସ ପାଳନ କରିବାକୁ ଯାଇ ଭାରତ ପ୍ରଜାସମୂହ ସେ ଦିନ ସମସ୍ତ ପ୍ରକାର ଦୈନିକ କାର୍ଯ୍ୟକ୍ରମ ବନ୍ଦ କରିବେ। ବଜାର ଘାଟ ବନ୍ଦ ହେବ। ଭାରତରେ ସମସ୍ତେ ସର୍ବତ୍ର ହରତାଳ କରିବେ। ସେ ଦିନ ସମସ୍ତେ ଉପବାସ ରହି ନିଜ ନିଜ ଧର୍ମ ଅନୁସାରେ ମସ୍‌ଜିଦ୍‌, ଗୀର୍ଜା ଓ ମନ୍ଦିରମାନଙ୍କରେ ଦେଶର କଲ୍ୟାଣ ନିମିତ୍ତ ପୂଜା ଉପାସନା କରିବେ। ସେ ଦିନ ସମସ୍ତେ ନଗ୍ନ ପଦ ଓ ନଗ୍ନମସ୍ତକରେ ଶୋଭାଯାତ୍ରା କରି ସଭା କରିବେ ଏବଂ ରଓଲାଟ ଆଇନ ବିରୁଦ୍ଧରେ ପ୍ରତିବାଦ କରିବେ।

ପ୍ରଥମେ ମାର୍ଚ୍ଚ ତା ୧୮ ରିଖ ସତ୍ୟାଗ୍ରହର ପ୍ରଥମ ଦିବସ ରୂପେ ସ୍ଥିର ହେଲା। କିନ୍ତୁ ସମୟ ଓ ସୁବିଧା ପ୍ରତି ଦୃଷ୍ଟି ଦେଇ ବିଚାର କଲା ବେଳକୁ ମାର୍ଚ୍ଚ ମାସ ତା ୩୧ ରିଖ ସୁବିଧାଜନକ ହେବ ନାହିଁ ଭାବି ଅପ୍ରେଲ ତା ୬ ରିଖକୁ ସତ୍ୟାଗ୍ରହର ପ୍ରଥମ ଦିବସ ରୂପେ ଧାର୍ଯ୍ୟ କରାଯାଇଥିଲା। ଇତିମଧ୍ୟରେ ବମ୍ବେଇ ଠାରେ ମହାତ୍ମାଗାନ୍ଧୀ ସତ୍ୟାଗ୍ରହ ସଭା ନାମରେ ଗୋଟିଏ କମିଟି ଗଠନ କଲେ। ଏହି କମିଟି ସତ୍ୟାଗ୍ରହ ସଂଗ୍ରାମ ପରିଚାଳନା କରିବ। ଯେତେବେଳେ ଯେଉଁ ଆଇନ ଅମାନ୍ୟ କରିବାକୁ ସ୍ଥିର କରିବ, ସମସ୍ତେ ତାହାହିଁ କରିବେ। ସତ୍ୟାଗ୍ରହ ସଭା ଯାହା ସ୍ଥିର କରିବ ତାହା ଛଡ଼ା ଅନ୍ୟ କେଉଁଠାରେ କେହି କିଛି ନିଜ ମତଲବରେ କରି ନ ପାରନ୍ତି। ଆଇନ ଅମାନ୍ୟ କରିବା କଥାଟା ପ୍ରଥମେ ଶୁଣିଲାବେଳେ ମୁଁ ଭାବିଥିଲି, ଯେ ଯେଉଁଠାରେ ଯାହା ସୁବିଧା ଦେଖିବ, ସେ ସେହିଠାରେ ସେହିପରି ଆଇନ ଅମାନ୍ୟ କରିବ। ଗୋଟିଏ ଆଇନ ଭାରତପରି ଏକ ବିରାଟ ଦେଶରେ, ସର୍ବତ୍ର, ଅମାନ୍ୟ କରିବା ଜରୁରତ ହୋଇ ନ ପାରେ। ଏହିପରି ଭାବି, ମୁଁ ଓ ବିନୋବାଜୀ ଆମେ ଦୁହେଁ ସତ୍ୟାଗ୍ରହ ଆଶ୍ରମରୁ ପ୍ରଥମେ ସତ୍ୟାଗ୍ରହୀ ହେବାକୁ ନାମ ଲେଖାଇଥାଉଁ ଏବଂ ଆମ୍ଭେ ଦୁହେଁ କି କି ଆଇନ କିପରି ଅମାନ୍ୟ କରିବୁ, ଏ ବିଷୟରେ ଅନେକ କଥା ଭାବୁଥାଉଁ। ଏପରି ସମୟରେ ବମ୍ବେଇ ସତ୍ୟାଗ୍ରହ ସଭାର ନିର୍ଦ୍ଦେଶ ଶୁଣିବାକୁ ପାଇଲୁଁ। ସରକାର ବାଜ୍ୟାପ୍ତ କରିଥିବା କେତେଖଣ୍ଡି ପୁସ୍ତକ (proscribed books) ବମ୍ବେଇ ସତ୍ୟାଗ୍ରହ ସଭା ଛପାଇ ତାହା ପ୍ରକାଶ୍ୟରେ ବିକ୍ରି କରିବାପାଇଁ ସତ୍ୟାଗ୍ରହୀମାନଙ୍କୁ ଦେବାର ସ୍ଥିର କରିଛନ୍ତି। ଏହାଛଡ଼ା ସତ୍ୟାଗ୍ରହ ପତ୍ରିକା ନାମରେ ଖଣ୍ଡିଏ ହାତଲେଖା ପତ୍ରିକା ସରକାରଙ୍କ ବିନାନୁମତିରେ ମହାତ୍ମାଜୀ ପ୍ରକାଶ କରିବେ। ମହାତ୍ମାଜୀ ନିଜ ହାତରେ ପ୍ରଥମେ ପତ୍ରିକା ଖଣ୍ଡିକ ଲେଖିଦେବେ। ଏହି ପତ୍ରିକା ଯେ ପାଇବ ସେ ଆଉ ଚାରିଖଣ୍ଡ ଲେଖି ବାଣ୍ଟି ଦେବ। ଏହି କ୍ରମରେ ହଜାର ହଜାର ଲକ୍ଷ ଲକ୍ଷ ପତ୍ରିକା ସରକାର ବିରୁଦ୍ଧରେ ଲେଖା ହୋଇ ଦେଶରେ ପ୍ରଚାରିତ ହେବ। କେଉଁ ଆଇନ ଅମାନ୍ୟ କରିବାକୁ ହେବ, ତାହା ବିଚାର କରି ସ୍ଥିର କରିବାକୁ ଅଧିକାର ଏପରି ସୀମାବଦ୍ଧ କରିବା ପ୍ରଥମେ ମତେ ଭଲ ଲାଗିଲା ନାହିଁ। ପୁଣି ସରକାର ବାଜ୍ୟାପ୍ତି ବହି ବିକିବା ଓ ପତ୍ରିକା ବାଣ୍ଟିବା ଅତି ଦୁର୍ବଳିଆ କାମ ହେଲା ବୋଲି ମତେ ବୋଧ ହେଲା। ସେ ଯାହା ହେଉ ବମ୍ବେଇ ସତ୍ୟାଗ୍ରହ ସଭା ଯାହା କହିବ ତାହା ଛଡ଼ା ଅନ୍ୟ ଗତି ନାହିଁ।

ଅପ୍ରେଲ ତା ୬ ରିଖ ଦିନ ସତ୍ୟାଗ୍ରହ ଆଶ୍ରମ ବନ୍ଦ କରି ସମସ୍ତେ ଅହମଦାବାଦ୍ ସହରକୁ ଗଲେ। ମୁଁ ମଧ୍ୟ ସମସ୍ତଙ୍କ ସଙ୍ଗରେ ଗଲି। ଅହମଦାବାଦ ସହରରେ ଦୋକାନ ବଜାର ସବୁ ବନ୍ଦ। ଯାନବାହନ ଖଣ୍ଡିଏ ଚଳିବାକୁ ନାହିଁ। କଳ କାରଖାନା ବନ୍ଦ ରହିଛି। ଲକ୍ଷ ଲକ୍ଷ ଲୋକ, ଖାଲି ଗୋଡ଼ ଖାଲି ମୁଣ୍ଡରେ ସହର ତମାମ

ରୁଣ ହୋଇଅଛନ୍ତି। ସମସ୍ତଙ୍କ ମନରେ ଏକ ଅପୂର୍ବ ଉତ୍ସାହ ଓ ଆନନ୍ଦ ଫୁଟି ଉଠୁଛି। ସମସ୍ତେ ଗୋଟାଏ ନୂତନ ଜୀବନ ଲାଭ କଲାପରି ବୋଧ କରୁଛନ୍ତି। ଦେଶରେ ଇଂରେଜ ସରକାର ଅଛି, ଏହି ଭାବ କାହାରିଠାରେ ନାହିଁ। ଏହି ବିପୁଳ ଜନତାଙ୍କ ଉତ୍ସାହ ଉନ୍ମାଦନାରେ ସହସ୍ର କଣ୍ଠରେ ଜାତୀୟ ସଙ୍ଗୀତର ଗାନ ନିର୍ଘୋଷିତ ହୋଇଉଠିଲା। ଲକ୍ଷ ଲକ୍ଷ ଲୋକ ଶୋଭାଯାତ୍ରା କରି ସାବରମତୀ ନଦୀରେ ଉପସ୍ଥିତ ହେଲେ। ସେଠାରେ ସଭାକାର୍ଯ୍ୟ ଶେଷ କରି ଆମ୍ଭେମାନେ ଆଶ୍ରମବାସୀ ସମସ୍ତେ ରାତ୍ରି ଆଠଟାରେ ଆଶ୍ରମକୁ ଫେରିଲୁ। ଏହିପରି ଭାବରେ, ଅପ୍ରେଲ ତା ୬ ରିଖ ସତ୍ୟାଗ୍ରହର ପ୍ରଥମ ଦିବସ ଆମ୍ଭେମାନେ ପାଳନ କରିଥିଲୁଁ।

କେବଳ ଅହମଦାବାଦ ସହରରେ ଏପରି ହେଲା ତାହା ନୁହେଁ, ସମସ୍ତ ଭାରତବର୍ଷରେ ଏହିପରି ଏକ ଅପୂର୍ବ ଜୀବନର ଢେଉ ଖେଳିଗଲା। ଭାରତର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ସତେ ଯେପରି ଗୋଟାଏ ଜୀବନର ଧାରା ବୋହିଯାଉଛି। ରାତିଶେଷରେ ବାଳ ତପନର କିରଣରେ ନିଦ୍ରିତ ଜଗତ ଯେପରି ଜାଗିଉଠେ, ଭାରତବର୍ଷ ସେହିପରି ଆଜି ଜାଗିଉଠିଛି। ରାତ୍ରିର ନିସ୍ତବ୍ଧତା ପରେ ସୂର୍ଯ୍ୟ କିରଣ ଧରାବକ୍ଷରେ ପତିତ ହେଲେ ପ୍ରାଣି ଜଗତର କୋଳାହଳ ଯେପରି ଶୁଣାଯାଏ, ସତ୍ୟାଗ୍ରହର ପ୍ରଥମ କିରଣରେ ଭାରତର ରାଜନୈତିକ ଜୀବନର ଅଙ୍କୁର ଉଦ୍‌ଗମନ ହେଉଛି। ଭାରତର ରାଜନୈତିକ କୋଳାହଳ ଶୁଣାଯାଉଛି। ମହାତ୍ମାଗାନ୍ଧୀଙ୍କର ବାଣୀ ଦେଶରେ ଏକପ୍ରକାର ବିଦ୍ୟୁତ୍ ଶକ୍ତି ଖେଳାଇ ଦେଉଛି। ଏସବୁ ସାବରମତୀ ସତ୍ୟାଗ୍ରହ ଆଶ୍ରମରେ ବସି ମୁଁ ଉପଲବ୍‌ଧି କରୁଛି। ବିପ୍ଳବୀ ଦଳରୁ ଗୋଟିଫିଟା ହୋଇ ପଳାତକ ଜୀବନ ଲୁକ୍କାୟିତ ଭାବରେ ଯାପନ କଲାପରେ ମନରେ ଯେଉଁ ନୈରାଶ୍ୟଭାବ ଆସିଥିଲା, ତାହା କୁଆଡ଼େ ଉଭେଇ ଯାଇଛି। ଭାରତର ସ୍ୱାଧୀନତା ସଂଗ୍ରାମରେ ଏକ ନୂତନ ପଥ ମତେ ସ୍ପଷ୍ଟ ଦେଖାଯାଉଛି। ଦେଶର ଚାରିଆଡ଼କୁ ଆଖି ବୁଲାଇଲା ବେଳକୁ, ସର୍ବତ୍ର ଯେଉଁ ନୂତନ ଜୀବନର ସଂକେତ ମିଳୁଛି, ଓଡ଼ିଶାରେ ତାହାର ନାମ ଗନ୍ଧ ନାହିଁ। ଓଡ଼ିଶାରେ ସେତେବେଳକୁ ଘୋର ଅନ୍ଧକାର—କେବଳ ଏହି କଥାଟି ମନଟାକୁ ବେଳେ ବେଳେ କ୍ଷୁବ୍ଧ କରି ପକାଉଛି।

ଏହି ରଓଲାଟ ସତ୍ୟାଗ୍ରହ ପୂର୍ବରୁ ବଙ୍ଗ ବିଚ୍ଛେଦ ଆନ୍ଦୋଳନ ହୋଇଥିଲା। ତିଳକ ମହାରାଜ ଦେଶର କାର୍ଯ୍ୟ କରି ଜେଲ ଦଣ୍ଡ ପାଇଛନ୍ତି। ରାଜନୈତିକ କାରଣରୁ ଅରବିନ୍ଦ ପଣ୍ଡିଚେରୀକୁ ପଳାଇ ଯାଇ ଯୋଗ ସାଧନ କରୁଛନ୍ତି। ବଙ୍ଗଦେଶରେ ବିପ୍ଳବବାଦ ଫୁଟି ଉଠିଛି। କିନ୍ତୁ ସବୁ ସୀମାବଦ୍ଧ। ଭାରତର ପୁରପଲ୍ଲିରେ ରଓଲାଟ ବିଲ୍ ସତ୍ୟାଗ୍ରହ ଯେଉଁ ଜୀବନ ସଂଚାର କରିଛି, ତାହା ଏକାବେଳକେ ନୂତନ। ଇଂରେଜ ସରକାରଙ୍କ ଆଇନ ଅମାନ୍ୟ କରି ପ୍ରକାଶ୍ୟରେ ଜେଲବରଣ କରିବାକୁ କେଉଁ କେହି କହି ନାହିଁ। ଅରବିନ୍ଦ କେବଳ ଏହି ଭାବରେ କଳ୍ପନା କରିଥିଲେ।

ଭବିଷ୍ୟଦ୍‌ବାଣୀ ପ୍ରଚାର କଲାପରି ବଙ୍ଗ ବିଚ୍ଛେଦ ଆନ୍ଦୋଳନ ବେଳେ ସେ ପ୍ରକାଶ କରିଥିଲେ ଯେ, ଭାରତରେ ଏପରି ଜଣେ ପୁରୁଷ ଆବିର୍ଭୂତ ହେବେ, ଯେ କି ପ୍ରକାଶ୍ୟରେ ଦେଶବାସୀଙ୍କୁ ସରକାରୀ ଆଇନ ଭାଙ୍ଗିବାକୁ ଆହ୍ୱାନ କରିବେ। ତାହାଙ୍କର କଳ୍ପନା ଓ ଏହି ଭବିଷ୍ୟଦ୍‌ବାଣୀ ଆଜି ଫଳୀଭୂତ ହୋଇଛି। ମହାତ୍ମାଗାନ୍ଧୀ ଯେଉଁ ବାଣୀପ୍ରଚାର କରୁଛନ୍ତି, ତାହା ଭାରତ ଜଳବାୟୁର ଅନୁକୂଳ ଏବଂ ଭାରତବାସୀର ଅନ୍ତର-ନିହିତ ବାଣୀ। ତେଣୁ ତା ୬ ରିଖ ଅପ୍ରେଲ ଦିବସ ସମସ୍ତ ଭାରତବର୍ଷରେ ଲୋକଙ୍କର ସୁପ୍ତ ପ୍ରାଣକୁ ଜାଗ୍ରତ କରିଅଛି। ଏହି ଦିବସ ସ୍ୱାଧୀନ ଭାରତର ଜନ୍ମ ଦିବସ ବୋଲି ସ୍ୱୀକାର କରିବାକୁ ହେବ।

ଏହିପରି ରଓଲାଟ ବିଲ୍ ବିରୁଦ୍ଧରେ ସତ୍ୟାଗ୍ରହ ଲଢ଼ାଇ ଆରମ୍ଭ ହେଲା। ପ୍ରଥମ ଦିବସର ଜାଗରଣ ଦେଖି ଇଂରେଜ ସରକାରଙ୍କର ଭାଳେଣି ପଡ଼ିଲା। ସରକାର ଶଂକିତ ହୋଇ ଉଠିଲେ। ଜଣଙ୍କର ଆହ୍ୱାନରେ ହିନ୍ଦୁ ମୁସଲମାନ ପ୍ରଜା ଏପରି ଭାରତର ସର୍ବତ୍ର ଜାଗି ଉଠିବେ ଏହା ଇଂରେଜ ସରକାର କଳ୍ପନାତୀତ ଥିଲା। ଏହି ଜାଗରଣକୁ ସରକାର ଏକ ବିଦ୍ରୋହାନଳ ଦୃଷ୍ଟିରେ ଦେଖିଲେ। ସିପାହୀ ବିଦ୍ରୋହ ବେଳର କଥା ତାଙ୍କର ମନେ ପଡ଼ିଥିବ। ତାହା ନ ହୋଇଥିଲେ ପଞ୍ଜାବରେ ଜାଲିଆନାବାଗର ହତ୍ୟାକାଣ୍ଡ ସୃଷ୍ଟି ହୋଇ ନ ଥାନ୍ତା। ସେ ଯାହା ହେଉ ତା ୭ ରିଖ ଦିନ ମୁଁ ଓ ବିନୋବାଜୀ ଦୁହେଁ ପୁଣି ଅହମଦାବାଦ ସହରକୁ ଗଲୁଁ। ମହାତ୍ମାଗାନ୍ଧୀଙ୍କ ଲେଖା 'ହିନ୍ଦୁ ସ୍ୱରାଜ୍ୟ ପୁସ୍ତକ'କୁ ସରକାର ବାଜ୍ୟାପ୍ତ କରିଥାନ୍ତି। ବମ୍ବେଇର ସତ୍ୟାଗ୍ରହ ସଭା ଏହି ପୁସ୍ତକକୁ ଛପାଇ ପ୍ରକାଶ୍ୟରେ, ବିକ୍ରି କରିବାକୁ ସ୍ଥିର କରିଥାନ୍ତି। ଏହାଛଡ଼ା ଆମେରିକାର ବିଖ୍ୟାତ ସତ୍ୟାଗ୍ରହୀ ଥରୋଙ୍କର ଆଇନ ଅମାନ୍ୟ ବିଷୟରେ ଖଣ୍ଡିଏ ଜବତ୍ କିତାବ ମଧ୍ୟ ବିକ୍ରି କରିବାର ସ୍ଥିର ହୋଇଥାଏ। ଏହି ଦୁଇଖଣ୍ଡ ଜବତ ପୁସ୍ତକ ଧରି ଅହମଦାବାଦ ସହରକୁ ମୁଁ ଓ ବିନୋବାଜୀ ଗଲୁ। ସ୍ଥାନେ ସ୍ଥାନେ ବୁଲି ବହି ବିକ୍ରି କଲୁଁ। କଚେରୀ ଉପରେ ହାଜର ହୋଇ ବହି ବିକିଲୁଁ। ପୋଲିସ ଥାନା ନିକଟରେ ପୋଲିସକୁ ଦେଖାଇ ଶୁଣାଇ ବହି ବିକ୍ରି କଲୁଁ। ମାଜିଷ୍ଟ୍ରେଟ କିମ୍ବା ପୋଲିସ କେହି ହେଲେ ଆମ୍ଭଙ୍କୁ ଜବତ୍ ପୁସ୍ତକ ବିକ୍ରି କରିବା ଅପରାଧରେ କିପରି ଧରନ୍ତେ ଏହି ଇଚ୍ଛାରେ ଆମ୍ଭେମାନେ ଥାନା, କଚେରୀ ଭିତରେ ପଶି ଡାକ ଦେଇ ପୁସ୍ତକ ବିକ୍ରି କରୁଛୁଁ। କିନ୍ତୁ କେହି ଆମ୍ଭଙ୍କୁ ଧରୁ ନାହାନ୍ତି। ସରକାରୀ ଜବତ୍ ପୁସ୍ତକ କାହାରି ନିକଟରେ, କିମ୍ବା ଘରେ ଲୁଚାଇ ରଖିବାର ଜଣାଗଲେ, ପୋଲିସ ଧରିବାର ନିୟମ। କିନ୍ତୁ ଏହି ନିୟମକୁ ତଥା ଆଇନକୁ ଅମାନ୍ୟ କରି ଆଜି ଆମ୍ଭେମାନେ, ମାଜିଷ୍ଟ୍ରେଟ ଓ ପୋଲିସ ସମ୍ମୁଖରେ ବହି ବିକୁଛୁଁ, ଅଥଚ କେହି କିଛି କହୁ ନାହିଁ, ଏଥିପାଇଁ ମନରେ ଭାରି ଦୁଃଖ। ଧରା ହୋଇ ଜଣେ ଯିବାପାଇଁ ପ୍ରାଣରେ ଉନ୍ମାଦନା ଉଚ୍ଛୁଳି ଉଠୁଛି। କାରାଗାରକୁ ସ୍ୱଇଚ୍ଛାରେ ବରଣ କରିବା କଳ୍ପନାରେ ଆନନ୍ଦର ସୀମା

ରହୁ ନାହିଁ। ଯେଉଁ ଜେଲକୁ ଭୟ କରି ଛପି ଛପି ପଳାଉଥିଲି ଆଜି ସେ ଜେଲ ଯିବାକୁ ଆନନ୍ଦର ସୀମା ରହୁ ନାହିଁ। ପୋଲିସ ମୋର ଅନୁସନ୍ଧାନ ପାଇ, ମତେ ଚିହ୍ନି ପାରିଲେ ଧରିନେବେ ବୋଲି ଭୟରେ ଚମକି ଉଠୁଥିଲି, ଆଜି ପୁଣି ସେହି ପୋଲିସ କିପରି ଧରିବ, ଏହି ଇଚ୍ଛାରେ ପୋଲିସ ଥାନାରେ ଠେଲି ହୋଇ ପ୍ରବେଶ କରିବାରେ ଆନନ୍ଦ। ବେଆଇନ୍ କାର୍ଯ୍ୟ କରୁଥିବାରୁ ପୋଲିସ ଦେଖିକରି ମଧ୍ୟ ନ ଧରିବାରୁ ମନରେ ଦୁଃଖ ହେଉଛି। ଏହା ମୋ ଜୀବନରେ ଅଭିନବ ଘଟଣା ନୁହେଁ କି ?

ପୋଲିସ ଧରିବା ଭୟରେ ମୁଁ ବହୁକାଳ ଲୁଚିକରି ପଳାଇ ବୁଲିଛି। ଅବଶ୍ୟ ଭୟରେ ମୁଁ ଶଙ୍କିତ କିମ୍ବା ଦ୍ରବୀଭୂତ ହୋଇ ନାହିଁ। ଏହି ଭୟରେ ମୋର ବୀରତ୍ୱ ଥାଏ, ବାହାଦୂରୀ ଥାଏ ଏବଂ ଗୌରବ ଅନୁଭବ କରୁଥାଏ। ଦେଶପାଇଁ ମୁଁ ନିଜ ଇଚ୍ଛାରେ ନୀରବ ନିର୍ଯ୍ୟାତନା ଭୋଗ କରୁଛି, ଏହି ଭାବନା ମନରେ ଆନନ୍ଦ ଓ ଗର୍ବ ଭାବକୁ ଜାଗରଣ କରାଉଥାଏ। ତଥାପି ପୋଲିସ ଓ ଜେଲ ପ୍ରତି ଏକପ୍ରକାର ଭୟ ଥାଏ– ଏହା ସ୍ୱୀକାର କରିବାକୁ ହେବ। ଯେଉଁ ଜେଲଖାନା ଓ ପୋଲିସ ପ୍ରତି ମନରେ ଭୟ ଥିଲା, ସେହି ଜେଲଖାନାକୁ ପଠାଇବା ପାଇଁ ପୋଲିସ ଧରି ନ ଥିବାରୁ ମନରେ ଆଜି ଦୁଃଖ ହେଉଛି। ଏହା ନିଶ୍ଚୟ ଏକ ଅପୂର୍ବ ପରିବର୍ତ୍ତନ As a violent soldier– ହିଂସାବାଦୀ ସିପାହୀ ହୋଇ ଦେଶରେ ମୁଁ କାର୍ଯ୍ୟ କରିଛି। ଆଜି, Non-violent soldier–ଅହିଂସାବାଦୀ ସିପାହୀ ହୋଇ କାର୍ଯ୍ୟ କରୁଛି। ହିଂସା ଓ ଅହିଂସା ମଧ୍ୟରେ ପ୍ରଭେଦ କଣ ଏହା କେତେକ ମାତ୍ରାରେ ମୁଁ ବୁଝିପାରିଛି ବୋଲି ଯଦି କହେ, ମୁଁ ନିଜର ଅହଂକାର ଦେଖାଉଛି ବୋଲି କେହି କହି ନ ପାରନ୍ତି। ସେ ଯାହା ହେଉ, ହିଂସା ଓ ଅହିଂସା ଉଭୟ ମାର୍ଗରେ ସାହସ, ବୀରତ୍ୱ ଓ ତ୍ୟାଗ ଆବଶ୍ୟକ। ତ୍ୟାଗ ବିଷୟ ବିଚାର କଲେ, ହିଂସା ପଥରେ ତ୍ୟାଗର ମାତ୍ରା ଅଧିକ ବୋଲି ମନେ ହୁଏ। କିନ୍ତୁ ସାହସ, ବୀରତ୍ୱ ଓ ଧୈର୍ଯ୍ୟ ଇତ୍ୟାଦିର ମାତ୍ରା ହିଂସାବାଦୀ ଅପେକ୍ଷା ଅହିଂସାବାଦୀର ଅଧିକ ବୋଲି ମୋର ବିଶ୍ୱାସ। ମୁଁ ଉଭୟମାର୍ଗ ଅନୁସରଣ କରିଛି। ହିଂସା ପଥ ଅନୁସରଣ କରି କାର୍ଯ୍ୟ କରୁଥିଲାବେଳେ ମୃତ୍ୟୁ ପାଇଁ ପ୍ରତି ମୁହୂର୍ତ୍ତରେ ପ୍ରସ୍ତୁତ ଥିଲି। ତଥାପି ମନରେ ଏକ ପ୍ରକାର ଭୟ ଥିଲା। ସେହି ଭୟକୁ ଭୟ ବୋଲି କହିବା ଅବଶ୍ୟ ଠିକ୍ ହେବ ନାହିଁ। କିପରି ଭାଷାରେ ମନର ଉକ୍ତ ଅବସ୍ଥାକୁ ବ୍ୟକ୍ତ କରିବାକୁ ହେବ ତାହା କହି ହେଉ ନାହିଁ। ତଥାପି ଭୟମିଶ୍ରିତ ଅବିଶ୍ୱାସ ବୋଲି ମୁଁ କହିପାରେ। କାରଣ ମୁଁ କାହାକୁ ବିଶ୍ୱାସ କରୁ ନ ଥିଲି। ମନ ଖୋଲି କଥା କହିବାକୁ ସାହସ ନ ଥିଲା। ସମସ୍ତଙ୍କୁ ଚୋରା ପୋଲିସ ବୋଲି ମନରେ ସନ୍ଦେହ କରୁଥିଲି। କିଏ କି ପ୍ରକାରର ଲୋକ ତାହା ଜାଣିବାର ଉପାୟ ନ ଥିଲା। କଲିକତାରେ ରାସ୍ତା ଘାଟରେ ଗଲାବେଳେ ପଛରେ କିଛି ଦୂରେ କାହାକୁ ଆସୁଥିବାର ଦେଖିଲେ ତାହା ଚୋରା ପୋଲିସ ବୋଲି ସନ୍ଦେହ କରି,

ସେହି ବାଟ ଭାଙ୍ଗି ମୁଁ ଅନ୍ୟ ବାଟରେ ବୁଲି ଯାଉଥିଲି। ନିଜର ଚାଲି ଚଳଣ, ଆଚାର ବ୍ୟବହାର ଭିତରେ, ବାହାରକୁ ଅନ୍ତରର କଥା ଫୁଟି ଉଠୁ ନ ଥିଲା। ଆଭ୍ୟନ୍ତରିକ ଜୀବନ ସହିତ, ବାହ୍ୟିକ ଜୀବନର କୌଣସି ମେଳ ଥିଲା ପରି ଜଣା ପଡୁ ନ ଥିଲା। ହିଂସା ଓ ଅହିଂସା ପଥ ମଧ୍ୟରେ ବହୁତ ପ୍ରଭେଦ ରହିଅଛି। ଅହିଂସା ପଥ ଅନୁସରଣ କଲେ ଭିତର ବାହାର ସବୁ ସମାନ। କାହାରି ପ୍ରତି ଅବିଶ୍ୱାସ ନାହିଁ। ସନ୍ଦେହ ନାହିଁ। କିଛି ଲୁଚାଇ କରିବାର ଆବଶ୍ୟକତା ନାହିଁ। ସମସ୍ତ କଥା ପ୍ରକାଶ୍ୟରେ କହିବାକୁ ହେଉଛି। ସମସ୍ତ କର୍ମ ପ୍ରକାଶ୍ୟରେ କରିବାକୁ ପଡୁଛି। ହୃଦୟରେ ଅସୀମ ବଳ ସାହସ ଓ ଉତ୍ସାହ ଅନୁଭବ କରୁଛି। ଲୋକ ସାଧାରଣ ଭିତରେ ପ୍ରବେଶ କରି କାର୍ଯ୍ୟ କରିବାର ପଥ ସୁଗମ ଓ ସରଳ ହେଉଛି। ନିଜର କଥା ଓ କାର୍ଯ୍ୟଦ୍ୱାରା ଲୋକ ସାଧାରଣ ଭିତରୁ ଅସଂଖ୍ୟ ଲୋକଙ୍କୁ ନିଜ ପଥକୁ ଟାଣି ଆଣିବା ପାଇଁ ପଥ ଦେଖାଯାଉଛି। ସରକାରୀ ବାଧାବିଘ୍ନ ପ୍ରକାଶ୍ୟରେ ଭାଙ୍ଗି ଦେବାକୁ ମନରେ ସବୁଠାରୁ ଅଧିକ ଉନ୍ମାଦନା ଜାଗି ଉଠିଛି। ପୋଲିସ ଧରିବାକୁ ଆସୁଥିବାର ଦେଖିଲେ ମନ ଭୟରେ ଦବି ଯାଉନାହିଁ; ବରଂ ଆନନ୍ଦରେ ନାଚି ଉଠୁଛି। ମନେ ହେଉଛି, ମୁଁ ଯେଉଁ କଥା କହୁଛି ଅବା ଯେଉଁ କାର୍ଯ୍ୟ କରୁଛି, ତାହା ହେଉଛି ଅଭ୍ରାନ୍ତ ସତ୍ୟ। ଏହି ସତ୍ୟ କଥା କହି ଅଥବା ସତ୍ୟ କର୍ମ କରିବାକୁ ଯାଇ ଯଦି ସମଗ୍ର ଜଗତର ବିପକ୍ଷରେ ଠିଆ ହେବାକୁ ହୁଏ ତାହା ମୁଁ କରିବି ଏହି ଭାବନାରେ ମନ ଦ୍ରବୀଭୂତ ହୋଇ ଯାଉ ନାହିଁ। ବରଂ ମନରେ ଅପୂର୍ବ ଆନନ୍ଦ ଓ ଉତ୍ସାହ ଉଠୁଛି।

ହିଂସାବାଦୀ ହୋଇ କାର୍ଯ୍ୟ କରୁଥିବା ବେଳେ ମନର ଭାବ ଏପରି ଦୃଢ଼ ନ ଥିଲା, କିମ୍ବା ଏପରି ଭାବନା ହୃଦୟରେ ଜାଗି ଉଠୁ ନ ଥିଲା। ମୋର ଅଭିଜ୍ଞତାରୁ ମୁଁ କହିପାରେ, ହିଂସାଦ୍ୱାରା ଜୀବନର ବିକାଶ ହୁଏ ନାହିଁ। ଯାହା କିଛି ହୁଏ ତାହାର ସୀମା ବଡ଼ ସଂକୀର୍ଣ୍ଣ। କ୍ରାଳକ୍ରମେ ଲୋକ ସାଧାରଣ ଭୀରୁ ଓ କାପୁରୁଷ ହୋଇଯିବାର ସଂପୂର୍ଣ୍ଣ ସମ୍ଭାବନା ହିଂସାନୁମୋଦିତ ପଥରେ ପୂରି ରହିଛି। ସେ ଯାହା ହେଉ ହିଂସା ଓ ଅହିଂସା ଭିତରେ ପ୍ରଭେଦ ଦେଖାଇବା ମୋର ଇଚ୍ଛା ନୁହେଁ। ତେବେ ମୋର ଜୀବନ କିପରି ଗଢ଼ା ହୋଇ ଉଠିଛି, କେବଳ ତାହାହିଁ ଦେଖାଇବାକୁ ଯେତିକି ଯାହା ମତେ ପ୍ରଭାବିତ କରିଛି ତାହା ଲେଖିଲି। ହିଂସା ପଥ ଧରି ମୋର ଜୀବନକୁ ଯେପରି ଭାବରେ ମୁଁ ଗଠନ କରୁଥିଲି ତହିଁର ଅନ୍ତିମ ଅବସାନ କିପରି ଆକାର ଧାରଣ କରିଥାନ୍ତା ତାହା କିଏ ଜାଣେ। ମୁଁ ଏତିକି କହିପାରେ ଯେ, ମୁଁ ଏକ ନୂତନ କର୍ମପ୍ରେରଣା ଲାଭ କରିଛି ଏବଂ ମୋର ଅସୀମ ଦୁଃଖପୂର୍ଣ୍ଣ ନିରାଶ ଜୀବନରେ ଏକ ନୂତନ ଜୀବନ ଲାଭ କରି ପୁନର୍ବାର ସ୍ୱରାଜ୍ୟ ସଂଗ୍ରାମରେ ଅବତୀର୍ଣ୍ଣ ହୋଇଛି। ମହାତ୍ମାଗାନ୍ଧୀ ମୋର ଜୀବନରେ ଏହି ପରିବର୍ତ୍ତନ ଆନୟନ କରିଛନ୍ତି, ଏହା କହିବା ଅନାବଶ୍ୟକ।

# ତୃତୀୟ ପରିଚ୍ଛେଦ

## ସତ୍ୟାଗ୍ରହର ପ୍ରଥମ ଦିବସ

ପ୍ରଥମେ ମାର୍ଚ୍ଚ ତା ୩୧ ରିଖ ଦିନ ସତ୍ୟାଗ୍ରହର ପ୍ରଥମ ଦିବସ ରୂପେ ସ୍ଥିର କରାଯାଇଥିଲା। ତାରିଖ ଘୁଞ୍ଚିବା ସଂବାଦ ଦିଲ୍ଲୀରେ ଠିକ୍ ସମୟରେ ପହଞ୍ଚି ନ ପାରିବାରୁ ମାର୍ଚ୍ଚ ତା ୩୧ ରିଖ ଦିନ ସେଠାରେ ହରତାଳ ଓଗେର କାର୍ଯ୍ୟକ୍ରମ ପ୍ରତିପାଳନ କରିଥିଲେ। ଷ୍ଟେସନ ଦୋକାନ ହରତାଳ ନେଇ ଗୋଳମାଳ ସୃଷ୍ଟି ହେବାରୁ ପୋଲିସ ଜନତା ଉପରେ ଗୁଳି ଚଳାଇଲା। ସେ ଦିନ ଦିଲ୍ଲୀର ଜୁମା ମସ୍‌ଜିଦରେ ଠିଆ ହୋଇ ସ୍ୱାମୀ ଶ୍ରଦ୍ଧାନନ୍ଦଜୀ ହିନ୍ଦୁ ମୁସଲମାନ ଜନତାକୁ ସତ୍ୟାଗ୍ରହର ବାଣୀ ଶୁଣାଇ ଥିଲେ। ଦିଲ୍ଲୀର ହିନ୍ଦୁ ମୁସଲମାନ ପ୍ରଜା ଶୋଭାଯାତ୍ରା କରି ଗଲାବେଳେ ଗୁର୍ଖା ସିପାହୀ ସଂଗୀନ ବନ୍ଧୁକ ଧରି ସମ୍ମୁଖୀନ ହେବାରୁ ସ୍ୱାମୀ ଶ୍ରଦ୍ଧାନନ୍ଦଜୀ ଉନ୍ମୁକ୍ତ ବକ୍ଷକୁ ନେଇ ବନ୍ଧୁକ ଆଗରେ ଲଗାଇ ଦେଇ ତାହାଙ୍କ ବକ୍ଷ ବିଦୀର୍ଣ୍ଣ କରିଦେବାପାଇଁ ଗୁର୍ଖା ସୈନିକଙ୍କୁ ଆହ୍ୱାନ କଲେ। ଏହାରି ଫଳରେ ଦିଲ୍ଲୀ ସହରବାସୀ ଉତ୍ତେଜିତ ହୋଇ ଉଠିଲେ। ଏହି ଉତ୍ତେଜିତ ଜନତାକୁ ଶାନ୍ତ କରାଇବା ପାଇଁ ମହାତ୍ମାଜୀ ଶୀଘ୍ର ଦିଲ୍ଲୀ ଯିବାପାଇଁ ଶ୍ରଦ୍ଧାନନ୍ଦଜୀ ତାର କଲେ।

ତେଣେ ପଞ୍ଜାବ ପ୍ରଦେଶର ସମସ୍ତ ପୁରପଲ୍ଲିରେ ସତ୍ୟାଗ୍ରହ ବାର୍ଣୀ ପ୍ରବେଶ କଲା। ଜର୍ମାନୀ ଯୁଦ୍ଧବେଳେ ସୈନ୍ୟ ଓ ଯୁଦ୍ଧ ଚାନ୍ଦା ସଂଗ୍ରହ କରିବାରେ ପଞ୍ଜାବର ଲାଟ ଓଡ଼ାୟାର୍ ସାହେବ ଅତି ଜୁଲମ ଓ ଜବରଦସ୍ତି କରିଥିଲେ। ସେଥିରେ ପଞ୍ଜାବ ପ୍ରଦେଶର ସବୁ ଶ୍ରେଣୀର ଲୋକେ ବଡ଼ ଉତ୍ୟକ୍ତ ହୋଇଥିଲେ। ଏପରି ଉତ୍ୟକ୍ତ ଓ ବିରକ୍ତି ଭାବ ପ୍ରକାଶ କରିବା ପାଇଁ ସେମାନଙ୍କୁ କିଛି ଉପାୟ ଦେଖା ଯାଉ ନ ଥିଲା। ମହାତ୍ମାଜୀଙ୍କ ବାଣୀ ପଞ୍ଜାବ ପ୍ରଦେଶର ଲୋକଙ୍କୁ ଦୈବବାଣୀ ପ୍ରାୟ ବୋଧ ହେଲା। ଅପ୍ରେଲ ତା ୬ ରିଖ ଦିନ ପଞ୍ଜାବ ପ୍ରଦେଶରେ ସର୍ବତ୍ର ଅପୂର୍ବ ଉତ୍ସାହ ଓ ଉତ୍ତେଜନା ଖେଳିଗଲା। ପଞ୍ଜାବ ଲୋକଙ୍କୁ ଶାନ୍ତ କରାଇ ସତ୍ୟାଗ୍ରହ ବାଣୀ ଶୁଣାଇବା ପାଇଁ ଅମୃତସର ସହରରୁ ଡାକ୍ତର ସତ୍ୟପାଳ ଓ କିଚିଲ୍ୟୁ ମହାତ୍ମାଜୀଙ୍କୁ ଡକାଇ ପଠାଇଲେ। ଏହିପରି ଡକରା ପାଇ ମହାତ୍ମାଜୀ ଦିଲ୍ଲୀ ହୋଇ ପଞ୍ଜାବ ଅଭିମୁଖରେ ଯାତ୍ରା କଲେ। କିନ୍ତୁ ଦିଲ୍ଲୀ ଓ ପଞ୍ଜାବ ଯିବା ପାଇଁ ସରକାର ମହାତ୍ମାଗାନ୍ଧୀଙ୍କ ଉପରେ ନିଷେଧ ଆଜ୍ଞା ଜାରୀ କରାଇଲେ। ସେହି ନିଷେଧ ଆଜ୍ଞାକୁ ଅବଜ୍ଞା କରି ମହାତ୍ମାଜୀ ଦିଲ୍ଲୀ ଯାତ୍ରା କଲା ବେଳକୁ ବାଟରେ ଧରା ହେଲେ। ମହାତ୍ମାଜୀଙ୍କ ଧରାହେବା ସଂବାଦ ବିଜୁଳି ପରି ଦେଶରେ ବ୍ୟାପିଗଲା। ଗତ ଦୁଇ ତିନି ଦିନ ଭିତରେ ଭାରତର ହିନ୍ଦୁ ମୁସଲମାନ ପ୍ରଜା ବଡ଼ ଉତ୍ତେଜିତ ଅବସ୍ଥାରେ ଥିଲେ।

ଏପରି ଅବସ୍ଥାରେ ମହାତ୍ମାଜୀଙ୍କ ଧରା ହେବା ସଂବାଦ ଉତ୍ତେଜିତ ଜନତାକୁ ଆହୁରି ଉତ୍ତେଜିତ କରି ଦେଲା। ଲୋକେ ସେତେବେଳକୁ ମହାତ୍ମାଜୀଙ୍କ ଅହିଂସା ନୀତି ଭଲକରି ବୁଝି ନ ଥାନ୍ତି। ମହାତ୍ମାଗାନ୍ଧୀଙ୍କୁ ସରକାର ଧରିନେବାଦ୍ୱାରା ଲୋକେ ଅହିଂସାକୁ ଛାଡ଼ି ହିଂସାମାର୍ଗ ଅବଲମ୍ବନ କଲେ। ଦେଶର ସ୍ଥାନେ ସ୍ଥାନେ କଚେରୀ ଥାନା ପୋଡ଼ି ଦେବା, ରେଲ ଲାଇନ ଭାଙ୍ଗିବା, ତାର କାଟିବା ଇତ୍ୟାଦି ପ୍ରକାର ଅନିଷ୍ଟ ସୃଷ୍ଟି ହୋଇଗଲା। ଅହମଦାବାଦରେ ଏହାହିଁ ଘଟିଲା। ଏହି ଗୋଳମାଳ ସଂବାଦ ପାଇ ଆଶ୍ରମରୁ ଆମ୍ଭେମାନେ ସମସ୍ତେ ଅହମଦାବାଦ ସହରରେ ହାଜର ହେଲୁଁ। ଅହମଦାବାଦ କଳ କାରଖାନାରେ ପୂର୍ଣ୍ଣ। ଲକ୍ଷ ଲକ୍ଷ ମଜୁରିଆ କାମ ଛାଡ଼ି ଦେଇ ମହା ଗଣ୍ଡଗୋଳ ସୃଷ୍ଟି କରିଛନ୍ତି। ଆଶ୍ରମରୁ ଆମ୍ଭେମାନେ ଅହମଦାବାଦରେ ଉପସ୍ଥିତ ହେଲା ବେଳକୁ ବହୁତ ଅନିଷ୍ଟ ଘଟିଗଲାଣି। ସହସ୍ର ସହସ୍ର ଲୋକ ବଡ଼ ବଡ଼ ଲାଠି ଧରି ସହର ଭିତରକୁ ପ୍ରବେଶ କରୁଛନ୍ତି। ସରକାରୀ ଅଫିସ ଓ ସରକାରୀ କର୍ମଚାରୀ କେହି ରକ୍ଷା ପାଇବେ ନାହିଁ। ସହର ଭିତରେ ସ୍ଥାନେ ସ୍ଥାନେ ସରକାରୀ ଅଫିସରେ ନିଆଁ ଲାଗି ଜଳୁଛି। ଆମ୍ଭେମାନେ ଯାଇ ଏପରି ନିଆଁ ଲଗାଇ କଚେରୀ ଥାନା ପୋଡ଼ିଦେବା ସତ୍ୟାଗ୍ରହ ବିରୁଦ୍ଧ କାର୍ଯ୍ୟ ବୋଲି ଲୋକଙ୍କୁ ବୁଝାଉଛୁ। କିନ୍ତୁ ଆମ୍ଭ କଥା ଶୁଣୁଛି କିଏ। ସମୁଦ୍ର ମାଡ଼ି ଆସିଲା ପରି ଲୋକସବୁ ଠେଙ୍ଗା ବାଡ଼ି ଧରି ମାଡ଼ି ଆସୁଛନ୍ତି।

ଅହମଦାବାଦ ସହର ଗୋଟିଏ ପ୍ରାଚୀନ ସହର। ସହର ଚାରିପାଖେ ଗୋଟିଏ ଦୀର୍ଘ ପ୍ରାଚୀର ବୁଲିଛି। ସହର ଭିତରକୁ ପ୍ରବେଶ କରିବାକୁ ବଡ଼ ବଡ଼ ଦରଜା ସବୁ ଅଛି। ଗୋଟିଏ ଦରଜା ନିକଟରେ ଆମ୍ଭେମାନେ ସମସ୍ତେ ଆଶ୍ରମବାସୀ ଠିଆ ହୋଇ ଲୋକଙ୍କୁ ଏପାଖ ସେପାଖ ଯିବାକୁ ମନା କରୁଛୁ। ଏପରି ସମୟରେ ସଙ୍ଗୀନ ପୋଲିସ ଆସି ହାଜର ହେଲେ। ଜନତାକୁ ହଟିଯିବାପାଇଁ କିଛି ସମୟ ଦିଆଗଲା। ତାହା ନ ହେଲେ ଗୁଳି ଫାୟାର ହେବ। ଆମ୍ଭମାନଙ୍କୁ ଏହି ଜନତା ଭିତରୁ ହଟି ଯିବା ପାଇଁ ଆଦେଶ ମିଳିଲା। ଆମ୍ଭେମାନେ କଣ କରିବୁ କିଛି ବୁଝି ପାରିଲୁ ନାହିଁ। ଗୁଳି ଚାଲିବ, ଏହି ଭୟରେ ଛାଡ଼ି ପଳାଇବା ଠିକ ନୁହେଁ। ଜନ ସାଧାରଣ ଭିତରେ ଯେଉଁ ଉତ୍ତେଜନା ଆସିଛି, ସେଥିପାଇଁ ପ୍ରକାରାନ୍ତରେ ଆମ୍ଭେମାନେ ଦାୟୀ। ଲୋକେ ଠିକ ପଥ ନ ଧରି ସତ୍ୟାଗ୍ରହ ବିରୁଦ୍ଧ କାର୍ଯ୍ୟ କରୁଛନ୍ତି, ଏଥିପାଇଁ ଏକ ପ୍ରକାର ଆମ୍ଭେମାନେ ଦାୟୀ ନୋହୁଁ କି? ଜନସାଧାରଣଙ୍କୁ ସଂଗଠିତ କରି ନିୟନ୍ତ୍ରିତ କରିବା, ରାଜନୈତିକ କ୍ଷେତ୍ରରେ କାର୍ଯ୍ୟ କରୁଥିବା କର୍ମୀମାନଙ୍କର ହେଉଛି ମୁଖ୍ୟ କର୍ତ୍ତବ୍ୟ। ଲୋକେ ଯଦି କିଛି ଭୁଲ୍ କରନ୍ତି, ପୁଣି ରାଜନୈତିକ ଆନ୍ଦୋଳନରେ ଯୋଗ ଦେଇ, ରାଜନୈତିକ ଆନ୍ଦୋଳନକୁ ସମର୍ଥନ କରି ଯଦି ଜନତା କିଛି ଗଣ୍ଡୋଗୋଳ କରନ୍ତି, ତେବେ ତହିଁର ଦାୟିତ୍ୱ ପ୍ରକାରାନ୍ତରେ ଆମ୍ଭମାନଙ୍କ ଉପରେ ରହିଛି। ଏହିପରି

ଅନେକ ଚିନ୍ତା ମନରେ ଖେଳିଲା । ଆମ୍ଭମାନଙ୍କ ମଧ୍ୟରେ ଆଲୋଚିତ ହେଲା । ଆମ୍ଭେମାନେ ନିଶ୍ଚୟ କଲୁ, ଅଶିକ୍ଷିତ ଜନସାଧାରଣଙ୍କୁ ପୋଲିସର ବନ୍ଧୁକ ମୁହଁରେ ଛାଡ଼ି ଦେଇ ସେମାନଙ୍କ ଆଗରୁ ବର୍ତ୍ତମାନ ଆମ୍ଭେମାନେ ଖସି ବାହାରିଯିବା ଉଚିତ ହେବ ନାହିଁ। ଗୁଳି ଚାଲିବ। ଜନତା ଓ ପୋଲିସ ଉଭୟଙ୍କ ମଧ୍ୟରେ ଆମ୍ଭେମାନେ ଉପରକୁ ହାତ ଟେକି ଠିଆ ହୋଇ ରହିବୁଁ। ଜନତା ଦେଖନ୍ତୁ; ଗୁଳି ଚାଲିଲେ ମଧ୍ୟ ଗୁଳି ଖାଇ ମରିବୁଁ। କିନ୍ତୁ ପୋଲିସ ବିରୁଦ୍ଧରେ ହାତ ହଲାଇବୁ ନାହିଁ। ଏହି ଶିକ୍ଷା ଦେବାପାଇଁ ଆମ୍ଭେମାନେ ସେହିଠାରେ ସେହିପରି ଠିଆ ହୋଇ ରହିଲୁ। ସେତେବେଳର ମନ ଭାବ ମୁଁ ପ୍ରକାଶ କରି ପାରୁ ନାହିଁ। ମୃତ୍ୟୁକୁ ଭୟ ନ ଥାଏ ତାହା ନୁହେଁ। ମୋର ଦେହ ଥରି ଉଠୁଥାଏ । ଜନତା ଆଡ଼କୁ ଚାହିଁ ହାତ ଯୋଡ଼ି ପ୍ରାର୍ଥନା କରୁଥାଏ ସେମାନେ ଚାଲି ଯିବାକୁ। ପୁଣି ବୁଲିପଡ଼ି ପୋଲିସ ଗୁଳି ଚଳାଇଲା କି ନାହିଁ, ଦେଖୁଥାଏ । ଏହିପରି ସମୟରେ ଗୁଳି ଚାଲିଲା, ଆମ୍ଭ ଆଖି ଆଗରେ ଲୋକେ ଆହତ ହୋଇ ପଡ଼ିଗଲେ। ଏହି ଆହତ ଲୋକଙ୍କୁ ଧରି ଆମ୍ଭେମାନେ ହାସ୍‌ପାତାଳରେ ହାଜର ହେଲୁଁ। ଗୁଳି ଚାଲି, କେତେ ଜଣ ଲୋକ ଆହତ ହେଲା ପରେ କିଏ କୁଆଡ଼େ ପଳାଇଗଲେ। ଏ ଅହମଦାବାଦ ସହର ଭିତରେ ଏହିପରି ଅନେକ ସ୍ଥାନରେ ଗୁଳି ଚାଲିଥିଲା। ସେହି ଦିନ ସନ୍ଧ୍ୟାରେ ସୈନିକ ଆଇନ ଜାରୀ ହୋଇଗଲା, ଅହମଦାବାଦ ସହର ଜନଶୂନ୍ୟ ପରି ବୋଧ ହେଲା। ଏହି ସବୁ କାର୍ଯ୍ୟ କରି ଏବଂ ଅବସ୍ଥା ଦେଖି ସନ୍ଧ୍ୟାରେ ଆମ୍ଭେମାନେ ଆଶ୍ରମକୁ ଫେରିଲୁ। ସେଦିନ କାହାରି ମନ ଭଲ ନ ଥାଏ। ଘଟଣା କଣ ହବ, କି ଆକାର ଧାରଣ କରିବ କିଏ ଜାଣେ ? ଏଣେ ମହାତ୍ମାଜୀଙ୍କୁ ଧରି ସରକାର କଣ କଲେ, କେଉଁଠାକୁ ନେଲେ ତାହା ଜାଣିବା ପାଇଁ ମଧ୍ୟ ମନ ଉଦ୍‌ବିଗ୍ନ ହେଉଥାଏ ।

ଅହମଦାବାଦରେ ଯାହା ଯେପରି ଘଟିଗଲା ଭାରତର ଭିନ୍ନ ଭିନ୍ନ ପ୍ରାନ୍ତରେ ଭଣା ଅଧିକରେ ସେହିପରି ଗଣ୍ଡଗୋଳ ସୃଷ୍ଟି ହୋଇଗଲା। ବମ୍ବେଇ ଅବସ୍ଥା ଆହୁରି ଖରାପ। ବମ୍ବେଇ ସହରରେ ଦୁଇଦିନ କାଳ, ଇଂରେଜ ରାଜତ୍ୱର କୌଣସି ଚିହ୍ନ ନ ଥିଲା। ଗୋରା ଲୋକେ ପ୍ରାଣ ଭୟରେ କିଏ କୁଆଡ଼େ ପଳାଇ ଲୁଚି ରହିଲେ। ଏପରି ଅବସ୍ଥାରେ ସରକାର ଗାନ୍ଧିଜୀଙ୍କୁ ଧରି ଆଣି ବମ୍ବେଇ ସହରରେ ଛାଡ଼ିଦେଲେ। ବମ୍ବେଇରେ ମହାତ୍ମାଜୀ ଉପସ୍ଥିତ ହେବା ମାତ୍ରକେ ବମ୍ବେଇର ସମସ୍ତ ଗୋଳମାଳ ଶାନ୍ତ ହୋଇଗଲା। ନିଆଁରେ ପାଣି ପକାଇଲେ ନିଆଁ ଯେପରି ଲିଭିଯାଏ ମାହତ୍ମାଜୀଙ୍କୁ ଦେଖି ଏବଂ ତାହାଙ୍କ କଥା ଶୁଣି ବମ୍ବେଇ ଜନତା ଏକାବେଳକେ ଶାନ୍ତ ହୋଇଗଲେ। ବମ୍ବେଇରୁ ପ୍ରକାଶିତ 'ଟାଇମସ୍ ଅଫ୍ ଇଣ୍ଡିଆ' କାଗଜ ଅଗ୍ରଲେଖାରେ ଗାନ୍ଧିଜୀଙ୍କୁ ଏପରି ହଠାତ୍ ଗିରଫ କରିବାକୁ ନିନ୍ଦା କରି ସରକାରଙ୍କ ନୀତିକୁ ସମାଲୋଚନା କରିଥିଲା। ସେ ଯାହା ହେଉ, ମହାତ୍ମାଜୀ ବମ୍ବେଇକୁ ଶାନ୍ତ କରାଇ ତା୧୦ ରିଖ

ଦିନ ସକାଳେ ଅହମଦାବାଦରେ ଉପସ୍ଥିତ ହେବା ମାତ୍ରେକେ, ସରକାର ସୈନିକ ଆଇନ ଉଠାଇ ନେଲେ। ମହାତ୍ମାଜୀ ସଭା କରି ଅହମଦାବାଦ ଲୋକଙ୍କର ଏହି କାର୍ଯ୍ୟାଙ୍କୁ ନିନ୍ଦାବାଦ କଲେ। ଏହିଠାରେ ରଓଲାଟ ସତ୍ୟାଗ୍ରହ ସ୍ଥଗିତ କରିଦେଲେ। ଅହମଦାବାଦ ଲୋକଙ୍କ ପ୍ରାୟଶ୍ଚିତ୍ତ ସ୍ୱରୂପ ଏକ ଦିନ ଉପବାସ ରହି ସେହି ଦିନକର ଖର୍ଚ୍ଚ ତାହାଙ୍କ ନିକଟରେ ଦାଖଲ କରିବା ପାଇଁ ଏକ ଘୋଷଣାପତ୍ର ଜାରୀ କରାଇଲେ। ଏହିପରି ପ୍ରାୟଶ୍ଚିତ୍ତ ଭାବରେ ଯେତେ ଅର୍ଥ ସଂଗୃହୀତ ହେବ, ସେହି ଅର୍ଥଦ୍ୱାରା ଆହତ ହୋଇଥିବା ସାହେବମାନଙ୍କ ପରିବାରକୁ ସାହାଯ୍ୟ ଦିଆଯିବ, ଏହା କହି, ସତ୍ୟାଗ୍ରହ ଲଢ଼ାଇ ବନ୍ଦ କରିଦେଲେ। ମହାତ୍ମାଜୀ ନିଜେ ତିନି ଦିନ ଉପବାସ ରହିଲେ।

ମହାତ୍ମାଜୀଙ୍କ ଦେହ ଭଲ ନଥାଏ। ସେ ଅତି ଦୁର୍ବଳ ହୋଇ ପଡ଼ିଥାନ୍ତି। ଏହି ଦୁର୍ବଳ ଅବସ୍ଥାରେ ତିନି ଦିନ ଉପବାସ ମହାତ୍ମାଜୀ ରହିବେ, ଏଥିରେ ଆଶ୍ରମରେ ସମସ୍ତେ ଚିନ୍ତିତ ହୋଇ ପଡ଼ିଲେ। ମୁଁ ଯେ ଟିକିଏ ଚିନ୍ତିତ ନ ହୋଇଛି ତାହା ନୁହେଁ। କିନ୍ତୁ ସାମାନ୍ୟ ଗୋଳମାଳ ହେଲା ବୋଲି ମହାତ୍ମାଜୀ ଏକାବେଳକେ ସତ୍ୟାଗ୍ରହ ଆନ୍ଦୋଳନକୁ ବନ୍ଦ କରିଦେଲେ ଏଥିରେ ମୋର ଭାରୀ ଦୁଃଖ। ମୁଁ ମନେ ମନେ ଭାବିଲି, ଭାରତର ଭିନ୍ନ ଭିନ୍ନ ପ୍ରଦେଶରୁ କେତେ ଲୋକ ଏଥିରେ ଯୋଗ ଦେଇଛନ୍ତି। ଭାରତର ଚାରିଆଡ଼େ ଗୋଟାଏ ନୂତନ ଜୀବନୀଶକ୍ତି ଖେଳି ଯାଇଛି। ଲୋକେ କେତେ ଉତ୍ସାହ ଓ ଆଶାରେ ଉଠି ଥିଲେ। ମହାତ୍ମାଜୀ ହଠାତ୍ ଏପରି ବନ୍ଦ କରିଦେଇ ଭୁଲ କଲେ ବୋଲି ମୋର ମନରେ ଏକ ଦୃଢ଼ ବିଶ୍ୱାସ ଜନ୍ମିଗଲା। ଏ ଭାବ ଅବଶ୍ୟ ବେଶି ଦିନ ରହି ନ ଥିଲା। କାରଣ ପରେ ମୁଁ ବୁଝି ପାରିଲି ଯେ ସତ୍ୟାଗ୍ରହ ବନ୍ଦ କରି ମହାତ୍ମାଜୀ ଦେଶର ବହୁତ କଲ୍ୟାଣ ସାଧନ କରିଛନ୍ତି। ସାବରମତୀ ସତ୍ୟାଗ୍ରହ ଆଶ୍ରମରେ ଯୋଗ ଦେଇଥିବାରୁ ଏସବୁ ମୁଁ ବୁଝି ପାରୁଥାଏ। ଏ ସମସ୍ତ ଘଟଣାମାନ ମୋ ଆଖି ଆଗରେ ଘଟୁଥାଏ। ଭାରତର କେଉଁ ପ୍ରାନ୍ତରେ କଣ ହେଉଛି ତାହା ଜାଣିବାକୁ ପୂର୍ଣ୍ଣ ସୁବିଧା ଥାଏ। ସାବରମତୀ ଆଶ୍ରମରେ ରହି ମୁଁ ବୁଝୁଥାଏ ଯେ ଦେଶରେ ଗୋଟିଏ ନୂତନ ଜୀବନ ଗଢ଼ା ହେଉଥାଏ। ଏହାଦ୍ୱାରା ଦେଶ ସ୍ୱାଧୀନତା ସଂଗ୍ରାମରେ ଅଗ୍ରଗାମୀ ହେଉଛି ବୋଲି ମୁଁ ଉପଲବ୍ଧି କରୁଥାଏ। ରଓଲାଟ ବିଲ୍ ସତ୍ୟାଗ୍ରହ ବନ୍ଦ ହେଲେ ମଧ୍ୟ ଦେଶର ଆଖି ଫିଟିଗଲା ଏଥିରେ ସନ୍ଦେହ ନାହିଁ। ଏହି ଉପଲବ୍ଧି ସଂଗେ ସଂଗେ ମୋର ଜୀବନ ପୁଣି ଗୋଟିଏ ନୂଆ ଉପାଦାନରେ ଗଢ଼ା ହେଉଛି, ଏହା ମୁଁ ପ୍ରତିକ୍ଷଣରେ ଅନୁଭବ କରୁଥାଏ। ଦେଶରେ ଘଟୁଥିବା ଘଟଣାମାନ ମୋର ନୂତନ ଜୀବନର ମୂଳଭିତ୍ତିକୁ ଦୃଢ଼ କରୁଥାଏ।

# ଚତୁର୍ଥ ପରିଚ୍ଛେଦ

## ବମ୍ବେଇରେ ମହାତ୍ମାଜୀଙ୍କ ସେବା ଓ ଅରଟ ପ୍ରଚାର

ମହାତ୍ମାଜୀଙ୍କ ତିନି ଦିନ ଉପବାସ ଶେଷ ହେଲା। ସେ ପୁଣି ବମ୍ବେଇ ଗଲେ। ମୁଁ ପୂର୍ବପରି ଆଶ୍ରମର ନିୟମିତ କାର୍ଯ୍ୟରେ ମନ ନିୟୋଜିତ କଲି। ରଓଲାଟ୍ ବିଲ୍ ସତ୍ୟାଗ୍ରହରେ ଯୋଗ ଦେଇ ମନ ଚଞ୍ଚଳ ହୋଇଛି। ମହାତ୍ମାଜୀ ହଠାତ୍ ସତ୍ୟାଗ୍ରହ ବନ୍ଦ କରିଦେବାରୁ ମନ ମଧ ଭଲ ନାହିଁ। ଏପରି ଅବସ୍ଥାରେ ଆଶ୍ରମ କାର୍ଯ୍ୟରେ ମନ ଲାଗିଲା ନାହିଁ। ମଗନଲାଲ ଭାଇଙ୍କ ସହିତ ଟିକିଏ ପୁଣି ଝଗଡ଼ା ଲାଗିଲା। ଏଥର ଝଗଡ଼ା ପରେ ଆଶ୍ରମରେ ରହିବାକୁ ମତେ ଭଲ ଲାଗିଲା ନାହିଁ। ଆଶ୍ରମ ଛାଡ଼ି ଚାଲି ଆସିବାପାଇଁ ନିଶ୍ଚୟ କଲି। ଏପରି ହଠାତ୍ ଆଶ୍ରମ ଛାଡ଼ି ଚାଲି ଆସିବା ସମ୍ବାଦରେ ସମସ୍ତେ ଦୁଃଖିତ ହେଲେ। ଆଶ୍ରମରେ ରହିବା ପାଇଁ ମଗନଲାଲ ଭାଇ ଦୁଇ ଚାରିଥର ମତେ ବୁଝାଇଲେ। ବିନୋବାଜୀ ପ୍ରଭୃତି ମଧ ଆଶ୍ରମ ଛାଡ଼ି ନ ଆସିବାପାଇଁ ପରାମର୍ଶ ଦେଲେ। କିନ୍ତୁ ଥରେ ଗୋଟିଏ କଥା ନିଶ୍ଚୟ କଲା ପରେ ଆଉ ତାକୁ ଏତେ ସହଜରେ ବଦଳାଇବା ମୋର ସ୍ୱଭାବବିରୁଦ୍ଧ କାମ। ଯେ ଯେତେ କହିଲେ ମଧ ଆଶ୍ରମରେ ରହିବାକୁ ମୋର ମନ ଆଉ ବଳିଲା ନାହିଁ। ମହାତ୍ମାଜୀ ଶୀଘ୍ର ଆଶ୍ରମକୁ ଫେରି ଆସିବାର ଥାଏ। ମୁଁ ତାହାଙ୍କ ଅପେକ୍ଷାରେ ଆଶ୍ରମରେ ରହିଥାଏ। ବମ୍ବେଇରୁ ମହାତ୍ମାଜୀ ଆଶ୍ରମକୁ ଫେରି ମୁଁ ଆଶ୍ରମ ଛାଡ଼ି ଚାଲି ଯାଉଥିବା କଥା ଶୁଣିଲେ। କିନ୍ତୁ ସେ ମତେ ଛାଡ଼ିଦେଲେ ନାହିଁ। ସେ ପୁଣି ବମ୍ବେଇ ଫେରିଲା ବେଳକୁ ମତେ ସଂଗରେ ନେଇ ବମ୍ବେଇ ଗଲେ। ମହାତ୍ମାଜୀଙ୍କ ସ୍ନେହ ସୂଚକ କଥାରେ ମୋର ମନ ବଦଳିଗଲା। ବମ୍ବେଇରେ ମୁଁ ମହାତ୍ମାଜୀଙ୍କ ନିକଟରେ ରହିଲି। ଆଶ୍ରମ ବିଷୟ ନେଇ ମତେ ପଚାରିବାରେ ମୁଁ କିଛି ନ କହି ସତ୍ୟାଗ୍ରହ ଲଢ଼େଇରେ ଯୋଗ ଦେଇ ପାରିବା ଭଳି ମତେ କୌଣସି କାର୍ଯ୍ୟରେ ନିଯୁକ୍ତ କରିବାପାଇଁ ମୁଁ ଅନୁରୋଧ କରିଥିଲି। ମୋର ଉତ୍ତରରେ ମହାତ୍ମାଜୀ ନୀରବ ରହିଲେ। ମୁଁ ତାହାଙ୍କ ନିକଟରେ ରହିବାର ସୁଯୋଗ ଏହିପରି ଭାବରେ ପାଇ ପାରିଲି।

ମହାତ୍ମାଗାନ୍ଧୀଙ୍କ ସେବା କାର୍ଯ୍ୟ କରିବାପାଇଁ କେତେ ଧନୀ ଶିକ୍ଷିତ ଲାଳାୟିତ। ମୁଁ ଏତେ ସହଜରେ ତାହାଙ୍କ ନିକଟରେ ରହି ତାହାଙ୍କ ପରିଚର୍ଯ୍ୟା କରିବାର ସୁଯୋଗ ସୁବିଧା ପାଇବି ଏହା ମୁଁ କଳ୍ପନା କରି ନ ଥିଲି। ଏପରି ଅଚାନକ ଭାବରେ ମହାତ୍ମାଜୀଙ୍କ ନିକଟରେ ରହିବାର ସୁବିଧା ପାଇବାରୁ ମୋର ଆନନ୍ଦର ସୀମା ରହିଲା ନାହିଁ। ଏହି ଘଟଣା ମୋ ଜୀବନରେ ଗୋଟିଏ ବିଶେଷ ଘଟଣା ବୋଲି

ମୁଁ କହିପାରେ। କାରଣ ମହାତ୍ମାଜୀଙ୍କ ନିକଟରେ ରହିବାକୁ ଏପରି ସୁବିଧା ପାଇ ନଥିଲେ ମୁଁ ନିଶ୍ଚୟ କଲିକତା ଫେରିଥାନ୍ତି। ମୋର ଜୀବନ ଦେଶିକି କିପରି ଆକାର ଧାରଣ କରିଥାନ୍ତା ତାହା ମୁଁ କଳ୍ପନା କରିପାରୁ ନାହିଁ। ମହାତ୍ମାଜୀଙ୍କ ନିକଟରେ ରହିବାଦ୍ୱାର ଭାରତର ରାଜନୈତିକ ପରିସ୍ଥିତିର ସମସ୍ତ ଘଟଣା ବୁଝି ପାରିବାର ସୁଯୋଗ ମଧ ମିଳିଲା। ଦେଶର ଅନ୍ୟାନ୍ୟ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ଦେଖି ଚିହ୍ନି ପାରିଲି। ସେମାନଙ୍କ ରାଜନୈତିକ ମତାମତ ମଧ ଜାଣି ପାରିଲି। ରାଜନୈତିକ ଜୀବନ କିପରି ଗଢ଼ାହୋଇ ଉଠୁଛି ତହିଁର ସମସ୍ତ ତଥ୍ୟ ସମ୍ପୂର୍ଣ୍ଣରୂପେ ଜାଣି ପାରିଲି। ଏତେବେଳଯାଏ ପଞ୍ଜାବ ଅତ୍ୟାଚାର ବିଷୟରେ କିଛି ଜଣା ଯାଇ ନାହିଁ। ପଞ୍ଜାବ ବିଷୟ ନେଇ ନାନାପ୍ରକାର ଉଡ଼ା ଖବର ଶୁଣା ଯାଉଥାଏ। ସତ୍ୟାଗ୍ରହ ଲଢ଼ାଇ ମହାତ୍ମାଜୀ ଅସ୍ଥାୟୀ ଭାବରେ ସ୍ଥଗିତ ରଖିଥାନ୍ତି। ଦେଶରେ ଟିକିଏ ଶାନ୍ତି ସ୍ଥାପିତ ହେଲେ ପୁଣି ଲଢ଼ାଇ ଆରମ୍ଭ କରିବାର ମହାତ୍ମାଜୀଙ୍କର କଳ୍ପନା ଥାଏ। ତାହା ମୁଁ ବମ୍ବେଇକୁ ଆସି ବୁଝି ପାରୁଛି। ପଞ୍ଜାବର ଦାରୁଣ ବାର୍ତ୍ତା ଶୁଣା ଯାଇ ନାହିଁ। ପଞ୍ଜାବ ପ୍ରଦେଶକୁ ଯିବା ଆସିବା କରିବାକୁ ସରକାରୀ ନିଷେଧ ଆଜ୍ଞା ଜାରୀ ହୋଇଛି। ପଞ୍ଜାବ ଭିତରୁ କେହି ବାହାରକୁ ଆସି ପାରୁ ନାହାନ୍ତି କିମ୍ବା ବାହାରର ଲୋକେ ଭିତରକୁ ଯାଇ ପାରୁ ନାହାନ୍ତି। ମହାତ୍ମାଜୀ ଅଧିକାଂଶ ସମୟ ବମ୍ବେଇରେ ରହୁଛନ୍ତି। ତାହାଙ୍କର ଦେହ ଭଲ ନ ଥାଏ। ସେ ପୂର୍ବରୁ ଦୁଧ ଲୁଣ ଇତ୍ୟାଦି କିଛି ଖାଉ ନ ଥିଲେ। ଏହି ସମୟରେ ଡାକ୍ତରଙ୍କ ପରାମର୍ଶ ଓ ବନ୍ଧୁମାନଙ୍କ ଅନୁରୋଧରେ ମହାତ୍ମାଜୀ ଛେଳି ଦୁଧ ଖାଇବାକୁ ଆରମ୍ଭ କଲେ। ତାଙ୍କର ଶରୀର ଅତିଶୟ ଦୁର୍ବଳ ହୋଇଯାଇଥାଏ। ସେ ବେଶି କଥା କହି ପାରନ୍ତି ନାହିଁ। ଅଧିକାଂଶ ସମୟ ବିଛଣାରେ ଶୋଇ ରହିଥାନ୍ତି। ଦିନେ ଦିନେ ତାଙ୍କର ଅଙ୍ଗବିଶେଷ ଆଉ ଚଳେ ନାହିଁ। ସୁତରାଂ ସେ ବିଛଣାରୁ ଉଠି ପାରନ୍ତି ନାହିଁ। ହାତ ଦୁଇଟି ଏକ ପ୍ରକାର ଅବଶ ହୋଇ ଯାଇଥାଏ। ହାତ ଉପରକୁ ଉଠାଇବାର ଶକ୍ତି ନ ଥାଏ। ଦିନେ ଦିନେ ସକାଳୁ ଉଠିଲା ବେଳକୁ ଗୋଡ଼ ଦୁଇଟି ଅବଶ ହୋଇଯାଏ। ଦିନେ ଦିନେ ଅଣ୍ଟା ଅବଶ ହୋଇଯାଏ। ଏପରି ଅବସ୍ଥାରେ ସେ ଅଧିକାଂଶ ସମୟରେ ବିଛଣାରେ ପଡ଼ି ରହି ସମସ୍ତ କାର୍ଯ୍ୟ କରନ୍ତି। ତାହାଙ୍କ ନିକଟକୁ ସବୁବେଳେ ନାନା ପ୍ରକାରର ବିଶିଷ୍ଟ ଲୋକ ଯାତାୟତ କରନ୍ତି। ଦେଶର ରାଜନୈତିକ ପରିସ୍ଥିତି ବିଷୟରେ ଆଲୋଚନା ହୁଏ। ଅନେକ ସମୟରେ ବିଠଲଭାଇ ପଟେଲ, ପଣ୍ଡିତ ମଦନମୋହନ ମାଲବ୍ୟ ଆସି ମହାତ୍ମାଜୀଙ୍କ ସହିତ ରାଜନୈତିକ ପରିସ୍ଥିତି ବିଷୟରେ ଆଲୋଚନା କରନ୍ତି।

ସେତେବେଳେ ବମ୍ବେଇରେ ମହାତ୍ମାଜୀଙ୍କ ନିକଟରେ ମହାଦେବ ଦେଶାଇ, ପ୍ରଫେସର କ୍ରିପଲାନୀ ଓ ମୁଁ ଏହି ତିନି ଜଣ ଥାଉଁ। ମହାତ୍ମାଜୀଙ୍କ ପରିଚର୍ଯ୍ୟା ଭାର ମୋ ଉପରେ ସଂପୂର୍ଣ୍ଣ ନିର୍ଭର ଥାଏ। ଏହି ସମୟରେ ପଞ୍ଜାବ ଭିତରୁ ଦୁଇଟି

ଲୋକ କୌଣସି ଉପାୟରେ ଲୁଚି ପଳାଇ ଆସି ବମ୍ବେଇରେ ମହାତ୍ମାଜୀଙ୍କ ନିକଟରେ ଉପସ୍ଥିତ ହେଲେ। ଏହି ପଳାଇ ଆସିଥିବା ଲୋକ ଦୁଇଟିଙ୍କ ନିକଟରୁ ପ୍ରଥମେ ପଞ୍ଜାବ ଅତ୍ୟାଚାରର ମର୍ମାନ୍ତିକ କାହାଣୀ ଶୁଣିବାକୁ ମିଳିଲା। ଏହି ସଂବାଦ ଯଥେଷ୍ଟ ନୁହେଁ। ପଞ୍ଜାବରେ କଣ ଘଟିଗଲା ଏବଂ ଏବେ କଣ ଘଟୁଛି ତାହା ଜାଣିବା ପାଇଁ ମହାତ୍ମାଜୀ ବ୍ୟଗ୍ର ହେଲା ଭଳି ଜଣାଗଲା। କିନ୍ତୁ ଆଇନ୍ ଅମାନ୍ୟ ଲଢ଼ାଇ ବନ୍ଦ କରିଥିଲା ବେଳେ ସରକାରୀ ନିଷେଧ ଆଜ୍ଞା ନ ମାନି ପଞ୍ଜାବ ପ୍ରଦେଶରେ ପ୍ରବେଶ କରିବା ଠିକ୍ ହେବ ନାହିଁ। ଏଣୁ ପୁଣି ସତ୍ୟାଗ୍ରହ ଆରମ୍ଭ କରିବାର କଳ୍ପନା ମହାତ୍ମାଜୀଙ୍କ ମନରେ ଖେଳିଲା। ସେ ନିଶ୍ଚୟ କଲେ ଯେ ଦଳେ ସତ୍ୟାଗ୍ରହୀ ଦେଶର ଚାରିଆଡୁ ଚାଲି କରି, ପଞ୍ଜାବ ଯାତ୍ରା କରିବେ। ପଞ୍ଜାବରେ ଘୋର ଅତ୍ୟାଚାର ହୋଇଛି ଏବଂ ଏବେ ମଧ୍ୟ ହେଉଛି, ଏପରି ଜନରବ ପ୍ରବଳ ଆକାର ଧାରଣ କରୁଛି। ଏପରି ଅବସ୍ଥାରେ, ସରକାର ପଞ୍ଜାବ ପ୍ରଦେଶକୁ କାହାକୁ ଛାଡୁ ନାହାନ୍ତି କିମ୍ବା ପଞ୍ଜାବର ଲୋକଙ୍କୁ ପଞ୍ଜାବ ଦେଶ ଛାଡ଼ି ଆସିବାକୁ ଅନୁମତି ଦେଉ ନାହାନ୍ତି। ଏହି ପରିସ୍ଥିତିକୁ କେତେଦିନ ନୀରବରେ ସହ୍ୟ କରିବାକୁ ହେବ। ଏହାର ପ୍ରତିକାର ଅବିଳମ୍ବେ କରିବାକୁ ପଡ଼ିବ। ଏହିପରି ଭାବି ସତ୍ୟାଗ୍ରହୀ ସଂଗ୍ରହ କାର୍ଯ୍ୟ ଚାଲିଲା। ଅନେକ ଆସି ମଧ୍ୟ ଏରୂପ ସତ୍ୟାଗ୍ରହରେ ଯୋଗ ଦେବା ପାଇଁ ନାମ ଲେଖାଇଲେ। କିନ୍ତୁ ସରକାରୀ ଆଇନ୍ ଅମାନ୍ୟ କରି ପଞ୍ଜାବ ଭିତରକୁ ପ୍ରବେଶ କଲେ ସରକାର ଗୁଳି ଚଳାଇ ପାରନ୍ତି—ଏହି ଭୟ ଥିବାରୁ ବହୁତ ଲୋକ ଏଥିପାଇଁ ବାହାରିଲେ ନାହିଁ। ମହାତ୍ମାଜୀ ହଠାତ୍ ସତ୍ୟାଗ୍ରହ ଲଢ଼ାଇ ବନ୍ଦ କରି ଦେଇଥିବାରୁ ଅନେକ ତାହାଙ୍କ ଉପରେ ବିରକ୍ତ ଓ ଅସନ୍ତୁଷ୍ଟ ହୋଇଥାନ୍ତି। ସତ୍ୟାଗ୍ରହୀ ସଂଖ୍ୟା ଅଧିକ ନ ହେବାର ଏହା ମଧ୍ୟ ଅନ୍ୟତମ କାରଣ ବୋଲି କୁହାଯାଇପାରେ।

ସେ ଯାହ ହେଉ ପଞ୍ଜାବ ପ୍ରଦେଶକୁ ସତ୍ୟାଗ୍ରହୀ ସେନା ପଠାଇବାର ଆୟୋଜନ ବମ୍ବେଠାରେ ଚାଲିଲା। ପ୍ରତ୍ୟେକ ଲୋକଙ୍କୁ ଦେଖି ଶୁଣି ମହାତ୍ମାଜୀ ନିଜେ ନାମ ଲେଖୁଥାନ୍ତି ବୋଲି କୁହାଯାଇପାରେ। ଏହି କାର୍ଯ୍ୟଟି ସେ ଦେଶରେ ଘୋଷଣା ପତ୍ର ଜାରୀ କରି କରୁ ନଥାନ୍ତି। ବମ୍ବେଇ ବ୍ୟତୀତ ଅନ୍ୟତ୍ର ମଧ୍ୟ ଏପରି ସତ୍ୟାଗ୍ରହୀ ସଂଗ୍ରହ କାର୍ଯ୍ୟ ହେଉ ନ ଥାଏ। ଏଥିପାଇଁ ମହାତ୍ମାଜୀ ନିଜେ ସବୁ ବୁଝି ବିଚାରି ସତ୍ୟାଗ୍ରହୀ ଗ୍ରହଣ କରୁଥାନ୍ତି। ସେ ଯାହା ହେଉ, ଏହିପରି କାର୍ଯ୍ୟରେ ମହାତ୍ମାଜୀ ମନ ବଳେଇ ଥିଲାବେଳେ, ଏରୂପ କାର୍ଯ୍ୟ ନ କରିବାପାଇଁ ଅନେକ ଆସି ତାଙ୍କ ସହିତ ଯୁକ୍ତି କରନ୍ତି। ଏଥିରେ ଅଯଥା ଲୋକ କ୍ଷୟ ହେବାର କଥାଟି ଅପର ପକ୍ଷ ଲୋକଙ୍କର ବଡ଼ ଯୁକ୍ତି ଥାଏ। ମହାତ୍ମାଜୀ କହନ୍ତି, ଏରୂପ ସତ୍ୟାଗ୍ରହ କରି ଯଦି ପଚାଶ ଲକ୍ଷ ଲୋକ ଗୁଳି ଖାଇ ମରନ୍ତି, ତେବେ ତହିଁରେ ସେ ଟିକିଏ ଦୁଃଖିତ ହେବେ ନାହିଁ, କିମ୍ବା ତଦ୍ୱାରା ଦେଶର କୌଣସି କ୍ଷତି ହେବାର ସମ୍ଭାବନା ନାହିଁ।

ପ୍ରତିବର୍ଷ ଦୁର୍ଭିକ୍ଷ, ପ୍ଲେଗ୍, ହଇଜା ଓ ମ୍ୟାଲେରିଆରେ ଲକ୍ଷ ଲକ୍ଷ ଲୋକ ମରି ଯାଉଛନ୍ତି। ତାହା ନ ହୋଇ, ଦେଶ କାର୍ଯ୍ୟରେ କିଛି ଲୋକ ମରିଯିବେ, ତହିଁରେ ଦେଶର ଇଷ୍ଟ ବ୍ୟତୀତ ଅନିଷ୍ଟ ଆଶଙ୍କା କରିବାର କିଛିମାତ୍ର କାରଣ ନାହିଁ। ଏହିପରି ଯୁକ୍ତ ତର୍କକୁ ଖଣ୍ଡନ କରି ମହାତ୍ମାଜୀ ସତ୍ୟାଗ୍ରହୀ ସଂଗ୍ରହ କରୁଥାନ୍ତି। ଦେଶର ସେତେବେଳର ପରିସ୍ଥିତିରେ ଏହିପରି କାର୍ଯ୍ୟକୁ କଳ୍ପନା କରି ଲୋକ ସାଧାରଣଙ୍କ ମନରେ ଭୟ ଜାତ ହେବା ଅସ୍ୱାଭାବିକ ନୁହେଁ।

ଇତିମଧ୍ୟରେ ପଞ୍ଜାବ ଅତ୍ୟାଚାର କାହାଣୀ କ୍ରମଶଃ ଫୁଟି ବାହାରିଲା। ପଞ୍ଜାବର ଦୁଃଖରେ ଭାରତରେ ସର୍ବତ୍ର ଲୋକେ ଥରହର ହୋଇ ଉଠିଲେ। ବ୍ୟବସାୟୀ, ରାଜନୀତିଜ୍ଞ, ସାଧାରଣ ପ୍ରଜା କାହାରି କ୍ରୋଧର ସୀମା ରହିଲା ନାହିଁ। ସମସ୍ତଙ୍କ ମୁହଁରୁ ବାହାରିଲା, ଏ ଦେଶରୁ ଇଂରେଜ ରାଜତ୍ୱ ଲୋପ ନ ହେଲେ ଆମ୍ଭର ଧନ ଜୀବନର କୌଣସି ଆଶା ଭରସା ନାହିଁ। ସମଗ୍ର ଭାରତରେ ଏହିପରି ଗୋଟିଏ କ୍ରୋଧରୂପକ ଦାବାନଳ ଜଳି ଉଠିଲା। ଏହିଠାରେ ମହାତ୍ମାଜୀ ତାଙ୍କର ମତ ପରିବର୍ତ୍ତନ କଲେ। ସେ ଦେଖିଲେ ଯେ, ପଞ୍ଜାବ ଅତ୍ୟାଚାର ଯାହା ଶୁଣା ଯାଉଛି, ତହିଁର ପ୍ରତିକାର କରିବାକୁ ହେଲେ ଦେଶର ଲୋକମତକୁ ନିୟନ୍ତ୍ରିତ କରିବା ଦରକାର। ବର୍ତ୍ତମାନ ଦେଶରେ, ଯେ ପ୍ରକାର ଭାବନା ଖେଳୁଛି, ଏଥିପ୍ରତି ଦୃଷ୍ଟି ନ ଦେଲେ ପରିଣାମ ଅତି ଭୀଷଣ ଆକାର ଧାରଣ କରିବ। ଲୋକମତ ଗଠନ ଓ ପରିଚାଳନା କରି, ପଞ୍ଜାବ ଅତ୍ୟାଚାରର ପ୍ରତିକାର ପାଇଁ ମହାତ୍ମାଜୀ ସତ୍ୟାଗ୍ରହୀ ପ୍ରେରଣ କରିବାର କଳ୍ପନା ତ୍ୟାଗ କଲେ। ସବୁବେଳେ ପଞ୍ଜାବ ଅତ୍ୟାଚାର ଘଟଣା ତାହାଙ୍କ ମନ ମଧ୍ୟରେ ଖେଳିଲା। ଏହି ସମୟରେ ଦେଶର ପରିସ୍ଥିତି ବିଷୟରେ ନିଜର ମତାମତ ଜଣାଇ ଲୋକମତକୁ ଗୋଟିଏ ଆଦର୍ଶର ଅନୁକୂଳରେ ପରିଚାଳନା କରିବାର କଳ୍ପନା କରି 'ୟଙ୍ଗ ଇଣ୍ଡିଆ' ଓ 'ନବ ଜୀବନ' ସାପ୍ତାହିକ ପତ୍ରିକା ଦୁଇଖଣ୍ଡି ପ୍ରକାଶ କଲେ। ସତ୍ୟାଗ୍ରହ ଲଢ଼ାଇ ବର୍ତ୍ତମାନ ପାଇଁ ଏକାବେଳକେ ସ୍ଥଗିତ ରହିଲା। ଅଧ୍ୟାପକ କ୍ରିପଲାନୀ ପଣ୍ଡିତ ମଦନମୋହନ ମାଳବ୍ୟାଙ୍କ ପ୍ରାଇଭେଟ ସେକ୍ରେଟାରୀ ଥିଲେ। ସତ୍ୟାଗ୍ରହ ଲଢ଼ାଇରେ ଯୋଗ ଦେବାପାଇଁ ସେ ମହାତ୍ମାଗାନ୍ଧୀଙ୍କ ନିକଟରେ ଆସି ରହିଥିଲେ। ବର୍ତ୍ତମାନ ସେ ପୁଣି ବେନାରସ ପଣ୍ଡିତ ମାଲବ୍ୟଙ୍କ ନିକଟକୁ ଫେରିଗଲେ। ମହାଦେବ ଦେଶାଇ ୟଙ୍ଗ ଇଣ୍ଡିଆ ଓ ନବ ଜୀବନ ପତ୍ରିକା ଦୁଇଟିର ଭାର ଗ୍ରହଣ କଲେ। ମହାତ୍ମାଜୀଙ୍କ ଅନ୍ୟାନ୍ୟ ସମସ୍ତ କାର୍ଯ୍ୟ ମୋ ଉପରେ ରହିଲା।

ଏହିଠାରେ ଏତିକିବେଳେ ମହାତ୍ମାଜୀଙ୍କ ମନ ସୂତାକଟା ଓ ଖଦଡ଼ ପ୍ରତି ଆକୃଷ୍ଟ ହୋଇଥିଲା। ବମ୍ବେଇରେ ସୂତାକଟା ଜାଣିଥିବା ଲୋକ କିଏ ଅଛି ଖୋଜାପଡ଼ିଲା। ପ୍ରଥମେ ଦୁଇ ଚାରି ଜଣ ମୁସଲମାନ ସ୍ତ୍ରୀ ସୂତା କାଟି ମହାତ୍ମାଜୀଙ୍କୁ ଭେଟି ଦେଲେ। ଶଙ୍କରଲାଲ ବ୍ୟାଙ୍କରଙ୍କ ମା ସୂତାକଟା ଜାଣିଥିଲେ। ସେ ସୂତା କାଟି ପ୍ରତି ସପ୍ତାହରେ

ଏକ ପାଉଣ୍ଡ ସୂତା ଦେଇଯାନ୍ତି। ମହାତ୍ମାଗାନ୍ଧୀ ବମ୍ବେଇରେ ଲେବରନମ ରୋଡ଼ ଶେଠ ରେବାଶଙ୍କର ଜଗଜ୍ଜୀବନଙ୍କ ଘରେ ରହିଲେ। ଶେଠ ରେବାଶଙ୍କର ଜଗଜ୍ଜୀବନ ମହାତ୍ମାଜୀଙ୍କୁ ପିଲାଦିନୁ ଜାଣନ୍ତି। ସେ ଜଣେ ବମ୍ବେଇର ହୀରା, ନୀଳା, ମଣି, ମାଣିକ୍ୟ ବ୍ୟବସାୟୀ। ଏହି ଲେବରନମ ରୋଡ଼ରେ ବାବୁ ଭୁବନାନନ୍ଦ ଦାସ ବସା କରି ରହିଥାନ୍ତି। ସେ ବମ୍ବେ ଟ୍ରାମ କମ୍ପାନୀରେ ଇଞ୍ଜିନିୟର କାମ କରୁଥାନ୍ତି। ଭୁବନାନନ୍ଦ ବାବୁଙ୍କ ବସାରେ ମିଷ୍ଟର କୋଚର ନାମକ ତାଙ୍କର ଜଣେ ପଞ୍ଜାବୀ ବନ୍ଧୁ ରହିଥାନ୍ତି। ମିଷ୍ଟର କୋଚରଙ୍କ ସ୍ତ୍ରୀ ଶ୍ରୀମତୀ ରମା ବାଈ ସୂତାକଟା ଜାଣନ୍ତି। ଭୁବନାନନ୍ଦ ବାବୁ ବସାକୁ ମୁଁ ପ୍ରାୟ ପ୍ରତିଦିନ ଯାଏଁ। ଏ ରମା ବାଈଙ୍କ ଠାରୁ କୌତୂହଳ ହୋଇ ମୁଁ ସୂତାକଟା ଶିକ୍ଷା କରେ। କାରଣ ସୂତାକଟା ଏପରି ଆକାର ଧାରଣ କରିବ ଏହା ସେତେବେଳେ କାହାର କଳ୍ପନାରେ ନ ଥିଲା। ସମସ୍ତଙ୍କର ଧାରଣା, ଏହା ଗୋଟିଏ ସ୍ତ୍ରୀଜାତି ସୁଲଭ କାମ। ତେଣୁ ମୁଁ କୌତୂହଳ ବଶତଃ ସୂତାକଟା ଶିଖିଥିଲି। ଏପରି ଭାବରେ ମୁଁ ସୂତା କାଟି ଜାଣିଲି ବୋଲି ମହାତ୍ମାଜୀ ଜାଣିପାରିଲେ। ଶ୍ରୀମତୀ ରମା ବାଈଙ୍କୁ ଆଣି ମୁଁ ମହାତ୍ମାଜୀଙ୍କୁ ଭେଟ କରାଇ ଦେଲି। ଏଣିକି ପ୍ରତିଦିନ ରମା ବାଈ ଆସି ମହାତ୍ମାଜୀଙ୍କ ନିକଟରେ ବସି ସୂତା କାଟନ୍ତି। ମୁଁ ମଧ କିଛି ସମୟ ସୂତା କାଟେ। ଶଙ୍କରଲାଲ ବ୍ୟାଙ୍କରଙ୍କ ମା, ରମା ବାଈ ଓ ମୁଁ ଏହି ତିନିଜଣ ସୂତା କାଟି ପାରିଥିବାର ଦେଖି ବମ୍ବେଇରେ ସୂତାକଟା ପ୍ରଚାର କରିବାର ଭାବନା ମାହାତ୍ମାଜୀଙ୍କ ମନରେ ଖେଳିଲା। ଶେଠ ରେବାଶଙ୍କର ଜଗଜ୍ଜୀବନଙ୍କ ବୈଠକଖାନା ଗୋଟିଏ ସୂତାକଟା ସ୍କୁଲରେ ପରିଣତ ହେଲା। କାଲବାଦେବୀ ରୋଡ଼ ନରନାରାୟଣଙ୍କ ମନ୍ଦିରରେ ଆଉ ଗୋଟିଏ ସୂତାକଟା କ୍ଲାସ୍ ସ୍ଥାପନ କରାଗଲା। କାଳାବାଡ଼ି ନାମକ ଗୋଟିଏ ଗଳିରେ ଆଉ ଗୋଟିଏ କ୍ଲାସ୍ ଖୋଲାହେଲା। ଏହି ସୂତାକଟା କ୍ଲାସ୍ ସବୁ ଚଳାଇବା, ହିସାବପତ୍ର ରଖିବା ଇତ୍ୟାଦି ସମସ୍ତ ମତେ କରିବାକୁ ପଡ଼େ। ମହାଦେବ ଭାଇ ୟଙ୍ଗ ଇଣ୍ଡିଆ ଓ ନବ ଜୀବନ କାଗଜର ଭାର ଗ୍ରହଣ କରିଥାନ୍ତି। ମତେ ମହାତ୍ମାଜୀଙ୍କ ବ୍ୟକ୍ତିଗତ ସେବା ଠାରୁ ଆରମ୍ଭ କରି ସୂତାକଟା ପ୍ରଚାର କରିବା ଆଦି ବହୁତ କାମ କରିବାକୁ ହୁଏ। ଏହି ସୂତାକଟା ଶିଖିବା ଓ ଶିଖେଇବା କାର୍ଯ୍ୟରୁ ଚରଖା ମରାମତି କାମ ଜାଣିବା ଆବଶ୍ୟକ ପଡ଼ିଲା। ଏ ଚରଖା ମରାମତି କରିବାକୁ ହେଲେ ବଢ଼େଇକାମ ଟିକିଏ ନ ଜାଣିଲେ ନ ଚଳେ। ସୁତରାଂ ମତେ ବଢ଼େଇ କାମ ମଧ ଶିଖିବାପାଇଁ ଆବଶ୍ୟକ ପଡ଼ିଲା। 'ଗୋଖଲେ ଏଡୁକେଶନ ସୋସାଇଟ୍' ନାମରେ ବମ୍ବେଇରେ ଗୋଟିଏ ଅନୁଷ୍ଠାନ ଥାଏ। ସେମାନେ ବମ୍ବେଇରେ ଗୋଟିଏ ସ୍କୁଲ ସ୍ଥାପନ କରିଥାନ୍ତି। ଏହି ସ୍କୁଲରେ ବଢ଼େଇ କାମ ଶିକ୍ଷା ଦିଆଯାଏ। ଏହିଠାରୁ ପ୍ରତିଦିନ ମତେ ଯିବାକୁ ହୁଏ। ଏହିପରି ନାନା କାର୍ଯ୍ୟର ଭାର ମୋ ଉପରେ ପଡ଼ିଲା। ଦିନ ରାତି ଖଟି ଖଟି ମୁଁ କାମ

ଶେଷ କରି ପାରେ ନାହିଁ। ରାତିରେ କେଉଁ ଦିନ ମୁଁ ଦୁଇଘଣ୍ଟାରୁ ବେଶି ଶୋଇଛି ବୋଲି ମୋର ମନେ ହୁଏ ନାହିଁ। ଏହିସବୁ କାର୍ଯ୍ୟକୁ ବାଦ ଦେଲେ ପ୍ରତିଦିନ ମତେ ହିନ୍ଦୀ ପଢ଼ିବାକୁ ହେଉଥାଏ। ମତେ ହିନ୍ଦୀ ପଢ଼ାଇବାପାଇଁ ମହାତ୍ମାଜୀ ଜଣେ ହିନ୍ଦୀ ଶିକ୍ଷକ ନିଯୁକ୍ତ କରିଥାନ୍ତି। ସେ ପ୍ରତି ସନ୍ଧ୍ୟାରେ ୭ଟାରୁ ୯ଟା ପର୍ଯ୍ୟନ୍ତ ଆସି ମତେ ହିନ୍ଦୀ ପଢ଼େଇ ଯାନ୍ତି। ମହାତ୍ମାଜୀଙ୍କ ଆଦେଶ, ସବୁ କାମ ଛାଡ଼ି ପ୍ରତ୍ୟହ ହିନ୍ଦୀ ଶିକ୍ଷକଙ୍କ ସାହାଯ୍ୟରେ ଦୁଇଘଣ୍ଟା ମତେ ହିନ୍ଦୀ ପଢ଼ିବାକୁ ହେବ।

ପ୍ରତିଦିନ ମୁଁ ଭୋର ତିନିଟାରେ ନିଦରୁ ଉଠିଯାଏ। ମହାତ୍ମାଜୀ ଉଠିବା ପୂର୍ବରୁ ମୁଁ ମୋର ସ୍ନାନ, କସରତ ଓ ପ୍ରାର୍ଥନାଦି ସମସ୍ତ ପ୍ରକାର ନିତ୍ୟକର୍ମ ଶେଷ କରିଦିଏ। ମହାତ୍ମାଜୀ ପ୍ରାୟ ଭୋର ୫ଟାରେ ଶଯ୍ୟା ତ୍ୟାଗ କରନ୍ତି। ସେ ଉଠି ତାଙ୍କର ଶୌଚାଦି କ୍ରିୟା ଶେଷ କରୁ କରୁ ମୁଁ ତାହାଙ୍କ ବିଛଣା ଉଠାଇ, ଘରଦ୍ୱାର ସଫା କରିଦିଏ। ଦିନ ବେଳେ ମହାତ୍ମାଜୀଙ୍କ ବସିବା ଘରେ ଗଦି ବିଛଣା ବିଛାଇ ଦିଏ। ମହାତ୍ମାଜୀ ସେଠାରେ ଆସି ବସିଲା ମାତ୍ରକେ ତାହାଙ୍କୁ ତାହାଙ୍କ ଖାଇବା ପଦାର୍ଥ ଦେଇ, ମୁଁ କିଛି ଖାଇ ନିଏ ଏବଂ ଗତ ଦିବସର ବାକି ହିସାବ ପତ୍ର ଲେଖି ବସେ। ସକାଳ ସାତଟାରୁ ଆଠଟା ପର୍ଯ୍ୟନ୍ତ ଶେଠ ରେବା ଶଙ୍କରଙ୍କ ଘରେ ଚାଲୁଥିବା ଚରଖା କ୍ଲାସ୍ ଦେଖେ। ଏହି କ୍ଲାସ୍‌କୁ ଅଧିକାଂଶ ସ୍କୁଲ କଲେଜର ଛାତ୍ର ସୂତାକଟା ଶିଖିବାକୁ ଆସନ୍ତି। ଏହି କାମ ସାରି ଦଶଟା ପର୍ଯ୍ୟନ୍ତ ବାଳବାଦେନୀ ରୋଡ଼ ନରନାରାୟଣଙ୍କ ମନ୍ଦିରରେ ବସିଥିବା କ୍ଲାସ୍ ପରିଦର୍ଶନ କରିବାକୁ ଯାଏ। ପ୍ରତ୍ୟେକ କ୍ଲାସ୍‌ରେ ମୁଁ ମୋର ସାହାଯ୍ୟକାରୀ ତିଆର୍ କରି ନେଇଥାଏ। ମୁଁ ଯାଇ ପରିଦର୍ଶନ ଓ ପରିଚାଳନା କରେ। ଦଶଟାରେ ବସାକୁ ଫେରି ଆସି ମହତ୍ମାଜୀଙ୍କ ସେବା କାର୍ଯ୍ୟ କରେ। ମହାତ୍ମାଜୀଙ୍କ ସେବା କହିଲେ ଅନେକ କାମ ଅଛି। ତାଙ୍କର ନାନା ପ୍ରକାର ଚିକିତ୍ସା ହେଉଥାଏ। ଅଙ୍ଗବିଶେଷ ଅଚଳ ହୋଇ ଯାଉଥିବାରୁ ପ୍ରତିଦିନ ଗୋଟାଏ ତେଲ ଘଷିବାକୁ ହୁଏ। ବିଜୁଳିବତୀ ସେକ ଦେବାକୁ ପଡ଼େ। ପ୍ରତ୍ୟହ ଦଶଟାରୁ ଏଗାରଟା ପର୍ଯ୍ୟନ୍ତ ମହାତ୍ମାଜୀଙ୍କ ପୀଡ଼ାଗ୍ରସ୍ତ ଅଙ୍ଗର ଏହି ଉପଚାର କରାଯାଏ। ଏହା କିପରି କରିବାକୁ ହେବ, ତାହା କେବଳ ମୁଁ ଶିଖିଥାଏ। ସୁତରାଂ ମୋ ଛଡ଼ା ସେହି ଚିକିତ୍ସା କରିବାକୁ ସେତେବେଳେ ଆଉ କେହି ନ ଥାନ୍ତି। ଏହାପରେ ମହାତ୍ମାଜୀ ସ୍ନାନ କରିବାକୁ ଯାନ୍ତି। ପ୍ରତିଦିନ ସେ ଗରମ ପାଣିରେ ସ୍ନାନ କରନ୍ତି। ସେ ସ୍ନାନାଦି କ୍ରିୟା ସାରୁ ସାରୁ ମୁଁ ତାହାଙ୍କ ଖାଇବା ପଦାର୍ଥ ତିଆରି କରି ଆଣି ଦେଇଯାଏ। ସେତେବେଳକୁ ମହାତ୍ମାଜୀ ଛେଳି ଦୁଧ ଓ ଫଳ ଖାଉଥାନ୍ତି। ସେ ଖାଇ ସାରିଲା ବେଳକୁ ମୁଁ ମୋର ଖାଇବା କାର୍ଯ୍ୟ ବି ଶେଷ କରିଦିଏ। ଏହିପରି ଦିନ ବାରଟା ହୋଇଯାଏ। ବାରଟାରୁ ଦୁଇଟା ପର୍ଯ୍ୟନ୍ତ ବଢ଼େଇକାମ ଶିଖିବାକୁ ଯାଏ। ଦୁଇଟାରୁ ଚାରିଟା ପର୍ଯ୍ୟନ୍ତ କାଳବାରୋଡ଼ ଚରଖା କ୍ଲାସ୍। ସେଠାରୁ ଶେଠ

ରେବାଶଙ୍କରଙ୍କ ଘରକୁ ଫେରିଆସେ। ପ୍ରାୟ ୫ଟା ବେଳକୁ ମହାତ୍ମାଜୀ ତାଙ୍କର ସନ୍ଧ୍ୟା ଭୋଜନ ଶେଷ କରନ୍ତି। ଏହି ଚାରିଟାରୁ ୫ଟା ସମୟ ମଧ୍ୟରେ ମୁଁ ମୋର ଶୌଚାଦି କାର୍ଯ୍ୟ ଶେଷ କରେ। ନିଜର ଲୁଗାପଟା ସାବୁନ ଦେଇ ସଫା କରେ ଏବଂ ମହାତ୍ମାଜୀଙ୍କୁ ଖାଇବାକୁ ଦିଏ। ଏହାପରେ ପ୍ରାୟ ପ୍ରତିଦିନ ବ୍ୟକ୍ତିବିଶେଷଙ୍କ ଘରକୁ ସୂତାକଟା ଶିଖାଇବା ପାଇଁ ଯିବାକୁ ପଡ଼େ। ଯେଉଁଦିନ କୁଆଡ଼େ ଯିବାର ନ ଥାଏ ସେଦିନ ସମୁଦ୍ରକୂଳ ଆଡ଼େ ମୁଁ ବୁଲିବାକୁ ଚାଲିଯାଏ। ତାହାପରେ ୭ଟାରୁ ୯ଟା ପର୍ଯ୍ୟନ୍ତ ହିନ୍ଦୀ ଅଧ୍ୟୟନ କରେ। ରାତି ୯ଟାରୁ ୧୦ଟା ପର୍ଯ୍ୟନ୍ତ ପ୍ରତିଦିନ ଏକ ଘଣ୍ଟା କରି ମୁଁ ସୂତା କାଟେ। ଏହାପରେ ପୁଣି ରାତ୍ର ୧୧ଟା ପର୍ଯ୍ୟନ୍ତ ବିଜୁଳିବତୀ ସେକ ଦେବା ଆଦି ଚିକିତ୍ସା ମହାତ୍ମାଜୀଙ୍କର କରିବାକୁ ପଡ଼େ। ମହାତ୍ମାଜୀ ସବୁବେଳେ ପଞ୍ଜାବ ବିଷୟ ନେଇ କାର୍ଯ୍ୟବ୍ୟସ୍ତ ରହିଥାନ୍ତି। ସବୁବେଳେ ବସି ଲେଖା ଲେଖି କରାଉଥାନ୍ତି। ନିଜେ ହାତରେ ଲେଖିବାର ଶକ୍ତି ନ ଥାଏ। ସେ ଶୋଇ ରହି ଡାକନ୍ତି, ମହାଦେବ ଦେଶାଇ ବସି ଲେଖୁଥାନ୍ତି। ରାତି ଏଗାରଟା ବାରଟା ପର୍ଯ୍ୟନ୍ତ ମହାତ୍ମାଜୀ ଏହି କାମ ପ୍ରତ୍ୟହ କରନ୍ତି। ମୁଁ ରାତି ଏଗାରଟା ପରେ ବସି ହିସାବ କିତାବ ଲେଖେ। ଅନେକ ଚିଠିପତ୍ର ଚିଠାର ନକଲ ଲେଖି ଫାଇଲ କରିବାକୁ ପଡ଼େ। ଏହିପରି କାମ କରୁ କରୁ ଦିନେ ଦିନେ ରାତ୍ର ଦୁଇଟା ବାଜିଯାଏ। ଯେଉଁ ଦିନ ଏପରି ଦୁଇଟା ରାତ୍ରି ହୋଇଯାଏ ସେଦିନ ମୁଁ କେବଳ ଏକ ଘଣ୍ଟା ଶୋଇବାକୁ ପାଏ। ଏହିପରି ଭାବରେ ବମ୍ବେଇରେ ମହାତ୍ମାଜୀଙ୍କ ସେବାରେ ମୋର ଜୀବନ ଅତିବାହିତ ହେଉଥାଏ। ମହାତ୍ମାଜୀଙ୍କ ସେବାଠାରୁ ବଳି ଆଉ ଅଧିକ ଦେଶ କାର୍ଯ୍ୟ କିଛି ଅଛି ବୋଲି ମୋର ବିଶ୍ୱାସ ନ ଥାଏ କି ଏବେ ମଧ୍ୟ ନାହିଁ।

ବମ୍ବେଇରେ ମହାତ୍ମାଜୀଙ୍କ ନିକଟରେ ମୁଁ ଏହିପରି ଭାବରେ ରହିଲି। ଦିନ ରାତି ଅବିଶ୍ରାନ୍ତ ପରିଶ୍ରମ କରିବାକୁ ପଡ଼େ। ଆଶ୍ରମରେ ଥାଇ ଲୁଗାବୁଣା କାର୍ଯ୍ୟ କିଛି କିଛି ଶିଖିଥାଏ। ସୂତା କାଟିବା ଓ କଟାଇବା କାର୍ଯ୍ୟରେ ବର୍ତ୍ତମାନ ମୁଁ ହେଉଛି ପ୍ରଥମ। ଆଶ୍ରମରେ କେହି ସୂତାକଟା ଶିଖି ନ ଥାନ୍ତି। ମୁଁ କିପରି ଭଲ ସୂତା କାଟିବି ଏଥିପାଇଁ ସବୁବେଳେ ଗୋଟାଏ ଜିଦ୍ ଥାଏ। ଭଲ ସୂତା କାଟିବାକୁ ହେଲେ ଭଲ ଅରଟଟିଏ ଦରକାର। ସୁତରାଂ ମୁଁ ମୋ ପାଇଁ ଗୋଟିଏ ଭଲ ଅରଟ ବାଛି, ତହିଁରେ ସିଧା ସଳଖ ଟାକୁଡ଼ି ଲଗେଇ ରଖିଥାଏ। ପ୍ରତିଦିନ ଦିନ ୧୨ଟା ପରେ ମୁଁ ବଢ଼େଇ କାମ ଶିଖିବାକୁ ଯାଏ। ଏହି ସମୟରେ ଶେଠ ରେବାଶଙ୍କରଙ୍କ ବୈଠକଖାନା ଚରଖା କ୍ଲାସ୍‌ର ଭାର ଶ୍ରୀମତୀ ରମାବାଈ ଓ ଶଙ୍କରଲାଲ ବ୍ୟାଙ୍କରଙ୍କ ମାଙ୍କ ଉପରେ ଥାଏ। ଅନେକ ବଡ଼ ବଡ଼ ଶେଠଙ୍କ ସ୍ତ୍ରୀ ଓ କନ୍ୟା ସୂତାକଟା ଶିଖିବାକୁ ଆସନ୍ତି। ସୂତାକଟା ଶିଖିଲା ପରେ ଖଣ୍ଡିଏ ଅରଟ ନେଇ ସେମାନେ ନିଜ ନିଜ ଘରେ ବସି ସୂତା କାଟନ୍ତି। ଏହିପରି ଅନେକ ଲୋକ ଘରେ ସୂତା କାଟୁଥାନ୍ତି। ସେମାନଙ୍କ

ପ୍ରତ୍ୟେକଙ୍କ ଘରକୁ ଯାଇ ସୂତା ଆଣିବା ଅଣ୍ଠି ସଜାଡ଼ି ଦେବା ମୋର ଗୋଟିଏ କାର୍ଯ୍ୟ । କିନ୍ତୁ ସୂତାକଟା ଶିଖି ଚରଖାଟିଏ ନେଇ ଘରକୁ ଗଲାବେଳକୁ ମୁଁ ମୋ ପାଇଁ ବାଛି ରଖିଥିବା ଚରଖାଟି କେନ୍ହ କେନ୍ହ ନେଇ ଯାନ୍ତି । ମୋ ଚରଖାଟି କିଏ ନେଇ-

ଗଲେ ମୋର ଦିନେ ଦୁଇଦିନ ପାଇଁ ସୂତାକଟା କାର୍ଯ୍ୟ ଏକାବେଳକେ ବନ୍ଦ ହୋଇଯାଏ । ତେଣୁ ମୁଁ ମୋର ଚରଖାଟିକୁ ଲୁଚାଇ ରଖିଲି । ସମସ୍ତେ ଜାଣି ପାରିଲେ ଯେ ମୁଁ ମୋ ପାଇଁ ଯେଉଁ ଚରଖାଟି ସଜାଡ଼େ ତହିଁରେ ଭଲ ସୂତା କାଟିହୁଏ । ଏହା ଜାଣି ମୁଁ ଲୁଚାଇ ରଖିଥିବା ଚରଖାଟି ମହାତ୍ମାଜୀଙ୍କୁ କହି କେହି କେହି ନେଇଯାନ୍ତି । ମୁଁ ଭିନ୍ନ ଭିନ୍ନ ସ୍ଥାନରେ ଲୁଚାଇ ରଖେ । ମହାତ୍ମାଜୀ ନିଜେ ଯାଇ ଖୋଜି ବାହାର କରନ୍ତି । ଯେ ମାଗେ ତାକୁ ଦେଇ ଦିଅନ୍ତି ।

ନିଜପାଇଁ ସଜାଡ଼ିଥିବା ଚରଖାଟି ଅନ୍ୟ କାହାକୁ ଦେବାକୁ ମୁଁ କୁଣ୍ଠିତ । ସବୁବେଳେ ଭଲ ଚରଖା ଏବଂ ତାକୁଡ଼ି ମିଳେ ନାହିଁ । ସେତେବେଳେ ବର୍ତ୍ତମାନ ପରି ତାକୁଡ଼ି ଚରଖାର ଏତେ ଉନ୍ନତି ହୋଇ ନ ଥିଲା । ବଢ଼େଇ ଯେଉଁ ଚରଖା ସବୁ ତିଆରି କରିଦିଏ, ସେ ପ୍ରତ୍ୟେକକୁ ମୁଁ ପୁଣି କିଛି କିଛି ହଣାକଟା କରି ସଜାଡ଼ିବାକୁ ପଡ଼େ । ତାକୁଡ଼ି ସିଧା ନ ଥାଏ । ବହୁ ଯତ୍ନରେ ତାକୁଡ଼ି ସିଧା କରିବାକୁ ହୁଏ । ଏପରି ଅବସ୍ଥାରେ ମୋ ପାଇଁ ରଖିଥିବା ଚରଖାଟି ବାରମ୍ବାର ଏପରି କିଏ ନେଇ ଯିବାର ଦେଖି ମତେ ଟିକିଏ ବିରକ୍ତିକର ବୋଧହୁଏ । ମୁଁ ଜାଣି ନ ଥାଏ ଯେ ମହାତ୍ମାଜୀ ଏପରି କରୁଛନ୍ତି ବୋଲି । ମୁଁ ଦିନେ ଫେରିଲି ବେଳକୁ ରମାବାଈ ମୋର ଚରଖାଟି ନେଇ ଘରକୁ ଫେରୁଥିବାର ଦେଖିଲି । ସେ ମୋର ଚରଖା କିପରି ପାଇଲେ ବୋଲି ପଚାରିବାରୁ ତାଙ୍କଠାରୁ ସମସ୍ତ ରହସ୍ୟ ବୁଝି ପାରିଲି । ମୁଁ ହଠାତ୍ ଆସି ମହାତ୍ମାଜୀଙ୍କୁ କହିଲି ଯେ, ସେ ମୋର ଚରଖା କାହାକୁ ଆଉ ଏଣିକି ଦେବେ ନାହିଁ । ମୋ କଥା ଶୁଣି ମହାତ୍ମାଜୀ ଅବଶ୍ୟ କିଛି ଉତ୍ତର ଦେଲେ ନାହିଁ । ମୁଁ ଏଣିକି ବାହାର କାର୍ଯ୍ୟରେ ଗଲାବେଳେ ମୋର ଚରଖାଟିକୁ ନେଇ ଛାତ ଉପରେ ଲୁଚାଇ ରଖେ । ମୁଁ ଯେତେ ଲୁଚାଇଲେ ମଧ୍ୟ ମହାତ୍ମାଜୀ ଇଚ୍ଛା କରି ନିଜେ ଯାଇ ଖୋଜିଆଣି ମୋର

ଚରେଖାଟିକୁ ଅନ୍ୟ କାହାକୁ ଦେଇ ବଦାୟୁ କରି ଦେଇଥାନ୍ତି । ଚରଖା ଦେଲାବେଳେ କହନ୍ତି, "ଚରଖା ଲେକର ଭାଗ୍ ଯାଓ, ଅଭି ଗୋବିନ୍ଦ ବାବୁ ଆଯାଏଗା । ଔର୍ ଅନେସେ ମେରେ ସାଥ୍ ଝଗଡ଼ା କରେଗା ।" ମୁଁ ବାହାରୁ ଘରକୁ ଫେରି ଆଗ ଚରଖା ଅଛି କି ନାହିଁ ଦେଖିବାକୁ ଯାଏ । ଚରଖା ନ ପାଇ ମହାତ୍ମାଜୀଙ୍କ ସହିତ ଆସି ଝଗଡ଼ା କରେ । ସେ ତାଙ୍କର ସ୍ନେହସୂଚକ କଥାରେ ମୋତେ ଭୁଲାଇ ଦଅନ୍ତି । ତାହାଙ୍କର ପଦେ କଥା ମୋର ସମସ୍ତ ପରିଶ୍ରମକୁ ଲାଘବ କରିଦଏ । ସେ ମତେ ଅତିମାତ୍ରାରେ ସ୍ନେହ କରୁଥାନ୍ତି । ମୋର କାର୍ଯ୍ୟ ଓ ପରିଶ୍ରମରେ ସେ ଅତିଶୟ ସନ୍ତୁଷ୍ଟ । ଅନେକ ସମୟରେ ଆଶ୍ରମରେ ସନ୍ଧ୍ୟା ପ୍ରାର୍ଥନା ପରେ ସେ ମୋ ବିଷୟ ନେଇ ଅନ୍ୟମାନଙ୍କ ଆଗରେ ପ୍ରଶଂସା କରନ୍ତି । ମୁଁ କାଟିଥିବା ସୂତାର ନମୁନା ଆଶ୍ରମକୁ ନେଇ ସମସ୍ତଙ୍କୁ ଦେଖାନ୍ତି ।

ମହାତ୍ମାଜୀଙ୍କ ସ୍ନେହର ସୀମା ନାହିଁ । ତାଙ୍କର ସ୍ନେହ ଓ ବିଶ୍ୱାସ ଅସୀମ ହେଲେ ମଧ୍ୟ ଅତି ସାମାନ୍ୟ ତ୍ରୁଟିରେ ତାଙ୍କର କଥା ଅତି କଠିନ । ସେତେବେଳେ ତାହାଙ୍କ ହୃଦୟ ପାଷାଣଠାରୁ କଠିନ ବୋଲି ବୋଧ ହୁଏ । ତାଙ୍କ କଥା ଶୁଣିଲେ ତାଙ୍କ ପାଖ ଛାଡ଼ି ପଳାଇ ଆସିବାକୁ ଇଚ୍ଛା ହୁଏ । ସେ ଏପରି କଥା କହନ୍ତି ଯହିଁରେ ମନରେ ଦାରୁଣ ଦୁଃଖ ହୁଏ । ତାଙ୍କ କଥାରେ କେହି ନ କାନ୍ଦି ରହି ପାରିବ ନାହିଁ । ଯେଉଁମାନଙ୍କର ତାହାଙ୍କ ସହିତ ଘନିଷ୍ଠ ସମ୍ବନ୍ଧ ରହିଛି, ସେମାନେ ସମସ୍ତେ ତାହାଙ୍କ କଥାରେ କାନ୍ଦିଛନ୍ତି । କସ୍ତୁରୀ ବାଈ ବା ମହାଦେବ ଦେଶାଇ ପ୍ରଭୃତି କଏ ଯେ ନ କାନ୍ଦିଛି ଏପରି ନୁହେଁ । ମହାତ୍ମାଜୀ ମୋର କାର୍ଯ୍ୟଦ୍ୱାରା ମୋଠାରେ ଅତ୍ୟନ୍ତ ସନ୍ତୁଷ୍ଟ ଥିଲେ ମଧ୍ୟ ସାମାନ୍ୟ ତ୍ରୁଟି ବୋଲି କିଛି ଯଦି ତାଙ୍କୁ ଦେଖାଯାଏ ତହିଁରେ ସେ ଏକାବେଳକେ କଠୋର ହୋଇ ବସନ୍ତି । ଦିନେ ସକାଳୁ ଖାଇବାକୁ ଦେଲା ବେଳକୁ ମହାତ୍ମାଜୀଙ୍କ ଖାଇବା ଛେଳି ଦୁଧରେ ଗୋଟିଏ ରୁମ ଦେଖାଗଲା । ଏହା ହେଲା ମୋର

ବଡ଼ ଦୋଷ । ଏଥିପାଇଁ ମହାତ୍ମାଜୀ ଦୁଧ ନ ଖାଇ ଛାଡ଼ିଦେଲେ । ଏଥିପାଇଁ ମତେ ଶାସ୍ତି ଦେବାକୁ ସେଦିନ ସେ ଆଉ ଖାଇବେ ନାହିଁ ଏବଂ ଏଣିକି ମୋର ସେବା ଗ୍ରହଣ କରିବେ ନାହିଁ ବୋଲି କହିଲେ । ଏହି ଟିକିକ କଥାରେ ଏତେ ବଡ଼ ଶାସ୍ତି । ମହାତ୍ମାଜୀଙ୍କଠାରୁ ଏପରି କଥା ଶୁଣି ମୋ ମନ ଏକାବେଳକେ ଖରାପ ହୋଇଗଲା । ଏପର୍ଯ୍ୟନ୍ତ ତାଙ୍କଠାରୁ ମୁଁ ଏପରି କଥା ଶୁଣିବାକୁ କେବେହେଁ ପାଇ ନାହିଁ । ସବୁ-ବେଳେ ତାହାଙ୍କଠାରୁ ସ୍ନେହ ଓ ଆଦର ପାଇଛି । କିନ୍ତୁ ଦୁଧରୁ ଲୁମ ଗୋଟାଏ ବାହାରିବାର କାରଣ ଦେଖିଲେ ମୋର କିଛି ଦୋଷ ହେବ ନାହିଁ ବୋଲି ମୋର ବିଶ୍ୱାସ । ମୁଁ ପ୍ରତିଦିନ ଦୁଧ ଛାଣି ଗରମ କରେ । କିନ୍ତୁ ସେଦିନ ତାହା ମୁଁ ନିଜେ କରି ନାହିଁ । ଶେଠ ରେବାଶଙ୍କରଙ୍କ ପାଚକ କାମ କରୁଥିବା ମହାରାଜ ଦୁଧକୁ ଛାଣି ଗରମ କରି ରଖିଥିଲା । ଶେଠ ରେବାଶଙ୍କରଙ୍କ ମହାରାଜ ମାସକୁ ପଚିଶ ଟଙ୍କା ଦରମା ନିଏ । ତାଙ୍କର ହୀରା, ସୁନା, ରୁପା ଦୋକାନରେ ହିସାବ ରଖେ । ସୁତରାଂ ସେ ନିଜେ ଦୁଧ ଛାଣି ଗରମ କରିଛି ବୋଲି କହିବାରୁ ତା କଥାକୁ ବିଶ୍ୱାସ ନ କରିବାର କାରଣ କିଛି ନ ଥିଲା । ସେ ଜଣେ ଦାୟିତ୍ୱଜ୍ଞାନ ଥିବା ବ୍ୟକ୍ତି । ଏପରି ଅବସ୍ଥାରେ ତା କଥାକୁ ବିଶ୍ୱାସ ନ କରନ୍ତି କିପରି ! ସୁତରାଂ ମୁଁ ନିର୍ଦ୍ଦୋଷ ବୋଲି ମୋର ବିଶ୍ୱାସ । ମହାତ୍ମାଜୀଙ୍କ ବିବେଚନାରେ ମୁଁ ତାଙ୍କୁ ଖାଇବାକୁ ଦେବାର ଦାୟିତ୍ୱ ଗ୍ରହଣ କରିଥିବା ସ୍ଥଳେ, ସେଥିରେ ଯଦି କିଛି ତ୍ରୁଟି ରହିଲା ସେଥିପାଇଁ ମୁଁ ଦାୟୀ । ସୁତରାଂ ମତେ ଦଣ୍ଡ ଭୋଗିବାକୁ ହେବ । ମହାତ୍ମାଜୀଙ୍କ ଏହି ଦଣ୍ଡ ବିଧାନରେ ମୁଁ ଟିକିଏ ବିଚଳିତ ହୋଇଗଲି । ସେଦିନ ମୁଁ ଆଉ ଖାଇଲି ନାହିଁ । ଯେପରି ଯାହା କାର୍ଯ୍ୟ କରିବାର ଦିନଯାକ ସେପରି କଲି । ସନ୍ଧ୍ୟାବେଳକୁ ମହାତ୍ମାଜୀଙ୍କୁ ପୁଣି ତାଙ୍କ ଖାଇବା ଦୁଧ ଓଟେର ନେଇ ଦେବାରେ ସେ ଆଉ କିଛି ନ କହି ମୋ ହାତରୁ ଅବଶ୍ୟ

ଗ୍ରହଣ କଲେ । ଏହି ଘଟଣାରେ ମୋ ମନରେ ଚିକ୍କଏ ଭୟ ହୋଇଗଲା । ଏଣିକି ପ୍ରତ୍ୟେକ କାର୍ଯ୍ୟ ମୁଁ ନିଜେ ଦେଖି ଶୁଣି କରେ । ଯେ ଯେତେ ଜାଣିବାର ଅବା ପାରିବାର ହେଲେ ମଧ୍ୟ ତାହା ଉପରେ ନିର୍ଭର କରି ମୁଁ ନିଶ୍ଚିନ୍ତ ରହିପାରେ ନାହିଁ । ମହାତ୍ମାଜୀ କହନ୍ତି, ଦେଶପାଇଁ ଜୀବନ ଉତ୍ସର୍ଗ କରିବା ବ୍ୟକ୍ତି ସବୁବେଳେ ସବୁ କାର୍ଯ୍ୟରେ ସାବଧାନ ରହିବା ଉଚିତ । ଦାୟିତ୍ୱ ମୁଣ୍ଡେଇଥିବା କୌଣସି କାର୍ଯ୍ୟରେ କିଛି ତ୍ରୁଟି ଦେଖାଯିବା, ଦେଶସେବକ ପକ୍ଷରେ ଶୋଭନୀୟ ନୁହେ, କିମ୍ବା କ୍ଷମଣୀୟ ମଧ୍ୟ ନୁହେ । ଏହି କଥାଟି ମୋର ହୃଦୟରେ ଅଙ୍କିତ ହୋଇ ଯାଇଛି । ଏହାଦ୍ୱାରା ମୋର ପ୍ରକୃତି ବଦଳି ଯାଇଛି । ମୁଁ କାହାର କାର୍ଯ୍ୟରେ ସନ୍ତୋଷ ପାଇ ପାରୁ ନାହିଁ । ମୁଁ ଯେପରି ମନ ପ୍ରାଣ ଦେଇ ଖଟି ପାରେ, ସେହିଭଳି ଖଟିବାର ନ ଦେଖିଲେ ମୁଁ ବିରକ୍ତ ହୋଇ-ଉଠେ । ଏଥିପାଇଁ ମୋ ନିକଟରେ କେହି କର୍ମୀ ରହି କାମ କରିପାରନ୍ତି ନାହିଁ । ଫଳରେ ମୁଁ ବର୍ତ୍ତମାନ ଜଣେ ନିହାତି ଚଡ଼ା ପ୍ରକୃତିର ଲୋକ ବୋଲି ପରିଚିତ ।

ସେ ଯାହା ହେଉ, ପଞ୍ଜାବ ଜାଲିଅନ୍‌ୱାଲାବାଗ୍ ହତ୍ୟାକାଣ୍ଡ ବିଷୟ ବର୍ତ୍ତମାନ ଜଣାପଡ଼ିଲାଣି । ପଞ୍ଜାବରେ ସୈନିକ ଅଇନ୍ ଜାରି ହୋଇ କିପରି ଅମାନୁଷିକ ଶାସନ-ବ୍ୟବସ୍ଥା ଚାଲିଛି, ତାହା ଆଉ କାହାକୁ ଅବିଦିତ ନାହିଁ । ବମ୍ବେଇ ସହରରେ ଧନୀ ଦରିଦ୍ର ନିର୍ବିଶେଷରେ ସମସ୍ତଙ୍କ ହୃଦୟରେ ପ୍ରତିହିଂସା-ବହ୍ନି ଜ୍ୱଳି ଉଠିଛି । ପଞ୍ଜାବର ଅତ୍ୟାଚାର-ପ୍ରପୀଡ଼ିତ ଲୋକଙ୍କର ଉପରେ ସେବା ଶୁଶ୍ରୁଷା ହେବ ମହାତ୍ମାଜୀ ବର୍ତ୍ତମାନ ଏଥିପାଇଁ ଚିନ୍ତିତ । ସୈନିକ ଅଇନ ଉଠିଯାଇଛି । ପଣ୍ଡିତ ମାଲବ୍ୟ ପଞ୍ଜାବରେ ପ୍ରବେଶ କରି ଏହି ସେବା କାର୍ଯ୍ୟ ଆରମ୍ଭ କରିଛନ୍ତି । ବମ୍ବେଇରୁ ଅର୍ଥ ସାହାଯ୍ୟ ପଠାଇବାପାଇଁ ମହାତ୍ମାଜୀ ଚେଷ୍ଟା କରୁଛନ୍ତି । ପଞ୍ଜାବ ପ୍ରବେଶ କରିବାପାଇଁ ନିଷେଧ ଆଜ୍ଞା ମହାତ୍ମାଙ୍କ ଉପରେ ଜାରି

ଅଛ । ତେଣୁ ସେ କଲେ ପଞ୍ଜାବକୁ ଯାଇ ପାରୁନାହାନ୍ତି । କିନ୍ତୁ ପଞ୍ଜାବ ବିଷୟରେ ସେ ଅନେକ କଥା ଜାଣି ପାରିଛନ୍ତି । ଶ୍ରୀମତୀ ରମାବାଈ କୋଚରଙ୍କ ନିକଟରୁ ସେ ଶୁଣିଛନ୍ତି ଯେ ପଞ୍ଜାବରେ ଏବେ ମଧ୍ୟ ଘରେ ଘରେ ଚରଖା ଚାଲୁଛି । ଏବେ ମଧ୍ୟ ସେ ପ୍ରଥା ପ୍ରଚଳିତ ଅଛି ଯେ, ଝିଅ ଶାଶୁଘର ଗଲାବେଳେ ସେ ହାତରେ ସୂତା କାଟି ସେହି ସୂତାରେ ଲୁଗା ପିନ୍ଧି ଶାଶୁଘର ଯିବ, ଚରଖା ଗୋଟିଏ ଯୌତୁକ ନେବ । ଏହି କଥା ଶୁଣିଲାଦିନୁ ମହାତ୍ମାଙ୍କ ଇଚ୍ଛା ହୋଇଛି ମତେ ପଞ୍ଜାବକୁ ପଠାଇବାପାଇଁ । ଇତିମଧ୍ୟରେ ଶ୍ରୀମତୀ ରମାବାଈ କୋଚରଙ୍କ ପିତା ଲାଲା ବାହାଦୁର ଚାନ୍ଦ ମେହେତା ବମ୍ବେଇ ଆସିଲେ । ସେ ଦର୍ଶନ ଲାଭ୍ ଲାଳସାରେ ମହାତ୍ମାଙ୍କ ସହିତ ଦେଖା କରିବାକୁ ଗଲେ । ମୋର ପଞ୍ଜାବ ଯିବା ପ୍ରସ୍ତାବ ଲାଲା ବାହାଦୁର ଚାନ୍ଦ ଶୁଣିଥାନ୍ତି । ସେ ମହାତ୍ମାଜୀଙ୍କ ସହିତ ଦେଖା କରିବାକୁ ଗଲାବେଳେ ମୋର ପଞ୍ଜାବ ଯିବା ପ୍ରଶ୍ନ ଉଠିଲା । ଲାଲାଜୀ ମହାତ୍ମାଜୀଙ୍କୁ ଅନୁରୋଧ କଲେ ଯେ, ମୁଁ ପଞ୍ଜାବ ଗଲେ ଯେପରି ତାଙ୍କର ଅତିଥି ହୋଇ ରହେ । ଏପରି କଥାରେ ମହାତ୍ମାଜୀ ଅସମ୍ମତ ହେବାର କୌଣସି କାରଣ ନାହିଁ । ପଞ୍ଜାବ ଯାଇ ବିଶେଷରେ ଚରଖା କିପରି ଚାଲୁଛି ତାହା ଦେଖିବା ଓ ଅତ୍ୟାଚାର ଭୋଗିଥିବା ଲୋକଙ୍କ ସେବା କରିବା ଏହି ଦୁଇଟି ମୁଖ୍ୟ ଉଦ୍ଦେଶ୍ୟ ନେଇ ମୋର ପଞ୍ଜାବ ଯିବା ସ୍ଥିର ହେଲା । ଲାଲା ବାହାଦୁର ଚାନ୍ଦ ମେହେତାଙ୍କ ସଙ୍ଗରେ ମୁଁ ପଞ୍ଜାବ ଯାତ୍ରା କଲି ।

---

## ପଞ୍ଚମ ପରିଚ୍ଛେଦ
## ପଞ୍ଜାବ ଜୀବନୀ

୧୯୧୯ ମସିହା ଅଗଷ୍ଟ ମାସରେ ମୁଁ ଯାଇ ପଞ୍ଜାବରେ ଉପସ୍ଥିତ ହେଲି । ପ୍ରଥମେ ଯାଇ ଲାହୋରରେ ରହିଲି । ଚବିଶ ନମ୍ବର ଇଁପ୍ରେସ-

ଷ୍ଟେଡ଼ରେ ମେହେଥା ବାହାଦୁର ସିଂହଙ୍କ ଘର । ମୁଁ ସେଇଠାରେ ରହିଲି । ମନେ ମନେ ସ୍ଥିର କଲି, ପ୍ରଥମେ ପଞ୍ଜାବର କୌଣସି ପଲ୍ଲିଗ୍ରାମକୁ ଯାଇ ସେଠାରେ କିଛିଦିନ ରହିଲେ ସବୁକଥା ଜାଣିପାରିବ । ଚରଖା କିପରି ଚାଲିଛି ତାହା ଦେଖିବି,ଏବଂ ସୈନିକ ଅଇନ ଜାରି ହେବାଦ୍ୱାରା ଲୋକେ କେତେଦୂର ଭୟଭୀତ ହୋଇଛନ୍ତି ତାହା ମଧ୍ୟ ବୁଝିପାରିବି । ପଞ୍ଜାବ ଜଳବାୟୁ ମୋ ଦେହରେ ଚଳିବ କି ନାହିଁ, ତାହା ଠିକ୍ ପରୀକ୍ଷା ନ କରି ମେହେଥା ବାହାଦୁର ସିଂହ ମତେ ପଲ୍ଲିଗ୍ରାମକୁ ପଠାଇଲେ ନାହିଁ । ସୁତରାଂ କିଛିଦିନ ପାଇଁ ମତେ ଲାହୋରରେ ରହିବାକୁ ହେଲା । ପଞ୍ଜାବ ପ୍ରଦେଶରେ ଶୀତ ଓ ଗ୍ରୀଷ୍ମ ଅତି ବେଶି । ସେତେବେଳକୁ ପଞ୍ଜାବରୁ ଗ୍ରୀଷ୍ମ ଛାଡ଼ି ନ ଥାଏ । ଦିନବେଳେ ଭୟଙ୍କର ଗରମ ହୁଏ । ରାତିରେ ଶୀତ ହୁଏ । ପଞ୍ଜାବରେ ଭାତର ପ୍ରଚଳନ ନାହିଁ । ପଞ୍ଜାବୀ ଲୋକେ ଖାଲି ରୁଟି ଖାଆନ୍ତି । ଭାତ ଖାଇବା ଦୂରର କଥା, ଭାତ କିପରି ରନ୍ଧା ହୁଏ ତାହା ଜାଣନ୍ତି ନାହିଁ । ଭାତକୁ ସେମାନେ ଚାଉଳ କହନ୍ତି । ବର୍ଷରେ ଥରେ ଦୁଇଥର ଇଚ୍ଛା ହେଲେ ପଲଉ କରି ଖାଆନ୍ତି, ନତୁବା କେହି ବେମାର ପଡ଼ିଲେ ଡାଲି ଚାଉଳକୁ ଖେଚୁଡ଼ି କଲାପରି ରାନ୍ଧି ଖାଇବାକୁ ଦିଅନ୍ତି । ଆମ୍ଭର ଯେପରି ରୋଗୀକୁ ସାଗୁ କିମ୍ବା ବାର୍ଲି ଦିଆଯାଏ, ପଞ୍ଜାବରେ ରୋଗୀକୁ ଏହିପରି ଖେଚୁଡ଼ି ଦିଆଯାଏ ।

ଦୁଇବେଳା ଖାଲି ରୁଟି ଖାଇ ରହିବା ମୋର ଅଭ୍ୟାସ ନାହିଁ । ପଞ୍ଜାବୀ ଲୋକେ ତରକାରି କଣ ଜାଣନ୍ତି ନାହିଁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ତରକାରି ଓ ଭାତ ସେଠାରେ ସ୍ୱପ୍ନ ପରି ଜଣାଗଲା । ଖାଲି ରୁଟି ଖାଇ ଚଳିବାକୁ ମତେ ଭଲ ଲାଗିଲା ନାହିଁ । ଲାହୋର ପରି ସହରରେ ଏପରି, ପଲ୍ଲି ଗ୍ରାମକୁ ଗଲେ ମୁଁ ଚଳିବି କିପରି, ଏହିପରି ପ୍ରଶ୍ନ ମନରେ ଜାଗି ଉଠିଲା । ମୋର ଦେହ ମଧ୍ୟ ଠିକ୍ ଅସୁସ୍ଥ ବୋଧ ହେଲା । ମନେକଲି ପଞ୍ଜାବରେ ରହିବା ମୋର ଆଉ ହେବ ନାହିଁ । ମୁଁ

ବମ୍ବେଇ ଫେରିଯିବି । କିନ୍ତୁ ଜଳବାୟୁ କିମ୍ବା ଖାଦ୍ୟପେୟ ଦେହରେ ଚଳିଲା ନାହିଁ କିମ୍ବା କର୍ତ୍ତବ୍ୟକ୍ଷେତ୍ର ଛାଡ଼ି ପଳାଇଯିବା ମତେ ଲଜ୍ଜାକର ବୋଧ ହେଲା । ପୁଣି ପଞ୍ଜାବ ପରି ଗୋଟାଏ ନୂତନ ପ୍ରଦେଶକୁ ଆସିଛି । ଏହି ପଞ୍ଜାବର ପ୍ରଶ୍ନ ବର୍ତ୍ତମାନ ସମସ୍ତ ଭାରତବର୍ଷକୁ ବିଚଳିତ କରୁଛି । ଏପରି ଅବସ୍ଥାରେ ପଞ୍ଜାବ ଛାଡ଼ି ଯିବାକୁ ମନ ବଳିଲା ନାହିଁ । ବେମାର ପଡ଼ିଲେ ମଧ୍ୟ ମେହେଥା ବାହାଦୂର ଶୃନ୍ଦଙ୍କ ଘରେ ପଡ଼ି ରହିଲି । କ୍ରମଶଃ ଦେହ ଟିକିଏ ଭଲ ହେଲା । ରୋଟି ଖାଇବା ଅଭ୍ୟାସ ପଡ଼ିଗଲା । ପଞ୍ଜାବ ପ୍ରଦେଶର କନୌଟ ନାମକ ଗୋଟିଏ ପଲ୍ଲିଗ୍ରାମକୁ ମୁଁ ବାହାରିଲି ।

ଏହି କନୌଟରେ ମେହେଥା ବାହାଦୂର ଶୃନ୍ଦଙ୍କ ଘର । ଏଠାରେ ଗୋଟିଏ ଉଚ୍ଚ ଇଂରେଜୀ ସ୍କୁଲ ଅଛି । ଏହି ସ୍କୁଲର ହେଡ଼ ମାଷ୍ଟରଙ୍କ ସହିତ ମୋର ବନ୍ଧୁତା ସ୍ଥାପିତ ହୋଇଗଲା । ସ୍କୁଲର କେତେକ ଛାତ୍ରଙ୍କୁ ଚିହ୍ନିଲି । ଏମାନଙ୍କ ସାହାଯ୍ୟରେ ନିକଟବର୍ତ୍ତୀ ଗ୍ରାମସବୁ ବୁଲିଗଲି । ହେଡ଼ମାଷ୍ଟର ଜଣେ ଆର୍ଯ୍ୟ ସମାଜର ଲୋକ । ଆର୍ଯ୍ୟ ସମାଜର ପ୍ରସାର ଓ ପ୍ରଭାବ ପଞ୍ଜାବରେ ଅତି ପ୍ରବଳ । ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଆର୍ଯ୍ୟ ସମାଜର ପ୍ରତିଷ୍ଠାତା ଓ ଗୁଜରାଟ ପ୍ରଦେଶରେ ତାଙ୍କର ଜନ୍ମ । କିନ୍ତୁ ଆର୍ଯ୍ୟ ସମାଜର କାର୍ଯ୍ୟକ୍ରମ ଦେଖିଲେ ମନେହୁଏ, ପଞ୍ଜାବ ପ୍ରଦେଶର ପ୍ରଶ୍ନ ସମାଧାନ କରିବା ପାଇଁ ଆର୍ଯ୍ୟ ଧର୍ମର ଅଭ୍ୟୁଦୟ ହୋଇଅଛି, ଏବଂ ଏହାର ପ୍ରତିଷ୍ଠାତାଙ୍କ ଜନ୍ମସ୍ଥାନ ପଞ୍ଜାବ । ପଞ୍ଜାବକୁ ଆସି ଆର୍ଯ୍ୟ ସମାଜ କର୍ମୀମାନଙ୍କ ସହିତ ବହୁ ସ୍ଥଳରେ ଦେଖା ସାକ୍ଷାତ୍ ହେଉଛି । ଉପସ୍ଥିତ ହେଡ଼ମାଷ୍ଟର ଆର୍ଯ୍ୟ ସମାଜର ଜଣେ କର୍ମୀ ବୋଲି କହିପାରେ । ଆର୍ଯ୍ୟ ସମାଜ ବିଷୟରେ ମୋର ପୂର୍ବରୁ କିଛି ଜ୍ଞାନ ନ ଥିଲା । ଏହିଠାରେ ମୁଁ ବହୁତ କଥା ଜାଣି ପାରିଲି । 'ସତ୍ୟାର୍ଥ ପ୍ରକାଶ' ହେଉଛି ଆର୍ଯ୍ୟସମାଜ-ବାଦୀଙ୍କର ଧର୍ମଗ୍ରନ୍ଥ । କନୌଟ ସ୍କୁଲର ହେଡ଼ ମାଷ୍ଟର ମହାଶୟ ଏହି ସତ୍ୟାର୍ଥ ପ୍ରକାଶ ଗ୍ରନ୍ଥକୁ ଖଣ୍ଡିଏ ମତେ ଉପହାର ଦେଲେ । ଏହାଙ୍କ

ସହିତ ଯାହାସବୁ ଆଲୋଚନା ହେଲା, ତହିଁରୁ ମୋର ଧାରଣା ଜନ୍ମିଲା ଯେ, ଆର୍ଯ୍ୟ ସମାଜବାଦୀମାନେ ରାଜନୈତିକ ପ୍ରଶ୍ନକୁ ମୁଖ୍ୟତଃ ଦେଶର ଜ୍ୱଳନ୍ତ ପ୍ରଶ୍ନରୂପେ ଦେଖୁ ନାହାନ୍ତି, କିମ୍ବା ସେପରି ଦୃଷ୍ଟିରେ କୌଣସି ବିଷୟର ଆଲୋଚନା କରୁ ନାହାନ୍ତି। ସେମାନଙ୍କ ଚକ୍ଷୁରେ ଧର୍ମ ଓ ସମାଜ ସଂସ୍କାର ଜ୍ୱଳନ୍ତ ପ୍ରଶ୍ନ। ସୁତରାଂ ଏହିଠାରେ ପଞ୍ଜାବ ପ୍ରଦେଶର ରାଜନୈତିକ ପରିସ୍ଥିତି ବିଷୟରେ ବିଶେଷ ଭାବରେ ଜାଣି ପାରିବାର କୌଣସି ସୁବିଧା ପାଇ ପାରିଲି ନାହିଁ। ସେଠାରେ ୧୫।୨୦ ଦିନ ରହି ପୁଣି ଲାହୋରକୁ ଫେରିଲି।

ଲାହୋରରେ ସେତେବେଳକୁ ପଣ୍ଡିତ ମୋତି ଲାଲ ଓ ମଦନମୋହନ ମାଲବ୍ୟ ଥାନ୍ତି। ପଣ୍ଡିତ ମାଲବ୍ୟଙ୍କ ନିକଟରେ ଅଧ୍ୟାପକ ଜିପଲାନି ଥାନ୍ତି। ବମ୍ବେଇରୁ ମୁଁ ତାହାଙ୍କୁ ଭଲରୂପେ ଜାଣେ। ସେ ଥିବାର ସଂବାଦ ପାଇ ମୁଁ ତାହାଙ୍କ ନିକଟକୁ ଅନେକ ସମୟରେ ଯା ଆସ କରେ। ପଞ୍ଜାବ ଅତ୍ୟାଚାରର ତଦନ୍ତ କରିବା ପାଇଁ ଭାରତର ସର୍ବତ୍ର ଦାବୀ ଉଠିଛି। ଇଂଲଣ୍ଡର ପାର୍ଲିଅମେଣ୍ଟ ଗୋଟିଏ ରୟେଲ କମିଟି ବସାଇ ତଦନ୍ତ କରୁ, ଏହାହିଁ ଭାରତର ଦାବୀ। ପଞ୍ଜାବ ଅତ୍ୟାଚାର ସଂବାଦରେ ଇଂଲଣ୍ଡର ଲୋକେ ଟିକିଏ ବିସ୍ମିତ ହୋଇଛନ୍ତି। ବିଲାତର ମନ୍ତ୍ରୀମଣ୍ଡଳ କୌଣସି ପ୍ରକାରେ ଭାରତକୁ ସାନ୍ତ୍ୱନା ଦେବାକୁ ଟିକିଏ ବ୍ୟଗ୍ରତା ପ୍ରକାଶ କରୁଛି। ମଣ୍ଟାଗୁ-ଚେମ୍ସଫୋର୍ଡ଼ ଶାସନସଂସ୍କାରକୁ ଅତି ଶୀଘ୍ର ପାର୍ଲିଅମେଣ୍ଟରେ ପାସ କରାଇ, ଭାରତରେ ଜାରି କରିବା ପାଇଁ ଚେଷ୍ଟା ଚାଲିଛି। ଏପରି ଅବସ୍ଥାରେ ରୟେଲ କମିଟି ପାଇଁ ଭାରତର ଦାବୀକୁ ବିଲାତ ମନ୍ତ୍ରୀମଣ୍ଡଳ ଉପେକ୍ଷା କରି ପାରୁ ନାହାନ୍ତି। ପଞ୍ଜାବ ଗୋଳମାଳ ଗୋଟିଏ ପ୍ରାଦେଶିକ ଘଟଣା। ଭାରତ ସରକାର ସେଥିପାଇଁ ତଦନ୍ତ କମିଟି ନ ବସାଇ ବିଲାତରୁ ରୟେଲ କମିଟି ଆସିବା ଅର୍ଥ ଭାରତ ସରକାର ଉପରେ କଟାକ୍ଷପାତ। କିନ୍ତୁ ପଞ୍ଜାବ ଅତ୍ୟାଚାର ପରେ ଦେଶରେ ଏପରି ବାୟୁ-

ମଣ୍ଡଳ ସୃଷ୍ଟି ହୋଇଗଲା ଯେ ବାଲାତର ମନ୍ତ୍ରୀମଣ୍ଡଳଙ୍କର ଉପାୟାନ୍ତର ନ ଥିଲା । ଭାରତର ଦାବୀ ଅନୁସାରେ ହଣ୍ଟର କମିଟି ନାମରେ ଗୋଟିଏ ତଦନ୍ତ କମିଟିର ନାମ ପ୍ରକାଶ ପାଇଛି । ଏହି ହଣ୍ଟର କମିଟି ଆଗରେ ସାକ୍ଷ୍ୟ ଦେବାପାଇଁ ପଣ୍ଡିତ ମାଲବ୍ୟ ଓ ପଣ୍ଡିତ ମୋତିଲାଲ କାର୍ଯ୍ୟ କରୁଥାନ୍ତି । ସୈନିକ ଆଇନ କେତେଦିନୁ ଉଠି ଗଲଣି । ତଥାପି ଲୋକଙ୍କ ମନରୁ ଭୀତି ଛାଡ଼ୁ ନ ଥାଏ । ସେମାନେ ଯାହା ଦେଖିଛନ୍ତି ଓ ଯାହା ଭୋଗିଛନ୍ତି, ସେ ସବୁ ଭୁଲିଯାଇ ସରକାରୀ ଅମଲଦାରଙ୍କ ବିରୁଦ୍ଧରେ ସାକ୍ଷ୍ୟ ଦେବାକୁ ଲୋକଙ୍କ ହିମତ୍ ହେଉ ନ ଥାଏ । ଏହି ଅବସ୍ଥା ଦେଖି ମୋ ମନ ଛଟପଟ ହେଉଥାଏ । ସବୁବେଳେ ମନେହୁଏ, ବୋଧହୁଏ ମହାତ୍ମାଜୀ ଆସିଲେ ଲୋକଙ୍କ ଭୟ ଭାଙ୍ଗିଯାନ୍ତା ପରି ! କିନ୍ତୁ ପଞ୍ଜାବ ଆସିବାକୁ ମହାତ୍ମାଜୀଙ୍କ ଉପରେ ଏବେ ମଧ୍ୟ ନିଷେଧ ଆଜ୍ଞା ଜାରି ଅଛି ।

ଏହି ଅବସରରେ ବଡ଼ଲାଟଙ୍କ ସଭାରେ Indemnity Bill ( ଇନ୍‌ଡେମନିଟି ବିଲ୍ ) ନାମରେ ସରକାର ଗୋଟିଏ ଆଇନ୍ ଜାରି କରାଇ ନେବାକୁ ବସିଲେ । ଏହି ଆଇନ୍ ବଳରେ ସରକାର ନିଜର କର୍ମଚାରୀମାନଙ୍କୁ ରକ୍ଷା କରିବାକୁ ଚାହାନ୍ତି । ଏହି ଆଇନ୍ ଜାରି ହୋଇଗଲେ ପଞ୍ଜାବର କେହି ବ୍ୟକ୍ତି ସରକାରୀ କର୍ମଚାରୀଙ୍କ ବିରୁଦ୍ଧରେ କ୍ଷତି-ପୂରଣ ଦାବୀ କରି ମକଦମା ଦାୟର କରି ପାରିବ ନାହିଁ । ସୈନିକ ଆଇନ୍ ଜାରି ଥିଲାବେଳେ କେତେ ବେ-ଆଇନ୍ ବେ-କାନୁନ୍ କାର୍ଯ୍ୟ କରି ହୋଇ ଲୋକଙ୍କୁ ସର୍ବସ୍ୱାନ୍ତ କରି ଦିଆ ଯାଇଛି । ଏପରି ବେ-ଆଇନ୍ କାର୍ଯ୍ୟ ହେତୁ ସରକାରୀ କର୍ମଚାରୀଙ୍କ ବିରୁଦ୍ଧରେ କେହି କ୍ଷତିପୂରଣ ଦାବୀ କରି ମକଦ୍ଦମା ଦାୟର କରିବା ଅସମ୍ଭବ ନୁହେ । କିନ୍ତୁ ଇନ୍‌ଡେମନିଟି ବିଲ୍ ପାସ ହୋଇଗଲେ, ଆଉ କେହି ଏପରି ମକଦ୍ଦମା କରି ନ ପାରନ୍ତି । କିନ୍ତୁ ଏହି ଆଇନ୍ ବିରୁଦ୍ଧରେ ଭାରତରେ ଘୋର

ପ୍ରତିବାଦର ସୂତ୍ରପାତ ହେଲା । ଏହି ଆଇନ୍‌ର ବିରୁଦ୍ଧରେ ପଡ଼ିଲା ବେଳେ ପଣ୍ଡିତ ମାଳବ୍ୟ ଏପରି ଏକ ହୃଦୟସ୍ପର୍ଶୀ ବକ୍ତୃତା ଦେଇଥିଲେ ଯେ ଇଂଟ ସଭାରେ ମଧ୍ୟ ଅନେକ କାନ୍ଦି ପକାଇଥିଲେ । କିନ୍ତୁ ଏହି ସମୟରେ ଏହି ଆଇନ୍‌କୁ ସମର୍ଥନ କରି ମହାତ୍ମାଜୀ 'ୟଙ୍ଗ ଇଣ୍ଡିଆ'ରେ ଏକ ଲେଖା ପ୍ରକାଶ କଲେ । ମହାତ୍ମାଜୀ ଲେଖିଲେ, "We must reserve all our guns and gun powder for a future occasion and for a bigger fight." ମହାତ୍ମାଜୀ କହନ୍ତି, ବର୍ତ୍ତମାନ ଏପରି ଗୋଟିଏ ଆଇନକୁ ବିରୋଧ କରି ଆମର ଶକ୍ତି ଅପବ୍ୟୟ କରିବା ଉଚିତ ନୁହେଁ । ମହାତ୍ମା ଗାନ୍ଧି ଏହି ଲେଖା ଲେଖିଲା ବେଳକୁ ଅସହଯୋଗ ଆନ୍ଦୋଳନର କଳ୍ପନା କରି ସାରିଲେଣି ବୋଲି ମୋର ମନେହୁଏ । ସେ ଯାହା ହେଉ ପଣ୍ଡିତ ମାଳବ୍ୟ ଇନ୍‌ଡେମନିଟି ବିଲ୍‌ ବିରୁଦ୍ଧରେ କହିଲା ବେଳକୁ, ସରକାର ପକ୍ଷ ଜବାବରେ ମହାତ୍ମା ଗାନ୍ଧି ଏହାକୁ ସମର୍ଥନ କରୁଛନ୍ତି ବୋଲି କହି ଉକ୍ତ ଲେଖାକୁ ଉଦ୍ଧୃତ କରି ଶୁଣାଇ ଥିଲେ । ଏଥିରେ ମାଳବ୍ୟଜୀ ଉତ୍ତର ଦେଲେ, ସରକାରଙ୍କର ଯଦି ମହାତ୍ମା ଗାନ୍ଧିଙ୍କ ମତ ପ୍ରତି ଏତେ ଆସ୍ଥା ତେବେ ତାଙ୍କ ଉପରେ ପଞ୍ଜାବ ପ୍ରବେଶ କରିବା ପାଇଁ ଜାରି କରିଥିବା ନିଷେଧ ଆଜ୍ଞା ଉଠାଇ ନେବେ କି ? ମାଳବ୍ୟଜୀଙ୍କ ଏହି ଉକ୍ତିର କିଛି ଦିନ ପରେ ସରକାର ତାହାଙ୍କ ନିଷେଧ ଆଜ୍ଞା ଉଠାଇ ନେଲେ । ମହାତ୍ମାଜୀ ଯଥାସମୟରେ ପଞ୍ଜାବରେ ଆସି ଉପସ୍ଥିତ ହେଲେ । ତାହାଙ୍କ ପ୍ରବେଶ ମାତ୍ରକେ ବିଜୁଳି ପରି ଏକ ନୂତନ ଜୀବନ ପଞ୍ଜାବରେ ଖେଳିଗଲା ପ୍ରାୟ ବୋଧ ହେଲା । ଅତ୍ୟାଚାର ଭୋଗିଥିବା ଲୋକେ ଅପେ ଅପେ ଆସି ସେମାନଙ୍କ ଦୁଃଖ କାହାଣୀ ମହାତ୍ମାଜୀଙ୍କ ଆଗରେ ବର୍ଣ୍ଣନା କଲେ ।

ଲାହୋରରେ ମହାତ୍ମାଜୀ ଶ୍ରୀମତୀ ସରଳା ଦେବୀଙ୍କ ଅତିଥି । ସରଳା ଦେବୀଙ୍କ ସ୍ୱାମୀ ପଣ୍ଡିତ ରାମଭଜ ଦତ୍ତ ଧରା ହୋଇ ସୈନିକ

ଅଇନରେ ତାଙ୍କର ବଗୃର ହୋଇଛ । ସେ ଦ୍ୱୀପାନ୍ତର ଦଣ୍ଡ ପାଇଛନ୍ତି । ପଞ୍ଜାବର ପ୍ରତ୍ୟେକ ବଶିଷ୍ଟ ନେତା ଜେଲରେ । ତଥାପି ମହାତ୍ମାଜୀ ରହୁଥିବା ସ୍ଥାନରେ ଦନସ୍ର୍‌ ଲୋକ ଭଡ଼ । ସବୁବେଳେ କ୍ରନ୍ଦନ ଧ୍ୱନି କାନରେ ଅସି ପଡ଼େ । କାହାର ଏକମାତ୍ର ସନ୍ତାନ ମରିଛି, କାହାର ସ୍ୱାମୀ ମରିଛି, କାହାର ଅବା ପିତା ଓ ଭାଇ ମରିଛନ୍ତି— ଏହିପରି ଲୋକେ ସବୁ ଅସି ଠୁଳ ହେଉଛନ୍ତି । ମହାତ୍ମାଙ୍କୁ ଦେଖି ତାହାଙ୍କୁ ଥିକ୍ ଏ ଦୁଃଖ ଶୁଣାଇ ପାରିଲେ ସେମାନେ ସବୁ ଦୁଃଖ ଭୁଲିଗଲା ପରି ଜଣା ଯାଉଥାଏ । ମୁଁ ସବୁବେଳେ ମହାତ୍ମାଙ୍କ ପାଖରେ ଥାଏ । କେବଳ ରାତିରେ ମେହେଥା ବାହାଦୂର ଗୃହଙ୍କ ଘରକୁ ଅସେ । ସୁତରାଂ ସବୁବେଳେ ଏହି ଦୃଶ୍ୟ ଦେଖିବାକୁ ହୁଏ ଓ କ୍ରନ୍ଦନ ଶୁଣିବାକୁ ପଡ଼େ । ଏସବୁ ଦେଖି ଓ ଶୁଣି ମହାତ୍ମାଙ୍କ ମନ କଣ ହେଉଥିବ ତାହା ସେ ଜାଣନ୍ତି ; ତାଙ୍କର ହୃଦୟର ଭାବ ଜାଣିବାର କିଛିମାତ୍ର ଉପାୟ ନାହିଁ । ସବୁ ଶୁଣି, ସବୁ ଦେଖି ନୀରବରେ ସେ ତାଙ୍କର କର୍ତ୍ତବ୍ୟ କରି ଯାଉଥାନ୍ତି । କିନ୍ତୁ ପଣ୍ଡିତ ମାଳବ୍ୟଜୀ ମହାତ୍ମାଜୀଙ୍କ ନିକଟକୁ ଅସିଲା ବେଳେ ସେ ଏହି ଦୃଶ୍ୟ ଦେଖି ସମ୍ଭାଳି ହୋଇ ରହି ପାରନ୍ତି ନାହିଁ । ତାହାଙ୍କ ଆଖିରୁ ଲୋତକର ଧାର ଝର ଝର ହୋଇ ଖସିପଡ଼େ । ପଣ୍ଡିତ ମଦନମୋହନ ମାଳବ୍ୟଜୀଙ୍କ ଭଳି ବ୍ୟକ୍ତି ଏଭଳି ଅସମ୍ଭାଳ ହେବାର ଦେଖାଗଲେ ମୋ ପରି ଲୋକ କଣ ନ ହେବ । ମୋର ହୃଦୟ ସବୁବେଳେ ଶୋକରେ ଓ କ୍ରୋଧରେ ଜଳି ଉଠୁଥାଏ । ମୁଁ ଯେଉଁ ଆଡ଼କୁ ଦେଖେ, ସବୁଆଡ଼େ ମତେ ଇଂରେଜ ସରକାରଙ୍କ ଅତ୍ୟାଚାରର ଭୟାବହ ଦୃଶ୍ୟ ଛଡ଼ା ଅନ୍ୟ କିଛି ଦେଖା ଯାଏ ନାହିଁ ।

ସେତେବେଳକୁ ପଞ୍ଜାବ ଅତ୍ୟାଚାରର ଅନେକ ଦୃଶ୍ୟ ମୁଁ ଦେଖିଲିଣି । ଲାହୋରକୁ ଅସି ଛାତ୍ରମାନଙ୍କ ସହିତ ମିଶିବାର ସୁବିଧା ସୁଯୋଗ ପାଇଛି । ଛାତ୍ରମାନେ ଏହି ସୈନିକ ଅଇନ କାଳ ଥିବା

ସମୟରେ କିପରି ଦୁଃଖ କଷ୍ଟ ସହ୍ୟ କରିଛନ୍ତି, କି ପ୍ରକାର ନିର୍ଯାତନା, ଲାଞ୍ଛନା ଓ ଅପମାନ ସବୁ ଭୋଗ କରିଛନ୍ତି, ସେସବୁ ଶୁଣିଛି । ଡି. ଏ. ଭି. କଲେଜର କେତୋଟି ଛାତ୍ରଙ୍କ ସହିତ ମୋର ଘନିଷ୍ଠ ବନ୍ଧୁଭାବ ମଧ୍ୟ ଜନ୍ମି ଯାଇଛି । ମୁଁ ଏହି ଛାତ୍ରବନ୍ଧୁମାନଙ୍କ ସହିତ ଅନେକ ସମୟରେ ଲାହୋରର ଭିନ୍ନ ଭିନ୍ନ ସ୍ଥାନକୁ ବୁଲିବାକୁ ଯାଏ । ଲାହୋର ସହର ଗୋଟିଏ ପୁରାତନ ଇତିହାସପ୍ରସିଦ୍ଧ ସହର । ଇତିହାସପ୍ରସିଦ୍ଧ ବହୁତ ସ୍ଥାନ ଏଠାରେ ଦେଖିବାର ଅଛି । ସାଲିମାର୍ ବାଗ୍ ନାମରେ ମୋଗଲ ବାଦଶାହ ଅମଳର ଗୋଟିଏ ବଗିଚା, ଜାହାଙ୍ଗୀର ବାଦଶାହଙ୍କ କବର ଏହି ଦୁଇଟି ମୋଗଲ କୀର୍ତ୍ତି । ଏବେ ମଧ୍ୟ ଏସବୁ ଦେଖିଲେ ମୋଗଲ ଅମଳରେ ଭାରତର ବୈଭବ ମନେପଡ଼େ । ଏହି ପଞ୍ଜାବ ଶିଖ ଧର୍ମର ଜନ୍ମସ୍ଥଳୀ । ଏହିଠାରେ ଗୁରୁ ଗୋବିନ୍ଦ ସିଂହ ବୀର ଶିଖ ଜାତିକୁ ଗଢ଼ିଥିଲେ । ଏହା ହିନ୍ଦୁମାନଙ୍କର ପୁଣ୍ୟ ପଞ୍ଚନଦ ଭୂମି । ଏହିଠାରେ ଏବଂ ଏହି ଭୂମିରେ ହିନ୍ଦୁ ମନୀଷିଗଣ ସାଧନା କରି ବେଦ, ଉପନିଷଦ ଓ ଗୀତା ଲେଖି ଯାଇଛନ୍ତି । ଆଜି ସେହି ପୁଣ୍ୟ ଭୂମି ଛାରଖାର ହୋଇଛି । ସେହି ବୀର ଜାତି ଉପରେ ଅମାନୁଷିକ ଅତ୍ୟାଚାର କରାଯାଇଛି । ଜେନେରେଲ ଡାୟାର ଶତ ଶତ ନିରୀହ ଲୋକଙ୍କୁ ଗୁଳି କରି ମାରି ଦେଇଛନ୍ତି । ଏହି ସବୁ ଭାବ ଯୁଗପତ୍ ଆସି ହୃଦୟକୁ ଅଧିକାର କରେ । ମନେ ମନେ ଭାବେ, ଭାରତର କେଉଁଦିନ ଆଖି ଫିଟିବ ଏବଂ ଇଂରେଜ ସରକାରଙ୍କ ଏହି ଅତ୍ୟାଚାର ଭାରତବାସୀ ହୃଦୟଙ୍ଗମ କରି ଏ ଦେଶରୁ ଚିରକାଳ ନିମିତ୍ତ ସମସ୍ତ ପ୍ରକାର ଅତ୍ୟାଚାରରୁ ମୁକ୍ତ ହେବାପାଇଁ ଦୃଢ଼ ସଂକଳ୍ପ କରିବ—ଭାରତ କେଉଁ ଦିନ ସ୍ୱାଧୀନ ହେବ ।

ପଞ୍ଜାବକୁ ମୁଁ ଦୁଇଟି ମୁଖ୍ୟ ଉଦ୍ଦେଶ୍ୟରେ ଯାଇଛି । ଯୁଦ୍ଧଟା କିପରି ଚାଲିଛି ତାହା ଦେଖି ଶିଖିବା ଓ ଲୋକସେବା କରିବା । ଲୋକ-ସେବା କରିବା ଭିନ୍ନ ସେତେବେଳକୁ ମୋ ପାଇଁ ଅନ୍ୟ କିଛି ନ ଥିଲା ।

ସୁତାକାଟା ବିଷୟରେ ଯାହା କିଛି ଦେଖି ଶିଖିବାର ଥିଲା ସେ କାମ ସରିଲାଣି । ସୁତରାଂ ଆଉ ମୋର ସେଠାରେ

ରହିବା କୌଣସି ଆବଶ୍ୟକ ନାହିଁ। ତେବେ ମହାତ୍ମାଜୀ ଯେତେଦିନ ପର୍ଯ୍ୟନ୍ତ ରହିଛନ୍ତି, ମୁଁ ସେତେଦିନ ରହିବି, ଏହା ସ୍ଥିର କରିଥାଏ।

ଇତି ମଧ୍ୟରେ ହଣ୍ଟର କମିଟି ଲାହୋରରେ ବସି ସେଠାରେ ଘଟିଥିବା ଘଟଣାମାନଙ୍କର ସାକ୍ଷ୍ୟ ଗ୍ରହଣ କରିବା ବେଳ ପଡ଼ିଲା। ହଣ୍ଟର କମିଟି ଆଗରେ ସାକ୍ଷ୍ୟ ଦେବାବେଳେ, ଲୋକସାଧାରଣ ପକ୍ଷରୁ ଓକିଲ ରହି ସରକାରୀ ସାକ୍ଷୀମାନଙ୍କୁ ଜେରା କରିବା ପାଇଁ କଲିକତାରୁ ଦେଶ ବନ୍ଧୁ ଚିତ୍ତରଂଜନ ଯାଇଥାନ୍ତି, ବିଲାତରୁ ଜଣେ ଓକିଲ ମଧ୍ୟ କଂଗ୍ରେସ ନିଜ ଖର୍ଚ୍ଚରେ ମଗାଇ ଥାଏ। ଏହିଠାରେ ମହାତ୍ମାଜୀ କହିଲେ ଯେ, ହଣ୍ଟର କମିଟି ଯେତେଦିନ ପର୍ଯ୍ୟନ୍ତ ପଞ୍ଜାବ ଅତ୍ୟାଚାର ତଦନ୍ତ କରିବ, ସେତିକି, ଦିନ ପର୍ଯ୍ୟନ୍ତ ପଞ୍ଜାବର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ସରକାର ଜେଲରୁ ଛାଡ଼ିଦେବା ଦରକାର। ପଞ୍ଜାବର ନେତାମାନେ ନ ଆସିଲେ ହଣ୍ଟର କମିଟି ଆଗରେ ସାକ୍ଷ୍ୟ ଦେବା ଅପୂର୍ଣ୍ଣ ରହିବ। କିନ୍ତୁ ସରକାର ମହାତ୍ମାଜୀଙ୍କର ଏହି ଦାବୀକୁ ସ୍ୱୀକାର କଲେ ନାହିଁ। ସରକାର ଏହା ନ ମାନିଲାରୁ ମହାତ୍ମାଜୀ ପୂର୍ବ ଦାବୀକୁ ଟିକିଏ କୋହଳ କରି କହିଲେ ଯେ, ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ଏକାବେଳକେ ଜେଲରୁ ଛାଡ଼ ନ ଦେଲେ ମଧ୍ୟ, ସମସ୍ତଙ୍କୁ ତଦନ୍ତ ସମୟରେ କମିଟି ଆଗରେ ପ୍ରତିଦିନ ହାଜର କରାଇବା ଦରକାର। ଏହା ମଧ୍ୟ ସରକାର କରିବାକୁ ନାସ୍ତି କଲେ। ଏହି ଦାବୀ ଟିକକ ସରକାର ସ୍ୱୀକାର ନ କରିବାରୁ ମହାତ୍ମାଜୀ ହଣ୍ଟର କମିଟିକୁ ପଞ୍ଜାବରେ ବର୍ଜନ କରିବାର ପ୍ରସ୍ତାବ ଉତ୍‌ଥାପନ କଲେ। କିନ୍ତୁ ହଣ୍ଟର କମିଟି ବର୍ଜନ କରିବାର ପ୍ରସ୍ତାବରେ ପଣ୍ଡିତ ମାଲବ୍ୟଜୀ ଓ ଚିତ୍ତରଂଜନ ଦାସ ଓଗେର ନେତୃସ୍ଥାନୀୟ ବ୍ୟକ୍ତିମାନେ ଏକାବେଳକେ ଅସନ୍ତୁଷ୍ଟ। ବର୍ଜନ କରିବା ନୀତିକୁ ସେମାନେ ସମର୍ଥନ କଲେ ନାହିଁ। କିନ୍ତୁ ତଦନ୍ତବେଳେ ପଞ୍ଜାବର ନେତୃସ୍ଥାନୀୟ ବ୍ୟକ୍ତିମାନେ ଉପସ୍ଥିତ ନ ରହି, କଂଗ୍ରେସ ପକ୍ଷରୁ ହଣ୍ଟର କମିଟି ଆଗରେ ସାକ୍ଷ୍ୟ ଦେବା ମହାତ୍ମାଜୀଙ୍କ ମନକୁ ଗଲା ନାହିଁ। ଏହି ସାକ୍ଷ୍ୟ ଦେବାର ସମସ୍ତ ଭାର ପଣ୍ଡିତ ମାଲବ୍ୟଜୀଙ୍କ ଉପରେ ନ୍ୟସ୍ତ କରି ସେ ପଞ୍ଜାବ ଛାଡ଼ି, ବମ୍ବେଇ ଫେରି ଆସିବାକୁ ନିଶ୍ଚୟ କଲେ। ମହାତ୍ମାଜୀ ପଞ୍ଜାବ ଛାଡ଼ି ଚାଲି ଆସିବା କଥା ସ୍ଥିର ହୋଇଗଲା। ମହାତ୍ମାଜୀ ପଞ୍ଜାବ ଛାଡ଼ି ଯିବା ସମ୍ଭବ, କିନ୍ତୁ ହଣ୍ଟର କମିଟି ବର୍ଜନ କରିବା କଥା କଳ୍ପନା କରିବା ଅସମ୍ଭବ ବୋଲି ପଣ୍ଡିତ ମାଲବ୍ୟଜୀ ପ୍ରଭୃତି ମତ ପ୍ରକାଶ କଲେ। ଏହି ସଂବାଦ ଦାଣ୍ଡକୁ ଫୁଟି ବାହାରିଲା। ମହାତ୍ମାଜୀ ପଞ୍ଜାବ ଛାଡ଼ି ପଳାଉଥିବା ସଂବାଦରେ ସାରା ପଞ୍ଜାବରେ ଗୋଟାଏ ଦୁଃଖର ଛାୟା ଘୋଟିଗଲା ପରି ବୋଧ ହେଲା। କିନ୍ତୁ ଇତିମଧ୍ୟରେ ଭିତରି କଣ ଘଟିଲା ମୁଁ କହି ପାରିବି ନାହିଁ। ପଣ୍ଡିତ ମାଲବ୍ୟଜୀ ପ୍ରଭୃତି ପୁଣି ବର୍ଜନ ପ୍ରସ୍ତାବକୁ ମାନିନେଲେ। କଂଗ୍ରେସ ଗୋଟିଏ ସ୍ୱତନ୍ତ୍ର ତଦନ୍ତ କମିଟି ବସାଇଲା। ଏଣେ ହଣ୍ଟର କମିଟିର ଅନୁସନ୍ଧାନ ଚାଲିଲା ଏବଂ କଂଗ୍ରେସ କମିଟି ମଧ୍ୟ ସାକ୍ଷ୍ୟ ଗ୍ରହଣ କରିବାକୁ ଆରମ୍ଭ କଲା। ହଣ୍ଟର କମିଟି ଯେଉଁଦିନ ଯେପରି ଯାହା ସାକ୍ଷ୍ୟ

ଗ୍ରହଣ କରନ୍ତି ସେ ସବୁ ପ୍ରତିଦିନ ସଂବାଦ ପତ୍ରରେ ପ୍ରକାଶିତ ହୋଇଯାଏ। କିନ୍ତୁ କଂଗ୍ରେସ କମିଟି ଯାହା ସାକ୍ଷ୍ୟ ଗ୍ରହଣ କରନ୍ତି ତାହା ପ୍ରକାଶ ପାଏ ନାହିଁ। ଯେ ଯାହା ହେଉ ଏହିପରି ଭାବରେ ପଞ୍ଜାବ ଗୋଳମାଳର ଦୁଇଟି ତଦନ୍ତ ସଂପୂର୍ଣ୍ଣ ସ୍ୱତନ୍ତ୍ର ରୀତିରେ ଚାଲିଲା। ମହାତ୍ମାଜୀ ପୁଣି ପଞ୍ଜାବରେ ରହିବାର ହେଲା। ମୁଁ ମଧ ରହିଲି। ଏହିସବୁ ଭିତରି କଥା ମୁଁ ସବୁ ଦେଖୁଥାଏ ଓ ଜାଣୁଥାଏ। ମତେ ମହାତ୍ମାଜୀଙ୍କ କଥା ଯେ କେବଳ ଭଲ ଲାଗୁଥାଏ ତାହା ନୁହେଁ, ତାହାଙ୍କ କଥା ଯଥାର୍ଥ ବୋଲି ମଧ ବୋଧ ହେଉଥାଏ। ମୁଁ ବୁଝିପାରୁଥାଏ, ମହାତ୍ମାଜୀ କିଛି ଗୋଟାଏ ଲକ୍ଷ୍ୟ ରଖି ସବୁ କାମ କରୁଛନ୍ତି। କଣ ହେଲେ, କଣ କରିବାକୁ ହେବ, ଏ ସବୁର ଉପାୟ ସେ ମନେ ମନେ ସ୍ଥିର କରୁଥିଲା ପରି ବୋଧ ହେଉଛି।

ସେ ଯାହା ହେଉ ଏହି ବର୍ଷ କଂଗ୍ରେସ ଅମୃତସରଠାରେ ବସିବାର ଥାଏ। କିନ୍ତୁ ଅମୃତସର ସହରର ଜାଲିଆନ୍‌ୱାଲାବାଗ୍‌ର ହତ୍ୟାକାଣ୍ଡ ଘଟିଛି। ପଞ୍ଜାବର ନେତୃସ୍ଥାନୀୟ ବ୍ୟକ୍ତି ସବୁ ଜେଲଖାନାରେ ପଡ଼ିଛନ୍ତି। କଂଗ୍ରେସ ହେବ କିପରି ? ଏହାର ଆୟୋଜନ କରିବ କିଏ ? କିନ୍ତୁ କଂଗ୍ରେସ ଯଦି ଏ ବର୍ଷ ଅମୃତସର ସହରରେ ନ ବସେ ତାହାହେଲେ ଦେଶର ଜାତୀୟ ଜୀବନ ଶକ୍ତିର ଦୁର୍ବଳତା ପ୍ରକାଶ ପାଇବ। ଯେଉଁ ଶକ୍ତିକୁ ସମୂଳେ ଉତ୍ପାଟନ କରିବା ଅଭିଳାଷରେ ସରକାର ସୈନିକ ଆଇନ ଜାରି କରି ଏପରି ଲୋମହର୍ଷଣକାରୀ କାଣ୍ଡ ସୃଷ୍ଟି କରିଛନ୍ତି ତଦ୍ୱାରା ସେ ତାଙ୍କ ଉଦ୍ଦେଶ୍ୟ ସାଧନ କରି ପାରିଲେ ବୋଲି ପ୍ରମାଣିତ ହେବ। ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ଅଭାବରେ ଭାରତର ସାଧାରଣ ଲୋକେ କୌଣସି ଜାତୀୟ କାର୍ଯ୍ୟ କରିବାକୁ ଅକ୍ଷମ ବୋଲି ପ୍ରକାଶ ପାଇବ। ସରକାରୀ ଜୁଲୁମରେ ଭାରତର ଜାତୀୟ ପ୍ରାଣ ଦବିଗଲା ବୋଲି ଜଗତ ଜାଣିବ। ଏହା ହେବା କଦାପି ଶୋଭନୀୟ ନୁହେଁ। ସୁତରାଂ ଯେ କୌଣସି ପ୍ରକାରେ ଅମୃତସରରେ କଂଗ୍ରେସ କରିବାର ସ୍ଥିର ହେଲା।

ଏ ପର୍ଯ୍ୟନ୍ତ ଯେତେ କଂଗ୍ରେସ ବସିଛି, ଅମୃତସର କଂଗ୍ରେସ ପରି ଏତେବଡ଼ ବୈଠକ କେବେଁ କେଉଁଠାରେ ହୋଇ ନାହିଁ। କଂଗ୍ରେସ ସଭାରେ ଏପରି ଜାତୀୟ ଭାବ କେବେଁ ଫୁଟି ଉଠୁଥିବା ପରି ଦେଖାଯାଇଛି କି ନାହିଁ ସନ୍ଦେହ। ପଞ୍ଜାବ ଗୋଳମାଳ, ବିଶେଷରେ ଜାଲିଆନ୍‌ୱାଲାବାଗ୍ ହତ୍ୟାକାଣ୍ଡ ହେତୁ ଏ ବର୍ଷ ବହୁତ ଲୋକ କଂଗ୍ରେସରେ ଯୋଗ ଦେଇଥିଲେ। ସେତେବେଳେ କଂଗ୍ରେସକୁ ବର୍ତ୍ତମାନ ପରି ଡେଲିଗେଟ୍ ବଛା ହେଉ ନ ଥିଲେ। କଂଗ୍ରେସର Constitution ନିୟମାବଳୀ ଏହିଠାରେ ମହାତ୍ମାଜୀଙ୍କ ନିର୍ଦ୍ଦେଶରେ ପରିବର୍ତ୍ତିତ ହୋଇଥିଲା। ବର୍ତ୍ତମାନ ବହୁ ସଂଶୋଧିତ କଂଗ୍ରେସର ଯେଉଁ ନିୟମ ଚାଲୁଛି, ତାହାର ଅବୟବ ଗଠନ ମହାତ୍ମାଜୀ ଏହି ଅମୃତସର କଂଗ୍ରେସରେ କରିଥିଲେ। ଏହିଠାରେ ପୁରୁଣା କଂଗ୍ରେସ ନୂତନ କଳେବର ପ୍ରାପ୍ତ ହୋଇ, ପରବର୍ତ୍ତୀ ନାଗପୁର ବୈଠକରେ ପ୍ରାଣଦାନ ପାଇଥିଲା କହିଲେ କିଛିମାତ୍ର ଅତ୍ୟୁକ୍ତି ହେବ ନାହିଁ।

ସେ ଯାହା ହେଉ ଅମୃତସର କଂଗ୍ରେସ ବସିଲା । ମୁଁ ଲାହୋରରୁ ମହାତ୍ମାଜୀଙ୍କ ସଂଗରେ କଂଗ୍ରେସକୁ ଗଲି । କଂଗ୍ରେସ ପୂର୍ବରୁ ମହାତ୍ମାଜୀ ଥରେ ମାତ୍ର ଅମୃତସର ଯାଇଛନ୍ତି । ମୁଁ ଏ ପର୍ଯ୍ୟନ୍ତ ସେଠାକୁ ଯାଇ ନାହିଁ, କିମ୍ବା ଜାଲିଆନ୍ୱାଲାବାଗ୍ ଦେଖି ନାହିଁ । ସୁତରାଂ ସେଠାରେ ଉପସ୍ଥିତ ହୋଇ ମୁଁ ଜଣେକ ଛାତ୍ରବନ୍ଧୁଙ୍କ ସାଥିରେ ଜାଲିଆନ୍ୱାଲାବାଗ୍ ଦେଖିବାକୁ ଗଲି । ଅପ୍ରେଲ ତା ୧୩ ରିଖ ଦିନ ହତ୍ୟାକାଣ୍ଡ ଘଟିଥିଲା । ଆଜି ଡିସେମ୍ବର ମାସ ତା ୩୦ ରିଖ । ତଥାପି ଏତେଦିନ ପରେ ସେଠାରେ ମୁଁ ଯାହା ଦେଖିବାକୁ ପାଉଛି, ତାହା ମନେ ପଡ଼ିଗଲେ ଏବେ ମଧ୍ୟ ହୃଦୟ ଥରି ଉଠୁଛି । କାନ୍ଥ ବାଡ଼ରେ ରକ୍ତ ଛିଟା ରହିଛି । ଗୁଳି ଚୋଟରେ କାନ୍ଥ ବାଡ଼ ଫୁଟି ଯିବାର ଚିହ୍ନ ସବୁ ଅଛି । ଠାବେ ଠାବେ ମାଟି ନର ରକ୍ତରେ ନାଲି ହୋଇ ଯାଇଛି । ସ୍ଥାନବିଶେଷରେ ମାଟି ଏକଫୁଟ ଗଭୀର ପର୍ଯ୍ୟନ୍ତ ରକ୍ତରେ ଭେଦି ନାଲି ରଙ୍ଗ ଧାରଣ କରି ଥିବାର ଦେଖା ଯାଉଛି । ଲୋକେ ମାଟି ଖୋଳି ଦେଖୁଛନ୍ତି । ଏହି ହତ୍ୟାକାଣ୍ଡ କଂଗ୍ରେସକୁ ବହୁ ଲୋକଙ୍କୁ ଟାଣି ଆଣିଛି । ସୁତରାଂ ଜାଲିଆନ୍ୱାଲାବାଗ୍‌ଟି ସବୁବେଳେ ଲୋକାରଣ୍ୟ । ସବୁବେଳେ ଶତ ଶତ ଲୋକଙ୍କ ଧାଡ଼ି ଚାଲିଛି । ଲୋକେ ଦଳ ଦଳ ହୋଇ ଠିଆ ହୋଇ ହାହାକାର କରୁଛନ୍ତି । ଏହି ଦୃଶ୍ୟ ଦେଖିଲେ ପାଷାଣ ମଧ୍ୟ ତରଳି ଯିବ । ଏହି ସବୁ ଦେଖି ମୁଁ ପାଷାଣବତ୍ ଠିଆ ହୋଇ ଗଲି । ମତେ ବୋଧ ହେଲା, ସତେ ଯେପରି ମୋର ସମସ୍ତ ଶରୀର ଅବଶ ହୋଇ ଯାଉଛି । ଯୁଗପତ୍ ମନରେ କେତେ ଭାବନା ଆସି ଖେଳି ଯାଉଛି । ସେସବୁ ଲେଖିବାର ଏ ସ୍ଥାନ ନୁହେଁ । ଏହି ହତ୍ୟାକାଣ୍ଡ ଘଟିଥିବା ଦିବସର ହୃଦୟବିଦାରକ ଘଟଣାମାନ ବହୁବାର ଶୁଣିଛି । କିନ୍ତୁ ସେହି ଶୁଣିବା କଥାର ପ୍ରତ୍ୟକ୍ଷ ଅନୁଭବ ଆଜି ଘଟୁଛି । ଏତେ ଲୋକଙ୍କର ବଳିଦାନର କଣ ଫଳ ନାହିଁ । ଭାରତମାତାର ବକ୍ଷ ଏଠାରେ ବିଦୀର୍ଣ୍ଣ କରାହୋଇଅଛି । ଭାରତର ଶକ୍ତି ପଦଦଳିତ ହୋଇଛି । ଭାରତର ଜାତୀୟ ଜୀବନ ଏଠାରେ ଦବି ଯାଇପାରେ, ନଚେତ ପୁଣି ଥରେ ପ୍ରବଳ ଆକାର ଧାରଣ କରି ବ୍ରିଟିଶ ଶାସନକୁ ଟଳମଳ କରିପାରେ—ଏହିପରି ଭାବ ନେଇ ବାଗରୁ ମୁଁ ବସାକୁ ଫେରିଲି ।

ଏଣେ କଂଗ୍ରେସର ନେତାମାନେ ସ୍ଥିର କଲେ ଯେ, କଂଗ୍ରେସର ବୈଠକ ପୂର୍ବରୁ କଂଗ୍ରେସ ସଭାପତି ଓ ଅନ୍ୟାନ୍ୟ ସମସ୍ତ ନେତୃସ୍ଥାନୀୟ ବ୍ୟକ୍ତିମାନେ ସମସ୍ତ ପ୍ରତିନିଧିମାନଙ୍କ ସହିତରେ ଖାଲି ମୁଣ୍ଡ ଓ ଖାଲି ଗୋଡ଼ରେ ନୀରବ ଯାତ୍ରା କରି ଜାଲିଆନ୍ୱାଲାବାଗକୁ ଯାଇ ସେଠାରେ ଶ୍ରଦ୍ଧା ଓ ଭକ୍ତି ଅର୍ପଣ କରିବେ । ଏହି ପ୍ରସ୍ତାବ ଅନୁସାରେ ମହାତ୍ମାଗାନ୍ଧୀ, ତିଳକ ମହାରାଜ, ପଣ୍ଡିତ ମାଳବ୍ୟଜୀ, ସଭାପତି ପଣ୍ଡିତ ମୋତିଲାଲ ଓ ସମସ୍ତ ପ୍ରତିନିଧି ନୀରବରେ ଯାଇ ଜାଲିଆନ୍ୱାଲାବାଗରେ ପ୍ରବେଶ କଲେ । ଏହି ଦୃଶ୍ୟ କି ମର୍ମସ୍ପର୍ଶୀ ତାହା ପ୍ରକାଶ କରିବାକୁ ମୋର ଭାଷା ନାହିଁ । ପ୍ରାୟ ଲକ୍ଷାଧିକ ଲୋକରୁ କମ୍ ଲୋକ ସେଦିନ ସେତେବେଳେ ଏହି ଶୋଭାଯାତ୍ରାରେ

ଯାଇ ନାହାନ୍ତି। ସମସ୍ତଙ୍କ ହୃଦୟ ଦୁଃଖରେ ଓ ଶୋକରେ ଅଭିଭୂତ। ସମସ୍ତଙ୍କ ମୁହଁରୁ ହାହାକାର ଶବ୍ଦ ଫୁଟି ଉଠୁଛି। ସମସ୍ତଙ୍କ ଚକ୍ଷୁରୁ ଲୋତକର ଧାର ବୋହି ଯାଉଛି। ଏହା ଯେ ନ ଦେଖିଛି, ସେ ସହଜରେ ଅନୁଭବ କରି ପାରିବ ନାହିଁ। ଏହି ଦୃଶ୍ୟ ମତେ ଏତେ ପ୍ରଭାବିତ କରିଛି ଯେ ତହିଁର କିଛି ଇୟତ୍ତା ନାହିଁ। ମୋର ହୃଦୟରେ ସବୁବେଳେ ଗୋଟାଏ କ୍ରୋଧାଗ୍ନି ଜଳି ଉଠୁଛି। କଂଗ୍ରେସର କଥା କେହି ନ ଶୁଣିଲେ ତା ପ୍ରତି ମୋର ଅସହିଷ୍ଣୁତା ଭାବ ବାହାରି ପଡୁଛି। ଦେଶର ସ୍ୱାଧୀନତା ଛଡ଼ା ଅନ୍ୟ କିଛି ମତେ ଲୋକ ହିତକର କର୍ମ ବୋଲି ଜଣା ଯାଉ ନାହିଁ। କଂଗ୍ରେସ ଏ ଦେଶର ସ୍ୱାଧୀନତାପାଇଁ ଲଢ଼ାଇ କରୁଛି। ସୁତରାଂ କଂଗ୍ରେସର କାର୍ଯ୍ୟରେ ସାହାଯ୍ୟ ନ କରି ଯେଉଁମାନେ ଏହାର ବାହାରେ ରହିଛନ୍ତି ସେମାନଙ୍କ ପ୍ରତି ମୋର ହୃଦୟରେ ପ୍ରୀତିଭାବ ରହିପାରୁ ନାହିଁ। କଂଗ୍ରେସର କାର୍ଯ୍ୟକୁ ମୁଁ ଯେତେବେଳେ ଯେପରି ଭାବରେ ଗ୍ରହଣ କରି କାର୍ଯ୍ୟ କରୁଛି, ତାହାହିଁ ମତେ ଯଥାର୍ଥ ମାର୍ଗ ପରି ଜଣା ଯାଉଛି। ଏଥିରୁ ଟିକିଏ ଭିନ୍ନ ପଥଗାମୀ କାହାକୁ ଦେଖିଲେ, ତା' ପ୍ରତି ମୋର ହୃଦୟରେ ବିରକ୍ତି ଭାବ ଜାଗି ଉଠୁଛି। ଏଥିପାଇଁ ମତେ ଲୋକେ ଅନେକ ସମୟରେ କହୁଛନ୍ତି, ମୁଁ ଜଣେ Intolerant and violent ପ୍ରକୃତିର ଲୋକ। ମୋର ବନ୍ଧୁମାନେ, ମୋର ସହକର୍ମୀମାନେ ଏପରି କଥା କହିଲାବେଳେ ମୁଁ ଅନେକ ସମୟରେ ଭାବେ, କିନ୍ତୁ ସେମାନଙ୍କ ଉକ୍ତିର ଚିହ୍ନ ମୁଁ ନିଜ ଭିତରେ ଖୋଜି ପାଇ ପାରେ ନାହିଁ।

ସେ ଯାହା ହେଉ ଜାଲିଆନ୍‌ୱାଲବାଗ୍‌ରେ ଏହିପରି ଭାବରେ କଂଗ୍ରେସର ନେତାମାନେ ଭକ୍ତି ଅର୍ପଣ କରି ଫେରିଲେ। କିନ୍ତୁ ସେଠାରୁ ଫେରି ମହାତ୍ମାଗାନ୍ଧୀ କହିଲେ ଯେ, ଜାଲିଆନ୍‌ୱାଲାବାଗ୍ ଯଦି ଜାତୀୟ ସମ୍ପଦ ନ ହୁଏ, ତେବେ ଏହି କଂଗ୍ରେସର କିଛ ମୂଲ୍ୟ ନାହିଁ। ପଣ୍ଡିତ ମାଳବ୍ୟଜୀ ଓ ମହାତ୍ମାଗାନ୍ଧୀ ଉଭୟେ ମିଶି ସେହି ରାତି ରାତି ଜାଲିଆନ୍‌ୱାଲାବାଗ୍‌କୁ ଜାତୀୟ ସମ୍ପଦରେ ପରିଣତ କଲେ। ସେହି ବାଗ୍ ଯେଉଁମାନଙ୍କର ଥିଲା, ସେମାନଙ୍କଠାରୁ ସେହି ରାତି ରାତି ତାହା ଲେଖାପଢ଼ି କରି ନିଆଗଲା। ସେହି ରାତି ବାଗ୍ ଜାତୀୟ ସମ୍ପଦ ନ ହୋଇଥିଲେ, ପରେ ହୋଇ ପାରିଥାନ୍ତା କି ନାହିଁ ସନ୍ଦେହ। ଏହିପରି ଭାବରେ ଅମୃତସର କଂଗ୍ରେସ ଆରମ୍ଭ ହେଲା। ଏଣେ ହଣ୍ଟର କମିଟିକୁ କଂଗ୍ରେସ ବର୍ଜନ କରିଥିଲେ ମଧ୍ୟ ତାହାର ଏକପକ୍ଷୀୟ ତଦନ୍ତରେ ଯାହାସବୁ ଜଣାପଡ଼ିଲା ତହିଁରେ ଦୁନିଆ ସମକ୍ଷରେ ଇଂରେଜ ସରକାରଙ୍କ ମୁହଁ ତଳକୁ ହୋଇଗଲା। ମଣ୍ଟାଗୁ ଚେମ୍‌ସଫୋର୍ଡ଼ ଶାସନ ସଂସ୍କାରକୁ ତରତରରେ ପାସ୍ କରାଇ ଦେଇ ଅମୃତସର କଂଗ୍ରେସ ପୂର୍ବରୁ ତାହାକୁ ଘୋଷଣା କରାଇ ଦେଲେ। ଏହି ନୂଆ ଶାସନ ସଂସ୍କାର ଦାନର ଚିହ୍ନ ସ୍ୱରୂପ ପଞ୍ଜାବର ନେତାମାନଙ୍କୁ କଂଗ୍ରେସ ପୂର୍ବରୁ ମୁକ୍ତିଦାନ କରାଗଲା। ମୌଲାନା ସୌକତ ଅଲି ଓ ମହମ୍ମଦ ଅଲି ଭାଇ ଦୁହେଁ ମଧ୍ୟ ଖଲାସ ପାଇ ଅମୃତସର କଂଗ୍ରେସରେ

ଆସି ଯୋଗ ଦେଲେ। କଂଗ୍ରେସର ମୁଖ୍ୟ ପ୍ରଶ୍ନ ହେଲା ନୂଆ ଶାସନ ସଂସ୍କାରକୁ ଗ୍ରହଣ କରାଯିବ କି ନାହିଁ। ଏହି ବିଷୟ ନେଇ ନେତୃବୃନ୍ଦଙ୍କ ଭିତରେ ମତଭେଦ ଦେଖାଗଲା। ଏହି ଦୁଇ ମତରୁ ଏକ ପକ୍ଷରେ ମହାତ୍ମାଜୀ, ଅନ୍ୟ ପକ୍ଷରେ ତିଳକ ମହାରାଜ। ଶାସନ ସଂସ୍କାର ବିଷୟକ ପ୍ରସ୍ତାବରେ ଗୋଟିଏ ଗୋଟିଏ ଶବ୍ଦ ଯୋଜନା ନେଇ ଗାନ୍ଧୀ କହନ୍ତି, କଂଗ୍ରେସ ଛାଡ଼ି ଯିବାକୁ; କେତେବେଳେ ତିଳକ ମହାରାଜ କହନ୍ତି, କଂଗ୍ରେସ ଛାଡ଼ିଯିବାକୁ। ମାଲବ୍ୟଜୀ, ତିଳକ ମହାରାଜ, ପଣ୍ଡିତ ମୋତିଲାଲ, ଚିତ୍ତରଂଜନ ଦାସ ଓ ଗାନ୍ଧିଜୀ ଏହିମାନଙ୍କ ଏକାନ୍ତ ବୈଠକ ବସେ। ମହାତ୍ମାଗାନ୍ଧୀଙ୍କ କ୍ୟାମ୍ପରେ ଏହି ବୈଠକ ବସୁଥାଏ। ଏସବୁ ଦେଖିବାର ଓ ଶୁଣିବାର ସୁଯୋଗ ମତେ ମିଳୁଥାଏ। କିଛି ଦୂରରେ ଠିଆହୋଇ ଆମେ କେତେ ଜଣ ଏସବୁ ରହସ୍ୟ ଦେଖୁଥାଉ। ଗୋଟିଏ ଶବ୍ଦରେ ରାଜନୈତିକ ନୀତିବାଦରେ କି ପ୍ରଭେଦ ଘଟିଯାଉଛି ମୁଁ କିଛି ବୁଝିପାରୁ ନ ଥାଏ। ଗାନ୍ଧିଜୀ ଓ ତିଳକ ମହାରାଜଙ୍କ ଭଳି ବ୍ୟକ୍ତି ରୁଷିକରି ଛାଡ଼ି ପଳାଇଲା ପରି ବ୍ୟବହାର କରୁଥିବାର ଦେଖି ମତେ ଆଚମ୍ବିତ ଲାଗେ। ରାଜନୀତିର ଗୂଢ଼ ମର୍ମ କଣ ମୁଁ କିଛି ବୁଝି ପାରେ ନାହିଁ। କିନ୍ତୁ ଏଥିରୁ ମୁଁ ଏତିକ ବୁଝିଲି, ମନୁଷ୍ୟର ଆଦର୍ଶ ଓ ସେହି ଅଦର୍ଶକୁ ଧରିବାର କର୍ମ ପଦ୍ଧତି ସମସ୍ତଙ୍କର ସମାନ ନୁହେଁ। ନିଜ ଆଦର୍ଶର ଅନୁକୂଳ ନୀତିରୁ ବାହାରି ଯାଇଥିବାର ସଂକେତ ସୂଚକ କଥା ପଦକ ମଧ ମନୁଷ୍ୟ ଗ୍ରହଣ କରି ନ ପାରେ। ମନୁଷ୍ୟ ଯେତେବେଳେ ଯାହା ଧରିଛି, ତାହାର ମୂଲ୍ୟ ଅନ୍ୟର ଚକ୍ଷୁରେ କିଛି ନ ଥାଇ ପାରେ। କିନ୍ତୁ ସେଥିପାଇଁ ସବୁପ୍ରକାର ତ୍ୟାଗ ଦୁଃଖ କଷ୍ଟ ସହ୍ୟ କରିବାପାଇଁ ପ୍ରସ୍ତୁତ ହେବା ତାହା ପକ୍ଷରେ ମଙ୍ଗଳକର। ଏହି ନୀତି, ଏହିପରି ଭାବନା ମୋର ଜୀବନକୁ ପ୍ରଭାବିତ କରିଛି। ମୋର ସମସ୍ତ କର୍ମ ଓ ଚିନ୍ତା ମଧ୍ୟରେ ମୋର ଏହି ଏକଜିଦିଆ ଲକ୍ଷଣଟି ଫୁଟି ଉଠୁଛି। ମତେ ଯଦି ଏକଜିଦିଆ ବୋଲି କେହି କହନ୍ତି ତେବେ ସେଥିପାଇଁ ମୁଁ ନାଚାର।

# ଷଷ୍ଠ ପରିଚ୍ଛେଦ

## ପଞ୍ଜାବ ପ୍ରତ୍ୟାବର୍ତ୍ତନ ପରେ

ଅମୃତସର କଂଗ୍ରେସ ଶେଷ ହେଲା। ମହାତ୍ମାଜୀ ସେଠାରୁ କେତେକ ଦିନ ପାଇଁ ସାବରମତୀ ଆଶ୍ରମକୁ ଗଲେ। ମୁଁ ଲାହୋରକୁ ଫେରିଲି। ଜାନୁୟାରୀ ମାସ ୯/୧୦ ତାରିଖ ବେଳକୁ ମହାତ୍ମାଜୀ ପଞ୍ଜାବ ଫେରିଲେ। ମୁଁ ସେଠାରୁ ପୁଣି ସାବରମତୀ ଆଶ୍ରମକୁ ଗଲି। ମଗନଲାଲ ଭାଇଙ୍କର ମୋ ପ୍ରତି ତାଙ୍କର ପୂର୍ବଭାବ ବଦଳିଛି। ଏଥର ଆଶ୍ରମରେ ମୁଁ ଜଣେ ଜଣାଶୁଣା ନିଜର ଲୋକ। ତଥାପି ଆଶ୍ରମରେ ବେଶିଦିନ

ମତେ ରହିବାକୁ ପଡ଼ି ନ ଥିଲା। ପଞ୍ଜାବ ତଦନ୍ତ କାର୍ଯ୍ୟ ଶେଷ କରି ମହାତ୍ମାଜୀ ଶୀଘ୍ର ଆଶ୍ରମକୁ ଫେରି ଆସିଲେ। ସେ ଆସିବାର କିଛିଦିନ ପରେ ପୁଣି ମତେ ବମ୍ବେଇ ଯିବାକୁ ହେଲା।

୧୯୨୦ ମସିହା ଫେବୃୟାରି ମାସରେ ମୁଁ ପୁଣି ବମ୍ବେଇରେ ଉପସ୍ଥିତ ହେଲି। ସେତେବେଳେକୁ ଅସହଯୋଗ ଆନ୍ଦୋଳନର ଚର୍ଚ୍ଚା ଆରମ୍ଭ ହୋଇଗଲାଣି। କେତେକ ମାସ ପୂର୍ବେ ଦିଲ୍ଲୀଠାରେ ମୁସଲମାନ ଭାଇମାନଙ୍କର ଗୋଟିଏ ସମ୍ମିଳନୀ ବସିଥିଲା। ଖିଲାଫତ୍ ପ୍ରଶ୍ନ ନେଇ ଭାରତର ମୁସଲମାନ ଭାଇଙ୍କ ଭିତରେ ଚାଞ୍ଚଲ୍ୟ ଫୁଟି ଉଠିଥିଲା। ତୁର୍କୀର ସୁଲତାନ ମୁସଲମାନ ଧର୍ମର ଧର୍ମାଧ୍ୟକ୍ଷ ରୂପେ ପ୍ରଖ୍ୟାତ। ସେ ମୁସଲମାନ ଧର୍ମର ଖଲିଫା, ଅର୍ଥାତ୍ ଏକମାତ୍ର ଧର୍ମ ପରିଚାଳକ ଓ ରକ୍ଷଣ କର୍ତ୍ତା। ତୁର୍କି ଜର୍ମାନୀ ସହିତ ଯୋଗ ଦେଇ ଇଂରେଜ ବିରୁଦ୍ଧରେ ଲଢ଼ାଇ କରିଛି। ଏପରି ଅବସ୍ଥାରେ ଭାରତର ମୁସଲମାନମାନେ ତାଙ୍କର ଖଲିଫା ବିରୁଦ୍ଧରେ କିଛି କରିବା ଅର୍ଥ ନିଜର ଧର୍ମର ବିରୁଦ୍ଧାଚରଣ କରିବା। ସୁତରାଂ ଇଂରେଜ ସରକାର ଏ ଦେଶରୁ ଲଢ଼ାଇ ପାଇଁ ଧନ ଜନ ସାହାଯ୍ୟ ନେଲାବେଳେ ପ୍ରତିଶ୍ରୁତି ଦାନ କରିଥିଲେ, ଯେ ମୁସଲମାନ ଧର୍ମର ଖଲିଫାଙ୍କ ଅଧିକାରରେ ସେମାନେ ହସ୍ତକ୍ଷେପ କରିବେ ନାହିଁ। ମୁସଲମାନ ତୀର୍ଥସ୍ଥାନ ଖଲିଫାଙ୍କ ଅଧୀନରେ ରହିବ। କିନ୍ତୁ ଯୁଦ୍ଧ ଶେଷରେ ଇଂରେଜ ଜୟୀ ହେବାରୁ ବର୍ତ୍ତମାନ ସେ ପ୍ରତିଶ୍ରୁତି ଭୁଲି ଅନ୍ୟଥା ଆଚରଣ କରୁଛନ୍ତି। ଭାରତର ମୁସଲମାନ ସମ୍ପ୍ରଦାୟ ବର୍ତ୍ତମାନ ମନେ କରୁଛନ୍ତି ଯେ, ଖଲିଫାଙ୍କ ବିରୁଦ୍ଧରେ ସାହାଯ୍ୟ କରି ସେମାନେ ଧର୍ମଦ୍ରୋହୀ ହୋଇଛନ୍ତି। ବିଲାତ ସରକାର ସେମାନଙ୍କ ସହିତ ବିଶ୍ୱାସଘାତକତା ବ୍ୟବହାର କରୁଛନ୍ତି। ସୁତରାଂ ଏହି ଖଲିଫା ଅର୍ଥାତ୍ ଖିଲାଫତ୍ ପ୍ରଶ୍ନ ନେଇ ଭାରତର ମୁସଲମାନ ସମ୍ପ୍ରଦାୟ ବଡ଼ ବିଚଳିତ। ଏହିଠାରେ ମହାତ୍ମାଜୀ ସେମାନଙ୍କୁ ପଥ ଦେଖାଇବାକୁ ଉଦ୍ୟତ। ମହାତ୍ମାଜୀ କହିଛନ୍ତି, ଇଂରେଜ ସରକାର ଯଦି ତାଙ୍କର ପ୍ରତିଶ୍ରୁତି ଭଗ୍ନ କରି ମୁସଲମାନ ଧର୍ମପ୍ରତି ଅବମାନନା ପ୍ରଦର୍ଶନ କରନ୍ତି ତେବେ ଭାରତର ମୁସଲମାନମାନେ ଏହି ସରକାରଙ୍କଠାରୁ ସମସ୍ତ ସମ୍ପର୍କ ତୁଟାଇ ଦେବା ଉଚିତ୍। ଏହିପରି ଭାବରେ ଅସହଯୋଗ ଆନ୍ଦୋଳନର କଳ୍ପନା ଫୁଟି ଉଠିଛି। ଦିନକୁ ଦିନ ସେହି କଥାର ଆଲୋଚନା ଚାଲିଛି। ବମ୍ବେଇଠାରେ ସୌକତ ଅଲି, ମହମ୍ମଦ ଅଲି, ଡାକ୍ତର କୀଚଲୁ ପ୍ରଭୃତି କେତେକ ମୁସଲମାନ ନେତୃସ୍ଥାନୀୟ ବ୍ୟକ୍ତି ମହାତ୍ମାଜୀଙ୍କ ସହିତ ଏଇ ବିଷୟ ନେଇ ଆଲୋଚନା କରୁଛନ୍ତି। ଏହିପରି ଅବସ୍ଥାରେ ସାବରମତୀ ଆଶ୍ରମରୁ ମୁଁ ପୁଣି ବମ୍ବେଇକୁ ଆସିଛି। ଏଥର ମତେ ବମ୍ବେଇ ପଠାଇବାର ଉଦ୍ଦେଶ୍ୟ ହେଉଛି ଖଦଡ଼ ପ୍ରଚାର କାର୍ଯ୍ୟ କରିବା।

ଭାରତର ରାଜନୈତିକ ଆକାଶରେ ଗୋଟାଏ ନୂତନ ଆଲୋକ ରେଖା ଅଙ୍କିତ ହେଉଛି। ଏହି ଆଲୋକ ଦେଖିବାକୁ ମୋ ମନରେ ଏକ ଅପୂର୍ବ ଉତ୍ସାହ ଓ ବ୍ୟଗ୍ରତା ସ୍ଥାନ ପାଇଛି। ବମ୍ବେଇ ହେଉଛି ପୁଣି ଏହାର ଉଦ୍ଭବସ୍ଥଳୀ। ଏହିଠାରେ

ମହାତ୍ମାଜୀ ସପ୍ତାହରେ ଅଧିକାଂଶ ଦିନ ରହୁଛନ୍ତି। ଏପରି ଅବସ୍ଥାରେ ବମ୍ବେଇ ଆସି ମହାତ୍ମାଜୀଙ୍କ ନିକଟରେ ରହିବାର ସୁଯୋଗ ସୁବିଧା ପାଇବାରେ ମୋର ମନରେ ଭାରି ଆନନ୍ଦ।

ଖିଲାଫତ୍ ପ୍ରଶ୍ନର ସମାଲୋଚନାକୁ ଛାଡ଼ିଲେ, ପଞ୍ଜାବ ଅତ୍ୟାଚାରର କି ସମାଧାନ ହେଉଛି, ସରକାର ଏଥିରେ କିପରି ନ୍ୟାୟ ବିଚାର କରିବେ, ସେଥିପାଇଁ ଭାରତର ରାଜନୈତିକ ମହଲରେ ଲୋକେ ଉଦ୍‌ବେଗ ସହିତ ଚାହିଁ ରହିଛନ୍ତି। ଖିଲାଫତ୍ ଓ ପଞ୍ଜାବ ଏହି ଦୁଇ ପ୍ରଶ୍ନ ନେଇ ହିନ୍ଦୁ ମୁସଲମାନ ଉଭୟଙ୍କର ମନରେ ଉଦ୍‌ବେଗ ଭାବ ଫୁଟି ଉଠୁଛି। ଦେଶ ଗୋଟିଏ ବାଟ ଖୋଜୁଛି। ଜଣେ ପଥପ୍ରଦର୍ଶକର ଆବଶ୍ୟକତା ଅନୁଭବ କରୁଛି। ଦେଶର ଏହିପରି ସଂକଟ ସମୟରେ ମହାତ୍ମାଜୀ ଅସହଯୋଗର ଆଲୋଚନା ଆରମ୍ଭ କରିଛନ୍ତି। ଇଂରେଜ ସରକାର ସହିତ ସମସ୍ତ ପ୍ରକାର ସହଯୋଗ ବର୍ଜନ ଅର୍ଥ ଅସହଯୋଗ। କିନ୍ତୁ ଭାରତ ପରି ଏକ ବିରାଟ ଦେଶରେ ଏହା ସମ୍ଭବ ହେବ ବୋଲି ବିଶ୍ୱାସ ନାହିଁ। ତଥାପି ଉପରୋକ୍ତ ଦୁଇ ପ୍ରଶ୍ନ ନେଇ ଦେଶର ଲୋକେ ଯେପରି ଅପମାନିତ ଓ ନିଃସହାୟ ଅବସ୍ଥାକୁ ହୃଦୟ ସହିତ ଅନୁଭବ କରୁଛନ୍ତି, ସେହି ଅବସ୍ଥାରେ ମହାତ୍ମାଜୀ ଦେଖାଉଥିବା ମାର୍ଗ ଏକମାତ୍ର ପନ୍ଥା ବୋଲି ଅନେକ ସ୍ୱୀକାର କରୁଛନ୍ତି। ଦେଶର ରାଜନୈତିକ ଜୀବନ ଗୋଟିଏ ନୂତନ ପ୍ରେରଣା ଲାଭ କରୁଛି, ଏକଥା ବେଶ ବୁଝି ହେଉଛି।

ସମସ୍ତ ଭାରତ ଏହିପରି ଭାବରେ ଆନ୍ଦୋଳିତ ହେଉଥିଲା ବେଳେ ଓଡ଼ିଶାର ରାଜନୈତିକ ଜୀବନର କୌଣସି ଚିହ୍ନ ନାହିଁ। ପଞ୍ଜାବ ପ୍ରଶ୍ନ କାହାରି ମନକୁ ସ୍ପର୍ଶ କରିଛି କି ନାହିଁ ବୁଝିବାର କିଛିମାତ୍ର ସଂକେତ ମିଳୁ ନାହିଁ। ଖିଲାଫତ୍ ପ୍ରଶ୍ନ କିଏ ଭାବିବ। ଖିଲାଫତ୍ ଦିବସ ପ୍ରତିପାଳନ କରି ସମସ୍ତ ଭାରତରେ ଉପବାସ ଓ ହରତାଳ ପ୍ରତିପାଳନ କରାଯାଇଥିଲା। କିନ୍ତୁ ଓଡ଼ିଶାରେ ଏସବୁର କିଛି ଚିହ୍ନ ନାହିଁ। ସେଥିରୁ ମୁଁ ଅନୁମାନ କରୁଛି, ଏହି ପ୍ରଶ୍ନ କାହାରି ମନକୁ ସ୍ପର୍ଶ କରି ନାହିଁ। ପଣ୍ଡିତ ଗୋପବନ୍ଧୁ ଦାସଙ୍କ ନାମ ଟିକିଏ ଶୁଣିବାକୁ ମିଳେ। ସେ ସତ୍ୟବାଦୀ ସ୍କୁଲ ପାଇଁ ଚିନ୍ତିତ। ଓଡ଼ିଆ ଛାତ୍ର କିପରି ପାଠ ପଢ଼ି ମନୁଷ୍ୟ ହେବେ, ଦେଶସେବାର କଥା ଚିନ୍ତା କରିବେ, ଏହି ପ୍ରଶ୍ନ ତାହାଙ୍କ ମନକୁ ବିଚଳିତ କରୁଛି। କାଉନ୍‌ସିଲର ମେମ୍ବର ହୋଇ ଓଡ଼ିଆମାନେ ଅଧିକ ସଂଖ୍ୟାରେ କିପରି ଚାକିରି ପାଇବେ, କିମ୍ବା ସ୍ଥାନବିଶେଷରେ ଆପତ୍ତି ଅଭିଯୋଗ ସରକାରଙ୍କ କର୍ଣ୍ଣଗୋଚର କରାଇ ତହିଁର ସମାଧାନ କରିବେ, ଏହି ଚିନ୍ତା ତାଙ୍କ ମନରେ ସବୁବେଳେ ଖେଳୁଛି। ସେ ଉପସ୍ଥିତ ପୁରୀ ଦୁର୍ଭିକ୍ଷ ନେଇ ବିଶେଷ ଭାବରେ ବ୍ୟଥିତ ଅଛନ୍ତି। ଭାରତୀୟ କୌଣସି ପ୍ରଶ୍ନପ୍ରତି ତାହାଙ୍କ ମନ ଆକୃଷ୍ଟ ହେଲା ପରି ଜାଣିବାର କିଛି ଉପାୟ ନାହିଁ। ତାହା ହେଉଥିଲେ, ଏହି ଦୁଇଟି ପ୍ରଶ୍ନ ନେଇ ଲୋକମତ ଗଠନ କରିବା ପାଇଁ ସେ କିଛି ନା କିଛି ପ୍ରୟାସ ନିଶ୍ଚୟ କରିଥାନ୍ତେ।

ମୁଁ ବମ୍ବେଇରେ ରହିଲେ ମଧ୍ୟ, ଭାରତୀୟ ପ୍ରଶ୍ନମାନଙ୍କ ସମାଲୋଚନା ଶୁଣି ମୋ ମନ ସେହି ଚିନ୍ତାରେ ନିବିଷ୍ଟ ହେଉଥିଲେ ମଧ୍ୟ ଓଡ଼ିଆ କଥା ସବୁବେଳେ ମୋ ମନରେ ଥାଏ। ସବୁବେଳେ ଓଡ଼ିଶା କଥା ଭାବେ। ଖିଲାଫତ୍ ପାଇଁ ଓଡ଼ିଶାରେ ହରତାଳ ହେଲା ନାହିଁ ବୋଲି ଗୋପବନ୍ଧୁ ବାବୁଙ୍କୁ ପତ୍ର ମଧ୍ୟ ଲେଖିଥିଲି। ଓଡ଼ିଶା କଥା ଭାବିଲାବେଳେ ପଣ୍ଡିତ ଗୋପବନ୍ଧୁ ଦାସ ମୋର ସବୁବେଳେ ମନେ ପଡ଼ନ୍ତି। ତାହାଙ୍କ ଛଡ଼ା ଆଉ ଓଡ଼ିଶାରେ କେହି ମନୁଷ୍ୟ ଥିଲା ପରି ମତେ ଦେଖା ଯାଉ ନାହିଁ। ସୁତରାଂ ଗୋପବନ୍ଧୁ ବାବୁ ଯାହା ଯେତେବେଳେ କରନ୍ତି ସେହି କାର୍ଯ୍ୟଟି ମତେ ଓଡ଼ିଶାର ଜ୍ୱଳନ୍ତ ପ୍ରଶ୍ନ ବୋଲି ମନେ ହୁଏ। ସେ ବର୍ତ୍ତମାନ ପୁରୀଜିଲ୍ଲା ଦୁର୍ଭିକ୍ଷ କଥା ନେଇ ବିଶେଷ ଭାବରେ ଚିନ୍ତିତ ଥିବାରୁ ଏହି ପ୍ରଶ୍ନଟି ମଧ୍ୟ ବମ୍ବେଇରେ ମତେ ବିଚଳିତ କରି ଥିଲା। ମୁଁ ଭାବିଲି, ଏଠାରେ ମହାତ୍ମାଜୀଙ୍କୁ କହି ବମ୍ବେଇରୁ ଯଦି କିଛି ଅର୍ଥ ସାହାଯ୍ୟ ପଠାଇ ପାରିବି, ତେବେ ଏତେଦିନ ଓଡ଼ିଶା ପାଇଁ କିଛି ଗୋଟିଏ ମନ ମାନିଲା ଭଳି କାର୍ଯ୍ୟ କଲି ବୋଲି ମନରେ ସାନ୍ତ୍ୱନା ପାଇବି। ଏହା ଭାବି ପୁରୀ ଦୁର୍ଭିକ୍ଷ ବିଷୟରେ ଯେତେବେଳେ ଯାହା ଯେଉଁଠାରେ ପାଠ କରେ ତାହା ସଂଗ୍ରହ କରି ରଖେ। ମହାତ୍ମାଜୀଙ୍କୁ ବେଳେ ବେଳେ ପୁରୀ ଦୁର୍ଭିକ୍ଷ କଥା କହେ।

ମହାତ୍ମାଜୀ ମୋ କଥା ଶୁଣି ନ ଶୁଣିଲା ପରି ରହନ୍ତି। ତାଙ୍କ ମନ ଖିଲାଫତ୍ ଓ ପଞ୍ଜାବ ପ୍ରଶ୍ନ ନେଇ ସବୁବେଳେ ଖେଳୁଥାଏ। ଅସହଯୋଗ ଆନ୍ଦୋଳନକୁ ଏ ଦେଶରେ କିପରି ପ୍ରବର୍ତ୍ତାଇବେ ଏ ବିଷୟ ନେଇ ସବୁବେଳେ ସେ ଚିନ୍ତା କରୁଥାନ୍ତି। ଏପରି ଅବସ୍ଥାରେ କେଉଁଠାରେ ଓଡ଼ିଶା ତାହା ସେ ଭଲକରି ଜାଣନ୍ତି କି ନା ସନ୍ଦେହ। ଓଡ଼ିଶାରେ କାହାକୁ ସେ ଚିହ୍ନନ୍ତି ନାହିଁ, କିମ୍ବା କାହାର ନାମ ପର୍ଯ୍ୟନ୍ତ ଶୁଣି ନାହାନ୍ତି। ଏପରି ଅବସ୍ଥାରେ ଓଡ଼ିଶା ପରି ଗୋଟାଏ ପ୍ରଦେଶରେ ପୁରୀ ନାମକ କୌଣସି ଜିଲ୍ଲାରେ କଣ ଦୁର୍ଭିକ୍ଷ ହେଉଛି ସେ କଥାକୁ ସେ ବେଶି ଗୁରୁତ୍ୱ ଦିଅନ୍ତି ନାହିଁ। କିନ୍ତୁ ମୁଁ ଯେଉଁ କଥା ଥରେ ଆରମ୍ଭ କରିଛି ତହିଁର ଶେଷ ସୀମାକୁ ନ ଗଲା ପର୍ଯ୍ୟନ୍ତ ନୀରବ ରହିବା ପ୍ରକୃତିର ଲୋକ ନୁହେଁ। ମୁଁ ଟିକିଏ ସୁବିଧା ପାଇଲେ ପୁରୀ ଦୁର୍ଭିକ୍ଷରେ ପ୍ରଶ୍ନ ପକାଏ। ଓଡ଼ିଶାର ନେତାମାନଙ୍କ ନାମ କହିଲାବେଳେ ଗୋପବନ୍ଧୁ ଦାସଙ୍କ ନାମ କହେ। ଏହିପରି ଥରକୁ ଥର ମୋଠାରୁ ଶୁଣି ଗୋପବନ୍ଧୁ ଦାସ କିଏ, କଣ କରନ୍ତି ବୋଲି ମହାତ୍ମାଜୀ ମତେ ପଚାରିବାରୁ ମୁଁ କହିଲି, ଗୋପବନ୍ଧୁ ବାବୁ ଓଡ଼ିଶାର ଗାନ୍ଧୀ।

ମୁଁ ଦେଖୁଛି ମୋ କଥା ଟିକିଏ ଟିକିଏ ଗାନ୍ଧୀଙ୍କ ମନରେ ପଶୁଛି। କିନ୍ତୁ ମୁଁ ପୂରାପୂରି କଥାଟି କହିବାକୁ ଅବସର ପାଏ ନାହିଁ। ସବୁବେଳେ ସଭା, ବୈଠକ, ଆଲୋଚନା। ସବୁବେଳେ ଲୋକ ଭିଡ଼ ଓ ନାନା କଥାର ମନ୍ତ୍ରଣା। ମୁଁ ମଧ୍ୟ ବହୁତ କାର୍ଯ୍ୟରେ ସବୁବେଳେ ବ୍ୟସ୍ତ। ଏହି ସମୟ ଅପ୍ରେଲ ମାସ ହେବ। ମହାତ୍ମାଜୀ

ଘୋଷଣା କଲେ, ଅପ୍ରେଲ ତା ୬ ରିଖ ଠାରୁ ଜାଲିଆନାୱାଲା ହତ୍ୟାକାଣ୍ଡ ଘଟିଥିବା ତା ୧୩ ରିଖ ପର୍ଯ୍ୟନ୍ତ ଏହି ଏକ ସପ୍ତାହକୁ ଜାତୀୟ ସପ୍ତାହ ରୂପେ ପ୍ରତିପାଳନ କରିବାକୁ ହେବ। ତା ୬ ରିଖ ଓ ତା ୧୩ ରିଖ ଏହି ଦୁଇଦିନ ଉପବାସ ବ୍ରତ ପାଳି ହରତାଳ କରିବାକୁ ହେବ। ଏହି ଜାତୀୟ ସପ୍ତାହ ମଧ୍ୟରେ ଜାଲିଆନାୱାଲାବାଗର ସ୍ମୃତି ପାଇଁ ଦଶଲକ୍ଷ ଟଙ୍କା ସ୍ମୃତି ପାଣ୍ଠିରୁ ସଂଗ୍ରହ କରାଯିବ। ଭାରତର ସେତେବେଳର ରାଜନୈତିକ ପରିସ୍ଥିତିରେ ମହାତ୍ମାଜୀଙ୍କ ଘୋଷଣାନୁସାରେ ଜାତୀୟ ସପ୍ତାହ ବିଶେଷ ଉତ୍ସାହର ସହିତ ପ୍ରତିପାଳିତ ହୋଇଥିଲା। କୌଣସି ଉପାୟରେ ଜନ ସାଧାରଣ ମନୋଗତ ଭାବ ପ୍ରକାଶ କରିବାକୁ ଚାହୁଁଥିଲେ। ଏହି ଦୁଇଦିନ ଭାରତର ଚାରିଆଡ଼େ ହରତାଳ ହୋଇଥିଲା। ବଡ଼ ବଡ଼ ସଭାମାନ ବସିଥିଲା। ଜାଲିଆନ୍‌ୱାଲାବାଗ୍ ସ୍ମୃତି ପାଣ୍ଠି ପାଇଁ ଟଙ୍କା ମଧ୍ୟ ଆଦାୟ କରାଯାଇଥିଲା। ଏହି ସପ୍ତାହରେ ମହାତ୍ମାଜୀ ବମ୍ବେଇରେ ରହି ସ୍ମୃତିପାଣ୍ଠି ପାଇଁ ଚାନ୍ଦା ସଂଗ୍ରହ କରୁଥିଲେ। ଏହି ଚାନ୍ଦା ସଂଗ୍ରହ କରି ଦିନେ ମହାତ୍ମାଜୀ ଫେରିଲା ବେଳକୁ ତାଙ୍କର ସ୍ନାନ ଭୋଜନର ସମୟ ଗଡ଼ି ଯାଇଥିଲା। ସେ ଉପସ୍ଥିତ ହେଲା ମାତ୍ରକେ ମୁଁ କହିଲି, "ବାପୁଜୀ ଯୋ ମରଗୟେହେଁ ଉନ୍ କେଲିଏ ଆପ୍ ଇତ୍‌ନା ତକଲିଫ୍ ଉଠାରହେ ହେଁ, ଲେକିନ୍ ଯୋ ମରରହେହେଁ ଉନ୍‌କେ ଲିଏ ଜରାଭି ଆପ୍ ଶୋଚ୍‌ତେ ନହୀଁ ହେଁ।"

ମୋଠାରୁ ସେତେବେଳେ ଅବସ୍ଥାର ଏପରି କଥା ଶୁଣି ମହାତ୍ମାଜୀ ଟିକିଏ ବିରକ୍ତି ଭାବ ପ୍ରକାଶ କଲା ପରି ଜଣାଗଲା। ସେ ହଠାତ୍ କହିଲେ, "ତୋର ମୁହଁର କଥାରେ ମୁଁ ବିଶ୍ୱାସ କରିବି କଣ? ତୋ ନିକଟରେ ଯଦି କିଛି କାଗଜ ପତ୍ର ଥାଏ ମତେ ଦେଖା। ମୁଁ ତହିଁର ବିଚାର କରିବି।" ମହାତ୍ମାଜୀଙ୍କ ଠାରୁ ଏତକ ଶୁଣି, ସମୟାନୁସାରେ ମୋ ନିକଟରେ ଥିବା ସମସ୍ତ କାଗଜ ପତ୍ର ଦେଖାଇଲି। ଗୋପବନ୍ଧୁ ବାବୁ ପୁରୀ ଦୁର୍ଭିକ୍ଷ ନେଇ ବିହାର ଓଡ଼ିଶା ଲାଟ ସଭାରେ ଦେଇଥିବା ବକ୍ତୃତାଟି ମୁଁ ସଂବାଦ ପତ୍ରରୁ ରଖିଥାଏ, ତାହା ମଧ୍ୟ ତାହାଙ୍କୁ ଦେଖାଇଲି। ଏଥିପୂର୍ବରୁ ଭାରତ ସେବକ ସଂପ୍ରଦାୟର ସଭ୍ୟ ଶ୍ରୀଯୁକ୍ତ ଅମୃତଲାଲ ଥକ୍‌କରଙ୍କର ସହିତ ପୁରୀ ଦୁର୍ଭିକ୍ଷ ନେଇ ମୁଁ କଥା ହୋଇ ଥାଏ। ସେ କହିଥାନ୍ତି ଯେ, ମହାତ୍ମାଜୀ ଯଦି ଏଥିପାଇଁ ସାହାଯ୍ୟ ଦେବାକୁ ଗୋଟିଏ ଆବେଦନ ପତ୍ର ପ୍ରକାଶ କରନ୍ତି ତେବେ ବମ୍ବେଇରେ ସେ ଓ ମୁଁ ଉଭୟେ ମିଶି କିଛି ଅର୍ଥ ସଂଗ୍ରହ କରି ଗୋପବନ୍ଧୁ ବାବୁଙ୍କ ନିକଟକୁ ପଠାଇବୁ। ଶ୍ରୀଯୁକ୍ତ ଥକ୍‌କରଙ୍କ ସହିତ ହୋଇଥିବା କଥୋପକଥନ ମହାତ୍ମାଜୀଙ୍କୁ ମୁଁ ମଧ୍ୟ ଜଣାଇଲି। ମହାତ୍ମାଜୀ ତତ୍‌କ୍ଷଣାତ୍ ଶ୍ରୀଯୁକ୍ତ ଥକ୍‌କରଙ୍କୁ ଡାକି ଆଣିବାକୁ ମତେ କହିଲେ। ମୁଁ ଯାଇ ତାହାଙ୍କୁ ସବୁ କଥା କହି ଡାକି ଆଣିଲି। ମହାତ୍ମାଜୀଙ୍କ ଅନୁରୋଧରେ ଶ୍ରୀଯୁକ୍ତ ଥକ୍‌କର ପୁରୀକୁ ଆସିଲେ। ସେ ପୁରୀରେ ଉପସ୍ଥିତ ହୋଇ ଅବସ୍ଥା ଦେଖି କେତେ ସାହାଯ୍ୟ ଦରକାର ଇତ୍ୟାଦି ବିଷୟରେ ରିପୋର୍ଟ ଦେଲେ ମହାତ୍ମାଜୀ ଆବେଦନ ପ୍ରକାଶ କରିବେ। ଏହିପରି ଭାବରେ

ମହାତ୍ମାଜୀ ପୁରୀ ଦୁର୍ଭିକ୍ଷ ହାତକୁ ନେଲେ। ଶ୍ରୀଯୁକ୍ତ ଥକ୍କର ପୁରୀ ଯାତ୍ରା କଲେ। ଏହି ସମୟରୁ ମହାତ୍ମାଜୀ ଓଡ଼ିଶାକୁ ଚିହ୍ନିଲେ ବୋଲି ମୁଁ କହିପାରେ। ଏତେଦିନ ଓଡ଼ିଶା ପାଇଁ ମନ ବୁଝିଲା ଭଳି ମୁଁ କିଛି କାର୍ଯ୍ୟ କଲି ବୋଲି ମୋର ମନରେ ସ୍ୱତଃ ଗୋଟାଏ ଭାବ ଜାଗି ଉଠିଲା। ମନେ ମନେ ମଧ୍ୟ ଆନନ୍ଦ ଓ ଅହଂକାର ଟିକିଏ ଅନୁଭବ କଲି।

# ସପ୍ତମ ପରିଚ୍ଛେଦ

## ପୁରୀ ଦୁର୍ଭିକ୍ଷ

ଶ୍ରୀଯୁକ୍ତ ଥକ୍କର ପୁରୀରେ ଉପସ୍ଥିତ ହୋଇ ଅବିଳମ୍ବେ ଟଙ୍କା ପାଞ୍ଚ ହଜାର ପଠାଇବାକୁ ତାର କଲେ। ପୁରୀର ଅବସ୍ଥା ଅତି ଶୋଚନୀୟ, ଏଥିପାଇଁ ପଚାଶରୁ ଷାଠିଏ ହଜାର ପର୍ଯ୍ୟନ୍ତ ଟଙ୍କା ଆବଶ୍ୟକ ହେବ, ଏହି ମର୍ମରେ ରିପୋର୍ଟ ଆସିଲା। ଶ୍ରୀଯୁକ୍ତ ଥକ୍କରଙ୍କ ତାର ପାଇ ମହାତ୍ମାଜୀ ତୁରନ୍ତ ପାଞ୍ଚ ହଜାର ଟଙ୍କା ତାଙ୍କ ନିକଟକୁ ପୁରୀକୁ ପଠାଇଲେ, ଏବଂ 'ୟଙ୍ଗଇଣ୍ଡିଆ' ଓ 'ନବଜୀବନ' ପତ୍ରିକାରେ ପୁରୀ ଦୁର୍ଭିକ୍ଷ ପାଇଁ ଗୋଟିଏ ନିବେଦନ ଛପାଇଲେ। ମହାତ୍ମାଜୀ ଏହି ନିବେଦନରେ ଛପାଇଥିଲେ, "ଓଡ଼ିଶା କହିଲେ ଗୋଟିଏ ଭୌଗୋଳିକ ନାମ ମାତ୍ର ବୋଲି ସମସ୍ତେ ଜାଣନ୍ତି। ଓଡ଼ିଶାର ବର୍ତ୍ତମାନ ଅବସ୍ଥା ବାହାରକୁ ବେଶି ଜଣା ପଡୁନାହିଁ। ଓଡ଼ିଶାରେ ସେପରି କେହି ବ୍ୟକ୍ତିବିଶେଷ ନାହାନ୍ତି ଯାହାଙ୍କ କାର୍ଯ୍ୟ ଓଡ଼ିଶାକୁ ବାହାର ଲୋକଙ୍କ ଆଗରେ ଚିହ୍ନାଇବ। ମୋର ଜଣେ ଓଡ଼ିଆ ବନ୍ଧୁ ଅଛନ୍ତି। ସେ ଚାହିଁ ବସିଥିବେ, ଟିକିଏ ସମୟ ପାଇଲେ ଓଡ଼ିଶାର କଥା ମତେ କହିବାକୁ।"

ମହାତ୍ମାଜୀ ନିବେଦନ ଛପାଇ ମତେ ଦେଖାଇ ଏପରି ଧାଡ଼ିଏ ଦୁଇଧାଡ଼ି ଲେଖିଥିଲେ। ସେ ଯାହା ଲେଖିଥିଲେ ତାହା ଅକ୍ଷରେ ଅକ୍ଷରେ ସତ୍ୟ। ପ୍ରକୃତରେ ମୁଁ ଯେତେବେଳେ ଟିକିଏ ସମୟ ପାଏ ସେତେବେଳେ ଓଡ଼ିଶା କଥା ତାହାଙ୍କୁ କହେ। ମୁଁ ଭାବୁଥାଏ, ଏହିପରି ମହାତ୍ମାଜୀଙ୍କୁ କହିବାଦ୍ୱାରା ମୁଁ ଓଡ଼ିଶାର କିଛି ସେବା କରୁଛି ବୋଲି। ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ଓଡ଼ିଶାର ଗାନ୍ଧୀ ବୋଲି ପରିଚୟ ଦେଲା ଦିନୁ ତାଙ୍କ କାର୍ଯ୍ୟକ୍ରମ ନେଇ ଅନେକ କଥା କହିଛି। ଓଡ଼ିଶା କିପରି ଖଣ୍ଡବିଖଣ୍ଡ ହୋଇ ପଡ଼ିବ, ଏହାଦ୍ୱାରା ଓଡ଼ିଆ ଭାଷା ଏବଂ ଓଡ଼ିଆ ଜାତି କିପରି ଲୋପ ପାଇ ଯାଉଛି ତାହା ମଧ୍ୟ ଅନେକବାର ବୁଝାଇଛି। ଓଡ଼ିଶା ଖଣ୍ଡବିଖଣ୍ଡ ହୋଇ ପଡ଼ିଥିବାରୁ ଓଡ଼ିଶା ପଛରେ ପଡ଼ିଛି ବୋଲି ମୁଁ ସବୁବେଳେ କହେ। ୧୯୨୦ରେ ଓଡ଼ିଶାରେ ଜାତୀୟ ସପ୍ତାହ ପାଳନ କରାଯାଇ ନ ଥିଲା କିମ୍ବା ଜାଲିଆନାୱାଲାବାଗ୍ ପାଇଁ ସ୍ମୃତିପାଣ୍ଠି ଆଦାୟ ହୋଇ ନଥିଲା। ଏହିପରି ରାଜନୈତିକ କୌଣସି ଆନ୍ଦୋଳନରେ

ଓଡ଼ିଶାର ନାମ ଶୁଣିବାକୁ ମିଳେ ନାହିଁ। ଏହି କଥାକୁ ଲକ୍ଷ୍ୟ ରଖି କିଛି କଥା ପଡ଼ିଲାବେଳେ ଓଡ଼ିଶା ଖଣ୍ଡ ଖଣ୍ଡ ହୋଇ ବିଭିନ୍ନ ପ୍ରାନ୍ତରେ ପଡ଼ିଥିବାରୁ ଓଡ଼ିଶା ଦେଶ ସବୁ ବିଷୟରେ ପଛରେ ପଡୁଛି ବୋଲି ମୁଁ କହିଥାଏ। ଭାଷାସୂତ୍ରରେ ପ୍ରଦେଶ ଗଠିତ ହେବା ଉଚିତ ବୋଲି ମହାତ୍ମାଜୀ ଯେଉଁ ଲେଖା ଏହି ସମୟରେ ପ୍ରକାଶ କରିଥିଲେ, ମୋଠାରୁ ଓଡ଼ିଶାର ଅବସ୍ଥା ଶୁଣି ସେ ସେପରି ଲେଖିଥିଲେ ବୋଲି ମୋର ବିଶ୍ବାସ। ଭାଷାସୂତ୍ରରେ ପ୍ରଦେଶ ସବୁ ଗଠିତ ହେବା ମହାତ୍ମାଜୀଙ୍କ ଏହି ମୌଳିକ ଭାବନାକୁ ଓଡ଼ିଶାର ଅବସ୍ଥା ଦୃଢ଼ୀଭୂତ କରିଥିଲା।

ସେ ଯାହା ହେଉ ପୁରୀ ଦୁର୍ଭିକ୍ଷ ଅଞ୍ଚଳରେ କାର୍ଯ୍ୟ କରିବାପାଇଁ କର୍ମୀର ଅଭାବ ପଡ଼ିଲା। ଓଡ଼ିଶାରେ ସେତେବେଳେ ଏହିପରି କର୍ମ କରିବାକୁ ସ୍ୱେଚ୍ଛାସେବକ ବଡ଼ ଅଭାବ। ଦୁର୍ଭିକ୍ଷ ଅଞ୍ଚଳରେ କାମ କରିବା ଉଦ୍ଦେଶ୍ୟରେ ମତେ ପଠାଇବାପାଇଁ ଶ୍ରୀଯୁକ୍ତ ଥକ୍କର ମହାତ୍ମାଜୀଙ୍କ ନିକଟକୁ ପତ୍ର ଦେଲେ। କେତେକ ଜରୁରୀ କାର୍ଯ୍ୟ ବଶତଃ ଶ୍ରୀଯୁକ୍ତ ଥକ୍କରଙ୍କୁ ମଧ୍ୟ ବମ୍ବେଇ ଯିବାକୁ ହେଲା। ସେ ବମ୍ବେଇରୁ ପୁରୀକୁ ଫେରିଲାବେଳେ ତାଙ୍କ ସହିତ ମୁଁ ପୁରୀକୁ ଆସିଲି।

ଶ୍ରୀଯୁକ୍ତ ଥକ୍କରଙ୍କ ସହିତ ମୁଁ ଓଡ଼ିଶାକୁ ଫେରୁଛି। ଓଡ଼ିଶାକୁ ଆସିବାପାଇଁ ଯେଉଁ ଦିନ ବମ୍ବେଇରେ ରେଳରେ ଚଢ଼ିଲି ସେଦିନ ମୋର କେତେ ଆନନ୍ଦ ତାହା କଳ୍ପନା କରିବା ଅସମ୍ଭବ। ପୁରୀ ଦୁର୍ଭିକ୍ଷ ଅଞ୍ଚଳକୁ ଶ୍ରୀଯୁକ୍ତ ଥକ୍କର ଆସିବା, ମହାତ୍ମାଜୀ ସାହାଯ୍ୟ କରିବା ଇତ୍ୟାଦି କର୍ମର ମୂଳକର୍ତ୍ତା ମୁଁ, ଏହି ଅହଂଭାବ ମନରେ ପୂରାମାତ୍ରାରେ ଫୁଟିଉଠୁଛି। ଶେଷରେ ନିଜେ ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳରେ ଉପସ୍ଥିତ ହୋଇ କାର୍ଯ୍ୟ କରିବାର ସୁଯୋଗ ମିଳିଛି। ଏଥିରେ କାହାର ଆନନ୍ଦ ନ ହେବ। ପୁଣି ଓଡ଼ିଶା ଛାଡ଼ିଲାବେଳେ ମୁଁ ଲୁଚିକରି ପଳାଇଥିଲି। ମୋର ଭବିଷ୍ୟତ୍ ଅନ୍ଧକାରପୂର୍ଣ୍ଣ ଥିଲା। ମୁଁ କୁଆଡ଼େ ଯିବି, କଣ କରିବି, କିଛି ଜଣା ନଥିଲା। ପୋଲିସର ଭୟ ସବୁବେଳେ ମନରେ ଥିଲା। କିନ୍ତୁ ଆଜି ସବୁ ଭୟ ଦୂର ହୋଇଛି। ୧୯୧୯ ମସିହାର ଶାସନ ସଂସ୍କାର ପ୍ରଚଳନ ହୋଇ (Royal clemency) ରାଜାନୁଗ୍ରହରେ ବହୁତ ରାଜବନ୍ଦୀ ଖଲାସ ପାଇଛନ୍ତି। ତେଣୁ ମୋ ବିରୁଦ୍ଧରେ କଲିକତା ପୋଲିସ ତଲାସିଠାରୁ ଦଣ୍ଡପଲ୍ଲା ଓ୍ୱାରେଣ୍ଟ ଓଗେର ଆଦି ଯାହା ସବୁ ଥିଲା ସେ ସବୁ କଟିଯାଇଛି। ପୋଲିସ ମୋତେ ଚିହ୍ନିପାରିଲେ ଧରିବ ଏପରି ଭୟ କରିବାର ଆଉ କିଛିମାତ୍ର କାରଣ ନାହିଁ। ତାହାଛଡ଼ା ସତ୍ୟାଗ୍ରହ ଆଶ୍ରମରେ ଯୋଗ ଦେଲାଦିନୁ ମୋର ଜୀବନ ଓ ଚିନ୍ତାରେ ଘୋର ପରିବର୍ତ୍ତନ ଘଟିଛି। ଓଡ଼ିଶାର ଜଣାଶୁଣା ଲୋକେ ମତେ ଜାଣିଛନ୍ତି। ଏହିପରି ନାନା କାରଣରୁ ମୋର ଆନନ୍ଦର ସୀମା ରହୁ ନାହିଁ। ରାଜନୈତିକ କାରଣରୁ ନିର୍ବାସିତ ହେଲା ପ୍ରାୟ ଯେ ବିଦେଶରେ ବୁଲୁଥାଏ, ସେ ଦେଶକୁ ଫେରିବାର ସୁବିଧା ପାଇଲେ ତାର ମନରେ କି ପ୍ରକାର ଆନନ୍ଦ ସେ ଅନୁଭବ କରେ, ଅବସ୍ଥାରେ ନ ପଡ଼ିଲେ, ତାହାର ମନର ଭାବ ଅନ୍ୟ କେହି ସହଜରେ ହୃଦୟଙ୍ଗମ କରି ପାରିବେ ନାହିଁ।

ମୁଁ ଯେ କେବଳ ନିର୍ବାସିତ ପରି ଓଡ଼ିଶା ବାହାରେ ଜୀବନ କଟାଇଛି ତାହା ନୁହେଁ। ଓଡ଼ିଶା ଛାଡ଼ିଲାଦିନୁ କେତେ ଉତ୍‌ଥାନପତନ ମଧ୍ୟରେ ମୋର ଜୀବନ ଅତିବାହିତ ହୋଇଛି। ଜୀବନର କେତେ ଆଶା ନିରାଶାରେ ପରିଣତ ହୋଇଛି। କେତେପ୍ରକାର ଭୟ ବିପଦ, ଦୁଃଖ କଷ୍ଟ ମଧ୍ୟରେ ଜୀବନ ଅତିବାହିତ କରିଛି। ସେ ସବୁ ଅତିକ୍ରମ କରି ଦିନେ ମୁଁ ଓଡ଼ିଶାରେ କିଛି ଲୋକହିତକର କାର୍ଯ୍ୟ କରି ପାରିବି ଏହି ଆଶା ମୋର ଏକାବେଳକେ ଲୋପ ପାଇଥିଲା। କିନ୍ତୁ ସେ ସବୁ ଦୁଃସ୍ୱପ୍ନ ତୁଟିଛି। ଓଡ଼ିଶାପ୍ରତି ମହାତ୍ମାଗାନ୍ଧୀଙ୍କ ପରି ଏକ ମହାପୁରୁଷଙ୍କର ଦୃଷ୍ଟି ଆକର୍ଷଣ କରି ପାରିଛି। ପୁରୀ ଦୁର୍ଭିକ୍ଷକୁ ସେ ସାହାଯ୍ୟ କରୁଛନ୍ତି ଏବଂ ସେଥିରେ କାର୍ଯ୍ୟ କରିବାପାଇଁ ମତେ ମଧ୍ୟ ପଠାଉ ଅଛନ୍ତି। ଏପରି ଅବସ୍ଥାରେ ମନରେ ଆନନ୍ଦ ଓ ଅହଂକାର ଅନୁଭବ କରିବା ସ୍ୱାଭାବିକ ବୋଲି ମୋର ମନେ ହୁଏ।

ସେ ଯାହାହେଉ ପୁରୀରେ ମୁଁ ଓ ଶ୍ରୀଯୁକ୍ତ ଥକ୍କର ଯଥା ସମୟରେ ଆସି ଉପସ୍ଥିତ ହେଲୁ। ତାହାଙ୍କ ସହିତ ଦୁର୍ଭିକ୍ଷ ଅଞ୍ଚଳ ବୁଲିବାକୁ ବାହାରିଲି। ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କ ଅବସ୍ଥା ମୁଁ ଯେପରି ଦେଖିବାକୁ ପାଇଲି ତାହା ଏ ଜୀବନରେ ଭୁଲି ପାରିବି ନାହିଁ। ସେତେବେଳେକୁ ପଲ୍ଲିଜୀବନ ବିଷୟରେ ମୋର କୌଣସି ଅଭିଜ୍ଞତା ନାହିଁ। ପଲ୍ଲିଗ୍ରାମର ନିରକ୍ଷର ଲୋକଙ୍କ ଅବସ୍ଥା କଣ ତାହା ମୁଁ କଳ୍ପନା କରିଥିଲେ ମଧ୍ୟ ସାକ୍ଷାତ୍ ଅନୁଭୂତି ମୋର କିଛି ନଥିଲା। ଏହି ଦୁର୍ଭିକ୍ଷ ଅଞ୍ଚଳରେ କାମ କରି ମୁଁ ସେହି ଅଭିଜ୍ଞତା ଓ ଅନୁଭୂତି ଲାଭ କରିଥିଲି। ମୁଁ ସେତେବେଳେ ଯାହା ଦେଖିଲି ତହିଁରୁ ମୋର ବିଶ୍ୱାସ ହୁଏ, ମହାତ୍ମାଜୀ ଯଦି ସାହାଯ୍ୟ କରି ନ ଥାନ୍ତେ ପୁରୀ ଜିଲ୍ଲାରୁ ଅନେକ ଲୋକ ମରି ଯାଇଥାନ୍ତେ। ସରକାର ଦୁର୍ଭିକ୍ଷ ପଡ଼ିଛି ବୋଲି କେବେ ହେଲେ ଘୋଷଣା କରି ନ ଥାନ୍ତେ। ପଣ୍ଡିତ ଗୋପବନ୍ଧୁ ଦାସ ପୁରୀରେ ଗୋଟିଏ କମିଟି କରି ଦୁର୍ଭିକ୍ଷ ଅଞ୍ଚଳର ଅବସ୍ଥା ବର୍ଣ୍ଣନା କରି ଖଣ୍ଡିଏ ରିପୋର୍ଟ ଲେଖିଥିଲେ। ବିହାର ଓଡ଼ିଶା ଲାଟ ଗେଟ୍ ସାହେବଙ୍କ ଇଙ୍ଗିତରେ ଗୋପବନ୍ଧୁ ସେହି ରିପୋର୍ଟକୁ ପ୍ରକାଶ ନ କରିବାକୁ ସ୍ଥିର କରିଥିଲେ। ମାତ୍ର ମହାତ୍ମାଜୀଙ୍କ ସାହାଯ୍ୟ ପାଇବାରୁ ଓ ଶ୍ରୀଯୁକ୍ତ ଥକ୍କର ପୁରୀରେ ଉପସ୍ଥିତ ହେବାରୁ ଉକ୍ତ ରିପୋର୍ଟ ପ୍ରକାଶ ପାଇଲା। ଦୁର୍ଭିକ୍ଷ ଅଞ୍ଚଳରେ ଲୋକଙ୍କୁ ସାହାଯ୍ୟ କରିବାପାଇଁ କେତେଗୁଡ଼ିଏ କେନ୍ଦ୍ର ଖୋଲା ହେଲା। ଏହିପରି ବେସରକାରୀ କେନ୍ଦ୍ର ଖୋଲା ହେବାର ଦେଖି ସରକାର ମଧ୍ୟ ଦୁର୍ଭିକ୍ଷ ସାହାଯ୍ୟ ଦେବାକୁ କେନ୍ଦ୍ର ଖୋଲିବା ପାଇଁ ବାଧ ହେଲେ। ଅବଶ୍ୟ ସେତେବେଳର ଲାଟସାହେବ ଜଣେ ହୃଦୟବାନ୍ ବ୍ୟକ୍ତି ଥିଲେ ଏହା ସ୍ୱୀକାର କରିବାକୁ ପଡ଼ିବ। ସେ ଯାହା ହେଉ ଏହିପରି ଭାବରେ ସରକାରୀ ଓ ବେସରକାରୀ ହୋଇ ଅନେକଗୁଡ଼ିଏ କେନ୍ଦ୍ର ଖୋଲା ହେଲା। ଶ୍ରୀଯୁକ୍ତ ଥକ୍କରଙ୍କ ସହିତରେ ବେସରକାରୀ ସବୁ କେନ୍ଦ୍ର ଦେଖି ଆସିଲା ପରେ ମୁଁ ତିନୋଟି କେନ୍ଦ୍ର ପରିଚାଳନା କରିବାର ଭାର ନେଇ ଦୁର୍ଭିକ୍ଷ ଅଞ୍ଚଳରେ ରହିଲି। ନିମାପଡ଼ା ଥାନାର ଗଡ଼ତୋରିଙ୍ଗ, ସୁନଗୋଡ଼ିଡ଼

ଓ ବାଳିପାଟଣା ଏହି ତିନୋଟି କେନ୍ଦ୍ରର ଭାର ମୋ ଉପରେ ରହିଲା। ପ୍ରାୟ ୬ ମାସ କାଳ ଏହିଠାରେ ରହି ମୁଁ କାର୍ଯ୍ୟ କରୁଛି।

ଆମ୍ଭ ଦେଶରେ ଯେଉଁମାନଙ୍କର କିଛି ବିଷୟବାଡ଼ି ଅଛି, ଯେଉଁମାନେ ଧନୀ, ଜମିଦାର ଓ ମହାଜନ ବୋଲି ପରିଚିତ, ଏହି ଦୁର୍ଭିକ୍ଷ ସମୟରେ ସେମାନଙ୍କ ମନୋବୃତ୍ତି ଓ ବ୍ୟବହାର ମତେ ଯେପରି ଯାହା ଜଣାଗଲା, ସେ ବିଷୟରେ କିଛି ନ ଲେଖିବା ଉଚିତ ମନେ କରୁଛି। ସ୍ୱେଚ୍ଛାସେବକ ହୋଇ ଯେଉଁମାନେ କାର୍ଯ୍ୟ କରୁଥିଲେ ସେମାନଙ୍କ କଥା ତହୁଁ ବଳେ। ଛାତ୍ର ସମାଜରୁ କେହି ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କ ସେବା କରିବାକୁ ଆସିଥିଲେ ବୋଲି ମୋର ମନେ ହୁଏ ନାହିଁ। ସତ୍ୟବାଦୀର ସ୍କୁଲ ଛାତ୍ର ଓ ଶିକ୍ଷକ କାର୍ଯ୍ୟ ନ କରିଥିଲେ ଅନେକ ଅଞ୍ଚଳରେ ସାହାଯ୍ୟ ଦେବା ଅସମ୍ଭବ ହୋଇଥାନ୍ତା। କିନ୍ତୁ ଏମାନେ ସ୍କୁଲ ଛାଡ଼ି ଦୀର୍ଘକାଳ ରହି ପାରିଲେ ନାହିଁ। ଏମାନଙ୍କ ପରେ ଯେଉଁମାନଙ୍କ ଉପରେ କେନ୍ଦ୍ର ଚଳାଇବାର ଭାର ରହିଲା ସେମାନଙ୍କ କଥା କହିଲେ ସରିବ ନାହିଁ। ଏହି ସବୁ ଦେଖି ମୋ ମନରେ ଗଭୀର ଶୋକ ଜାତ ହୋଇଛି। ଏତିକିବେଳେ ମତେ ଓଡ଼ିଶାର ଭବିଷ୍ୟତ୍ ଅନ୍ଧକାର ପ୍ରାୟ ବୋଧ ହେଲା। ପୁରୀ ଦୁର୍ଭିକ୍ଷ ସାହାଯ୍ୟ କାର୍ଯ୍ୟ ଶେଷ କରି ମୁଁ ଅତି ଦୁଃଖରେ ଓଡ଼ିଶାରୁ ଫେରିଲି। ଏହି ସମୟରୁ ମୁଁ ମନ ମଧ୍ୟରେ ନିଶ୍ଚୟ କଲି ଯେ, ଓଡ଼ିଶାରେ ଯଦି ମତେ ସ୍ଥାୟୀଭାବରେ ରହି କେବେ କିଛି କରିବାକୁ ହୁଏ ତେବେ ମୁଁ ଏହି ପଲ୍ଲିଗ୍ରାମରେ ରହି କାର୍ଯ୍ୟ କରିବି। ଏଣେ ଦୁର୍ଭିକ୍ଷ ଅଞ୍ଚଳରେ ମତେ ଅତି କଠିନ ପରିଶ୍ରମ କରିବାକୁ ପଡ଼ିଥିଲା ଏହା କହିବା ଅନାବଶ୍ୟକ। ସର୍ବଦା ପାଣି କାଦୁଅରେ ବୁଲି ବୁଲି ମତେ ମ୍ୟାଲେରିଆ ଜ୍ୱର ହେଲା। ତଥାପି ମୁଁ ମୋର କର୍ମ କ୍ଷେତ୍ର ଛାଡ଼ି ନାହିଁ। ଜ୍ୱରରେ ମଧ୍ୟ ଗ୍ରାମ ସବୁ ବୁଲି ମୁଁ ମୋର କର୍ତ୍ତବ୍ୟ ପାଳନ କରିଛି।

ଏହି ପୁରୀ ଦୁର୍ଭିକ୍ଷ ଅଞ୍ଚଳରେ କାର୍ଯ୍ୟ କରୁଥିଲାବେଳେ ମୁଁ ତିଳକ ମହାରାଜାଙ୍କ ମୃତ୍ୟୁ ସମ୍ବାଦ ପାଇଥିଲି। ସାରା ଭାରତରେ ଗୋଟାଏ ଦୁଃଖର ଛାୟା ଘୋଟିଗଲା। ତିଳକ ମହାରାଜ ଦେଶସେବା କରି ପ୍ରଥମ ଜେଲ ବରଣ କରିଥିଲେ। ଏ ଦେଶରେ ସ୍ୱରାଜ୍ୟ ବା ସ୍ୱାଧୀନତା ଏହି ଦୁଇଟି ଶବ୍ଦ ରାଜବିଦ୍ରୋହ ସୂଚକ ବୋଲି ବିବେଚିତ ହେଉଥିଲା। 'ସ୍ୱରାଜ୍ୟ ଭାରତବାସୀର ଜନ୍ମଗତ ଦାବୀ' ଏହି ବାଣୀ ତିଳକ ମହାରାଜ ପ୍ରଥମେ ଏ ଦେଶବାସୀଙ୍କୁ ଶୁଣାଇ ଥିଲେ। ଭାରତରେ ସ୍ୱରାଜ୍ୟ ଆନ୍ଦୋଳନ ମୂଳଭିତ୍ତି ତିଳକ ମହାରାଜ ସ୍ଥାପନ କରିଥିଲେ ବୋଲି କୁହାଯାଇ ପାରେ। ମହାତ୍ମାଗାନ୍ଧୀଙ୍କ ଭାରତ ଆଗମନ ପୂର୍ବରୁ ଏ ଦେଶରେ ତିଳକ ମହାରାଜ ଦେଶପୂଜ୍ୟ ସର୍ବଶ୍ରେଷ୍ଠ ନେତା ଥିଲେ। ତେଣୁ ସେ ଲୋକମାନ୍ୟ ଉପାଧି ଦେଶବାସୀଙ୍କଠାରୁ ପାଇଥିଲେ। କେବଳ ରାଜନୀତି ନୁହେଁ, ମୌଳିକ ଗବେଷଣା ଓ ଜ୍ଞାନ ବିଜ୍ଞାନରେ ମଧ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା। ତାହାଙ୍କ ଦ୍ୱାରା ରଚିତ ଗୀତା ରହସ୍ୟ ତାଙ୍କ ପାଣ୍ଡିତ୍ୟର ପରିଚୟ ଦେଉଛି। ତିଳକ ମହାରାଜାଙ୍କ ନୀତି ହେଉଛି 'ଶଠେ ଶାଠ୍ୟଂ' ବିଧୀୟତେ'।

ଯେ ଯେତିକି ସହଯୋଗ କଲା ଆମ୍ଭର ତା'ଠାରେ ସେତିକି ସହଯୋଗ କରିବା ଦରକାର। ଇଂରେଜୀରେ କହନ୍ତି, 'Responsive Coporation' ଏହିପରି ଏକ ଜନନାୟକଙ୍କ ମୃତ୍ୟୁରେ ସାରା ଭାରତ ବିଚଳିତ ହେବ ଏଥିରେ ସନ୍ଦେହ କଣ ଅଛି। କିନ୍ତୁ ଓଡ଼ିଶା ବାୟୁମଣ୍ଡଳରେ କୌଣସି ତରଙ୍ଗ ଉଠି ନ ଥିଲା। ତିଳକ ମହାରାଜଙ୍କ ଅବସାନରେ ଦେଶର ରାଜନୈତିକ ପରିସ୍ଥିତିରେ କି ପରିବର୍ତ୍ତନ ଘଟିଲା ତାହା ଓଡ଼ିଶାର ତତ୍କାଳୀନ ଜୀବନ ଧାରାକୁ ତିଳେ ମାତ୍ର ସ୍ପର୍ଶ କରି ନ ଥିଲା। ତିଳକ ମହାରାଜଙ୍କ ତିରୋଧାନ ଗୋଟିଏ ଦୈବ ଘଟଣା ପ୍ରାୟ ମତେ ବୋଧ ହେଲା। ମୋ ମନରେ ଗୋଟାଏ ଭୟ ଥିଲା, ମହାତ୍ମାଗାନ୍ଧୀ ଓ ତିଳକ ମହାରାଜ କଦାପି ରାଜନୈତିକ ନୀତିବାଦରେ ଏକମତ ହେବେ ନାହିଁ। ଭାରତର ରାଜନୈତିକ ଜୀବନ ଧାରା ଦୁଇ ଭାଗରେ ବିଭକ୍ତ ହୋଇଯିବ। କିନ୍ତୁ ଲୋକମାନ୍ୟ ତିଳକଙ୍କ ତିରୋଧାନ ମହାତ୍ମାଗାନ୍ଧୀଙ୍କର ଆବିର୍ଭାବ ବେଳକୁ ଘଟିବାଦ୍ୱାରା ମହାତ୍ମାଜୀଙ୍କ ପାଇଁ ପଥ ଟିକିଏ ସହଜ ହେଲା ବୋଲି ମୋ ମନରେ ସ୍ୱତଃ ଗୋଟିଏ ଭାବ ଫୁଟି ଉଠିଥିଲା। ମହାତ୍ମାଗାନ୍ଧୀ କହିଥିଲେ, "ଲୋକମାନ୍ୟ ତିଳକ ମରି ନାହାନ୍ତି। ସେ ଜୀବିତ ଅଛନ୍ତି। ଭାରତର ରାଜନୈତିକ ଜୀବନର ପ୍ରତିମୂର୍ତ୍ତି ଥିଲେ ଲୋକମାନ୍ୟ ତିଳକ। ଏହି ଜୀବନ ଯେତେଦିନ ଥିବ ତେତେଦିନ ତିଳକ ମହାରାଜ ଜୀବିତ ଅଛନ୍ତି ବୋଲି ବୁଝିବାକୁ ହେବ।" ମହାତ୍ମାଗାନ୍ଧୀଙ୍କର ଏହି ପ୍ରକାର ଉଦ୍‌ବୋଧନ ବାଣୀ ସେତେବେଳେ ରାଜନୈତିକ ଜୀବନରେ ଗୋଟିଏ ନୂତନ ଭାବ ତରଙ୍ଗ ଖେଳାଇ ଦେଲା। ଲୋକମାନ୍ୟ ତିଳକଙ୍କ ତିରୋଧାନ ସଂବାଦ ଯେଉଁମାନଙ୍କ ହୃଦୟରେ ଆଘାତ କଲା ସେମାନଙ୍କ ମଧ୍ୟରୁ ଅନେକ ପ୍ରକାଶ୍ୟରେ ଏଣିକି ଦେଶ ସେବା କାର୍ଯ୍ୟରେ ସହଯୋଗ କରିବାର ଜଣାଗଲା। ପୁରୀ ଦୁର୍ଭିକ୍ଷ ଅଞ୍ଚଳର ଗଡ଼ତୋରିହ କେନ୍ଦ୍ରରେ ଥିଲାବେଳେ ମୁଁ ଏ ସଂବାଦ ପାଇଥିଲି। ସେଠାରେ ଉପସ୍ଥିତ ବ୍ୟକ୍ତିମାନଙ୍କୁ ତିଳକ ମହାରାଜାଙ୍କ କଥା କହିଲାବେଳେ, ଦେଶର ଭଲ ମନ୍ଦ ସଂବାଦ ଜାଣିବାକୁ ଏବଂ ଦେଶ ପାଇଁ କିଛି ସେବା କରିବାକୁ ପ୍ରତ୍ୟହ ଅଭ୍ୟାସ କରିବା ଉଚିତ ବୋଲି ବୁଝାଇଥିଲି।

ସେ ଯାହା ହେଉ ଲୋକମାନ୍ୟ ତିଳକ ମହାରାଜଙ୍କ ମୃତ୍ୟୁରେ ଦେଶର ହୃଦୟ ଟିକିଏ ଦୋହଲି ଯାଇଛି। ଏଣେ ମହାତ୍ମାଜୀ ଅହିଂସାପୂର୍ଣ୍ଣ ଅସହଯୋଗର ବାଣୀ ଦେଶକୁ ଶୁଣାଇବାକୁ ଆରମ୍ଭ କରିଛନ୍ତି। ଇତି ମଧ୍ୟରେ ବିଲାତ ପାର୍ଲିଆମେଣ୍ଟ ସଭା ପଞ୍ଜାବ ମାମଲାର ନିଷ୍ପତ୍ତି କରି ଦେଲେ। କଂଗ୍ରେସ ଅଥବା ଦେଶ ଯେପରି ଯାହା ଦାବୀ କରିଥିଲେ ତତ୍‌ପ୍ରତି ବିଲାତର ମନ୍ତ୍ରୀମାନେ ଦୃଷ୍ଟିପାତ କଲେ ନାହିଁ। ଏହି ନିଷ୍ପତ୍ତିରେ ସାରା ଭାରତରେ ଗୋଟାଏ ଅସନ୍ତୋଷ ଭାବ ଫୁଟି ଉଠିଲା। ଏହାର ବିଚାର କରିବା ପାଇଁ ବେନାରସରେ ନିଖିଳ ଭାରତ କଂଗ୍ରେସ କମିଟି ବସି କଂଗ୍ରେସର ଗୋଟିଏ ବିଶେଷ ବୈଠକ ବସାଇବାକୁ ସ୍ଥିର କଲେ। କଲିକତାରେ କଂଗ୍ରେସର ଏହି ବିଶେଷ ବୈଠକ ବସି ଦେଶର ବର୍ତ୍ତମାନ ପରିସ୍ଥିତି ବିଚାର କରି

କର୍ତ୍ତବ୍ୟ ନିରୂପଣ କରିବାର ସ୍ଥିର ହେଲା । ପଞ୍ଜାବକେଶରୀ ଲାଲା ଲଜପତ୍ ରାଏ ଏହି କଂଗ୍ରେସର ସଭାପତି ହେଲେ । ପଞ୍ଜାବ ଗୋଳମାଳ ବେଳେ ଲାଲାଜୀ ଭାରତରେ ନ ଥିଲେ । ବହୁ ଦିନୁ ସେ ଦେଶରୁ ନିର୍ବାସିତ ହୋଇ ଆମେରିକାରେ ଯାଇ ରହିଥିଲେ । ଭାରତକୁ ଫେରି ଆସିବାକୁ ଅନୁମତି ପାଇ ସେ ବର୍ତ୍ତମାନ ଆସି ଦେଶରେ ଉପସ୍ଥିତ ହୋଇଛନ୍ତି । ଦେଶରେ ସେ ଯେପରି ସେବା କରିଛନ୍ତି, ଦେଶପାଇଁ ସେ ଯେପରି ଦୁଃଖ କଷ୍ଟ ସହିଛନ୍ତି ସେ ସବୁକୁ ସ୍ମରଣ କରି ତାହାଙ୍କୁ ଏହି କଲିକତା କଂଗ୍ରେସର ସଭାପତି ଆସନ ଗ୍ରହଣ କରିବାକୁ ଆହ୍ୱାନ କରା ଯାଇଛି । ପଞ୍ଜାବ ମାମଲାକୁ ଇଂରେଜ ସରକାର ଯେପରି ନିଷ୍ପତ୍ତି କଲେ, ଏହି ବିଷୟ ନେଇ ଇଂରେଜ ସରକାରଙ୍କ ଯେ ମନୋବୃତ୍ତି ପ୍ରକାଶ ପାଇଲା, ତହିଁରେ ଦେଶର ଲୋକେ ବଡ଼ ବିଚଳିତ ହୋଇଛନ୍ତି । ହୃଦୟର ଭାବ ପ୍ରକଟ କରିବା ପାଇଁ ସମସ୍ତେ ଗୋଟିଏ ବାଟ ଖୋଜୁଛନ୍ତି । ଜଣେ ପରିଚାଳକ ଦେଶ ଖୋଜୁଛି । ଏହିପରି ପରିସ୍ଥିତିରେ କଲିକତାରେ କଂଗ୍ରେସର ବିଶେଷ ଅଧିବେଶନ ବସୁଛି । ଏହିଠାରେ ଦେଶର ବର୍ତ୍ତମାନ ସମସ୍ୟା କିପରି ସମାଧାନ ହେଉଛି ତାହା ଜାଣିବାକୁ ଚାରିଆଡ଼େ ଲୋକେ ଚାହିଁଛନ୍ତି । ଏହିଠାରେ ମହାତ୍ମାଗାନ୍ଧୀ ଅସହଯୋଗ ପ୍ରସ୍ତାବ ଉପସ୍ଥାପନ କଲେ । ''ବର୍ଷକେ ସ୍ୱରାଜ୍ୟ ଲାଭ'' ଏହି ବାଣୀ କଲିକତା କଂଗ୍ରେସରେ ମହାତ୍ମାଜୀ ଦେଶବାସୀଙ୍କୁ ଶୁଣାଇଲେ । 'ଅହିଂସାପୂର୍ଣ୍ଣ ଅସହଯୋଗ କାର୍ଯ୍ୟକ୍ରମକୁ ପୂରାମାତ୍ରାରେ ଯଦି ଦେଶବାସୀ ପାଳନ କରିବେ, ତେବେ ବର୍ଷକେ ସ୍ୱରାଜ୍ୟ ପ୍ରାପ୍ତି କଦାପି ଅସମ୍ଭବ ନୁହେଁ ।

କଲିକତାର ବିଶେଷ ଅଧିବେଶନରେ ମହାତ୍ମାଜୀଙ୍କ ପ୍ରସ୍ତାବ ବହୁମତରେ ଗୃହୀତ ହେଲା । କିନ୍ତୁ ଦେଶର ମୁଖ୍ୟ ନେତାମାନେ ଅଧିକାଂଶ ଏହାର ବିରୋଧ କଲେ । ଲାଲା ଲଜପତ୍ ରାଏ, ଦେଶବନ୍ଧୁ ଚିତ୍ତରଂଜନ ପ୍ରଭୃତି ଏହାର ପ୍ରତିବାଦ କଲେ । କଲିକତା କଂଗ୍ରେସ ଶେଷ ହେଲା । ଏହାପରେ ମହାତ୍ମାଜୀ କଂଗ୍ରେସର ଏହି ପ୍ରସ୍ତାବ ଅନୁସାରେ ପ୍ରଚାର ଉଦ୍ଦେଶ୍ୟରେ ବାହାରିଲେ । ଭାରତର ପ୍ରତ୍ୟେକ ପ୍ରଦେଶରେ ଅସହଯୋଗ ପ୍ରସ୍ତାବ ନେଇ ବାଦ ପ୍ରତିବାଦ ଦେଖାଗଲା । ପ୍ରତ୍ୟେକ ପ୍ରଦେଶରେ ଯୁବକ ଶ୍ରେଣୀ ମହାତ୍ମାଜୀଙ୍କ ପ୍ରସ୍ତାବକୁ ସାଦରେ ଗ୍ରହଣ କଲେ । ପୁରୁଣାକାଳିଆ ବଡ଼ ବଡ଼ ନେତାମାନେ ଅଧିକାଂଶ ଏହାର ପ୍ରତିବାଦ କଲେ । ଏହିପରି ଭାବରେ ରାଜନୈତିକ ଜୀବନରେ ଗୋଟାଏ ସଂଘର୍ଷଣ ଆରମ୍ଭ ହେଲା; କିନ୍ତୁ ଓଡ଼ିଶା ପ୍ରାଣରେ ବର୍ତ୍ତମାନ ପର୍ଯ୍ୟନ୍ତ କୌଣସି ସ୍ପନ୍ଦନ ନାହିଁ । କୌଣସି ଚର୍ଚ୍ଚା ନାହିଁ । ରାଜନୈତିକ ଜୀବନର କୌଣସି ଚିହ୍ନ ନାହିଁ । ପଣ୍ଡିତ ଗୋପବନ୍ଧୁ ଦାସ ବିହାର ଓ ଓଡ଼ିଶା ଲାଟସଭାର ମେମ୍ବର ଥାଇ ଅନେକ ଲୋକହିତକର କାର୍ଯ୍ୟ କରିଛନ୍ତି ଓ କରୁଛନ୍ତି । ସରକାରୀ ଓ ବେସରକାରୀ ଉଭୟ କ୍ଷେତ୍ରରେ ତାହାଙ୍କର ସୁନାମ ଓ ପ୍ରଭାବ ଅଛି । ଏହି ପ୍ରଭାବ ବଳରେ ସେ ଓଡ଼ିଶା ଉପାନ୍ତ ଜିଲାମାନଙ୍କରେ ଓଡ଼ିଆର ପ୍ରଭାବ ବିସ୍ତାର କରୁଛନ୍ତି । ଓଡ଼ିଆ ଭାବର ଉଦ୍ରେକ କରି ତାହାକୁ ସ୍ଥାୟୀ କରିବା ଉଦ୍ଦେଶ୍ୟରେ ଭିନ୍ନ ଭିନ୍ନ କାର୍ଯ୍ୟ

ଆରମ୍ଭ କରିଅଛନ୍ତି। ଓଡ଼ିଆରେ ବିସ୍ତର ଶିକ୍ଷା ପ୍ରଚାରର କଳ୍ପନା ବାନ୍ଧିଛନ୍ତି। ଏପରି ଅବସ୍ଥାରେ ସରକାରୀ ସମ୍ବନ୍ଧ ଛିଣ୍ଡାଇ ଦେଇ ଅସହଯୋଗ କାର୍ଯ୍ୟକ୍ରମକୁ ପୂର୍ଣ୍ଣ ପ୍ରାଣରେ ଗ୍ରହଣ କରିବାକୁ ତାଙ୍କର ସାହସ ହେଉ ନାହିଁ। ଏହି ନୀତିଦ୍ୱାରା ସେ ଦରିଦ୍ର ଓ ଅଶିକ୍ଷିତ ଓଡ଼ିଶା ଦେଶରେ ରାଜନୈତିକ ଜୀବନ ସଂଚାର କରି ଅହିଂସାପୂର୍ଣ୍ଣ ବିପ୍ଳବ ସୃଷ୍ଟି କରି ପାରିବେ ବୋଲି ସେ ବିଶ୍ୱାସ କରି ପାରୁ ନାହାନ୍ତି। ଦୁର୍ଭିକ୍ଷ କାର୍ଯ୍ୟ କଲାବେଳେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସହିତ ଦେଖା ସାକ୍ଷାତ ହେଲେ ମୁଁ ତାହାଙ୍କ ସହିତ ବହୁତ ଯୁକ୍ତି କରେ। ବେଳେ ବେଳେ ଝଗଡ଼ା କରେ। ମୁଁ ଗୋପବନ୍ଧୁ ବାବୁଙ୍କୁ କହେ, "ଆପଣ ଅସହଯୋଗ ଆନ୍ଦୋଳନରେ ଯୋଗ ନ ଦେଲେ ଓଡ଼ିଶାର ଘୋର ଦୁର୍ନାମ ହେବ; ଓଡ଼ିଶା ଚିରଦିନ ପାଇଁ ପଛରେ ପଡ଼ି ରହିବ।" ବେଳେ ବେଳେ ଗୋପବନ୍ଧୁ ବାବୁ ମୋଠାରୁ ଏପରି କଥା ଶୁଣି ବିରକ୍ତ ହୋଇ ଉଠନ୍ତି। ତାହାଙ୍କ ସହିତ ଦେଖା ହେଲେ ମୋର ଝଗଡ଼ା ହୁଏ।

କିନ୍ତୁ ମୁଁ ଲକ୍ଷ୍ୟ କରି ଦେଖିଛି, ଗୋପବନ୍ଧୁ ବାବୁ ସବୁବେଳେ ଗମ୍ଭୀର, ସବୁବେଳେ ଚିନ୍ତିତ। ଓଡ଼ିଶାରେ କେହି ଆଉ ନାହିଁ ସେ ଯାହା ସହିତ ବିଚାର କରିବେ, ପରାମର୍ଶ କରିବେ। ଯୁବକ ଅବା ବୃଦ୍ଧ କେହି ନାହିଁ। ଅମୃତ ଲାଲ ଥକ୍କର ପୁରୀରେ ରହି ଦୁର୍ଭିକ୍ଷ କେନ୍ଦ୍ର ପରିଚାଳନା କରୁଥାନ୍ତି। ସେ ମଧ୍ୟ ଗୋପବନ୍ଧୁ ବାବୁଙ୍କ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାକୁ ପରାମର୍ଶ ଦିଅନ୍ତି। ଦେଶର ଏହି ପରିବର୍ତ୍ତିତ ପରିସ୍ଥିତି ଦେଖି ଗୋପବନ୍ଧୁ ବାବୁ ବଡ଼ ଚିନ୍ତିତ। ସେ କଣ କରିବେ କିଛି ନିଶ୍ଚୟ କରି ପାରିଲେ ନାହିଁ।

ନାଗପୁର କଂଗ୍ରେସରେ କଣ ହେବ ତାହା ଜାଣିବା ପର୍ଯ୍ୟନ୍ତ ସେ ଅପେକ୍ଷା କରି ରହିଲେ। ଅସହଯୋଗ ଆନ୍ଦୋଳନ ନେଇ ଦେଶରେ ଚାଲିଥିବା ମତାନ୍ତର ଦେଖି ଅନେକଙ୍କର ବିଶ୍ୱାସ ଜନ୍ମିଲା ଯେ, ନାଗପୁରଠାରେ କଂଗ୍ରେସର ସାଧାରଣ ବାର୍ଷିକ ଅଧିବେଶନ ହେବ; ତହିଁରେ ମହାତ୍ମାଜୀଙ୍କ ପ୍ରସ୍ତାବ ପରିବର୍ତ୍ତିତ ହୋଇଯିବ; ଦେଶ ଅସହଯୋଗ ନୀତି କଦାପି ଗ୍ରହଣ କରିବ ନାହିଁ। ଏହି ପରିସ୍ଥିତି ଦେଖି ମୁଁ ମନେ ମନେ ନିଶ୍ଚୟ କଲି ଓଡ଼ିଶାରେ ରହି ଅସହଯୋଗ ପ୍ରଚାର କରିବାକୁ। ମୁଁ ଇଚ୍ଛା କଲେ ନିଜ ଇଚ୍ଛାରେ ଓଡ଼ିଶାରେ ରହି ନ ପାରେ। ଏଥିପାଇଁ ମହାତ୍ମାଜୀ ମତେ ଅନୁମତି ଦେବା ଆବଶ୍ୟକ। ସୁତରାଂ ମୁଁ ମୋର ଇଚ୍ଛା ପ୍ରକାଶ କରି ମହାତ୍ମାଜୀଙ୍କ ନିକଟକୁ ଖଣ୍ଡିଏ ପତ୍ର ଦେଲି। ମହାତ୍ମାଜୀ ସେତେବେଳକୁ ମାନ୍ଦ୍ରାଜରେ ପ୍ରଚାର କରି ବୁଲୁଥାନ୍ତି। ତାହାଙ୍କଠାରୁ କିଛି ଉତ୍ତର ପାଇଲି ନାହିଁ। ସେ କଲିକତାକୁ ଡିସେମ୍ବର ତା ୧୭ ରିଖ ଦିନ ଆସିବାର ମୁଁ ସମ୍ବାଦପତ୍ରରୁ ପାଠ କଲି। ଏହାର ଦୁଇଦିନ ପୂର୍ବରୁ ପୁରୀ ଛାଡ଼ି ମହାତ୍ମାଜୀଙ୍କ ସହିତ ସାକ୍ଷାତ୍ କରିବା ଉଦ୍ଦେଶ୍ୟରେ ମୁଁ କଲିକତା ଯାତ୍ରା କଲି। ପୁରୀର ଦୁର୍ଭିକ୍ଷ କାର୍ଯ୍ୟ ଶେଷ ହେଲା।



# ସପ୍ତମ ଭାଗ

## ପ୍ରଥମ ପରିଚ୍ଛେଦ

### ଅସହଯୋଗ ଆନ୍ଦୋଳନ

ସାବରମତୀ ସତ୍ୟାଗ୍ରହ ଆଶ୍ରମକୁ ଫେରିଯିବା ବାଟରେ କଲିକତା ଠାରେ ମୁଁ ମହାତ୍ମାଜୀଙ୍କୁ ସାକ୍ଷାତ କଲି। ମହାତ୍ମାଗାନ୍ଧୀ କଲିକତାରେ ଅସହଯୋଗ ବାର୍ତ୍ତା ପ୍ରଚାର କରିବା ପାଇଁ ଆସିଛନ୍ତି। କିନ୍ତୁ ବାରିଷ୍ଟର ଚିତ୍ତରଂଜନ ଓ ବାବୁ ବିପିନ ପାଲ୍ ପ୍ରଭୃତି ଅସହଯୋଗ ଆନ୍ଦୋଳନର ବିପକ୍ଷରେ, ଏଣୁ ମହାତ୍ମାଜୀ କଲିକତାରେ ଉପସ୍ଥିତ ହେଲେ ମଧ ତାହାଙ୍କ ନିକଟକୁ ଉପରୋକ୍ତ ନେତାମାନେ କେହି ଆସିଲେ ନାହିଁ। ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ଚକ୍ରବର୍ତ୍ତୀ ଓ ପଦ୍ମରାଜ ଜୈନ ଏହି ଦୁଇଜଣ କେବଳ ମହାତ୍ମାଜୀଙ୍କ ଅଭ୍ୟର୍ଥନାର ଭାର ନେଇଥାନ୍ତି। ଏଥର ମହାତ୍ମାଜୀ କଲିକତାର ଗୋଟିଏ ଗୁଜରାଟି ପାଠଶାଳାରେ ରହିଲେ। ସନ୍ଧ୍ୟାରେ ଗୋଟିଏ ସାଧାରଣ ସଭା ହେଲା। ସେଥିରେ ବାରିଷ୍ଟର ଚିତ୍ତରଂଜନ ପ୍ରଭୃତି ନେତାମାନେ କେହି ସହଯୋଗ କଲେ ନାହିଁ। କଲିକତାରୁ ମହାତ୍ମାଜୀ ନାଗପୁର କଂଗ୍ରେସକୁ ଗଲେ। ଏହିଠାରେ କଂଗ୍ରେସର ବାର୍ଷିକ ଅଧିବେଶନ ହେଉଛି। ଏହି ବାର୍ଷିକ ଅଧିବେଶନରେ କଂଗ୍ରେସ ଯଦି ଅସହଯୋଗ ପ୍ରସ୍ତାବକୁ ଗ୍ରହଣ କରେ ତେବେ ଦେଶରେ ଆନ୍ଦୋଳନ ଚାଲିବ। କିନ୍ତୁ ନାଗପୁର କଂଗ୍ରେସରେ ମହାତ୍ମାଜୀଙ୍କ ଅସହଯୋଗ ପ୍ରସ୍ତାବ ଯେପରି ଗୃହୀତ ହୋଇ ନ ପାରିବ ସେଥିପାଇଁ ବହୁତ ଚେଷ୍ଟା କରାଗଲା। ବଙ୍ଗଦେଶରୁ ଖାସ ଗୋଟାଏ ରେଳଗାଡ଼ି ବୋଝାଇ ହୋଇ ପ୍ରତିନିଧି ଯାଇ ନାଗପୁରରେ ଉପସ୍ଥିତ ହେଲେ। ପଣ୍ଡିତ ମଦନମୋହନ ମାଲବ୍ୟଜୀ ମଧ ମହାତ୍ମାଜୀଙ୍କ ପ୍ରସ୍ତାବ ବିରୁଦ୍ଧରେ ଥାନ୍ତି। ଲାଲା ଲଜପତ୍ ରାଏ ମଧ ବିରୁଦ୍ଧରେ। ଏହି ନେତାମାନେ ସମସ୍ତେ ପ୍ରତିନିଧି ନେଇ ନାଗପୁର କଂଗ୍ରେସରେ ଉପସ୍ଥିତ ହୋଇଛନ୍ତି ମହାତ୍ମାଜୀଙ୍କ ପ୍ରସ୍ତାବର ବିରୋଧ କରିବାକୁ। ନାଗପୁର କଂଗ୍ରେସରେ ପ୍ରତ୍ୟେକ ପ୍ରଦେଶର ପ୍ରତିନିଧିମାନଙ୍କ ରହିବାପାଇଁ ସ୍ୱତନ୍ତ୍ର ଘର ତିଆରି ହୋଇଥାଏ। ବଙ୍ଗଳାର ପ୍ରତିନିଧିମାନଙ୍କ ମଧରେ ଅସହଯୋଗର ବିପକ୍ଷ ଓ ସପକ୍ଷ ବାଦୀମାନଙ୍କ ମଧରେ ଝଗଡ଼ା ହୋଇ ମାରପିଟ ପର୍ଯ୍ୟନ୍ତ ହୋଇଗଲା। ମହାତ୍ମାଜୀ ଉପସ୍ଥିତ ହୋଇ ଏହି ଝଗଡ଼ା ଶାନ୍ତ କରାଇ ଥିଲେ।

ପ୍ରତିନିଧିମାନଙ୍କ ରହିବା ପାଇଁ ତିଆରି ହୋଇଥିବା ଘରମାନଙ୍କ ମଧ୍ୟରୁ ଦୁଇଟି ଘରରେ ମହାତ୍ମାଜୀ ରହିଥାନ୍ତି । କଂଗ୍ରେସ ବସୁଥିବା ସ୍ଥାନଟିର ନାମ ହୋଇଥାଏ କଂଗ୍ରେସ ନଗର । ଏହିପରି କଂଗ୍ରେସ ନଗର କରି କଂଗ୍ରେସ ବସାଇବା ପ୍ରଥା ଏହି ନାଗପୁରଠାରୁ ଆରମ୍ଭ ହୋଇଛି । ଏଥିପୂର୍ବରୁ ଏପରି କଂଗ୍ରେସ ନଗର ତିଆରି ହେଉ ନ ଥିଲା । ଏହି କଂଗ୍ରେସ ନଗରରେ ନେତୃ ସ୍ଥାନୀୟ ବ୍ୟକ୍ତିମାନଙ୍କ ପାଇଁ ସ୍ୱତନ୍ତ୍ର ଘର ନ ଥିଲା । ସାଧାରଣ ପ୍ରତିନିଧି ରହିବା ଘରେ ମହାତ୍ମାଜୀ ରହୁଥିଲେ । ନାଗପୁର କଂଗ୍ରେସ ସମୟରେ ମହାତ୍ମାଜୀଙ୍କ ପରିଚର୍ଯ୍ୟାର ଭାର ସଂପୂର୍ଣ୍ଣ ଭାବରେ ମୁଁ ବହନ କରିଛି । ମହାତ୍ମାଜୀଙ୍କ ନିକଟରେ ରହିଲେ ଏହି କାମଟି ମତେ ଲାଗେ । ମହାତ୍ମାଜୀଙ୍କ ସେବା କରିବା କାର୍ଯ୍ୟ ବିଶେଷ ଭାବରେ ଅଭ୍ୟସ୍ତ ନ ହେଲେ ଅନ୍ୟ କେହି କରିବା ମଧ ସହଜ ନୁହେଁ । ସୁତରାଂ ମୁଁ ଉପସ୍ଥିତ ହେଲେ ଅନ୍ୟାନ୍ୟମାନେ ମୋ ଉପରେ ଏହି ଭାରଟି ଛାଡ଼ି ଦେଇ ନିଶ୍ଚିନ୍ତ ରହନ୍ତି ।

ଏହି ନାଗପୁର କଂଗ୍ରେସକୁ ଗୋଟାଏ ବାଦ ବିତଣ୍ଡାର ରଣସଜ୍ଜା କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରତ୍ୟେକ ପ୍ରତିନିଧି କ୍ୟାମ୍ପରେ ବାକ୍‌ଯୁଦ୍ଧ ଚାଲିଥାଏ । ଦିନରାତି ଏହି ବାକ୍‌ଯୁକ୍ତିର ବିରାମ ନ ଥାଏ । ମହାତ୍ମାଜୀ ସବୁବେଳେ ଅସହଯୋଗ ପ୍ରସ୍ତାବ ବିଷୟରେ ଆଲୋଚନା କରୁଥାନ୍ତି । ସେ ରାତିରେ ଏକଘଣ୍ଟା ଶୋଇବାକୁ ସମୟ ପାନ୍ତି । ସବୁବେଳେ ତାହାଙ୍କ ରହିବା ଘର ଲୋକାରଣ୍ୟ । ସବୁବେଳେ ସେ ଲାଲା ଲଜପତ୍ ରାଏ ଓ ଚିତ୍ତରଂଜନ ଦାସ ପ୍ରଭୃତି ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ସହିତ ବସି ବିଚାର ଆଲୋଚନା କରୁଥାନ୍ତି । ବିଷୟ ନିର୍ବାଚନ ସଭାରେ ମଧ୍ୟ ଏହି ପ୍ରକାର ଯୁକ୍ତି ଓ ଆଲୋଚନା । ସର୍ବଶେଷରେ କଂଗ୍ରେସରେ ମହାତ୍ମାଜୀଙ୍କ ଅସହଯୋଗ ପ୍ରସ୍ତାବ ସର୍ବ ସମ୍ମତ କ୍ରମେ ଗୃହୀତ ହେଲା । ପଣ୍ଡିତ ମାଲବ୍ୟ କେବଳ ଏହାର ବିରୁଦ୍ଧରେ ଥିଲେ । ମାତ୍ର କଂଗ୍ରେସ ବୈଠକ ପୂର୍ବରୁ ସେ ଜ୍ୱର ରୋଗରେ ଶଯ୍ୟାଶାୟୀ ହୋଇ କଂଗ୍ରେସରେ ଯୋଗ ଦେଇ ନ ପାରିବାରୁ ମହାତ୍ମାଜୀଙ୍କୁ ଲେଖି ପଠାଇଲେ, "ମତେ ଜ୍ୱର ହେଲା, ମୁଁ କଂଗ୍ରେସ ବୈଠକରେ ଯୋଗ ଦେଇ ପାରିଲି ନାହିଁ । ମୁଁ ଯୋଗ ଦେଇଥିଲେ ନିଶ୍ଚୟ ବିରୁଦ୍ଧରେ ଭୋଟ ଦେଇଥାନ୍ତି । କିନ୍ତୁ ମୁଁ ଦେଖୁଛି, ଈଶ୍ୱରଙ୍କ ଇଚ୍ଛା, ତୁମ୍ଭର ପ୍ରସ୍ତାବ ସର୍ବ ସମ୍ମତି କ୍ରମେ ଗୃହୀତ ହେବ । ଏଣୁ ମୋର ଯୋଗ ଦେବାରେ ବିଘ୍ନ ପଡ଼ିଲା ।"

ସେ ଯାହା ହେଉ ନାଗପୁର କଂଗ୍ରେସରେ ଯେ ଉତ୍ସାହ, ଉନ୍ମାଦନା ଓ ଆନନ୍ଦ, ସେପରି ଭାବ ଏପର୍ଯ୍ୟନ୍ତ କଂଗ୍ରେସର ଅନ୍ୟ କୌଣସି ବୈଠକରେ ଦେଖା ଯାଇ ନାହିଁ । ନାଗପୁରଠାରେ ବୋଧ ହେଲା ସୁପ୍ତ ଭାରତ ଏକାବେଳକେ ବିଦ୍ରୋହୀ ହୋଇ ଉଠିଛି । ଭାରତରେ ଅତି ଶୀଘ୍ର ବିଦ୍ରୋହାନଳ ଜ୍ୱଳି ଉଠିବ । ଏହି ବିଦ୍ରୋହାନଳର ପ୍ରଖର ବେଗରେ କେହି ପ୍ରତିବନ୍ଧକ ହୋଇ ରହି ପାରିବେ ନାହିଁ । ଚିତ୍ତରଂଜନ,

ଲାଲା ଲଜପତ୍ ପ୍ରଭୃତି ଏହାର ବିରୋଧ କରିବାକୁ ଯେପରି ଦୃଢ଼ତାର ସହିତ ଦଳ ବାନ୍ଧିଥିଲେ ସେମାନେ ଏକାବେଳକେ ବଦଳି ଗଲେ। ନାଗପୁର କଂଗ୍ରେସର କାର୍ଯ୍ୟ ଦେଖି, ବର୍ଷକ ଭିତରେ ସ୍ୱରାଜ୍ୟ ହେବା ନ ହେବା ପ୍ରଶ୍ନ ଆଉ କାହାରି ମନରେ ରହିଲା ନାହିଁ। ସମସ୍ତଙ୍କ ବିଶ୍ୱାସ ହେଲା, ବର୍ଷକ ପରେ ସ୍ୱରାଜ୍ୟ ସୁନିଶ୍ଚିତ। କଂଗ୍ରେସ ଶେଷ ହେଲା। ଏକ ନୂତନ ବିଶ୍ୱାସ ଓ ନୂତନ ପ୍ରେରଣା ନେଇ ପ୍ରତିନିଧିମାନେ ନିଜ ନିଜ ପ୍ରଦେଶକୁ ଫେରିଲେ। ପ୍ରତ୍ୟେକଙ୍କ ମନରେ ଏକମାତ୍ର ଭାବ ଫୁଟି ଉଠିଲା, ସେ ଯାଇ କିପରି ସର୍ବାପେକ୍ଷା ବଡ଼ କାମ ଓ ବଡ଼ ତ୍ୟାଗ କରିବେ। ଏହି ସବୁ ଘଟଣା ଓ ଦୃଶ୍ୟ ମୋତେ ପ୍ରଭାବିତ କଲା ଏବଂ ଓଡ଼ିଶାକୁ ଫେରି କାର୍ଯ୍ୟ କରିବା ପାଇଁ ମୋର ଭାବନାକୁ ଦୃଢ଼ୀଭୂତ କଲା। ମୁଁ ଭାବିଲି ଆଉ ଓଡ଼ିଶା ଛାଡ଼ି ବାହାରେ ରହିବା ମୋର ଉଚିତ୍ ନୁହେଁ।

ନାଗପୁର କଂଗ୍ରେସକୁ ଓଡ଼ିଶାର ଅଳ୍ପ କେତେ ଜଣ ପ୍ରତିନିଧି ଯାଇଥାନ୍ତି। ପଣ୍ଡିତ ଗୋପବନ୍ଧୁ ଦାସ ଯାଇଥାନ୍ତି ଏହା କହିବା ଅନାବଶ୍ୟକ। ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ମହାତ୍ମାଜୀ ଏପର୍ଯ୍ୟନ୍ତ ଦେଖି ନ ଥାନ୍ତି। ଶ୍ରୀଯୁକ୍ତ ଥକ୍କର ପୁରୀକୁ ଆସିଲାଦିନୁ ଗୋପବନ୍ଧୁ ବାବୁଙ୍କ ବିଷୟରେ ମହାତ୍ମାଜୀ ବହୁତ କଥା ଶୁଣିବାକୁ ପାଇଥାନ୍ତି। ନାଗପୁର କଂଗ୍ରେସବେଳେ ଗୋପବନ୍ଧୁ ବାବୁ କିପରି ମହାତ୍ମାଜୀଙ୍କ ସହିତ ଦେଖା ସାକ୍ଷାତ୍ କରିବେ, ଏହି ସୁବିଧା ଟିକକ କରାଇଦେବା ମୁଁ ନିଜର ଗୋଟିଏ କର୍ତ୍ତବ୍ୟ ବୋଲି ଭାବି ନେଲି। ଶେଷରେ ଗୋପବନ୍ଧୁ ବାବୁ ମହାତ୍ମାଜୀଙ୍କ ସହିତ ଦେଖା ସାକ୍ଷାତ୍ କଲେ। ତାହା ପୁଣି ତିନିମିନିଟ୍ ପାଇଁ। କାରଣ, ଅଧିକ ସମୟ ଦେବାକୁ ମହାତ୍ମାଜୀଙ୍କ ସମୟ ନ ଥାଏ। ଏହି ତିନି ମିନିଟ ସାକ୍ଷାତ୍‌ରେ ମତେ ଓଡ଼ିଶା ପଠାଇବା କଥା ଗୋପବନ୍ଧୁ ବାବୁ ମହାତ୍ମାଜୀଙ୍କୁ କହିଲେ। ଏପର୍ଯ୍ୟନ୍ତ ମୁଁ ନିଜେ ଓଡ଼ିଶାକୁ ଫେରି କାର୍ଯ୍ୟ କରିବା କଥା ମହାତ୍ମାଜୀଙ୍କୁ କହିବାକୁ ସମୟ ପାଇ ନଥାଏ। ଅନ୍ୟ କେହି ପଦେ କଥା କହି ଶୁଣାଇବା ଭଳି ସମୟ ନଥାଏ। ଏଥିପାଇଁ ମୁଁ ମଧ୍ୟ ସୁବିଧା ଖୋଜୁଥାଏ। ଏହିଠାରେ ସେ କଥା ପଡ଼ିଲାବେଳେ ମହାତ୍ମାଜୀ କହିଲେ, "ଏକ୍ଷଣି ଗୋବିନ୍ଦ ଓଡ଼ିଶା ଫେରିବା କଥା ବିଚାର କରିବାକୁ ମତେ ସମୟ ନାହିଁ। ସେ ଫେରିବାର ହେଲେ ଆଶ୍ରମରୁ ଫେରି ଆସିବ।" ଏହାପରେ ମୁଁ ବମ୍ବେଇ ହୋଇ ସାବରମତୀ ସତ୍ୟାଗ୍ରହ ଆଶ୍ରମକୁ ଫେରିଗଲି। ସତ୍ୟାଗ୍ରହ ଆଶ୍ରମରୁ ଗୋଟିଏ ଶାଖା ସ୍ଥାପନ କରିବାପାଇଁ, ନାଗପୁରଠାରୁ ମହାତ୍ମାଜୀ ଓ୍ୟାର୍ଦ୍ଧା ଗଲେ। ନାଗପୁରରୁ ବମ୍ବେଇ ବାଟେ ମୁଁ ସାବରମତୀ ସତ୍ୟାଗ୍ରହ ଆଶ୍ରମରେ ଉପସ୍ଥିତ ହେଲି। ଓ୍ୟାର୍ଦ୍ଧାଠାରେ ସତ୍ୟାଗ୍ରହ ଆଶ୍ରମର ଗୋଟିଏ ଶାଖା ସ୍ଥାପନ କରି ମହାତ୍ମାଜୀ ସାବରମତୀକୁ ଫେରିଲେ। ମହାତ୍ମାଜୀ ଆଶ୍ରମକୁ ଫେରିଲା ପରେ ତାହାଙ୍କ ସହିତ କଥା ହୋଇ ମୁଁ ଓଡ଼ିଶାକୁ ଫେରି ଅସହଯୋଗ ବାର୍ତ୍ତା ପ୍ରଚାର କରିବା ସ୍ଥିର କଲି। ଆଶ୍ରମ ଛାଡ଼ି ମୁଁ ବମ୍ବେଇ ଆସିଲି।

ନାଗପୁର କଂଗ୍ରେସ ପରେ ଶ୍ରୀଯୁକ୍ତ ଚିତ୍ତରଂଜନ ଦାସ ପୂର୍ଣ୍ଣ ପ୍ରାଣରେ ଅସହଯୋଗ ବାର୍ତ୍ତା ପ୍ରଚାର କରୁଛନ୍ତି। କଲିକତା ସ୍କୁଲ କଲେଜରୁ ହଜାର ହଜାର ସଂଖ୍ୟାରେ ଛାତ୍ର ବାହାରି ଆସୁଛନ୍ତି। ଏହି ଛାତ୍ରମାନେ ସ୍କୁଲ କଲେଜ ଛାଡ଼ି କଣ କରିବେ ? ସେମାନଙ୍କୁ କି କାର୍ଯ୍ୟ ଦିଆଯିବ ? ଇତ୍ୟାଦି ବିଷୟରେ ପରାମର୍ଶ କରିବାପାଇଁ ଶ୍ରୀଯୁକ୍ତ ଚିତ୍ତରଂଜନ ଦାସ ମହାତ୍ମାଗାନ୍ଧୀଙ୍କୁ କଲିକତା ଆସିବାପାଇଁ ଘନ ଘନ ତାର ପଠାଉଅଛନ୍ତି। ଏହି ଆହ୍ୱାନ ପାଇ ମହାତ୍ମାଜୀ କଲିକତା ବାହାରିଲେ। ମୁଁ ତାହାଙ୍କ ସହିତ କଲିକତା ଆସିଲି। କଲିକତାରେ ଏଥର ମହାତ୍ମାଜୀ ଶ୍ରୀଯୁକ୍ତ ଚିତ୍ତରଂଜନ ଦାସଙ୍କ ଅତିଥି। ମହାତ୍ମାଜୀଙ୍କ ସହିତ ମୁଁ ଦେବୀଦାସ ଗାନ୍ଧୀ ଓ ମହାଦେବ ଦେଶାଇ ଏହିପରି ୩/୪ ଜଣ ଥାଉଁ। କଲିକତାରେ ପହୁଞ୍ଚି ମୋର କଟକ ଚାଲିଆସିବାର କଥା। କିନ୍ତୁ ଏହିଠାରେ ମୋତେ ଗୋଟିଏ ବିଶେଷ କାର୍ଯ୍ୟ କରିବାକୁ ପଡ଼ିଲା। ତାହା ଶେଷ ନ କରି ମୁଁ ମହାତ୍ମାଜୀଙ୍କୁ ଛାଡ଼ି ଆସି ପାରୁ ନାହିଁ।

ମୋର ପୂର୍ବ ପରିଚିତ କୁମିଲା ଅଭୟ ଆଶ୍ରମର ସ୍ଥାପନକର୍ତ୍ତା ଡାକ୍ତର ସୁରେଶଚନ୍ଦ୍ର ବାନାର୍ଜି ଓ ଡାକ୍ତର ପ୍ରଫୁଲ୍ଲଚନ୍ଦ୍ର ଘୋଷ ପ୍ରଭୃତି ମହାତ୍ମାଜୀଙ୍କ ସହିତ ଦେଖା କରି ସେମାନଙ୍କ କର୍ମପନ୍ଥା ନିରୂପଣ କରିବାକୁ ଇଚ୍ଛା କଲେ। ଏହି ବିଷୟ ଉଲ୍ଲେଖ କରି ଡାକ୍ତର ପ୍ରଫୁଲ୍ଲ ଘୋଷ ସାବରମତୀ ସତ୍ୟାଗ୍ରହ ଆଶ୍ରମ ଠିକଣାରେ ମୋ ନିକଟକୁ ପତ୍ର ଲେଖିଥିଲେ। ତାହା ମଧ ମୁଁ ମହାତ୍ମାଜୀଙ୍କୁ ଜଣାଇ ଥିଲି। କିନ୍ତୁ ବର୍ତ୍ତମାନ କଲିକତାରେ ମହତ୍ମାଜୀ ଉପସ୍ଥିତ। ମୁଁ ମଧ ତାହାଙ୍କ ସଙ୍ଗରେ। ଏପରି ଅବସ୍ଥାରେ ଡାକ୍ତର ସୁରେଶଚନ୍ଦ୍ର ବାନାର୍ଜି ପ୍ରଭୃତିଙ୍କୁ ମହାତ୍ମାଜୀଙ୍କ ସହିତ ଭେଟ କରାଇ ନ ଦେଇ ମୁଁ ଆସୁଛି କିପରି ? କଲିକତାରୁ ଆସି ମହାତ୍ମାଜୀଙ୍କୁ ମୁହୂର୍ତ୍ତେ ସମୟ ନାହିଁ। ପଦେ କଥା କହିବାକୁ ଅବସର ମିଳୁ ନାହିଁ। ସୁତରାଂ ମୁଁ ସବୁବେଳେ ସମୟ ଓ ସୁବିଧା ଖୋଜୁଛି କିପରି ମହାତ୍ମାଜୀଙ୍କୁ କହି, ଏମାନଙ୍କୁ ଡାକି ଭେଟ କରାଇଦେବି। ଯାହା ହେଉ ଦୁଇ ତିନି ଦିନ କଲିକତାରେ ରହିଲା ପରେ ବଡ଼ କଷ୍ଟରେ ଏମାନଙ୍କୁ ମହାତ୍ମାଜୀଙ୍କ ସହିତ ଭେଟ କରାଇବାପାଇଁ ସମୟ ନିରୂପଣ କରାଇଲି। ଡାକ୍ତର ସୁରେଶଚନ୍ଦ୍ର ବାନାର୍ଜି ପ୍ରଭୃତି ସମସ୍ତେ ଶ୍ରୀଯୁକ୍ତ ଚିତ୍ତରଂଜନ ଦାସଙ୍କ ଘରେ ଉପସ୍ଥିତ ହେଲେ। ମହାତ୍ମାଜୀଙ୍କ ସହିତ ଏକଘଣ୍ଟା କଥାବାର୍ତ୍ତା ଚାଲିଲା। ସେମାନେ ସମସ୍ତେ ଉଚ୍ଚଶିକ୍ଷିତ, ଇତ୍ୟାଦି କଥା ଶୁଣି ମହାତ୍ମାଜୀ ବଡ଼ ଆନନ୍ଦିତ ହୋଇଗଲେ। ସେମାନେ ଏଣିକି ଏକତ୍ର ସଂଘବଦ୍ଧ ଭାବରେ ରହିବାର ପ୍ରସ୍ତାବ କରି ଗୋଟିଏ ଅନୁଷ୍ଠାନ ଗଢ଼ିବାର କଥା ପ୍ରକାଶ କଲେ। ସେହି ଅନୁଷ୍ଠାନର ନାମ ହେବ 'ସବିତାଶ୍ରମ'। ଆଶ୍ରମ ନାମ ଶୁଣିଲା ମାତ୍ରକେ ମହାତ୍ମାଜୀ ଆଶ୍ରମ ବିଷୟରେ ଅନେକ କଥା ବୁଝାଇଲେ। ସବିତାଶ୍ରମ ନାମକୁ ସେ ପସନ୍ଦ କଲେ ନାହିଁ। କାରଣ ସବିତା-ଆଶ୍ରମ ନାମ ଦେଇ ସବିତା ପରି ମନୁଷ୍ୟ ଚରିତ୍ର ଦୀପ୍ତିମାନ୍ ହେବା

ଦରକାର। ସବିତା ପରି ଉଜ୍ଜ୍ୱଳ ଓ ଦୀପ୍ତିମାନ୍ ହେବା ପାଇଁ ପ୍ରଥମେ ମନୁଷ୍ୟ ନିର୍ଭୀକ ହେବା ବାଞ୍ଛନୀୟ। ଆମ୍ଭ ଦେଶରେ ଭୀରୁତା ଆମ୍ଭ ଜାତୀୟ ଜୀବନକୁ ଗ୍ରାସ କରି ପକାଇଛି। ଦେଶର ଯୁବକ ପ୍ରଥମେ ଏହି ଭୟକୁ ଅନ୍ତର ମଧ୍ୟରୁ ଏକାବେଳକେ ଦୂର କରିବା ଦରକାର। ଦେଶରେ ଅଭୟ ବାଣୀ ପ୍ରଚାର କରିବାର ଆବଶ୍ୟକତା ଆଜି ବଡ଼ କାର୍ଯ୍ୟ। ସାଧାରଣ ଲୋକେ ଯେଉଁ ଆଦର୍ଶକୁ କଳ୍ପନା କରି ପାରିବେ ନାହିଁ ସବିତାଶ୍ରମ ନାମରେ ସେହିପରି ଗୋଟିଏ ସାଧାରଣ ମନୁଷ୍ୟର କଳ୍ପନାତୀତ ଆଦର୍ଶ ପଛରେ ନ ଗୋଡ଼ାଇ, ଯାହା ଲୋକସାଧାରଣ ଅକ୍ଳେଶରେ ବୁଝି ପାରିବେ ସେହିପରି ଗୋଟିଏ ନାମ ରଖିବା ଉଚିତ୍। ତୁମ୍ଭମାନଙ୍କର ପସନ୍ଦ ହେଲେ ଆଶ୍ରମର ନାମ 'ଅଭୟାଶ୍ରମ' ରଖିପାର—ମହାତ୍ମାଜୀଙ୍କ ଏହି ଯୁକ୍ତି ଡାକ୍ତର ସୁରେଶଚନ୍ଦ୍ର ବାନାର୍ଜି, ଡାକ୍ତର ପ୍ରଫୁଲ୍ଲ ଘୋଷ ପ୍ରଭୃତି ଅନ୍ତରର ସହିତ ଗ୍ରହଣ କଲେ। ମହାତ୍ମାଜୀଙ୍କ ପରାମର୍ଶ ଅନୁସାରେ ଅଭୟାଶ୍ରମ ନାମରେ ସେମାନେ ଗୋଟିଏ ଅନୁଷ୍ଠାନ ଗଢ଼ି ଦେଶସେବା କାର୍ଯ୍ୟ କରିବାର ସ୍ଥିର ହେଲା। ଏହି ସବୁ ଆଲୋଚନାରୁ ମୁଁ ମଧ ଅନେକ କଥା ଜାଣି ପାରିଲି। ଏହି କାର୍ଯ୍ୟଟି କରାଇବା ପାଇଁ ମୁଁ କଲିକତାରେ ଦୁଇ ତିନି ଦିନ ରହିଲି। ସେହି କାମ ଏପରି ଭାବରେ ଶେଷ ହେଲା। ବର୍ତ୍ତମାନ କଲିକତା ଛାଡ଼ି ମୁଁ ଓଡ଼ିଶା ଆସିବାର କଥା।

ଏପର୍ଯ୍ୟନ୍ତ ଓଡ଼ିଶାକୁ ଆସି କାର୍ଯ୍ୟ କରିବାକୁ ମନ ସବୁବେଳେ ଉଦ୍‌ବିଗ୍ନ ଥିଲା। ଅଦ୍ୟ ସନ୍ଧ୍ୟାରେ ମତେ କଟକ ଯିବାକୁ ହେବ। ଡାକ୍ତର ସୁରେଶଚନ୍ଦ୍ର ବାନାର୍ଜି ପ୍ରଭୃତିଙ୍କୁ ବିଦାୟ ଦେଇ ଫେରିଲା ପରେ, କଟକ ଆସିବା କଥା ମୋ ମନରେ ପଶିଲା। ଓଡ଼ିଶା ଆସିବାକୁ ମନରେ ଯେଉଁ ଆନନ୍ଦ ଜାତ ହେଉଥିଲା ସେ ଆନନ୍ଦ ଆଉ ପାଇଲି ନାହିଁ। ମନ କାହିଁକି ଶୁଖିଯିବାକୁ ଲାଗିଲା। କଟକ ଆସିବା କଥା ମନେ କଲାବେଳକୁ ହୃଦୟ ଶୋକାକୁଳ ହୋଇ ଉଠିଲା। ଏହାର କାରଣ କଣ? କାରଣ ଅନେକ ଅଛି। ସେ ସମସ୍ତ ଏଠାରେ ଉଲ୍ଲେଖ କରି ପାରୁ ନାହିଁ। ପ୍ରଧାନ କାରଣ ମହାତ୍ମାଜୀଙ୍କ ନିକଟରୁ ଚିରକାଳ ପାଇଁ ଅନ୍ତର ହେବାକୁ ପଡ଼ୁଛି। ଏ ପର୍ଯ୍ୟନ୍ତ ମୁଁ ଜଣେ ତାଙ୍କର ନିଜର ଅତି ନିକଟ ଓ ପ୍ରିୟ ଲୋକ ଥିଲି। ମୁଁ କଣ କଲି ନ କଲି ସେ କଥା ତାଙ୍କର ଚିନ୍ତାର ବିଷୟ ଥିଲା। କିନ୍ତୁ ଏଣିକି ତାହାଙ୍କ ସହିତ ମୋର ଏଭଳି ନିକଟ ସମ୍ବନ୍ଧ ଆଉ ରହିପାରିବ କି ନାହିଁ ସନ୍ଦେହ। ମହାତ୍ମାଜୀ ଆଉ ମୋର ଭଲ ମନ୍ଦ ଚିନ୍ତା କରିବେ ଅବା କାହିଁକି? ତାହାଙ୍କ ନିକଟକୁ କେତେ ଲୋକ ଆସୁଛନ୍ତି। ସେ ସମସ୍ତଙ୍କ କଥା ସବୁଦିନ ପାଇଁ ମନେ ରଖିବା ସମ୍ଭବପର ନୁହେଁ। ମୁଁ ପାଖରେ ଥିବାରୁ ସେ ମୋ କଥା ଭାବୁଛନ୍ତି। ମୁଁ ତାହାଙ୍କ ପାଖରୁ ଅନ୍ତର ହୋଇଗଲେ ତାହାଙ୍କ ମନରୁ ଦିନେ ଅନ୍ତର ହୋଇଯିବାର ସମ୍ଭାବନା ଅଛି ଏହା ମୁଁ ବୁଝି ପାରୁଥାଏ। ତେଣୁ ମୋର ମନ ଅସ୍ଥିର। ମୋର ମନ ବ୍ୟାକୁଳ ହେବାର ଏହା ଯଥେଷ୍ଟ କାରଣ ନୁହେଁ କି?

କେବଳ ସେତିକି ନୁହେଁ। ଓଡ଼ିଶାକୁ ଯାଇ କେଉଁଠାରେ ରହିବି, କିପରି କଣ କାର୍ଯ୍ୟ କରିବି ତାହା କିଛି କଳ୍ପନା କରି ପାରୁ ନାହିଁ। ମୋର ଖର୍ଚ୍ଚ କେଉଁଠାରୁ ପାଇବି ଏହା ମଧ୍ୟ ଗୋଟିଏ ପ୍ରଧାନ ଚିନ୍ତା। ପୁଣି ଯାହା କିଛି କରିବି, ତହିଁରେ ମହାତ୍ମାଜୀଙ୍କ ମନ ମାନିବା ଦରକାର। ଓଡ଼ିଶାରେ କାର୍ଯ୍ୟ କରି କିପରି କେତେଦୂର କୃତକାର୍ଯ୍ୟ ହେବି ତାହା ତ କଳ୍ପନା କରି ପାରୁ ନାହିଁ। ଓଡ଼ିଶାର ଗଡ଼ଜାତ ରାଜ୍ୟରେ ମୋର ଘର। ମତେ ଯାହା କିଛି କରିବାକୁ ହେବ ମୋଗଲବନ୍ଦି ରାଜ୍ୟରେ କରିବାକୁ ପଡ଼ିବ। ମୋଗଲବନ୍ଦି ରାଜ୍ୟରେ ମୋର ସଖା ସାଥି କେହି ନାହାନ୍ତି। ଦେଶକାର୍ଯ୍ୟ କରିବାକୁ ହେଲେ ତ୍ୟାଗ ଭାବ ଓ ମନ ବଳ ଦରକାର, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ। କିନ୍ତୁ ଏହି ଦୁଇଟି ପ୍ରଧାନ ସମ୍ବଳ ହେଲେ ମଧ୍ୟ ଏକମାତ୍ର ସମ୍ବଳ ବୋଲି ମୋର ଜୀବନର ଅନୁଭୂତିରୁ ମୁଁ ଏହା ସ୍ୱୀକାର କରିବାକୁ କୁଣ୍ଠିତ ହେଉଛି। ଲୋକ ସାଧାରଣଙ୍କ ସେବା କରିବାକୁ ହେଲେ ପଛକୁ ଧନବଳ ଓ ଲୋକବଳ ଥିଲେ କାର୍ଯ୍ୟ କରିବାକୁ ପଥ କେତେଦୂର ସରଳ ଓ ସହଜ ହୁଏ ତାହା ପ୍ରତ୍ୟେକ ଦେଶସେବକ ହୃଦୟଙ୍ଗମ କରୁଛନ୍ତି। କିନ୍ତୁ ଏ ସବୁ ମୋର କିଛି ନାହିଁ। ମୁଁ ଜଣେ ନିହାତି ଅଜଣା ଅଶୁଣା ଲୋକ। ଏପରି ଅବସ୍ଥାରେ ଓଡ଼ିଶା ପରି ଦେଶରେ କାର୍ଯ୍ୟକରି କିପରି କୃତକାର୍ଯ୍ୟ ହେବି ଏହି ଚିନ୍ତା ମଧ୍ୟ ମନକୁ ଅସ୍ଥିର କରୁଛି। ଏହିପରି ନାନା କାରଣରୁ ଓଡ଼ିଶା ଆସିବା ଆଗରୁ ମନରେ ଯେତେ ଉତ୍ସାହ ଥିଲା ସେ ଉତ୍ସାହ କମି ଯାଉଛି। ଯାହା ହେଉ ମତେ ସେହିଦିନ ସନ୍ଧ୍ୟା ଗାଡ଼ିରେ କଟକ ଯାତ୍ରା କରିବାକୁ ହେବ। ଦିନ ତିନିଟାରୁ ମହାତ୍ମାଜୀ ଦେଶବନ୍ଧୁ ଚିତ୍ତରଂଜନ ଦାସଙ୍କ ସହିତ ଗୋଟିଏ ସଭାକୁ ବାହାରିବାକୁ ଉଦ୍ୟତ ହେବା ସମୟରେ ମୁଁ ତାହାଙ୍କ ଠାରୁ ବିଦାୟ ନେବାକୁ ଉପସ୍ଥିତ ହେଲି। ତାହାଙ୍କଠାରୁ ବିଦାୟ ନେଲାବେଳେ ମହାତ୍ମାଜୀ ମୋ ପିଠିରେ ଗୋଟିଏ ଚାପୁଡ଼ା ପକାଇ କହିଥିଲେ, "ଯାଓ, ଆଚ୍ଛି ତରହେ କାମ୍ କରୋ, ଔର ମେରେକୋ ତୁମ୍‌ହାର ହକିକତ ଲିଖତେ ରହୋ।" ଅର୍ଥାତ୍ "ଯାଅ, ଭଲ କରି କାମ କର ଓ ମତେ ବରାବର ତୋର କଥା ଲେଖିବୁ।"

## ଦ୍ୱିତୀୟ ପରିଚ୍ଛେଦ

### ଓଡ଼ିଶାରେ ଅସହଯୋଗ ପ୍ରଚାର

୧୯୨୧ ମାସ ଫେବୃୟାରୀ ମାସରେ ଅସହଯୋଗ ବାର୍ତ୍ତା ପ୍ରଚାର କରିବା ପାଇଁ ମୁଁ କଟରେ ଉପସ୍ଥିତ ହେଲି। କଟକରେ ପଣ୍ଡିତ ଦୀନବନ୍ଧୁ ପଣ୍ଡା ଦୁଇ ଚାରୋଟି ଦଶପଲ୍ଲାର ଛାତ୍ରଙ୍କୁ ଧରି ରହିଥାନ୍ତି। ମୁଁ ତାହାଙ୍କ ବସାରେ ଆସି ରହିଲି। କଟକରେ ସ୍ୱରାଜ ଆଶ୍ରମ ସ୍ଥାପିତ ହୋଇ ନାହିଁ। କଂଗ୍ରେସ କମିଟି ଗଠନ କରାଯାଇ ନାହିଁ।

ଅସହଯୋଗ ଆନ୍ଦୋଳନ ଓଡ଼ିଶାରେ କିପରି ଭାବରେ ପ୍ରଚାର କରିବାକୁ ହେବ ସେଥିପାଇଁ ସଂଗଠିତ ଭାବରେ କୌଣସି ଚିନ୍ତା କରାଯାଇ ନାହିଁ। ପଣ୍ଡିତ ଗୋପବନ୍ଧୁ ଦାସ କଟକରେ ଅଛନ୍ତି। କାଠଯୋଡ଼ି ନଦୀ ବାଲିରେ ସଭା ଦୁଇ ଚାରୋଟି ହୋଇ ଯାଇଛି। ଓଡ଼ିଶାର ଏକମାତ୍ର ରାଜନୈତିକ ଅନୁଷ୍ଠାନ ଉତ୍କଳ ସମ୍ମିଳନୀ ଚକ୍ରଧରପୁର ବୈଠକରେ କଂଗ୍ରେସର ଆଦର୍ଶକୁ ଗ୍ରହଣ କରିଛି। ନାଗପୁର କଂଗ୍ରେସରୁ ଫେରି ଚକ୍ରଧରପୁର ଠାରେ ପଣ୍ଡିତ ଗୋପବନ୍ଧୁ ଓଡ଼ିଶା ଓ ଓଡ଼ିଆ ଜାତିକୁ ଅସହଯୋଗ ଦୀକ୍ଷାରେ ଦୀକ୍ଷିତ କରାଇ ଅଛନ୍ତି। ଏହି ସବୁ ସଂବାଦ ମୁଁ ଶୁଣିଛି। କିପରି କାର୍ଯ୍ୟ କରିବାକୁ ହେବ ଏବ ବିଷୟରେ ଗୋପବନ୍ଧୁ ବାବୁଙ୍କ ସହିତ କଥାବାର୍ତ୍ତା କରୁଛି।

କଟକରେ ଗୋଟିଏ ଛାତ୍ରାବାସ ଥାଏ। ତାହାର ନାମ ସତ୍ୟବାଦୀ ମେସ୍। ଗୋପବନ୍ଧୁ ବାବୁଙ୍କ ସତ୍ୟବାଦୀ ସ୍କୁଲରୁ ପାଶ୍ କରି ଯେଉଁ ଛାତ୍ରମାନେ କଲେଜରେ ଅଧ୍ୟୟନ କରୁଥାନ୍ତି ସେମାନଙ୍କ ମଧ୍ୟରୁ କେତେକ ବଛା ବଛା ଛାତ୍ର ଏହି ଛାତ୍ରାବାସ ସ୍ଥାପନ କରିଥାନ୍ତି। ସତ୍ୟବାଦୀ ଶିକ୍ଷାକେନ୍ଦ୍ରର ମୌଳିକ ଜୀବନ ଧାରା ସହିତ ନିଜ ଜୀବନକୁ ସଂଯୋଗ କରି ଭବିଷ୍ୟତ ଦେଶସେବା ପାଇଁ ସ୍ୱାଧୀନ ଭାବରେ ଚିନ୍ତା କରିବାର ଅନୁକୂଳ ପରସ୍ଥିତି ଲାଭ କରିବା ଇଚ୍ଛାରେ ଏହି ଛାତ୍ରାବାସଟି ସଂଗଠିତ ହୋଇଥାଏ। ସତ୍ୟବାଦୀ ସ୍କୁଲର ଶିକ୍ଷକମାନେ କଟକ ଆସିଲେ ଏହିଠାରେ ରହନ୍ତି ଓ ଗୋପବନ୍ଧୁ ବାବୁ ମଧ୍ୟ ସେହିଠାରେ ରହନ୍ତି। ଏହି ମେସରେ ଥିବା ଛାତ୍ରମାନଙ୍କ ମଧ୍ୟରୁ ଅଧିକାଂଶ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବା ପାଇଁ ସଂକଳ୍ପ କରି କଲେଜ ପରିତ୍ୟାଗ କଲେ। ଗୋପବନ୍ଧୁ ବାବୁ ଏହି ଛାତ୍ରବାସାଟିକୁ ସ୍ୱରାଜ୍ୟ ଆଶ୍ରମରେ ପରିଣତ କଲେ। ଏହିପରି ଭାବରେ କଟକରେ ପ୍ରଥମ ହୋଇ ଓଡ଼ିଶାରେ ଗୋଟାଏ ସ୍ୱରାଜ୍ୟ ଆଶ୍ରମ ସ୍ଥାପିତ ହେଲା। ଓଡ଼ିଶାର ବିଭିନ୍ନ ଜିଲ୍ଲାରୁ ଛାତ୍ର ଓ ଅନ୍ୟାନ୍ୟ ଶିକ୍ଷିତ ଯୁବକ ଯେଉଁମାନେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାକୁ ଇଚ୍ଛୁକ, ସେମାନେ ସମସ୍ତେ ଆସି ପ୍ରଥମେ ଏହି ଆଶ୍ରମରେ ଯୋଗ ଦେଲେ। ଏହିମାନଙ୍କୁ ନେଇ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନ ଚଳାଇବା କାର୍ଯ୍ୟ ଆରମ୍ଭ ହେଲା। ବିଭିନ୍ନ ଜିଲ୍ଲାରେ ବୁଲି କାମ କରିବା ପୂର୍ବରୁ ଏହିଠାରେ କର୍ମୀମାନଙ୍କୁ କିଛି ଶିକ୍ଷା ଦେବା ଦରକାର। ଏଥିପାଇଁ ଗୋଟିଏ ଟ୍ରେନିଙ୍ଗ୍ କ୍ଲାସ ବସିଲା। ମଫସଲରେ କିପରି କାମ କରିବାକୁ ହେବ, ସେ ବିଷୟରେ ଗୋପବନ୍ଧୁ ବାବୁ ବହୁତ କଥା କର୍ମୀମାନଙ୍କୁ ବୁଝାଇ କହନ୍ତି। ଏହି କର୍ମୀମାନଙ୍କୁ ସୂତାକଟା ଓ ହିନ୍ଦୀ ଭାଷା ଶିଖେଇବା ଭାର ମୋ ଉପରେ ଥାଏ। ପଣ୍ଡିତ ଦୀନବନ୍ଧୁ ପଣ୍ଡାଙ୍କ ବସା ଛାଡ଼ି ମୁଁ କଟକ ସ୍ୱରାଜ୍ୟ ଆଶ୍ରମରେ ରହିଲି। ଆଶ୍ରମରେ ପ୍ରାୟ ଶହେ ଜଣ କର୍ମୀ ରହି ଖାଉଥାନ୍ତି। କଟକ ସହରରୁ ମୁଷ୍ଟିଭିକ୍ଷା ହୋଇ ଆଶ୍ରମ ଚଳେ। ଆଶ୍ରମର ଖାଦ୍ୟ ପଞ୍ଚବର୍ଷୀ ଚାଉଳ।

ମୁଁ ଆଶ୍ରମରେ ରହିଲି। ମୋ ଉପରେ ଯେଉଁ ଯେଉଁ କାର୍ଯ୍ୟ ଭାର ରହିଲା ତାହା ମୁଁ ନିୟମିତ ରୂପେ କରେ। ଏହାଛଡ଼ା କଟକ ସହରର ବିଭିନ୍ନ ବଜାରରେ

ସଭା କରି ଅସହଯୋଗ ବାର୍ତ୍ତା ଓ କଂଗ୍ରେସ କଥା ପ୍ରଚାର କରିବା ମଧ୍ୟ ମୋର ହେଲା ଆଉ ଗୋଟିଏ କାମ। ମୁଁ ଏପର୍ଯ୍ୟନ୍ତ ସଭା ସମିତିରେ ଠିଆ ହୋଇ କହି ନାହିଁ। ସଭାରେ ବକ୍ତୃତା ଦେବାକୁ ସବୁବେଳେ ମୋର ମନ ହମ ହମ ହେଉଥିଲେ ମଧ୍ୟ ସାହସ ହୁଏ ନାହିଁ। କଟକ ଜଗନ୍ନାଥ ବଲ୍ଲଭରେ ଗୋଟିଏ ସଭା ହେଲା। ପଣ୍ଡିତ ଗୋପବନ୍ଧୁ ବାବୁ ସେ ସଭାରେ ଉପସ୍ଥିତ ଥିଲେ। ମତେ ସେଠାରେ କିଛି କହିବାକୁ ଗୋପବନ୍ଧୁ ବାବୁ ଆହ୍ୱାନ କଲେ। ମୁଁ ଦେଖିଲି, ସଭାସ୍ଥ ଲୋକେ ମଧ୍ୟ ମତେ ଦେଖିବାକୁ ଓ ମୋ କଥା ଶୁଣିବାକୁ ଟିକିଏ ଆଗ୍ରହାନ୍ୱିତ। ମୁଁ ଗାନ୍ଧିଜୀଙ୍କ ପାଖରୁ ଆସିଛି। ପଞ୍ଜାବ ଅତ୍ୟାଚାର ନିଜ ଆଖିରେ ଦେଖି ଆସିଛି। ଏଥିପାଇଁ ମତେ ଦେଖିବା ସକାଶେ ଓ ମୋ କଥା ଶୁଣିବା ଲାଗି ଆଗ୍ରହ। ଗୋପବନ୍ଧୁ ବାବୁଙ୍କ ଆଗରେ ଠିଆ ହୋଇ କହିବାକୁ ମତେ ଭାରି ଡର ଲାଗୁଥାଏ। ଯାହା ହେଉ ମୁଁ ଠିଆ ହେଲି। କିନ୍ତୁ କିଛି କହି ପାରିଲି ନାହିଁ। ଇତି ମଧ୍ୟରେ ସନ୍ଧ୍ୟା ଆଳତି ପାଇଁ ଜଗନ୍ନାଥ ବଲ୍ଲଭ ଦେଉଳରେ ଘଣ୍ଟା ବାଜିଲା। ଦେଉଳ ହତାରେ ସଭା। ତେଣୁ ଘଣ୍ଟା ଶବ୍ଦ ବନ୍ଦ ହେବା ପର୍ଯ୍ୟନ୍ତ ବକ୍ତୃତା ବନ୍ଦ କରିବାକୁ ହେଲା। ଏହି ଅବସରରେ ମୁଁ ନିଜକୁ ଟିକିଏ ଟାଣ କରିଦେଲି। ସାଧାରଣ ସଭାରେ ଠିଆ ହୋଇ ପ୍ରଥମେ କିଛି କହିବାକୁ ଉଦ୍ୟମ କଲାବେଳେ ମନୁଷ୍ୟ ମନରେ ଯେଉଁ ସଂକୋଚ ଭାବ ଜାଗି ଉଠେ, ମୋ ମନରେ ସେହିପରି ଭାବ ଆସିଥିଲା। ମୁଁ ତାହାକୁ ଦୂର କରିଦେଇ ମନକୁ ଟାଣ କରିଦେବା ପାଇଁ ଅବସର ପାଇ ସଭାରେ ପୁଣି ଆଉଥରେ ଠିଆହେଲି। ପଞ୍ଜାବ ଅତ୍ୟାଚାର ଓ ଖିଲାଫତ୍ ସମସ୍ୟା ନେଇ ଅନେକ କଥା କହିଲି। ସଭାରେ ଠିଆ ହୋଇ କହିଲାବେଳେ ମୁଁ କଣ କହିଛି ତାର ଜ୍ଞାନ ମୋର ନ ଥିଲା ବୋଲି କହିଲେ ଚଳିବ। କାରଣ ଏହା ହେଉଛି ମୋର ଜୀବନରେ ଗୋଟିଏ ନୂଆ କଥା। ଯାହା ହେଉ ମୋର ସେହି ବକ୍ତୃତାଟି ଭଲ ହୋଇଥିଲା। ପଞ୍ଜାବ ଅତ୍ୟାଚାରର ବିବରଣୀ କଟକ ସହରରେ ଗୋଟାଏ ଚହଳ ପକାଇ ଦେଇଥିବାର ମୁଁ ପରେ ଜାଣିଲି। ଏଣିକି କଟକ ସହରରେ ନୂଆ କରି ଯେଉଁଠାରେ ସଭା ହୁଏ, ସେଠାରେ ମୋଠାରୁ ପଞ୍ଜାବର ଦାରୁଣ କାହାଣୀ ଶୁଣିବା ଇଚ୍ଛାରେ ବହୁତ ଲୋକ ଜମା ହୁଅନ୍ତି। ମୁଁ ଅତି ମୋଟା ଖଦଡ଼ ପୋଷାକ ପିନ୍ଧିଥାଏ। ଖଦଡ଼ର ଗୋଟିଏ ଟୋପି ସବୁବେଳେ ମୁଣ୍ଡରେ ବ୍ୟବହାର କରେ। ଖଦଡ଼ ସେତେବେଳେ ଓଡ଼ିଶାରେ ଅପୂର୍ବ। ମୋଠାରୁ ଖଣ୍ଡିଏ ପୁରଣା ଖଦଡ଼ କୁରୁତା ନିଜେ ଗୋପବନ୍ଧୁ ବାବୁ ନେଇ ପିନ୍ଧିବାକୁ ଆଗ୍ରହ ପ୍ରକାଶ କରିଥିଲେ ଏବଂ ବାସ୍ତବରେ ମଧ୍ୟ ତାହା କରିଥିଲେ। ସୁତରାଂ ମୋର ଏହି ଅପୂର୍ବ ଖଦଡ଼ ପୋଷାକ ସାଙ୍ଗକୁ ପଞ୍ଜାବ ଅତ୍ୟାଚାରର ବର୍ଣ୍ଣନା ଖୁବ୍ ଖାପ ଖାଉଥିଲା। ମୋର ପୋଷାକ ଓ ବକ୍ତୃତା ସମସ୍ତଙ୍କ ଦୃଷ୍ଟିକି ଟିକିଏ ଆକର୍ଷଣ କରୁଥିଲା। ସେତେବେଳର "The Oriya'

ନାମକ ସାପ୍ତାହିକ ପତ୍ରିକା ଲେଖିଥିଲା, "Govindji with his picturesque Khaddar dress has stepped in after Pandit Gopabandhu Das in the town of Cuttack to preach the gospel of N.C.O movement." ଅର୍ଥାତ୍ ଗୋପବନ୍ଧୁ ବାବୁଙ୍କ ପଛକୁ ଗୋବିନ୍ଦଜୀ ଗୋଟିଏ ସୁନ୍ଦର ଖଦଡ଼ ପୋଷାକ ପିନ୍ଧି କଟକ ସହରର ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରଚାର କରିବାକୁ ବାହାରିଛନ୍ତି।

ସେ ଯାହା ହେଉ ଏଣିକି ଏହିପରି ଭାବରେ ବକ୍ତୃତା ଦେଇ ବୁଲିବା ମୋର ଗୋଟିଏ କର୍ତ୍ତବ୍ୟ ହେଲା। କଟକରେ ପ୍ରତି ବଜାରରେ ସଭା ହୁଏ। ପ୍ରାୟ ପ୍ରତି ସଭାରେ ମତେ କିଛି ନା କିଛି କହିବାକୁ ପଡ଼େ। ଏଣିକି ସଭାରେ ଠିଆ ହୋଇ କହିବାକୁ ମନ ଦବି ଯାଉ ନାହିଁ ବରଂ ଜିହ୍ୱାକଣ୍ଡୁ ଆରମ୍ଭ ହେଉଛି। ମୋର ବିଶ୍ୱାସ, କିଛିଦିନ କହିବାର ଅଭ୍ୟାସ ପଡ଼ିଗଲେ ସଭା ସମିତିରେ କିଛି କହିବା ସହଜ ହୁଏ।

ଓଡ଼ିଶାରେ ରାଜନୈତିକ ଜୀବନର ଚିହ୍ନ ନ ଥିଲା। କଂଗ୍ରେସର ନାମ ସାଧାରଣ ଲୋକେ ଶୁଣି ନ ଥିଲେ। ଦେଶପାଇଁ କାମ କରିବା, ଘରର ମାୟା ମମତା କାଟିବା, ଅତି ଦୁଃଖ କଷ୍ଟରେ କାମ କରିବା ଇତ୍ୟାଦି କଳ୍ପନା ଓଡ଼ିଶା ଲୋକଙ୍କୁ ସ୍ପର୍ଶ କରିଚି କି ନାହିଁ ସନ୍ଦେହ। ଅସହଯୋଗ ଆନ୍ଦୋଳନ ହେଉଛି ଓଡ଼ିଶାର ପ୍ରଥମ ରାଜନୈତିକ ଆନ୍ଦୋଳନ। ଏହି ୧୯୨୧ ମସିହାରୁ ଓଡ଼ିଶାରେ କଂଗ୍ରେସ ଜୀବନ ଆରମ୍ଭ ହୁଏ। କଂଗ୍ରେସ ମଧ ଭାଷାସୂତ୍ରରେ ଉତ୍କଳକୁ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ବୋଲି ସ୍ୱୀକାର କରିଛି। ଏ ପର୍ଯ୍ୟନ୍ତ କଂଗ୍ରେସ ସଂଗଠନରେ ଉତ୍କଳର କୌଣସି ସ୍ୱାତନ୍ତ୍ର୍ୟ ନ ଥିଲା। ବିହାର-ଓଡ଼ିଶା ପ୍ରଦେଶକୁ କଂଗ୍ରେସ ମଧ ଗୋଟିଏ ପ୍ରଦେଶ ଆକାରରେ ଦେଖୁଥିଲା। ମାତ୍ର ନାଗପୁର କଂଗ୍ରେସ ପରେ ଭାରତର ପ୍ରତ୍ୟେକ ପ୍ରଦେଶ ଭାଷାସୂତ୍ରରେ ଗଠନ କରିବାର ନିୟମ କଂଗ୍ରେସର ନିୟମାବଳୀରେ ଆବଦ୍ଧ ହେଲା। ତେଣୁ ଉତ୍କଳରେ କଂଗ୍ରେସର ମୂଳଭିତ୍ତି ସ୍ଥାପନ କରିବାର କଥା। ଏହା କରିବାକୁ ହେଲେ ଥାନା, ସବ୍‌ଡ଼ିଭିଜନ, ଜିଲା ଓ ପ୍ରାଦେଶିକ କଂଗ୍ରେସ କମିଟିମାନ ଗଠନ କରିବାକୁ ହେବ। ଏହିପରି ଭାବରେ ତଳୁ ଉପର ପର୍ଯ୍ୟନ୍ତ ଗଢ଼ି, ନିଖିଳ ଭାରତ କଂଗ୍ରେସ କମିଟିକୁ ସଭ୍ୟ ବାଛି ନ ଦେବା ପର୍ଯ୍ୟନ୍ତ ଉତ୍କଳ କଂଗ୍ରେସ କମିଟି ପୂର୍ଣ୍ଣାବୟବ ପ୍ରାପ୍ତ ହେବ ନାହିଁ। ଏଥିପାଇଁ ପ୍ରତି ଜିଲ୍ଲା ଓ ସବ୍‌ଡ଼ିଭିଜନ ପାଇଁ କର୍ମୀ ଲୋଡ଼ା। ଜଣେ ଜଣେ ବିଶିଷ୍ଟ ବୟସ୍କ ବ୍ୟକ୍ତି ବାଛି ସେମାନଙ୍କ ଉପରେ କୌଣସି ନିର୍ଦ୍ଦିଷ୍ଟ ଜିଲା ଓ ସବ୍‌ଡ଼ିଭିଜନର ଭାର ଅର୍ପଣ କରିବା ଦରକାର। ସୁତରାଂ ଭିନ୍ନ ଭିନ୍ନ ଜିଲ୍ଲା ଓ ଭିନ୍ନ ଭିନ୍ନ ଅଞ୍ଚଳ ଭିନ୍ନ ଭିନ୍ନ କର୍ମୀଙ୍କ ଉପରେ ଅର୍ପଣ କରାଗଲା। ବାବୁ ହରେକୃଷ୍ଣ ମହତାବ ବାଲେଶ୍ୱର ଜିଲ୍ଲାର ଭାର ଗ୍ରହଣ କଲେ। ବାବୁ ନିରଞ୍ଜନ ପଟ୍ଟନାୟକଙ୍କ ଉପରେ ଗଞ୍ଜାମ ଜିଲ୍ଲାର ଭାର ରହିଲା।

ସମ୍ବଲପୁର ଭାର ପଣ୍ଡିତ ନୀଳକଣ୍ଠ ଦାସ ଗ୍ରହଣ କଲେ। ସିଂହଭୂମି ବାବୁ ଗୋଦାବରୀଶ ମିଶ୍ରଙ୍କ ଉପରେ ରହିଲା। ମୁଁ, ବାବୁ ଯଦୁମଣି ମଙ୍ଗରାଜ, ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟ ଓ ଦୟାନିଧି ସ୍ୱାଇଁ ଆମେ ଚାରିଜଣ କଟକଜିଲ୍ଲା ଭାର ଗ୍ରହଣ କଲୁ। ବାବୁ ଯଦୁମଣି ମଙ୍ଗରାଜ କେନ୍ଦ୍ରାପଡ଼ା ସବ୍‌ଡ଼ିଭିଜନ, ଦୟାନିଧି ସ୍ୱାଇଁ ଯାଜପୁର ସବ୍‌ଡ଼ିଭିଜନ ଓ ମୁଁ ସଦର ସବ୍‌ଡ଼ିଭିଜନର ଭାର ନେଲୁ। ପୁଣି ମୁଁ ଓ ଡାକ୍ତର ଅଟଳବିହାରୀ ଦୁହେଁ ଏକତ୍ର କଟକ ଆଶ୍ରମ ପରିଚାଳନାର ଭାର ଗ୍ରହଣ କଲୁଁ। ଉତ୍କଳରେ କଂଗ୍ରେସ ଅନୁଷ୍ଠାନ ଗଢ଼ିବାର କଳ୍ପନା ଓ ସଂକଳ୍ପକୁ କାର୍ଯ୍ୟରେ ପରିଣତ କରିବାର ଚେଷ୍ଟା ଏହି ପ୍ରକାରେ ଚାଲିଲା। ମୁଁ କଟକ ସ୍ୱରାଜ୍ୟ ଆଶ୍ରମରେ ଆସି ରହିଲି। ଆଶ୍ରମରେ ଥିବା ସ୍ୱୟଂସେବକମାନଙ୍କୁ ଶିକ୍ଷାଦେବା ଓ କଟକ ସହରରେ କଂଗ୍ରେସ ବାର୍ତ୍ତା ପ୍ରଚାର କରିବା ହେଲା ମୋର ମୁଖ୍ୟ କର୍ମ।

## ତୃତୀୟ ପରିଚ୍ଛେଦ

### ମହାତ୍ମାଗାନ୍ଧୀଙ୍କ ଉତ୍କଳ ଆଗମନ

୧୯୨୧ ମାର୍ଚ୍ଚ ୨୪ ତାରିଖ ସକାଳେ ମହାତ୍ମାଗାନ୍ଧୀ ସର୍ବପ୍ରଥମେ ଓଡ଼ିଶାକୁ ପଦାର୍ପଣ କଲେ। ଅସହଯୋଗ ବାର୍ତ୍ତା ପ୍ରଚାର କରିବାପାଇଁ ମହାତ୍ମାଜୀ ଭିନ୍ନ ଭିନ୍ନ ପ୍ରଦେଶରେ ପରିଭ୍ରମଣ କରୁଛନ୍ତି। ଏହି ଉଦ୍ଦେଶ୍ୟରେ ମଧ୍ୟ ଓଡ଼ିଶାକୁ ଶୁଭାଗମନ କରିଛନ୍ତି। ପୁରୀ, କଟକ, ବାଲେଶ୍ୱର ଓ ଗଞ୍ଜାମ ହୋଇ ଓଡ଼ିଶାରେ ମାତ୍ର ୫ ଦିନ ତାହାଙ୍କର ରହଣି ହେଲା। ଏହିଠାରୁ ସେ ଆନ୍ଧ୍ର ପ୍ରଦେଶକୁ ଗଲେ। ବେଜଓ୍ୱାଡ଼ାଠାରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ହୋଇ ବେଜଓ୍ୱାଡ଼ା କାର୍ଯ୍ୟକ୍ରମ ନିର୍ଦ୍ଧାରିତ ହେଲା। ଏହି କାର୍ଯ୍ୟକ୍ରମ ଅନୁସାରେ ଜୁନ୍ ତା ୩୦ ରିଖ ଭିତରେ ଏକ କୋଟି କଂଗ୍ରେସ ସଭ୍ୟ ଓ ଏକ କୋଟି ତିଳକ ସ୍ୱରାଜ୍ୟ ପାଣ୍ଠି ପାଇଁ ଟଙ୍କା ସଂଗ୍ରହ କରିବାକୁ ହେବ। ଓଡ଼ିଶା ଅଂଶରେ ମଧ୍ୟ ପ୍ରାୟ ତିନି ଲକ୍ଷ କଂଗ୍ରେସ ସଭ୍ୟ ଓ ତିନି ଲକ୍ଷ ଟଙ୍କା ଭାଗ ପଡ଼ିଲା। ଏହି ଭାଗକୁ ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାରେ ବାଣ୍ଟ କରି ଦିଆଗଲା। ସୁତରାଂ ବର୍ତ୍ତମାନ ଅସହଯୋଗ ଆନ୍ଦୋଳନର ମୁଖ୍ୟ କାର୍ଯ୍ୟ ହେଲା, କଂଗ୍ରେସ ସଭ୍ୟ ସଂଗ୍ରହ କରିବା ଓ ତିଳକ ସ୍ୱରାଜ୍ୟ ପାଣ୍ଠିପାଇଁ ଚାନ୍ଦା ଆଦାୟ କରିବା।

ଏହା କରିବାକୁ ହେଲେ ସହର ଛାଡ଼ି ମଫସଲକୁ ଯାଇ କାମ କରିବାକୁ ହେବ। ମହାତ୍ମାଗାନ୍ଧୀ ତାଙ୍କର 'ୟଙ୍ଗ ଇଣ୍ଡିଆ' କାଗଜରେ ପ୍ରକାଶ କଲେ ଯେ, ପ୍ରତ୍ୟେକ କର୍ମୀ ଦିନ ଶେଷରେ ସେଦିନ ସେ କେତେଜଣ କଂଗ୍ରେସ ସଭ୍ୟ ଓ

କେତେ ଟଙ୍କା ତିଳକ ସ୍ୱରାଜ୍ୟ ପାଣ୍ଠି ପାଇଁ ଆଦାୟ କଲା ବୋଲି ଚିନ୍ତା କରୁ। ମହାତ୍ମାଜୀଙ୍କ ଏହି ପ୍ରକାର ଲେଖା ପ୍ରତ୍ୟେକ କର୍ମୀର ମନରେ ଗୋଟିଏ ନୂତନ କର୍ମପ୍ରେରଣା ଭାବ ଜାଗ୍ରତ କଲା। ପ୍ରତ୍ୟେକ କର୍ମୀ ଭାବିଲା ସେ କିପରି ଅନ୍ୟଠାରୁ ବେଶି କାମ କରି ଦେଖାଇବ। ଏହିପରି କର୍ମ ପରିମାଣରେ ନ୍ୟୂନାଧିକ୍ୟ ଦେଖାଇବା ପାଇଁ କର୍ମୀମାନଙ୍କ ମନରେ ପ୍ରତିଦ୍ୱନ୍ଦ୍ୱିତାଭାବ ଆସିଲା ପରି ବୋଧ ହେଲା। କାହା ମନ କଥା ମୁଁ କହି ନ ପାରେ। କିନ୍ତୁ ମୋ ମନରେ ଏପରି ଭାବ ଆସିଥିଲା। ମୁଁ କିପରି ସମସ୍ତଙ୍କଠାରୁ ଅଧିକ କାମ କରି ଦେଖାଇ ପାରିବି ଏହିପରି ଭାବ ସବୁବେଳେ ମୋ ମନରେ ଜାଗି ଉଠିଲା। ସୁତରାଂ କର୍ମକ୍ଷେତ୍ରରେ ମୁଁ ନିଜକୁ ଭୁଲି କାମ କରିବାକୁ ଲାଗିଲି। ମୁଁ କଟକ ସଦର ସବଡ଼ିଭିଜନର ଭିନ୍ନ ଭିନ୍ନ ଅଞ୍ଚଳକୁ ଯାଇ ଗ୍ରାମେ ଗ୍ରାମେ ବୁଲି ସଭା କରି ଲୋକଙ୍କୁ କଂଗ୍ରେସ ବାର୍ତ୍ତା ଶୁଣାଇବା, କଂଗ୍ରେସ ସଭ୍ୟ ସଂଗ୍ରହ କରିବା ଇତ୍ୟାଦି କାମରେ ନିଜକୁ ଭସାଇ ଦେଲି। ସେତେବେଳେ ଅସହଯୋଗ ଆନ୍ଦୋଳନ ଦେଶରେ ଗୋଟାଏ ନୂଆ କଥା। ମହାତ୍ମାଗାନ୍ଧୀଙ୍କୁ ଲୋକେ ଜଣେ ଅବତାର ପୁରୁଷ ବୋଲି ଜ୍ଞାନ କରିଛନ୍ତି। କଂଗ୍ରେସ କଥା ଲୋକେ ଶୁଣନ୍ତି, କିନ୍ତୁ ସବୁ କଥାକୁ ଲୋକେ ଗାନ୍ଧୀ ସଭା ଓ ଗାନ୍ଧୀ କଥା ବୋଲି ବୁଝନ୍ତି। ସଭାମାନଙ୍କରେ କିଛି କିଛି ପଇସା ଆଦାୟ ହୁଏ. କିନ୍ତୁ କଂଗ୍ରେସ ସଭ୍ୟ ହେବା କଥା କହିଲା ବେଳକୁ କେହି ଶୁଣନ୍ତି ନାହିଁ। ଲୋକେ କହନ୍ତି, "ଆମେ କଣ ମେମ୍ବର ହେବୁ, ଆମେ ମେମ୍ବର ହେବା ପାଇଁ ଉପଯୁକ୍ତ ନୋହୁଁ।"

ମୁଁ ଦେଖିଲି, ମଫସଲରେ ବୁଲି ସଭା କରିବା କଠିନ ନୁହେଁ। ତିଳକ ସ୍ୱରାଜ୍ୟ ପାଣ୍ଠି ପାଇଁ କିଛି ପଇସା ଆଦାୟ କରିବା ମଧ୍ୟ କଠିନ ନୁହେଁ। ମଫସଲରୁ ଚାନ୍ଦା ଶହ ହଜାର ନ ହେଲେ ମଧ୍ୟ ପ୍ରତି ସଭା ଓ ପ୍ରତି ଗ୍ରାମରୁ କିଛି ନା କିଛି ଆଦାୟ ହୁଏ। ଯାହା ହୁଏ, ତଦ୍ୱାରା ଅନ୍ୟଠାରୁ ମୁଁ ଅଧିକ କାମ କରି ପାରୁଥିବାର ବିଶ୍ୱାସ ମୋର ହୁଏ ନାହିଁ। କଂଗ୍ରେସ ମେମ୍ବର ସଂଖ୍ୟା ତ ଅତି କମ୍। କାଗଜରେ ପାଠ କରେ, ମହତାବ ଓ ମଙ୍ଗରାଜ ଦିନକୁ ଏତେ ମେମ୍ବର କରୁଛନ୍ତି ଓ ଏତେ ଟଙ୍କା ତିଳକ ପାଣ୍ଠି ପାଇଁ ଆଦାୟ କରୁଛନ୍ତି। ଏହିପରି ସଂବାଦ ପାଠ କରି ମୁଁ ନିଜ କାମ ଦେଖିଲା ବେଳକୁ, ମୋ କାମରେ ମୋ ମନ ସନ୍ତୁଷ୍ଟ ହୁଏ ନାହିଁ। ମୋର ଗୋଟାଏ ଜିଦ୍ ହୁଏ, କିପରି ଅଧିକ କାମ କରିବି। ଏହି ଜିଦ୍ ଅନୁସାରେ ଗୋଟିଏ ଗୋଟିଏ ଗ୍ରାମରେ ଦୁଇ ତିନି ଦିନ କରି ରହେ। ଗ୍ରାମର ଧନୀ ଓ ଗରିବ ଯାହାକୁ ପାଏ ତାହାକୁ କଂଗ୍ରେସ ମେମ୍ବର ହେବା ପାଇଁ ଓ ତିଳକ ସ୍ୱରାଜ୍ୟ ପାଣ୍ଠି ପାଇଁ କିଛି ଦାନ କରିବା ସକାଶେ କହେ। ଗ୍ରାମବାସୀମାନେ ମୋ କଥାକୁ ଶୁଣନ୍ତି ନାହିଁ। ଗ୍ରାମର ଲୋକେ କଥା ଶୁଣନ୍ତି, ଯେଉଁମାନଙ୍କର ସେମାନଙ୍କ ଉପରେ କିଛି କ୍ଷମତା ଥାଏ କିମ୍ବା ଯେଉଁମାନଙ୍କୁ ସେମାନେ ଭଲ କରି ଚିହ୍ନିଥାନ୍ତି।

ଦେଶର ସେତେବେଳ ଅବସ୍ଥାରେ ଦେଶସେବା କଣ ଲୋକେ ଜାଣି ନାହାନ୍ତି କିମ୍ବା ଶୁଣି ମଧ୍ୟ ନାହାନ୍ତି। ଏପରି ଅବସ୍ଥାରେ ମୋ ପରି ଜଣେ ନିହାତି ଅଚିହ୍ନା ଲୋକର କଥା ଶୁଣି କଂଗ୍ରେସ ମେମ୍ବର ହେବାକୁ ରାଜି ହୁଅନ୍ତି ନାହିଁ। ପୁଣି ମୁଁ ଯେଉଁଠାରେ ରହେ ପୋଲିସ କର୍ମଚାରୀ ଯାଇ ସେଠାରେ ଉପସ୍ଥିତ। ମୋ ପଛେ ପଛେ ପୋଲିସ କର୍ମଚାରୀ ବୁଲୁଥାନ୍ତି। କଂଗ୍ରେସକୁ ଚାନ୍ଦା ଦେବାର କିମ୍ବା କଂଗ୍ରେସ ମେମ୍ବର ହେବାର ଜଣା ପଡ଼ିଲେ ସରକାର କାଲେ ବାନ୍ଧି ନେବେ ଏହି ଭୟ ପୂରାମାତ୍ରାରେ ଥାଏ। ଏପରି ଅବସ୍ଥାରେ ମୋ କଥା ଶୁଣି ମଧ୍ୟ କେହି ଶୁଣନ୍ତି ନାହିଁ। ଫଳରେ କିଛି କାର୍ଯ୍ୟ ହୁଏ ନାହିଁ। କିନ୍ତୁ ମୁଁ ସହଜେ ଛାଡ଼ିବା ଲୋକ ନୁହେଁ। ମୁଁ ଯାହାକୁ ପାଏ ତା ପଛରେ ଗୋଡ଼ାଏ। ସେ ହଳ ନେଇ ବିଲକୁ ଗଲା ତ ମୁଁ ତା ପଛରେ ବିଲକୁ ଯାଏ। ସେ ଯୁଆଡ଼େ ଯାଏ ମୁଁ ତା ପଛରେ ସିଆଡ଼େ ଯାଏ। ମୁଁ କହେ, "ତୁମେ ଏ ଦେଶରେ ଜନ୍ମ ହୋଇଛ। ଏ ଦେଶର ଭଲ ମନ୍ଦ ପାଇଁ ତୁମେ ଦାୟୀ। କଂଗ୍ରେସ ଦେଶର ଭଲପାଇଁ କାର୍ଯ୍ୟ କରୁଛି। ତୁମେ କଂଗ୍ରେସ ମେମ୍ବର ନ ହେଲେ କଂଗ୍ରେସ ସଭା ଗଢ଼ା ହୋଇ ପାରିବ ନାହିଁ। ଚାନ୍ଦା ନ ଦେଲେ କଂଗ୍ରେସ କାର୍ଯ୍ୟ ହେବ କିପରି? ତୁମେ କଂଗ୍ରେସ ମେମ୍ବର ନ ହେବାର କାରଣ ମତେ ବୁଝାଇ ଦିଅ। ନଚେତ ଆସ, ବସ, ମୁଁ ତୁମ୍ଭଙ୍କୁ ବୁଝାଇ ଦେଉଛି, ତୁମେ କାହିଁକି କଂଗ୍ରେସ ମେମ୍ବର ହେବ।" ଏହିପରି କିଛି ଜଣକ ପରେ ଆଉ ଜଣକୁ ଧରେ। ଦିନେ ଦୁଇଦିନ ଲାଗି ଗ୍ରାମରୁ ପାଞ୍ଚ ସାତ ଜଣ କଂଗ୍ରେସ ମେମ୍ବର ହୋଇଗଲେ, ମୋର ଏପ୍ରକାର ଜୁଲୁମରୁ ରକ୍ଷା ପାଇବା ପାଇଁ ଆଉ କେତେକ ବିନା ବାକ୍ୟବ୍ୟୟରେ ସହଜରେ ମେମ୍ବର ହୋଇଯାନ୍ତି। ଏହିପରି ଭାବରେ ଗୋଟିଏ ଗୋଟିଏ ଗ୍ରାମରୁ ପଚିଶ, ତିରିଶ ମେମ୍ବର କରେଇ ଆଉ ଗୋଟିଏ ଗ୍ରାମକୁ ଯାଏ। ମୋ ସାଥିରେ ଆଉ ଦୁଇଟି ସ୍ୱେଚ୍ଛାସେବକ ଥାନ୍ତି। ଗୋଟିଏ ଗ୍ରାମରେ କାମ ସାରିବା ପୂର୍ବରୁ ଅନ୍ୟ ଗ୍ରାମକୁ ମୁଁ ଯିବା ଆଗରୁ ସେଠାକୁ ଜଣେ ସ୍ୱେଚ୍ଛାସେବକ ପଠାଇ ଦିଏ। ସେ ଆଗରୁ ଯାଇ ମୋର ରହିବା, ଖାଇବା ଓ ସଭାର ସବୁ ବନ୍ଦୋବସ୍ତ କରିଥାଏ। ପ୍ରତି ତିନି ମାଇଲରେ ଏହିପରି ମୁଁ ମୋର ଡେରା ପକାଇ କାମ କରେ। ଶତାଧିକ ମେମ୍ବର ଓ ପଚାଶ ଟଙ୍କା ହାତରେ ହୋଇଗଲେ ମୁଁ କଟକ ଆଶ୍ରମକୁ ଫେରି ଆସେ। ମୋତେ ଆଶ୍ରମ ବ୍ୟବସ୍ଥାର ସଂବାଦ ରଖିବାକୁ ହୁଏ। କଟକ ସହରର କାର୍ଯ୍ୟ ମଧ୍ୟ ଦେଖିବାକୁ ପଡ଼େ। ଏହିପରି ଭାବରେ ମୁଁ ଆତ୍ମହରା ହୋଇ କାମ କରୁଥାଏ।

ଓଡ଼ିଶାକୁ ଫେରି ଆସି ସହର ମଫସଲ ବୁଲି କିଛି ଦିନ କାର୍ଯ୍ୟ କଲା ପରେ ମୁଁ ବୁଝିଛି ଯେ, ଯେଉଁମାନେ ଦେଶସେବା କରିବାକୁ ବାହାରିଛନ୍ତି ଅବା ବାହାରିବେ, ସେମାନେ ଟିକିଏ ଲୋକସାଧରଣଙ୍କଠାରେ ପରିଚିତ ହୋଇଥିଲେ କାମ

କରିବା ବଡ଼ ସହଜ ହୁଏ। ଲୋକସାଧାରଣଙ୍କୁ କର୍ମୀମାନଙ୍କ ପରିଚୟ ଦେବା ମଧ୍ୟ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କର ଗୋଟିଏ କର୍ତ୍ତବ୍ୟ। ପଣ୍ଡିତ ଗୋପବନ୍ଧୁ ଦାସ ଦେଶର ସେତେବେଳର ଅଗ୍ରଗାମୀ ନେତା। 'ସମାଜ' ସାପ୍ତାହିକ କାଗଜ ଖଣ୍ଡି ତାହାଙ୍କର। ଏକମାତ୍ର 'ସମାଜ' କାଗଜ ଓଡ଼ିଶାରେ କଂଗ୍ରେସବାର୍ତ୍ତା ପ୍ରଚାର କରୁଥାଏ। ଅସହଯୋଗ ଆନ୍ଦୋଳନ ଫଳରେ 'ସମାଜ'ର ପ୍ରଚାର ମଧ୍ୟ ବଢ଼ି ଯାଇଥାଏ। ଏପରି ଅବସ୍ଥାରେ 'ସମାଜ' କାଗଜ ଜରିଆରେ, ଭିନ୍ନ ଭିନ୍ନ ଜିଲ୍ଲାରେ କାର୍ଯ୍ୟ କରୁଥିବା ମୁଖିଆ କର୍ମୀମାନେ କିଏ କଣ ତାହା ଉଲ୍ଲେଖ କରି ଉକ୍ତ କର୍ମୀମାନଙ୍କ ପ୍ରତି ଲୋକଦୃଷ୍ଟି ଆକର୍ଷଣ କରିବା୍ ପଣ୍ଡିତ ଗୋପବନ୍ଧୁଙ୍କର କର୍ତ୍ତବ୍ୟ ବୋଲି ମୋ ମନରେ ଗୋଟିଏ ଭାବ ଜାଗି ଉଠିଲା। ମୁଁ ମଧ୍ୟ ଦେଖିଲି, ପ୍ରତ୍ୟେକ ମୁଖ୍ୟ କର୍ମୀ ଭିତରେ ଭିତରେ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତି ଟିକିଏ ବିମୁଖ। କେହି ତାହାଙ୍କ ସମ୍ମୁଖରେ କିଛି କହୁନାହାନ୍ତି। କିନ୍ତୁ ସେ ଯେତେବେଳେ ଯାହା କିଛି ନୂଆ କଥା କହନ୍ତି ତାହାର କଥାକୁ ଶୁଣି ନ ଶୁଣିଲା ପରି ସମସ୍ତେ କାର୍ଯ୍ୟ କରନ୍ତି। ତାହାଙ୍କୁ ସମାଲୋଚନା କରିବାର କେହି କେହି ମୁଖ୍ୟକର୍ମୀଙ୍କୁ ମଧ୍ୟ ମୁଁ ଦେଖିଛି। ମୁଁ ନିଜେ ମଧ୍ୟ ତାହାଙ୍କ ପ୍ରତି ଆକୃଷ୍ଟ ନ ଥାଏ। ତାହାଙ୍କ ପ୍ରତି ମୋ ହୃଦୟରେ ମଧ୍ୟ ଗୋଟିଏ ଅସନ୍ତୋଷ ଭାବନା ଜଳୁଥାଏ। ଏହାର କାରଣ ଅନେକ। ସେ ସବୁ କଥା ଉଲ୍ଲେଖ କରିବାର ଏ ସ୍ଥାନ ନୁହେଁ। ଗୋପବନ୍ଧୁ ବାବୁ ମତେ ଭଲ କରି ଜାଣନ୍ତି। ଦଶପଲ୍ଲା ମେଳି ସମୟରେ ମୁଁ କିପରି ଓଡ଼ିଶା ଛାଡ଼ି ପଳାଇଥିଲି, ପୁରୀ ଦୁର୍ଭିକ୍ଷ ପାଇଁ ମୁଁ କିପରି କଣ କରିଛି, ଭାରତର ଭିନ୍ନ ଭିନ୍ନ ପ୍ରାନ୍ତରେ ବୁଲି କେଉଁଠାରେ କିପରି କଣ କାର୍ଯ୍ୟ କରିଛି, ଇତ୍ୟାଦି କଥା ଗୋପବନ୍ଧୁ ବାବୁ ଭଲ ରକମ ଜାଣନ୍ତି। ୧୯୧୪/୧୫ରେ ଓଡ଼ିଶାରୁ ପଳାଇ, ରାଜନୈତିକ କାରଣରୁ ନାନା ଦୁର୍ବିପାକରେ ପଡ଼ି, ଏତେ ଦିନେ ମୁଁ ଓଡ଼ିଶାକୁ କାର୍ଯ୍ୟ କରିବାପାଇଁ ଫେରି ଆସିଛି। ମୋର ମନେ ହେଉଛି, ପଣ୍ଡିତ ଗୋପବନ୍ଧୁ ଦାସ ଓଡ଼ିଶା ଲୋକଙ୍କୁ ମୋତେ ଟିକିଏ ଚିହ୍ନାଇ ଦେବା ଉଚିତ୍ ଥିଲା। ଏହା ସେ କରି ନାହାନ୍ତି। ଏଥିପାଇଁ ତାଙ୍କ ଉପରେ ମୁଁ ଅସନ୍ତୁଷ୍ଟ ଏବଂ ମନେ ମନେ ଟିକିଏ ରାଗ କରିଛି। ସୁତରାଂ ତାହାଙ୍କ କଥା ସବୁବେଳେ ମତେ ପ୍ରଭାବିତ କରି ପାରୁ ନାହିଁ। ତାହାଙ୍କ କଥା ଅଥବା ମତାମତ ବିରୁଦ୍ଧରେ ମତାମତ ପ୍ରକାଶ କରିବାପାଇଁ ମୁଁ ମଧ୍ୟ ପଶ୍ଚାତ୍‌ପଦ ହେଉ ନାହିଁ। ସମୟେ ସମୟେ ମୁଁ ମଧ୍ୟ ତାହାଙ୍କୁ ସମାଲୋଚନା କରୁଛି। ଜ୍ଞାତ ଅଥବା ଅଜ୍ଞାତ ଭାବରେ ହେଉ, ଗୋପବନ୍ଧୁ ବାବୁଙ୍କ ମନର ଗତି ଓ ଚିନ୍ତାଧାରା ସହିତ ପ୍ରତ୍ୟେକ ମୁଖ୍ୟ କର୍ମୀଙ୍କର ମନର ଖାପ ଖାଉ ନାହିଁ—ଏହା ସ୍ୱୀକାର ନ କରି ରହି ହେଉ ନାହିଁ।

ସ୍ୱର୍ଗୀୟ ପଣ୍ଡିତ ଗୋପବନ୍ଧୁ ଦାସ ଉତ୍କଳ ଭୂମିରେ ଜାତୀୟ ଜୀବନର ବୀଜ ବପନ କରିଛନ୍ତି—ଏହା ସ୍ୱୀକାର ନ କରିବାକୁ ଗତି ନାହିଁ। ଦେଶସେବା କରିବାକୁ ହେଲେ ତ୍ୟାଗପୂତ ସରଳ ଜୀବନ ଅତୀବ ଆବଶ୍ୟକ— ଏହି ଭାବ ପ୍ରଥମେ

ଗୋପବନ୍ଧୁ ବାବୁ ନିଜର କର୍ମମୟ ଜୀବନଦ୍ୱାରା ଏ ଦେଶକୁ ଆଦର୍ଶ ଦେଖାଇ ଅଛନ୍ତି। ଭାରତର ସ୍ୱାଧୀନ ଚିନ୍ତା ତାହାଙ୍କ ମନରେ କେତେଦୂର ସ୍ଥାନ ପାଇଥିଲା ୧୯୨୧ ପୂର୍ବରୁ ତାହାଙ୍କ କର୍ମ-ଜୀବନକୁ ପରୀକ୍ଷା କରି ଦେଖିଲେ ତହିଁର କୌଣସି ପ୍ରମାଣ ମିଳେ ନାହିଁ। ତେବେ ସମସ୍ତ ଓଡ଼ିଆ ଜାତିର ସମୂହ କଲ୍ୟାଣ କରିବାର ଚିନ୍ତା ଓ କର୍ମ ତାହାଙ୍କ ଜୀବନର ଆଦର୍ଶ ଥିଲା—ଏହା ପ୍ରତ୍ୟେକ ଓଡ଼ିଆକୁ ସ୍ୱୀକାର କରିବାକୁ ପଡ଼ିବ। ସୁତରାଂ ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନ ସୃଷ୍ଟି ହେଲାବେଳେ ଆମ୍ଭେମାନେ ପ୍ରଥମେ ଯେ କେତେଜଣ ମୁଖ୍ୟକର୍ମୀ ତାହାଙ୍କୁ କର୍ଣ୍ଣଧାର ରୂପେ ଗ୍ରହଣ କରି ଓଡ଼ିଶାରେ କଂଗ୍ରେସ ଅନୁଷ୍ଠାନ ଗଢ଼ିବାପାଇଁ, ସମସ୍ତ ପ୍ରକାର ତ୍ୟାଗ ଓ ନିର୍ଯ୍ୟାତନା ଆନନ୍ଦରେ ବରଣ କରିବା ଲାଗି ସଂକଳ୍ପ କଲୁଁ, ଆମ୍ଭମାନଙ୍କ ହୃଦୟ ଓ ମନ ନିର୍ଦ୍ୱନ୍ଦ ଭାବରେ କର୍ଣ୍ଣଧାରଙ୍କ ଇଙ୍ଗିତରେ ନିଜ ନିଜର କର୍ମ ଓ ଚିନ୍ତା ପରିଚାଳନା କରିବା ପାଇଁ ସବୁବେଳେ ପ୍ରତିକୂଳ ଭାବନା ତହିଁରେ ବାଧା ଦେବାକୁ ଲାଗିଲା। ଫଳରେ ଜାତୀୟ ଜୀବନର ବିକାଶ ଶକ୍ତି ଲାଭ କରିବାରେ ବିଘ୍ନ ଘଟିଲା। ଓଡ଼ିଶାରେ ରାଜନୈତିକ ଜୀବନରେ ଯେ ବିକାଶ ପାଇଲା ତାହା ସୁସଂଗଠିତ ହୋଇ ବିରାଟ ଆକାର ଧାରଣ କରି ପାରିଲା ନାହିଁ। ନଦୀର ସ୍ରୋତ ଶତଧା ହେଲେ ତାହାର ଖର ସ୍ରୋତର ବଳ ଓ ବେଗ ଯେପରି କମିଯାଏ ଆମ୍ଭର ନବପ୍ରକାଶିତ ରାଜନୈତିକ ଜୀବନ ସେହିପରି ହେଲା। ପ୍ରତ୍ୟେକ କର୍ମୀ ନିଜ ନିଜ ଇଚ୍ଛାନୁସାରେ କର୍ମ କରିବାକୁ ଆରମ୍ଭ କଲେ। ପ୍ରତ୍ୟେକ ଜିଲ୍ଲାରେ ଭିନ୍ନ ଭିନ୍ନ ରାଜନୈତିକ ଅନୁଷ୍ଠାନ ତଥା ଆଶ୍ରମ ସ୍ଥାପନ କରିବାର ଚେଷ୍ଟା ଚାଲିଲା। ଏପରି କରିବା ପଣ୍ଡିତ ଗୋପବନ୍ଧୁଙ୍କ ସଂପୂର୍ଣ୍ଣ ଇଚ୍ଛାବିରୁଦ୍ଧ କାର୍ଯ୍ୟ। ତାହାଙ୍କର ଇଚ୍ଛା କଟକ ସ୍ୱରାଜ୍ୟ ଆଶ୍ରମ ପ୍ରାଦେଶିକ ଆଶ୍ରମ ରହୁ। ଏହି ଆଶ୍ରମକୁ ପ୍ରତ୍ୟେକ ଜିଲ୍ଲାରୁ କର୍ମୀମାନେ ଆସି ଶିକ୍ଷା ପାଆନ୍ତୁ। ଏହିଠାରୁ ସମସ୍ତ କର୍ମ ନିୟନ୍ତ୍ରିତ କରାହେଉ। କଟକ ଆଶ୍ରମ ଅଧୀନରେ ରହି ପ୍ରତ୍ୟେକ ମୁଖ୍ୟ କର୍ମୀ ଗୋଟିଏ ସଙ୍ଗଠନର ଅଧୀନରେ କାମ କରନ୍ତୁ। କିନ୍ତୁ ଗୋପବନ୍ଧୁ ବାବୁଙ୍କର ଏହି ଇଚ୍ଛା କାର୍ଯ୍ୟରେ ପରିଣତ ହୋଇ ପାରିଲା ନାହିଁ। ପ୍ରାଦେଶିକ କାର୍ଯ୍ୟକାରୀ କଂଗ୍ରେସ କମିଟିର ବୈଠକରେ ଶ୍ରୀଯୁକ୍ତ ଭାଗୀରଥି ମହାପାତ୍ରଙ୍କ ପ୍ରସ୍ତାବ ଅନୁସାରେ କଟକ ଆଶ୍ରମ କଟକ ଜିଲ୍ଲା କଂଗ୍ରେସ କମିଟି ଅଧୀନରେ ରହିଲା। ପ୍ରତି ଜିଲ୍ଲାରେ ସ୍ୱରାଜ ଆଶ୍ରମ ସ୍ଥାପନ କରି ଅସହଯୋଗ ଆନ୍ଦୋଳନ ପରିଚାଳନା କରିବାର କଥା ସ୍ଥିର ହେଲା। ଗୋପବନ୍ଧୁ ବାବୁ ଏ ପ୍ରସ୍ତାବରେ ବହୁତ ବିରୋଧ କଲେ, ବହୁତ ବୁଝାଇ କହିଲେ, କିନ୍ତୁ ତାହାଙ୍କର ସମସ୍ତ ପ୍ରୟାସ ବୃଥା ହେଲା। ଗୋପବନ୍ଧୁ ବାବୁ ବଡ଼ ବ୍ୟଥିତ ହୃଦୟରେ କଟକ ଛାଡ଼ି ପୁରୀ ସାକ୍ଷୀଗୋପାଳକୁ ଫେରିଗଲେ। ଏହିପରି ଭାବରେ କଟକ ସ୍ୱରାଜ ଆଶ୍ରମ କଟକ ଜିଲ୍ଲା କଂଗ୍ରେସ କମିଟି ଅଧୀନକୁ ଆସିବା ପରେ ମୁଁ ଓ ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ ଉକ୍ତ ଆଶ୍ରମର ପରିଚାଳନା ଭାର ଗ୍ରହଣ କରିଥିଲୁ।

# ଚତୁର୍ଥ ପରିଚ୍ଛେଦ

## ଓଡ଼ିଶାରେ କଂଗ୍ରେସ କାର୍ଯ୍ୟ

କଟକ ସ୍ୱରାଜ୍ୟ ଆଶ୍ରମ କଟକ ଜିଲ୍ଲା କଂଗ୍ରେସ କମିଟି ଅଧୀନକୁ କିପରି ଆସିଲା ଏହା ପୂର୍ବ ପରିଚ୍ଛେଦରେ ବର୍ଣ୍ଣନା କରିଗଲି । ଗୋପବନ୍ଧୁ ବାବୁ ଏହି ଆଶ୍ରମକୁ ପ୍ରଥମେ ସ୍ଥାପନ କରିଥିଲେ । ତାହାଙ୍କ ଇଚ୍ଛା ବିରୁଦ୍ଧରେ ଏହା ତାହାଙ୍କ ଠାରୁ ଛଡ଼ାଇ ନିଆଗଲା ବୋଲି କୁହାଯାଇ ପାରେ । କିନ୍ତୁ କଥାଟା ପ୍ରକୃତ ତାହା ନୁହେଁ । କେବଳ ଗୋପବନ୍ଧୁ ବାବୁଙ୍କ ଇଚ୍ଛାର ବିରୋଧ କରିବାକୁ ଯେ ଏହା କରାଗଲା ତାହା ମଧ ଠିକ୍ ନୁହେଁ । କାର୍ଯ୍ୟର ସୁବିଧା ପାଇଁ ଏହି ନୀତି ଅବଲମ୍ବନ କରିବା ନିହାତି ଆବଶ୍ୟକ ବୋଲି ଭାବିବାକୁ ଗୋପବନ୍ଧୁ ବାବୁଙ୍କ ଇଚ୍ଛା ବିରୁଦ୍ଧରେ ଏହି ନୀତି ଗୃହୀତ ହେଲା । ପ୍ରତ୍ୟେକ ଜିଲ୍ଲାରେ ସ୍ୱରାଜ୍ୟ ଆଶ୍ରମ ରହିବ, ଯେଉଁ କର୍ମୀ ଯେଉଁ ଜିଲ୍ଲାର ସେ ସେହି ଜିଲ୍ଲାର ଆଶ୍ରମରେ ରହି କାର୍ଯ୍ୟ କଲେ ସୁବିଧା ହେବ—ଏହି ବିଶ୍ୱାସ ହେବାରୁ ସମସ୍ତ ଶକ୍ତିର ଏକତ୍ରୀକରଣ ଗ୍ରହଣ କରି ହେଲା ନାହିଁ । କିନ୍ତୁ ଏହାର ପରିଣାମ ଯାହା ଯେପରି ଘଟିଲା, ତାହା ଭାବିଲାବେଳକୁ ଗୋପବନ୍ଧୁ ବାବୁଙ୍କ ନୀତି ଯଥାର୍ଥ ବୋଲି ମନେ ହୁଏ । କେବଳ ପ୍ରତି ଜିଲ୍ଲାରେ ଯେ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଆଶ୍ରମ ସ୍ଥାପନ ହେଲା ତାହା ନୁହେଁ, ଜିଲ୍ଲା ମଧରେ ସ୍ଥାନ ବିଶେଷରେ ଭିନ୍ନ ଭିନ୍ନ ଆଶ୍ରମ ମଧ ସ୍ଥାପିତ ହେଲା । କଟକ ଜିଲ୍ଲାରେ ଜଗତସିଂହପୁର, କେନ୍ଦ୍ରାପଡ଼ା, ଯାଜପୁର ପ୍ରଭୃତି ସ୍ଥାନମାନଙ୍କରେ ଗୋଟିଏ ଗୋଟିଏ ଆଶ୍ରମ ସ୍ଥାପନ କରାଗଲା । ବିଭିନ୍ନ ଜିଲ୍ଲାରେ ଆଶ୍ରମ ହେବା ଦ୍ୱାରା ମୁଖ୍ୟ କର୍ମୀମାନଙ୍କର ଦୃଷ୍ଟି ଜିଲ୍ଲା ଭିତରେ ଆବଦ୍ଧ ରହିଲା । ସମସ୍ତ ପ୍ରଦେଶର ପ୍ରଶ୍ନ ପ୍ରତି ସମସ୍ତଙ୍କ ଦୃଷ୍ଟି ତୀକ୍ଷ୍ଣ ରହି ପାରିଲା ନାହିଁ । ଜିଲ୍ଲାଭାବ କର୍ମୀମାନଙ୍କ ମଧରେ ପ୍ରବେଶ କଲା । ପୁଣି ଜିଲ୍ଲା ଭିତରେ ଭିନ୍ନ ଭିନ୍ନ ସ୍ଥାନୀୟ ଆଶ୍ରମ ହେବାଦ୍ୱାରା କେନ୍ଦ୍ରାପଡ଼ାର କର୍ମୀ ଯାଜପୁର କାର୍ଯ୍ୟକୁ ନିଜର ବୋଲି ଭାବିବାକୁ ଶିଖିଲା ନାହିଁ । ଜଗତ୍‌ସିଂହପୁର, କେନ୍ଦ୍ରାପଡ଼ା କର୍ମୀଙ୍କ ମଧରେ ସ୍ଥାନୀୟ ଭାବ (Local patriotism) ଫୁଟି ଉଠିଲା । ସମସ୍ତ ଜିଲ୍ଲା ଭିତରେ କିପରି ସମାନ ଭାବରେ କାମ ଚାଲିବ ଏହି ଭାବ କ୍ଷଣା ହୋଇଗଲା । କଟକ ଆଶ୍ରମର ପ୍ରାଧାନ୍ୟ ମଧ ନ୍ୟୂନ ହୋଇଗଲା । କଟକ ଜିଲ୍ଲା କଂଗ୍ରେସ କମିଟି, ଜଗତ୍‌ସିଂହପୁରକୁ କଂଗ୍ରେସ ଅନୁଷ୍ଠାନ ତଳେ ଗୋଟିଏ ସବଡ଼ିଭିଜନ ରୂପେ ଗ୍ରହଣ କଲେ । ଜଗତ୍‌ସିଂହପୁରରେ ଅଳକାଶ୍ରମ ପ୍ରତିଷ୍ଠିତ ହେଲା । କଟକରେ ଅଧିକାଂଶ ମୁଖ୍ୟ କର୍ମୀ ଏହି ଅଳକାଶ୍ରମ କଥା ଯେତେ ଚିନ୍ତା କଲେ, ଜିଲ୍ଲାର ଅନ୍ୟ କୌଣସି କାର୍ଯ୍ୟ ଓ ଅନୁଷ୍ଠାନର ଚିନ୍ତା ସେମାନଙ୍କ ମନରେ ତେତେ ସ୍ଥାନ ପାଇଲା ନାହିଁ ।

ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ, ଶ୍ରୀଯୁକ୍ତ ଭାଗୀରଥି ମହାପାତ୍ର, ପଣ୍ଡିତ ପ୍ରାଣକୃଷ୍ଣ ପ୍ରତିହାରୀ ଓ ବାବୁ ନବକୃଷ୍ଣ ଚୌଧୁରୀ ପ୍ରଭୃତି ସମସ୍ତେ ଅଳକାଶ୍ରମକୁ ଓଡ଼ିଶାରେ ଗୋଟିଏ ମହତ୍ ଜାତୀୟ ଅନୁଷ୍ଠାନ ରୂପେ ଗଢ଼ିବାକୁ ମନ ପ୍ରାଣ ଢାଳି ଦେଲେ। ଅଳକାଶ୍ରମ, ହେଲା ସେମାନଙ୍କ ତ୍ୟାଗର ମହତ୍ କୀର୍ତ୍ତି ଓ ଜୀବନର ଏକ ମହତ୍ ଉଦ୍ଦେଶ୍ୟ। ସେମାନଙ୍କୁ ସାହାଯ୍ୟ କରିବାକୁ ଆହୁରି ଅନେକ ବଛା ବଛା କର୍ମୀ ମଧ୍ୟ ଅଳକାଶ୍ରମରେ ଯୋଗ ଦେଲେ। ଫଳରେ ଏହି ମୁଖ୍ୟ କର୍ମୀମାନଙ୍କର ସମସ୍ତ ଚିନ୍ତା ଓ କର୍ମ ଅଳାକାଶ୍ରମରେ ଆବଦ୍ଧ ରହିଲା। ସମସ୍ତ ଜିଲ୍ଲାରେ ଯେ ରାଜନୈତିକ ନୂତନ ଜୀବନ ବିକାଶ ପାଇଛି, ତାହାକୁ ନିୟନ୍ତ୍ରିତ କରିବାକୁ କଟକ ଜିଲ୍ଲାରେ କୌଣସି ପ୍ରକାର ସଂଗଠିତ ସମୂହ ଚେଷ୍ଟା ହେଲା ନାହିଁ। ଯେଉଁ କର୍ମୀ ସବୁ ଆସିଲେ ସେ ସମସ୍ତଙ୍କୁ ଭବିଷ୍ୟତ ପାଇଁ ତିଆରି କରିବାର ଭାବନା କାହାରି ମନରେ ସ୍ଥାନ ପାଇଲା ନାହିଁ। ୧୯୨୧ ପରେ ଅସହଯୋଗ ଆନ୍ଦୋଳନ ଦବିଗଲା ପରେ ଦେଶରେ ଯେଉଁ ବିକଟ ନୈରାଶ୍ୟର ଦୃଶ୍ୟ ଦେଖାଗଲା ସେଥିପାଇଁ ଏହି ପୃଥକୀକରଣ ନୀତି ମୁଖ୍ୟତଃ ଦାୟୀ ବୋଲି ମୁଁ କହିପାରେ। ସେ ଯାହା ହେଉ କଟକ ଜିଲ୍ଲାରେ କଂଗ୍ରେସର ଯାହା କିଛି କାର୍ଯ୍ୟ ହେଲା ଅବା ଅସହଯୋଗ ନୀତିର ଯାହା ଯେପରି ପ୍ରଚାର କରାଗଲା ସେଥିପାଇଁ ମୁଖ୍ୟତଃ ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ, ବାବୁ ଯଦୁମଣି ମଙ୍ଗରାଜ ଓ ଲେଖକ ବନ୍ଧୁ ଅଂଶରେ ଭାଗୀ। କଟକ ଜିଲ୍ଲାର କାର୍ଯ୍ୟରେ ଆମ୍ଭେ ତିନି ଜଣ ଯେପରି ମନ ପ୍ରାଣ ଢାଳିଦେଇ କାର୍ଯ୍ୟ କରିଛୁ, ସେପରି ଭାବରେ ଆଉ କେହି ଜଣା ଶୁଣା କର୍ମୀ କାମ କରିଛନ୍ତି ବୋଲି ମୋର ମନେହୁଏ ନାହିଁ। ଅବଶ୍ୟ ଆହୁରି ଅନେକ କର୍ମୀ ଥିଲେ, ଯେଉଁମାନେ ଆତ୍ମହରା ହୋଇ କାମ କରିଛନ୍ତି। କିନ୍ତୁ ମୋର ଜୀବନ କି ପ୍ରକାରେ ପ୍ରଭାବିତ ହୋଇଅଛି, ତାହା ଉଲ୍ଲେଖ କରିବା ପାଇଁ ଯେତିକି ଆବଶ୍ୟକ ସେତିକି ମୁଁ ଉଲ୍ଲେଖ କରୁଛି। ଓଡ଼ିଶାରେ ଅସହଯୋଗ ଆନ୍ଦୋଳନର ଇତିହାସ ଲେଖିବାକୁ ଗଲେ ଅନେକ କଥା ଉଲ୍ଲେଖ କରିବାକୁ ପଡ଼ିବ। ସେ ସବୁ ମୋର ଜୀବନୀରେ ବିବୃତି କରିବାର କୌଣସି ଆବଶ୍ୟକତା ନାହିଁ। ପୂର୍ବରୁ ମୋର ସ୍ୱଭାବ ଏକଜିଦିଆ ଥିଲା। ବାଲ୍ୟକାଳରୁ ସମାଜରେ ମିଳିମିଶି ଚଳିବାର ଅନୁକୂଳ ପରିସ୍ଥିତି ମୁଁ ପାଇ ପାରି ନାହିଁ। ସାମାଜିକ ଜୀବନ ମୋର ନାହିଁ କହିଲେ ଚଳେ। ପାଞ୍ଚ ଜଣ ସାଙ୍ଗ ସାଥିଙ୍କୁ ନେଇ ସୁଖ ଦୁଃଖ ଭୋଗ କରିବାର ଅବସର ମୁଁ ପାଇ ନାହିଁ। ଓଡ଼ିଶାକୁ ଆସି ଭୀଷଣ କର୍ମମୟ ଜୀବନରେ ସେହି ଅବସ୍ଥା। ମୁଁ ନିଜ ଇଚ୍ଛାନୁସାରେ କାର୍ଯ୍ୟ କରୁଛି। କଂଗ୍ରେସର କାର୍ଯ୍ୟାବଳୀକୁ ପୂରଣ କରିବାକୁ ନିଜେ ନିଜେ ଚେଷ୍ଟା କରୁଛି। ମହାତ୍ମାଗାନ୍ଧୀ କହିଛନ୍ତି, ସେ ନିଜ ପାଇଁ ସ୍ୱରାଜ୍ୟ ଲାଭ କରି ସାରିଲେଣି। ମୋର ମନେ ହୁଏ ଏହି ବାକ୍ୟଟି ଓଡ଼ିଶାର କର୍ମୀମାନଙ୍କ ପକ୍ଷରେ ଖଟାଇଲେ କିଛି ଆପତ୍ତି ରହିବ ନାହିଁ। ପ୍ରତ୍ୟେକ କର୍ମୀ ସେ ନିଜେ ସ୍ୱରାଜ୍ୟ ପାଇଲେଣି ବୋଲି ମନେ କରୁଛନ୍ତି।

ଅସହଯୋଗ ଆନ୍ଦୋଳନର ଲକ୍ଷ୍ୟ ଭାରତକୁ ସ୍ୱାଧୀନ କରିବା। ଅସହଯୋଗ ନୀତିର କାର୍ଯ୍ୟକ୍ରମକୁ ପୂର୍ଣ୍ଣ ମାତ୍ରାରେ କାର୍ଯ୍ୟରେ ପରିଣତ କରି ପାରିଲେ ଭାରତରେ ସ୍ୱରାଜ୍ୟ ପ୍ରତିଷ୍ଠା ସୁନିଶ୍ଚିତ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। କିନ୍ତୁ ଯେଉଁ ଦେଶରେ ଦେଶକୁ ସ୍ୱାଧୀନ କରିବାର ଆକାଂକ୍ଷା ଲୋକ ସାଧାରଣଙ୍କ ମନକୁ ଛୁଇଁ ନାହିଁ ସେ ଦେଶ ଏତେ ଶୀଘ୍ର ସ୍ୱାଧୀନ ହୋଇଯିବ, ବର୍ଷକ ମଧ୍ୟରେ ଦେଶରେ ସ୍ୱରାଜ୍ୟ ହୋଇଯିବ ଏହା ବିଶ୍ୱାସ କରିବା ଏକ ଭ୍ରମ। ବର୍ଷକ ଭିତରେ ସ୍ୱରାଜ୍ୟ ଲାଭ କରିବା ଅକ୍ଷରେ ଅକ୍ଷରେ ସତ୍ୟ ନ ହେଲେ ମଧ୍ୟ ଦେଶକୁ ସ୍ୱାଧୀନ କରିବା ପାଇଁ ପ୍ରଥମ ଆନ୍ଦୋଳନ ସୃଷ୍ଟି ହେବାଦ୍ୱାରା ଲୋକ ସାଧାରଣଙ୍କ ଆଖି ଫିଟିଗଲା ବୋଲି କୁହା ଯାଇପାରେ। ଦେଶକୁ ସ୍ୱାଧୀନ କରିବାର ପିପାସା ଅନେକ କର୍ମୀଙ୍କ ମଧ୍ୟରେ ପ୍ରବେଶ କରିବାର ଲକ୍ଷଣ ମଧ୍ୟ ଦେଖାଗଲା। କିନ୍ତୁ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ କର୍ମ କରିବା ପାଇଁ ଏପରି ଶହ ଶହ କର୍ମୀ ଦେଖା ଦେଲେ ଯେଉଁମାନଙ୍କର ମନରେ ଭବିଷ୍ୟତ୍ ରାଜନୈତିକ ଆଦର୍ଶବାଦ ପାଇଁ ପ୍ରବଳ ପିପାସା ରହିଲା ନାହିଁ। ସେମାନଙ୍କ ମଧ୍ୟରୁ କର୍ମୀ ବାଛି ଦେଶ ସ୍ୱାଧୀନ ନ ହେବା ପର୍ଯ୍ୟନ୍ତ କର୍ମ କରିବାକୁ ହେବ। ଏପ୍ରକାର ପ୍ରେରଣାରେ ଅନୁପ୍ରାଣିତ କରିବାର ଦୂରଦୃଷ୍ଟି କାହାରି ନ ଥିଲା। ସମସ୍ତଙ୍କ କର୍ମ କ୍ଷଣିକ ଓ ସୀମାବଦ୍ଧ ହୋଇ ରହିଲା। ପଣ୍ଡିତ ଗୋପବନ୍ଧୁ ଦାସଙ୍କ ମନରେ ଏହି ଭାବ ଅଙ୍କୁରିତ ହୋଇଥିଲା। ଓଡ଼ିଶାର ସବୁ ଜିଲ୍ଲାରୁ ବଚ୍ଛା ବଚ୍ଛା କର୍ମୀଙ୍କୁ ନେଇ, ଗୋଟିଏ ଭାବରେ ଅନୁପ୍ରାଣିତ କରାଇ ସମସ୍ତଙ୍କୁ ବାନ୍ଧି ରଖିବାର କଳ୍ପନା ସେ କରିଥିଲେ। କିନ୍ତୁ ଏଥିପାଇଁ ସେ କାହାରିଠାରୁ ସାହାଯ୍ୟ ଓ ସହଯୋଗ ପାଇଲେ ନାହିଁ। ପ୍ରତ୍ୟେକ ଜଣାଶୁଣା କର୍ମୀ ନିଜ ଗୋଡ଼ରେ ଠିଆ ହୋଇ, ନିଜେ ନିଜର କର୍ମ ପରିସ୍ଫୁଟ କରି, ନିଜର କର୍ମପଟୁତା ଦେଶରେ ଦେଖାଇବାର ଆକାଂକ୍ଷା ପ୍ରବଳ ଆକାର ଧାରଣ କଲା। ଏହି ଭାବରେ ସମସ୍ତେ ଭାସିଗଲେ। ମୋର ଅବସ୍ଥା ମଧ୍ୟ ତଦ୍ରୂପ ହେଲା।

ମୁଁ କଟକ ଆଶ୍ରମରେ ରହି କାର୍ଯ୍ୟ କରୁଥାଏ। କଟକ ଆଶ୍ରମରେ ଅନେକଗୁଡ଼ିଏ କର୍ମୀ ରହିଥାନ୍ତି। ସେମାନଙ୍କୁ କାମରେ ଲଗାଇବାର ଭାର ମୋ ଉପରେ ଥାଏ ଓ ଡାକ୍ତର ଅଟଳବିହାରୀଙ୍କ ଉପରେ ମଧ୍ୟ ଥାଏ। ମୁଁ ଅନେକ ସମୟରେ ମଫସଲ ପ୍ରଚାର କାର୍ଯ୍ୟରେ ବାହାରି ଯାଏ। ଅଧିକାଂଶ ସମୟ ଅଟଳ ବାବୁ ଆଶ୍ରମରେ ରହି ସମସ୍ତ କାର୍ଯ୍ୟ ପରିଚାଳନା କରନ୍ତି। ଅଟଳ ବାବୁଙ୍କୁ ସମସ୍ତେ ଅଟଳଦା ବୋଲି ଡାକନ୍ତି। ଅଟଳଦା ଅତି ସରଳ ଓ ଜଣେ ହୃଦୟବାନ୍ ବ୍ୟକ୍ତି। ଅନେକ କର୍ମୀ ଅଟଳଦାଙ୍କୁ ଠକାଇ ଆଶ୍ରମରେ ରହି ଅନ୍ନ ଧ୍ୱଂସ କରୁଥାନ୍ତି। ଯାହା କାମ ଦେଲେ ଭଲ କରି କରନ୍ତି ନାହିଁ। ମୁଁ ନିଜେ କାମକୁ ଆଗଭର ହୋଇ ବାହାରେ; କର୍ମୀମାନଙ୍କୁ ସାଥିରେ ଧରି କାର୍ଯ୍ୟ କରେ। ଯେଉଁମାନେ ବରାବର ଠକି ଆସୁଥାନ୍ତି, ସେମାନେ

ମୋ ସାଥିରେ ରହି କାମ କରିବାକୁ ଅନିଚ୍ଛୁକ ହୁଅନ୍ତି । ମତେ ଠିକ୍ଭାବେ ଆଶ୍ରମରେ ରହିପାରୁ ନ ଥିବାରୁ ସେମାନଙ୍କ ଗତିବିଧି ନିରୀକ୍ଷଣ କରି ପାରେ ନାହିଁ । ଯେ କେତେଜଣ ଭଲ କର୍ମୀ ଆସିଥିଲେ ସେମାନେ ସମସ୍ତେ ମଫସଲରେ ରହି କାମ କରୁଥାନ୍ତି । ବାଙ୍କି, ସାଲେପୁର, ମାହାଙ୍ଗା, ବଡ଼ଚଣା ଥାନାମାନଙ୍କରେ କେତୋଟି କେନ୍ଦ୍ର ଖୋଲା ହୋଇ କଂଗ୍ରେସର କାର୍ଯ୍ୟକ୍ରମ କରିବାକୁ ହେଉଥାଏ । ଏହି ପଲ୍ଲି-କେନ୍ଦ୍ର କେତୋଟି ପରିଦର୍ଶନ କରିବା ପାଇଁ ବାରମ୍ବାର ମତେ ମଫସଲ ଯିବାକୁ ପଡ଼େ । ମୁଁ କଟକ ଆଶ୍ରମକୁ ଫେରିଲେ ଅବଶିଷ୍ଟ କର୍ମୀମାନଙ୍କର ମୁଁ ହୁଏ ଗୋଟିଏ ପ୍ରଧାନ ବିରକ୍ତିର କାରଣ ।

ଏହା ହେଉଛି କଂଗ୍ରେସର କାର୍ଯ୍ୟ । ଏଠାରେ କେହି କାହାର ଅଧୀନ ନୁହେଁ । ଗଣତନ୍ତ୍ର ଶାସନ ନୀତିରେ ସମସ୍ତେ ପରିଚାଳିତ । ରାଜନୈତିକ ଆଦର୍ଶବାଦର ଅଭାବ ଥିଲେ, କିମ୍ବା କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଅନୁଷ୍ଠାନ ଅଧୀନରେ ରହି, ଜୀବନ ନିୟନ୍ତ୍ରିତ କରିବାର ଇଚ୍ଛା ବା ଆଶା ନ ଥିଲେ ପରିଣାମ ଯାହା ହୁଏ କଟକ ସ୍ୱରାଜ୍ୟ ଆଶ୍ରମର କର୍ମୀମାନଙ୍କ ଅବସ୍ଥା ସେଇୟା ହୋଇଛି । ସେମାନଙ୍କ ଜୀବନ ବିଶୃଙ୍ଖଳ ହୋଇଛି । ସେମାନେ ସ୍ୱେଚ୍ଛାସେବକର ଅର୍ଥକୁ ସ୍ୱେଚ୍ଛାଚାରିତା ଭାବରେ ଗ୍ରହଣ କରିଥିଲା ପରି ବୋଧ ହେଉଛି । ସମସ୍ତେ ଯେତେବେଳେ ମନେ କରି ନେଇଛନ୍ତି ଯେ ସେମାନେ ସ୍ୱରାଜ୍ୟ ପାଇଲେଣି, ସେମାନେ ସ୍ୱାଧୀନ । ଏପରି ଅବସ୍ଥାରେ ମୁଁ ଟିକିଏ ବାଧ ବାଧକତା କଲେ ସେମାନେ ତାହା ସହ୍ୟ କରିବେ କାହିଁକି ? ପୁଣି ମୋ ବ୍ୟତୀତ ସେମାନଙ୍କ କାର୍ଯ୍ୟକୁ ଏପରି ତୀକ୍ଷ୍ଣ ଦୃଷ୍ଟିରେ କେହି ଦେଖୁ ନାହିଁ । ଏଥିରେ ସେମାନେ ମୋ ଉପରେ ବିରକ୍ତିଭାବ ଦେଖାଇବା ସଂପୂର୍ଣ୍ଣ ସ୍ୱାଭାବିକ । କିନ୍ତୁ ମୁଁ ଯେପରି ଉନ୍ମାଦନାର ସହିତ କାର୍ଯ୍ୟ କରୁଛି, ସେପରି ଭାବରେ କାର୍ଯ୍ୟ କରିବାର କାହାକୁ ଦେଖିବାକୁ ନ ପାଇଲେ, ଏ ଦୃଶ୍ୟ ମୋ ପକ୍ଷରେ ଅସହ୍ୟ ହୋଇ ଉଠେ । ସମସ୍ତେ ମତେ କହନ୍ତି ଅସହିଷ୍ଣୁ ଓ ଚିଡ଼ା ପ୍ରକୃତିର ଲୋକ । କିନ୍ତୁ ପାରିପାର୍ଶ୍ୱିକ ପରିସ୍ଥିତି ଓ କର୍ମପଦ୍ଧତି, ମୋର ପ୍ରକୃତିକୁ ଉଗ୍ର କରି ପକାଉଛି । ମୁଁ ସବୁବେଳେ ଦିନକ କାର୍ଯ୍ୟକୁ ଘଣ୍ଟାକେ କରି ଦେବାକୁ ଦୌଡ଼ୁଛି । ଏ ଦୌଡ଼ରେ କାହାରିଠାରେ ଶିଥିଳତା ଦେଖିଲେ ମତେ ଅସହ୍ୟକର ବୋଧ ହେଉଛି । କିନ୍ତୁ ଓଡ଼ିଶାରେ ଯେ କେତୋଟି ମୁଖ୍ୟ କର୍ମୀ ଥିଲେ, ସମସ୍ତେ ଯଦି ଗୋଟିଏ ଅନୁଷ୍ଠାନରେ ନିଜ ନିଜକୁ ବାନ୍ଧି ରଖି ସମୂହ କର୍ମ ଓ ଚିନ୍ତା କରିବାକୁ ପ୍ରୟାସ କରିଥାନ୍ତେ, ମୋର ଜୀବନ ବୋଧହୁଏ ଅନ୍ୟ ଆକାର ଧାରଣ କରିଥାନ୍ତା । କର୍ମୀମାନଙ୍କ ଭିତରେ ବ୍ୟକ୍ତିଗତ ପ୍ରତିଷ୍ଠା ଲାଭର ଲାଳସା ସ୍ଥାନ ପାଇ ପାରି ନ ଥାନ୍ତା । ଓଡ଼ିଶାର ଜାତୀୟ ଜୀବନରେ ଯେଉଁ ଉପାଦାନର ଅଭାବ ଆଜି ସମସ୍ତେ ଅନୁଭବ କରୁଛନ୍ତି ତାହାର ଅଭାବ ରହି ନ ଥାନ୍ତା । ଦଳଗତ ଜୀବନ କେଉଁଦିନୁ ଆମ୍ଭର ଜାତୀୟ ଜୀବନରେ ଫୁଟି ପ୍ରକାଶ

ପାଇ ପାରିଥାନ୍ତା । ସମଷ୍ଟିଗତ ଜୀବନ ଓ କର୍ମ ଆଜି ଆମ୍ଭର ବଡ଼ ଅଭାବ । ଏହାକୁ ଦୂର କରିବା ପ୍ରତି ଲକ୍ଷ୍ୟ ରଖି ଆଦର୍ଶ ସମଷ୍ଟିଗତ କର୍ମମୟ ଜୀବନ ଗଢ଼ିବାର ଏକ ଅପୂର୍ବ ସୁଯୋଗ ୧୯୨୧ ମସିହାରେ ମିଳିଥିଲା । କିନ୍ତୁ ତାହା ଆମ୍ଭେମାନେ ନିଜର ଦୂରଦୃଷ୍ଟିର ଅଭାବରୁ ହରାଇଛୁ ବୋଲି ମୋର ବିଶ୍ୱାସ । ଜାତୀୟ ଜୀବନର ଚିନ୍ତା ଓ କର୍ମ ପ୍ରବାହ ପ୍ରଥମରୁ ଆଦର୍ଶ ଏକ ଥାଇ ଯଦି ଭିନ୍ନ ଭିନ୍ନ ଗତିରେ ପ୍ରବାହିତ ହୁଏ ତାହାକୁ ଏକମୁଖୀ କରିବା ପାଇଁ ଯେ ଶକ୍ତି ଦରକାର ଓଡ଼ିଶାରେ ସେହି ଶକ୍ତିର ଅଭାବ । ବ୍ୟକ୍ତିତ୍ୱର ମହତ୍ତ୍ୱ ଏ ଦେଶରେ ନ ଥିବାରୁ ନବ ଜାଗରିତ ରାଜନୈତିକ ଜାତୀୟ ଜୀବନ ଏପରି ଛିନ୍ନ ବିଚ୍ଛିନ୍ନ ହୋଇଗଲା । ଏହି ଏକ ପ୍ରାଣ ଓ ଏକ ମନର ଅଭାବ ମୁଁ ତୀବ୍ର ଭାବରେ ଅନୁଭବ କରୁଛି ।

ବର୍ତ୍ତମାନ ପ୍ରତି ଜିଲ୍ଲାରେ ଜିଲ୍ଲାକଂଗ୍ରେସ କମିଟି ଗଠିତ ହୋଇଛି । ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟି ମଧ୍ୟ ଗଠିତ ହୋଇଛି । ରାଜନୈତିକ ପ୍ରଶ୍ନର ସମାଧାନ କରିବା ପାଇଁ ଏକାଠି ବସି ବିଚାର ଓ ପରାମର୍ଶ କରିବାକୁ ଓଡ଼ିଶାରେ ନିର୍ବାଚନମୂଳକ ଗୋଟିଏ ରାଜନୈତିକ ଅନୁଷ୍ଠାନ ଗଢ଼ା ହେଲା । ଅସହଯୋଗ ଆନ୍ଦୋଳନର କାର୍ଯ୍ୟକ୍ରମରେ ଯେତେବେଳେ ଯେପରି ନୂତନ କର୍ମପଦ୍ଧତି ସ୍ଥିର ହୁଏ, ତାହାକୁ ଓଡ଼ିଶାରେ କିପରି ଖଟାଇଲେ କାର୍ଯ୍ୟକାରୀ ହେବ, ସେ ବିଷୟରେ କଂଗ୍ରେସ କମିଟିର ସଭ୍ୟମାନେ ବସି ଆଲୋଚନା କରନ୍ତି । ଅରଟ ପ୍ରଚାର ଓ ବିଲାତି ବର୍ଜନ ଏହି କାର୍ଯ୍ୟପଦ୍ଧତି ବର୍ତ୍ତମାନ ନିଖିଳ ଭାରତ କଂଗ୍ରେସ କମିଟି ସ୍ଥିର କରିଛନ୍ତି । ବେଜଓ୍ୱାଡ଼ା କାର୍ଯ୍ୟକ୍ରମ ପରେ ଏକ କୋଟି ଅରଟ ପ୍ରଚାର କରିବାର ଧାର୍ଯ୍ୟ ହୋଇଛି । ବିଲାତି ଲୁଗା ବ୍ୟବସାୟୀମାନେ ଏକବର୍ଷ ସକାଶେ ବିଲାତି ଲୁଗା ଆଉ ମଗାଇବେ ନାହିଁ, ଏହି ମର୍ମରେ କଂଗ୍ରେସକୁ ଚୁକ୍ତିପତ୍ର ଲେଖିଦେବା ପାଇଁ ମଧ୍ୟ ପ୍ରସ୍ତାବ ସ୍ଥିର କରାଯାଇଛି । ଯେଉଁ ଲୁଗା ବ୍ୟବସାୟୀମାନେ କଂଗ୍ରେସକୁ ଏହି ଚୁକ୍ତିପତ୍ର ଲେଖି ନ ଦେବେ, ସେମାନଙ୍କ ଦୋକାନ ଆଗରେ ପିକେଟିଙ୍ଗ୍ ବସାଇବାର କଥା ମଧ୍ୟ ହୋଇଛି । କଂଗ୍ରେସର ଏହି ନୂତନ କାର୍ଯ୍ୟପଦ୍ଧତିକୁ କିପରି ଓଡ଼ିଶାରେ କାର୍ଯ୍ୟକାରୀ କରିବାକୁ ହେବ ସେ ବିଷୟରେ ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ବସିଲା । ବହୁତ ଆଲୋଚନା ପରେ ସ୍ଥିର ହେଲା ଯେ, ଓଡ଼ିଶାରେ ପିକେଟିଙ୍ଗ୍ ବସାଇ ପାରିବା ନାହିଁ । ଅରଟ ପ୍ରଚାରରେ ସମସ୍ତ ଶକ୍ତି ନିୟୋଜିତ କରିବାକୁ ହେବ । ଓଡ଼ିଶାରେ ଘର ଘର ବୁଲି ବିଲାତି ଲୁଗା ସଂଗ୍ରହ କରି ଏହି ସଂଗୃହୀତ ଲୁଗାକୁ ନିଆଁ ଲଗାଇ ପୋଡ଼ିବାକୁ ହେବ । ଏକବର୍ଷ ପାଇଁ ଅନ୍ତତଃ ବିଲାତି ଲୁଗା କିଣିବା ବନ୍ଦ କରିବା ପାଇଁ ଦେଶରେ ପ୍ରଚାର କରିବାକୁ ହେବ । ଓଡ଼ିଶାର ପ୍ରାଦେଶିକ କମିଟି ଏହିପରି ପ୍ରସ୍ତାବ ଗ୍ରହଣ କଲେ । ଏହି ପ୍ରସ୍ତାବ ଅନୁସାରେ ବହୁତ ବିଲାତି ଲୁଗା ସଂଗ୍ରହ କରାହୋଇ ସ୍ଥାନେ ସ୍ଥାନେ ବଡ଼ ବଡ଼ ସଭାରେ ସେହି ବିଲାତି-ଲୁଗା-ଯଜ୍ଞ କରିବାକୁ ହେଲା ।

କିନ୍ତୁ ଏହି ପ୍ରସ୍ତାବରେ ମୋର ମନ ମାନିଲା ନାହିଁ। ମୋର ପୂର୍ଣ୍ଣ ଇଚ୍ଛା ପିକେଟିଙ୍ଗ୍ ଜାରୀ କରିବା। ପିକେଟିଙ୍ଗ୍ ଜାରୀ ନ କଲେ ବିଲାତି ବର୍ଜନର ପ୍ରଚାର କିଛି ହେବ ନାହିଁ। ଅସହଯୋଗ ଆନ୍ଦୋଳନ ଗୋଟାଏ ଲଢ଼ାଇ, ଏ କଥାଟା ଜନସାଧରଣଙ୍କ ମନ ମାନିଲା ଭଳି କାର୍ଯ୍ୟରେ ଦେଖାଇ ହେବ ନାହିଁ। ପ୍ରାଦେଶିକ କଂଗ୍ରେସ କମିଟି ପିକେଟିଙ୍ଗ୍ ଜାରୀ କରିବାକୁ ମନା କରିଥିବାରୁ ମୁଁ ମୋର ଇଚ୍ଛା ଅଥବା ହୃଦ୍‌ବିଶ୍ୱାସ ଅନୁସାରେ କାର୍ଯ୍ୟ କରି ନ ପାରେ। ସେ ଯାହାହେଉ ଭାରତର ରାଜନୈତିକ ପରିସ୍ଥିତିରେ ଏତିକି ବେଳେ ଗୋଟାଏ ବଡ଼ ଘଟଣା ଘଟିଲା। ମହାତ୍ମାଗାନ୍ଧୀ ବଡ଼ଲାଟ ଲର୍ଡ଼ ରିଡ଼ିଙ୍ଗଙ୍କ ସହିତ ଦେଖା ସାକ୍ଷାତ କଲେ। ମହାତ୍ମାଗାନ୍ଧୀଙ୍କ ଇଙ୍ଗିତରେ ପ୍ରତ୍ୟେକ ପ୍ରଦେଶରୁ ଅନ୍ୟାନ୍ୟ ବଡ଼ ବଡ଼ ନେତାମାନେ ବଡ଼ଲାଟ ସାହେବଙ୍କ ସହିତ ଦେଖା ସାକ୍ଷାତ କରିବା ପାଇଁ ସିମଲା ଦୌଡ଼ିଲେ। ଅସହଯୋଗ ଆନ୍ଦୋଳନ ବେଳେ ମହାତ୍ମାଗାନ୍ଧୀ ଏପରି ହଠାତ୍ ବଡ଼ଲାଟ ସାହେବଙ୍କ ସହିତ ଦେଖା କରିବାକୁ କର୍ମୀମାନଙ୍କ ମଧ୍ୟରୁ ଅନେକ ପସନ୍ଦ କଲେ ନାହିଁ। ଓଡ଼ିଶାର କର୍ମୀମାନଙ୍କ ମଧ୍ୟରୁ କେହି କେହି ମଧ୍ୟ ଏଥିପାଇଁ ମହାତ୍ମାଜୀଙ୍କ ଏହି କାର୍ଯ୍ୟକୁ ପସନ୍ଦ କରି ନାହାନ୍ତି। କିନ୍ତୁ ମୋର ମନେହୁଏ ମହାତ୍ମାଜୀଙ୍କର ବଡ଼ଲାଟ ଲର୍ଡ଼ ରିଡ଼ିଙ୍ଗଙ୍କ ସହିତ ଏହି ଦେଖା ସାକ୍ଷାତରେ ଯେ ଚୁକ୍ତି ହେଲା, ତାହାହିଁ ଭାରତ ରାଜନୈତିକ ଜୀବନରେ ଘୋର ବିପ୍ଳବାତ୍ମକ ଭାବ ସୃଷ୍ଟି କରି ପାରିଲା। ବଡ଼ଲାଟ ଲର୍ଡ଼ ରିଡ଼ିଙ୍ଗ୍ ଜଣେ ବଡ଼ ଚତୁର ଓ ଆଇନଜ୍ଞ ବ୍ୟକ୍ତି। ସେ ମହାତ୍ମାଜୀଙ୍କୁ ରାଜନୈତିକ ଯୁକ୍ତିରେ ଭୁଲାଇବାକୁ ଚେଷ୍ଟା କରିବା କପୋଳକଳ୍ପିତ ହୋଇ ନ ପାରେ। ଏପରି ଅନୁମାନରେ ସତ୍ୟ ଥାଇ ପାରେ ଅବା ନ ଥାଇ ପାରେ। କିନ୍ତୁ ମହାତ୍ମାଜୀ ଲର୍ଡ଼ ରିଡ଼ିଙ୍ଗଙ୍କ ସହିତ କଥୋପକଥନ କରି ଫେରିଲା ପରେ ଗୋଟିଏ ଇସ୍ତାହାର ପ୍ରକାଶ କଲେ। ସେଥିରେ ଲେଖାଥିଲା ଯେ, ବଡ଼ଲାଟ ଲର୍ଡ଼ ରିଡ଼ିଙ୍ଗ୍ ଭାରତ ପ୍ରତି ନ୍ୟାୟ ବିଚାର କରିବାକୁ ବଡ଼ ଉତ୍କଣ୍ଠିତ। ଅସହଯୋଗ ଆନ୍ଦୋଳନ ଯେତେଦିନ ପର୍ଯ୍ୟନ୍ତ ଅହିଂସାପୂର୍ଣ୍ଣ ରହିଥିବ ସେତେଦିନ ପର୍ଯ୍ୟନ୍ତ ସରକାର ତରଫରୁ କୌଣସି ପ୍ରକାର ବାଧା ବିଘ୍ନ କଂଗ୍ରେସର ପ୍ରଚାର କାର୍ଯ୍ୟରେ ଦିଆଯିବ ନାହିଁ। ବାସ୍ତବରେ ତାହାହିଁ ହେଲା। ଅସହଯୋଗ ଆନ୍ଦୋଳନର କାର୍ଯ୍ୟକ୍ରମକୁ ପ୍ରସାର କରିବାର ସରକାରୀ ବାଧା ସେପରି କିଛି ରହିଲା ନାହିଁ।

ଜନସାଧାରଣ ଏପର୍ଯ୍ୟନ୍ତ ସରକାରୀ ତଥା ପୋଲିସକୁ ଦେଖିଲେ ଭୟରେ ଥରହର ହେଉଥିଲେ। ସରକାର ବିରୁଦ୍ଧରେ କିଛି କହିବା ସେମାନଙ୍କ କଳ୍ପନାର ବହିର୍ଭୂତ ବିଷୟ ଥିଲା। ବଡ଼ ବଡ଼ ସଭାରେ ସରକାର ବିରୁଦ୍ଧରେ ବହୁତ କଥା ସେମାନେ ଶୁଣିବାକୁ ପାଇଲେ। ପଲ୍ଲୀଗ୍ରାମରେ ସଭା କରି ସାଧାରଣ କଂଗ୍ରେସ କର୍ମୀମାନେ କିଛି କହିଲାବେଳେ ସେମାନେ କଣ କହୁଛନ୍ତି ଏ ଜ୍ଞାନ ଅନେକଙ୍କର ଥାଏ କି ନାହିଁ ସେ ବିଷୟରେ ସନ୍ଦେହ ଜାତ ହୁଏ। ଅନେକ ସମୟରେ ଏବଂ

ଅନେକ ସ୍ଥଳରେ କଂଗ୍ରେସ କର୍ମୀମାନଙ୍କର ପୋଲିସ ସହିତ ବାକ୍ବିତଣ୍ଡାରେ ସଂଘର୍ଷ ଜାତ ହୁଏ। ପୋଲିସ କର୍ମଚାରୀ ଅପମାନସୂଚକ କଥା ଶୁଣିଲେ ମଧ୍ୟ ସେ ସବୁ ଲେଖି ରିପୋର୍ଟ କରିବା ଛଡ଼ା ମୁହଁ ଖୋଲି କଥା କହିବାର ଅଧିକାର ସେମାନଙ୍କର ନ ଥାଏ। ସାଧାରଣ ଲୋକେ ଏହି ଦୃଶ୍ୟ ଦେଖି ମନେ କରନ୍ତି ଯେ, ଇଂରେଜୀ ସରକାରଙ୍କ ବଳ ଆଉ ନାହିଁ। କଂଗ୍ରେସକୁ ଏବଂ ଗାନ୍ଧୀ ମହାତ୍ମାଙ୍କୁ ସରକାର ଡରି ଗଲେଣି। ସ୍ୱରାଜ୍ୟ ନିଶ୍ଚୟ ହେବ। ଅଶିକ୍ଷିତ ପଲ୍ଲୀବାସୀ ମନରେ ଏହିପରି ଯେଉଁ ଧାରଣା ଜନ୍ମିଲା, ତାହାହିଁ ଆମ୍ଭର ସ୍ୱାଧୀନତା ସଂଗ୍ରାମର ମୂଳଭିତ୍ତି ହେଲା ବୋଲି ମୋର ବିଶ୍ୱାସ। ପଲ୍ଲୀବାସୀଙ୍କର ଏହିପରି ଧାରଣା ଓ ବିଶ୍ୱାସ କଂଗ୍ରେସ କର୍ମୀମାନଙ୍କ ପ୍ରତି ସେମାନଙ୍କ ହୃଦୟରେ ଭକ୍ତିଭାବ ଉଦ୍ରେକ କରାଇଥିଲା। ଜନସାଧାରଣଙ୍କର କଂଗ୍ରେସର ଶକ୍ତି ଉପରେ ଆସ୍ଥା ଜନ୍ମିଲା। କର୍ମୀମାନଙ୍କର ସାହସ ବଢ଼ିଲା। ଯାହା ଲୋକେ ଅସମ୍ଭବ ବୋଲି ବିଚାରୁଥିଲେ ତାହା ସମ୍ଭବପର ବୋଲି ସେମାନଙ୍କର ବିଶ୍ୱାସ ହେଲା। ଜନସାଧାରଣଙ୍କ ବିଚାର ଧାରା ଓ କଳ୍ପନା ରାଜ୍ୟରେ ଘୋର ପରିବର୍ତ୍ତନ ଘଟିଲା। ଭାରତବାସୀର "ରାଜନୈତିକ ଦୃଷ୍ଟି ବିନ୍ଦୁ" (Politicaloutlook) ରେ ଘୋର ବିପ୍ଳବର ସୂତ୍ରପାତ ହେଲା। ମହାତ୍ମାଗାନ୍ଧୀ ବଡ଼ଲାଟ ଲର୍ଡ ରିଡ଼ିଙ୍ଗଙ୍କ ସହିତ କଥୋପକଥୋନ କରି ଯେଉଁ ଚୁକ୍ତି କରି ଆସିଲେ ତାହାରି ଫଳରେ ଦେଶରେ ଏପରି ଘୋର ପରିବର୍ତ୍ତନ ଘଟି ପାରିଲା ବୋଲି ମୁଁ କହିପାରେ।

ଦେଶରେ ରାଜନୈତିକ ପରିସ୍ଥିତ ଲୋକଚରିତ୍ର ଗଠନ କରେ। ଆଦର୍ଶ ରଖି କର୍ମ କରୁଥିବା କର୍ମୀମାନଙ୍କର କର୍ମ ଓ ଚିନ୍ତାକୁ ପ୍ରଭାବିତ କରେ। ଏହି ପରିସ୍ଥିତି ମୋର କର୍ମ ଓ ମନୋବୃତ୍ତିକୁ ବହୁତ ପ୍ରଭାବିତ କରିଛି। ମୁଁ ନିର୍ଭୀକ ହୃଦୟରେ ମନଇଚ୍ଛା ଇଂରେଜ ସରକାରଙ୍କୁ ସମାଲୋଚନା କରିଛି। କୌଣସି ପ୍ରକାର ଭାବକୁ ପ୍ରକାଶ କଲାବେଳେ ଶବ୍ଦ ଯୋଜନାରେ କୌଣସି ସୀମା ରହେ ନାହିଁ। ତୀବ୍ରଭାବକୁ ପ୍ରକାଶ କଲାବେଳେ ତୀବ୍ର ଶବ୍ଦ ମଧ୍ୟ ମୁହଁରୁ ବାହାରିପଡ଼େ। ମୋର ଜୀବନ ଉଗ୍ର ହୋଇ ଉଠିଛି। ମୁଁ କାହାରି ପରାମର୍ଶ ଓ ଆଦେଶର ଅପେକ୍ଷା ରଖି ନାହିଁ। ମତେ ଯେଉଁ ବାଟ ଯେପରି ଦେଖାଯାଏ, ସେହିପରି ମୁଁ କରିଛି। ଏଥିପାଇଁ କାହାରି ମତାମତ ଲୋଡ଼ିବାର ଆବଶ୍ୟକତା ମଧ୍ୟ ଅନୁଭବ କରି ନାହିଁ। କୌଣସି ଭାବ ଅବା ଭାଷା ରାଜଦ୍ରୋହସୂଚକ ହେବ ଏପରି ଭାବନା ମନରେ ନ ଥାଏ। ଯେତେ କଡ଼ା କଥା କହିଲେ କିମ୍ବା ଯେତେ ଦ୍ରୁତ ଗତିରେ କାର୍ଯ୍ୟ କଲେ ମଧ୍ୟ ତାହା ଯଥେଷ୍ଟ ହେଲା ବୋଲି ମନ ମାନେ ନାହିଁ। ମନରେ ଯେଉଁ ଭାବ ଆସେ ତାହା ଅବାଧରେ ବ୍ୟକ୍ତ କରେ। ମନର ପ୍ରତ୍ୟେକ ଭାବକୁ କାର୍ଯ୍ୟରେ ଖଟାଇବା ପାଇଁ ବ୍ୟଗ୍ରତା ଅନୁଭବ କରେ। ମୁଁ ଭାବେ, ବିଲାତି ଲୁଗା ଦୋକାନରେ ପିକେଟିଙ୍ଗ୍ କରିବା ଅତୀବ ଜରୁରୀ। କିନ୍ତୁ ପ୍ରାଦେଶିକ କଂଗ୍ରେସ କମିଟି ପିକେଟିଙ୍ଗ୍ ଜାରୀ କରିବାକୁ ଅନୁମତି ଦେଇ ନାହାନ୍ତି।

ଡାକ୍ତର ଅଟଳବିହାରୀ କଟକ ଜିଲ୍ଲା କଂଗ୍ରେସ କମିଟିର ସଂପାଦକ। ଆଶ୍ରମ ପରିଚାଳନା ଭାର ପୁଣି ତାହାଙ୍କ ଉପରେ ଅଛି। ଏହିସବୁ କାମରୁ ତାହାଙ୍କୁ ଟିକିଏ ସମୟ ମିଳେ ନାହିଁ। ମଫସଲ ଟିକିଏ ବୁଲି ଆସିବା ପାଇଁ ତାହାଙ୍କ ପ୍ରାଣ ଛଟପଟ କରୁଥାଏ। ସେ କିଛିଦିନ ପାଇଁ ଅଫିସ ଓ ଆଶ୍ରମ ଭାର ମତେ ଦେଇ ମଫସଲ ବୁଲିବାକୁ ଗଲେ। ମୁଁ ଆଶ୍ରମରେ ରହି କର୍ମୀମାନଙ୍କୁ ପ୍ରତିଦିନ କର୍ମରେ ନିଯୋଜିତ କରିବାର ଭାର ପୂର୍ଣ୍ଣ ମାତ୍ରାରେ ଗ୍ରହଣ କଲି।

ଆଶ୍ରମରେ କେତେଗୁଡ଼ିଏ ତଥାକଥିତ କର୍ମୀ ରହିଥାନ୍ତି। ଅଟଳ ବାବୁଙ୍କ ସରଳ ପ୍ରକୃତି ଓ ହୃଦୟବତ୍ତା ହେତୁ ସେ ସେମାନଙ୍କ ବାହାର ଆଡ଼ମ୍ବରରେ ଭୁଲିଯାନ୍ତି। ମୁଁ ଏହିପରି କେତୋଟି କର୍ମୀଙ୍କୁ ଚିହ୍ନିଥାଏ। ଏମାନେ କଟକ ସହରରୁ ବିଲାତୀ ଲୁଗା ସଂଗ୍ରହ କରି ସେ ସବୁ ଲୁଗା ଚୋରି କରିବାର ସମ୍ବାଦ ଶୁଣିଥାଏ। ସୁତରାଂ ଆଶ୍ରମ ଓ ଅଫିସ ଉଭୟର ଭାର ଗ୍ରହଣ କରି ଏହି କର୍ମୀମାନଙ୍କୁ ଆଶ୍ରମରୁ ବିଦାୟ ଦେବା ହେଲା ମୋର ପ୍ରଥମ କାର୍ଯ୍ୟ। ଏମାନଙ୍କୁ ବିଦାୟ ଦେବା ମୋ ପକ୍ଷରେ ଅବଶ୍ୟ ସହଜ ହୋଇ ନାହିଁ। ଏଥିପାଇଁ ମତେ ବହୁତ କଥା ଶୁଣିବାକୁ ପଡ଼ିଛି। ବହୁତ କର୍ମୀ ମୋ ଉପରେ ବିରକ୍ତ ଓ ଅସନ୍ତୁଷ୍ଟ ହୋଇ ଅଛନ୍ତି। କିନ୍ତୁ କୌଣସି ପ୍ରକାରେ କାହାରି କଥା କିଛି ନ ଶୁଣି କେତୋଟି କର୍ମୀଙ୍କୁ ବାହାର କରି ଦେବାକୁ ମୁଁ ବାଧ ହେଲି। ମୁଁ ଦେଖିଲି, ଜିଲ୍ଲାରେ କେଉଁଠାରେ କେଉଁ କର୍ମୀ କିପରି କାମ କରୁଛି ସେସବୁ ପ୍ରତି ଦୃଷ୍ଟି ରଖି ବିଚାର କରିବାକୁ କାହାରି ମନ ନାହିଁ କିମ୍ବା କଟକ ଜିଲ୍ଲାରେ ସେପରି କେହି ବ୍ୟକ୍ତି ନାହିଁ ଯେ କି ସବୁ କଥାର ଦାୟିତ୍ୱ ଗ୍ରହଣ କରିବ। ଏପରି ଅବସ୍ଥାରେ ଦୃଷ୍ଟି ଉପରେ ଯେତିକି ପଡ଼ୁଛି ସେତିକି ସଂଶୋଧନ କରିନେବା କର୍ତ୍ତବ୍ୟ। କୌଣସି ଗୋଟିଏ କାର୍ଯ୍ୟ କରିବାକୁ ଗଲେ ତାହାର ଭଲ ମନ୍ଦର ଦାୟିତ୍ୱ ମୁଣ୍ଡେଇବାକୁ ପଡ଼ିବ। ସମାଲୋଚନା ମଧ୍ୟ ଶୁଣିବାକୁ ହେବ। ଲଢ଼ାଇ ବେଳେ ରଣ କ୍ଷେତ୍ରରୁ ସୈନ୍ୟ ତଡ଼ି ଦେବା ଯାହା କଟକ ଆଶ୍ରମରୁ କେତୋଟି କର୍ମୀଙ୍କୁ ବାହାର କରିଦେବା ଅର୍ଥ ତାହା। ଫଳରେ ଆଶ୍ରମରେ ବର୍ତ୍ତମାନ ତିନି ଚାରୋଟି ମାତ୍ର କର୍ମୀ ରହିଲେ। ସହରରେ କିପରି କାମ ଚଳିବ ଏହି ଭାବନା ଉପସ୍ଥିତ ହେଲା।

ଏହି ସମୟରେ ମୌଲାନ ମହମଦ ଆଲ୍ଲି ଓ ସୌକତ ଆଲ୍ଲି ଭାଇ ଦୁହେଁ ଧରା ହେଲେ। ଏହି ଉପଲକ୍ଷରେ ସଭା ହେଲା। ସଭାରେ ଅବଶ୍ୟ ମୋ ବ୍ୟତୀତ ଅନ୍ୟ କେହି କହିବାକୁ ନ ଥିଲେ। ଆଲ୍ଲିଭାଇଙ୍କ ଧରା ହେବାରେ ଗୋଟିଏ ସଭା କରି ସରକାରୀ କାର୍ଯ୍ୟକୁ ସମାଲୋଚନା କରିଦେଇ ମୋର ମନ ଏତିକିରେ ସନ୍ତୁଷ୍ଟ ହେଲା ନାହିଁ। ମୁଁ ଦେଖିଲି, ଏହି ଅବସରରେ ଗୋଟାଏ ନୂଆ କଥା କିଛି ଦେଖାଇବାକୁ ହେବ। ଅଟଳ ବାବୁ ମଫସଲ ଗସ୍ତରେ। କଂଗ୍ରେସ କମିଟିରେ ପ୍ରସ୍ତାବ ଆଣି କାର୍ଯ୍ୟ

କଲା ବେଳକୁ ବାୟୁ ମଣ୍ଡଳ ଟିକିଏ ଥଣ୍ଡା ପଡ଼ି ଯାଇଥିବ। ନିଜ ଉପରେ ଦାୟିତ୍ୱ ନେଇ କାମ ଆରମ୍ଭ କରିଦେବାକୁ ସ୍ଥିର କଲି। ସଭାରେ ଘୋଷଣା କଲି ଯେ, ଆଲ୍ଲିଭାଇ ଦୁର୍ହିଙ୍କ ଧରା ହେବାରେ ଓଡ଼ିଶାରେ ଅସନ୍ତୋଷ ଜଣାଇବା ପାଇଁ କାଲିଠାରୁ କଟକ ସହରରେ ବିଲାତୀ ଲୁଗା ଦୋକାନ ଆଗରେ ପିକେଟିଙ୍ଗ୍ ଜାରୀ କରା ହେବ। ଏହି ଘୋଷଣା କରି ତହି ଆର ଦିନଠାରୁ ପିକେଟିଙ୍ଗ୍ ଆରମ୍ଭ କଲି। ସାଙ୍ଗରେ ଦୁଇଟି ମାତ୍ର ସ୍ୱେଚ୍ଛାସେବକ। ଅଟଳ ବାବୁ ମଫସଲ ବସ୍ତିରୁ ଫେରିଲେ। ସେ ପୂର୍ଣ୍ଣ ପ୍ରାଣରେ ମୋର କାର୍ଯ୍ୟକୁ ସମର୍ଥନ କଲେ। ଅସହଯୋଗ ଆନ୍ଦୋଳନର ଓଡ଼ିଶା ଇତିହାସରେ ଗୋଟିଏ ନୂତନ ଅଧ୍ୟାୟ ଖୋଲା ହେଲା ଏବଂ ଆନ୍ଦୋଳନ ଗୋଟିଏ ନୂତନ ଆକାର ଧାରଣ କଲା।

# ପଞ୍ଚମ ପରିଚ୍ଛେଦ

## ବିଲାତୀ ଲୁଗା ଦୋକାନରେ ପିକେଟିଙ୍ଗ୍

କଟକ ସହରରେ ପିକେଟିଙ୍ଗ୍ ଜାରୀ କରି କେଡ଼େ ବଡ଼ ଦାୟିତ୍ୱ ମୁଁ ମୁଣ୍ଡେଇଲି ତାହା ଭାବିବାକୁ ସମୟ ନାହିଁ। ଯେଉଁଦିନ ସଭାରେ ଏହି କଥା ଘୋଷଣା କଲି ତାର ପରଦିନ ଦୁଇଜଣ ସ୍ୱେଚ୍ଛାସେବକଙ୍କୁ ଧରି ମାରିବାଡ଼ି ପଟିରେ ଉପସ୍ଥିତ। କଟକ ମାରବାଡ଼ି ପଟିରେ ଅନେକଗୁଡ଼ିଏ ବିଲାତୀ ଲୁଗାର ଦୋକାନ ଅଛି। ଦୁଇଜଣ ସ୍ୱେଚ୍ଛାସେବକଙ୍କୁ ଧରି ପିକେଟିଙ୍ଗ୍ କରି ବିଲାତୀ ଲୁଗା ବେପାରୀମାନଙ୍କୁ ଆୟତ୍ତ କରିବା ଅସମ୍ଭବ ପରି ଜଣାଗଲା। ସାମୟିକ ଉତ୍ତେଜନାରେ ପ୍ରଭାବିତ ହୋଇ ସଭାରେ ଗୋଟାଏ ଘୋଷଣା କରିଦେଲି। କିନ୍ତୁ କର୍ତ୍ତବ୍ୟର ସମ୍ମୁଖୀନ ହେଲା ବେଳକୁ ମୋର ସାହସ କମିବାକୁ ଲାଗିଲା। ପ୍ରାଦେଶିକ କଂଗ୍ରେସ କମିଟିର ମତାମତ ନ ନେଇ ମୁଁ ନିଜ ଦାୟିତ୍ୱରେ ଏହା କରିଛି। ଏହା ଏକ ବିଷମ ଦାୟିତ୍ୱ। ଏଥିରେ କୃତକାର୍ଯ୍ୟ ନ ହେଲେ ମୋର ଅବସ୍ଥା କଣ ହେବ ତାହା କଳ୍ପନା କରି ହେଉ ନାହିଁ। ପୁଣି ଏହି କାର୍ଯ୍ୟକୁ ପୂରାପୂରି ନ ହେଲେ ମଧ୍ୟ ଆଂଶିକ ଭାବରେ ଏବଂ ତାହା ପୁଣି ଅଳ୍ପ ସମୟ ମଧ୍ୟରେ ଫଳବତୀ କରିବା ଦରକାର। ଯଦି ପିକେଟିଙ୍ଗ୍ ବହୁତ ସମୟ ଲାଗେ, ଫଳରେ ବିଲାତୀ ଲୁଗା ବେପାରୀମାନେ ଏପରି କ୍ଷୀଣ ଓ ଦୁର୍ବଳ ପିକେଟିଙ୍ଗ୍‌କୁ ଖାତିରି ନ କରି ମନଇଚ୍ଛା ପୂର୍ବବତ୍ ବିଲାତୀ ଲୁଗା ବେପାର ଅବାଧରେ କରନ୍ତି ତେବେ ଓଡ଼ିଶାରେ କଂଗ୍ରେସ ଅନୁଷ୍ଠାନର ଦୁର୍ବଳତା ପ୍ରକାଶ ପାଇବ। ଦେଶ ତଥା ଜାତିର ନିନ୍ଦା ଶୁଣିବାକୁ ପଡ଼ିବ। ପ୍ରାଦେଶିକ କଂଗ୍ରେସ କମିଟି ଏହି ଦୋଷପାଇଁ ମତେ କ୍ଷମା ଦେବା ସହଜ ହେବ ନାହିଁ। ଓଡ଼ିଶାର ସମସ୍ତ କଂଗ୍ରେସ କର୍ମୀମାନଙ୍କର

କ୍ରୋଧ ଓ ବିରକ୍ତି ମୋ ଉପରେ ଅଜାଡ଼ି ହୋଇ ପଡ଼ିବ। ଏ ସବୁ ସଂଭାଳି ପାରିବାର କ୍ଷମତା ଓ ଶକ୍ତି ମୋର କେତେଦୂର ମୁଁ ବୁଝି ପାରିଲି ନାହିଁ। ଏହିପରି ଚିନ୍ତାରେ ମୋର ଅସ୍ଥିରତାର ସୀମା ରହିଲା ନାହିଁ। ଦୁଇଟି ମାତ୍ର ସ୍ୱେଚ୍ଛାସେବକ ନେଇ କାର୍ଯ୍ୟ ଆରମ୍ଭ କଲି।

ସକାଳ ୭ଟାରୁ ଦିନ ୧୨ଟା ପର୍ଯ୍ୟନ୍ତ ଏବଂ ଉପର ବେଳା ୩ଟାରୁ ରାତ୍ର ୧୨ଟା ପର୍ଯ୍ୟନ୍ତ ମୁଁ ବାଲୁବଜାର ଛକରୁ ଚୌଧୁରୀ ବଜାର ଛକ ପର୍ଯ୍ୟନ୍ତ ବୁଲିବାକୁ ଆରମ୍ଭ କଲି। କେହି ଖଣ୍ଡିଏ ବିଲାତୀ ଲୁଗା କିଣି ନେଉଥିବାର ଦେଖିଲେ ତାହାକୁ ବୁଝାଇ ଉକ୍ତ ଲୁଗାଖଣ୍ଡି ଆଣି ସଡ଼କ ଉପରେ ପୋଡ଼ିଦିଏ। ଏହିପରି ଦିନରେ ପ୍ରାୟ ଶହେଖଣ୍ଡ ଲୁଗା ମୁଁ ପୋଡ଼େ। ଏହି ଲୁଗା ପୋଡ଼ା ବହୁତ ଦର୍ଶକଙ୍କୁ ମୋ ପଛରେ ଟାଣି ଆଣିଲା। ମୋ ହାବୁଡ଼ରେ ବିଲାତିଲୁଗା କିଣି ନେଉଥିବା କେହି ବ୍ୟକ୍ତି ପଡ଼ିଲେ ସେ ଆଉ ଖସିଯିବାର ବାଟ ରହିଲା ନାହିଁ। ବହୁତ ଲୋକ ଘେରିଯାଇ ମୁଁ ବୁଝାଇବାକୁ ଆରମ୍ଭ କରିବା ପୂର୍ବରୁ ସେମାନେ ନାନାପ୍ରକାର କଥା କହିବାକୁ ଆରମ୍ଭ କରି ଦିଅନ୍ତି। ବିଲାତୀ ଲୁଗା ନେଉଥିବା ବ୍ୟକ୍ତି ଲଜ୍ଜାରେ ଲୁଗା ପକାଇ ଦେଇ ପଳାଇଯାନ୍ତି। କେହି ନିହାତି ଅବୁଝା ହେଲେ ମୁଁ ତାହାଙ୍କୁ ନିଜ ହାତରୁ ପଇସା ଦେଇ ଲୁଗା ଖଣ୍ଡିଏ ନେଇ ଆସି ତାହାଙ୍କ ଆଗରେ ପୋଡ଼ିଦିଏ। ଏହାର ଫଳରେ ସେ ଆଉ ବିଲାତୀ ଲୁଗା ନ କିଣି ଦେଶୀ ଲୁଗା ଖଣ୍ଡିଏ କିଣିବାକୁ ବାଧ ହୁଅନ୍ତି।

ଏହି ପ୍ରକାର କାର୍ଯ୍ୟ କରିବାର ପାଞ୍ଚ ସାତ ଦିନ ଭିତରେ ବିଲାତୀ ଲୁଗା କିଣିବା ପାଇଁ କେହି ଭଦ୍ର ବ୍ୟକ୍ତି ଆଉ ବିଲାତୀ ଲୁଗା ଦୋକାନକୁ ଆସିବାକୁ ରାଜି ହେଲେ ନାହିଁ। କିନ୍ତୁ ବିଲାତୀ ଲୁଗାର ବେପାର ବନ୍ଦ ହେଲା ନାହିଁ। ଇତ୍ୟବସରରେ ପୋଲିସ ସାହେବ ମତେ ଡକାଇ ନେଇ ବଜାର ମଧ୍ୟରେ ଏପରି ଗୋଳମାଳ ନ କରିବା ପାଇଁ ଏକ ଧମକ ଦେଲେ। ''ମୁଁ ମୋର କର୍ତ୍ତବ୍ୟ କରୁଛି, ବଜାରରେ ଗୋଳମାଳ କରୁ ନାହିଁ'' ବୋଲି ପୋଲିସ ସାହେବଙ୍କ ଧମକର ଉତ୍ତର ଦେଇ ମାରବାଡ଼ି ପଟିରେ ଉପସ୍ଥିତ ହେଲି। ଦୁଇଟି ସ୍ୱେଚ୍ଛାସେବକଙ୍କୁ ଧରି ଦୁଇଟି ବିଲାତୀ ଲୁଗା ଦୋକାନ ଆଗରେ ପିକେଟିଙ୍ଗ ଜାରୀ କରାଇଲି। ମୁଁ ନିଜେ ଦୋକାନ ଦୋକାନ ବୁଲି, କେଉଁ ମାରବାଡ଼ିର ମିଜାଜ କିପରି ତାହା ଠଉରେଇବାରେ ଲାଗିଲି। ମୁଁ ଦେଖିଲି ଯେ, କେତୋଟି ମାରବାଡ଼ି ଭାଇ ମତେ ସେମାନଙ୍କ ଦୋକାନ ଆଗରେ ଦେଖିବାକୁ ପାଇଲେ ଭାରି ରାଗି ଗାଳି ଦିଅନ୍ତି। ଏହିମାନଙ୍କ ଗାଳି ହେଲା ମୋର ପ୍ରଧାନ ଅସ୍ତ୍ର। ଏହି ଗାଳି ଦେଉଥିବା ମାରବାଡ଼ିର ଦୋକାନ ଆଗରେ ମୁଁ ନିଜେ ଯାଇ ଠିଆ ହୁଏ ଏବଂ ବିଲାତୀ ଲୁଗା ବେପାର ବନ୍ଦ କରିବାକୁ ତାହାଙ୍କୁ ଉପଦେଶ ଦିଏ। ସେ ମୋତେ ଦେଖି ଏବଂ ମୋର କଥା ଶୁଣି ଭାରି ରାଗନ୍ତି ଏବଂ

ଅତି କୁଭାଷାରେ ଗାଳି ଦିଅନ୍ତି। ଏପରି ଗାଳି ଶୁଣି ଶହ ଶହ ଲୋକ ଜମା ହୋଇ ଯାନ୍ତି। ମୁଁ ଯେଉଁଠାରେ ଠିଆ ହୁଏ ସେଠାରେ ଶହ ଶହ ଲୋକର ଭିଡ଼ ହୋଇଯାଏ। ଏହି ଶହ ଶହ ଲୋକ ସମସ୍ତେ କ୍ଷଣକ ପାଇଁ ସ୍ୱେଚ୍ଛାସେବକ ପାଲଟି ଯାନ୍ତି। ଚୌଧୁରୀ ବଜାର ଛକରୁ ବାଲୁବଜାର ଛକ ଏପରି ଦୁଇ ଚାରି ଥର ବୁଲିଗଲା ପରେ ପ୍ରାୟ ଅଧିକାଂଶ ଦୋକାନ ଆଗରେ ଦଳକୁ ଦଳ ଲୋକ ଜମାଟ ବାନ୍ଧି, କାହାରିକୁ ବିଲାତୀ ଲୁଗା କିଣାଇ ଦିଅନ୍ତି ନାହିଁ। ଏହିପରି ଭାବରେ ପିକେଟିଙ୍ଗ୍ ସାରା ମାରବାଡ଼ି ପଟିରେ ଜାରୀ ହୋଇଥାଏ।

ଇଚ୍ଛାରାମ ନାମରେ ଗୋଟିଏ ବୁଢ଼ା ମାରବାଡ଼ି ଥାଏ। ସେ ଭାରି ଚିଡ଼ା ଲୋକ। ସେ ମତେ ଦେଖି ଭାରି ରାଗିଯାଏ ଏବଂ ଗାଳି ଦିଏ। ତାହା ଦୋକାନରୁ ପିକେଟିଙ୍ଗ ଆରମ୍ଭ ହେଲା। ସେ ବିଚରା ସହି ନ ପାରି ପୋଲିସରେ ଯାଇ ଇତଲା ଦେଲା। ପୋଲିସ ସାହେବ ଦେଓ୍ୱାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ର ଏତିକି ବାହାନା ଖୋଜୁଥିଲେ। କେହି ଆପତ୍ତି ନ କଲେ ସେ ବାଧା ଦେଇ ନ ପାରନ୍ତି। ମାରବାଡ଼ି ଇଚ୍ଛାରାମଠାରୁ ଇଝାର ନେଇ ସେ ତତ୍‌କ୍ଷଣାତ ଦୌଡ଼ି ଆସିଲେ। ସେ ଆସିଲା ବେଳକୁ ମୋ ପଛରେ ଶହ ଶହ ଲୋକ ଅଛନ୍ତି। ପିକେଟିଙ୍ଗ୍ ଧୂମ ଚାଲିଛି। ସେ ହଠାତ୍ ଆସି କହିଲେ, "Well, Mr. Misra, you must remember that you Swarj has not yet been established," ଅର୍ଥାତ୍, "ମିଶ୍ରେ, ତୁମ୍ଭେ ଜାଣିବା ଉଚିତ ଯେ ତୁମ୍ଭର ସ୍ୱରାଜ୍ୟ ଏ ପର୍ଯ୍ୟନ୍ତ ହୋଇ ନାହିଁ।" ଏହାର ଉତ୍ତରରେ ମୁଁ କହିଲି, "You must remember that we are fighting to establish our Swaraj." ଅର୍ଥାତ୍, "ତୁମ୍ଭେ ଜାଣିବା ଉଚିତ, ଆମ୍ଭେ ଆମ୍ଭର ସ୍ୱରାଜ୍ୟ ପ୍ରତିଷ୍ଠା କରିବା ପାଇଁ ଲଢ଼ାଇ କରୁଛୁ।" ମୋଠାରୁ ଏଭଳି ଉତ୍ତର ପାଇ ମତେ ଆରେଷ୍ଟ କରି ଜଣେ ପୋଲିସ ଜିମା କରି ଦେଇ ମହାପାତ୍ର ସାହେବ ଥାନାକୁ ଚାଲିଲେ। ତାହାଙ୍କ ପଛରେ ପୋଲିସ ମତେ ଥାନାକୁ ଧରିନେଲେ। ମୋ ପଛରେ ଶହ ଶହ ଲୋକ ଯାଇ ଥାନା ଆଗରେ ବିଲାତୀ ଲୁଗା ପୋଡ଼ିଲେ। ମୋର ଧରା ହେବାରେ କଟକରେ ଗୋଟାଏ ଚହଳ ପଡ଼ିଗଲା। ମୁଁ ଯାଇ ଥାନା ହାଜତ ଘରେ ତାଲା ପଡ଼ି ବନ୍ଦ ହେଲି। ସନ୍ଧ୍ୟା ୭ଟାରେ ମହାପାତ୍ର ସାହେବ ଥାନାରେ ହାଜର ହୋଇ ମତେ ହାଜତ ଘରୁ ତାଲା ଫିଟାଇ ପାଖକୁ ଡାକିଲେ। ସେ ମତେ କହିଲେ ଯେ, 'ବଜାର ଭିତରେ ଗୋଳମାଳ ଆଉ କରିବ ନାହିଁ' ବୋଲି ମୁଁ ଖଣ୍ଡିଏ ଚୁକ୍ତିପତ୍ର ଲେଖିଦେଲେ ସେ ମୋତେ ଛାଡ଼ିଦେବେ। ମୁଁ କହିଲି, "ମୁଁ ବଜାରରେ ଗୋଳମାଳ କରି ନାହିଁ କିମ୍ବା କରିବାର ମୋର ଅଭିପ୍ରାୟ ନାହିଁ। ମୁଁ ମୋର କର୍ତ୍ତବ୍ୟ କରୁଥିଲି। ଏଠାରୁ ଛାଡ଼ ପାଇଲେ ଏକ୍ଷଣି ଯାଇ ଯାହା କରୁଥିଲି ତାହା ପୁଣି କରିବି।" ମୋଠାରୁ ଏପରି ଉତ୍ତର

ପାଇ ମହାପାତ୍ର ସାହେବ ଭାରି ରାଗିଗଲେ। ସେ କହିଲେ "ଦଶପଲ୍ଲା ମେଳି ବେଳେ ତୁମ ନାମରେ ଓ୍ୱାରଣ୍ଟ ଥିଲା। ସେତେବେଳେ ତୁମେ ଜଣେ ଛାତ୍ର ଥିବାରୁ ମୁଁ ଦୟା କରି ଛାଡ଼ି ଦେଇଥିଲି। କିନ୍ତୁ ତୁମେ ଗୋଟାଏ ଏପରି ଗୋଖର ସାପ ବୋଲି ମୁଁ ଜାଣି ନଥିଲି।" ମୁଁ କହିଲି, "ଆପଣ ମୋତେ ଛାଡ଼ି ଦେଇ ଭୁଲ କରିଛନ୍ତି। ବର୍ତ୍ତମାନ ମୁଁ କିଏ ବୋଲି ଯଦି ଚିହ୍ନି ପାରିଲେଣି ତେବେ ପୂର୍ବପରି ଆଉ ଭୁଲ କାର୍ଯ୍ୟ କରନ୍ତୁ ନାହିଁ।" ମୋର ଏପରି ଉତ୍ତରରେ ମହାପାତ୍ର ସାହେବଙ୍କ ରାଗର ସୀମା ରହିଲା ନାହିଁ। ସେ ଆଉ କିଛି ନ କହି ହାଜତ ଘରେ ବନ୍ଦ କରିଦେବା ପାଇଁ ହୁକୁମ ଦେଲେ। ତହିଁ ଆରଦିନ କୋର୍ଟରେ ମତେ ହାଜର କରାଇ ଜେଲ ହାଜତକୁ ପଠାଇ ଦିଆ ହେଲା। ଏହାର ଦୁଇ ତିନି ଦିନ ପରେ ମୋର ବିଚାର ହେଲା। ଥଡ଼ାନି ସାହେବ, ଯେ କି ପୁରୀର ମାଜିଷ୍ଟ୍ରେଟ ଥିଲେ, ସେ ସେତେବେଳକୁ କଟକରେ ଏସ୍.ଡ଼ି.ଓ କାମ କରୁଥାନ୍ତି। ତାଙ୍କରି କୋର୍ଟରେ ମୋର ବିଚାର ହେଲା। ମୋ ନାମରେ ୪/୫ଟି ଦଫା ଖୋଜି ପୋଲିସ ମକଦ୍ଦମା ରୁଜୁ କଲେ। କୌଣସି ଦଫାରେ ପ୍ରମାଣ ଯୋଗାଇ ନ ପାରିବାରୁ ଥଡ଼ାନି ସାହେବ ମତେ ନିର୍ଦ୍ଦୋଷ ବୋଲି ଖଲାସ ଦେଲେ। କୋର୍ଟରୁ ବାହାରି ଜୁମା ମସ୍‌ଜିଦ୍‌ରେ ମୁଁ ସଭା କଲି। ଏହିଠାରେ ପିକେଟିଙ୍ଗ୍ ଜାରୀ କରିବାକୁ ଘୋଷଣା କରିଥିଲି। ବର୍ତ୍ତମାନ ଏହି ସଭାରେ କଟକରେ ପିକେଟିଙ୍ଗ୍ କୃତକାର୍ଯ୍ୟ ହେବାର ସଂବାଦ ମଧ୍ୟ ମତେ ଶୁଣାଇବାକୁ ପଡ଼ିଲା। ମୋର ଧରାହେବା ପରେ କଟକର ସବୁ ବିଲାତୀ ଲୁଗା ବେପାରୀମାନେ କଂଗ୍ରେସ ଅଫିସରେ ଚୁକ୍ତି କରି ଲେଖିଦେଲେ ଯେ, ୧୯୨୮ ମସିହା ଡିସେମ୍ବର ତା ୩୧ ରିଖ ପର୍ଯ୍ୟନ୍ତ କେହି ଆଉ ବିଲାତୀ ଲୁଗା ମଗାଇବେ ନାହିଁ।

କଟକର ବିଲାତୀ ଲୁଗା ବେପାରୀମାନେ ଏପରି ଚୁକ୍ତି ଲେଖିଦେଲେ ସତ୍ୟ କିନ୍ତୁ ଅନେକ ଚୋରା ଭାବରେ କଲିକତାରୁ ବିଲାତୀ ଲୁଗା ମଗାଇବାକୁ ଆରମ୍ଭ କଲେ। ଏହି ଚୋରାମାଲ ବନ୍ଦ କରିବା ପାଇଁ କିଛି ବ୍ୟବସ୍ଥା ନ କଲେ ସମସ୍ତ ପରିଶ୍ରମ ବୃଥା ହେଲା– ଏଥିପାଇଁ ଗୋଟିଏ କମିଟି ଗଢ଼ାହେଲା। ଏହି କମିଟିରେ କେତେ ଜଣ ମାରବାଡ଼ି ମଧ୍ୟ ରହିଲେ। ଚୋରା ମାଲ ମଗାଇବା ସଂବାଦ କମିଟି ଆଗରେ ପଡ଼ିଲା। କମିଟି ବିଚାର କରି ଜୋରିମାନା ବ୍ୟବସ୍ଥା କଲେ। ଜୋରିମାନା ଦେଇ ଦୋଷ ସ୍ୱୀକାର କରିବାକୁ ହେବ। ତାହା ନ କଲେ ଦୋକାନ ଆଗରେ ପିକେଟିଙ୍ଗ୍ ବସିଲା। ଏହିପରି ଚୋରାମାଲ୍ ମଗାଇବା କାରଣରୁ ଜନୈକ ମାରବାଡ଼ି ଭାଇଙ୍କୁ ଥରେ ପାଞ୍ଚଶହ ଟଙ୍କା ଜୋରିମାନା ହେଲା। ଏହି ଜୋରିମାନା ଛାଡ଼ ପାଇଁ ସେ କଟକ ସ୍ୱରାଜ୍ୟ ଆଶ୍ରମରେ ଆସି ବହୁତ ଆପତ୍ତି କଲେ। ମୁଁ ଯେଉଁଆଡ଼କୁ ଗଲି ସିଆଡ଼େ ମୋ ପଛରେ ଗୋଡ଼େଇଲେ। ତାଙ୍କର କରୁଣଜନକ ଆପତ୍ତିରେ

ମୋର ମଧ୍ୟ ଟିକିଏ ଦୟା ଆସିଲା। ସେ ଜଣେ ବଡ଼ ବ୍ୟବସାୟୀ। ଏଥର ହେଉଛି, ତାହାଙ୍କର ତୃତୀୟ ଥରକୁ ଚୋରା ମାଲ ମଗାଇବା। ସୁତରାଂ କମିଟି ତାହାଙ୍କୁ କୌଣସିମତେ ଛାଡ଼ ଦେବାକୁ ନାରାଜ। କମିଟିରେ ତାହାଙ୍କୁ ଶାସ୍ତିର ପୁନର୍ବିଚାର ପଡ଼ିଲା ବେଳେ ଅନ୍ୟାନ୍ୟ ମାରବାଡ଼ି ଭାଇମାନେ ଆପତ୍ତି ଉଠାଇଲେ। ସୁତରାଂ ସେ କୌଣସି ଉପାୟରେ ଛାଡ଼ ପାଇ ପାରିଲେ ନାହିଁ। ଏଣେ ପିକେଟିଙ୍ଗ୍ ଜାରୀ ହେଲା। ବାଧ ହୋଇ ଉକ୍ତ ମାରବାଡ଼ି ଭାଇ ପାଞ୍ଚଶହ ଟଙ୍କା ଜୋରିମାନା ଦେଲେ। ଏହି ଘଟଣା ପରେ ସମସ୍ତଙ୍କର ଟିକିଏ ଡର ହୋଇଗଲା। କଂଗ୍ରେସର କିଛି ବଳ ଅଛି ବୋଲି ସେମାନେ ଉପଲବ୍ଧି କଲେ। ଇଂରେଜ ସରକାର ତାହାଙ୍କୁ ପିକେଟିଙ୍ଗ୍ ଦାଉରୁ ରକ୍ଷା କରି ପାରିବେ ନାହିଁ ବୋଲି ସେମାନେ ଭଲ କରି ବୁଝିଲେ। ଏହି ଘଟଣା ପରେ ଅନେକ ମାରବାଡ଼ି ଭାଇ ବାଟରେ ଘାଟରେ ଦେଖା ହେଲେ କହନ୍ତି—

"ବାବୁ, ସ୍ୱରାଜ୍ୟ ହୋଯାଏଗା, ଅଲବତ୍ ହୋଗା।"

ଏହିପରି ଭାବରେ କଟକରେ ପିକେଟିଙ୍ଗ୍ ଜାରୀ ହୋଇ ତାହା କାର୍ଯ୍ୟକାରୀ ହେଲା। କଟକକୁ ଅନୁକରଣ କରି ପୁରୀ, ବାଲେଶ୍ୱର ଜିଲ୍ଲାରେ ମଧ୍ୟ ବିଲାତୀ ଲୁଗା ଦୋକାନ ଆଗରେ ପିକେଟିଙ୍ଗ୍ ବସିଲା। ଶେଷରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି "ମୌନଂ ସମ୍ମତି ଲକ୍ଷଣଂ" ନୀତି ଗ୍ରହଣ କଲେ। ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାରେ ଯେ କେତୋଟି କର୍ମୀ ମୁଖ୍ୟତଃ କାର୍ଯ୍ୟ କରୁଥାନ୍ତି କେହି ହେଲେ ମୁହୂର୍ତ୍ତକ ପାଇଁ ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ଦେଇ ନାହାନ୍ତି। ବର୍ଷକ ଭିତରେ ସ୍ୱରାଜ୍ୟ ହେବ କି ନାହିଁ ଏପରି ସନ୍ଦେହ ସୂଚକ କଥା ପଦେ ଶୁଣିବାକୁ କାନକୁ ପ୍ରୀତିକର ବୋଧ ହୁଏ ନାହିଁ। ଅନ୍ୟାନ୍ୟ ପ୍ରଦେଶର ତୁଳନାରେ ଓଡ଼ିଶା ପଛରେ ପଡ଼ି ନ ରହୁ ଏହିପରି ଭାବ ସବୁବେଳେ ଆମ୍ଭମାନଙ୍କ ମନକୁ ପ୍ରଭାବିତ କରୁଥାଏ। ଏହି ଭାବ ମଧ୍ୟ ଆମ୍ଭର କାର୍ଯ୍ୟକୁ ଆଗେଇ ଦିଏ। କିନ୍ତୁ ଯେତେ ଆଗେଇଲେ ମଧ୍ୟ ମନ କାହିଁରେ ମାନେ ନାହିଁ। ଆହୁରି ଆଗକୁ ଯିବାକୁ ମନ ଦୌଡ଼େ। ସକଳ ବାଧା ବିଘ୍ନକୁ ଠେଲି ଦେଇ ସମସ୍ତଙ୍କ ଆଗରେ ଯାଇ ଠିଆ ହେବାକୁ ମନ ଉଦ୍‌ବିଗ୍ନ ହୁଏ। ଏଥିପାଇଁ ମତେ ସମସ୍ତେ କହନ୍ତି, "Vislent man,' କିନ୍ତୁ ମୋର ଆଭ୍ୟନ୍ତରିକ ଅବସ୍ଥା କେହି ଜାଣନ୍ତି ନାହିଁ। ଯେଉଁସବୁ ଅବସ୍ଥା ଭିତର ଦେଇ ମୋର ଜୀବନ ଗତି କରିଛି, ସେପରି ଅବସ୍ଥାରେ ପଡ଼ିଲେ ଅନ୍ୟର ଅବସ୍ଥା କଣ ହୁଅନ୍ତା ମୁଁ କହିପାରୁ ନାହିଁ। ଓଡ଼ିଶାକୁ ଆସିଲା ଦିନୁ ମୁଁ ମୋର କାର୍ଯ୍ୟରେ ସ୍ନେହ ସହାନୁଭୂତି କାହାରିଠାରୁ ପାଇ ନାହିଁ। ବରଂ ମୁଁ ଅନେକ ସ୍ଥଳରେ ମୋର କାର୍ଯ୍ୟର ସମାଲୋଚନା ଶୁଣିବାକୁ ପାଉଛି।

ଓଡ଼ିଶାର ରାଜନୈତିକ କ୍ଷେତ୍ରରେ ପରସ୍ପର ପ୍ରତି ସଦ୍‌ଭାବ ଜାତ ହୋଇ ନାହିଁ। ପ୍ରାଦେଶିକ ଓ ଜିଲ୍ଲା କଂଗ୍ରେସ କମିଟିର ବୈଠକରେ ଯୋଗ ଦେବା ପାଇଁ

ବିଭିନ୍ନ ଅଞ୍ଚଳରୁ କର୍ମୀମାନେ ଏକତ୍ରିତ ହୁଅନ୍ତି। ଅତି ଅଳ୍ପ ସମୟ ପାଇଁ କର୍ମୀମାନଙ୍କର ଦେଖା ସାକ୍ଷାତ ହୁଏ। କର୍ମୀମାନେ ଏହିପରି ଏକାଠି ହେଲା ବେଳେ ସେମାନେ ପରସ୍ପରର ପୂର୍ବ ସ୍ନେହୀ ଓ ସାଥୀମାନଙ୍କ ସହିତ ମିଳା ମିଶା କରନ୍ତି। ମୋର ସେହି ସାଥୀ ହୋଇ କେହି ନାହାନ୍ତି। କମିଟିମାନଙ୍କ ବୈଠକରେ ଯାହା କିଛି ଆଲୋଚନା ହୁଏ, ତାହାସବୁ ଅନେକ ସମୟରେ ଦଳସୃଷ୍ଟି ମତଲବରେ ହେଉଥାଏ। ଦଳଗତ ରାଜନୀତି (Party politics ) ନ ଥାଇ ଆଲୋଚନା ଦଳଗତ ଭାବ ଧାରଣ କରେ। The healthy party is yet a far distant dream in our political life. There was individualistic political ambition, the, manifestation of which could clearly be seen in every meeting of the District and Provincial Congress Committee. ଏହି ଦୃଶ୍ୟ ଦେଖି ମୁଁ ବେଳେ ବେଳେ ବଡ଼ ମର୍ମାହତ ହୋଇଛି। କିନ୍ତୁ ସଦ୍‌ଭାବ କିମ୍ବା ଅନାଦର ଭାବ କୌଣସି କଥା ପ୍ରତି ଦୃଷ୍ଟି ନ ଦେଇ ମୁଁ ନିଜକୁ କର୍ମସ୍ରୋତରେ ଭସାଇ ଦେଇଛି।

Politics is a game, ଅର୍ଥାତ୍, ରାଜନୈତିକ କାର୍ଯ୍ୟ ଗୋଟାଏ ଜୁଆଖେଳ କିମ୍ବା ଜୀବନର ଗୋଟାଏ ବିଳାସ ବୋଲି କେହି କେହି ମନେ କରନ୍ତି। ସେପରି ଦୃଷ୍ଟିରେ ମୁଁ ରାଜନୈତିକ ଜୀବନ ଆରମ୍ଭ କରି ନାହିଁ, କିମ୍ବା ସେପରି ଭାବ ମଧ୍ୟ ମୋ ମନରେ ମୁହୂର୍ତ୍ତକ ପାଇଁ ସ୍ଥାନ ପାଇ ନାହିଁ। ଦଳ ସୃଷ୍ଟି କରି ଅନ୍ୟକୁ ଦାବି ଦେଇ ନିଜେ ବଡ଼ ହେବାର ଆକାଂକ୍ଷା ମଧ୍ୟ ମୋର ନାହିଁ କିମ୍ବା ସେପରି ଭାବ ମନକୁ ସ୍ପର୍ଶ କରି ନାହିଁ। ତେବେ ମୁଁ ଯେଉଁ କାର୍ଯ୍ୟ କରୁଛି, ତାହା ଲୋକ ଆଦରଣୀୟ ହେଉଛି କି ନା ଏହା ଜାଣିବାକୁ ମୋର ମନରେ ଆଗ୍ରହ ଜାତ ହୁଏ। ଏପରି ଭାବ ଜାତ ହେବା ମନୁଷ୍ୟର ପ୍ରକୃତିଗତ ଲକ୍ଷଣ। ମନୁଷ୍ୟ ଯେଉଁ କାର୍ଯ୍ୟ କରେ ତହିଁର ପ୍ରଶଂସା ଲୋକମୁଖରୁ ଶୁଣିବାକୁ ଯେ କେହି ମନୁଷ୍ୟକୁ ସୁଖ ଲାଗେ। ଲୋକ ସାଧାରଣଙ୍କ ଭଲ ମନ୍ଦ ବାଣୀ ପ୍ରତି ଭ୍ରୂକ୍ଷେପ ନ କରି କେବଳ କର୍ତ୍ତବ୍ୟ ଜ୍ଞାନରେ କାର୍ଯ୍ୟ କରିବା ଲୋକ ବଡ଼ ବିରଳ ଦେଖାଯାନ୍ତି। କେହି ବ୍ୟକ୍ତି ନିଜକୃତ କର୍ମର କ୍ରୁର ସମାଲୋଚନା ଶୁଣିବାକୁ ଭଲପାଏ ନାହିଁ। ବ୍ୟକ୍ତି ବିଶେଷରେ କର୍ମୀମାନଙ୍କର କର୍ମ ଓ ଚିନ୍ତାଧାରା ପ୍ରତି ଲୋକ ଦୃଷ୍ଟି ଆକର୍ଷଣ କରିବା ଦେଶ ସେବା କାର୍ଯ୍ୟରେ ଗୋଟିଏ କୌଶଳ। ଏହି କୌଶଳ ପ୍ରୟୋଗ କରି କର୍ମୀର ଉତ୍ସାହ ଓ ବଳ ବଢ଼ାଇ ଦିଆଯାଏ। ନୂତନ କର୍ମୀ କର୍ମକ୍ଷେତ୍ରକୁ ଟାଣି ଆଣିବାକୁ ହୁଏ। କିନ୍ତୁ ଓଡ଼ିଶାରେ ଏ ସବୁର ଚିହ୍ନ ନାହିଁ। ସମଷ୍ଟିଗତ ଜୀବନ ଫୁଟି ଉଠିନାହିଁ। କାହାର କାହାରି ପ୍ରତି ସହାନୁଭୂତି ନାହିଁ। ସାନଠାରୁ ବଡ଼ ପର୍ଯ୍ୟନ୍ତ ସମସ୍ତେ ନିଜ ନିଜକୁ ଦେଶରେ ଜଣେ ପ୍ରଧାନ ବ୍ୟକ୍ତି ବୋଲି ଭାବୁଛନ୍ତି। କଂଗ୍ରେସର ଆହ୍ୱାନରେ

ଯେ ଓକିଲାତି ଛାଡ଼ିଲେ, ସେ ହେଲେ ଜଣେ ନେତା, ଯେ ଚାକିରି ଛାଡ଼ିଲେ ସେ ବୋଲାଇଲେ ନେତା। ସ୍କୁଲ, କଲେଜ ଯେଉଁମାନେ ଛାଡ଼ୁଥିଲେ ସେମାନେ ମଧ୍ୟ ନିଜ ନିଜକୁ ନେତା ବୋଲି ଯଦି ଭାବନ୍ତି ତେବେ ଦୋଷ ଅବା କଣ ଅଛି। ସଂକ୍ଷେପରେ ଜଣକ କଥାରେ ପାଞ୍ଚଜଣ ମାନି କାର୍ଯ୍ୟ କରିବା ବଡ଼ କଠିନ ଜଣାଗଲା। ଏପରି ଅବସ୍ଥାରେ ନିଜେ ଦାୟିତ୍ୱ ମୁଣ୍ଡାଇ ଯେତିକି କାର୍ଯ୍ୟ କରାଯାଇ ପାରେ ଅବା କରିନେବା ସମ୍ଭବପର, ତାହା ମୁଁ ସବୁବେଳେ କରିଛି।

ରାଜନୈତିକ କ୍ଷେତ୍ରରେ ସାଙ୍ଗ ସାଥୀ ନ ପାଇଲେ କର୍ମ କରିବା ଅସମ୍ଭବ ନ ହେଲେ ମଧ୍ୟ ଅତୀବ ଦୁଃସାଧ୍ୟ ବୋଲି ମୁଁ କହି ପାରେ। କିନ୍ତୁ ସମ୍ଭବ ଅସମ୍ଭବର ପ୍ରଶ୍ନକୁ ମନରେ ମୁଁ ସ୍ଥାନ ଦେଇ ନାହିଁ। ଏକ ବର୍ଷ ଭିତରେ ସ୍ୱରାଜ ହେବ ବୋଲି ମୋର ଦୃଢ଼ ବିଶ୍ୱାସ ଥାଏ। ସେହି ବିଶ୍ୱାସରେ ମୁଁ କାର୍ଯ୍ୟ କରୁଥାଏ। ବୁଝି ବିଚାରି ପାଞ୍ଚଜଣଙ୍କୁ ସାଥୀ କରି କାର୍ଯ୍ୟାରମ୍ଭ କରିବା ଭଳି ଅନୁକୂଳ ପରିସ୍ଥିତି ମୁଁ ପାଇ ନାହିଁ। କେଉଁ କାର୍ଯ୍ୟକୁ କିପରି କଲେ ବର୍ଷକ ଭିତରେ ସ୍ୱରାଜ ହେବ, କେବଳ ଏତିକି ମୁଁ ନିଜେ ନିଜେ ଭାବିନିଏ। ମତେ ଯେଉଁ ବାଟେ ଯେପରି ଦେଖାଯାଏ ମୁଁ ସେପରି କରେ। ପିକେଟିଙ୍ଗ୍ କାର୍ଯ୍ୟକୁ ମୁଁ ନିଜ ଦାୟିତ୍ୱରେ ଆରମ୍ଭ କଲା ପରି ଅନେକ କାର୍ଯ୍ୟ ସେପରି କରିଛି।

ଇତି ମଧ୍ୟରେ ଅସହଯୋଗ ଲଢ଼ାଇର ଶେଷ ଅସ୍ତ୍ର ପ୍ରୟୋଗ କରିବାର ସମୟ ଉପସ୍ଥିତ ହେଲା, ଅର୍ଥାତ୍ ଆଇନ୍ ଅମାନ୍ୟ କରିବାକୁ ହେବ। ଆଇନ ଅମାନ୍ୟ କରି ଖଜଣା ଟିକସ ସରକାରଙ୍କ ନିକଟରେ ଦାଖଲ ନ କରିବା ହେଉଛି ଅସହଯୋଗର ଅମୋଘ ଅସ୍ତ୍ର। ସରକାରଙ୍କ ସ୍କୁଲ କଲେଜରେ ପିଲାଙ୍କୁ ପାଠ ପଢ଼ାଇବା ନାହିଁ, କଚେରୀ ଅଦାଲତରେ ମକଦ୍ଦମା କରିବା ନାହିଁ, ସରକାରଙ୍କ ଦ୍ୱାରେ ଚାକିରି କରିବା ନାହିଁ, ସରକାରଙ୍କୁ ଖଜଣା ଟିକସ ଆଦି କିଛି ଦେବା ନାହିଁ, ଆମ କଥା ଆମେ ନିଜେ ବୁଝିବା, କଂଗ୍ରେସର ଆଦେଶକୁ ଶିରୋଧାର୍ଯ୍ୟ କରିବା—ଅର୍ଥ ଆମ୍ଭ ସ୍ୱରାଜ୍ୟ ମନକୁ ଗଢ଼ି ହୋଇ ଉଠିବ। ଏଥିପାଇଁ ମହାତ୍ମାଗାନ୍ଧୀ କହନ୍ତି, ଗଛରୁ ପାଚିଲାଫଳ ଝଡ଼ିଲା ପରି, ଦେଶର ଶାସନ ଶକ୍ତି ଜନ ସାଧାରଣଙ୍କ ହାତକୁ ଆପେ ଆପେ ଖସି ଆସିବ। କେବଳ ଅହିଂସାକୁ ମୂଳମନ୍ତ୍ର କରି ଧରି ଅସହଯୋଗ ଲଢ଼ାଇର ସମସ୍ତ କାର୍ଯ୍ୟକ୍ରମକୁ ସମସ୍ତେ ପ୍ରତିପାଳନ କଲେ ହେଲା। ଏହି ଉଦ୍ଦେଶ୍ୟରେ ଏପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ଲୋକ ଶିକ୍ଷାପାଇଁ କରା ହୋଇଅଛି। ଏହା ଗୋଟିଏ ନୂଆ କଥା। ବିନା ରକ୍ତପାତରେ ଦେଶର ଶାସନ କ୍ଷମତାକୁ ଅନ୍ୟଠାରୁ ଛଡ଼ାଇ ଆଣିବାର ଦୃଷ୍ଟାନ୍ତ ଦୁନିଆରେ ବିରଳ। ଭାରତରେ ଏହା କିପରି ସମ୍ଭବ ହୋଇପାରେ? ଏହି ହେଉଛି ଜନ ସାଧାରଣଙ୍କର ବିଶ୍ୱାସ। ସୁତରାଂ ଏହି ବିଶ୍ୱାସକୁ ଭାଙ୍ଗି ଜନ ସାଧାରଣଙ୍କର କଳ୍ପନାକୁ ବଦଳାଇ ନ ପାରିଲେ ଅସହଯୋଗ ଲକ୍ଷ୍ୟ କଦାପି ସାଧିତ ହେବ ନାହିଁ।

ଏପର୍ଯ୍ୟନ୍ତ ଯାହା କିଛି କରାଯାଇଛି ସବୁ ଲୋକ ସାଧାରଣଙ୍କ ମନକୁ ବଦଳାଇବା ପାଇଁ କରା ହୋଇଅଛି। ବେଳେ ବେଳେ ସ୍ଥାନ ବିଶେଷର ଜନ ସାଧାରଣ ଅହିଂସାକୁ ପାଳନ କରି ନ ପାରିବା ଦୋଷରୁ ମହାତ୍ମାଗାନ୍ଧୀ ଏହି ଆଇନ୍ ଅମାନ୍ୟ କାର୍ଯ୍ୟକ୍ରମକୁ ପଛକୁ ହଟାଇ ଦେଉଛନ୍ତି।

ଗାନ୍ଧୀ ଓ ରିଡ଼ିଙ୍ଗଙ୍କ ଚୁକ୍ତି ବଳରୁ ସରକାରୀ ପକ୍ଷରୁ ଏ ପର୍ଯ୍ୟନ୍ତ କଂଗ୍ରେସର ଅସହଯୋଗ ଆନ୍ଦୋଳନରେ କୌଣସି ପ୍ରକାର ପ୍ରବଳ ବାଧା ଦିଆଯାଇ ନାହିଁ। ସରକାରୀ କର୍ମଚାରୀମାନଙ୍କୁ ସରକାରୀ ଚାକିରି ତ୍ୟାଗ କରିବା ପାଇଁ ଅସହଯୋଗ କାର୍ଯ୍ୟକ୍ରମ ଜାରୀ ହେଲା ବେଳେ ସରକାରୀ ବାଧା ଦେଖା ଦେଇଛି। କରାଚୀଠାରେ ଖିଲାପତ ସମ୍ମିଳନୀରେ ମଉଲାନା ସୌକତ ଆଲ୍ଲି ଓ ମହମ୍ମଦ ଆଲ୍ଲି ପ୍ରଭୃତି ଯେତେବେଳେ ଘୋଷଣା କଲେ, 'ଇଂରେଜ ସରକାରଙ୍କ ସୈନ୍ୟ ବିଭାଗରେ ଚାକିରି କରିବା ମୁସଲମାନ ପକ୍ଷରେ ହାରାମୀ କାର୍ଯ୍ୟ' ସେତେବେଳେ ସରକାରୀ ବାଧା ପଡ଼ିଛି। ଆଲ୍ଲିଭାଇ ପ୍ରଭୃତି ସେହି ଦୋଷରେ ଧରା ହୋଇ ଜେଲ ଦଣ୍ଡ ପାଇଛନ୍ତି। ସରକାରଙ୍କ ଏହି ବାଧାର ମୁକାବିଲା କରିବା ପାଇଁ ମହାତ୍ମାଗାନ୍ଧୀ ପ୍ରମୁଖ ଦେଶର ପ୍ରତ୍ୟେକ ମୁଖ୍ୟ ନେତା ଦସ୍ତଖତ କରି କରାଚୀରେ ଘୋଷିତ ହୋଇଥିବା ଉକ୍ତ ଘୋଷଣାକୁ ଦେଶରେ ପ୍ରଚାର କରିଛନ୍ତି। ଏହି ପ୍ରକାର ଆଇନ ଅମାନ୍ୟ କାର୍ଯ୍ୟ ଜାରୀ ହେଲାଣି ବୋଲି କୁହାଯାଇ ପାରେ। ନିଖିଳ ଭାରତ କଂଗ୍ରେସ କମିଟି ପ୍ରତ୍ୟେକ ପ୍ରଦେଶକୁ ସ୍ୱତନ୍ତ୍ରତା ଦେଇଛନ୍ତି ଯେ, ପ୍ରତ୍ୟେକ ପ୍ରଦେଶ ନିଜର ଅବସ୍ଥା ବିଚାର କରି ବ୍ୟକ୍ତିଗତ ଆଇନ ଅମାନ୍ୟ ଜାରୀ କରି ପାରନ୍ତି। କିନ୍ତୁ ଖଜଣା ପରି ସମୂହ ଆଇନ ଅମାନ୍ୟ ପାଇଁ ନିଖିଳ ଭାରତ କଂଗ୍ରେସ କମିଟିର ଅନୁମତି ଲୋଡ଼ା। ତେବେ ପ୍ରଦେଶ ସବୁ ସମୂହ ଆଇନ ଅମାନ୍ୟ ଜାରୀ କରିବା ପାଇଁ ସ୍ଥାନ ବିଶେଷ ପ୍ରସ୍ତୁତ କରିପାରନ୍ତି।

ଏହି ଆଇନ ଅମାନ୍ୟ କାର୍ଯ୍ୟକ୍ରମକୁ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ବିଚାର କଲେ। ଅନ୍ୟାନ୍ୟ ପ୍ରଦେଶରେ ସମୂହ ଆଇନ ଅମାନ୍ୟ ଜାରୀ କରିବାପାଇଁ ସ୍ଥାନ ବାଛି ସାରିଲେଣି। ଓଡ଼ିଶା କଣ ପଛରେ ପଡ଼ି ରହିବ। ଏହା ଆମ୍ଭମାନଙ୍କୁ ଭଲ ଲାଗୁ ନ ଥାଏ। ଆମ୍ଭର ଅବସ୍ଥାପ୍ରତି ଦୃଷ୍ଟି ଦେଇ ବିଚାର କଲାବେଳକୁ ଓଡ଼ିଶାରେ ବ୍ୟକ୍ତି ବିଶେଷକୁ ଆଇନ ଅମାନ୍ୟ କରିବାପାଇଁ ମଧ୍ୟ ପ୍ରାଦେଶିକ କଂଗ୍ରେସ କମିଟି ସ୍ୱାଧୀନତା ଦେଲେ ନାହିଁ। କାହାରି ଉପରେ ୧୪୪ ମୁଖ ବନ୍ଦ ଆଇନ ଜାରୀ ହେଲେ ତାହା ମଧ୍ୟ କେହି ଅମାନ୍ୟ କରି ପାରିବେ ନାହିଁ। ତଥାପି ସମୂହ ଭାବରେ ଆଇନ ଅମାନ୍ୟ କଥା ବିଚାର ପଡ଼ିଲା। ଓଡ଼ିଶାରେ ବାଙ୍କୀ ଓ ଖୋରଧାକୁ ଛାଡ଼ିଦେଲେ ଖଜଣା ଆଦାୟ କରିବାରେ ସରକାର ପ୍ରତ୍ୟକ୍ଷ ଭାବରେ କେଉଁଠାରେ ଦାୟୀ ନୁହନ୍ତି। ଖଜଣା ବନ୍ଦ କରିବା ପାଇଁ ଓଡ଼ିଶାରେ ଅନୁକୂଳ ପରିସ୍ଥିତି ନାହିଁ। ତଥାପି ଏହି କାର୍ଯ୍ୟ ଅସମ୍ଭବ ବୋଲି ଛାଡ଼ି ଦିଆଯାଇ ନାହିଁ। ବାଲେଶ୍ୱର ଓ

କଟକ ଜିଲ୍ଲାର କର୍ମୀମାନଙ୍କ ମଧ୍ୟରେ ଏଥିପାଇଁ ପ୍ରତିଦ୍ୱନ୍ଦ୍ୱିତା ଭାବ ଦେଖାଯାଇଛି। ଅନୁମତି ପାଇଲେ ପ୍ରତ୍ୟେକ ଜିଲ୍ଲାର କର୍ମୀମାନେ ଖଜଣା ବନ୍ଦ ପାଇଁ ସ୍ଥାନ ବିଶେଷ ପ୍ରସ୍ତୁତ କରିପାରିବେ ବୋଲି ମତାମତ ପ୍ରକାଶ କରିଥିଲେ। ବିଜୁଳିର ଝଟକ ପରି ସମସ୍ତ ଭାରତର ବାୟୁମଣ୍ଡଳରେ ରାଜନୈତିକ ଜୀବନ ଝଟକି ଉଠୁଛି। କେତେବେଳେ କେଉଁଠାରେ କଣ ଘଟିବ କହି ହେଉ ନାହିଁ। ସ୍ୱରାଜ୍ୟ ନ ହେବାର ଏ ଭାବନା ଆଉ ମନରେ ନାହିଁ। ଏପରି ସମୟରେ ପୁରୀ ଜିଲ୍ଲାର ଜଣେକ ପୁଲିସ କର୍ମଚାରୀକୁ ସରକାରୀ ଚାକିରି ତ୍ୟାଗ କରିବାକୁ ଆହ୍ୱାନ କରି ସର୍ବ ସାଧାରଣରେ ସମାଲୋଚନା କରିଥିବାରୁ ସେ ମୋ ନାମରେ ୫୦୪ ଦଫାରେ ମକଦ୍ଦମା ଦାୟର କଲେ। ସେଥିରେ ପୁରୀରେ ମତେ ଏକମାସ ଜେଲ ଦଣ୍ଡ ହେଲା। ଜେଲରୁ ବାହାରିବା ପୂର୍ବରୁ ୧୦୮ ଦଫାରେ ରାଜଦ୍ରୋହ ସୂଚକ ବକ୍ତୃତା ପାଇଁ ମୋର ବିଚାର ହୋଇ ପୁଣି ମତେ ଏକବର୍ଷ କଠିନ ସଶ୍ରମ ଜେଲଦଣ୍ଡ ମିଳିଲା। ପୁରୀରୁ କଟକ ହୋଇ ମୁଁ ଭାଗଲପୁର ଜେଲକୁ ଚଲାଣ ହୋଇଗଲି। ଏଥିପାଇଁ ଓଡ଼ିଶାର ରାଜନୈତିକ ଜୀବନରୁ ମତେ କିଛି ସମୟ ସକାଶେ ଅନ୍ତର ହେବାକୁ ପଡ଼ିଲା।

# ଷଷ୍ଠ ପରିଚ୍ଛେଦ

## ଜେଲଦଣ୍ଡ ଭୋଗ

ଭାଗଲପୁର ଜେଲରେ ମୋ ପୂର୍ବରୁ ଶ୍ରୀମାନ୍ ରାଜକୃଷ୍ଣ ବୋଷ ଥାନ୍ତି। ସେ ଓଡ଼ିଶାର ପ୍ରଥମ ରାଜନୈତିକ ବନ୍ଦୀ। ଅସହଯୋଗ ଆନ୍ଦୋଳନ ଆରମ୍ଭର କେତେକ ମାସ ମଧ୍ୟରେ ସେ ୧୦୮ ଦଫାରେ ଧରାହୋଇ ଜେଲ ପାଇଛନ୍ତି। ତାହାଙ୍କ ସାଥିକୁ ବାବାଜୀ ରାମଦାସ ମଧ୍ୟ ସେଠାରେ ଥାନ୍ତି। ମୁଁ ଯିବାରୁ ଆମ୍ଭେ ଓଡ଼ିଶାରୁ ତିନିଜଣ ହେଲୁ। ମୁଁ ଭାଗଲପୁର ଯିବା ପୂର୍ବରୁ ଅହମଦାବାଦ କଂଗ୍ରେସର ବୈଠକ ହୋଇ ଯାଇଛି। ମହାତ୍ମାଗାନ୍ଧୀ ସମସ୍ତ କଂଗ୍ରେସର ଡିକ୍ଟେଟର ହୋଇଛନ୍ତି। ସେ ବାର୍ଦୋଲିରେ ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ କରିବାପାଇଁ ସ୍ଥିର କରିଛନ୍ତି। ବାର୍ଦୋଲିରେ ଖଜଣା ବନ୍ଦ ସତ୍ୟାଗ୍ରହ ଆରମ୍ଭ କରିବା ପୂର୍ବରୁ ସେ ବଡ଼ଲାଟ ଲର୍ଡ଼ ରିଡ଼ିଙ୍ଗଙ୍କ ଶେଷ ଜବାବ ଦେଇ ଦେଇଛନ୍ତି। ବାର୍ଦୋଲିରେ ସତ୍ୟାଗ୍ରହ ଆରମ୍ଭ ହେଲେ ସରକାରଙ୍କ ଦମନ ନୀତି କଠୋର ହୋଇ ଉଠିବ। ଲୋକଙ୍କ ଦୁଃଖ ଦୁର୍ଦ୍ଦଶାର ସୀମା ରହିବ ନାହିଁ। ଏହି ଆଶଙ୍କାରେ ବମ୍ବେଇଠାରେ ପଣ୍ଡିତ ମାଲବ୍ୟଜୀ ଏକ ସମ୍ମିଳନୀ ଡକାଇ କଂଗ୍ରେସ ଓ ସରକାରଙ୍କ ମଧ୍ୟରେ ସମାଧାନ କରିବାକୁ ଚେଷ୍ଟା କରିଛନ୍ତି, କିନ୍ତୁ କୃତକାର୍ଯ୍ୟ ହୋଇ ନାହାନ୍ତି। ଜେଲରେ ଥିଲେ ଦେଶର ପରିସ୍ଥିତି ବିଷୟରେ କୌଣସି

ସମ୍ବାଦ ମଧ ମତେ ଅଛପା ରହୁ ନାହିଁ। ଭାଗଲପୁର ଜେଲରେ ବାହାରର ସମ୍ବାଦ ଜାଣିବା ପାଇଁ ଆହୁରି ସୁବିଧା ଅଛି। ସେଠାରେ ବିହାର ପ୍ରଦେଶରୁ ଅନେକ ନେତୃସ୍ଥାନୀୟ ବ୍ୟକ୍ତି ଅଛନ୍ତି। ସେତେବେଳେକୁ ରାଜନୈତିକ ବନ୍ଦୀମାନଙ୍କ ପାଇଁ ଶ୍ରେଣୀ ବିଭାଗ କରାଯାଇ ନାହିଁ। ଆମ୍ଭେମାନେ ସମସ୍ତେ ଗୋଟିଏ ଶ୍ରେଣୀଭୁକ୍ତ। ସଶ୍ରମ କାରାବାସ ହେଲେ ମଧ ଆମ୍ଭମାନଙ୍କୁ ଜେଲ ପୋଷାକ ପିନ୍ଧିବାକୁ ହୋଇ ନ ଥାଏ। ନିଜର ପୋଷାକ ପରିଚ୍ଛଦ ଓ ବିଛଣା ଆମ୍ଭେମାନେ ବ୍ୟବହାର କରୁଥାଉଁ। ନିଜ ଖର୍ଚ୍ଚରେ ଇଚ୍ଛା କଲେ ଜେଲ ବାହାରୁ ଯେ କୌଣସି ଦ୍ରବ୍ୟ ମଗାଇବାର ଅଧିକାର ଥାଏ। ସମ୍ବାଦପତ୍ର ମଧ ନିୟମିତରୂପେ ମିଳୁଥାଏ। ଜେଲ ଭିତରେ ରହି ସମସ୍ତେ ଲେଖା ପଢ଼ାରେ ସମୟ କଟାଉ ଥାଉ ଓ ଦେଶର ରାଜନୈତିକ ପରିସ୍ଥିତି ବିଷୟରେ ମଧ ଆଲୋଚନା ଚାଲିଥାଏ। ତିଳକ ମହାରାଜାଙ୍କ ଗୀତା ରହସ୍ୟକୁ ଓଡ଼ିଆରେ ଅନୁବାଦ କରିବାରେ ମୁଁ ନିଜକୁ ନିୟୋଜିତ କରିଥାଏ। ଗୀତା ରହସ୍ୟକୁ ଓଡ଼ିଆରେ ଅନୁବାଦ କରି ଛପାଇବା ଇଚ୍ଛାରେ ଏହା ମୁଁ କରୁଥାଏ, ତାହା ନୁହେଁ। ନିଜକୁ ଗୋଟିଏ କଠିନ କାର୍ଯ୍ୟରେ ନିୟୋଜିତ କରିବାର ପ୍ରବୃତ୍ତି ମତେ ଏହି କାର୍ଯ୍ୟକୁ ଟାଣି ନେଇଥାଏ। ଆହୁରି ମଧ କୌଣସି ଗ୍ରନ୍ଥକୁ ପାଠ କରି ଗଲେ ଯେତେ ହୃଦୟଙ୍ଗମ ହେବ, ସେହି ଗ୍ରନ୍ଥକୁ ଅନୁବାଦ କଲେ ତହିଁର ଗୂଢ଼ତତ୍ତ୍ୱ ବିଶେଷ ଭାବରେ ହୃଦବୋଧ ହୋଇପାରିବ, ଏହା ମୋର ଗୀତା ରହସ୍ୟ ଅନୁବାଦ କରିବାରେ ଅନ୍ୟତମ କାରଣ ଥାଏ। ହିନ୍ଦୀ ସାହିତ୍ୟରେ ଟିକିଏ ଜ୍ଞାନଲାଭ କରିବା ମଧ ତୃତୀୟ କାରଣ। ଏହିପରି କେତେକ କାରଣରୁ ଏହି ମହତ୍ ଗ୍ରନ୍ଥକୁ ଓଡ଼ିଆ ଭାଷାରେ ଅନୁବାଦ କରିବାକୁ ମୁଁ ମନ ବଳାଇ ଥାଏ। ସେହି ଗ୍ରନ୍ଥ ଅନୁବାଦ ମୁଁ ଶେଷ କରିପାରି ନାହିଁ। ଶେଷ କରିବାକୁ ଅନୁକୂଳ ପରିସ୍ଥିତି ଜେଲରେ ରହିଲା ନାହିଁ। ତାହା ନ ହେଲେ ମଧ ତଦ୍ଦ୍ୱାରା ମୁଁ ବିଶେଷ ଭାବରେ ଉପକୃତ ହୋଇ ପାରିଛି। ଜଗତର ସୃଷ୍ଟି ସ୍ଥିତି ଲୟ ଇତ୍ୟାଦି ବିଷୟରେ ଗୋଟାଏ ସାଧାରଣ ଜ୍ଞାନ ହୋଇଛି। ଜଗତ ଉତ୍ପତ୍ତିର ମୂଳକାରଣ କଣ, ଅର୍ଥାତ୍ ସୃଷ୍ଟିର ମୂଳ ସ୍ୱରୂପ ବିଷୟରେ ପ୍ରାଚୀନ ଓ ଆଧୁନିକ ମତାମତ କଣ, ସେ ବିଷୟରେ ଟିକିଏ ଆଭାସ ପାଇଛି। ଏହିପରି ନାନା ଭାବରେ ନାନା ବିଷୟ ମୁଁ ଟିକିଏ ବୁଝିଛି ଏବଂ ଗୀତାକୁ ନିଜର ଅର୍ଥ ଲଗାଇ ବୁଝିବାକୁ ସମର୍ଥ ହୋଇଛି ବୋଲି ମୋର ବିଶ୍ୱାସ। ଏହିଠାରେ ମୁଁ ଏତିକି କହିବାକୁ ଇଚ୍ଛା କରେ ଯେ, କୌଣସି ଧର୍ମଗ୍ରନ୍ଥ କିମ୍ବା ଶାସ୍ତ୍ର ପୁରାଣ ପାଠ କଲା ବେଳେ ଟୀକାକାରମାନଙ୍କ ଟୀକାକୁ ଦେଖି ଗ୍ରନ୍ଥର ମର୍ମ ବୁଝିବାକୁ ଚେଷ୍ଟା କଲେ, ଗ୍ରନ୍ଥର ପ୍ରକୃତ ମର୍ମ ବୁଝିହୁଏ ନାହିଁ। ପ୍ରତ୍ୟେକ ଗ୍ରନ୍ଥର ବିଷୟକୁ ନିଜର ଅନୁଭୂତି ସହିତ ମିଳାଇ ତହିଁରୁ ନିଜର ଅର୍ଥ ବାହାର କରିବା ଦରକାର। ତା ନ ହେଲେ ଧର୍ମଗ୍ରନ୍ଥର ପଠନ, ଅନ୍ଧର ବାଟ ଚାଲିଲା ସଂଗେ ସମାନ।

ସେ ଯାହା ହେଉ ଇତିମଧ୍ୟରେ ଯୁକ୍ତ ପ୍ରଦେଶରେ ଚୌରୀଚୌରା ନାମକ ସ୍ଥାନରେ କଂଗ୍ରେସ ନାମ ଧରି ଲୋକେ ପୋଲିସ ଥାନା ପୋଡ଼ିଦେଲେ ଓ କେତେକ ପୋଲିସ କର୍ମଚାରୀଙ୍କୁ ପୋଡ଼ି ମାରିଦେଲେ । ଏହା ଦେଶରେ 'ଚୌରୀଚୌରା ହତ୍ୟାକାଣ୍ଡ' ନାମରେ ବିଦିତ । ଏହି ହତ୍ୟାକାଣ୍ଡର ସମ୍ବାଦ ପାଇ ମହାତ୍ମାଜୀ ଅସହଯୋଗ ଲଢ଼ାଇକୁ ଏକାବେଳକେ ବନ୍ଦ କରିଦେଲେ । ବିଜୁଳିବତୀର ବୋତାମ ଚିପି ଦେଲେ ଆଖି ପିଛୁଳାକେ ଯେପରି ଅନ୍ଧାର ମାଡ଼ି ଆସେ ଅସହଯୋଗ ଆନ୍ଦୋଳନକୁ ହଠାତ୍ ବନ୍ଦ କରିଦେବା ଦ୍ୱାରା ଭାରତର ରାଜନୈତିକ ଜୀବନ ସେପରି ଲିଭିଗଲା ପରି ବୋଧ ହେଲା । ଅସହଯୋଗ ଆନ୍ଦୋଳନ ଫଳରେ ଦେଶରେ ଯେ ନୂତନ ଜୀବନ ଖେଳି ଯାଇଥିଲା, ତାହା ମୁହୂର୍ତ୍ତକ ମଧ୍ୟରେ କୁଆଡ଼େ ଦବିଗଲା । ବାର୍ଦୋଲିରେ ମହାତ୍ମାଜୀ ମହାଭ୍ରମ କଲେ ବୋଲି ଅଧିକାଂଶଙ୍କ ମନରେ ଗୋଟାଏ ଧାରଣା ଜାତ ହେଲା । ଜେଲ ଭିତରେ ଏହି ଦାରୁଣ ସମ୍ବାଦ ପାଇ ଆମ୍ଭେମାନେ ବଡ଼ ଚିନ୍ତିତ ହୋଇ ଉଠିଲୁ । ଦେଶର ରାଜନୈତିକ ଜୀବନରେ ଏହାର ପରିମାଣ କଣ ହେବ କିଛି ବୁଝି ହେଲା ନାହିଁ । ମହାତ୍ମା ଭଲ କଲେ କି ଭୁଲ କଲେ ତହିଁର ମୀମାଂସା କରିବା କଠିନ ବୋଧ ହେଲା ।

ବାର୍ଦୋଲି ମୀମାଂସା ପୂର୍ବରୁ ମହାତ୍ମାଜୀ ଲୋକ ପ୍ରଶଂସାର ଶୀର୍ଷତମ ଶିଖରରେ । ମହାତ୍ମାଜୀ ଏପରି ହଠାତ୍ ଆନ୍ଦୋଳନକୁ ବନ୍ଦ କରିଦେବା ଦ୍ୱାରା ଦେଶର ଅନେକ ତାହାଙ୍କୁ ଭୁଲ ବୁଝିବେ । ତାହାଙ୍କୁ ଭୀରୁ ଓ ଦେଶଦ୍ରୋହୀ ବୋଲି ଲୋକେ କହିପାରନ୍ତି । ତାହାଙ୍କର ଜୀବନ ସଂଶୟ ମଧ୍ୟ ଉପସ୍ଥିତ ହୋଇପାରେ । କେହି ଯୁବକ ତାହାଙ୍କୁ ଦେଶଦ୍ରୋହୀ ମନେକରି ହତ୍ୟା କରି ଦେଇ ପାରେ । ଏହିପରି ଅନେକ ଭାବନା ମୋ ମନରେ ଖେଳିଲା । ମୁଁ ଜାଣିଛି, ରାଓଲାଟ ସତ୍ୟାଗ୍ରହ ବନ୍ଦ କରି ସୂତାକଟା ପ୍ରଚାର ଆରମ୍ଭ କରାଇଲାବେଳେ କେତେକ ଲୋକ କିପରି ତାହାଙ୍କୁ ସମାଲୋଚନା କରିଛନ୍ତି । ବାର୍ଦୋଲି ମୀମାଂସା ତାହାଠାରୁ କେତେ ଗୁରୁତର ତାହା କଳ୍ପନା କରାଯାଇ ନ ପାରେ । ଏହିପରି ଭାବରେ ମୋ ମନ ଅସ୍ଥିର ହୋଇ ଉଠିଲା । ଦୁଇ ତିନି ଦିନ ପାଇଁ ମୋର ଲେଖା ପଢ଼ା ବନ୍ଦ ହୋଇ ଗଲା । କଣ ହେଲା, ମହାତ୍ମାଜୀ ଏହା କାହିଁକି କଲେ, କେବଳ ଏହି ପ୍ରଶ୍ନ ମୋ ମନକୁ ଉତ୍ତେଜିତ କଲା । ମୁଁ ଭାବି ଦେଖିଲି, ମହାତ୍ମାଜୀ ଯାହା କରିଛନ୍ତି ତାହା ଦେଶର ଭଲ ପାଇଁ କରିଛନ୍ତି । ତାହାଙ୍କର କିଛି ମାତ୍ର ଭୁଲ ହୋଇ ନାହିଁ । ବାର୍ଦୋଲି ମୀମାଂସା ମୋତେ ଯେପରି ବିଚଳିତ କରିଛି ମୋର ଜୀବନର କର୍ମ ଓ ଚିନ୍ତା ଧାରାକୁ ସେପରି ପ୍ରଭାବିତ ମଧ୍ୟ କରିଛି । ସେପରି ଆଉ କୌଣସି ଘଟଣା ମୋତେ ପ୍ରଭାବିତ କରି ପାରି ନାହିଁ । ମହାତ୍ମାଜୀ ପ୍ରକୃତ ଜନନାୟକ ।

ବାର୍ଦୋଲି ମୀମାଂସାରେ ଦେଶର କର୍ମୀମାନଙ୍କ ଜୀବନ ଗଠନର ବହୁତ ଉପାଦାନ ରହିଛି । ଦେଶର କାର୍ଯ୍ୟ କରିବାକୁ ହେଲେ, ଦେଶର ମଙ୍ଗଳ ବିଧାନ ପ୍ରତି ସବୁବେଳେ

ଦୃଷ୍ଟି ଦେଇ କାର୍ଯ୍ୟ କରିବା ଦରକାର। ଦେଶର ମଙ୍ଗଳ କାମନା କରି ଯେଉଁ ସବୁ କାର୍ଯ୍ୟ କରାଯାଏ, ସବୁ ସମୟରେ ସମସ୍ତ କାର୍ଯ୍ୟ ଲୋକପ୍ରିୟ ହୋଇ ନପାରେ। ଅନେକ ସମୟରେ ପ୍ରଚଳିତ ଲୋକମତ ବିରୁଦ୍ଧରେ ମଧ ନିଜର ବିଚାର ପ୍ରକଟ କରିବାକୁ ପଡ଼େ। ରାଜନୈତିକ ପ୍ରଶ୍ନ ଦେଶର ହେଉଛି ଜୀବନ ମରଣ ସମସ୍ୟା। ଏହାରି ସମାଧାନ ଉପରେ ଦେଶର ଭବିଷ୍ୟତ ନିର୍ଭର କରେ। ଯେଉଁ ଦେଶରେ ରାଜନୈତିକ ଜୀବନ ପୂର୍ଣ୍ଣ ବିକାଶ ଲାଭ କରିଛି, ଦେଶର ଜୀବନ ମରଣ ସମସ୍ୟା କେଉଁ ପ୍ରଶ୍ନ ଉପରେ ନିର୍ଭର କରୁଛି, ଏହାକୁ ଦେଶର ଜନସାଧାରଣ ବୁଝି ବିଚାରି କାର୍ଯ୍ୟ କରୁଛନ୍ତି ସେ ଦେଶର କଥା ସ୍ୱତନ୍ତ୍ର। ତଥାପି ସେପରି ଦେଶରେ ବେଳେବେଳେ ଜନନାୟକମାନେ ନିଜ ନିଜ ବୁଦ୍ଧି ବିବେଚନା ବଳରେ ଦେଶର ନିକଟ ପ୍ରଶ୍ନକୁ ନିଜ ଦାୟିତ୍ୱରେ ସମାଧାନ କରି ଦେଉଛନ୍ତି।

ଭାରତର ଅବସ୍ଥା ଭିନ୍ନ। ଏଠାରେ ଜନସାଧାରଣଙ୍କ ଭିତରେ ଦେଶ ଭାବ ଫୁଟି ଉଠି ନାହିଁ। ଦେଶସେବାକୁ ଜୀବନର ମୁଖ୍ୟ ପ୍ରଶ୍ନ ବୋଲି ଲୋକେ ଧରି ନାହାନ୍ତି। ଭାରତ ପରାଧୀନ ଦେଶ। ପରାଧୀନ ଭାରତକୁ ସ୍ୱତନ୍ତ୍ର କରିବା ପାଇଁ ମହାତ୍ମାଗାନ୍ଧୀ ଅହିଂସାର ପଥ ଦେଖାଇ ଅଛନ୍ତି। ଅହିଂସାଦ୍ୱାରା ଦେଶର ସ୍ୱାଧୀନତା ଲାଭ, ଏ ଗୋଟାଏ ଅଭିନବ ଘଟଣା। ଏଥିପାଇଁ ସାରା ଦୁନିଆର ଦୃଷ୍ଟି ଭାରତ ଆଡ଼କୁ ଆକୃଷ୍ଟ ହୋଇଛି। ଅହିଂସାପୂର୍ଣ୍ଣ ସତ୍ୟାଗ୍ରହର ଶେଷ ଅସ୍ତ୍ର ପରିଚାଳନା କରିବାକୁ ବାର୍ଦୋଲି ତାଲୁକା ସଂଗଠିତ ହୋଇଛି। ସମସ୍ତ ଜଗତ ଏହି ବାର୍ଦୋଲି ଆଡ଼କୁ ଅନାଇ ରହିଛି ବୋଲି କହିଲେ ଚଳେ। ଭାରତର ପୁରପଲ୍ଲୀରେ ଆନନ୍ଦର ଢେଉ ନାଚି ଉଠୁଛି। ଦେଶର ସହସ୍ର ସହସ୍ର ବୀର ସନ୍ତାନ ଇଂରେଜ ସରକାରଙ୍କ କାରାଗାରରେ ବନ୍ଦୀ। ବାର୍ଦୋଲିରେ ଖଜଣା ବନ୍ଦ ଆରମ୍ଭ ହେଲେ ସରକାର ମହାତ୍ମାଙ୍କୁ ଧରି ନେଇ ଉକ୍ତ ଆନ୍ଦୋଳନକୁ ସମୂଳେ ନଷ୍ଟ କରି ଦେବାକୁ ଦୃଢ଼ ସଂକଳ୍ପ କଲା ପରି ଜଣା ପଡୁଛି। ବର୍ତ୍ତମାନ ହିଂସା ଅହିଂସା ବଳର ପରୀକ୍ଷା ସମୟ। ଏହିପରି ଅବସ୍ଥାରେ ଚୌରୀଚୌରା ହତ୍ୟାକାଣ୍ଡ ଘଟିଲା। ମହାତ୍ମାଜୀ ଅତି ଦୁଃଖରେ ସତ୍ୟାଗ୍ରହର ଅମୋଘ ଅସ୍ତ୍ରକୁ ଫିଙ୍ଗି ଦେଇ ପଛକୁ ହଟିଗଲେ। ସମସ୍ତ ଆନ୍ଦୋଳନର ସ୍ୱରୂପ ବାର୍ଦୋଲିଠାରେ ବଦଳିଗଲା।

ଦେଶର ଏପରି ସଂକଟ ସମୟରେ ମହାତ୍ମାଜୀ ସାମାନ୍ୟ ଚୌରୀ ଚୌରା ହତ୍ୟାକାଣ୍ଡ ନେଇ ଏପରି ଏକ ବିରାଟ ଆନ୍ଦୋଳନକୁ ବନ୍ଦ କରି ଦେବାରେ ମହତ୍ତ୍ୱ କେଉଁଠାରେ, ଏ ପ୍ରଶ୍ନକୁ ସମାଧାନ କରି ନ ପାରିଲେ ରାଜନୈତିକ ଜୀବନ ଯାପନ କରିବା ଅସମ୍ଭବ। ଏହିପରି ଭାବରେ ଏହି ପ୍ରଶ୍ନକୁ ମୁଁ ଗ୍ରହଣ କଲି। ଦେଶର ପ୍ରତ୍ୟେକ କର୍ମୀ ଏ ପ୍ରଶ୍ନକୁ ନିଜ ନିଜ ଦୃଷ୍ଟିରେ ବିଚାର କରିଥିବେ। ଯେ ଯେପରି ବିଚାର କରିଥିବ ତାହାର ଜୀବନ ସେହିପରି ପ୍ରଭାବିତ ହୋଇଥିବ।

ଆମର ସ୍ୱରାଜ୍ୟ ସଂଗ୍ରାମର ଅହିଂସା ହେଉଛି ମୂଳନୀତି। ଅହିଂସା ମୂଳନୀତି ଥିବାରୁ ଏତେ ସହଜରେ ଭାରତର ପୁରପଲ୍ଲୀରେ ଗୋଟାଏ ନୂତନ ଜୀବନ ବିକାଶ ପାଇଛି। ଦେଶର ଜନସାଧାରଣଙ୍କର ଦୃଷ୍ଟି କେତେକ ମାତ୍ରାରେ ଦେଶର ପ୍ରଶ୍ନ ପ୍ରତି ଆକୃଷ୍ଟ ହୋଇଛି। ଦରିଦ୍ର, ନିରକ୍ଷର ଲୋକ ପକ୍ଷରେ ଦେଶସେବା ବିଡ଼ମ୍ବନା ମାତ୍ର, ଏପରି ଗୋଟାଏ ଧାରଣା ଏବେ ମଧ୍ୟ ଆମ୍ଭ ଦେଶରେ ଅଛି। ଆହୁରି ମଧ୍ୟ ଇଂରେଜ ସରକାରଙ୍କ ବିରୁଦ୍ଧରେ ଲଢ଼େଇ କରି ଦେଶରେ ସ୍ୱରାଜ୍ୟ ପ୍ରତିଷ୍ଠା କରିବା ଏ ଦେଶରେ ଜନସାଧାରଣ ସ୍ୱପ୍ନରେ ମଧ୍ୟ କଳ୍ପନା କରି ପାରୁ ନ ଥିଲେ। କିନ୍ତୁ ଅହିଂସାପୂର୍ଣ୍ଣ ଅସହଯୋଗ ଆନ୍ଦୋଳନ ଲୋକ ସାଧାରଣଙ୍କ ମନରୁ ଏ ପ୍ରକାର ଭ୍ରମ ଧାରଣା ଦୂର କରିଛି। ଦେଶର ଆଖି ଫିଟିଛି। ଅହିଂସା ଦୁର୍ବଳକୁ ବଳ ଦେଇଛି। ନୈରାଶ୍ୟ ଜୀବନରେ ଆଶାର ବାଣୀ ସଂଚାର କରିଛି। ଦୁଷ୍ଟକୁ ଶିଷ୍ଟ କରିଛି। ଅନ୍ୟାୟୀକୁ ନ୍ୟାୟବାନ୍ ହେବାକୁ ଶିକ୍ଷା ଦେଇଛି। ଅତ୍ୟାଚାରୀର ଅତ୍ୟାଚାରକୁ ସହ୍ୟ କରି ତାହାର କଠୋର ହୃଦୟରେ ଦୟାର ଭାବ ଜାଗରୂକ କରିଛି। ନିରସ୍ତ୍ରକୁ ଏକ ଅସ୍ତ୍ର ଦାନ କରିଛି। ଅହିଂସାର ପ୍ରଖର ତେଜରେ ଅନ୍ୟାୟ, ଅତ୍ୟାଚାର, ପାଶବିକ ବଳ ଓ ଦମ୍ଭ ସବୁ ମ୍ରିୟମାଣ ବୋଲି କହିଲେ ଚଳେ। ଚୌରୀଚୌରା ହତ୍ୟାକାଣ୍ଡରେ ମହାତ୍ମାଜୀ ଏହି ଶକ୍ତି ନଷ୍ଟ ହୋଇ ଯିବାର ସଂକେତ ଦେଖିବାକୁ ପାଇଲେ। ସେଥିପାଇଁ ସେ ଆନ୍ଦୋଳନକୁ ବନ୍ଦ କରିଦେଲେ। ବାର୍ଦୋଲିଠାରେ ସେତେବେଳେ ଆନ୍ଦୋଳନର ସ୍ୱରୂପ ବଦଳାଇ ନ ଥିଲେ ମହାତ୍ମାଜୀ ଧରା ହୋଇଥାନ୍ତେ। ତାହାଙ୍କ ଧରାହେବା ସଂବାଦ ବାରୁଦ ଘରେ ନିଆଁ ଲାଗିବାର କାର୍ଯ୍ୟ କରିଥାନ୍ତା, ସମସ୍ତ ଭାରତବର୍ଷରେ ଚୌରୀଚୌରା ପରି ହତ୍ୟାକାଣ୍ଡ ଘଟି ଯାଇଥାନ୍ତା। ସରକାର ସୈନିକ ଆଇନ୍ ଘୋଷଣା କରି ଏପରି ଶାସ୍ତିବିଧାନ କରିଥାନ୍ତେ ଯେ ଯହିଁରେ ଭାରତର ଜାଗ୍ରତ ଜୀବନ ଥରି ଉଠିଥାନ୍ତା। ଲୋକେ ବୁଝିଥାନ୍ତେ ଏବଂ ଦୁନିଆ ମଧ୍ୟ ବୁଝିଥାନ୍ତା ଯେ ଅହିଂସା ଦ୍ୱାରା ଦେଶର ସ୍ୱାଧୀନତା ଲଢ଼ାଇ ଚଳି ନ ପାରେ। କିନ୍ତୁ ବାର୍ଦୋଲି ଠାରେ ଆନ୍ଦୋଳନ ବନ୍ଦ କରିଦେବା ଦ୍ୱାରା ଲୋକେ ମହାତ୍ମାଜୀଙ୍କୁ ନିନ୍ଦା କରି ପାରିଥାନ୍ତି, ମାତ୍ର ଅହିଂସା ଉପରେ ଲୋକଙ୍କର ବିଶ୍ୱାସ ରହିଗଲା। ଲୋକେ ମଧ୍ୟ ଭବିଷ୍ୟତକୁ ସତ୍ୟାଗ୍ରହ ଆନ୍ଦୋଳନରେ ଯେପରି କୌଣସି ହିଂସାବାଦ ସୂଚିତ ନ ହୁଏ ସେଥିପାଇଁ ସମାଧାନ ହେବାକୁ ହିଂସାରୂପକ ଆଖ୍ୟା ଦେଇ ଦୁନିଆରେ ଚିତ୍ରଣ କରିବାର ପ୍ରୟାସ ବୃଥା ହେଲା। ବାର୍ଦୋଲି ସମସ୍ୟା କର୍ମୀମାନଙ୍କ ଉଚ୍ଛୃଙ୍ଖଳ ସ୍ୱଭାବକୁ ବଦଳାଇ ଭାବି ଚିନ୍ତି କାର୍ଯ୍ୟ କରିବାର ପ୍ରବୃତ୍ତିକୁ ଜାଗ୍ରତ କଲା ଏବଂ ଭାରତର ଜାତୀୟ ଜୀବନର ସ୍ୱରୂପକୁ ବଦଳାଇ ଦେଲା ବୋଲି ମୁଁ କହିପାରେ।

ଜଳୁଥିବା ନିଆଁରେ ପାଣି ପକାଇଲେ ତାହାର ତେଜ କମିଯାଏ ଏବଂ ନିଆଁ ମଧ୍ୟ ଲିଭିଯାଏ। ବାର୍ଦୋଲି କାର୍ଯ୍ୟକ୍ରମ ଦ୍ୱାରା ଅସହଯୋଗ ଆନ୍ଦୋଳନରେ ଯେଉଁ

ପରିବର୍ତ୍ତନ କରାଗଲା ତଦ୍ଦ୍ବାରା ଦେଶରେ ରାଜନୈତିକ ଉଦ୍ଦୀପନାର ତେଜ ଏକାବେଳକେ କମିଗଲା । ବାର୍ଦୋଲିର ସଂଗଠନ କାର୍ଯ୍ୟ କର୍ମୀମାନଙ୍କ ମନରେ ଭାବପ୍ରବଣତା ଜନ୍ମାଇ ପାରିଲା ନାହିଁ। ଏଥିପ୍ରତି କର୍ମୀମାନଙ୍କ ମନରେ ଗୋଟାଏ ଅସନ୍ତୋଷ ଭାବ ସ୍ଥାନ ପାଇଲା । ରାଜନୈତିକ ଜୀବନ ଶିଥିଳ ହୋଇଗଲା । ମହାତ୍ମାଜୀ ଏହି ଲକ୍ଷଣ ବୁଝି ପାରି ନଥିଲେ ତାହା ନୁହେଁ। ରୋଗର କାରଣ ତାହାଙ୍କୁ ଭଲରୂପେ ଜଣା ଅଛି। ଏହାର ପ୍ରତିବିଧାନ କରିବା ପାଇଁ ସେ ଯେ କଳ୍ପନା କରୁ ନଥିଲେ ଏହା କୁହାଯାଇ ନ ପାରେ। କିନ୍ତୁ ଠିକ୍ ଏତିକିବେଳେ ସରକାର ତାହାଙ୍କୁ ଗିରଫ କରି ଛ ବର୍ଷ ପାଇଁ କାରାବାସରେ ଦଣ୍ଡବିଧାନ କଲେ। ମହାତ୍ମାଗାନ୍ଧୀଙ୍କ ଜେଲ ଗମନ ପରେ ଅସହଯୋଗ ଆନ୍ଦୋଳନକୁ ନୂତନ ବଳ ଦେବାର ଶକ୍ତି ଆଉ କାହାରି ନ ଥିଲା। ସରକାରଙ୍କ ନୀତି ମଧ୍ୟ ବଦଳିଗଲା। ଏହି ଆନ୍ଦୋଳନକୁ ସମୂଳେ ଦମନ କରିବାପାଇଁ କୌଣସି ଉପାୟ ବାକି ରହିଲା ନାହିଁ। ବ୍ୟକ୍ତି ବିଶେଷରେ ସରକାରୀ କର୍ମଚାରୀ ମଧ୍ୟରୁ କେହି କେହି ମଧ୍ୟ ଜନସାଧାରଣଙ୍କୁ ଡରାଇ ଦବାଇବା ପାଇଁ ନାନାବିଧ ଉପାୟ ଅବଲମ୍ବନ କଲେ। ଜେଲ ଭିତରେ ଆମ୍ଭମାନଙ୍କ ପ୍ରତି ଯେପରି ବ୍ୟବହାର କରାଯାଉଥିଲା ତାହା ବେଶି ଦିନ ରହିଲା ନାହିଁ। ଏଣିକି ଯେଉଁସବୁ ନୂଆ ନୂଆ ରାଜବନ୍ଦୀ ଜେଲକୁ ଆସିଲେ ସେମାନେ ସାଧାରଣ କଏଦୀମାନଙ୍କ ପରି ଜେଲରେ ବ୍ୟବହାର ପାଇଲେ। ରାଜନୈତିକ କାରଣରୁ ଜେଲଦଣ୍ଡ ପାଉଥିବା କଏଦୀ ଜେଲରେ ସ୍ୱରାଜୀ କଏଦୀ ନାମରେ ପରିଚିତ। ଗୋଟିଏ ଜେଲରେ ଯେତେସବୁ ସ୍ୱରାଜୀ କଏଦୀ ରହିଲେ ସମସ୍ତଙ୍କ ସହିତ ସମାନ ଭାବରେ ବ୍ୟବହାର କରା ନ ଯିବାରୁ, ଏଥିପାଇଁ ଜେଲ ଭିତରେ ସଂଘର୍ଷଣ ଆରମ୍ଭ ହେଲା। ଏହି ସଂଘର୍ଷଣ ଓ ଝଗଡ଼ା ଫଳରେ ମୋତେ ଜଣେ ସାଧାରଣ କଏଦୀ ଭାବରେ ରହିବାକୁ ପଡ଼ିଲା। ଭାଗଲପୁର ଜେଲରେ ସ୍ୱରାଜୀ କଏଦୀମାନଙ୍କ ମଧ୍ୟରେ ମୁଁ ଜଣେ ମାତ୍ର ଓଡ଼ିଆ ସାଧାରଣ କଏଦୀଙ୍କ ପରି ରହିଥାଏ। ବହୁଦିନ ପରେ ବାଲେଶ୍ୱରରୁ ବାବୁ ହରେକୃଷ୍ଣ ମହତାବ ଭାଗଲପୁର ଜେଲରେ ଉପସ୍ଥିତ ହେଲେ। ତାହାଙ୍କୁ ଜଣେ ସାଧାରଣ କଏଦୀ ପରି ରଖା ଯାଇଥିଲା। ସେ ଭାଗଲପୁର ଜେଲରେ ଉପସ୍ଥିତ ହେବା ସମୟକୁ ମୁଁ ଜେଲ ଭିତରେ ପୁଣି ଜେଲ ଦଣ୍ଡ ଏକମାସ ପାଇଥିଲି। ଅର୍ଥାତ୍ ଏକମାସ ମତେ ନିର୍ଜ୍ଜନ କାରାବାସ ଦଣ୍ଡ ମିଳିଥିଲା। ମୋର ତାହାଙ୍କ ସହିତ ଦେଖା ହୋଇ ପାରିଲା ନାହିଁ। ହଠାତ୍ ନିର୍ଜ୍ଜନ କାରାବାସ କୋଠରୀରୁ ମତେ ବକ୍‌ସାର ଜେଲକୁ ଚାଲାଣ କରି ଦିଆଗଲା। ଜେଲ ବିଷୟରେ ସମସ୍ତ ଘଟଣା ଲେଖି 'କାରାଗାର କାହାଣୀ' ନାମକ ପୁସ୍ତକରେ ମୁଁ ପ୍ରକାଶ କରିଛି। ସେ ସମସ୍ତ ଘଟଣା ଏଠାରେ ଉଲ୍ଲେଖ କରିବା କୌଣସି ପ୍ରୟୋଜନ ନାହିଁ। ତେବେ ଏତିକି କହିଲେ ଯଥେଷ୍ଟ ହେବ ଯେ, ଜେଲ ଭିତରେ ମୁଁ ଯେତେ ଦୁଃଖ ଯନ୍ତ୍ରଣା ଭୋଗ କରିଛି ସମ୍ଭବତଃ ଓଡ଼ିଆ ସ୍ୱରାଜୀ କଏଦୀମାନଙ୍କ

ମଧ୍ୟରୁ ସେପରି କେହି ଭୋଗି ନାହାନ୍ତି। କିନ୍ତୁ ଜେଲର ଦୁଃଖ ଯନ୍ତ୍ରଣା ମୋତେ ଦୁଃଖ ଦେଉ ନ ଥାଏ। ଓଡ଼ିଶାରୁ ସର୍ବ ମୋଟରେ ୨୦ କିମ୍ବା ୨୫ ଜଣ ଜେଲ ଆସିଲେ, ଏହି କଥା ମୋତେ ବେଶି କଷ୍ଟ ଦେଉଥାଏ। ମହାତ୍ମାଗାନ୍ଧୀଙ୍କ ଜେଲ ଗମନ ପରେ ଦେଶରେ ଯେ ଶିଥିଳତା ଆସିଲା ତାହା ଭାବି ମନରେ ବଡ଼ କଷ୍ଟ ହୁଏ। କଂଗ୍ରେସ ଭିତରେ ପୁଣି ମତଭେଦ ଦେଖା ଦେଇଛି। ମହାତ୍ମାଜୀ ଆନ୍ଦୋଳନକୁ ଯେଉଁଠାରେ ଛାଡ଼ିଗଲେ ତାହାକୁ ଆଗକୁ ନ ବଢ଼ାଇ, ସେହି ବାଟ ଛାଡ଼ି ଅନ୍ୟ ବାଟରେ ଯିବାପାଇଁ ଦେଶବନ୍ଧୁ ଚିତ୍ତରଂଜନ ଓ ପଣ୍ଡିତ ମୋତିଲାଲ ପ୍ରମୁଖ ବିଶିଷ୍ଟ ନେତାମାନେ ମତାମତ ପ୍ରକାଶ କରୁଛନ୍ତି। ଏଥିପାଇଁ ଦେଶରେ ମତଭେଦ ସୃଷ୍ଟି ହେଉଛି। ଆଇନଭଙ୍ଗରୂପକ ସତ୍ୟାଗ୍ରହ ଚଳାଇବା ପାଇଁ ଦେଶରେ ପରିସ୍ଥିତି ସୃଷ୍ଟି କରିବା ପ୍ରତି ଲକ୍ଷ୍ୟ ନ ରଖି, ସତ୍ୟାଗ୍ରହ ପାଇଁ ଦେଶ ପ୍ରସ୍ତୁତ ଅଛି କି ନାହିଁ ଏହା ତଦନ୍ତ କରିବାପାଇଁ ଗୋଟିଏ ତଦନ୍ତ କମିଟି ବସିଛି। ଏହିପରି ଗୋଟାଏ କମିଟି ବସାଇବା ହେଉଛି ମୂଳରୁ ଅଶୁଦ୍ଧି। ଏହି ତଦନ୍ତ କମିଟି ବସିବା ହେତୁରୁ କର୍ମୀମାନେ ନିଶ୍ଚେଷ୍ଟ ହୋଇଗଲେ। ମହାତ୍ମାଜୀଙ୍କ ଦୀର୍ଘ କାରାଦଣ୍ଡ ଯାହା ଟିକିଏ ଉତ୍ତେଜନା ଭାବ ଜାଗ୍ରତ କରାଇ ପାରିଥିଲା, ଏହି ତଦନ୍ତ କମିଟି ତାହାକୁ ଶିଥିଳ କରିଦେଲା। ଏହି ତଦନ୍ତ କମିଟିର ଶେଷ ମତାମତ ପ୍ରତି ସାରା ଦେଶରେ କର୍ମୀମାନେ ଅପେକ୍ଷା କରି ରହିଲେ। ଏହିପରି ଭାବରେ ଦେଶରେ ନିଶ୍ଚେଷ୍ଟତା ଓ ନିଷ୍କ୍ରିୟ ଭାବ ସ୍ଥାନ ପାଇଲା। ଦେଶର ବିଶିଷ୍ଟ ନେତାମାନେ ଯାହା କରୁଛନ୍ତି ତହିଁରେ ସାଧାରଣ କର୍ମୀମାନଙ୍କ କହିବାପାଇଁ ବାଟ ଆଉ ରହିଲା ନାହିଁ। ଜେଲ ଭିତରେ ଏହିସବୁ ପରିବର୍ତ୍ତିତ ପରିସ୍ଥିତିର ଆଭାସ ଆମ୍ଭମାନଙ୍କୁ ମିଳୁଥାଏ। ବକ୍ସାର ଜେଲରେ ଦୁଷ୍ଟ କଏଦୀମାନଙ୍କ ପାଇଁ ବ୍ୟବସ୍ଥା ଥାଏ। ସେଠାରେ କାଏଦା କଟକଣା ବଡ଼ କଡ଼ା। ଯେତେ କଡ଼ା ହେଲେ ମଧ୍ୟ ଆମ୍ଭେମାନେ ସ୍ୱରାଜୀ କଏଦୀ। କୌଣସି ପ୍ରକାରେ ବାହାର ସଂବାଦ ପାଇବା ପାଇଁ ଯୋଗାଡ଼ କରି ନେଉ। ବାହାରର ସଂବାଦ ଶୁଣିବା ପାଇଁ ମନ ସବୁବେଳେ ବ୍ୟାକୁଳ। କିନ୍ତୁ ଏହିପରି ସଂବାଦ ପାଇ ମନ ଆହୁରି ବ୍ୟାକୁଳ ହୁଏ। ଜେଲ ଭିତରେ ଯେଉଁ ଦୁଃଖ ଯନ୍ତ୍ରଣା ଭୋଗ କରିବାକୁ ପଡୁଥାଏ, ଜେଲ ବାହାରର ପରିସ୍ଥିତି ସଂବାଦରେ ସେସବୁ ଦୁଃଖ କୁଆଡ଼େ ପାସୋର ହୋଇଯାଏ। ଏ ଦୁଃଖ ସେ ଦୁଃଖରୁ ବଳିପଡ଼େ। ସେ ଯାହା ହେଉ, ଏହିପରି ମନୋଭାବ ନେଇ ୧୯୨୩ ମସିହା ଜାନୁଆରୀ ତା ୬ ରିଖ ଦିନ ମୁଁ ବକ୍ସାର ଜେଲରୁ ବାହାରିଲି। ଜେଲରୁ ବାହାରିଲା ଦିନ ମୋ ମନରେ ଲେଶମାତ୍ର ଆନନ୍ଦ ନ ଥିଲା। ଜେଲରେ ଥିବା ସମୟରେ ମୋର ଭଲ ମନ୍ଦ ସଂବାଦ ରଖିବାକୁ ବାହାରେ କେହି ନ ଥିଲେ। ଜେଲ ଭିତରେ ଓଡ଼ିଶାରୁ ଯେ କେତେଜଣ ମୁଷ୍ଟିମେୟ ରାଜବନ୍ଦୀ ରହିଲେ ତାହାଙ୍କ ତତ୍ତ୍ୱ କଂଗ୍ରେସ କମିଟି ନେଇ ନାହିଁ, କିମ୍ବା ସେମାନଙ୍କ

ପ୍ରତି ଦେଶବାସୀଙ୍କର କିଛି କର୍ତ୍ତବ୍ୟ ଅଛି ବୋଲି ଏ ଭାବନା କାହାରି ମନକୁ ସ୍ପର୍ଶ କରିଛି ବୋଲି ମୋର ମନେ ହୁଏ ନାହିଁ। ସେ ଯାହା ହେଉ ଜେଲରୁ ଖଲାସ ହୋଇ ମୁଁ ପ୍ରଥମେ ବାଲେଶ୍ୱରରେ ଓହ୍ଲାଇଲି। ସେଠାରୁ କଟକ, ପୁରୀ ଓ ସତ୍ୟବାଦୀ ହୋଇ ପୁଣି କଟକ ସ୍ୱରାଜ୍ୟ ଆଶ୍ରମକୁ ଫେରିଲି। ଜେଲରୁ ଖଲାସ ହେଲା ଦିନ ମୋ ସହିତ କେତେଜଣ ବିହାରୀ ଭାଇ ମଧ ବକ୍ସାର ଜେଲରୁ ବାହାରିଲେ। ସେମାନେ ଜେଲରୁ ବାହାରି ନିଜ ନିଜର ସ୍ନେହ ପ୍ରୀତି ଭାଇବନ୍ଧୁମାନଙ୍କ ନିକଟକୁ ତାର ଯୋଗେ ସମ୍ବାଦ ଦେଲେ। ସେତେବେଳେ ମୋ ମନରେ ସ୍ୱତଃ ଭାବନା ଆସିଲା, କାହାକୁ ଜଣାଇବା ପାଇଁ। କିନ୍ତୁ ଏହି ସମ୍ବାଦ ଜାଣିବାକୁ କେହି ଉତ୍ସୁକ ହୋଇ ଚାହିଁ ବସିଥିବ, ଏପରି ବ୍ୟକ୍ତି କେହି ମତେ ଦେଖାଗଲେ ନାହିଁ। ଏଥିପାଇଁ ମନରେ କ୍ଷଣିକ ଦୁଃଖ ଜାତ ହୋଇଥିଲା। ଓଡ଼ିଶାକୁ ଫେରି ସେହି ଦୁଃଖଭାବ ସ୍ଥାନେ ସ୍ଥାନେ ଜାଗି ଉଠୁଛି। ମୁଁ ଜେଲ୍ ଭିତରେ କିପରି ଥିଲି ଏହି ସମ୍ବାଦ ତ କେହି ରଖିନାହାନ୍ତି। ପୁଣି ଜେଲରୁ ଫେରି କଟକ, ପୁରୀ, ସତ୍ୟବାଦୀରେ ଉପସ୍ଥିତ ହେଲା ବେଳେ ସମ୍ବର୍ଦ୍ଧନା ସୂଚକ ପଦେ କଥା ଶୁଣିବାକୁ କାହାଠାରୁ ହେଲେ ମୁଁ ପାଇ ନାହିଁ। ଏହି ଦୃଶ୍ୟ ଦେଖି ମନ ବ୍ୟଥିତ ହେଉଛି। ମନେ ମନେ ଭାବୁଛି, ଆମ୍ଭ ଜାତୀୟ ଜୀବନ କେଡ଼େ ନିର୍ଜୀବ ଓ ଶିଥିଳ। ଏଠାରେ ଦେଶସେବା କରିବାକୁ ହେଲେ ନିଜକୁ ପାଷାଣର ପିତୁଳାବତ୍ ମନେ କରି ନେବାକୁ ହେବ। ନିଜର ସୁଖ, ଦୁଃଖ, ଭାବ, ଅଭାବ ଓ ସାମୟିକ ଆମୋଦ ଅଥବା ଆହ୍ଲାଦ ପ୍ରତି ଦୃଷ୍ଟି ଦେବା କିମ୍ବା ଦେଶର କର୍ମୀ ବୋଲି ସ୍ନେହ ସହାନୁଭୂତି ପାଇବାର ଆଶା ପୋଷଣ କରିବା ବିଡ଼ମ୍ବନା ମାତ୍ର। ବାଲେଶ୍ୱର, କଟକ, ପୁରୀ ବୁଲି ଆସିବାରେ ମୋର ମନରେ ଏହିପରି ଭାବନା ଆସିଲା। କଟକ ସ୍ୱରାଜ୍ୟ ଆଶ୍ରମରେ ମୁଁ ରହିଲି।

## ସପ୍ତମ ପରିଚ୍ଛେଦ

### କଟକ ସ୍ୱରାଜ୍ୟ ଆଶ୍ରମ

ଆଶ୍ରମ କହିଲେ, ଯାହା ବୁଝାଏ କଟକ ସ୍ୱରାଜ୍ୟ ଆଶ୍ରମ ତାହା ନୁହେଁ। ୧୯୨୧ରେ ଅସହଯୋଗ ଆନ୍ଦୋଳନ ସମୟରେ ଏହାର ଅବସ୍ଥା ଯାହା ଥିଲା ବର୍ତ୍ତମାନ ଆଉ ସେପରି ନାହିଁ। ଆଉ ସେତେ କର୍ମୀ ନାହାନ୍ତି, ଆଉ ପୂର୍ବପରି ଚାନ୍ଦା ଆଦାୟ ହେଉ ନାହିଁ। ଆଶ୍ରମ ଚଳିବାପାଇଁ ସବୁ ଅସୁବିଧା। ଜେଲରୁ ମୋର ସ୍ୱାସ୍ଥ୍ୟଭଙ୍ଗ ହୋଇଛି। ବାହାରର ପରିସ୍ଥିତି ବେଳେ ବେଳେ ମନକୁ ମଧ ଭାଙ୍ଗି ପକାଉଛି। କିଛିଦିନ ପାଇଁ ଜଳବାୟୁ ପରିବର୍ତ୍ତନ କରି ଟିକିଏ ଶାନ୍ତି ଓ ସୁଖରେ ରହିବାପାଇଁ ମନ ଦୌଡ଼ୁଛି।

ଇତି ମଧ୍ୟରେ ଗୟାଠାରେ କଂଗ୍ରେସର ବାର୍ଷିକ ଅଧିବେଶନ ହୋଇ ଯାଇଛି। ଗୟା କଂଗ୍ରେସରେ ଦେଶବନ୍ଧୁ ଚିତ୍ତରଂଜନ ସଭାପତି। କିନ୍ତୁ ସେ ସଭାପତି ପଦରୁ ଇସ୍ତଫା ଦାଖଲ କରିଅଛନ୍ତି। ଅସହଯୋଗର ମୂଳ ପ୍ରସ୍ତାବରେ କାଉନ୍‌ସିଲ୍ ବର୍ଜନ ଗୋଟିଏ କାର୍ଯ୍ୟକ୍ରମ ଥିଲା। ଏହି କାର୍ଯ୍ୟକ୍ରମକୁ ପରିବର୍ତ୍ତିତ କରି କାଉନ୍‌ସିଲ୍ ପ୍ରବେଶ କରିବାପାଇଁ ଦେଶବନ୍ଧୁ ଚିତ୍ତରଂଜନ ଦାଶ ସ୍ଥିର କରିଛନ୍ତି। କିନ୍ତୁ ତାହାଙ୍କ ମତ କଂଗ୍ରେସ ନ କରିବାରୁ ସେ ଇସ୍ତଫା ଦାଖଲ କରି ସ୍ୱରାଜ୍ୟଦଳ ନାମରେ ଗୋଟିଏ ସ୍ୱତନ୍ତ୍ରଦଳ ଗଠନ କରୁଅଛନ୍ତି। କଂଗ୍ରେସରେ ପରିବର୍ତ୍ତନବାଦୀ (Pro-changer-Swarajist) ଏବଂ ଅପରିବର୍ତ୍ତନବାଦୀ (No-changers) ନାମରେ ଦୁଇଟି ଚିନ୍ତାଧାରା ଖେଳୁଛି। କିନ୍ତୁ ମହାତ୍ମାଗାନ୍ଧୀଙ୍କ ମୂଳନୀତିରେ କୌଣସି ପରିବର୍ତ୍ତନ କଂଗ୍ରେସ କଳ୍ପନା କରି ପାରୁ ନାହିଁ। ଗୟା କଂଗ୍ରେସରେ ନୂତନ କର୍ମ ପଦ୍ଧତି ସ୍ଥିର ହୋଇଛି। ପଚିଶ ଲକ୍ଷ ଟଙ୍କା ତିଳକ ସ୍ୱରାଜ୍ୟ ପାଣ୍ଠିପାଇଁ ଚାନ୍ଦା ସଂଗ୍ରହ ଏବଂ ଏକକୋଟି କଂଗ୍ରେସ ମେମ୍ବର ସଂଗ୍ରହ କରିବାକୁ ହେବ। ଓଡ଼ିଶା ପ୍ରଦେଶ ପୂରାମାତ୍ରାରେ ଅସହଯୋଗୀ। ଅସହଯୋଗର ମୂଳ ପ୍ରସ୍ତାବରେ କୌଣସି ପରିବର୍ତ୍ତନର କଳ୍ପନା ଅସମ୍ଭବ। କେବଳ ଓଡ଼ିଶାରୁ ଏକମାତ୍ର ପଣ୍ଡିତ ନୀଳକଣ୍ଠ ଦାସ ପରିବର୍ତ୍ତନର ଆକାଂକ୍ଷୀ। ସୁତରାଂ ଗୟା କଂଗ୍ରେସରେ ନିର୍ଦ୍ଧାରିତ କାର୍ଯ୍ୟ ପଦ୍ଧତିକୁ ଅନୁସରଣ କରି କାର୍ଯ୍ୟ ପରିଚାଳନା କରିବାକୁ ଚେଷ୍ଟା କରାହେଉଛି। ମୁଁ ଜେଲରୁ ବାହାରି ଦେଖୁଛି, ଓଡ଼ିଶାରେ ଖଦଡ଼ କାର୍ଯ୍ୟ ଟିକିଏ ପ୍ରସାର ଲାଭ କରିଛି। ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀଙ୍କ ତତ୍ତ୍ୱାବଧାନରେ କେତେଗୁଡ଼ିଏ ସୂତାକଟା ଓ ଖଦଡ଼ବୁଣାର କେନ୍ଦ୍ର ଖୋଲା ଯାଇଛି। କଟକ ଆଶ୍ରମରେ ଗୋଟିଏ ଖଦଡ଼ ଭଣ୍ଡାର ଅଛି। ନିଖିଳ ଭାରତ କଂଗ୍ରେସ କମିଟି ଏହି ଖଦଡ଼ କାର୍ଯ୍ୟପାଇଁ ଓଡ଼ିଶାକୁ ପ୍ରାୟ ଏକଲକ୍ଷ ଟଙ୍କା ଦାନ କରିଛନ୍ତି। ନିଜକୁ ମୁଁ କେଉଁ କାର୍ଯ୍ୟରେ ନିଯୁକ୍ତ କରିବି ତାହାହିଁ ଭାବୁଛି।

ମୁଁ ଆଶ୍ରମରେ ରହିଲି। କଟକ ଆଶ୍ରମ ଛାଡ଼ିଲେ ମୋର ସ୍ଥାନ ଆଉ ନାହିଁ। ଆଶ୍ରମ ହେଲା ମୋର ସବୁ। କିନ୍ତୁ ଅନ୍ୟ କାହାରି ଅବସ୍ଥା ତାହା ନୁହେଁ। ଅନ୍ୟାନ୍ୟମାନେ ଘରକୁ ଯିବା ଆସିବା କରନ୍ତି। କଟକ କୌଣସି କାର୍ଯ୍ୟୋପଲକ୍ଷରେ ଆସିଲେ ଅବଶ୍ୟ ଆଶ୍ରମରେ ରହନ୍ତି। ଆଶ୍ରମକୁ ସେମାନେ ସେମାନଙ୍କ କର୍ମମୟ ଜୀବନର ମୂଳଭିତ୍ତି କରି ଦେଖୁ ନାହାନ୍ତି। ଦେଶର ରାଜନୀତି ଚର୍ଚ୍ଚା କରିବା ସେମାନଙ୍କ ଜୀବନର ଲକ୍ଷ୍ୟ ହେଲେ ମଧ୍ୟ ସେମାନଙ୍କର ଘର ପରିବାର ପ୍ରଭୃତି ଆହୁରି ଅନେକ ବିଷୟ ଚିନ୍ତା କରିବାର ଅଛି। ସେହିସବୁ କାର୍ଯ୍ୟ ଓ ବିଷୟ ଚିନ୍ତା ଜୀବନର ଏକମାତ୍ର ମୁଖ୍ୟ କର୍ମ ନ ହେଲେ ମଧ୍ୟ ତାହାରି ଉପରେ ସେମାନଙ୍କ ଭବିଷ୍ୟତ ଜୀବନ ନିର୍ଭର କରୁଛି। ସଂସାରର ସମସ୍ତ ସମ୍ବନ୍ଧ ଛିଣ୍ଡାଇ ଦେଇ ଦେଶରେ ଗୋଟିଏ ରାଜନୈତିକ ଅନୁଷ୍ଠାନ ଭିତରେ ସଙ୍ଘବଦ୍ଧ ହୋଇ ରହି ଜୀବନ ଯାପନ କରିବାର

କଳ୍ପନା କାହାରି ନାହିଁ। ରାଜନୈତିକ କୋଳାହଳରୁ ଦୂର ହୋଇ ପାରିବାରିକ ଶାନ୍ତି ସୁଖରେ ଜୀବନ ଅତିବାହିତ କରିବାର ଆକାଂକ୍ଷା ପୂର୍ଣ୍ଣମାତ୍ରାରେ ଅନ୍ୟ କର୍ମୀମାନଙ୍କଠାରେ ବିଦ୍ୟମାନ। କିନ୍ତୁ ମୋର କଥା ଏକାବେଳକେ ସ୍ୱତନ୍ତ୍ର। ମୋତେ ଏହି ଆଶ୍ରମରେ ପଡ଼ି ରହି କାର୍ଯ୍ୟ କରିବାକୁ ହେବ। I have burnt my boat in the world । ମୁଁ ସଂସାରର ସମସ୍ତ ସମ୍ବନ୍ଧ ଛିଣ୍ଡାଇ ଦେଇଛି। ଦେଶର ରାଜନୈତିକ ମୁକ୍ତି ପାଇଁ ମୁଁ ନିଜକୁ ସଂପୂର୍ଣ୍ଣ ରୂପରେ ବଳି ଦେଇଛି। ରାଜନୈତିକ କର୍ମ କରି ଏହି କର୍ମରେ ନିଜ ଜୀବନକୁ ବିଲୀନ କରିଦେବା ମୋର ଏକମାତ୍ର ଲକ୍ଷ୍ୟ। ଏହା ଛଡ଼ା ଅନ୍ୟ ଚିନ୍ତା ମୋ ମନରେ ନାହିଁ। କଟକ ସ୍ୱରାଜ୍ୟ ଆଶ୍ରମ ମୋର କର୍ମମୟ ଜୀବନର କେନ୍ଦ୍ର। ଏଣୁ ଏହାର ଆର୍ଥିକ ଅବସ୍ଥା ଦୂର କରିବା ପାଇଁ ମୁଁ ପ୍ରଥମେ ମନପ୍ରାଣ ଢାଳି ଦେଲି। କଟକ ସହରରୁ ସ୍ଥାୟୀ ଚାନ୍ଦାର ପରିମାଣ ଅନେକ ଅଂଶରେ ବୃଦ୍ଧି ପାଇଲା।

କଟକ ଜିଲ୍ଲା ଜଗତସିଂହପୁରରେ ଅଳକାଶ୍ରମ ସ୍ଥାପିତ ହୋଇଛି। ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଓ ଭାଗିରଥି ମହାପାତ୍ର ପ୍ରମୁଖ କଟକ ଜିଲ୍ଲାର ମୁଖ୍ୟ କର୍ମୀମାନେ ଅଳକାଶ୍ରମ ପାଇଁ ମନ ପ୍ରାଣ ଢାଳି ଦେଇ ଅଛନ୍ତି। ସେମାନେ ଅଳକାଶ୍ରମକୁ .ଓଡ଼ିଶାରେ ଗୋଟିଏ ମହାନ୍ ଅନୁଷ୍ଠାନ ରୂପେ ଗଢ଼ିବାର କଳ୍ପନା କରୁଛନ୍ତି। କଟକ ସ୍ୱରାଜ୍ୟ ଆଶ୍ରମକୁ କେନ୍ଦ୍ର କରି କଟକ ଜିଲ୍ଲାରେ ସମସ୍ତ ପ୍ରକାର ପ୍ରଗତିଶୀଳ ରାଜନୈତିକ ଚର୍ଚ୍ଚା କରିବା ପାଇଁ କାହାରି ମନ ନାହିଁ। ପଣ୍ଡିତ ଗୋପବନ୍ଧୁ ଦାସ ବର୍ତ୍ତମାନ ଜେଲରେ। ଓଡ଼ିଶାର କଂଗ୍ରେସ କର୍ମୀମାନେ ଯୁଦ୍ଧକ୍ଳାନ୍ତ ସୈନିକ ରଣକ୍ଷେତ୍ରକୁ ଘରକୁ ଫେରିଗଲା ପରି ସମସ୍ତେ ଘରକୁ ଫେରୁଛନ୍ତି। ସେମାନଙ୍କୁ ଏକାଠି ରଖି ଭବିଷ୍ୟତ ପାଇଁ ସଂଗଠନ କରିବ କିଏ ? ୧୯୨୧ ମସିହାର ଅସହଯୋଗ ଆନ୍ଦୋଳନ ସମୟରେ ଅନେକ ଯୁବକ ଦେଶ ପାଇଁ ବହୁତ ତ୍ୟାଗ ସ୍ୱୀକାର କରିଛନ୍ତି। ବହୁତ ଯୁବକ ସେମାନଙ୍କ ଭବିଷ୍ୟତ୍ ଜୀବନର ଉନ୍ନତି ଚିରକାଳ ପାଇଁ ହରାଇ ଅଛନ୍ତି। ସେମାନଙ୍କ ସେହି ତ୍ୟାଗର ଆଜି କୌଣସି ମହତ୍ତ୍ୱ ନାହିଁ। ସେମାନଙ୍କ ତ୍ୟାଗର କୌଣସି ଇତିବୃତ୍ତି ନାହିଁ। ଘରେ କିମ୍ବା ସମାଜରେ ସେମାନଙ୍କର କୌଣସି ସ୍ଥାନ ନାହିଁ। ତଥାପି ଓଡ଼ିଶାର କଟକ, ପୁରୀ, ବାଲେଶ୍ୱର ଓ ଗଞ୍ଜାମ ଜିଲ୍ଲାରେ ଯେ କେତେଜଣ ମୁଖ୍ୟ ଜଣା ଶୁଣା କର୍ମୀ ରହିଲେ ସେମାନେ ସମସ୍ତେ ଏକାଠି ହୋଇଥିଲେ, ଓଡ଼ିଶାର ରାଜନୈତିକ ଜୀବନ ଅନ୍ୟ ଆକାର ଧାରଣ କରିଥାନ୍ତା। ସମସ୍ତେ ସାରା ଓଡ଼ିଶାର ପ୍ରଶ୍ନକୁ ଏକ ମନ ଏକ ପ୍ରାଣର ସହିତ ଚିନ୍ତା କରି କାର୍ଯ୍ୟ କରି ପାରି ଥାନ୍ତେ। ଓଡ଼ିଶାରେ ଏହି ଏକପ୍ରାଣ ଓ ଏକନିଷ୍ଠ ହୋଇ ଦଳବଦ୍ଧ ସମୂହ ଜୀବନ ଯାପନ ପାଇଁ ପ୍ରୟାସ କରାହେଲା ନାହିଁ। କଟକରେ ମଧ୍ୟ ଏହି ଭାବ ରହିଲା ନାହିଁ। ଅଳକାଶ୍ରମ ସମସ୍ତଙ୍କୁ ଟାଣି ପାରିଲା ନାହିଁ। କଟକ ସ୍ୱରାଜ୍ୟ ଆଶ୍ରମ ଓ ଅଳକାଶ୍ରମ

ଉଭୟ ଅନୁଷ୍ଠାନ ପାଇଁ କଟକ ସହର ଭିତରୁ ମଧ୍ୟ ଚାନ୍ଦା ସଂଗୃହୀତ ହେଲା। ଅଳକାଶ୍ରମ ସହିତ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଓ ବାବୁ ଭାଗୀରଥି ମହାପାତ୍ର ସଂପୃକ୍ତ ଥିବାରୁ ଅନେକ ଅଳକାଶ୍ରମକୁ ସାହାଯ୍ୟ କରିବାପାଇଁ ମନ ବଳାଇବା ସ୍ୱାଭାବିକ ହୋଇ ପଡ଼ିଲା। କଟକର ସ୍ୱରାଜ୍ୟ ଆଶ୍ରମ କଟକ ଜିଲ୍ଲା କଂଗ୍ରେସ କମିଟିର ଅଫିସ ଘର ଆକାର ଧାରଣ କଲା।

୧୯୨୧ ମସିହାରେ ନୂଆ ହୋଇ ଓଡ଼ିଶାରେ କଂଗ୍ରେସ ଗଢ଼ା ହେଲା। ଏହି କଂଗ୍ରେସ କମିଟି ଓ କଂଗ୍ରେସ କାର୍ଯ୍ୟ ଓଡ଼ିଶାରେ କେତେଗୁଡ଼ିଏ ଜଣା ଅଜଣା କର୍ମୀଙ୍କୁ ଟାଣି ଆଣି ଏକାଠି କରିଥିଲା। ସେତେବେଳେ ସମସ୍ତେ ଅସହଯୋଗ ଲଢ଼ାଇର କାର୍ଯ୍ୟକ୍ରମ ଛଡ଼ା ଅନ୍ୟ ଚିନ୍ତା କରୁ ନ ଥିଲେ। ଅନ୍ୟ ଅନୁଷ୍ଠାନ ଗଢ଼ି ରାଜନୈତିକ ଜୀବନ ବିକାଶ କରିବା ପାଇଁ ସ୍ୱତନ୍ତ୍ର କଳ୍ପନା କାହାରି ମନକୁ ସ୍ପର୍ଶ କରି ନାହିଁ। କିନ୍ତୁ ୧୯୨୩ ମସିହା ବେଳକୁ ସେ ଅବସ୍ଥା ଆଉ ରହୁ ନାହିଁ। ସମସ୍ତଙ୍କ ମନରେ ଗୋଟିଏ ଚିନ୍ତାର ଧାରା ପ୍ରବାହିତ ହେଉ ନାହିଁ। ଅସହଯୋଗ ଆନ୍ଦୋଳନ ଶିଥିଳ ହୋଇ ଯିବାରୁ ପ୍ରତ୍ୟେକେ ପ୍ରତ୍ୟେକର ସୁବିଧା ଦେଖୁଛନ୍ତି। କର୍ମୀମାନେ ଛତ୍ରଭଙ୍ଗ ଦେଉଛନ୍ତି। ଜଣା ଶୁଣା କର୍ମୀମାନେ ନିଜର ରାଜନୈତିକ ଜୀବନ ପାଇଁ ଭିନ୍ନ ଭିନ୍ନ ଅନୁଷ୍ଠାନ ଗଢ଼ିବାର କଳ୍ପନା କରୁଛନ୍ତି। ଅଜଣା ଅଶୁଣା କର୍ମୀମାନଙ୍କ ମଧ୍ୟରୁ ଯେଉଁମାନଙ୍କର ଟିକିଏ ଦେଶ କାର୍ଯ୍ୟ ପ୍ରତି ମମତା ରହିଛି ସେମାନେ ନିଜ ନିଜର ସୁବିଧା ଅନୁସାରେ ନୂଆ ହୋଇ ଗଢ଼ା ଯାଉଥିବା ଅନୁଷ୍ଠାନକୁ ଆଦରି ନେଉ ଅଛନ୍ତି।

ମହାତ୍ମା ଗାନ୍ଧୀଙ୍କର କାରା ଗମନର ଏକବର୍ଷ ପୂର୍ଣ୍ଣ ହେବାକୁ ବସିଲା। ମହାତ୍ମାଜୀ ୧୯୨୨ ମସିହା ମାର୍ଚ୍ଚ ତା ୧୮ ରିଖ ଦିନ ଜେଲଦଣ୍ଡ ପାଇଥିଲେ। ଏଥିପାଇଁ ମାସର ତା ୧୮ ରିଖ ଦିବସକୁ ଗୋଟିଏ ବିଶିଷ୍ଟ ଦିବସ ରୂପେ ପାଳିବାକୁ ନିଖିଳ ଭାରତ କଂଗ୍ରେସ କମିଟି ସ୍ଥିର କରିଥାନ୍ତି। ତଦନୁସାରେ ଏହି ତା ୧୮ ରିଖ ଦିନ ଅନେକ କର୍ମୀ ଉପବାସ ବ୍ରତ ପାଳନ କରନ୍ତି। ସେଦିନ ସୂତାକଟାରେ ସମସ୍ତ ସମୟ ଅତିବାହିତ ହୁଏ। କେଉଁଠାରେ ସେଦିନ ଖଦଡ଼ ବୁଲେଇ ବିକ୍ରି କରା ହୁଏ। କେଉଁଠାରେ ଖଦଡ଼ର ପ୍ରଦର୍ଶନୀ ବସେ। ନାନା ଭାବରେ ସେ ଦିନଟି ଭାରତର ପ୍ରତ୍ୟେକ ପ୍ରଦେଶରେ ପ୍ରତିପାଳିତ ହୁଏ। ଓଡ଼ିଶାରେ ଆମ୍ଭେମାନେ କେତେଜଣ ଉପବାସ ରହି ଖଦଡ଼ କାର୍ଯ୍ୟରେ ନିଜ ନିଜକୁ ନିୟୋଜିତ କରୁ। କିନ୍ତୁ ୧୯୨୩ ମାର୍ଚ୍ଚ ତା ୧୮ ରିଖ ଦିନକୁ ଏକବର୍ଷ ପୂର୍ଣ୍ଣ ହେବ। ଏହି ଦିନ ଭାରତର ସର୍ବତ୍ର ହରତାଳ କରାହୋଇ ସଭା ହେବ। କଟକରେ ହରତାଳ କରିବା ଭାର କଟକ ଜିଲ୍ଲା କଂଗ୍ରେସ କମିଟି ମୋ ଉପରେ ନ୍ୟସ୍ତ କଲେ। ଏହି ହରତାଳ ପାଇଁ ମତେ କଠିନ ପରିଶ୍ରମ କରିବାକୁ ହୋଇଥିଲା। କଟକରେ ହରତାଳ ଦିନ ଖଣ୍ଡିଏ ଗାଡ଼ି ଜବରଦସ୍ତି ଅଟକାଇବା

ଦୋଷ ଲଗାଇ ପୋଲିସ ମୋ ନାମରେ ଗୋଟିଏ କେଶ୍ କଲେ। ତହିଁରେ ମୋତେ ତିନି ସପ୍ତାହ ପାଇଁ ଜେଲ ଶାସ୍ତି ମିଳିଲା। କଟକ ଆଶ୍ରମ ଛାଡ଼ି କଟକ ଜେଲରେ ମୁଁ ରହିଲି।

ମହାତ୍ମାଜୀଙ୍କ 'ୟଙ୍ଗ୍ ଇଣ୍ଡିଆ' ନାମରେ ଖଣ୍ଡିଏ ସାପ୍ତାହିକ ଇଂରେଜୀ ପତ୍ର ଅଛି। ମହାତ୍ମାଜୀ ଜେଲ ଯିବା ପରେ ମଧ୍ୟ ସେହି କାଗଜ ବାହାରୁଛି। ମହାତ୍ମାଜୀ ଜେଲ ଯିବାର ବାର୍ଷିକ ଉତ୍ସବ ଉପଲକ୍ଷରେ 'ୟଙ୍ଗ ଇଣ୍ଡିୟା' କାଗଜର ଗୋଟିଏ ବିଶେଷ ସଂଖ୍ୟା ବାହାରିଛି। ସେହି ବିଶେଷ ସଂଖ୍ୟାରେ ଦେଶର ବିଶିଷ୍ଟ ଜନନାୟକମାନଙ୍କର ମହାତ୍ମାଜୀଙ୍କ ନୀତିର ବିଶିଷ୍ଟତାକୁ ଉଲ୍ଲେଖ କରି ଗୋଟିଏ ଗୋଟିଏ ବିଶିଷ୍ଟ ଲେଖା ପ୍ରକାଶ ପାଇଛି। ଦୀନବନ୍ଧୁ ଆଣ୍ଡ୍ରୁଜ ସାହେବ ମଧ୍ୟ ଗୋଟିଏ ଲେଖା ଦେଇଛନ୍ତି। ଆଣ୍ଡ୍ରୁଜ ସାହେବଙ୍କ ନିକଟକୁ ମୁଁ ଖଣ୍ଡିଏ ପତ୍ର ଜେଲରୁ ଖଲାସ ହୋଇ ଲେଖିଥିଲି। ମୋର ଏହି ପତ୍ର ଖଣ୍ଡିକୁ ମୂଳଭିତ୍ତି କରି ମହାତ୍ମାଜୀଙ୍କ ଜେଲ ଗମନର ବାର୍ଷିକ ଦିବସ ଉପଲକ୍ଷରେ ଆଣ୍ଡ୍ରୁଜ ସାହେବ ତାହାଙ୍କର ବାଣୀ ଏ ଦେଶକୁ ଶୁଣାଇ ଅଛନ୍ତି। ମୋର ପତ୍ର ଖଣ୍ଡି ହୋଇଛି ତାହାଙ୍କର ବାଣୀ। ଏହାକୁ ଦେଇ ସେ ମୋର ପରିଚୟ ମଧ୍ୟ 'ୟଙ୍ଗ ଇଣ୍ଡିଆ'ରେ ଦେଇ ଅଛନ୍ତି। ଉକ୍ତ ପତ୍ର ଖଣ୍ଡି ମୁଁ ଏଠାରେ ଉଲ୍ଲେଖ କରୁଛି। ଏହି ସଂବାଦ ମୁଁ ଜେଲରେ ପାଇଲି। ଏହା ପାଠ କରି ମୋର ଆନନ୍ଦ ଓ ଉତ୍ସାହର ସୀମା ରହିଲା ନାହିଁ।

It is now more than a month that I have been released from the jail. I wish to write something to you, but do not know how to express myself. I got your letter, which you sent me as a reply to what I wrote to you from the central jail. I thank you for this. Your letter has been a great inspiration to me. After coming out from the jail. I have read it more than once and read it even now to my friends.

From the jail I could not write any more to you. I was treated as an ordinary rigorous prisoner and was given ten seers of wheat to grind. In the last eight months of my jail life I had to undergo much suffering and difficulty. I was put in solitary cell four times, that is, four months I had to pass in cell. Cunny-clothing and hand-cuffs were imposed on me on reports of not being able to do the

full task. The jail superintendent was always trying to humiliate us and we were protesting, for which also I had to undergo various jail punishments. This is all about my jail life.

In the jail I could not feel the absence of Bapujee, but since the day I have been out I feel it very keenly day by day. The general depression that I find now in the whole country, sometimes takes away the patience of the Congress workers and the split in the Congress camp has been a source of much pain and anxiety to us. Here I fell Bapuji's absence very keenly. At such times I read your letter and derive much inspiration to explain the spirit of non-co-operation to my friends.

But one thing I want to say is that the ideal for which you are struggling so hard is only possible for a free India. To day we are slaves. Our people are groaning under tyranny and oppression. They starve under the circumstances. How is it possible for us to think of any higher ideal than the means of securing safety to the life and property of our people? I must say that you do not know how our people suffer, I mean the people of Orissa. The Jail has opened my eyes to see the things more vividly. You know the terrible suffering of my own people, after the riot long ago in Orissa. You have experienced the sufferings in the Punjab. These affairs simply boil our blood. These things sometimes make me forget the spirit of non-violence. But in the present state of things, it is the only possible way for us. Moreover it is the only way that will be consistent with the spirit of our national idea, and this is the only way that will build a nation. Without suffering man cannot achieve any success even in his individual life, how then will we be able to relise our national ideal if we avoid suffering? There must

be suffering, obstacles, and difficulties on our way to freedom will be of no worth. With this hope we work to-day. The depression and split do not affect us. I pray, you kindly cheer us and inspire us. Kindly accept my love.

ଏହିଠାରେ କନିକା ଗୋଳମାଳ ପାଇଁ ଧରା ହୋଇ ଜେଲ ପାଇଥିବା କେତେକ କର୍ମୀଙ୍କ ସହିତ ଦେଖା ହେଲା । ମୁଁ ଜେଲରେ ଥିବା ସମୟରେ କନିକା ଗୋଳମାଳ ଘଟିଛି । କନିକାରେ ଯାହା ସବୁ ଘଟିଛି ତାହାକୁ ପଞ୍ଜାବ ଅତ୍ୟାଚାର ସଂଗେ ତୁଳନା କରି ବର୍ଣ୍ଣନା କରିବାର ମୁଁ ଶୁଣିଛି । ସେ ସବୁ ଶୁଣି ମୁଁ ନୀରବ ରହେ । କିନ୍ତୁ ଜେଲ ଭିତରେ ଅତ୍ୟାଚାର ଭୋଗିଥିବା ଲୋକଙ୍କ ମୁଖରୁ ମୁଁ ଯାହା ଶୁଣିବାକୁ ପାଇଲି ତହିଁରେ ଧୈର୍ଯ୍ୟ ଧରି ରହିବା ଅସମ୍ଭବ । ଜେଲ ଭିତରେ ଥାଇ ମୁଁ ନିଶ୍ଚୟ କଲି ଯେ ଏହାର କିଛି ପ୍ରତିକାର କରିବାକୁ ହେବ । ଦେଶରେ ଏତେବଡ଼ ଘଟଣା ଘଟିଗଲା, ତହିଁର ପ୍ରତିବାଦ କରି ପଦେ କଥା କହିବାକୁ କାହାର ସାହସ ପାଇଲା ନାହିଁ । ଆଜି ଆମ୍ଭେମାନେ ଦେଶର ସ୍ୱାଧୀନତା ପାଇଁ ଲଢ଼ାଇ କରୁଥାଉଁ । ଅଥଚ କନିକା ଅତ୍ୟାଚାର ଶୁଣି ନୀରବ ରହିବା କଦାପି ଉଚିତ ନୁହେଁ । ନୀରବ ରହିଲେ କର୍ତ୍ତବ୍ୟରେ ତ୍ରୁଟି ହେବ । ଦେଶରେ ଘଟୁଥିବା ଘଟଣାମାନ ପ୍ରତି ଅବହେଳା ଦେଖାଇଲେ ବୋଲି ବୁଝିବାକୁ ହେବ । କନିକା ଅତ୍ୟାଚାର ପାଇଁ କୌଣସି ପ୍ରତିବିଧାନ କରିବାକୁ ଆମ୍ଭେମାନେ ସମର୍ଥ ହେବା ସହଜ ହୋଇ ନ ପାରେ । ପରାଧୀନ ଦେଶରେ ଅନ୍ୟାୟ ଅତ୍ୟାଚାର ପାଇଁ ନ୍ୟାୟ ଆଶା ରଖିବା ସବୁଠାରୁ ନିର୍ବୋଧତାର କଥା । ଆମ୍ଭେମାନେ ନ୍ୟାୟ ପାଇବାର ହକଦାର ନୋହୁଁ ତାହା ନୁହେଁ, କିନ୍ତୁ ଦେଶର ପ୍ରତ୍ୟେକ ପ୍ରଶ୍ନ ପ୍ରତି ଯଦି ନ୍ୟାୟ ବିଚାର କରା ଯାଉଥାନ୍ତା ତେବେ ପରାଧୀନତାର ଚିହ୍ନ ଲିଭିଯାନ୍ତା । ସ୍ୱରାଜ୍ୟ ପାଇଁ ତଥା ଦେଶକୁ ସ୍ୱାଧୀନ କରାଇବା ପାଇଁ ଲଢ଼ାଇ କରିବାର ପ୍ରଶ୍ନ ଏପରି ତୀବ୍ର ଆକାର ଧାରଣ କରନ୍ତା ନାହିଁ । କେବଳ ଅନ୍ୟାୟ ଦେଖିଲେ ନ୍ୟାୟ ପାଇବା ଆଶାରେ ପ୍ରତିକାର କରିବାକୁ ଚେଷ୍ଟା କରିବ ଏବଂ ନ୍ୟାୟ ପାଇବାର ଆଶା ନ ଥିଲେ ନୀରବ ରହିବ, ଏପରି ଭାବ ମଧ୍ୟ ଦେଶ ତଥା ସମାଜ ପକ୍ଷରେ ମଙ୍ଗଳଜନକ ନୁହେଁ । ସରକାରଙ୍କର ଶାସନ ନୀତି କିପରି ଚାଲିଛି, ତାହାରି ପରିଣାମରେ ଦେଶରେ ଘଟୁଥିବା ଯାବତୀୟ ଘଟଣାମାନ ପ୍ରତି ଦେଶବାସୀ ଜାଗ୍ରତ ଥାଇ ପ୍ରତିବାଦ କରୁଅଛନ୍ତି, ଏତକ ପାଟିତୁଣ୍ଡ କରି ନ ଜଣାଇଲେ ଦେଶପାଇଁ ଆମ୍ଭେମାନେ ଜୀବନ ଦାନ କରିବାକୁ ପ୍ରସ୍ତୁତ ଏହାର ପ୍ରମାଣ ଆଉ କଣ ରହିଲା ? ଏହିପରି ଅନେକ ଭାବନା ମୋ ମନରେ ଖେଳିଲା । କନିକା ଅତ୍ୟାଚାର ସଂବାଦକୁ ଦବାଇଦେବା ସରକାରଙ୍କର ଇଚ୍ଛା । ମୁଁ ମନେ ମନେ ନିଶ୍ଚୟ କଲି, କିଛି କରି ନ ପାରିଲେ, ମୁଁ ଏହି ସଂବାଦକୁ ଦେଶରେ ପ୍ରଚାର କରି ବୁଲିବି ।

ଏହା ନିଶ୍ଚୟ କରି ମୁଁ ଏକୋଇଶ ଦିନ ଜେଲ ଜୀବନ କଟାଇ ଜେଲରୁ ବାହାରିଲି। କଟକରେ କିଛି ସୁବିଧା ଦେଖିଲି ନାହିଁ। କନିକାରେ ଅତ୍ୟାଚାର ଚାଲିଥିବା ସମୟରେ କଟକରେ ଗୋଟିଏ ପ୍ରତିବାଦ ସଭା ମଧ୍ୟ ହୋଇ ପାରି ନାହିଁ। ପଣ୍ଡିତ ଗୋପବନ୍ଧୁ ଦାସ ଏହି କନିକା ହେତୁ ଦୁଇ ବର୍ଷ ଜେଲ ଯାଇଛନ୍ତି। ବାବୁ ହରେକୃଷ୍ଣ ମହତାବ ଜେଲରେ। ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀଙ୍କ ଛଡ଼ା ଅନ୍ୟ କେହି ଆଉ କଟକ ଜିଲ୍ଲାର କଂଗ୍ରେସ କର୍ମୀ ନାହାନ୍ତି। ଓଡ଼ିଶାରେ କିଛି କରି ପାରିବାର ସୁବିଧା ପାଇଲି ନାହିଁ। ଏହି ଘଟଣା ପ୍ରତି ଭାରତର ଦୃଷ୍ଟି ଆକର୍ଷଣ କରାଇବା ମୋର ଇଚ୍ଛା। ଏହି ଇଚ୍ଛାରେ ମୁଁ ବମ୍ବେଇ ଗଲି। ସ୍ୱାସ୍ଥ୍ୟର ପରିବର୍ତ୍ତନ ପାଇଁ ଓଡ଼ିଶା ଛାଡ଼ିବାକୁ ଆଗରୁ ମନ ଥାଏ। ବର୍ତ୍ତମାନ କନିକା ପ୍ରଶ୍ନ ସେହି ଇଚ୍ଛାକୁ ଫଳବତୀ କରାଇଲା। ଅବଶେଷରେ ୧୯୨୩ ମସିହା ମଇ ମାସରେ ମୁଁ ବମ୍ବେଇ ଯାତ୍ରା କଲି।

ବମ୍ବେଇ ଯିବା ପୂର୍ବରୁ ଆଉ ଗୋଟିଏ କାର୍ଯ୍ୟଭାର ମୁଁ ବହନ କରିଥାଏ। ବାବୁ ଭୁବନାନନ୍ଦ ଦାସ ମୋର ଜଣେ ଅତି ପ୍ରିୟ ଓ ହିତାକାଂକ୍ଷୀ ବନ୍ଧୁ। ସେ ବମ୍ବେଇରେ ଇଲେକ୍ଟ୍ରିକ୍ ଇଂଜିନିଅରିଙ୍ଗର ଗୋଟିଏ ବ୍ୟବସାୟ କ୍ଷେତ୍ର ସଂଗଠନ କରି ସେଠାରେ ବ୍ୟବସାୟ କରନ୍ତି। ମାତ୍ର କଂଗ୍ରେସରେ କାଉନ୍ସିଲ ପ୍ରବେଶର ପ୍ରଶ୍ନ ଉଠିଲା ଦିନୁ ସେ ରାଜନୀତି କ୍ଷେତ୍ରରେ ପ୍ରବେଶ କରିବାକୁ ମନ ବଳାଇ ଅଛନ୍ତି। ଏହି ଉଦ୍ଦେଶ୍ୟରେ ସେ ଓଡ଼ିଶାକୁ ଆସିଛନ୍ତି। ଓଡ଼ିଶାରେ ସେ ଯେ କେତେ ଦିନ ରହିଲେ, ସେଥି ମଧ୍ୟରେ ସେ ଥରେ ସତ୍ୟବାଦୀର ଜାତୀୟ ବିଦ୍ୟାଳୟ ଦେଖିବାକୁ ଯାଇଥିଲେ। ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ଅବସ୍ଥା ଅର୍ଥ ଅଭାବରୁ ଶୋଚନୀୟ ହୋଇ ପଡ଼ିଛି। ଭୁବନାନନ୍ଦ ବାବୁଙ୍କୁ ସତ୍ୟବାଦୀରେ ପାଇ ବମ୍ବେଇରୁ କିଛି ଅର୍ଥ ସାହାଯ୍ୟ କରାଇ ଦେବା ପାଇଁ ସ୍କୁଲର ଶିକ୍ଷକ ବାବୁ କୃପାସିନ୍ଧୁ ମିଶ୍ର ଓ ଆଚାର୍ଯ୍ୟ ହରିହର ଦାସ ପ୍ରଭୃତି ତାହାଙ୍କୁ ଅନୁରୋଧ କଲେ। ସେତେବେଳେ ଭୁବନାନନ୍ଦ ବାବୁ କହିଲେ, "ବମ୍ବେଇରୁ ଟଙ୍କା ଆଣିବାକୁ ହେଲେ, ଗୋବିନ୍ଦଜୀ ଏଠାରେ ଥିବା ସ୍ଥଳେ ଆପଣମାନେ ମୋତେ କାହିଁକି ଅନୁରୋଧ କରୁଛନ୍ତି।" ଭୁବନାନନ୍ଦ ବାବୁଙ୍କ ଠାରୁ ଏପରି ଇଙ୍ଗିତ ପାଇ ସେମାନେ ମୋତେ ଧରିଛନ୍ତି। ମୁଁ ଚେଷ୍ଟା କରିବି ବୋଲି ପ୍ରତିଶ୍ରୁତି ଦେଇଛି। ଏହି କାର୍ଯ୍ୟ ପାଇଁ ସତ୍ୟବାଦୀ କାର୍ଯ୍ୟନିର୍ବାହିକା ସମିତିର ମୋତେ ଜଣେ ସଭ୍ୟ ରୂପେ ଗ୍ରହଣ କରି ଚାନ୍ଦା ଆଦାୟ କରିବା ପାଇଁ କ୍ଷମତା ମଧ୍ୟ ଦିଆ ଯାଇଛି। ମୋର ବମ୍ବେଇ ଯିବାର ଏହା ମଧ୍ୟ ଅନ୍ୟତମ କାରଣ।

ସୁତରାଂ ବମ୍ବେଇରେ ଉପସ୍ଥିତ ହୋଇ ପ୍ରଥମେ ସତ୍ୟବାଦୀ ସ୍କୁଲ ପାଇଁ କିଛି ଅର୍ଥ ସଂଗ୍ରହ କରିବାର ଯୋଗାଡ଼ କଲି। ମୋର ବନ୍ଧୁମାନେ ପରାମର୍ଶ ଦେଲେ ଯେ ବମ୍ବେଇ କଂଗ୍ରେସ କମିଟି ନିକଟରେ ବହୁତ ଟଙ୍କା ଗଚ୍ଛିତ ଅଛି। ୧୯୨୧ ଅସହଯୋଗ ଆନ୍ଦୋଳନ ବେଳେ ତିଳକ ସ୍ୱରାଜ୍ୟ ପାଣ୍ଠିପାଇଁ ବମ୍ବେଇର କଂଗ୍ରେସ

କମିଟି ଷାଠିଏ ଲକ୍ଷ ଟଙ୍କା ଚାନ୍ଦା ଉଠାଇ ଅଛନ୍ତି। ସୁତରାଂ କଂଗ୍ରେସ କମିଟିକୁ ଧରିଲେ ଅକ୍ଳେଶରେ କିଛି ଟଙ୍କା ମିଳି ପାରିବ। ବମ୍ବେଇର କଂଗ୍ରେସ ଭିତରେ ଥିବା କେତେକ ବନ୍ଧୁଙ୍କ ସହିତ ପରାମର୍ଶ କଲି। ସେମାନଙ୍କ ପରାମର୍ଶ ଅନୁସାରେ ନିଖିଳ ଭାରତ କଂଗ୍ରେସ କମିଟିର କାର୍ଯ୍ୟକାରୀ ସମିତିର ସୁପାରିଶ ଆଣିବା ପାଇଁ ଚେଷ୍ଟା କଲି। ଶ୍ରୀଯୁକ୍ତ ରାଜଗୋପାଳଚାରି ଓ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଉକ୍ତ ସମିତିର ସଭ୍ୟ। ଏମାନଙ୍କ ସହିତ ମୋର ଘନିଷ୍ଠତା ରହିଛି। ଏହି ଦୁଇଜଣଙ୍କୁ ଧରିବାରୁ ସମିତିର ସୁପାରିଶରେ ବମ୍ବେଇ କଂଗ୍ରେସ କମିଟିରୁ ପାଞ୍ଚ ହଜାର ଟଙ୍କା ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ପାଇଁ ସାହାଯ୍ୟ ମିଳିଲା। ଏହାପରେ କନିକା ସମସ୍ୟା। ଏଥିପାଇଁ ବମ୍ବେଇର ମାରବାଡ଼ି ବିଦ୍ୟାଳୟ ହଲରେ ଗୋଟିଏ ସାଧାରଣ ସଭା କରାଇଲି। ବମ୍ବେଇର ବିଖ୍ୟାତ ସମାଜ-ସଂସ୍କାରକ ଶ୍ରୀଯୁକ୍ତ ନ୍ୟାଟେରଞ୍ଜନ ସଭାପତି ହେଲେ। ବମ୍ବେଇର ପ୍ରତ୍ୟେକ ପ୍ରସିଦ୍ଧ ସଂବାଦପତ୍ରର ପ୍ରତିନିଧିମାନଙ୍କୁ ସଭାରେ ଉପସ୍ଥିତ ହେବାପାଇଁ ଯୋଗାଡ଼ କରା ହେଲା। 'ଓଡ଼ିଶାର ଦୁଃଖ ଦୁର୍ଦ୍ଦଶା' (Sorrows and Suffering) ବିଷୟରେ ମୁଁ ଗୋଟିଏ ବକ୍ତୃତା ଦେଲି। ସେଥିରେ କନିକାରେ ଘଟିଥିବା ଜୁଲୁମର ବିଶଦ ବିବରଣୀ ବର୍ଣ୍ଣନା କରିଥିଲି। ମୋର ସେହି ବକ୍ତୃତାଟି ବମ୍ବେଇରେ ଇଂରେଜୀ, ଗୁଜରାଟୀ, ମରହଟ୍ଟୀ ଆଦି ପ୍ରତ୍ୟେକ କାଗଜରେ ପ୍ରକାଶ ପାଇଲା। ବମ୍ବେଇ କାଗଜରୁ ଭାରତର ବିଭିନ୍ନ ପ୍ରଦେଶର କାଗଜମାନ ସାରାଂଶ ପ୍ରକାଶ କଲେ। କନିକା ବିଷୟରେ ତଦନ୍ତ କରି ଗୋଟିଏ ରିପୋର୍ଟ ଛପାଇ ଦେଶର ପ୍ରଚାର କରିବା ପାଇଁ ମୋର କେତେକ ବନ୍ଧୁ ପରାମର୍ଶ ଦେଲେ। ଏହି କାର୍ଯ୍ୟ ପାଇଁ ଆବଶ୍ୟକ ଅର୍ଥ ଦରକାର ହେଲେ ସାହାଯ୍ୟ ମିଳିବାର ଯୋଗାଡ଼ କରି ମୁଁ ଓଡ଼ିଶାକୁ ଫେରିଲି। କନିକା ବିଷୟ ତଦନ୍ତ ହୋଇ କିପରି ଗୋଟିଏ ରିପୋର୍ଟ ଛପା ହେବ ବର୍ତ୍ତମାନ ମୋର ଏହି ଚିନ୍ତା।

ଦେଶବନ୍ଧୁ ଚିତ୍ତରଂଜନ ଦାସ କଂଗ୍ରେସର ବିଦ୍ରୋହଚରଣ କରି ସ୍ୱରାଜ୍ୟଦଳ ଗଠନ କରୁଅଛନ୍ତି। ପଣ୍ଡିତ ମୋତିଲାଲ ତାହାଙ୍କର ସାଥି। ଏହି ଉଭୟ ଜନନାୟକ କଂଗ୍ରେସର ନିର୍ଦ୍ଧାରଣ ସହିତ ସହଯୋଗ କରୁନାହାନ୍ତି। ଲାଲା ଲଜପତରାୟ ଲେଖୁଅଛନ୍ତି ଯେ, ଦାସ ଓ ନେହେରୁଙ୍କୁ ବାଦ ଦେଲେ କଂଗ୍ରେସର କାର୍ଯ୍ୟକ୍ରମରେ କୌଣସି ମୂଲ୍ୟ ନାହିଁ। ଏହି ଦୁଇ ନେତାଙ୍କ ସହିତ କୌଣସି ପ୍ରକାର ଗୋଟାଏ ମିଳାମିଶା କରିବାପାଇଁ ଏହ୍ଲାବାଦଠାରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ହୋଇ ଉଦ୍ୟମ କରାହୋଇଛି। କିନ୍ତୁ କୌଣସି ପ୍ରକାରେ ମିଳାମିଶା ହୋଇପାରୁ ନାହିଁ। ଦିନକୁ ଦିନ ସ୍ୱରାଜ୍ୟ ଦଳରେ ଭିନ୍ନ ଭିନ୍ନ ପ୍ରଦେଶରୁ ଭିନ୍ନ ଭିନ୍ନ ବିଶିଷ୍ଟ ଲୋକେ ଯୋଗ ଦେଉଛନ୍ତି। ଦେଶରେ କଂଗ୍ରେସ କାର୍ଯ୍ୟ ଶିଥିଳ ହୋଇ ଯାଉଛି। ଏଥିପାଇଁ ପୁଣି ବମ୍ବେଇଠାରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ହୋଇ କାଉନ୍‌ସିଲ୍

ପ୍ରବେଶ ପ୍ରଶ୍ନକୁ ଗ୍ରହଣ କରି କଂଗ୍ରେସର ମୂଳ ଅସହଯୋଗ ପ୍ରସ୍ତାବରେ ସଂଶୋଧନ କରାହୋଇଛି। ଏହି ସଂଶୋଧନ ପ୍ରସ୍ତାବ ଆଣି ମିଳାମିଶାର ସମାଧାନ ଯେଉଁମାନେ କରିଛନ୍ତି ସେମାନେ କାର୍ଯ୍ୟକାରୀ କମିଟିର ଭାର ଗ୍ରହଣ କରିଛନ୍ତି। ବମ୍ବେଇରେ ଏହିପରି ଯେ Compromise resolution ହେଲା, ତାହାକୁ ଅଧିକାଂଶ ପ୍ରଦେଶର କଂଗ୍ରେସ କମିଟିମାନ ଗ୍ରହଣ କରୁନାହାନ୍ତି। କଂଗ୍ରେସର ବାର୍ଷିକ ଅଧିବେଶନରେ ଯେଉଁ ନୀତି ଗୃହୀତ ହୋଇଛି, ତହିଁରେ ସଂଶୋଧନ ଅବା ପରିବର୍ତ୍ତନ କରିବାପାଇଁ ନିଖିଳ ଭାରତ କଂଗ୍ରେସ କମିଟିର ସୀମାବହିର୍ଭୂତ କାର୍ଯ୍ୟ ବୋଲି ଅନ୍ୟାନ୍ୟ କଂଗ୍ରେସ ନେତାମାନେ ମତାମତ ବ୍ୟକ୍ତ କରୁଅଛନ୍ତି। ଏହିପରି ଭାବରେ କଂଗ୍ରେସରେ ଦିନକୁ ଦିନ ମତାନ୍ତର ସୃଷ୍ଟି ହେଉଛି। କଂଗ୍ରେସର ଲକ୍ଷପ୍ରତି ଦୃଷ୍ଟି ରହୁ ନାହିଁ। ଏହି ପରିସ୍ଥିତି ଦେଖି ବେଳେ ବେଳେ ମନରେ ଭୟଙ୍କର ଦୁଃଖ ହେଉଛି। ବମ୍ବେଇଠାରେ ନିଖିଳ ଭାରତ କଂଗ୍ରେସ କମିଟି କଂଗ୍ରେସର ମୂଳ ପ୍ରସ୍ତାବରେ ଯେଉଁ ସଂଶୋଧନ ପ୍ରସ୍ତାବ ଗ୍ରହଣ କଲେ ତାହା କରିବାକୁ ତାହାଙ୍କର ଅଧିକାର ନାହିଁ। ଏହି ବିଷୟ ବର୍ତ୍ତମାନ ପ୍ରାଦେଶିକ କଂଗ୍ରେସ କମିଟିମାନଙ୍କର ଆଲୋଚ୍ୟ ବିଷୟ। ଆମ୍ଭର ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ମଧ ଏହି ବିଷୟ ଆଲୋଚନା କରି ମତାମତ ବ୍ୟକ୍ତ କରିବାପାଇଁ ଏକ ବୈଠକ କରାଇଲେ। ବାଲେଶ୍ୱରରେ ଏହି ବୈଠକ ବସିଲା।

ମୁଁ ବର୍ତ୍ତମାନ ବମ୍ବେଇରେ। ସ୍ୱାସ୍ଥ୍ୟଲାଭ କରିବାପାଇଁ ଟିକିଏ ବିଶ୍ରାମ ନେଉଛି। ବାଲେଶ୍ୱରଠାରେ ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ବସିବାର ନୋଟିସ ପାଇଲି। ଆଲୋଚ୍ୟ ବିଷୟ ମଧ ତହିଁରୁ ବୁଝିଲି। ଏହି ନୋଟିସ ପାଇ ସ୍ୱାସ୍ଥ୍ୟ ଲାଭ ପାଇଁ ବମ୍ବେଇରେ ଆଉ ରହିବି କଣ? କଂଗ୍ରେସର ନୀତି ଓ ନିର୍ଦ୍ଧାରଣ ଆମ୍ଭମାନଙ୍କ ଜୀବନର ମୂଳଭିତ୍ତି। ଏହାରି ଉପରେ ଆମ୍ଭମାନଙ୍କ ରାଜନୈତିକ ଜୀବନ ନିର୍ଭର କରୁଛି। ମନୁଷ୍ୟ ତାହାର ଜୀବନର ଏକ ଲକ୍ଷ୍ୟ ସ୍ଥିର କରେ। ସେହି ଲକ୍ଷ୍ୟ ସ୍ଥଳରେ ପହୁଞ୍ଚିବାପାଇଁ ଗୋଟିଏ ମାର୍ଗ ଅବଲମ୍ବନ କରେ। ସେହି ମାର୍ଗକୁ ଅନୁସରଣ କରିବାପାଇଁ ପୁଣି କୌଶଳ ଅଛି। ବମ୍ବେଇଠାରେ ନିଖିଳ ଭାରତ କଂଗ୍ରେସ କମିଟି ଯାହା ସ୍ଥିର କରିଛନ୍ତି, ତଦ୍ୱାରା ଆମ୍ଭର ମାର୍ଗରେ ବ୍ୟତିକ୍ରମ ଘଟୁଛି ଏବଂ କୌଶଳରେ ପରିବର୍ତ୍ତନ ଆଣୁଛି। ଏହିଠାରେ ରାଜନୈତିକ କ୍ଷେତ୍ରରେ ସଂଘର୍ଷଣ ଜାତ ହୁଏ। ଦେଶବନ୍ଧୁ ଦାସ ଓ ପଣ୍ଡିତ ମୋତିଲାଲ କଂଗ୍ରେସର ମାର୍ଗ ଓ କୌଶଳରେ ପରିବର୍ତ୍ତନ ଆନୟନ କରିବାକୁ ଯତ୍‌ପରୋନାସ୍ତି ଚେଷ୍ଟା କରୁଛନ୍ତି। କଂଗ୍ରେସ ତାହାଙ୍କର କୌଶଳକୁ ଗ୍ରହଣ ନ କଲା ପର୍ଯ୍ୟନ୍ତ ଦେଶରେ ସେପରି ମହତ ବ୍ୟକ୍ତିମାନେ ମଧ କିଛି କାର୍ଯ୍ୟ କରିବାକୁ ଅନୁକୂଳ ପରିସ୍ଥିତି ପାଇ ପାରୁ ନାହାନ୍ତି। କଂଗ୍ରେସ ଉପରେ ସମସ୍ତ ନିର୍ଭର କରୁଛି। ସୁତରାଂ କଂଗ୍ରେସର ନୀତି ନେଇ ଏତେ ବାଦ ବିବାଦ ଓ ଟଣା ଓଟରା। ଦେଶବନ୍ଧୁ ଚିତ୍ତରଂଜନ ଓ ପଣ୍ଡିତ ମୋତିଲାଲଜୀ କହନ୍ତି, କାଉନସିଲ

ପ୍ରବେଶ ପ୍ରସ୍ତାବଦ୍ୱାରା କଂଗ୍ରେସର ନୀତିରେ କୌଣସି ପରିବର୍ତ୍ତନ ଘଟୁ ନାହିଁ। କେବଳ କାର୍ଯ୍ୟକ୍ରମରେ ସାମାନ୍ୟ ପରିବର୍ତ୍ତନ ଘଟୁଛି। ସୁତରାଂ କଂଗ୍ରେସର ନୀତିକୁ ଯେ ଯେପରି ବୁଝୁଛନ୍ତି ସେ ସେପରି ଭାବରେ ମତାମତ ବ୍ୟକ୍ତ କରୁଅଛନ୍ତି। ସମସ୍ତେ କଂଗ୍ରେସ ଓ କଂଗ୍ରେସର ନୀତିକୁ ମୂଳ କରି ଧରିଛନ୍ତି। କାରଣ ରାଜନୈତିକ ଜୀବନ ଯାପନ କରିବାକୁ ହେଲେ କଂଗ୍ରେସ ଛଡ଼ା ଅନ୍ୟ ଗତି ନାହିଁ।

# ଅଷ୍ଟମ ପରିଚ୍ଛେଦ

## ଜାତୀୟ ପତାକା ସତ୍ୟାଗ୍ରହ

ଏଣେ ନାଗପୁରଠାରେ ଜାତୀୟ ପତାକାର ମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରଖିବା ପାଇଁ ସତ୍ୟାଗ୍ରହ ଆରମ୍ଭ ହୋଇଛି। ନାଗପୁରର ପତାକା ସତ୍ୟାଗ୍ରହ ନିଖିଳ ଭାରତର ଗୋଟିଏ ରାଜନୈତିକ ପ୍ରଶ୍ନ ହୋଇଛି। ୧୯୨୧ ମସିହା ପର୍ଯ୍ୟନ୍ତ ଭାରତର କୌଣସି ଜାତୀୟ ପତାକା ନ ଥିଲା। ୧୯୨୧ ମସିହାର ଅସହଯୋଗ ଆନ୍ଦୋଳନ ବେଳେ ମହାତ୍ମାଗାନ୍ଧୀ ଏହି ଜାତୀୟ ପତାକାର କଳ୍ପନା କରି ଏକ ସ୍ୱରୂପ ଦାନ କରିଛନ୍ତି। ସେହିଦିନୁ ତ୍ରିରଙ୍ଗଧାରୀ ପତାକା ବକ୍ଷରେ ଚରଖାର ପ୍ରତିମୂର୍ତ୍ତି ଧାରଣ କରି କଂଗ୍ରେସରେ ଜାତୀୟ ଜୀବନର ପ୍ରତୀକ ହେଉଛି। ଏହି ତିନି ରଙ୍ଗର ବ୍ୟାଖ୍ୟା ସେତେବେଳେ ଯାହା ଥିଲା ଏବେ ତାହା ବଦଳି ଯାଇଛି। ଏହାର ବିଶଦ ବିବରଣୀ ଏଠାରେ ଦେବାର କୌଣସି ଆବଶ୍ୟକତା ନାହିଁ। ଏହି ଜାତୀୟ ପତାକାକୁ ଗ୍ରହଣ କଲା ଦିନୁ ତହିଁର ଗୌରବ ବୃଦ୍ଧି କରିବା ପାଇଁ ଏପର୍ଯ୍ୟନ୍ତ ଆମ୍ଭେମାନେ କୌଣସି ତ୍ୟାଗ ସ୍ୱୀକାର କରି ନାହୁଁ। ପତାକା ନେଇ ସରକାରଙ୍କ ସହିତ ସଂଘର୍ଷଣ ଜାତ ହୋଇ ନାହିଁ। ହଠାତ୍ ନାଗପୁରଠାରେ ଏହି ପତାକା ସରକାରଙ୍କ ତୀବ୍ର ଦୃଷ୍ଟି ଆକର୍ଷଣ କରିଛି। ଏ ଜାତୀୟ ପତାକା ଧରି ଶୋଭାଯାତ୍ରା କରିବାକୁ ସରକାର ନିଷେଧ ଆଜ୍ଞା ଜାରୀ କରିଛନ୍ତି। ନାଗପୁରଠାରେ ଜାତୀୟ ପତାକା ହୋଇଛି ସରକାରଙ୍କର ବୈରୀ। ଭାରତ ବକ୍ଷରେ ଆମ୍ଭର ଜାତୀୟ ପତାକା ଅବାଧରେ ଉଡ଼ିବ କିମ୍ବା ପତାକାକୁ ଚିରଦିନ ପାଇଁ ଅବନତ କରିବାକୁ ହେବ ଏଥିରୁ ଏପରି ପ୍ରଶ୍ନ ଉଠୁଛି। କଂଗ୍ରେସ ଯେଉଁ ସ୍ୱରାଜ୍ୟ ପାଇଁ ଲଢ଼ାଇ କରୁଛି ତହିଁର ପ୍ରତୀକ ହେଉଛି ଆମ୍ଭର ପତାକା। ଏହି ପତାକାକୁ ଭାରତର ପୁର ପଲ୍ଲୀରେ ଉଡ଼ାଇବାକୁ ହେବ। ପତାକାରେ ଆମ୍ଭେ ଆମ୍ଭ ଦେଶର ସ୍ୱାଧୀନତାର ନିଦର୍ଶନ ଦେଖିବାକୁ ପାଇବୁ। ପତାକା ଯେତେଦିନ ଏ ଧରା ବକ୍ଷରେ ଉଡୁଥିବ, ସେତେଦିନ ପର୍ଯ୍ୟନ୍ତ ଆମ୍ଭର ଦେଶ ଓ ଜାତି ଜୀବିତ ଅଛି ବୋଲି ବୁଝିବାକୁ ହେବ। ଏହି ପତାକାକୁ ଅସ୍ୱୀକାର କରିବା ଅର୍ଥ ଆମ୍ଭର

ଜନ୍ମଗତ ଅଧିକାର ଅସ୍ୱୀକାର କରିବା। ପତାକାର ଗୌରବ ଓ ସମ୍ମାନକୁ ରକ୍ଷା କରିବାକୁ ହେବ। ଏଥିପାଇଁ ଆବଶ୍ୟକ ହେଲେ ପ୍ରାଣବଳି ଦେବାକୁ ହେବ। ଏହିପରି ଭାବ ସେତେବେଳେ ଅନେକଙ୍କ ହୃଦୟରେ ଜାଗି ଉଠୁଛି। ଭାରତର ବିଭିନ୍ନ ପ୍ରଦେଶରୁ ଦଳେ ଦଳେ ସ୍ୱେଚ୍ଛାସେବକ ପତାକା ସତ୍ୟାଗ୍ରହରେ ଯୋଗ ଦେବା ପାଇଁ ନାଗପୁର ଯାତ୍ରା କରୁଅଛନ୍ତି। ଗୁଜରାତ ପ୍ରଦେଶରୁ ଦଳ ଦଳ ସ୍ୱେଚ୍ଛାସେବକ ପତାକା ଧରି ପଦବ୍ରଜରେ ଯାତ୍ରା କରୁଛନ୍ତି। ଓଡ଼ିଶାରୁ ସମ୍ବଲପୁରର ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ଏଥିରେ ଯୋଗ ଦେଇ ଜେଲ ଗଲେଣି। ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟିର ବର୍ତ୍ତମାନ ଏହି ପ୍ରଶ୍ନ ମଧ ବିଚାରାଧୀନ।

ବମ୍ବେଇରେ ଥାଇ ମୁଁ ନାଗପୁର ପତାକା ସତ୍ୟାଗ୍ରହରେ ଯୋଗ ଦେବା ପାଇଁ ଭାବୁଛି। ଯଦି ତାହା କରେ ତେବେ ବମ୍ବେଇଠାରୁ ନାଗପୁର ଯିବା ଅପେକ୍ଷା ଓଡ଼ିଶାରୁ ଅନ୍ୟ କେତେଜଣ କର୍ମୀଙ୍କ ସହିତ ପଦବ୍ରଜରେ ଆସିବା ଭାରି ଭଲ ହେବ। ଏହା ଭାବି ମୁଁ ବମ୍ବେଇରୁ ବାଲେଶ୍ୱର ଆସିଲି। ପ୍ରାଦେଶିକ କଂଗ୍ରେସ କମିଟିର ବୈଠକରେ ଯୋଗ ଦେବାପାଇଁ ବାବୁ ହରେକୃଷ୍ଣ ମହତାବ ଜେଲରୁ ଖଲାସ ହୋଇଛନ୍ତି। ବାଲେଶ୍ୱର ଜିଲ୍ଲାରେ ସେ ହେଉଛନ୍ତି କଂଗ୍ରେସର ପ୍ରାଣ ପ୍ରତିଷ୍ଠାତା। ବାଲେଶ୍ୱର କାହିଁକି, ଓଡ଼ିଶାରେ କଂଗ୍ରେସ ଅନୁଷ୍ଠାନ ଗଢ଼ିବାକୁ ଯେ କେତେ ଜଣ ପ୍ରଥମେ ଜୀବନ ଉତ୍ସର୍ଗ କରିବାକୁ ଦୃଢ଼ ପ୍ରତିଜ୍ଞାବଦ୍ଧ ହୋଇଥିଲେ, ସେମାନଙ୍କ ମଧ୍ୟରୁ ବାବୁ ହରେକୃଷ୍ଣ ମହତାବ ଜଣେ। ଓଡ଼ିଶାରେ ନୂଆ ହୋଇ କଂଗ୍ରେସ ଅନୁଷ୍ଠାନ ଗଢ଼ା ହୋଇଛି। କଂଗ୍ରେସର ଅସହଯୋଗ ଆନ୍ଦୋଳନରୁ ଓଡ଼ିଶାର କଂଗ୍ରେସ କର୍ମୀମାନଙ୍କର ରାଜନୈତିକ ଜୀବନ ଆରମ୍ଭ। ଅସହଯୋଗ ନୀତିକୁ କଂଗ୍ରେସ ପୂରା ମାତ୍ରାରେ ଗ୍ରହଣ କରିଛି। ଏପରି ଅବସ୍ଥାରେ ଓଡ଼ିଶା କଂଗ୍ରେସ କର୍ମୀମାନଙ୍କର ମନୋବୃତ୍ତି ଅସହଯୋଗର ମୂଳ ନୀତିରେ। ରାଜନୈତିକ ମତବାଦର ସଂଘର୍ଷଣରେ ଆମ୍ଭମାନଙ୍କର କୌଣସି ଅଭିଜ୍ଞତା ଜନ୍ମି ନାହିଁ। ବ୍ୟକ୍ତିତ୍ୱର ବିଶିଷ୍ଟତା ଆମ୍ଭମାନଙ୍କୁ ଯେତେ ଆକୃଷ୍ଟ କରୁଛି ରାଜନୈତିକ ମତବାଦର ବିଶିଷ୍ଟତା ସେତେ ପ୍ରଭାବିତ କରି ପାରୁ ନାହିଁ। ଏଣୁ ମହାତ୍ମାଗାନ୍ଧୀଙ୍କ ଦ୍ୱାରା ପ୍ରଚାରିତ ଅସହଯୋଗ ନୀତିରେ ପରିବର୍ତ୍ତନ ଆମ୍ଭମାନଙ୍କ ସେତେବେଳେର ମନୋବୃତ୍ତିରେ କଳ୍ପନାତୀତ। ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ବସିଲା। କାଉନ୍‌ସିଲ ପ୍ରବେଶ ପ୍ରଶ୍ନର ଆଲୋଚନା ମଧ ପଡ଼ି ନାହିଁ। ବମ୍ବେଇ ସାଲିସ ପ୍ରସ୍ତାବକୁ ନାପସନ୍ଦ କରା ହେଲା। କଂଗ୍ରେସର ବାର୍ଷିକ ଅଧିବେଶନରେ ଯାହା ସ୍ଥିର ହୋଇଛି ତହିଁରେ ପରିବର୍ତ୍ତନ ଆନୟନ କରିବାର ଅଧିକାର ନିଖିଳ ଭାରତ କଂଗ୍ରେସ କମିଟିର ନାହିଁ ବୋଲି ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ମତାମତ ବ୍ୟକ୍ତ କଲେ। ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟି ନିଖିଳ ଭାରତ କଂଗ୍ରେସ କମିଟିର ବିଦ୍ରୋହ କଲା। ଏକୋଇଶଟି ପ୍ରାଦେଶିକ କଂଗ୍ରେସ କମିଟି ମଧ୍ୟରୁ ଅଧିକାଂଶ ବମ୍ବେଇ ପ୍ରସ୍ତାବର ବିରୁଦ୍ଧାଚରଣ କଲେ। ଏହିଠାରେ ମୁଁ ଉପଲବ୍ଧି କଲି ଯେ,

ନିଖିଳ ଭାରତ କଂଗ୍ରେସ କମିଟି ସଭ୍ୟ ସଂଖ୍ୟାର ଅଧିକାଂଶ ଅସହଯୋଗ ମୂଳ ନୀତିର ସପକ୍ଷ ମତାବଲମ୍ବୀ ହେବା ଦରକାର। କଂଗ୍ରେସ କମିଟିର ଲାଗି ଲାଗି ତିନୋଟି ବୈଠକରେ ଯୋଗ ନ ଦେଲେ, ଯେ କୌଣସି ସଭ୍ୟଙ୍କର ନାମ କଟିଯାଏ। ସେ ପୁଣି ଆଉ ଥରେ ବଛା ହୋଇ ପାରନ୍ତି କିମ୍ବା ତାହାଙ୍କ ସ୍ଥାନରେ ଅନ୍ୟ ଜଣଙ୍କୁ ବଛା ଯାଇ ପାରେ। ଏହି ନିୟମ ଅନୁସାରେ ଓଡ଼ିଶାର କେତୋଟି ସଭ୍ୟଙ୍କର ନାମ କଟି ଯାଇଥିବାରୁ ଜଣଙ୍କ ପରିବର୍ତ୍ତେ ମୁଁ ଏଥର ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟରୂପେ ବଛା ହେଲି।

ପ୍ରାଦେଶିକ କଂଗ୍ରେସ କମିଟିର ଏହି ବୈଠକରେ ଆଉ ଗୋଟିଏ ଘଟଣା ଘଟିଲା ଯାହାର ପରିଣାମ ଆମ୍ଭମାନଙ୍କ ଜୀବନର ବିଶେଷ ଭାବରେ ପ୍ରଭାବିତ କରିଛି। ନିଖିଳ ଭାରତ କଂଗ୍ରେସ କମିଟି ଖଦଡ଼ କାର୍ଯ୍ୟପାଇଁ ପ୍ରାୟ ଷାଠିଏ ହଜାର ଟଙ୍କା ଉତ୍କଳ କଂଗ୍ରେସ କମିଟିକୁ ସାହାଯ୍ୟ କରିଥିଲେ। ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଏହାର ସମ୍ପୂର୍ଣ୍ଣ ଭାର ଗ୍ରହଣ କରି କାର୍ଯ୍ୟ ପରିଚାଳନା କରୁଥିଲେ। ସେ ଏହି ବାଲେଶ୍ୱରଠାରେ କାର୍ଯ୍ୟ ଚଳାଇ ପାରିବେ ନାହିଁ କହି ପ୍ରାଦେଶିକ କଂଗ୍ରେସ କମିଟି ନିକଟରେ ଇସ୍ତଫା ଦାଖଲ କଲେ ଏବଂ କମିଟି ମଧ୍ୟ ତାହା ଗ୍ରହଣ କଲା। ଟଙ୍କା ଆସି କିପରି ଖର୍ଚ୍ଚ ହୋଇଛି ତହିଁର ବିସ୍ତୃତ ବିବରଣୀ ସେ ଦାଖଲ କରି ନାହାନ୍ତି। ହିସାବପତ୍ର ପରୀକ୍ଷିତ ହୋଇ ନାହିଁ। ଶୁଣାଯାଉଛି ଯେ ଗୋପବନ୍ଧୁଙ୍କୁ ସରଳ ବିଶ୍ୱାସୀ ଦେଖି ଅନେକ କର୍ମୀ ତାହାଙ୍କୁ ଠକାଇ ନେଇଛନ୍ତି। ମହାବୀର ସିଂହ ନାମକ ଜଣେ ସମ୍ବଲପୁରବାସୀ ଛ ହଜାର ଟଂକା ତୂଳା କିଣିବା ବାହାନାରେ ନେଇ ଯାଇଛନ୍ତି। ସେ କେତେ ଟଙ୍କାର ତୂଳା କିଣିଛନ୍ତି, କିପରି ତୂଳା, କେଉଁଠାରେ ରଖିଛନ୍ତି ଇତ୍ୟାଦି ବିଷୟ କିଛି ନ ଜାଣି ନ ଶୁଣି ଗୋପବାବୁ ମହାବୀର ସିଂହଙ୍କୁ ଛ ହଜାର ଟଙ୍କା ଦେଇ ଅଛନ୍ତି। କଟକ ସହର ନିକଟ ପରମହଂସ ନାମକ ସ୍ଥାନର ଖଇରାତ୍ ଅଲି ନାମକ ଜନୈକ ମୁସଲମାନ କର୍ମୀ କେତେ ଟଙ୍କା କଣ ଗୋଳମାଳ କରିଛି। ଏହିପରି ନାନାକଥା ଶୁଣାଯାଉଛି। ମୂଳଧନ ବର୍ତ୍ତମାନ କି ଆକାରରେ କିପରି ଅଛି ତହିଁର ଅଡ଼ିଟ୍ ନ ହୋଇ, ସ୍ଥୂଳଭାବରେ ଗୋପବାବୁ ଇସ୍ତଫା ଦାଖଲ କଲେ। ଯେତେ ଟଙ୍କା ଆସିଥିଲା ସେ ସମସ୍ତ ଲୋକସାନ ହୋଇଛି ବୋଲି କହିଲେ କଦାପି ଅତ୍ୟୁକ୍ତି ହେବ ନାହିଁ। ଏହି ଲୋକସାନ୍ ଓ କ୍ଷତି ପାଇଁ ନିଖିଳ ଭାରତ କଂଗ୍ରେସ କମିଟିର କର୍ତ୍ତାମାନେ ଉତ୍କଳ ପ୍ରତି ବଡ଼ ଅବହେଳା ଦେଖାଇଲେ। ଓଡ଼ିଶାକୁ ଅନ୍ୟାନ୍ୟ ପ୍ରଦେଶ ଆଗରେ ମୁଣ୍ଡ ନୁଆଁଇବାକୁ ପଡ଼ିଲା। ମହାତ୍ମାଗାନ୍ଧୀ ମଧ୍ୟ ଏଥିପାଇଁ ଓଡ଼ିଶାର ସମସ୍ତ କଂଗ୍ରେସ କର୍ମୀମାନଙ୍କ ପ୍ରତି ଅସନ୍ତୋଷ ଭାବ ପ୍ରକାଶ କରିଛନ୍ତି। କୌଣସି କାର୍ଯ୍ୟ ବ୍ୟବସାୟ ବୁଦ୍ଧିରେ ପରିଚାଳନା କରିବାର ଶକ୍ତି ଓଡ଼ିଆଙ୍କର ନାହିଁ ବୋଲି ଅନେକ ସମୟରେ ମହାତ୍ମାଗାନ୍ଧୀ ମତାମତ ପ୍ରକାଶ କଲେ। ଏହି ଦୋଷ ଓ ତ୍ରୁଟି ପାଇଁ ପଣ୍ଡିତ ଗୋପବନ୍ଧୁ ଦାସ ମଧ୍ୟ ମହାତ୍ମାଗାନ୍ଧୀଙ୍କ ନିକଟରୁ ସମାଲୋଚନା ଶୁଣିଛନ୍ତି।

ପଣ୍ଡିତ ଗୋପବନ୍ଧୁ ଦାସଙ୍କ କାର୍ଯ୍ୟକାରୀ ଶକ୍ତି ଉପରେ ମହାତ୍ମାଜୀଙ୍କର ଆସ୍ଥା ଉଠିଯାଇଥିଲା ପରି ଜଣାଯାଇଛି। ୧୯୨୫ରେ ବାବୁ ନିରଞ୍ଜନ ପଟ୍ଟନାୟକ କଂଗ୍ରେସର କାର୍ଯ୍ୟକାରୀ କମିଟି ନିକଟକୁ ଉତ୍କଳରେ ଖଦଡ଼ କାର୍ଯ୍ୟ ସକାଶେ କିଛି ସାହାଯ୍ୟ ପାଇଁ ଲେଖିଥିଲେ। ମହାତ୍ମାଜୀ ସେତେବେଳେ ଉତ୍କଳକୁ ସାହାଯ୍ୟ ଦେବାକୁ କେବଳ ଯେ ନା-ପସନ୍ଦ କରିଥିଲେ ତାହା ନୁହେଁ, ଏଥିପାଇଁ ମଧ୍ୟ ନିରଞ୍ଜନ ବାବୁଙ୍କୁ ଖଣ୍ଡିଏ କଡ଼ା ପତ୍ର ଲେଖିଥିଲେ। ସେ ଉକ୍ତ ପତ୍ରରେ ପଣ୍ଡିତ ଗୋପବାବୁଙ୍କ ପ୍ରତି ଆକ୍ଷେପ କରି ଲେଖିଥିଲେ, "Take the case of Gopabandhu Babu. He is as pure as gold, but is hopelessly unbusiness like a man." ଅର୍ଥାତ୍, ଗୋପବନ୍ଧୁ ବାବୁଙ୍କୁ ଦେଖ, ସେ ସୁବର୍ଣ୍ଣ ପରି ପବିତ୍ର, ମାତ୍ର ସେ ଏତେ ଅକାମୀ ଲୋକ ଯେ ତାହା କହିଲେ ସରିବ ନାହିଁ। ଏହିପରି ଭାବରେ ଅନେକ ସମୟରେ ମୁଁ ମଧ୍ୟ ଗାନ୍ଧୀଙ୍କ ନିକଟରୁ ଭର୍ତ୍ସନା ଶୁଣିଛି। ମହାତ୍ମାଜୀ ଉତ୍କଳର ପ୍ରତ୍ୟେକ ମୁଖ୍ୟ କଂଗ୍ରେସ କର୍ମୀଙ୍କୁ ଏଥିପାଇଁ ଦାୟୀ କରିଛନ୍ତି। ଏହି ବିଷୟ ନେଇ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ମନରେ ମହାତ୍ମାଜୀଙ୍କ ପ୍ରତି ବିରକ୍ତିଭାବ ସ୍ଥାନ ପାଇଛି।

କଂଗ୍ରେସ ହେଉଛି ଗୋଟିଏ ସମଷ୍ଟିଗତ ଅନୁଷ୍ଠାନ। ଏହି ଅନୁଷ୍ଠାନର ଜଣାଶୁଣାରେ ଭାରପ୍ରାପ୍ତ ହୋଇ କୌଣସି ଜଣେ କର୍ମୀ କାର୍ଯ୍ୟରେ ତ୍ରୁଟି କଲେ ସେଥିପାଇଁ ନିଶ୍ଚୟ ସମସ୍ତଙ୍କୁ ସେ ଦୋଷ ମୁଣ୍ଡାଇବାକୁ ପଡ଼ିବ। ଏହି ମର୍ମରେ ମହାତ୍ମାଗାନ୍ଧୀ ପଣ୍ଡିତ ଗୋପବନ୍ଧୁଙ୍କୁ ଦୋଷ ଦେଇ ଅଛନ୍ତି ଏବଂ ଆମ୍ଭମାନଙ୍କୁ ମଧ୍ୟ ଦୋଷୀ କରିଛନ୍ତି। ଜଣଙ୍କର ଅବହେଳା ଓ ତ୍ରୁଟିପାଇଁ ଉତ୍କଳ କଂଗ୍ରେସକୁ ନିନ୍ଦା ଶୁଣିବାକୁ ପଡ଼ିଛି। ଉତ୍କଳ ପ୍ରାଦେଶିକ କଂଗ୍ରସ କମିଟି ସଭ୍ୟମାନେ ସମସ୍ତେ ତାହାଙ୍କୁ ସାହାଯ୍ୟ କରିବା ଉଚିତ୍ ଥିଲା। ସେ ଯେଉଁ କାର୍ଯ୍ୟ କରୁଅଛନ୍ତି ଏବଂ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ କିପରି ଭାବରେ କାର୍ଯ୍ୟ ସଂପାଦନ କରୁଛନ୍ତି, ସେଥିପ୍ରତି ଦୃଷ୍ଟି ନ ଦେବା ନିଶ୍ଚୟ କମିଟି ସଭ୍ୟମାନଙ୍କର ଦୋଷ। ତେବେ ଏତିକି ମୁଁ କହିପାରେ ଯେ, ଆମ୍ଭମାନଙ୍କ ମଧ୍ୟରୁ ଜଣାଶୁଣା ଯେ କେତେଜଣ ଥିଲେ, ଯେଉଁମାନେ ଉତ୍କଳର ପ୍ରତ୍ୟକ ପ୍ରଶ୍ନ ପ୍ରତି ଦୃଷ୍ଟି ରଖି କାର୍ଯ୍ୟ କରିବାର ପରିକଳ୍ପନା କରନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ଜେଲରେ। ଆମ୍ଭେମାନେ ଜେଲରେ ଥିବା ସମୟରେ ଏହି ଟଙ୍କା ଆସିଥିଲା ଏବଂ ଜେଲରୁ ବାହାରିଲା ବେଳକୁ ଏହି ଟଙ୍କା ଶେଷ ପାଇଲାଣି। ମୋର ମନେ ହୁଏ, ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ବୋଲି ତାହାଙ୍କ ଦୋଷ, ଅବହେଳା ଓ ତ୍ରୁଟିକୁ କେହି ଦେଖିଲେ ନାହିଁ। ତାହାଙ୍କ ସ୍ଥାନରେ ଅନ୍ୟ କେହି କାର୍ଯ୍ୟ କରୁଥିଲେ, ସେ ଚିରଦିନ ପାଇଁ ଦେଶର ସାଧାରଣ କର୍ମକ୍ଷେତ୍ରରୁ ବିଦାୟ ନେଇଥାନ୍ତେ। ପଣ୍ଡିତ ଗୋପବନ୍ଧୁ ଦାସ ମଧ୍ୟ ଏପରି ଏକ ଦୋଷରୁ ତ୍ରାହି ପାଇ ପାରି ଥାନ୍ତେ କି ନାହିଁ, ସେ ବିଷୟରେ ମୋର ସନ୍ଦେହ ଜାତ ହୁଏ। ଏହି ଘଟଣାଟି ମୋତେ ବିଶେଷଭାବରେ ବିଚଳିତ କରିଛି। ଟଙ୍କା କ୍ଷତି ହେଲା, ସେଥିପାଇଁ ମୁଁ ବିଚଳିତ ହୋଇ ନାହିଁ।

ଦେଶର କାର୍ଯ୍ୟରେ ଏହିପରି କେତେ କ୍ଷତି ଘଟିବ, କେତେ ଅମୂଲ୍ୟ ଜୀବନ ନଷ୍ଟ ହୋଇଯିବ। ଦେଶରେ ଜାତୀୟ ଭାବ ବିକଶିତ କରିବାପାଇଁ ଯାହା କିଛି ଉଦ୍ୟମ କରାହୋଇଅଛି, ହେଉଛି ଅବା ଭବିଷ୍ୟତରେ ହେବ, ସେ ସବୁ ହେଉଛି Experiment, ଅର୍ଥାତ୍ କର୍ମର ପରୀକ୍ଷା। ଏହି ମହାନ୍ ପରୀକ୍ଷାରେ ଦେଶର କେତେ ଅର୍ଥ ଲୋପ ପାଇଯିବ, କେତେ ଜୀବନ ବଳିଦାନ କରିବାକୁ ହେବ। ସେଥିପାଇଁ ଶୋଚନା କଲେ, ଦେଶ କଦାପି ମହାର୍ଘ ଅଭିଜ୍ଞତା (Rich experiment) ଲାଭ କରି ନ ପାରେ। ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଆମ୍ଭମାନଙ୍କଠାରୁ ସାହାଯ୍ୟ ସହଯୋଗ ପାଇ ନ ପାରିବା ଦୋଷରୁ ଉତ୍କଳ ଏପରି ଅପଯଶ ଶୁଣିଲା କିମ୍ବା ଏହା ତାହାଙ୍କର ବ୍ୟକ୍ତିଗତ ଅବହେଳା ହେତୁରୁ ଘଟିଲା, ତହିଁର କୌଣସି ସପ୍ରମାଣ ଅନୁସନ୍ଧାନ କରା ହେଲା ନାହିଁ। ଉତ୍କଳ କଂଗ୍ରେସ କମିଟି ସବୁ ଭୁଲିଗଲେ ଏହାହିଁ ଚିନ୍ତାର ବିଷୟ। ଏହି ବିଷୟ ଏବେ ମଧ୍ୟ ମୋତେ ବେଳେବେଳେ ବିଚଳିତ କରେ।

ବାଲେଶ୍ୱର ପ୍ରାଦେଶିକ କଂଗ୍ରେସ କମିଟି ଶେଷରେ ମୁଁ କଟକ ହୋଇ ସତ୍ୟବାଦୀ ଗଲି। ମୋର ଚେଷ୍ଟାରେ ସତ୍ୟବାଦୀ ସ୍କୁଲକୁ ପାଞ୍ଚ ହଜାର ଟଙ୍କା ସାହାଯ୍ୟ ମିଳିଛି। ବମ୍ବେଇରୁ ଫେରି ସତ୍ୟବାଦୀ ଯିବାର ମଧ୍ୟ କାରଣ ଅଛି। ବର୍ତ୍ତମାନ ଓଡ଼ିଶାର କୌଣସି ଗୋଟିଏ ସ୍ଥାନକୁ ମୁଁ ନିଜେ ରହିବାପାଇଁ ବାଛିବା ଦରକାର ପଡୁଛି। ଅସହଯୋଗ ଆନ୍ଦୋଳନ ବେଳେ ଏ ପ୍ରଶ୍ନ ମନକୁ ଛୁଇଁ ନାହିଁ। କିନ୍ତୁ ଆନ୍ଦୋଳନ ଦବି ଯାଇଛି, କର୍ମୀମାନେ ନିଜ ନିଜର ସୁବିଧା ଖୋଜିଲେଣି। ଏପରି ଅବସ୍ଥାରେ ଓଡ଼ିଶାରେ ରହିବାକୁ ହେଲେ ମୋତେ କେଉଁଠାରେ ରହି କାର୍ଯ୍ୟ କରିବାକୁ ପଡ଼ିବ ଏ ପ୍ରଶ୍ନ ସବୁବେଳେ ମନରେ ଉଠୁଛି। ଅସହଯୋଗ ଆନ୍ଦୋଳନ ପାଇଁ ସାବରମତୀ ଆଶ୍ରମ ଛାଡ଼ି ମୁଁ ଓଡ଼ିଶାକୁ ଆସିଛି। ଆନ୍ଦୋଳନ ଚାଲିବାର ନ ହେଲେ ପୁଣି ଆଶ୍ରମକୁ ଫେରିଯିବା ଦରକାର। କିନ୍ତୁ ଓଡ଼ିଶା ଛାଡ଼ି ବାହାରେ ରହିବାକୁ ମୋର ମନ ବଳୁ ନାହିଁ। ଏଣିକି ଯାହା କିଛି ଦେଶସେବା କରିବି, ତାହା ମୁଁ ଓଡ଼ିଶାରେ ରହି କରିବି ବୋଲି ନିଶ୍ଚୟ କରିଛି। ତେବେ ଓଡ଼ିଶାରେ ରହିବି କେଉଁଠାରେ।

ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ହେଉଛି ଓଡ଼ିଶାରେ ଏକମାତ୍ର ଜାତୀୟ ଅନୁଷ୍ଠାନ। ଏହାର ପ୍ରତିଷ୍ଠାତା ପଣ୍ଡିତ ଗୋପବନ୍ଧୁ ଦାସ ଜେଲରେ। ଜେଲରୁ ବାହାରିଲେ ସତ୍ୟବାଦୀର କର୍ମୀମାନଙ୍କୁ ମିଶାଇ ଗୋଟିଏ କିଛି ବିଶେଷ ଅନୁଷ୍ଠାନ ଗଢ଼ିବାର ସେ କଳ୍ପନା କରୁଥିବାର ଅନେକ ଅନୁମାନ କରୁଛନ୍ତି। ମୋ ମନରେ ମଧ୍ୟ ଏପରି କିଛି ଅନୁମାନ ଅଛି। ଏଣୁ ସତ୍ୟବାଦୀକୁ କେନ୍ଦ୍ର କରିବା ପାଇଁ ମୁଁ ବେଳେ ବେଳେ ଭାବୁଛି। ସତ୍ୟବାଦୀର ଶିକ୍ଷକମାନଙ୍କ ମଧ୍ୟରୁ କେହି କେହି ମଧ୍ୟ ମୋତେ ସେହି ପରାମର୍ଶ ଦେଉଅଛନ୍ତି।

୧୯୨୧ ମସିହାରେ ମୁଁ ଓଡ଼ିଶାର କର୍ମକ୍ଷେତ୍ରକୁ ଫେରିଛି। ଓଡ଼ିଶାକୁ ଆସିଲା ପରେ ବହୁତ ଲୋକଙ୍କ ସହିତ ମୋର ଘନିଷ୍ଠ ବନ୍ଧୁଭାବ ସ୍ଥାପିତ ହୋଇଛି। ସୁଖ ଦୁଃଖ

କଥା ପଢ଼ିଲା ବେଳେ ଅନେକ ମୋତେ ମୋର ପାରିବାରିକ ଜୀବନ ତଥା ଜାଣିବା ପାଇଁ ବହୁତ କଥା ପଚାରନ୍ତି। ଏହି କଥାଟି ମୋତେ ଭଲ ଲାଗେ ନାହିଁ। ମୋର ପାରିବାରିକ ଜୀବନ ଦୁଃଖପୂର୍ଣ୍ଣ ବୋଲି ଏକଥା ମୋତେ ଭଲ ଲାଗେ ନାହିଁ ତାହା ନୁହେଁ; ମୋ ମତରେ କୌଣସି କର୍ମୀର ପାରିବାରିକ କଥା ନେଇ କଥା ହେବାର କୌଣସି ମୂଲ୍ୟ ନାହିଁ। ଦେଶର କେତେ ବଡ଼ ବଡ଼ ପ୍ରଶ୍ନ ରହିଛି। ସେସବୁ ପ୍ରଶ୍ନରେ ମନ ନ ଦେଇ କର୍ମୀର ପାରିବାରିକ ବିଷୟ ଜାଣିବା ପାଇଁ ଆଗ୍ରହ ପ୍ରକାଶ କରିବା ଅନୁଚିତ। ତେଣୁ ଏପରି କଥା ମୋତେ ପ୍ରୀତିକର ବୋଧହୁଏ ନାହିଁ। ତଥାପି ବନ୍ଧୁମାନେ ମୋତେ ଏ ପ୍ରଶ୍ନ ପଚାରନ୍ତି। ବିଶେଷରେ ମୁଁ ବିବାହିତ କି ଅବିବାହିତ ଏହି ବିଷୟ ଜାଣିବାକୁ ସମସ୍ତେ ବିଶେଷ ଭାବରେ ଇଚ୍ଛୁକ। ମୁଁ ବିବାହ କରିଛି ଏବଂ ମୋର ସ୍ତ୍ରୀ ମଧ୍ୟ ଅଛି, ଏହା ଯେଉଁମାନେ ଜାଣିଛନ୍ତି ସେମାନେ ମୋତେ ନାନା କଥା କହିଛନ୍ତି। ମୁଁ ମୋର କର୍ତ୍ତବ୍ୟରେ ତ୍ରୁଟି କରୁଛି ବୋଲି ଅନେକ ମୋ ଉପରେ ଦୋଷାରୋପ କରିଛନ୍ତି। ଅନେକ ପରାମର୍ଶ ଦେଇଛନ୍ତି ଯେ; ମୁଁ ମୋର ସ୍ତ୍ରୀକୁ ଆଣି ପାଖରେ ରଖିବା ଦରକାର। ମୁଁ ଯେପରି ଦେଶସେବା କରୁଛି, ତାହାକୁ ମଧ୍ୟ ସେହି ଦେଶସେବାରେ ଖଟାଇବା ଉଚିତ।

ଏହିଠାରେ ମୁଁ ମୋର କର୍ତ୍ତବ୍ୟ ସ୍ଥିର କରି ପାରେ ନାହିଁ। ପରାଧୀନ ଦେଶରେ ଦେଶକୁ ସ୍ୱାଧୀନ କରିବା ବ୍ୟତୀତ ଅନ୍ୟ କିଛି କର୍ତ୍ତବ୍ୟ ଯୁବକର ନାହିଁ ବୋଲି ମୋର ବିଶ୍ୱାସ। ସ୍ୱାଧୀନତାର ସଂଗ୍ରାମରେ ତ ଜୀବନର ଗତି କେତେବେଳେ କେଉଁ ଆକାର ଧାରଣ କରିବ ତାହା କଳ୍ପନା କରିବା ମଧ୍ୟ ସହଜ ନୁହେଁ। ଏପରି ଅବସ୍ଥାରେ ଦେଶର ପ୍ରତ୍ୟେକ ଯୁବକ ଜୀବନକୁ ହାତ ମୁଠାରେ ଧରି ଦେଶକାର୍ଯ୍ୟ ପାଇଁ ସବୁବେଳେ ଜାଗତିଆର ରହିଲା ପରି ରହିବାକୁ ପଡ଼ିବ। ଏ ଜୀବନ ବନ୍ଦୀଶାଳାରେ କିମ୍ବା ଫାଶିକାଠରେ ଯାଇ ପାରେ, ନତୁବା ପୋଲିସର ଲାଠି ପ୍ରହାରରେ କିମ୍ବା ସଶସ୍ତ୍ର ପୋଲିସର ବନ୍ଧୁକ ମୁହଁରେ ଜୀବନ କେତେବେଳେ ଯିବ ତାହା ମଧ୍ୟ କହି ହେବ ନାହିଁ। ଏହିପରି ଭାବରେ ଦେଶର ସ୍ୱାଧୀନତା ସଂଗ୍ରାମରେ ଜୀବନକୁ ବଳିଦାନ ଦେବାପାଇଁ ସବୁବେଳେ ପ୍ରସ୍ତୁତ ନ ରହିଲେ ପରାଧୀନ ଦେଶ ସ୍ୱାଧୀନ ହେବା ସହଜ ନୁହେଁ। ଏଠାରେ ପିତା ମାତା କିମ୍ବା ସ୍ତ୍ରୀ ସନ୍ତାନ ପ୍ରତି କର୍ତ୍ତବ୍ୟର ସ୍ଥାନ ନାହିଁ। ଦେଶରେ ଲକ୍ଷ ଲକ୍ଷ ପ୍ରଜା ଅନାହାର ଓ ଅତ୍ୟାଚାରରେ ସଡ଼ି ଯାଉଛନ୍ତି। ଦେଶର ସ୍ୱାଧୀନତା ଲୋପ ପାଇଛି। ଜନସାଧାରଣ ମ୍ରିୟମାଣ। ଏଥିରେ ପରାଧୀନ ଦେଶର ଯୁବକ ବିବାହିତ ଜୀବନ ଯାପନ କରିବାକୁ କଳ୍ପନା କରିବାର ସ୍ଥାନ ନାହିଁ। ଏହିପରି ଭାବ ବହୁଦିନୁ ମୋର ଜୀବନକୁ ପ୍ରଭାବିତ କରିଛି। ସୁତରାଂ ସସ୍ତ୍ରୀକ ଜୀବନ ଯାପନ କରିବାକୁ କେହି ମୋତେ ପରାମର୍ଶ ଦେଲେ, ସେ କଥା ମୋ ଦେହରେ କଣ୍ଟା ବିନ୍ଧିଲା ପରି ଲାଗେ।

ପୁଣି ୧୯୦୬ ମସିହାରେ ମୋର ବିବାହ କ୍ରିୟା ଶେଷ ପାଇଛି। ଦଶପଲ୍ଲା ମେଳି ସମୟରେ ମୁଁ ମେଳ କରାଯାଇଥିବା ଅପରାଧରେ ଧରା ହୋଇ ପଳାଇ ଆସିଲାଦିନୁ ମୋର କୌଣସି ସମ୍ବାଦ ନ ପାଇ ମୋର ସ୍ତ୍ରୀର ମତି ବିଗିଡ଼ି ଯାଇଛି। ସେ ପାଗଳ ହୋଇଯାଇଛି। ଏ ସମ୍ବାଦ ମୁଁ ପାଇଛି। ତାହାର ପାଗଳ ସ୍ୱଭାବ ଦୂର କରିବା ପାଇଁ କିଛି ପ୍ରତିକାର କରିବା, ଡାକ୍ତର କବିରାଜଙ୍କୁ ଦେଖାଇ ଚିକିତ୍ସା କରିବା ନିହାତି ଦରକାର କେବଳ ଏତିକି ମୋ ମନକୁ ପ୍ରବେଶ କରୁଛି। ଏଥିପାଇଁ ଗଡ଼ଜାତ ଭିତରୁ ତାହାକୁ ଥରେ ଆଣି ପାଖରେ ରଖିବାର ଆବଶ୍ୟକତା ଅନୁଭବ କରୁଛି। ମୋର ବନ୍ଧୁମାନେ ମୋତେ ଏଥିପାଇଁ ପରାମର୍ଶ ଦେଉଛନ୍ତି। ବମ୍ବେଇରେ ମଧ ମୋର ବନ୍ଧୁମାନେ ମୋତେ ଏହି ପ୍ରଶ୍ନ ପଚାରି ଏହି ମର୍ମରେ ପରାମର୍ଶ ଦେଉଛନ୍ତି। ବମ୍ବେଇରେ ମୁଁ ଶେଠ ଶ୍ରୀକାନ୍ତଙ୍କ ଘରେ ରହେ। ତାହାଙ୍କୁ ମୁଁ ଧର୍ମଭାଇ ଭାବରେ ଗ୍ରହଣ କରିଛି। ସେ ଓ ତାଙ୍କର ସ୍ତ୍ରୀ ମଧ୍ୟ ମୋତେ ଏହି ପରାମର୍ଶ ଦେଇଛନ୍ତି। ଭାଇ ଶ୍ରୀକାନ୍ତ ମୋର ସମସ୍ତ ଖର୍ଚ୍ଚ ବହନ କରିବାକୁ ପ୍ରତିଶ୍ରୁତି ଦେଇଛନ୍ତି। ମୋର ବନ୍ଧୁ ବାବୁ ଭୁବନାନନ୍ଦ ଦାଶ ବମ୍ବେଇ ଠାରେ ମଧ୍ୟ ମୋତେ ଏଥିପାଇଁ ବାଧ୍ୟ କରିଛନ୍ତି। ମୁଁ ଯଦି ମୋର ସ୍ତ୍ରୀକୁ କଟକ ଆଣି କୌଣସି ଚିକିତ୍ସା କରେ ତେବେ ଖର୍ଚ୍ଚ ପାଇଁ ଦୁଇଶହ ଟଙ୍କା ସାହାଯ୍ୟ କରିବେ ବୋଲି ମଧ୍ୟ କହିଛନ୍ତି। ଏହିସବୁ କଥା ଶୁଣି ମୁଁ ବମ୍ବେଇରୁ ଫେରିଛି। ଏଥିପାଇଁ କେଉଁଠାରେ ରହିବି ସେ କଥା ଭାବୁଛି। କିନ୍ତୁ ନାଗପୁର ପତାକା ସତ୍ୟାଗ୍ରହ ଶେଷ ନ ହେବା ପର୍ଯ୍ୟନ୍ତ ଏ ପ୍ରଶ୍ନ ମୋତେ ପ୍ରଭାବିତ କରିପାରୁନାହିଁ। ପତାକା ସତ୍ୟାଗ୍ରହରେ ଯୋଗ ଦେବାପାଇଁ ମୁଁ ସ୍ଥିର କରିସାରିଛି।

ନିଖିଳ ଭାରତ କଂଗ୍ରେସ କମିଟିର ନିର୍ଦ୍ଧାରଣ ବିରୁଦ୍ଧରେ ଅଧିକାଂଶ ପ୍ରଦେଶ ବିଦ୍ରୋହାଚରଣ କଲେ। ଦେଶରେ ରାଜନୈତିକ ପରିସ୍ଥିତି ବିକଟ ଆକାର ଧାରଣ କଲା। ନାଗପୁର ପତାକା ସତ୍ୟାଗ୍ରହ ମଧ୍ୟ ଦିନକୁ ଦିନ ଗୁରୁତ୍ୱର ହୋଇ ଉଠିଲା। ଶେଠ ଯମୁନାଲାଲ ବେଜାଜ ଏହି ସତ୍ୟାଗ୍ରହରେ ଯୋଗ ଦେଇ ଜେଲ ଗଲେ। ଏପରି ଅବସ୍ଥାରେ ପୁଣି ଥରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ଡକରା ହେଲା। ଏଥର ନାଗପୁରରେ ଏହି ବୈଠକ ବସିଲା। ନାଗପୁର ବୈଠକରେ ଯୋଗ ଦେବାପାଇଁ ମୁଁ ବାହାରିଲି। ମୋର ଇଚ୍ଛା, ଏଥର ମୁଁ ପତାକା ସତ୍ୟାଗ୍ରହରେ ଯୋଗ ଦେବି। ନାଗପୁରଠାରେ ଅସହଯୋଗ ଆନ୍ଦୋଳନର ମୂଳ ନୀତିରେ ପରିବର୍ତ୍ତନବାଦୀ ଓ ଅପରିବର୍ତ୍ତନବାଦୀଙ୍କ ମଧରେ ବହୁତ ବାଦ ବିତଣ୍ଡା ହୋଇ କଂଗ୍ରେସର ଗୋଟିଏ ବିଶେଷ ଅଧିବେଶନ ବସାଇବାର ସ୍ଥିର ହେଲା। କାଉନ୍‌ସିଲ ପ୍ରବେଶ କରିବା ପଥ ସରଳ ଓ ସହଜ କରିବାପାଇଁ ସ୍ୱରାଜ୍ୟ ଦଳ ଗଠିତ ହୋଇଛି। କଂଗ୍ରେସବାଲା କେହି ଇଚ୍ଛା କଲେ କାଉନ୍‌ସିଲ ପ୍ରବେଶ କରିପାରନ୍ତି। କାଉନ୍‌ସିଲରେ ପ୍ରବେଶ କରିବାଦ୍ୱାରା କଂଗ୍ରେସର ବିରୁଦ୍ଧାଚରଣ ହେବ ନାହିଁ କେବଳ ଏତିକି କଂଗ୍ରେସ ଘୋଷଣା

କରୁ ବୋଲି ସ୍ୱରାଜ୍ୟ ଦଳ ଦାବୀ କରନ୍ତି। ପତାକା ସତ୍ୟାଗ୍ରହ ବିଷୟ ଆଲୋଚନା ପଡ଼ିଲାବେଳେ ଶ୍ରୀଯୁକ୍ତ ଦେଶବନ୍ଧୁ କହିଲେ, I want this much conceesion, allow me this little prevelege. I will then throw my heart and soul to the flag movement. କିନ୍ତୁ ନିଖିଳ ଭାରତ କଂଗ୍ରେସ କମିଟିର ଏହି ଅଧିକାର ନାହିଁ। କଂଗ୍ରେସର ବାର୍ଷିକ କିମ୍ବା ଶେଷ ଅଧିବେଶନରେ ଏହି କଥା ବିଚାର କରାଯାଇପାରେ। ତେଣୁ କଂଗ୍ରେସର ବିଶେଷ ଅଧିବେଶନ ବସିବାର ସ୍ଥିର ହେଉଛି।

ଶ୍ରୀଯୁକ୍ତ ବଲ୍ଲଭ ଭାଇ ପଟେଲ ଓ ବିଠଲ ଭାଇ ପଟେଲ ଦୁଇ ଭାଇ। ଦୁହିଁଙ୍କ ଭିତରେ ରାଜନୈତିକ ମତବାଦ ରହିଛି। ବଲ୍ଲଭ ଭାଇ ପଟେଲ ଅପରିବର୍ତ୍ତନବାଦୀ ଏବଂ ବିଠଲ ଭାଇ ପଟେଲ ପରିବର୍ତ୍ତନାବାଦୀ। କିନ୍ତୁ ନାଗପୁର ପତାକା ସତ୍ୟାଗ୍ରହରେ ଏହି ଦୁଇଭାଇ ମିଳିମିଶି କାର୍ଯ୍ୟ କରି ଅଛନ୍ତି। ନାଗପୁରଠାରେ ନିଖିଳ ଭାରତ କଂଗ୍ରେସ କମିଟି ବୈଠକ ଶେଷ ହେଲା। ଏହି ଦୁଇଭାଇ ମିଶି ସରକାରଙ୍କ ସହିତ ଏକ ସମାଧାନ ପ୍ରସ୍ତାବ ଆଣିଲେ। ଯେଉଁ ରାସ୍ତାରେ ଜାତୀୟ ପତାକା ଉଡ଼ାଇ ଯିବାକୁ ସରକାର ନିଷେଧାଜ୍ଞା ଜାରୀ କରିବାରୁ ସତ୍ୟାଗ୍ରହ ଆରମ୍ଭ ହୋଇଛି, ହଜାର ହଜାର ସତ୍ୟାଗ୍ରହୀ ଜେଲ ଭୋଗୁଛନ୍ତି, ସେହି ରାସ୍ତାରେ ଜାତୀୟ ପତାକା ଉଡ଼ାଇ ଶୋଭାଯାତ୍ରା କରିବା ପାଇଁ ସରକାର ଅନୁମତି ଦେବେ। ଥରେ ମାତ୍ର କଂଗ୍ରେସର କର୍ମୀଗଣ ଜାତୀୟ ପତାକା ନେଇ ଶୋଭାଯାତ୍ରା କରିବେ। ଆଉ ସେହି ବାଟରେ ସରକାରଙ୍କ ବିନାନୁମତିରେ ଜାତୀୟ ପତାକା ଉଡ଼ାଇ ଶୋଭାଯାତ୍ରା କରିବେ ନାହିଁ। ସରକାର ଏତିକି ସ୍ୱୀକାର କରିନେଲେ ସତ୍ୟାଗ୍ରହ ଲଢ଼ାଇ କଂଗ୍ରେସ ଉଠାଇ ନେବ। ସରକାର ପତାକା ସତ୍ୟାଗ୍ରହରେ ବନ୍ଦୀ ହୋଇଥିବା ସମସ୍ତ କଏଦୀଙ୍କୁ ଛାଡ଼ିଦେବେ। ଏହିପରି ମର୍ମରେ ଚୁକ୍ତି ହେଲା। ସରକାର ତାହା ମଧ୍ୟ ସ୍ୱୀକାର କଲେ। ନାଗପୁର ପତାକା ସତ୍ୟାଗ୍ରହର ଏହିଠାରେ ପୂର୍ଣ୍ଣାହୁତି ହେଲା। ବନ୍ଦୀମାନେ ଜେଲରୁ ମୁକ୍ତି ପାଇଲେ। ଜାତୀୟ ପତାକାର ସମ୍ମାନ ଅକ୍ଷୁର୍ଣ୍ଣ ରହିଲା। ଯେଉଁ ଜାତୀୟ ପତାକା ସରକାରଙ୍କ ଦୃଷ୍ଟିରେ ବିଦ୍ରୋହର ଚିହ୍ନ ସ୍ୱରୂପ ଦେଖା ଯାଉଥିଲା, ତାହାକୁ ସରକାର ସ୍ପଷ୍ଟତଃ ସ୍ୱୀକାର କଲେ। ସରକାର ଆମର ପତାକାକୁ ସ୍ୱୀକାର କଲେ କେବଳ ତାହା ନୁହେଁ, ତାହାଙ୍କ ବିରୁଦ୍ଧରେ କଂଗ୍ରେସ ଯେଉଁ ଶାନ୍ତିପୂର୍ଣ୍ଣ ବିଦ୍ରୋହ ସୃଷ୍ଟି କରୁଛି ତାହାକୁ ମଧ୍ୟ ସ୍ୱୀକାର କଲେ ବୋଲି ବୁଝିବାକୁ ହେବ। ପତାକା ହେଉଛି ଲଢ଼ାଇର ଚିହ୍ନ। ଶତ୍ରୁ ପତାକାକୁ ସ୍ୱୀକାର ନ କରିବା ପର୍ଯ୍ୟନ୍ତ ପତାକାର କୌଣସି ମହତ୍ତ୍ୱ ନାହିଁ। ପ୍ରତ୍ୟେକ ଦେଶ ତଥା ଜାତିର ପତାକା ଅଛି। ପତାକା ହେଉଛି ଜାତୀୟ ଜୀବନର ଆଧାର। ପତାକା ନ ରହିଲେ ଦେଶ ତଥା ଜାତି ଜୀବିତ ରହି ନ ପାରେ। କୌଣସି ଦେଶ ତଥା ଜାତିର ବିଶିଷ୍ଟତାକୁ ସ୍ୱୀକାର କରି ତାହାପ୍ରତି ଭକ୍ତି ସମ୍ମାନ ଦେଖାଇବାକୁ ହେଲେ ସେହି ଦେଶ ତଥା ଜାତିର ପତାକାକୁ ସ୍ୱୀକାର କରି ଉକ୍ତି

ସମ୍ମାନ ଦେଖାଇବାକୁ ପଡ଼େ। କୌଣସି ଦେଶର ପତାକାକୁ ଅବମାନନା କଲେ ଲଢ଼ାଇ ଆରମ୍ଭ ହୋଇଯାଏ। ପତାକା ପ୍ରତି ଯଥୋପଯୁକ୍ତ ସମ୍ମାନ ଦେଖାଇ ତାହାକୁ ସ୍ୱୀକାର କଲେ ଲଢ଼ାଇ ନିବୃତ୍ତ ହୁଏ। ନାଗ ପୁରଠାରେ ଯାହା ହେଲା ତାହା ଏହି ସତ୍ୟର ଆଭାସ ମାତ୍ର। ମୁଁ ଅନ୍ତତଃ ଏହାକୁ ଏପରି ଭାବରେ ବୁଝିଲି। ଦେଶର ସ୍ୱାଧୀନତା ପାଇଁ ସରକାରଙ୍କ ବିରୁଦ୍ଧରେ ଲଢ଼ାଇ କରିବାକୁ ନୂତନ ଶକ୍ତି ଆମ୍ଭେମାନେ ଏହିଠାରେ ଲାଭ କଲୁ ବୋଲି ମୁଁ କହିପାରେ।

ସେ ଯାହା ହେଉ ନାଗପୁରରୁ ମୁଁ କଟକ ଫେରିଲି। ମୋର ସ୍ତ୍ରୀକୁ ଅଣାଇ ଚିକିତ୍ସା କରାଇବାକୁ ହେଲେ କଟକ ସବୁ ବିଷୟରେ ସୁବିଧାଜନକ ବୋଧ ହେଲା। କଟକ ଉଗରପଡ଼ାରେ ମାସକୁ ଚାରିଟଙ୍କାରେ ଖଣ୍ଡିଏ ଘର ଭଡ଼ାନେଲି। ଦଶପଲ୍ଲାରୁ ମୋର ସ୍ତ୍ରୀକୁ ଅଣାଇ ସେଠାରେ ରହିଲି। ପଣ୍ଡିତ ଗୋପବନ୍ଧୁ ଜେଲରୁ ବାହାରିଲେ ତାହାଙ୍କ ସହିତ ପରାମର୍ଶ କରି ଭବିଷ୍ୟତ୍ କର୍ମପନ୍ଥା ବାଛିବାର ସ୍ଥିର କଲି। ବମ୍ବେଇରୁ ଶେଠ ଶ୍ରୀକାନ୍ତ ମୋର ଖର୍ଚ୍ଚପାଇଁ ମାସକୁ ପଚାଶଟଙ୍କା କରି ସାହାଯ୍ୟ କଲେ। ବମ୍ବେଇର କେତେକ ବନ୍ଧୁ ମିଶି ମୋତେ ଏକହଜାର ଟଙ୍କା, ଗୋଟିଏ ଘଡ଼ି ଓ ଗୋଟିଏ ଫାଉଣ୍ଟେନ୍‌ପେନ୍ ଉପହାର ଦେଇଥାନ୍ତି। ଏହି ଟଙ୍କା ମୋର ବ୍ୟକ୍ତିଗତ ଖର୍ଚ୍ଚପାଇଁ ମୋତେ ଭେଟି ମିଳିଥାଏ। ସୁତରାଂ ଅର୍ଥପାଇଁ ମୋତେ ଚିନ୍ତା କରିବାକୁ ପଡ଼ିନାହିଁ। ମୋର ସ୍ତ୍ରୀକୁ ଭଲ କରାଇ ଦେଶ କାର୍ଯ୍ୟରେ ଲଗାଇବା ମୋର ବର୍ତ୍ତମାନ ଏକମାତ୍ର ଚିନ୍ତା।

ଦିଲ୍ଲୀରେ କଂଗ୍ରେସର ବିଶେଷ ଅଧିବେଶନର ବୈଠକ ବସିଲା। ଆଲିଭାଇ ଦୁହେଁ ଜେଲରୁ ଖଲାସ ହୋଇ ଏହି ଦିଲ୍ଲୀ ବୈଠକରେ ଯୋଗ ଦେଲେ। ମହାତ୍ମାଗାନ୍ଧୀ ଏହି ଆଲିଭାଇ ଦୁହିଁଙ୍କୁ ସାଥିକରି ପ୍ରଥମରୁ ଅସହଯୋଗ କଳ୍ପନା କରିଥିଲେ। ବର୍ତ୍ତମାନ ଏହି ଦୁଇ ଭାଇ ଉପସ୍ଥିତ। ଦିଲ୍ଲୀ ବୈଠକରେ କାଉନ୍‌ସିଲ ପ୍ରବେଶର ପ୍ରଶ୍ନ ବିଚାର ପଡ଼ିଲା ବେଳେ ଏହାର ସମାଧାନ କିପରି ହେବ ତହିଁର ଦାୟିତ୍ୱ ଆଲିଭାଇ ଦୁହିଁଙ୍କ ଉପରେ ଛାଡ଼ିଦେଇ ଶ୍ରୀଯୁକ୍ତ ରାଜଗୋପାଳଚାରୀ କରଛଡ଼ା ଦେଲେ। ଗୟା କଂଗ୍ରେସଠାରୁ ଏ ପର୍ଯ୍ୟନ୍ତ ଶ୍ରୀଯୁକ୍ତ ରାଜଗୋପାଳଚାରୀ ଗାନ୍ଧିନୀତି ପରିଚାଳନା ଦାୟିତ୍ୱ ମୁଣ୍ଡାଇ ଥିଲେ। ଶ୍ରୀଯୁକ୍ତ ଦାସ ଓ ପଣ୍ଡିତ ନେହେରୁଙ୍କ ସହିତ କାଉନ୍‌ସିଲ ପ୍ରବେଶ ବିରୁଦ୍ଧରେ ଏପର୍ଯ୍ୟନ୍ତ ଶ୍ରୀଯୁକ୍ତ ରାଜଗୋପାଳଚାରୀ ପ୍ରତିବାଦ କରି ଆସିଛନ୍ତି। ଗୋଡ଼ା ଅସହଯୋଗ ବାହୀମାନଙ୍କର ସେ ହୋଇଛନ୍ତି ଅଗ୍ରଗାମୀ ନେତା। ମହାତ୍ମାଗାନ୍ଧୀଙ୍କ ଅନୁପସ୍ଥିତିରେ ଅସହଯୋଗ ନୀତିକୁ ତାଙ୍କପରି ଅନ୍ୟ କେହି ବୁଝି ପରିଚାଳନା କରିବାକୁ ଅଧିକ ସମର୍ଥ ଥିଲାପରି ଦେଖାଯାଉ ନଥିଲେ। ତାହାଙ୍କର କଥାବାର୍ତ୍ତା ଓ ରୂପରେଖ ଦେଖିଲେ ଅବିକଳ ଗାନ୍ଧୀଙ୍କ ପରି ବୋଧ ହୁଏ। କଂଗ୍ରେସର ରାଜନୈତିକ ମତବାଦରେ ତାହାଙ୍କର ବୁଦ୍ଧି ସବୁବେଳେ ତୀକ୍ଷ୍ଣ। ବିରୁଦ୍ଧବାଦକୁ ଖଣ୍ଡନ କରିବାରେ ତାହାଙ୍କର ଭାଷା ସବୁବେଳେ ବଡ଼ ପ୍ରାଞ୍ଜଳ, ସହଜ ଓ ସରଳ; ଏବଂ ତାହାଙ୍କର ଯୁକ୍ତି ଅକାଟ୍ୟ। ଏହିସବୁ

କାରଣରୁ ଶ୍ରୀଯୁକ୍ତ ଦେଶବନ୍ଧୁ ଦାସ ଓ ପଣ୍ଡିତ ନେହେରୁଙ୍କ ସଦୃଶ ମହାନ୍ ବ୍ୟକ୍ତିମାନେ କଂଗ୍ରେସ ମୂଳ ନୀତିରେ ଅତି ସାମାନ୍ୟ ମାତ୍ର ପରିବର୍ତ୍ତନ ଆଣିବାର ଚେଷ୍ଟାରେ ଯଶସ୍ୱୀ ହୋଇ ପାରି ନାହାନ୍ତି ବୋଲି କୁହାଯାଇ ପାରେ। ଶ୍ରୀଯୁକ୍ତ ରାଜଗୋପାଳଚାରୀଙ୍କ କଥା ଓ ଯୁକ୍ତି ଆମମାନଙ୍କୁ ଯେପରି ପ୍ରଭାବିତ କରେ, ଅନ୍ୟ କାହାରି କଥା ସେତେ ପ୍ରଭାବିତ କରିପାରେ ନାହିଁ। ସୁତରାଂ ରାଜଗୋପାଳଚାରୀଙ୍କୁ ଗୋଡ଼ା ଅସହଯୋଗୀମାନେ ପରିଚାଳକ ରୂପେ ଦେଖୁଛନ୍ତି। କିନ୍ତୁ ଶ୍ରୀଯୁକ୍ତ ଦାସ ଓ ପଣ୍ଡିତ ନେହେରୁଙ୍କ ସଦୃଶ ବ୍ୟକ୍ତିମାନଙ୍କ ମତ ବିପକ୍ଷରେ ଅନ୍ତରାଳ ହୋଇ ଠିଆ ହେବା କଦାପି ପ୍ରୀତିକର ନୁହେଁ। ଶ୍ରୀଯୁକ୍ତ ରାଜଗୋପାଳଚାରୀ ନିଜ ଇଚ୍ଛା ବିରୁଦ୍ଧରେ ଏହି ଅପ୍ରୀତିକର କାର୍ଯ୍ୟର ଦାୟିତ୍ୱ ମୁଣ୍ଡାଇବାକୁ ବାଧ ହୋଇଥିଲେ। ଘଟଣାଚକ୍ର ତାହାଙ୍କୁ ସେହି ଅବସ୍ଥାକୁ ଟାଣି ନେଇଥିଲା। କିନ୍ତୁ ଆଜିକାଲି ମୁହେଁ ଜେଲରୁ ଖଲାସ ହେବାପରେ, ଏହି ଦାୟିତ୍ୱ ସେ ଆଉ ଗ୍ରହଣ କଲେ ନାହିଁ। ଦିଲ୍ଲୀର ବିଶେଷ ଅଧିବେଶନରେ ମଉଲାନା ମହମ୍ମଦ ଆଲି ଘୋଷଣା କଲେ ଯେ, ମହାତ୍ମାଗାନ୍ଧୀ କାଉନ୍‌ସିଲ ପ୍ରବେଶ କରିବାକୁ ନିଶ୍ଚୟ ଅନୁମତି ଦେଇଥାନ୍ତେ। ମହାତ୍ମାଗାନ୍ଧୀଙ୍କ କଥା ସେ ଯେତେଦୂର ଜାଣନ୍ତି, ତହିଁରେ ସେ କହିପାରନ୍ତି ଯେ ଦେଶର ବର୍ତ୍ତମାନ ପରିସ୍ଥିତିରେ କାଉନ୍‌ସିଲ ପ୍ରବେଶ କରିବାକୁ ଇଚ୍ଛା କରୁଥିବା କଂଗ୍ରେସବାଲାଙ୍କୁ ସେ ନିଶ୍ଚୟ ଅନୁମତି ଦେଇଥାନ୍ତେ। ଏହି ମର୍ମରେ ସେ ଗୋଟିଏ ବାର୍ତ୍ତା ମହାତ୍ମାଜୀଙ୍କ ନିକଟରୁ ପାଇଛନ୍ତି। ଗୋଟିଏ ଉଡ଼ିଗଲା ଚଢ଼େଇ ତାହାଙ୍କୁ ଏହି ବାର୍ତ୍ତା ଦେଇଛି। ଏହିପରି ମର୍ମରେ ମୌଲାନା ମହମ୍ମଦ ଆଉ କଂଗ୍ରେସ ଅନୁମତି ଦେଲେ। ଦିଲ୍ଲୀରେ କାଉନ୍‌ସିଲ ପ୍ରବେଶ କରିବାକୁ କଂଗ୍ରେସ ଅନୁମତି ଦେଲା। ଅସହଯୋଗ ନୀତି କଂଗ୍ରେସ ତ୍ୟାଗ ନ କଲେ ମଧ୍ୟ କାଉନ୍‌ସିଲ ପ୍ରବେଶ ବିରୁଦ୍ଧରେ ପ୍ରଚାର କାର୍ଯ୍ୟ ସ୍ଥଗିତ ରଖିବାକୁ ନିର୍ଦ୍ଧାରିତ ହେଲା। ଯେଉଁ କଂଗ୍ରେସବାଲାମାନେ କାଉନ୍‌ସିଲ ପ୍ରବେଶ କରିପାରିବେ। କାଉନ୍‌ସିଲ ପ୍ରବେଶ ବିରୁଦ୍ଧରେ କଂଗ୍ରେସ ପ୍ରଚାର କାର୍ଯ୍ୟ ବନ୍ଦ କରିବ। ଏହି ମର୍ମରେ ଦିଲ୍ଲୀଠାରେ କଂଗ୍ରେସର ନିର୍ଦ୍ଧାରଣ ହେଲା। ଦିଲ୍ଲୀରୁ ମୁଁ ଓଡ଼ିଶାକୁ ଫେରିଲି। କଂଗ୍ରେସର ନିର୍ଦ୍ଧାରଣ ମୋ ମନରେ ଶାନ୍ତି ଦେଲା ନାହିଁ କି ମୋ ହୃଦୟରେ କୌଣସି ପ୍ରକାର ପ୍ରେରଣା ଦେଲା ନାହିଁ।

ଅସହଯୋଗ ମୂଳନୀତି ହେଉଛି ବିଦେଶୀ ସରକାରର ପ୍ରଭାବ ଓ ପ୍ରତିପତ୍ତି ଯେଉଁ କାର୍ଯ୍ୟଦ୍ୱାରା ଦେଶରେ ବୃଦ୍ଧି ପାଉଛି ସେହିସବୁକୁ ଅନିଷ୍ଟକାରୀ ମନେକରି ତହିଁରେ ଦୂରରେ ରହିବା। କାଉନ୍‌ସିଲ ହେଉଛି ଏହିପରି ଦେଶର ଗୋଟିଏ ଅନିଷ୍ଟକାରୀ ପ୍ରତିଷ୍ଠାନ। ସରକାର ଏହାକୁ ଗଢ଼ିଛନ୍ତି। ଦେଶର ଜନସାଧାରଣଙ୍କ ଇଚ୍ଛାନୁସାରେ ଏହା ଗଢ଼ାଯାଇନାହିଁ। କାଉନ୍‌ସିଲରେ ଯାହା କିଛି କ୍ଷମତା ଅବା ଅଧିକାର ଦିଆଯାଇଛି, ଏହି ଦାନରେ ଦେଶର ଦାବୀ ପ୍ରତି ଅବହେଳା ପ୍ରକଟିତ ହୋଇଛି। କାଉନ୍‌ସିଲ ସାହାଯ୍ୟରେ ଇଂରେଜ ସରକାର ଏ ଦେଶରେ ଏବଂ ଦୁନିଆ ସମ୍ମୁଖରେ ମଧ୍ୟ

ନିଜର ସୁଶାସନର ପରିଚୟ ଦେବାକୁ ଅବଲମ୍ବନ ପାଇଅଛନ୍ତି। ଏଣୁ ଅସହଯୋଗ ନୀତିର କଳ୍ପନାରେ କାଉନ୍‌ସିଲ ବର୍ଜନ ହୋଇଛି ମୁଖ୍ୟ ପ୍ରଶ୍ନ। କଂଗ୍ରେସରେ କେତେକ ମୁଷ୍ଟିମେୟ ବ୍ୟକ୍ତି କାଉନ୍‌ସିଲ ପ୍ରବେଶକୁ ମୁଖ୍ୟ ପ୍ରଶ୍ନ କରି ଧରିଛନ୍ତି। କାଉନ୍‌ସିଲ ସାହାଯ୍ୟରେ ସରକାର ଯେଉଁ ତାମସା ଲଗାଇଛନ୍ତି ତାହାକୁ ଭାଙ୍ଗିଦେଇ କାଉନ୍‌ସିଲର ଅସାରତା ପ୍ରମାଣ କରିବା ସେମାନଙ୍କର ଉଦ୍ଦେଶ୍ୟ। ସେମାନେ ସେମାନଙ୍କ ଉଦ୍ଦେଶ୍ୟ ଅନୁସାରେ କାର୍ଯ୍ୟ କରିବାପାଇଁ ସ୍ୱାଧୀନତା ପାଇଲେ, ଅଥଚ କଂଗ୍ରେସର ଅଧିକ ସଂଖ୍ୟାବିଶିଷ୍ଟ ମତବାଦୀମାନେ ସେମାନଙ୍କର ସ୍ୱାଧୀନ ମତ ପ୍ରଚାର କରିବାକୁ ସ୍ୱାଧୀନ ନୁହଁନ୍ତି। ଏହିକଥା ଦିଲ୍ଲୀ କଂଗ୍ରେସରେ ସ୍ଥିର ହେଲା। ମୁଁ ବୁଝିଲି, କଂଗ୍ରେସ ଆମ୍ଭମାନଙ୍କ ଉପରେ ଏକପ୍ରକାର ୧୪୪ ଜାରୀ କରି ମୁଖବନ୍ଧ ଆଦେଶ ଜାରୀ କଲେ। ଦିଲ୍ଲୀ ନିର୍ଦ୍ଧାରଣ ଏହା ଛଡ଼ା ଆଉ କଣ ହୋଇପାରେ ?

ଦିଲ୍ଲୀର ବୈଠକ ପରେ କଂଗ୍ରେସର ଆନ୍ଦୋଳନ ଏକାବେଳକେ ଶିଥିଳ ହୋଇ ପଡ଼ିଲା। ସ୍ୱରାଜ୍ୟ ଦଳବାଲାଙ୍କର ଟିକିଏ ପାଟି ତୁଣ୍ଡ ଶୁଣା ଯାଏ। ଭୋଟ ଓ କାଉନ୍‌ସିଲ କଥା ଛଡ଼ା ଆଉ କିଛି ଦେଶବାସୀ ଶୁଣିବାକୁ ପାଇଲେ ନାହିଁ। ଏହି ପରିସ୍ଥିତିରେ ଅସହଯୋଗ ନୀତିର ମୂଳ ପ୍ରସ୍ତାବରେ ବିଶ୍ୱାସ ରଖିଥିବା ବ୍ୟକ୍ତିମାନଙ୍କୁ ନେଇ ସାବରମତୀ ଆଶ୍ରମରେ ଏକ ବୈଠକ ବସିଲା। ଶ୍ରୀଯୁକ୍ତ ରାଜଗୋପାଳଚାରୀ ପ୍ରଭୃତି ଏହି ବୈଠକ ଡକାଇଥିଲେ। ମୁଁ ଏହି ବୈଠକରେ ଯୋଗ ଦେବାକୁ ଗଲି, ମାତ୍ର ସେଠାରେ କଣ ସ୍ଥିର ହେଲା ମୋର ମନେ ନାହିଁ। କକୋନଡ଼ା କଂଗ୍ରେସରେ ଏହି ପ୍ରଶ୍ନ ପୁଣି ଥରେ ବିଚାର କରିବାର କଥା ହେଲା। "ନାଗପୁରକୁ ଫେରି ଯାଅ" (Back to Nagpur) ନାମରେ ଦେଶରେ ଗୋଟାଏ ଚିତ୍କାର ଉଠିଲା। ଅର୍ଥାତ୍, ନାଗପୁର ଠାରେ କଂଗ୍ରେସ ଅସହଯୋଗ ନୀତି ଅବଲମ୍ବନ କରିଛି। ଦିଲ୍ଲୀଠାରେ ଯାହା ହେଲା ତଦ୍ୱାରା ଅସହଯୋଗ ନୀତିରେ ବ୍ୟତିକ୍ରମ ଘଟିଛି। ସୁତରାଂ କକୋନଡ଼ାରେ ଏହି ବ୍ୟତିକ୍ରମକୁ ଓଲଟାଇ ଦିଆଯାଉ। ନାଗପୁର ଠାରେ କଂଗ୍ରେସ ଯେପରି ଯେମିତି ଅସହଯୋଗ ନୀତି ଗ୍ରହଣ କରିଥିଲା, ସେହିପରି କକୋନଡ଼ାରେ ଆଉଥରେ ଗ୍ରହଣ କରୁ। ଏହାର ଅର୍ଥ ନାଗପୁରକୁ ଫେରିଯାଅ। କିନ୍ତୁ ଏହି ଚିତ୍କାରର କୌଣସି ମୂଲ୍ୟ ରହିଲା ନାହିଁ। ଦିଲ୍ଲୀଠାରେ ଯାହା ସ୍ଥିର ହୋଇଥିଲା କକୋନଡ଼ା କଂଗ୍ରେସରେ ତାହା ଦୃଢ଼ୀଭୂତ ହେଲା। ଏଥିରେ ମୋ ମନରେ ଭାରି ଦୁଃଖ ହେଲା। ଅସହଯୋଗ ମୂଳନୀତିରେ ବିଶ୍ୱାସ ରଖୁଥିବା ପ୍ରତ୍ୟେକ କଂଗ୍ରେସ କର୍ମୀର ମନରେ ଦୁଃଖ ହୋଇଛି। ଅସହଯୋଗ ନୀତିର ପ୍ରଧାନ ବଳ ଆତ୍ମନିର୍ଭରଶୀଳତା। ଦେଶ ଆତ୍ମନିର୍ଭରଶୀଳ ହେବାକୁ ଶିକ୍ଷା କରୁ। ବିଦେଶୀ ସରକାରଙ୍କ ଆଶ୍ରିତ ହେବାର ମନୋବୃତ୍ତି ଏ ଦେଶରୁ ଦୂର ହେଉ। ସରକାରଙ୍କ କ୍ରିୟା କଳାପର ପ୍ରତିରୋଧ କରିବାକୁ ଦେଶର ଜନସାଧାରଣଙ୍କ ମନରେ ବିଦ୍ରୋହାତ୍ମକ ଭାବ ଜାଗି ଉଠୁ। ସରକାରଙ୍କର ଅନ୍ୟାୟ ଓ ଅଯଥା ଆଇନ୍ କାନୁନ୍ ସବୁକୁ ନୀରବରେ ମାନିନେବା କିମ୍ବା ତାହାକୁ ଅସ୍ୱୀକାର କରି

ସେହି ସବୁର ବିରୋଧରେ ବିଦ୍ରୋହ କରିବା ପାଇଁ ଦେଶବାସୀଙ୍କ ମନରେ ସ୍ୱତଃ ଭାବନା ଉଦ୍ରେକ ହୋଇ ଉଠିବା, ଏହାରି ଉପରେ ଦେଶର ସ୍ୱାଧୀନତା ଓ ପରାଧୀନତା ଲକ୍ଷଣ ନିର୍ଭର କରେ। ଦେଶର ଏହି ବିଦ୍ରୋହାତ୍ମକ ଶକ୍ତି କର୍ଷଣ କରିବା ପାଇଁ ଅସହଯୋଗ କଳ୍ପନା କରାଯାଇଛି। ସରକାରଙ୍କ ଆଶୀର୍ବାଦ କିମ୍ବା ଅନୁଗ୍ରହ ଦ୍ୱାରା ସଂଗଠିତ ପରିଧି ଭିତରେ କଣ ହେଉଛି ସେହି ଆଡ଼କୁ ଲୋକଦୃଷ୍ଟି ଆକର୍ଷିତ ନ ହୋଇ, ଜନ ସାଧାରଣଙ୍କ ଭିତରେ, ସ୍ୱାଧୀନତା ଲଢ଼ାଇ ପାଇଁ କିପରି ଶକ୍ତି କର୍ଷିତ ହୋଇଛି, ଲୋକଦୃଷ୍ଟି ସେହି ଦିଗରେ ଧାବିତ ହେଉ। ଆମ୍ଭର ସମସ୍ତ ପ୍ରକାର ଚିନ୍ତା ଓ ଭାବନା ସେହି ଦିଗରେ ବ୍ୟୟିତ ହେଉ। କିନ୍ତୁ ଦିଲ୍ଲୀ ଓ କକୋନଡ଼ାରେ ଯାହା ହେଲା ଦେଶର ଜନସାଧାରଣଙ୍କ ଭିତରେ ଏହି ଭାବ ତରଙ୍ଗ ଖେଳିବାରେ ବାଧା ଘଟିଲା। କାଉନ୍‌ସିଲ ଆଡ଼କୁ ସମସ୍ତଙ୍କର ଦୃଷ୍ଟି ଆକର୍ଷିତ ହେଲା। ଆନ୍ଦୋଳନ ଆସି କେତେ ଶିକ୍ଷିତ ମୁଷ୍ଟିମେୟଙ୍କ ଭିତରେ ସୀମାବଦ୍ଧ ରହିଲା। ଏଥିପାଇଁ ଆମ୍ଭମାନଙ୍କ ମନରେ ଦୁଃଖ।

ସେ ଯାହାହେଉ ଏହିପରି ଭାବ ନେଇ ମୁଁ କକୋନଡ଼ା କଂଗ୍ରେସରୁ ଫେରିଲି। କଂଗ୍ରେସର କାର୍ଯ୍ୟକ୍ରମ ମୋ ମନକୁ ଟାଣି ପାରିଲା ନାହିଁ। ଏଣେ କଟକରେ ମୋର ସ୍ତ୍ରୀକୁ ରଖି ଚିକିତ୍ସା କରିବାରେ ବିଶେଷ କିଛି ପରିବର୍ତ୍ତନ ଦେଖି ପାରିଲି ନାହିଁ। ବର୍ତ୍ତମାନ ନିଜେ ଭାବିଚିନ୍ତି କିଛି ଗୋଟାଏ କାର୍ଯ୍ୟ ବାଛିନେବା ଦରକାର। କିନ୍ତୁ କଟକରେ ସ୍ତ୍ରୀର ସେବା ଶୁଶ୍ରୂଷା କରିବାର କାର୍ଯ୍ୟ ହାତରେ ଥିବା ପର୍ଯ୍ୟନ୍ତ ମୁଁ ଅନ୍ୟ କିଛି କରିବାକୁ ପୂର୍ଣ୍ଣମାତ୍ରାରେ ସ୍ୱାଧୀନ ହୋଇ ପାରୁ ନାହିଁ। ଏହିଠାରେ ଭାବିଲି, ସ୍ତ୍ରୀକୁ ପୁଣି ଗଡ଼ଜାତ ଭିତରକୁ ପଠାଇ ଦେବାକୁ ହେବ। ସେ ପାଗଳୀ ହୋଇଛି, ସେହିପରି ପାଗଳୀ ହୋଇ ରହିଥାଉ। ସେ 'ତାର ଭାଗ୍ୟ' ଅନୁସରି ସୁଖ ଦୁଃଖ ଭୋଗ କରିବ। ଏଥିପାଇଁ ମୁଁ ମୋର ଅମୂଲ୍ୟ ସମୟ ନଷ୍ଟ କରିବା ଉଚିତ ନୁହେଁ। ଦେଶ ସେବାରେ ଖଟାଇବା ପାଇଁ ଆଶା କରି ମୁଁ ତାହାକୁ ଆଣିଥିଲି। କିନ୍ତୁ ସେ ଆଶା ଆଉ ରହୁ ନାହିଁ। ମୁଁ ଭାବିଲି, ଦେଶସେବା ପାଇଁ ସବୁଦିଗରୁ ମୋର ପଥ ପରିଷାର ହେଲା। ବିବାହିତ ସ୍ତ୍ରୀ ପାଇଁ ଯଦି କିଛି କର୍ତ୍ତବ୍ୟ ଥିଲା ତାହା ମଧ ହୋଇଗଲା। ସେ ସୁସ୍ଥ ସବଳ ହୋଇଥିଲେ ମୋର ଦେଶସେବା କାର୍ଯ୍ୟରେ ପୂର୍ଣ୍ଣ ସହାୟକ କିମ୍ବା ପ୍ରତିବନ୍ଧକ ହୋଇଥାନ୍ତା ତାହା କିଏ କହିବ। ସେ ପାଗଳୀ ଏହା ତ ଅଲକ୍ଷିତରେ ମୋର ଦେଶସେବା କାର୍ଯ୍ୟରେ ଶୁଭ ଲକ୍ଷଣ। ଏହିପରି ଭାବ ମୋ ମନରେ ଜାତ ହେଲା। ସୁତରାଂ ମୋର ସ୍ତ୍ରୀକୁ ଆରୋଗ୍ୟ କରିପାରିଲି ନାହିଁ ବୋଲି ଦୁଃଖ ହୋଇ ନାହିଁ। ତାହାକୁ ୧୯୨୪ ମସିହା ଜାନୁଆରୀ ମାସରେ ଖଣ୍ଡପଡ଼ା ଗଡ଼ଜାତ ମୋର ଭଉଣୀ ଘରଠାକୁ ପଠାଇ ଦେଲି। ମୁଁ କଟକ ସ୍ୱରାଜ୍ୟ ଆଶ୍ରମକୁ ଫେରି ଆସିଲି। ବମ୍ବେଇର ଭାଇ ଶ୍ରୀକାନ୍ତକୁ ଜଣାଇ ଦେଲି ପରିବାର ଖର୍ଚ୍ଚ ପାଇଁ ମୋର ଆଉ ଟଙ୍କା ଆବଶ୍ୟକ ନାହିଁ।

ମୁଁ କଟକ ସ୍ୱରାଜ୍ୟ ଆଶ୍ରମକୁ ପୁଣି ଆସିଲି। ଏହି ଆଶ୍ରମକୁ କିଏ କିପରି ଦୃଷ୍ଟିରେ ଦେଖନ୍ତି ମୁଁ ତାହା କହି ନ ପାରେ। ଆଶ୍ରମଟି ଆମ୍ଭ କେତେଜଣଙ୍କ ନିକଟରେ ଅତି ପ୍ରିୟ ସ୍ଥାନ। ଏହିଠାରେ ବସି ଆମ୍ଭେମାନେ କେତେଜଣ ଓଡ଼ିଶାରେ କଂଗ୍ରେସ ଅନୁଷ୍ଠାନ ଗଢ଼ିବାରେ କଳ୍ପନା କରିଛୁ। ଉତ୍କଳ ଭୂମିରେ ଅସହଯୋଗ ମନ୍ତ୍ର ପ୍ରଚାର କରିବା ପାଇଁ ଉତ୍କଳର ମୁଖ୍ୟ କର୍ମୀମାନେ ଏହି ଆଶ୍ରମରେ ବସି କେତେ କଳ୍ପନା କରିଛନ୍ତି। ୧୯୨୧ ମସିହାରେ ମହାତ୍ମାଜୀ ଆସି ଏହିଠାରେ ଅବସ୍ଥାନ କରିଥିଲେ। ଏହପରି ନାନା କାରଣରୁ କଟକ ସ୍ୱରାଜ୍ୟ ଆଶ୍ରମ ଉତ୍କଳର ସମସ୍ତ କଂଗ୍ରେସ କର୍ମୀମାନଙ୍କର ଅତି ପ୍ରିୟସ୍ଥାନ। ଆଶ୍ରମ ବୋଲି ନାମ ଥାଏ। ଅବଶ୍ୟ ଏହାର କୌଣସି ନୀତି ନିୟମ ନ ଥାଏ। ଅସହଯୋଗ ଆନ୍ଦୋଳନ ଦବି ଗଲାପରେ କଟକ ସ୍ୱରାଜ୍ୟ ଆଶ୍ରମ ରଖିବା କଠିନ ବୋଧ ହେଉଛି। ତଥାପି ଉତ୍କଳରେ କଂଗ୍ରେସ ଅନୁଷ୍ଠାନର ମର୍ଯ୍ୟଦା ଅକ୍ଷୁଣ୍ଣ ରଖିବା ପାଇଁ କଟକ ଆଶ୍ରମକୁ ରଖିବା ନିହାତି ଜରୁରୀ ବୋଲି ଅନେକ ବିଚାରୁଛନ୍ତି। କଟକ ଜିଲ୍ଲା କଂଗ୍ରେସ କମିଟି ଏହି ଆଶ୍ରମ ପରିଚାଳନା ଓ କଟକ ସହରରେ କଂଗ୍ରେସ କାର୍ଯ୍ୟର ପ୍ରସାର କରିବା ଭାର ମୋ ଉପରେ ଅର୍ପଣ କଲେ।

ଏହି କାର୍ଯ୍ୟଭାର ମୁଁ ଯେ ବନ୍ଧନ କଲି ଜୀବନର ଏକ ମୁଖ୍ୟ କର୍ମ ରୂପେ, ତାହା ନୁହେଁ। ପଣ୍ଡିତ ଗୋପବନ୍ଧୁ ଦାସ ଜେଲରୁ ମୁକ୍ତ ହେବା ପର୍ଯ୍ୟନ୍ତ ମୁଁ ତାହାଙ୍କ ଅପେକ୍ଷାରେ ରହିଲି। କାରଣ ଓଡ଼ିଶାରେ କୌଣସି ସ୍ଥାନରେ କିଛି କାର୍ଯ୍ୟ ସ୍ଥାୟୀ ରୂପେ କରିବାକୁ ହେଲେ ତାହାଙ୍କର ପରାମର୍ଶ ନ ନେଇ କିଛି କରିବା ଉଚିତ ହେବ ନାହିଁ। ଓଡ଼ିଶାରେ କଂଗ୍ରେସ ଆନ୍ଦୋଳନର ସେ ହେଉଛନ୍ତି ପ୍ରାଣପ୍ରତିଷ୍ଠାତା। ସେ ହେଉଛନ୍ତି ଏକମାତ୍ର ଜନନାୟକ। ତାହାଙ୍କୁ ନ ଜଣାଇ କିମ୍ୱା ତାହାଙ୍କ ପରାମର୍ଶ ନ ନେଇ କିଛି ନିଜ ଇଚ୍ଛାନୁସାରେ କରିବାର ଅର୍ଥ ସମଷ୍ଟିଗତ ଜୀବନରେ ବିଶୃଙ୍ଖଳା ଘଟାଇବା। ଏହିପରି କେତେକ କାରଣରୁ ମୁଁ ତାହାଙ୍କ ଅପେକ୍ଷାରେ ବସିଲି। କୌଣସି କାର୍ଯ୍ୟ ନ କରି ଖାଲି ବସି ହେବ ନାହିଁ। ଏଣୁ କଟକ ଆଶ୍ରମର ଭାର ଗ୍ରହଣ କଲି। ଏହି ଭାର ଗ୍ରହଣ କରି କଟକ ସହରରେ କଂଗ୍ରେସ ଭାବ ପ୍ରସାର କରିବାକୁ ଚେଷ୍ଟା କରିବାରେ ମୋର ଦୃଢ଼ ବିଶ୍ୱାସ ଜନ୍ମିଲା, କଟକ ଆଶ୍ରମ ପାଇଁ ଖଣ୍ଡିଏ ସ୍ଥାୟୀ ଘର ନିହାତି ଦରକାର। କଟକ ସହରରେ ଜାଗା କିଣି କଂଗ୍ରେସ ସ୍ୱରାଜ୍ୟ ଆଶ୍ରମ ପାଇଁ ନିଜର ଖଣ୍ଡିଏ ଘର କରିବା କଳ୍ପନା ମୋ ବ୍ୟତୀତ ଅନ୍ୟ କାହାରି ମନରେ ନାହିଁ। ଏ କଳ୍ପନା ଶୁଣି ବାବୁ ଯଦୁମଣି ମଙ୍ଗରାଜ ପ୍ରଭୃତି ମୋତେ ଉତ୍ସାହିତ କରିଛନ୍ତି। କିନ୍ତୁ ଏହିଠାରେ କଟକ ସ୍ୱରାଜ୍ୟ ଆଶ୍ରମ କଳ୍ପନାରେ ଅଳକାଶ୍ରମର ପ୍ରତିଦ୍ୱନ୍ଦ୍ୱିତା ମୁଁ ଉପଲବ୍ଧି କରିବାକୁ ପାଇଲି। ବାବୁ ଭାଗୀରଥି ମହାପାତ୍ର ଓ ବାବୁ ଗୋପବନ୍ଧୁ ଚୌଧୁରୀ ଅଳକାଶ୍ରମକୁ ଓଡ଼ିଶାରେ ଗୋଟିଏ ବିରାଟ ଜାତୀୟ ଅନୁଷ୍ଠାନ ରୂପେ ଗଢ଼ିବାକୁ କଳ୍ପନା କରିଛନ୍ତି। ଅଳକାଶ୍ରମ ନାମରେ ଓଡ଼ିଶାରେ

ସ୍ୱତନ୍ତ୍ର ପ୍ରଭାବ ଓ ପ୍ରତିଷ୍ଠା ସୃଷ୍ଟି କରିବା ପାଇଁ ଛାୟାମଣ୍ଡଳ ପ୍ରତିଷ୍ଠା ସେମାନଙ୍କର ଇଚ୍ଛା। କଟକ ସ୍ୱରାଜ୍ୟ ଆଶ୍ରମର ସ୍ଥାୟୀ ସ୍ୱରୂପ କଳ୍ପନା ଅଳକାଶ୍ରମର ଏକାଧିପତ୍ୟ ପ୍ରଭାବ ବିସ୍ତାରରେ ଅନ୍ତରାୟ ଘଟାଇବ। ସତ୍ୟବାଦୀ ଜାତୀୟ ବିଦ୍ୟାଳୟର ପ୍ରସାର ଓ ପ୍ରଭାବକୁ କ୍ଷୁଣ୍ଣ କରିଦେବାକୁ ସେମାନେ ତିଳେମାତ୍ର ପଶ୍ଚାଦ୍‌ପଦ ନୁହନ୍ତି। ସତ୍ୟବାଦୀ ସ୍କୁଲକୁ ବମ୍ବେଇରୁ ଯେଉଁ ପାଞ୍ଚ ହଜାର ଟଙ୍କା ସାହାଯ୍ୟ ମିଳିଥିଲା, ସେହି ସାହାଯ୍ୟ ଦେବା ବୃଥା ହୋଇଛି ବୋଲି ଉଲ୍ଲେଖ କରି ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଶେଠ ଯମୁନାଲାଲ୍ ବଜାଜଙ୍କ ନିକଟକୁ ଅଳକାଶ୍ରମ କର୍ମୀଙ୍କ ନାମରେ କିଛି ସାହାଯ୍ୟ ପାଇଁ ପଠାଇଥିବା ପ୍ରାର୍ଥନା ପତ୍ର ମୁଁ ଦେଖିଛି। ସାବରମତୀ ଆଶ୍ରମ ଠାରେ ସେହି ପତ୍ର ଖଣ୍ଡି ଅଚାନକ ଭାବରେ ପାଇବାରୁ ମୁଁ ପାଠ କରିଛି। ତେଣୁ କଟକ ସ୍ୱରାଜ୍ୟ ଆଶ୍ରମ ପାଇଁ କଳ୍ପିତ ସ୍ଥାୟୀ ଘର ବିଷୟରେ ମୁଁ ସେମାନଙ୍କ ସହିତ ଆଲୋଚନା କଲି ନାହିଁ। ଏହି କାର୍ଯ୍ୟଟି ମୁଁ ନିଜ ଚେଷ୍ଟାରେ କରିବାକୁ ସଂକଳ୍ପ କଲି।

ଏହିବର୍ଷ କଟକରେ ପ୍ରାଦେଶିକ ସମ୍ମିଳନୀ ବସିବାର ସ୍ଥିର ହେଲା। ଏହି ସମ୍ମିଳନୀ କାର୍ଯ୍ୟ ଆରମ୍ଭ କରିବା ପାଇଁ ଗୋଟିଏ ପାଞ୍ଚ ଜଣିଆ ଅସ୍ଥାୟୀ କମିଟି ଗଢ଼ା ହେଲା। ସ୍ୱାମୀ ବିଚିତ୍ରାନନ୍ଦ ଦାସ, ବାବୁ ସତ୍ୟନାରାୟଣ ସେନଗୁପ୍ତ, ବାବୁ ଗୋପବନ୍ଧୁ ଚୌଧୁରୀ, ମୁଁ ଓ ଆଉ ଜଣେ (ତାଙ୍କ ନାମ ମୋର ମନେ ନାହିଁ) ଉକ୍ତ ଭାର ଗ୍ରହଣ କଲୁଁ। ନାନା ଅସୁବିଧା ହେତୁ ସମ୍ମିଳନୀ ତାରିଖ ବଦଳାଇବାକୁ ପଡ଼ିଲା। ଇତିମଧ୍ୟରେ ମହାତ୍ମାଜୀ ଯେରବାଡ଼ା ଜେଲରେ ପୀଡ଼ିତ ହେଲେ। ତାହାଙ୍କର ଆପେଣ୍ଡିସାଇଟିସ୍‌ର ଅସ୍ତ୍ର ଚିକିତ୍ସା କରାହେଲା। ଏହି କାରଣରୁ ମହାତ୍ମାଜୀଙ୍କ ଜୀବନ ସଙ୍କଟାପନ୍ନ ହୋଇ ଉଠିଲା। ସାରା ଭାରତରେ ଏଥିପାଇଁ ଉଦ୍‌ବିଗ୍ନତା ଫୁଟିଉଠିଲା। ମହାତ୍ମାଜୀ କିପରି ଶୀଘ୍ର ଆରୋଗ୍ୟ ଲାଭ କରି ଦୀର୍ଘ ଜୀବନ ଲାଭ କରିବେ ଏହି ଚିନ୍ତା ବର୍ତ୍ତମାନ ମୋ ମନକୁ ବିଚଳିତ କଲା। ଆଉ କୌଣସି କାମରେ ମୋର ମନ ଲାଗିଲା ନାହିଁ। ମହାତ୍ମାଜୀ କ୍ରମଶଃ ଆରୋଗ୍ୟ ଲାଭ କଲେ। ଏ ସୂତ୍ରରେ ସରକାର ତାହାଙ୍କର ଅବଶିଷ୍ଟ ଚାରିବର୍ଷ କାରାଦଣ୍ଡ ଛାଡ଼ ଦେଇ ତାହାଙ୍କୁ ମୁକ୍ତି ଦେଲେ। ସ୍ୱାସ୍ଥ୍ୟଲାଭ କରିବାପାଇଁ ମହାତ୍ମାଜୀ ବମ୍ବେଇ ନିକଟରେ ଜୁହୁ ଦ୍ୱୀପରେ ଅବସ୍ଥାନ କଲେ। ୧୯୨୧ ମସିହାରୁ ଓଡ଼ିଶାକୁ ମୁଁ ଫେରିଲାଦିନୁ ମହାତ୍ମାଜୀଙ୍କ ସହିତ ମୋର ଆଉ ଦେଖା ସାକ୍ଷାତ୍ ହୋଇ ନାହିଁ। ମୁଁ ଜେଲରୁ ବାହାରିଲା ବେଳକୁ ମହାତ୍ମାଜୀ ଜେଲରେ। ବର୍ତ୍ତମାନ ସେ ଜେଲମୁକ୍ତ। ସୁତରାଂ ତାହାଙ୍କ ନିକଟକୁ ନ ଯାଇ ଓଡ଼ିଶାରେ ରହି କୌଣସି କାର୍ଯ୍ୟ କରିବା ମୋତେ ଅସମ୍ଭବ ଜଣାଗଲା। ମହାତ୍ମାଜୀଙ୍କୁ ପତ୍ର ଦେବାରେ ସେ ମୋତେ ଡକାଇ ନେଲେ। ମୁଁ ଓଡ଼ିଶା ଛାଡ଼ି ଜୁହୁ ଦ୍ୱୀପରେ ଯାଇ ରହିଲି। ମହାତ୍ମାଜୀଙ୍କ ନିକଟରେ ରହିଲେ ତାହାଙ୍କ ପରିଚର୍ଯ୍ୟା କାର୍ଯ୍ୟଟି ମୋତେ ଭଲ ଲାଗେ। ତାହାଙ୍କ ସେବା କାର୍ଯ୍ୟ ମୁଁ ଗ୍ରହଣ କଲି।

ଦୀନବନ୍ଧୁ ଆଣ୍ଡୃଜ ଏହି ଜୁହୁ ଦ୍ୱୀପକୁ ମହାତ୍ମାଜୀଙ୍କୁ ଦେଖିବାକୁ ଆସି ସେଠାରେ କିଛିଦିନ ରହିଲେ। ଏହି ଅବସରରେ ଓଡ଼ିଶାର ବର୍ତ୍ତମାନ ପରିସ୍ଥିତି ନେଇ ତାହାଙ୍କ ସହିତ ବହୁତ ବିଷୟ କଥା ହେବା ସୁଯୋଗ ମିଳିଲା। ଓଡ଼ିଶା କଥା କହିଲାବେଳେ କନିକା ଅତ୍ୟାଚାର ଘଟଣା ବିଷୟରେ ମୁଁ ଉଲ୍ଲେଖ କରିଛି। ମହାତ୍ମାଜୀ ଓ ଦୀନବନ୍ଧୁ ଆଣ୍ଡୃଜ ଉଭୟଙ୍କ ଆଗରେ କନିକା ଘଟଣା କହି ଏହାର ପ୍ରତିକାର ପାଇଁ ଅନୁରୋଧ କରିଛି। କନିକା ପ୍ରଶ୍ନ ବ୍ୟତୀତ ଓଡ଼ିଶାରେ ଆଉ କିଛି ଗୁରୁତର ପ୍ରଶ୍ନ ଅଛି ବୋଲି ମୋର ବିଶ୍ୱାସ ନ ଥାଏ। ଏହିଠାରେ ମୋର ଭବିଷ୍ୟତ କର୍ମପନ୍ଥା ନେଇ ମହାତ୍ମାଜୀଙ୍କ ସହିତ ଆଲୋଚନା କରିଥିଲେ। ଅସହଯୋଗ ଆନ୍ଦୋଳନ ପ୍ରଚାର କରିବା ପାଇଁ ସାବରମତୀ ଆଶ୍ରମରୁ ମୁଁ ଓଡ଼ିଶାକୁ ଆସିଛି। ଆନ୍ଦୋଳନ ଶିଥିଳ ହୋଇଗଲା ପରେ ଆଶ୍ରମ ଫେରି ଆସିବାର କଥା। ମହାତ୍ମାଜୀ ମୋତେ ସେହି ପରାମର୍ଶ ଦେଲେ। ମୋର ସାବରମତୀ ଫେରି ଆସିବା ମହାତ୍ମାଜୀଙ୍କର ଇଚ୍ଛା। ସାବରମତୀକୁ ନ ଫେରି ମୁଁ ଯଦି ନିଜ ଇଚ୍ଛାନୁସାରେ ଓଡ଼ିଶାରେ କାର୍ଯ୍ୟ କରେ ତେବେ ଏଣିକି ମୁଁ ନିଜ ଦାୟିତ୍ୱରେ କାର୍ଯ୍ୟ କରିବି। ମୋ କାର୍ଯ୍ୟପାଇଁ ମହାତ୍ମାଜୀଙ୍କଠାରୁ କୌଣସି ସାହାଯ୍ୟ ଆଶା ରଖି ନ ପାରେ। କୌଣସି ପ୍ରକାର ଆର୍ଥିକ ସାହାଯ୍ୟ ମହାତ୍ମାଜୀ ମୋତେ ଦେବେ ନାହିଁ ବୋଲି ସ୍ପଷ୍ଟ ମନା କରିଦେଲେ। ଆଶ୍ରମକୁ ଫେରିବି କିମ୍ୱା ଓଡ଼ିଶାକୁ ଫେରି ନିଜ ଦାୟିତ୍ୱରେ କିଛି କାର୍ଯ୍ୟ କରିବି ଏହି ଚିନ୍ତା ଅତି ବିଷମ ଆକାର ଧାରଣ କଲା। ପୂର୍ବରୁ ନିଶ୍ଚୟ କରିଛି ଓଡ଼ିଶାରେ ରହି କାର୍ଯ୍ୟ କରିବାକୁ। ବର୍ତ୍ତମାନ ମୋର ପୂର୍ବ ନିଶ୍ଚୟ ଅନୁସାରେ କାର୍ଯ୍ୟ କରିବି କିମ୍ୱା ମହାତ୍ମାଜୀଙ୍କ ଇଚ୍ଛାନୁସାରେ ଆଶ୍ରମକୁ ଫେରି ଆସିବି ଏହି ପ୍ରଶ୍ନର ସମାଧାନ କରିବା ମୋତେ କଠିନ ବୋଧ ହେଲା। ମଗନଲାଲ ଗାନ୍ଧୀ ମଧ୍ୟ ଶେଷରେ ଏହି ଜୁହୁ ଦ୍ୱିପୀକୁ ଆସିଥାନ୍ତି। ତାହାଙ୍କର ମଧ୍ୟ ମତ ମୁଁ ସାବରମତି ଆଶ୍ରକକୁ ଫେରିବା।

ମୁଁ ମନେ ମନେ ବିଚାର କଲି, ଓଡ଼ିଶା ମୋର ଜନ୍ମଭୂମି। ମୋର ଜନ୍ମଭୂମି ମୋର କର୍ମଭୂମି ହେବା ଉଚିତ। ଓଡ଼ିଶାକୁ କର୍ମ କରିବା ପାଇଁ ଦିନେ ମୋତେ ଫେରିବାକୁ ହେବ। ଏପରି ଅବସ୍ଥାରେ ଓଡ଼ିଶାର ବର୍ତ୍ତମାନ ପରିସ୍ଥିତିରେ ଓଡ଼ିଶା ଛାଡ଼ିଦେବା ମୋର ଉଚିତ ନୁହେଁ। କଟକ ଆଶ୍ରମପାଇଁ ସ୍ଥାୟୀ ଗୃହ ନିର୍ମାଣ ଓ କନିକା ପ୍ରଶ୍ନର ସମାଧାନ ଏହି ଦୁଇଟି ପ୍ରଶ୍ନ ମୋ ମନରେ ଖେଳୁଛି। ଓଡ଼ିଶାରେ କାର୍ଯ୍ୟ କରିବା ପାଇଁ କେତେ କର୍ମୀଙ୍କ ସହିତ କେତେ ପ୍ରକାର କଳ୍ପନା ଜଳ୍ପନା କରିବାକୁ ମଧ୍ୟ ମୋର ମନ ବଳୁ ନାହିଁ। ବହୁତ ଭାବି ଚିନ୍ତି ଶେଷରେ ଓଡ଼ିଶାକୁ ଫେରିବା ନିଶ୍ଚୟ କରି ମୁଁ ମହାତ୍ମାଜୀଙ୍କୁ ଜଣାଇଲି। ଜୁହୁ ଦ୍ୱୀପରେ ଦେଢ଼ମାସ ରହି ଓଡ଼ିଶାକୁ ଫେରିଲି। ମହାତ୍ମାଜୀ ସଂପୂର୍ଣ୍ଣ ଆରୋଗ୍ୟ ଲାଭ କରି ସାବରମତୀ ଆଶ୍ରମକୁ ଫେରିଲେ।

କଟକରେ ଉପସ୍ଥିତ ହୋଇ ପ୍ରାଦେଶିକ ସମ୍ମିଳନୀ କାର୍ଯ୍ୟରେ ଯୋଗ ଦେବାକୁ ପଡ଼ିଲା। ବଙ୍ଗଦେଶରୁ ବିଶ୍ୱବିଖ୍ୟାତ ବିଜ୍ଞାନାଚାର୍ଯ୍ୟ ଡାକ୍ତର ପ୍ରଫୁଲ୍ଲଚନ୍ଦ୍ର ରାୟ ସଭାପତି

ପଦରେ ବରିତ ହୋଇଥାନ୍ତି। ପଣ୍ଡିତ ଗୋପବନ୍ଧୁ ଦାସ ଓ ବାବୁ ଭାଗୀରଥି ମହାପାତ୍ର ଜେଲରୁ ମୁକ୍ତ ହୋଇ ଯେଉଁଦିନ କଟକ ଷ୍ଟେସନରେ ଉପସ୍ଥିତ ସେହି ଦିନ ସେହି ଗାଡ଼ିରେ ଡାକ୍ତର ରାୟ ମଧ କଟକରେ ପଦାର୍ପଣ କରିଥିଲେ। ଡାକ୍ତର ପ୍ରଫୁଲ୍ଲଚନ୍ଦ୍ର ରାୟ ରେଳରୁ ଓହ୍ଲାଇ ପ୍ରଥମେ ଗୋପବନ୍ଧୁ ବାବୁଙ୍କୁ ଅଭ୍ୟର୍ଥନା କରିବାକୁ ଯାଇ ଆଲିଙ୍ଗନ କରିଥିଲେ। ପଣ୍ଡିତ ଗୋପବନ୍ଧୁ ଆମ୍ଭମାନଙ୍କୁ ଦେଖି କାନ୍ଦି ପକାଇଲେ। ସେତେବେଳର ସେହି ଦୃଶ୍ୟ ଜୀବନରେ ଭୁଲିବାର ନୁହେଁ। ପଣ୍ଡିତ ଗୋପବନ୍ଧୁ ଓଡ଼ିଶାରେ ଜାତୀୟ ଜୀବନର ପ୍ରାଣଦାତା। ସେ ଓଡ଼ିଶାକୁ ଗଢ଼ିଛନ୍ତି। ପଣ୍ଡିତ ଗୋପବନ୍ଧୁଙ୍କୁ ଓଡ଼ିଆ ଜାତିର ପ୍ରତିମୂର୍ତ୍ତି ବୋଲି କହିଲେ କଦାପି ଅତ୍ୟୁକ୍ତି ହେବନାହିଁ। ଅନ୍ୟାନ୍ୟ ପ୍ରଦେଶର ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସହିତ ତୁଳନା କରିବାକୁ ଗଲେ ଗୋପବନ୍ଧୁ ବାବୁଙ୍କ ସରଳତା ଓ ନିରାଡ଼ମ୍ବର ଜୀବନ କେତେ ଉଚ୍ଚରେ ସେ କଥା ଲେଖି ହେବ ନାହିଁ। ଦୀର୍ଘ ଦୁଇ ବର୍ଷ କାରାଦଣ୍ଡ ଭୋଗ କରି ଓଡ଼ିଶାରେ ପଦାର୍ପଣ କଲାବେଳକୁ ପ୍ରାଦେଶିକ ସମ୍ମିଳନୀର ସଭାପତି ରୂପେ ତାହାଙ୍କୁ ବରଣ କରିବା ଉଚିତ ଥିଲା। ତାହା ନ କରିବାଦ୍ୱାରା ପୁଣି ଗୋପବନ୍ଧୁଙ୍କ ପ୍ରତି ଅବହେଳା ପ୍ରଦର୍ଶନ କରାଯାଇଛି। ଏହା କାହିଁକି ଓ କିପରି ହୋଇଛି ସେ କଥା ଉଲ୍ଲେଖ କରିବା ଏଠାରେ ଅନାବଶ୍ୟକ। ପଣ୍ଡିତ ଗୋପବନ୍ଧୁ ଦାସ ଧରାହୋଇ, ହାତକଡ଼ି ପଡ଼ି, ଦୌଡ଼ିରେ ବନ୍ଧା ହୋଇ ଦାଣ୍ଡରେ ତାହାଙ୍କୁ ଚଲେଇ ନିଆଯାଇଥିଲା ଏହି ଦୃଶ୍ୟ ଓଡ଼ିଶାରେ କେବଳ ସମ୍ଭବପର ହୋଇଛି। ଅନ୍ୟ କୌଣସି ପ୍ରଦେଶରେ ଏ ଦୃଶ୍ୟ ସମ୍ଭବପର ହୋଇ ନ ଥାନ୍ତା। ଏ ଦୃଶ୍ୟ ଦେଖିଲା ମାତ୍ରକେ ସହସ୍ର ସହସ୍ର ଲୋକ ଠୁଳ ହୋଇ ଯାଇଥାନ୍ତେ। ପୋଲିସକୁ ବାଟ ମିଳି ନ ଥାନ୍ତା। ବାବୁ ରାଜେନ୍ଦ୍ର ପ୍ରସାଦ ଧରାହେଲା ଦିନ ବିହାରରେ ଏପରି ଲୋକାରଣ୍ୟ ହୋଇଥିଲା ଯେ ରାଜେନ୍ଦ୍ର ବାବୁଙ୍କୁ ଲୁଚାଇ ମଟର ଗାଡ଼ିରେ ଜେଲକୁ ପଠାଇ ଦିଆ ଯାଇଥିଲା। କିନ୍ତୁ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତି ଓଡ଼ିଶାରେ ପୋଲିସ ଯେପରି ବ୍ୟବହାର କଲେ ତଦ୍ୱାରା ଆମ୍ଭର ଜାତୀୟ ଜୀବନର ଅଭାବ କେବଳ ପ୍ରକାଶ ପାଇଲା। ଆଜି ପଣ୍ଡିତ ଗୋପବନ୍ଧୁ ଜେଲରୁ ମୁକ୍ତ ହୋଇ ଅବହେଳିତ ହୋଇଅଛନ୍ତି। ଡାକ୍ତର ପ୍ରଫୁଲ୍ଲଚନ୍ଦ୍ର ରାୟ ପଣ୍ଡିତ ଗୋପବନ୍ଧୁଙ୍କୁ 'ଉତ୍କଳମଣି' ଉପାଧି ଦେଇଗଲେ। ସେହିଦିନୁ ସେ ଉତ୍କଳମଣି ନାମରେ ପରିଚିତ। ମୋର ମନେହୁଏ, ଉତ୍କଳମଣି ଉପାଧି ତାହାଙ୍କ ପ୍ରତି ଯଥାର୍ଥ ଉପାଧି ହୋଇନାହିଁ। ପଣ୍ଡିତ ଗୋପବନ୍ଧୁ ଭାରତର ଏକ ମଣି ସ୍ୱରୂପ। ଭାରତରେ ଏହି ମଣି ବିକାଶ ପାଇ ପାରି ନାହିଁ, ସେଥିପାଇଁ ଆମ୍ଭେମାନେ ଦାୟୀ। ଆମ୍ଭେମାନେ ସବୁବେଳେ ତାହାଙ୍କର ସମାଲୋଚନା କରିଛୁ। ତାହାଙ୍କ ମହତ୍ ଜୀବନକୁ କ୍ଷୁଦ୍ର କରିବାକୁ ଚେଷ୍ଟା କରାଯାଇଛି। ଉତ୍କଳ କଂଗ୍ରେସ କର୍ମୀମାନଙ୍କଠାରୁ ପୂର୍ଣ୍ଣ ସାହାଯ୍ୟ ଓ ସହଯୋଗ ପାଇଥିଲେ ଗୋପବନ୍ଧୁ ବାବୁ ବହୁତ ବଡ଼କାମ କରିପାରିଥାନ୍ତେ ଏବଂ ଭାରତରେ ତାହାଙ୍କୁ ମଧ ଲୋକଆହୁରି ଉଚ୍ଚ ଦୃଷ୍ଟିରେ ଦେଖିଥାନ୍ତେ। ଜେଲରୁ ମୁକ୍ତ ହୋଇ ପଣ୍ଡିତ ଗୋପବନ୍ଧୁ ବାବୁ ଗୋପବନ୍ଧୁ

ଚୌଧୁରୀଙ୍କ ଅତଥି ହୋଇଥିଲେ। କଟକ ପ୍ରାଦେଶିକ କଂଗ୍ରେସ କମିଟିରେ ଯୋଗ ଦେବା ପାଇଁ ସେ କଟକ ଆସି ଚୌଧୁରୀଙ୍କ ବାସଭବନରେ ରହିଲେ। କଟକ ସ୍ୱରାଜ୍ୟ ଆଶ୍ରମରେ ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ବସିଥାଏ। ପଣ୍ଡିତ ଗୋପବନ୍ଧୁଙ୍କୁ ଜ୍ୱର ହୋଇଥିଲେ ମଧ ସେ କମିଟି ବୈଠକରେ ଉପସ୍ଥିତ ଥାନ୍ତି। ତାହାଙ୍କ ଜେଲମୁକ୍ତି ପରେ ଏହି ହେଉଛି ପ୍ରାଦେଶିକ କମିଟିର ପ୍ରଥମ ବୈଠକ। ପଣ୍ଡିତ ଗୋପବନ୍ଧୁଙ୍କ ଉପସ୍ଥିତି ନିହାତି ଆବଶ୍ୟକ। ଜ୍ୱର ହେଲେ ମଧ ପଣ୍ଡିତ ଗୋପବନ୍ଧୁ କମିଟି ବୈଠକରେ ଉପସ୍ଥିତ ଥିବା ସମୟରେ ବାବୁ ଗୋପବନ୍ଧୁ ଚୌଧୁରୀଙ୍କର ଗୋଟିଏ ଚାକର, ପଣ୍ଡିତ ଗୋପବନ୍ଧୁ ବାବୁଙ୍କର ବିଛଣାପତ୍ର ଆଦି ସମସ୍ତ ଜିନିଷ ଆଶ୍ରମରେ ଦେଇଗଲା। କମିଟି ବୈଠକ ବେଳେ ଗୋପବନ୍ଧୁ ବାବୁ କିଛି କହିଲା ବେଳକୁ କିଏ ଶୁଣୁଛି। କିଏ କିଛି କାର୍ଯ୍ୟ ବାହାନାରେ ଉଠି ଆସୁଛି। ଏହି ଦୃଶ୍ୟରେ ପଣ୍ଡିତ ଗୋପବନ୍ଧୁ ବ୍ୟଥିତ ହୋଇଛନ୍ତି। ଏହିସବୁ ମୁଁ ଦେଖୁଛି ଏବଂ ଭିତରି ରହସ୍ୟ ଯେ ବୁଝି ନ ପାରୁଛି ତାହା ନୁହେଁ। ଏପରି ଅବସ୍ଥାରେ ଓଡ଼ିଶାରେ କିପରି କାର୍ଯ୍ୟ କରିବାକୁ ହେବ ମୁଁ କିଛ ବୁଝିପାରୁ ନାହିଁ। ପଣ୍ଡିତ ଗୋପବନ୍ଧୁଙ୍କୁ ମୁଁ ଆଦର୍ଶ କରି ଧରିଛି। ତାହାଙ୍କୁ ବେଳେ ବେଳେ ବିଚଳିତ ହେବାର ଦେଖିଲେ ମନରେ ନିରାଶ ଭାବ ଉପସ୍ଥିତ ହେଉଛି। ଓଡ଼ିଶାରେ ମିଳିମିଶି କାର୍ଯ୍ୟ କରିବାର ସମସ୍ତ ଆଶା ମୋର ଲୋପ ପାଉଛି। ସେବା ଓ ତ୍ୟାଗ ବଳରେ ମନୁଷ୍ୟ ଦେଶରେ ବଡହୁଏ। କିନ୍ତୁ ଓଡ଼ିଶା ଜଳବାୟୁରେ ବର୍ତ୍ତମାନ ଏହି ଉପାଦାନର ବଡ଼ ଅଭାବ। ବଡକୁ ଛୋଟ କରି ଦେଖାଇବାର ପ୍ରବୃତ୍ତ ଅତି ପ୍ରବଳ। ଓଡ଼ିଶାରେ ବର୍ତ୍ତମାନ ଜଣାଶୁଣା ଯେ କେତେଜଣ କଂଗ୍ରେସ କର୍ମୀ ଅଛନ୍ତି ସେମାନଙ୍କ ମନୋବୃତ୍ତି ଏହିପରି ଏହା ମୁଁ ନିଃସନ୍ଦେହରେ କହିପାରେ। ଏହି ମନୋବୃତ୍ତି ଏବଂ ଏହି ବ୍ୟାଧି ମୋତେ ଯେ ସ୍ପର୍ଶ ନ କରିଛି ସେ କଥା ମୁଁ କହି ନ ପାରେ। ଏହିପରି ନାନା କାରଣ ମୋର ଜୀବନକୁ ପ୍ରଭାବିତ କରୁଛି। ସଙ୍ଗଛଡ଼ା ହୋଇ କାର୍ଯ୍ୟ କରିବା ପ୍ରବୃତ୍ତି ଦିନକୁ ଦିନ ମୋ ଭିତରେ ପ୍ରବଳ ଆକାର ଧାରଣ କରୁଛି। ସୁତରାଂ ମୋର ଚିନ୍ତା ଓ କାର୍ଯ୍ୟ ଯଦି କାହାରି ସହିତ ଖାପ ଖାଉ ନାହିଁ ସେଥିପାଇଁ ମୁଁ ଦାୟୀ ନୁହେଁ। ମିଳିମିଶି କାର୍ଯ୍ୟ କରିବା ଆଶା ଓ ବିଶ୍ୱାସ ମୋର କମି ଯାଉଛି। ମନୁଷ୍ୟ ନିଜର ଆଦର୍ଶ ଓ ବିଶ୍ୱାସ ଅନୁସାରେ ପ୍ରତ୍ୟେକ ଘଟଣାକୁ ପରୀକ୍ଷା କରି ଦେଖେ। ମୋର ଜୀବନର ଅନୁଭୂତି ଓ ବିଚାର ଧାରା ପ୍ରତି ଦୃଷ୍ଟି ରଖି ସବୁକଥା ଭାବିଲା ବେଳକୁ ମୋର ସ୍ଥାନ କେଉଁଠାରେ ମୁଁ ସ୍ଥିର କରିପାରେ ନାହିଁ। ଭାବିଲେ ମୋତେ ବୋଧହୁଏ ଯେ ଓଡ଼ିଶାର ବର୍ତ୍ତମାନ ପରିସ୍ଥିତିରେ ମୋତେ ଏକାକୀ ଠିଆ ହେବାକୁ ପଡ଼ିବ। କାହାରି ସହିତ ମୋର ମନୋବୃତ୍ତିର ମେଳ ଖାଇବ ନାହିଁ। ପଣ୍ଡିତ ଗୋପବନ୍ଧୁ ଦାସ କଣ କରୁଛନ୍ତି କେବଳ ତାହା ଦେଖିବା ପାଇଁ ବାକି ରହିଲା।

କଟକ ସମ୍ମିଳନୀ ଶେଷ ହେଲା। ସମ୍ମିଳନୀରେ କନିକା ସଂକ୍ରାନ୍ତରେ ଗୋଟିଏ ପ୍ରସ୍ତାବ ମୁଁ ଆଗତ କରିଥିଲି। ପ୍ରାଦେଶିକ କଂଗ୍ରେସ କମିଟି ଗୋଟିଏ କମିଟି ବସାଇ କନିକା ବିଷୟ ତଦନ୍ତ କରୁ ଏହାହିଁ ମୋର ପ୍ରସ୍ତାବର ଉଦ୍ଦେଶ୍ୟ। ଏହି ପ୍ରସ୍ତାବ ଆଗତ କରିବାକୁ ଯାଇ ଅନେକ କଥା ମୋତେ କହିବାକୁ ପଡ଼ିଥିଲା। ମୋର ପ୍ରସ୍ତାବକୁ ବାବାଜୀ ରାମଦାସ ସମର୍ଥନ କରିଥିଲେ। ଶେଷରେ 'ଦୁଃଖିନୀ କନିକା' ନାମକ ଗୋଟିଏ ଗୀତ ବୋଲା ହୋଇଥିଲା। ସମ୍ମିଳନୀ ସେତେବେଳେ କନିକା ଦୁଃଖରେ ଜର୍ଜରିତ ହୋଇ ଉଠିଲା ପରି ବୋଧ ହେଲା। ଏହାପରେ ବାବୁ ହରେକୃଷ୍ଣ ମହତାବ, ପଣ୍ଡିତ ଲିଙ୍ଗରାଜ ମିଶ୍ର ଓ ମୁଁ, ଆମ୍ଭ ତିନିଜଣଙ୍କୁ ନେଇ କନିକା ତଦନ୍ତ ପାଇଁ ଗୋଟିଏ କମିଟି ଗଢ଼ା ହେଲା। ଯଥାସମୟରେ କନିକା ବିଷୟ ତଦନ୍ତ କରିବା ଇଚ୍ଛାରେ ମୁଁ ଭଦ୍ରଖଠାରେ ଉପସ୍ଥିତ ହେଲି। କନିକାର କେତେକ କର୍ମୀ ମଧ୍ୟ ସେଠାକୁ ଆସିଥିଲେ। ତଦନ୍ତ ପାଇଁ କନିକା ଭିତରକୁ ପ୍ରବେଶ କରିବା କଥା। କିନ୍ତୁ ପଣ୍ଡିତ ଲିଙ୍ଗରାଜ ମିଶ୍ର କୌଣସି କାର୍ଯ୍ୟବିଶେଷ ହେତୁ ଆସି ପାରିଲେ ନାହିଁ। ବାବୁ ହରେକୃଷ୍ଣ ମହତାବ କନିକା କର୍ମୀମାନଙ୍କୁ କଣ ଉପଦେଶ ଦେଲେ ମୁଁ ଜାଣେ ନାହିଁ। ତଦନ୍ତଦ୍ୱାରା କନିକା ପ୍ରଜାଙ୍କର ବିଶେଷ କିଛି ଲାଭ ହେବ ନାହିଁ ବୋଲି ମହତାବ ବାବୁ ମୋତେ ମଧ୍ୟ କହିଲେ। ଏହିପରି କେତେକ କାରଣରୁ କନିକା ତଦନ୍ତ ଏହିଠାରେ ଇତିଶ୍ରୀ ହେଲା। ଏହାର ଭିତରି ରହସ୍ୟ ଆଉ କିଛି ଉଲ୍ଲେଖ କରିବା ଅନାବଶ୍ୟକ। କେବଳ ମୋର ଏତିକି ମନେ ହେଉଛି ଯେ ଆମ୍ଭେମାନେ ଏହିପରି ବହୁବାର କର୍ତ୍ତବ୍ୟରେ ତ୍ରୁଟି କରିଛୁ। ପ୍ରାଦେଶିକ କଂଗ୍ରେସ କମିଟି ଏହିପରି ନାନା ବିଷୟ ନେଇ ନାନାପ୍ରକାର କମିଟି ଗଠନ କରିଛି। ମାତ୍ର ଗୋଟିଏ ତହିଁରୁ କାର୍ଯ୍ୟକାରୀ ହୋଇନାହିଁ। ଏସବୁ ଘଟଣା ଦେଖି, ଆମ୍ଭମାନଙ୍କ ମଧ୍ୟରୁ ଅନେକ ଦେଶସେବାକୁ ଗୋଟାଏ ଖେଳ ବୋଲି ଭାବନ୍ତି ନା କଣ ମୁଁ ବୁଝିପାରେ ନାହିଁ। ତାହା ନ ହେଲେ କୌଣସି କମିଟି ବସାଇ ତହିଁରେ କାର୍ଯ୍ୟ ଶେଷ ନ କରି ଆମ୍ଭେମାନେ ନୀରବ ରହନ୍ତୁ ନାହିଁ। ଦେଶସେବା କେଡ଼େ ଗୁରୁତର ଓ କେତେବଡ଼ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ତାହା ଆମ୍ଭ ଭିତରୁ ଅତ୍ୟଳ୍ପ ଲୋକ ହୃଦୟଙ୍ଗମ କରିଛନ୍ତି ବୋଲି ଯଦି ମୁଁ କହେ ତେବେ ସେଥିପାଇଁ କଦାପି ମୁଁ ଦୋଷୀ ହେବି ନାହିଁ। ଦେଶସେବା ପାଇ ଦାଣ୍ଡକୁ ବାହାରିଲେ ସବୁବେଳେ ଦେଶର ସ୍ୱାର୍ଥରେ ନିଜକୁ ବଳି ଦେବା ଉଚିତ। କୌଣସି କର୍ତ୍ତବ୍ୟର ଆହ୍ୱାନ ବେଳେ ଅନ୍ୟ କାର୍ଯ୍ୟ ଅଛି ବୋଲି ଉକ୍ତ କର୍ତ୍ତବ୍ୟ ପ୍ରତି ଉଦାସୀନ ରହିବା ଦେଶ ପ୍ରତି ବିଶ୍ୱାସଘାତକତା ଚିହ୍ନ ନୁହେଁ କି? ଦାୟିତ୍ୱପୂର୍ଣ୍ଣ ଭାର ବହନ କରି ତତ୍ ସଂକ୍ରାନ୍ତରେ ଜଗି ରଖି କାର୍ଯ୍ୟ ନ କଲେ ଦେଶର ମର୍ଯ୍ୟାଦା କ୍ଷୁଣ୍ଣ ହୁଏ। କିନ୍ତୁ ଆମ୍ଭ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ସଭ୍ୟମାନଙ୍କ କାର୍ଯ୍ୟକଳାପ ପର୍ଯ୍ୟବେକ୍ଷଣ କଲେ, କର୍ତ୍ତବ୍ୟରେ ଅବହେଳା ଓ ତ୍ରୁଟିର ଉଦାହରଣ କଦାପି ବିରଳ ହେବ ନାହିଁ। ସେ ଯାହା ହେଉ କନିକା କଥା ମୋତେ ଭୁଲିଯିବାକୁ ପଡ଼ିଲା। ଭଦ୍ରଖରୁ ମୁଁ କଟକ ସ୍ୱରାଜ୍ୟ ଆଶ୍ରମକୁ ଫେରିଲି।

# ଅଷ୍ଟମ ଭାଗ

## ପ୍ରଥମ ପରିଚ୍ଛେଦ

### ଓଡ଼ିଶାରେ ବିଭିନ୍ନ କାର୍ଯ୍ୟ

ଯେଉଁ ବର୍ଷ କନିକା ତଦନ୍ତ କମିଟିର କାର୍ଯ୍ୟ ଇତିଶ୍ରୀ ହେଲା, ସେହି ବର୍ଷ ଗଞ୍ଜାମ ଓଡ଼ିଆ ଭାଇଙ୍କଠାରୁ ଦେଶମିଶ୍ରଣ ଦାବୀ ଶୁଣିବା ପାଇଁ ଡଫ ଫିଲିପ୍ କମିଶନ ବସିଲା। ଏହି କମିଶନ ନିକଟରେ ଗଞ୍ଜାମ ଓଡ଼ିଆ ଅଞ୍ଚଳର ଦାବୀ ଶୁଣାଇବା ପାଇଁ ଦେଶମିଶ୍ରଣ ଆନ୍ଦୋଳନ ସୃଷ୍ଟି କରାଗଲା। ସେହି ଜିଲା ଭିତରେ ଗ୍ରାମେ ଗ୍ରାମେ କର୍ମୀମାନେ ବୁଲି ସଭା କରାଇ ଓଡ଼ିଶା ସହିତ ମିଶିବା ସପକ୍ଷରେ ଜନମତ ଗଢ଼ିବାକୁ ପଡ଼ିଲା। ଡଫ ଫିଲିପ୍ କମିଶନଙ୍କ ନିକଟକୁ ଦରଖାସ୍ତ ପ୍ରତିଗ୍ରାମରୁ ପଠାଇବାକୁ ଚେଷ୍ଟା କରାଗଲା। ଏହି କାର୍ଯ୍ୟରେ ଓଡ଼ିଶାର ମୁଖ୍ୟ କର୍ମୀମାନଙ୍କୁ କାମ କରିବାକୁ ପଡ଼ିଥିଲା। ମୁଁ ମଧ ଏହି କାମରେ ଯୋଗ ଦେଲି। ଗ୍ରାମେ ଗ୍ରାମେ ବୁଲି ସଭା କରାଇ ଗ୍ରାମବାସୀମାନଙ୍କ ଦସ୍ତଖତ୍‌ରେ ଦରଖାସ୍ତ ପଠାଇବାକୁ ପଡ଼ିଲା। ଆନ୍ଧ୍ର ଦେଶର ତେଲୁଗୁଭାଷା ଲୋକଙ୍କ ସଂସ୍ରବରେ ରହି ଓଡ଼ିଆ ଭାଇମାନେ କିପରି ନିଜର ନିଜତ୍ୱ ହରାଇ ଅଛନ୍ତି ଇତ୍ୟାଦି କଥା ଉକ୍ତ ଦରଖାସ୍ତମାନଙ୍କରେ ଉଲ୍ଲେଖ କରିବାକୁ ପଡ଼େ। ସର୍ବତ୍ର ସେହି କଥା ଶୁଣିବାକୁ ମିଳେ। ଏସବୁ ଶୁଣି ଓ ଲେଖିବାକୁ ଯାଇ ମୋ ମନରେ ଭାରି ଦୁଃଖ ହୁଏ। ମୁଁ ଭାବେ, ଓଡ଼ିଶାର ଲୋକେ ନିଜର ନିଜତ୍ୱ ଏତେ ସହଜରେ ଭୁଲିଯିବାର କାରଣ କଣ ? ଗୁଜୁରାତି, ବଙ୍ଗାଳି ଓ ହିନ୍ଦୁସ୍ଥାନି ପୃଥିବୀର ଯେ କୌଣସି ଅଞ୍ଚଳରେ ରହିଲେ ମଧ ସେମାନେ ନିଜର ମାତୃଭାଷା କିମ୍ବା ନିଜର ବିଶେଷତ୍ୱ ଭୁଲିଯାଉ ନାହାନ୍ତି, ଅଥଚ ଆମ୍ଭେମାନେ ଅନ୍ୟ ପ୍ରାଦେଶିକ ପ୍ରଭାବରେ ଅତି ସହଜରେ ପ୍ରଭାବିତ ହୋଇ ଯାଉଛି। ଓଡ଼ିଆ ଯେବେ ଏପରି ଅନ୍ୟ ଭାଷାର ଅଥବା ଅନ୍ୟ ପ୍ରଦେଶର ପ୍ରଭାବରେ ନିଜକୁ ଭୁଲି ଯାଇ ପାରେ, ତେବେ ସେ ଓଡ଼ିଶାର ଲୋକ ଏବଂ ସେ ଓଡ଼ିଆ ଏହା ଚିହ୍ନିବାର ଉପାୟ କଣ। ଏହି ଭାବନା ମୋ ମନରେ ଖେଳେ। ଓଡ଼ିଆ ଜାତିର ଏପରି କଣ ଚିହ୍ନ ଅଛି ଯାହାକୁ ଦେଖିଲେ ଅଥବା ଯାହାର ନିଦର୍ଶନରେ ଓଡ଼ିଶାର ଲୋକ ପୃଥିବୀର ଯେ କୌଣସି ଅଞ୍ଚଳରେ ରହିଲେ ମଧ ଓଡ଼ିଆ ବୋଲି ଚିହ୍ନେଇବାକୁ କଠିନ ହେବ ନାହିଁ।

ଏହି ଚିହ୍ନ ଦେଖିପାରିଲେ ଏହା ଓଡ଼ିଆ ଜାତିର ହେବ ମୂଳଭିତ୍ତି। ଏହାକୁଇ ଖୋଜିବାରେ ମୋର ମନ ଦଉଡ଼ିଲା। ଗଞ୍ଜାମରେ ମୁଁ ଯେ କେତେଦିନ ରହି କାର୍ଯ୍ୟ କଲି ସବୁବେଳେ ଏବଂ ସବୁଠାରେ ଓଡ଼ିଆ ଜାତିର ମୂଳଭିତ୍ତି ସ୍ୱରୂପ ଏହି ଚିହ୍ନକୁ ଖୋଜିବାକୁ ଆରମ୍ଭ କଲି। ବହୁତ ଭାବିଲା ପରେ ମୁଁ ବୁଝିଲି, ପୁରୀ ରାଜାଙ୍କର ଅଙ୍କ ଅନୁସାରେ ନିଜର ଜନ୍ମ ତାରିଖ ନିରୂପଣ କରିବା ଏବଂ ଏହି ଅଙ୍କ ଦିବସକୁ ବର୍ଷର ନୂତନ ଦିବସ ରୂପେ ପାଳନ କରିବା ଓଡ଼ିଆର ଦେଶାତ୍ମବୋଧର ଯଥାର୍ଥ ସଂକେତ। ଓଡ଼ିଶାର ଲୋକ ଯେ କୌଣସି ଦେଶରେ ବାସ କରି ନିଜର ଜାତୀୟ ସମ୍ବଳ କେବଳ ଏହାରି ଦ୍ୱାରା ଅକ୍ଷୁଣ୍ଣ ରଖିପାରେ। ଓଡ଼ିଆ ସବୁ ଭୁଲିଯାଉ, କିନ୍ତୁ ପୁରୀ ରାଜାଙ୍କ ଅଙ୍କ ଅନୁସାରେ ଜନ୍ମ ପତ୍ରିକା ଲେଖାଥିଲେ ଓଡ଼ିଆ ବୋଲି ସେ ଜଣା ପଡ଼ିବ।

ସେ ଯାହା ହେଉ, ଏହି ସତ୍ୟ ଟିକକ ଉପଲବ୍ଧି କଲାପରେ ମୋର ମନ ଟିକିଏ ଆଶ୍ୱସ୍ତ ହେଲା। ମୁଁ ଗଞ୍ଜାମ ଜିଲ୍ଲାରେ କାମ ଶେଷ କରି କଟକକୁ ଫେରିଲି। ଏହିବର୍ଷ ସୁଦୂର କର୍ଣ୍ଣାଟ ପ୍ରଦେଶ ବେଲଗ୍ରାମ୍ ଠାରେ କଂଗ୍ରେସର ବାର୍ଷିକ ଅଧିବେଶନ ହେଲା। ମହାତ୍ମାଗାନ୍ଧୀ ଏହି କଂଗ୍ରେସର ସଭାପତି ହୋଇଥିଲେ। ପଣ୍ଡିତ ଗୋପବନ୍ଧୁ ପ୍ରଭୃତି ଆମ୍ଭେ କେତେଜଣ ଏହି କଂଗ୍ରେସକୁ ଯାଇଥିଲୁ। କଂଗ୍ରେସ ପରେ ସମସ୍ତେ ମହାତ୍ମାଜୀଙ୍କ ସହିତ ସାକ୍ଷାତ କରିଥିଲୁ। ମୁଁ ସାବରମତୀକୁ ଫେରି ନ ଯାଇ ଓଡ଼ିଶାରେ କାର୍ଯ୍ୟ କରିବାପାଇଁ ରହିଛି, ଅଥଚ ଏପର୍ଯ୍ୟନ୍ତ କୌଣସି କାର୍ଯ୍ୟ ନିର୍ଦ୍ଦିଷ୍ଟ ଭାବରେ କରି ନାହିଁ– ଏହାକୁ ଉଲ୍ଲେଖ କରି କଥା ପ୍ରସଙ୍ଗରେ ମହାତ୍ମାଜୀ ମୋ ପ୍ରତି ତାଙ୍କର ବିରକ୍ତି ଭାବ ପ୍ରକାଶ କରିଥିଲେ। ଓଡ଼ିଶାରେ କେଉଁଠାରେ କି କାର୍ଯ୍ୟ ମୁଁ କିପରି କରିବି ତାହା ଭାବି ସ୍ଥିର କରି ପାରେ ନାହିଁ। କିଛି କାର୍ଯ୍ୟ କରିବାକୁ ହେଲେ ଅର୍ଥ ଓ କର୍ମୀ ଲୋଡ଼ା। ଏହି ଦୁଇଟି ମୋ ନିକଟରେ ନାହିଁ। ମହାତ୍ମାଜୀ ବିରକ୍ତ ହେଲେ। ମୁଁ ମଧ ହଠାତ୍ କିଛି କରିବା ମୋତେ ସମ୍ଭବପର ବୋଧ ହେଲା ନାହିଁ। ମୋର ମନ ଚଞ୍ଚଳ ହୋଇ ଉଠିଲା। କିନ୍ତୁ ଉପାୟ ଖୋଜି ଖୋଜି କିଛି ପାଇଲି ନାହିଁ।

ବେଲଗ୍ରାମ୍ କଂଗ୍ରେସରେ ମହାତ୍ମାଜୀ ଏକ ଘୋର ବିପ୍ଳବ ସୃଷ୍ଟି କରିଦେଲେ। ଚାରିଅଣା ପଇସା ଦେଲେ ଯେ କେହି କଂଗ୍ରେସର ମେମ୍ବର ହେଉଥିଲେ, କିନ୍ତୁ ମାସକୁ ଦୁଇହଜାର ହାତକଟା ସୂତା ଦେଲେ କଂଗ୍ରେସର ମେମ୍ବର ହେବ ଏହି ନିୟମ ଗାନ୍ଧିଜୀଙ୍କ ପ୍ରଭାବରେ ପରିବର୍ତ୍ତିତ ହୋଇଗଲା। କଂଗ୍ରେସରେ ସ୍ୱରାଜ୍ୟ ଦଳ ସୃଷ୍ଟି ହେଲାଦିନୁ ଯେଉଁ ମତାନ୍ତର ଓ ମନାନ୍ତର ସୃଷ୍ଟି ହୋଇଥିଲା ଏହିଠାରେ ସେ ସବୁ ଗାନ୍ଧିଜୀ ମେଣ୍ଟାଇ ଦେଲେ। ସ୍ୱରାଜ୍ୟ ଦଳ ହାତରେ କଂଗ୍ରେସକୁ ସମର୍ପଣ କରି ଗୋଡ଼ା ଅସହଯୋଗୀମାନଙ୍କୁ ଖଦୀ କାର୍ଯ୍ୟରେ ମନ ଦେବାକୁ ଗାନ୍ଧିଜୀ ପରାମର୍ଶ ଦେଲେ।

ସ୍ୱରାଜ୍ୟ ଦଳ ଏପର୍ଯ୍ୟନ୍ତ କଂଗ୍ରେସ ଅଫିସ ଓ କଂଗ୍ରେସ ଅର୍ଥକୁ କାଉନ୍‌ସିଲ ସଂକ୍ରାନ୍ତ କାର୍ଯ୍ୟରେ ବ୍ୟବହାର କରିପାରୁ ନ ଥିଲେ। ବେଲଗ୍ରାମ୍ କଂଗ୍ରେସରେ ଏହି ଅଧିକାର ସ୍ୱରାଜ୍ୟ ଦଳବାଲା ପାଇଲେ। ଏହାର ପରିବର୍ତ୍ତେ ସୂତାକଟା ମେମ୍ବର ହେବାକୁ (Yarn franchise) ସ୍ୱରାଜ୍ୟ ଦଳ ସ୍ୱୀକାର କଲେ। ଅସହଯୋଗ ନୀତିକୁ କଂଗ୍ରେସ ଗ୍ରହଣ କରିଥିଲେ ମଧ ଏହିଠାରେ ଅସହଯୋଗ କାର୍ଯ୍ୟକ୍ରମକୁ କଂଗ୍ରେସ ସ୍ଥଗିତ କଲା। କଂଗ୍ରେସ ମୂଳ ନିୟମ ଓ କାର୍ଯ୍ୟକ୍ରମରେ ଘୋର ପରିବର୍ତ୍ତନ କରାଗଲା। ଉଭୟ ଦଳ ଏହାକୁ ସ୍ୱୀକାର କଲେ ସତ୍ୟ କିନ୍ତୁ ସୂତା ଦେଇ ମେମ୍ବର ହେବାର ନିୟମରେ ସ୍ୱରାଜ୍ୟ ଦଳର ଆନ୍ତରିକତା ଥିଲା ପରି ବୋଧ ହେଉ ନ ଥାଏ। ଗୋଡ଼ା ଅସହଯୋଗୀ ଦଳ ଏହି ପରିବର୍ତ୍ତନରେ ଆନନ୍ଦ ଅନୁଭବ ନ କଲେ ମଧ ଗାନ୍ଧିଜୀ ଏହାର ମୂଳରେ ଥିବାରୁ ସେମାନଙ୍କ ଅନ୍ତରର ଅସନ୍ତୋଷ ଭାବ ଅନ୍ତର ମଧରେ ଅନ୍ତର୍ନିହିତ ହୋଇଗଲା। ଫଳରେ ଏଣିକି ଆମ୍ଭମାନଙ୍କର ଦୃଷ୍ଟି ଖଦୀ ଓ ସଂଗଠନ ଆଡ଼କୁ ପଡ଼ିଲା। ସ୍ୱରାଜ୍ୟ ଦଳ ସହିତ ସଂଘର୍ଷତା କରିବାକୁ ପ୍ରବୃତ୍ତି ଲୋପ ପାଇଲା। ଏହି ଭାବ ନେଇ ମୁଁ ଓଡ଼ିଶାକୁ ଫେରିଲି।

ପୁରୀଜିଲ୍ଲା ସତ୍ୟବାଦୀ ନିକଟ ସାରଙ୍ଗଯୋଡ଼ି ଗ୍ରାମରେ ପଣ୍ଡିତ କୃପାସିନ୍ଧୁ ହୋତା ଗୋଟିଏ ସେବାଘର ସଂଗଠନ କରିଛନ୍ତି। ତାଙ୍କ ସଙ୍ଗରେ ଶ୍ରୀମାନ୍ ଜଗନ୍ନାଥ ରଥ ଓ ଶ୍ରୀମାନ୍ ସତ୍ୟବାଦୀ ନନ୍ଦ ପ୍ରଭୃତି କେତୋଟି କର୍ମୀ ଅଛନ୍ତି। ମୁଁ ବିପ୍ଳବୀ ଦଳରୁ ଗୋଟିଫିଟା ହୋଇ କଲିକତାରୁ ଆସି ସାକ୍ଷୀଗୋପାଳରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ନିକଟରେ ଥିବା ସମୟରେ ଏହି କର୍ମୀ କେତୋଟି ସତ୍ୟବାଦୀ ସ୍କୁଲର ଛାତ୍ର ଥିଲେ। ସେ ସମୟରୁ ଏମାନଙ୍କୁ ମୁଁ ନିଜର କରି ଦେଖିଛି। ୧୯୨୧ରେ ଏମାନେ କଲେଜ ପାଠପଢ଼ା ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାରୁ ଏମାନଙ୍କ ସହିତ ମୋର ସମ୍ବନ୍ଧ ଟିକିଏ ଘନୀଭୂତ ହୋଇଅଛି। ରାଜନୈତିକ କର୍ମକ୍ଷେତ୍ରରେ ଦୃଷ୍ଟି ପକାଇଲାବେଳେ ଏହି କେତୋଟି କର୍ମୀଙ୍କୁ ମୁଁ ନିଜର ବୋଲି ଭାବେ। ଏହିପରି କେତେକ କାରଣରୁ ପଣ୍ଡିତ କୃପାସିନ୍ଧୁ ହୋତାଙ୍କ କର୍ମ ଆଡ଼କୁ ମୁଁ ଟିକିଏ ଟାଣି ହୋଇଅଛି। ବେଳେ ବେଳେ ଭାବୁଛି, ଏହିମାନଙ୍କ ସହିତ ଯୋଗ ଦେଇ ପୁରୀଜିଲ୍ଲାରେ ମୁଁ ମୋର କର୍ମକ୍ଷେତ୍ର ପ୍ରସ୍ତୁତ କରିବି।

ପଣ୍ଡିତ କୃପାସିନ୍ଧୁ ହୋତା ଏହି ସାରଙ୍ଗଯୋଡ଼ି ଗ୍ରାମରେ ପୁରୀଜିଲ୍ଲାର ରାଜନୈତିକ ସମ୍ମିଳନୀ ବସାଇଲେ। ଏହି ସମ୍ମିଳନୀରେ ମୁଁ ସଭାପତି ନିର୍ବାଚିତ ହୋଇଥିଲି। ସମ୍ମିଳନୀ ପରେ ଏଠାରେ କର୍ମୀମାନଙ୍କ ସହିତ ଅନେକ କଥାବାର୍ତ୍ତା ହେଲା। ସେମାନଙ୍କ ସହଯୋଗରେ ପୁରୀଜିଲ୍ଲାରେ କିଛି ସ୍ଥାୟୀ କାର୍ଯ୍ୟ ଆରମ୍ଭ କରିବାକୁ ମୁଁ ସ୍ଥିର କଲି। ପଣ୍ଡିତ କୃପାସିନ୍ଧୁ ଓ ମୁଁ ଦୁଇଜଣ ଭାବି ବିଚାରି ପୁରୀଜିଲ୍ଲାରେ ସେବାସଂଘ ନାମରେ ଗୋଟିଏ ଅନୁଷ୍ଠାନ ଗଢ଼ିବାକୁ ସ୍ଥିର କଲୁଁ। ପ୍ରଥମେ ଶହେ ଖଣ୍ଡେ ଗ୍ରାମ ନେଇ

କାର୍ଯ୍ୟ ଆରମ୍ଭ କରିବାକୁ ହେବ। ପ୍ରତି ଗ୍ରାମରେ ଗୋଟିଏ ସେବାସମିତି ଗଢ଼ାଯିବ। ପ୍ରତି ସମିତିରେ ଦଶଜଣ କରି ସ୍ୱେଚ୍ଛାସେବକ ରହିବେ। ଏହିପରି ଏକହଜାର ସ୍ୱେଚ୍ଛାସେବକ ସଂଗ୍ରହ କରି ଗୋଟିଏ ସେବାସଂଘ ଗଢ଼ିବାର କଳ୍ପନା କରାଗଲା। ପ୍ରତି ଗ୍ରାମରେ ଶିକ୍ଷା ଓ ସ୍ୱାସ୍ଥ୍ୟ ନେଇ ସେବାସମିତି କାର୍ଯ୍ୟ କରିବ। ପ୍ରତି ତିନିମାସରେ ସ୍ୱେଚ୍ଛାସେବକମାନଙ୍କର ସମ୍ମିଳନୀ ହେବ। ଏହି ସମ୍ମିଳନୀରେ ସେମାନଙ୍କୁ ଗ୍ରାମର ଶିକ୍ଷା ଓ ସ୍ୱାସ୍ଥ୍ୟ ବିଷୟ ନେଇ ନାନା କଥା ବୁଝାଇବାକୁ ହେବ। ପ୍ରତି ସମିତି କଣ କାର୍ଯ୍ୟ କରୁଛି, ତାହାର ରିପୋର୍ଟ ପ୍ରତ୍ୟେକେ ଜଣାଇବେ। ଏହିପରି ଭାବରେ ଶହେ ଖଣ୍ଡି ଗ୍ରାମରେ ସଭାସମିତି ସ୍ଥାପନ କରି ସେଗୁଡ଼ିକୁ ଉତ୍ତମରୂପେ ସଂଗଠନ କଲା ପରେ ଆଉ ଶହେ ଖଣ୍ଡି ଗ୍ରାମ ଧରିବାକୁ ହେବ। ଏହି ସମିତିଗୁଡ଼ିକ ଆମର ସମସ୍ତ ପ୍ରକାର ରାଜନୈତିକ ଆନ୍ଦୋଳନର କେନ୍ଦ୍ର ରୂପେ କାର୍ଯ୍ୟ କରିବ। ଏହିପରି ଭାବରେ ଗୋଟିଏ କାର୍ଯ୍ୟକ୍ରମ ସ୍ଥିର କରି ମୁଁ କାର୍ଯ୍ୟ କରିବାକୁ ବାହାରିଲି।

କଟକରେ ନରହରି ମିଶ୍ର ନାମକ ଜଣେ କାଠ ମହାଜନ ଥିଲେ। ତାଙ୍କର ଘର ପୁରୀ ଜିଲ୍ଲା ଶ୍ରୀପୁରୁଷୋତ୍ତମପୁର ଶାସନରେ। ଶ୍ରୀଯୁକ୍ତ ନରହରି ମିଶ୍ରଙ୍କ ସହିତ ମୋର କଟକରେ ପରିଚୟ ହୋଇଛି। ସେ ଜଣେ ଅତି ସରଳ ଓ ସାଧୁ ପ୍ରକୃତିର ଲୋକ। ମୋ ପ୍ରତି ତାଙ୍କର ସ୍ନେହ ଅସୀମ ଏହିପରି କେତେକ କାରଣରୁ ମୁଁ ତାଙ୍କରି ଗ୍ରାମରୁ କାର୍ଯ୍ୟ ଆରମ୍ଭ କରିବାକୁ ସ୍ଥିର କଲି। ଶ୍ରୀଯୁକ୍ତ ନରହରି ମିଶ୍ରଙ୍କ ସହିତ ତାଙ୍କ ଗ୍ରାମରେ ଉପସ୍ଥିତ ହୋଇ ଗୋଟିଏ ସଭା କରାଇଲି। ସଭାରେ ଦେଶର ପରିସ୍ଥିତି ବିଷୟରେ ବୁଝାଇଲା ପରେ ଗୋଟିଏ ସେବାସମିତି ଗଢ଼ିବାର ପ୍ରସ୍ତାବ ହେଲା। ଦଶଜଣ ଯୁବକ ସେବାସମିତି ଗଠନ କରିବାକୁ ନାମ ଲେଖାଇଲେ। ତାର ପରଦିନ ସକାଳୁ ସେହି ଗ୍ରାମରେ କାର୍ଯ୍ୟ ଆରମ୍ଭ କରାଗଲା। ଗ୍ରାମର ଦୁଇ ପାର୍ଶ୍ୱରେ ନାଳ ପରି ଦୁଇଟି ଜଳାଶ୍ରୟ ଅଛି। ତାହା କିଳାଟି ଦଳରେ ପରିପୂର୍ଣ୍ଣ। ଏହି ଦଳ ହେତୁ ଗ୍ରାମରେ ମାଲେରିଆ ଅତି ପ୍ରବଳ। ଏହି ଦଳ ସଫାଇ କାର୍ଯ୍ୟ ମୁଁ ଆରମ୍ଭ କଲି। ନାମ ଲେଖାଇଥିବା ଦଶ ଜଣ ସ୍ୱେଚ୍ଛାସେବକଙ୍କ ମଧ୍ୟରୁ ଚାରି ପାଞ୍ଚ ଜଣ ମୋ ସହିତ ଯୋଗ ଦେଲେ। ଏହି ଚାରି ପାଞ୍ଚ ଜଣଙ୍କୁ ନେଇ ମୁଁ କାର୍ଯ୍ୟ ଆରମ୍ଭ କଲି। ସକାଳୁ ଦିନ ବାରଟା ପର୍ଯ୍ୟନ୍ତ ଆମ୍ଭେମାନେ ଦଳ ସଫା କରିଛୁ। ଯାହାଙ୍କ ଘର ପଛରୁ ଦଳ ସଫା ହେଉଛି ତାଙ୍କର ଖାତିରି ନାହିଁ। ଆମ୍ଭେମାନେ ତାଙ୍କ ଘର ବାଡ଼ି ତଳୁ ଦଳ ସଫା କଲାବେଳେ ସେ ଦାଣ୍ଡପିଣ୍ଡାରେ ବସି ଗଳ୍ପ କରୁଛନ୍ତି। ଏ ଦୃଶ୍ୟ ଦେଖି ମୋ ମନରେ ଭାରି ଦୁଃଖ ହୁଏ। ସେଦିନ ଓପରବେଳା ମୁଁ ଘର ଘର ବୁଲି ତହିଁଆରଦିନ ସକାଳୁ ଦଳ ସଫା କରିବାକୁ ସମସ୍ତଙ୍କୁ ଅନୁରୋଧ କଲି। ଯେ ଦଳ ସଫା କରିବାକୁ ନ ଯିବେ ମୁଁ ତାହାଙ୍କୁ ଦାଣ୍ଡରେ ଉପବାସରେ ବସି ସତ୍ୟାଗ୍ରହ କରିବି ବୋଲି ଧମକ ମଧ୍ୟ ଦେଲି। ଏହା ସତ୍ତ୍ୱେ ତହିଁ ଆରଦିନ

ଗ୍ରାମର ସମସ୍ତେ ଦଳ ସଫା କରିବାକୁ ବାହାରିଲେ ନାହିଁ। ସେଦିନ ମୁଁ ସେହି ଗ୍ରାମରେ ଉପବାସ ରହିଲି। ମୋର ଉପବାସ ରହିବାର ଗ୍ରାମରେ ଟିକିଏ ଚହଳ ପଡ଼ିଗଲା। ତା ପରେ ଗ୍ରାମର ଅଧିକାଂଶ ଲୋକ ଦଳ ସଫା କରିବାକୁ ବାହାରିଲେ। ଯେଉଁମାନେ ବାହାରିଲେ ନାହିଁ, ସେମାନେ କହିଲେ ଯେ, ଦଳ ସଫା କଲେ ମାଲେରିଆ ଜ୍ୱର ହେବ ନାହିଁ ବୋଲି ଯଦି ଗୋବିନ୍ଦ ମିଶ୍ରେ ଲେଖିଦେବେ, ତେବେ ଆମ୍ଭେମାନେ ଦଳ ସଫା କରିବୁ, ନଚେତ୍ ମିଛରେ ପଙ୍କ ପାଣିରେ ଘାଣ୍ଟି ହେବୁ କାହିଁକି ? ଏହିସବୁ ଯୁକ୍ତି ଶୁଣି ମୋର ଭାରି ଦୁଃଖ ହେଲା। ମୁଁ ଏପରି ଯୁକ୍ତି ଶୁଣିବାକୁ ପାଇବି ବୋଲି କଳ୍ପନା କରି ନ ଥିଲି। ଏଥିରେ ମୋର ଆଖି ଖୋଲିଗଲା। ମୁଁ ଭାବିଲି, ପଲ୍ଲୀଗ୍ରାମରେ କାମ କରିବାକୁ ହେଲେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ବସି ଜୀବନବ୍ୟାପୀ ସାଧନା କରିବାକୁ ହେବ। ଏହା କେତେକ ଦିନ ଅବା ମାସର କାର୍ଯ୍ୟ ନୁହେଁ। ଏଥିପାଇଁ କଠୋର ସାଧନା ଆବଶ୍ୟକ। ଏହି ବିଷୟ ନେଇ ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ସହିତ ମୋର ଆଲୋଚନା ଚାଲିଲା। ମୋ ମତ ସହିତ ସେ ଏକମତ ହେଲେ ନାହିଁ। ଗ୍ରାମକୁ ଗ୍ରାମ ବୁଲି ଗ୍ରାମ ସମ୍ମିଳନୀ କରି ପ୍ରଚାର କରିବାରେ ପଲ୍ଲୀ ଜୀବନ ଜାଗ୍ରତ ହେବ ବୋଲି ସେ ମତାମତ ପ୍ରକାଶ କଲେ। ଗୋଟିଏ ସ୍ଥାନରେ ବସି ରହି ଖଦଡ଼ କାର୍ଯ୍ୟକୁ ମୂଳଭିତ୍ତି କରି କାର୍ଯ୍ୟ କରିବାକୁ ତାଙ୍କର ମନ ମାନିଲା ନାହିଁ। ଏହିପରି ଭାବରେ ତାଙ୍କ ସହିତ ମୋର ମତର ଅମେଳ ହେବାରୁ ମୁଁ ତାହାଙ୍କ ସାଥି ଛାଡ଼ିଲି। ଖଦଡ଼ ମୂଳ ମନ୍ତ୍ର ନ ହେଲେ ମୁଁ ଯାହା କରିବି ତାହା ଗାନ୍ଧୀଜୀଙ୍କୁ ପ୍ରୀତିକର ବୋଧ ହେବ ନାହିଁ। ଗାନ୍ଧୀଜୀ ମୋର କର୍ମ ଓ ଚିନ୍ତାକୁ ନିରୀକ୍ଷଣ କରୁଛନ୍ତି। ମୋ କର୍ମଦ୍ୱାରା ତାହାଙ୍କୁ ଟିକିଏ ସନ୍ତୁଷ୍ଟ କରାଇ ପାରିଲେ ତହିଁରେ ମୋର ପରମ ଆନନ୍ଦ। ଖଦଡ଼ ଛଡ଼ା ସେ ଆଉ କାହିଁରେ ସନ୍ତୁଷ୍ଟ ହେବେ ନାହିଁ ଏହା ମୁଁ ଭଲ କରି ଜାଣେ। ଏପରି ଅବସ୍ଥାରେ ବାଧ ହୋଇ ମୋତେ ପୁରୀ ଜିଲ୍ଲା ଛାଡ଼ିବାକୁ ପଡ଼ିଲା। ମୁଁ ପୁଣି ଆସି କଟକରେ ଉପସ୍ଥିତ ରହିଲି।

କଟକ ଆସି ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଘରେ ରହିଲି। କଟକ ସ୍ୱରାଜ୍ୟ ଆଶ୍ରମ ବର୍ଷ ଆରମ୍ଭରୁ ଛାଡ଼ି ଦେଇ ପ୍ରହରାଜ ମହାଶୟଙ୍କ ଘରେ ରହିଛି। କଟକ ଆଶ୍ରମ ଛାଡ଼ିବାର ଅନେକ କାରଣ ଅଛି। ସେ ସବୁ ଉଲ୍ଲେଖ କରିବା ଦରକାର ନାହିଁ। ସଂକ୍ଷେପରେ କିଛି ନ କହିଲେ ମଧ୍ୟ ଚଳୁ ନାହିଁ। କଟକ ଆଶ୍ରମ ହେଲା ଏକପ୍ରକାର ବାରଭାଇ ଆଖଡ଼ା। ଜିଲ୍ଲା କଂଗ୍ରେସ କମିଟିର ମେମ୍ବରମାନେ ପ୍ରତ୍ୟେକ ହେଲେ ମାଲିକ। କମିଟି ବୈଠକରେ ବସି ହାତ ଟେକି ଦେଲେ ଏକ ମୁହୂର୍ତ୍ତରେ ସବୁ ନିୟମ ବଦଳିଯାଏ। ସ୍ଥାୟୀ ଭାବରେ ଗୋଟିଏ ଅନୁଷ୍ଠାନ ଗଢ଼ିବାର କଳ୍ପନା ମୋର କ୍ରମଶଃ ଦୃଢ଼ ହେଉଛି। କଟକ ସ୍ୱରାଜ୍ୟ ଆଶ୍ରମକୁ ଗୋଟିଏ ସ୍ଥାୟୀ ସ୍ୱରୂପ ଦେବାକୁ ମୁଁ ନିଶ୍ଚୟ କରିଥିଲେ ମଧ୍ୟ ଜିଲା କଂଗ୍ରେସ କମିଟି ମେମ୍ବରମାନଙ୍କ

ମତିଗତିରୁ ମୋତେ ସେ ବିଷୟ ଅନିଶ୍ଚିତ ବୋଧ ହେଲା । କଟକ ସ୍ୱରାଜ୍ୟ ଆଶ୍ରମକୁ କେନ୍ଦ୍ର କରି ଦେଶରେ ସଂଗଠନ କାର୍ଯ୍ୟ କରିବା ଅସମ୍ଭବ ଜଣାଯିବାରୁ ମୁଁ ଆଶ୍ରମକୁ ଛାଡ଼ି ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଘରେ ରହିଲି । ପ୍ରହରାଜଙ୍କ ଘରକୁ ଆସିଲା ପରେ, ସେ କଂଗ୍ରେସରେ ଯୋଗ ଦେଲେ । ବିଲାତି ଲୁଗାଛଡ଼ା ଖଦଡ଼ ପରିଧାନ କଲେ । ସୂତାକଟା ଶିଖିଲେ । ହାତକଟା ସୂତା ଦୁଇହଜାର ଗଜ ଦେଇ ସେ ଜଣେ କଂଗ୍ରେସ ସଭ୍ୟ ହୋଇଛନ୍ତି । ସୂତାକଟା କଂଗ୍ରେସ ସଭ୍ୟ ସଂଗ୍ରହ କରିବା ବର୍ତ୍ତମାନ ଗୋଟିଏ ବଡ଼ କାର୍ଯ୍ୟ । ସମସ୍ତ ଉତ୍କଳରେ ଶହେ ଜଣ ସଭ୍ୟ ହୋଇଛନ୍ତି କି ନାହିଁ ସନ୍ଦେହ । ଓଡ଼ିଶାରେ କଂଗ୍ରେସ ଅନୁଷ୍ଠାନ କିପରି ସଜୀବ ରହିବ ବର୍ତ୍ତମାନ ଏହାହିଁ ବଡ଼ ସମସ୍ୟା । ଜିଲ୍ଲା, ପ୍ରାଦେଶିକ ଓ ନିଖିଳ ଭାରତ କଂଗ୍ରେସ କମିଟିମାନଙ୍କୁ ସଭ୍ୟମାନେ ନିର୍ବାଚିତ ହୁଅନ୍ତି । ମାତ୍ର ନିର୍ବାଚନର ଗନ୍ଧ ନ ଥାଏ । ଇଂରେଜ ଅମଳର ଆରମ୍ଭରେ ଏ ଦେଶରେ ଓକିଲ ମୁକ୍ତିୟାର ନ ଥିଲେ । କିନ୍ତୁ ଓକିଲ ମୁକ୍ତିୟାର ନ ରହିଲେ ଅଦାଲତ୍‌ରେ ନ୍ୟାୟ ବିଚାର ହୋଇ ନ ପାରେ । ଏଣୁ ଜିଲ୍ଲା ଗୋରା ହାକିମମାନେ ଲୋକ ବାଛି 'ତୁ ହେଲୁ ଓକିଲ'' ବୋଲି ଓକିଲ ବସାଇ ଦିଅନ୍ତି । ଆମ କଂଗ୍ରେସ କମିଟିମାନଙ୍କର ନିର୍ବାଚନ ବର୍ତ୍ତମାନ ଅବିକଳ ସେଇୟା ବୋଲି କହିଲେ କଦାପି ଅତ୍ୟୁକ୍ତି ହେବ ନାହିଁ । ଜିଲା ଓ ପ୍ରାଦେଶିକ ଏବଂ ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟମାନେ, ସେହିପରି 'ତୁ ହେଲୁ ମେମ୍ବର' କହି ମେମ୍ବର ବଛା ହୁଅନ୍ତି । ଏପରି ପରିସ୍ଥିତିରେ ମାସକୁ ହାତକଟା ସୂତା ଦୁଇହଜାର ଗଜ ଦେଇ କଂଗ୍ରେସ ମେମ୍ବର ହେଉଛି କିଏ ? କଟକ ଜିଲ୍ଲାରେ ଯେ କେତେ ଜଣ ମେମ୍ବର ହୋଇଥାନ୍ତି, ପ୍ରତିମାସରେ ନିର୍ଦ୍ଦିଷ୍ଟ ତାରିଖରେ ସୂତା ଆଦାୟ କରିବା ପାଇଁ ବାବୁ ଭାଗୀରଥି ମହାପାତ୍ର ଅନୁନୟ ବିନୟ ମଧ୍ୟ କରିବାର ମୁଁ ଦେଖିଚି । ଶ୍ରୀଯୁକ୍ତ ପ୍ରହରାଜଙ୍କ ବସାରେ ରହି ନିଜେ ତୂଳା ଭିଣି, ବଳଣା ଯୋଗାଇ, ସୂତା କାଟି ଓ କଟାଇ କଂଗ୍ରେସ ସଭ୍ୟ ସଂଗ୍ରହ କରିବା ମୋର ହୋଇଥାଏ ଗୋଟିଏ ବଡ଼ କାର୍ଯ୍ୟ । ଜଗତ୍‌ସିଂହପୁର ଅଳକାଶ୍ରମ ହେତୁ କଟକ ଜିଲ୍ଲାର ମେମ୍ବର ସଂଖ୍ୟା କିଛି ବେଶୀ ହୋଇଥାନ୍ତି । ତଥାପି ସଂଖ୍ୟା ବୋଧହୁଏ ପଚାଶରୁ ଅଧିକ ନୁହେଁ ।

ବେଲଗ୍ରାମ୍ କଂଗ୍ରେସ ପରେ ସ୍ୱରାଜ୍ୟ ଦଳର ଶକ୍ତି ଦେଶରେ ବଢ଼ିଛି । କାଉନ୍‌ସିଲ କାର୍ଯ୍ୟ ହୋଇଛି କଂଗ୍ରେସର କାର୍ଯ୍ୟ । କାଉନ୍‌ସିଲରେ ପ୍ରବେଶ କରି ସ୍ୱରାଜ୍ୟ ଦଳର ଲୋକେ ସରକାରଙ୍କୁ ବିବ୍ରତ କରୁଛନ୍ତି । ବଙ୍ଗଳା ଦେଶରେ ଦେଶବନ୍ଧୁ ଦାସଙ୍କ ଅଧିନାୟକତ୍ୱରେ କାଉନ୍‌ସିଲ ଦଳ ଅତ୍ୟନ୍ତ ଶକ୍ତିଶାଳୀ ହୋଇ ଉଠିଛି । ଏହି ସମୟରେ ବଙ୍ଗଳା ଅର୍ଡ଼ିନାନ୍‌ସ ଜାରୀ କରାଇ ବଙ୍ଗଦେଶରେ ଧର ପଗଡ଼ ଆରମ୍ଭ ହେଲା । କେତେକ କାଉନ୍‌ସିଲ୍‌ବାଲା ଧରାହେଲେ । ସ୍ୱରାଜ୍ୟ ଦଳକୁ ଦୁର୍ବଳ କରି, ଶକ୍ତିହୀନ କରିଦେବା ପାଇଁ ସରକାରଙ୍କ ଦମନନୀତି ଚାଲିଲା ବୋଲି ଜନସାଧାରଣ ମନେ କଲେ ।

ମହାତ୍ମାଗାନ୍ଧୀଙ୍କର ମଧ୍ୟ ଏହି ବିଶ୍ୱାସ ହେଲା । ସେ ହଠାତ୍ କଲିକତାରେ ଉପସ୍ଥିତ ହୋଇ ସ୍ୱରାଜ୍ୟ ଦଳକୁ ସବଳ କରିବା ପାଇଁ ହାତକଟା ସୂତା ଦେଇ କଂଗ୍ରେସ ମେମ୍ବର ହେବା ନିୟମ ବଦଳାଇ ଦେବାକୁ ଗୋଟିଏ ଇସ୍ତାହାର ପ୍ରକାଶ କଲେ । ପରେ ପାଟଣାଠାରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକରେ ମହାତ୍ମାଜୀଙ୍କ ଇଙ୍ଗିତରେ ଏହି ନିମୟ ବଦଳିଗଲା । ଏଣିକି ଦୁଇହଜାର ଗଜ ସୂତା ଅଥବା ଚାରିଅଣା ପଇସା ଦେଲେ ଯେ କେହି କଂଗ୍ରେସର ସଭ୍ୟ ହୋଇପାରିବେ, ମାତ୍ର ଖଦଡ଼ ବ୍ୟବହାର କରୁ ନ ଥିଲେ କଂଗ୍ରେସର କୌଣସି ନିର୍ବାଚନରେ ଭୋଟ ଦେଇ ପାରିବେ ନାହିଁ। ଏହି ପରିବର୍ତ୍ତିତ ନିୟମ ପରେ କଂଗ୍ରେସ ଅନୁଷ୍ଠାନକୁ ସଜୀବ ରଖିବା ପାଇଁ ଆମ୍ଭମାନଙ୍କର ଉଦ୍‌ବେଗ ଟିକିଏ କମିଲା । କଂଗ୍ରେସ ସଭ୍ୟ ସଂଗ୍ରହ କରିବା ପାଇଁ ଦିନ ରାତି ଆଉ ଚିନ୍ତିତ ହେବାକୁ ପଡ଼ିଲା ନାହିଁ। ବର୍ତ୍ତମାନ ପୁଣି ମୋର ମନ ଗୋଟିଏ ସ୍ଥାୟୀ ଅନୁଷ୍ଠାନ ଗଢ଼ିବା ପାଇଁ ବ୍ୟଗ୍ର ହୋଇ ଉଠିଲା ।

# ଦ୍ୱିତୀୟ ପରିଚ୍ଛେଦ

## ଚମ୍ପାପୁର ଗାନ୍ଧୀସେବାସଂଘର ପରିକଳ୍ପନା

ସତ୍ୟବାଦୀକୁ ତ୍ୟାଗ କରି ପଣ୍ଡିତ ଗୋପବନ୍ଧୁ ବର୍ତ୍ତମାନ ପୁରୀରେ । ଜେଲ ଭିତରେ ଥିବା ସମୟରେ ସେ ଯେଉଁ ସବୁ କଳ୍ପନା ବାନ୍ଧିଥିଲେ ତଦନୁସାରେ କାର୍ଯ୍ୟ କରିବାକୁ ଅନୁକୂଳ ପରିସ୍ଥିତି ସେ ପାଉନାହାନ୍ତି । ସତ୍ୟବାଦୀ ଶିକ୍ଷାକେନ୍ଦ୍ରକୁ ଗୋଟିଏ ସଜୀବ ଅନୁଷ୍ଠାନ ରୂପେ ଗଢ଼ିବାର କଳ୍ପନା ସେ ଏକାବେଳକେ ତ୍ୟାଗ କରିଛନ୍ତି। ତେଣୁ ସତ୍ୟବାଦୀରୁ ସତ୍ୟବାଦୀ ପ୍ରେସକୁ ସେ ପୁରୀକୁ ଉଠାଇ ନେଇ ଅଛନ୍ତି। ପଣ୍ଡିତ ନୀଳକଣ୍ଠ ଦାସ ଓ ଗୋଦାବରୀଶ ମିଶ୍ର ତାହାଙ୍କ ନିକଟରୁ କରଛଡ଼ା ଦେଲେଣି। ପଣ୍ଡିତ କୃପାସିନ୍ଧୁ ମିଶ୍ର ସତ୍ୟବାଦୀ ସ୍କୁଲକୁ ପୁଣି ଗୋଟିଏ ଉଚ୍ଚ ଇଂରେଜୀ ସ୍କୁଲରେ ପରିଣତ କରିବା ପାଇଁ ପାଟଣା ବିଶ୍ୱବିଦ୍ୟାଳୟ ନିକଟରେ କୃପାପ୍ରାର୍ଥୀ । ଏଣେ କଂଗ୍ରେସ କର୍ମୀମାନଙ୍କ ନିକଟରୁ ମଧ୍ୟ ସେ ସାହାଯ୍ୟ ସହଯୋଗ ପାଉ ନାହାନ୍ତି। କେହି କେହି ମଧ୍ୟ ତାହାଙ୍କୁ କଠୋର ସମାଲୋଚନା କରୁଛନ୍ତି। ଏହି ଦୃଶ୍ୟ ଦେଖି ପଣ୍ଡିତ ଗୋପବନ୍ଧୁ ଦାସ ବେଳେ ବେଳେ ବ୍ୟଥିତ ହୋଇ ଉଠୁଛନ୍ତି। ତାହାଙ୍କ ମୁଖମଣ୍ଡଳରେ ନିରାଶାର ଚିହ୍ନ ଦେଖାଯାଉଛି । ଏଣିକି ସେ କଣ ନିର୍ଦ୍ଦିଷ୍ଟ ଭାବରେ କରିବେ ସେ ବିଷୟରେ ସେ ଅନିଶ୍ଚିତ। କେବଳ ପୁରୀ ଦୁର୍ଭିକ୍ଷ ଅଞ୍ଚଳରେ ଚରଖାଦ୍ୱାରା କିଛି ସାହାଯ୍ୟ କରିବାକୁ ସେ ପ୍ରୟାସ କରୁଛନ୍ତି। ତାହାଙ୍କର ସେହି ପ୍ରୟାସର ଚିହ୍ନ ସ୍ୱରୂପ ପୁରୀ ରିଲିଫ ଖଦଡ଼ ଓ ସତ୍ୟବାଦୀ ସେବାସଦନ ବିଦ୍ୟମାନ।

ଏହିପରି ସମୟରେ ତାହାଙ୍କର ପରାମର୍ଶ ନେବା ପାଇଁ ମୁଁ ପୁରୀରେ ଉପସ୍ଥିତ ହେଲି। ମୁଁ ତାହାଙ୍କ ନିକଟରେ ଉପସ୍ଥିତ ହେବାର ଦୁଇଦିନ ଆଗରୁ ମହାତ୍ମାଗାନ୍ଧୀଙ୍କର ଖଣ୍ଡିଏ ପତ୍ର ତାହାଙ୍କ ନିକଟକୁ ଆସିଛି। ଉକ୍ତ ପତ୍ର ଖଣ୍ଡି ଗାନ୍ଧୀଜୀ ବାବୁ ନିରଞ୍ଜନ ପଟ୍ଟନାୟକଙ୍କ ନିକଟକୁ ଲେଖିଥିଲେ। ନିରଞ୍ଜନ ବାବୁ ଉକ୍ତ ପତ୍ର ଖଣ୍ଡି ଗୋପବନ୍ଧୁ ବାବୁଙ୍କ ନିକଟକୁ ପଠାଇ ଦେଇଛନ୍ତି। ଉକ୍ତ ପତ୍ରରେ ମୋ ବିଷୟ ନେଇ ଗାନ୍ଧିଜୀ ଲେଖିଛନ୍ତି—

"For example take the case of Govind Babu. I have looked upon him as my own son, I have wasted a fortune against him. I have hoped against hope, but he has disappointed me." ଅର୍ଥାତ୍ "ଗୋବିନ୍ଦ ବାବୁ କଥା ଦେଖ। ମୁଁ ତାଙ୍କୁ ନିଜର ପୁଅ ପରି ଦେଖେ, ତା ପଛରେ ମୁଁ ବହୁତ ଖର୍ଚ୍ଚ କରିଛି। ତାଠାରେ ଆଶା ନ ଥାଇ ମଧ୍ୟ ମୁଁ ଆଶା ପୋଷଣ କରିଛି, କିନ୍ତୁ ସେ ମୋତେ ନିରାଶ କରିଛି।"

ମହାତ୍ମାଜୀଙ୍କର ପତ୍ର ଖଣ୍ଡି ମୁଁ ପାଠ କଲି। ମହାତ୍ମାଜୀଙ୍କୁ ମୁଁ ଭଲ କରି ଜାଣେ ବୋଲି କହିଲେ କଦାପି ଅତ୍ୟୁକ୍ତି ହେବ ନାହିଁ। ସୁବିଧା ଅସୁବିଧା ବିଚାର କରିବାର ବ୍ୟକ୍ତି ସେ ନୁହନ୍ତି। "କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ" ଗୀତାର ଏହି ଶ୍ଳୋକ ଉପରେ ତାହାଙ୍କର ଅସୀମ ଶ୍ରଦ୍ଧା। କାର୍ଯ୍ୟ କରିବାକୁ ହେବ। କାର୍ଯ୍ୟର ପରିଣାମରେ କମ୍ ବେଶିକୁ ସେ କର୍ମର ମାପକାଠି ରୂପେ ବିଚାର କରନ୍ତି ନାହିଁ। ଦେଶ ଓ ଭଗବାନଙ୍କ ସେବା ପାଇଁ ସେ ଜୀବନ ଉତ୍ସର୍ଗ କରିଛି ସୁବିଧା ଅସୁବିଧାର କଥା ବିଚାର କରିବା ତାହା ପକ୍ଷରେ ଶୋଭନୀୟ ନୁହେଁ। ଏହି ଦୃଷ୍ଟିରେ ମହାତ୍ମାଜୀ ସମସ୍ତଙ୍କ କର୍ମକୁ ପରୀକ୍ଷା କରନ୍ତି। ଏଣୁ ମୁଁ ସାବରମତୀକୁ ଫେରି ନ ଯାଇ ଓଡ଼ିଶାରେ ଆସି ବସିଛି। ନିର୍ଦ୍ଦିଷ୍ଟ ଭାବରେ କୌଣସି କାର୍ଯ୍ୟରେ ହାତ ଦେଇ ନାହିଁ। ଏଥିପାଇଁ ତାହାଙ୍କ ମନରେ ମୋ ପ୍ରତି ବିରକ୍ତି ଭାବ ଜନ୍ମିଛି ଏବଂ ମୋଠାରେ ସେ ଆଶା ରଖି ପାରୁ ନାହାନ୍ତି। ମହାତ୍ମାଗାନ୍ଧୀଙ୍କ ପତ୍ର ପାଠ କରି ମୋ ମନରେ ଏହିପରି ବହୁତ ଯୁକ୍ତି ଖେଳିଲା। ମହାତ୍ମାଜୀ ଯେପରି ଭାବରେ କାର୍ଯ୍ୟ ଆରମ୍ଭ କରିବାକୁ ଆଶା କରନ୍ତି, ସେପରି ଭାବରେ କୌଣସି କର୍ମ କରିବାକୁ ଯେ ପ୍ରକାର ଦୃଢ଼ତା ଓ ଅଟଳ ବିଶ୍ୱାସ ଆବଶ୍ୟକ, ତାହା ମୋଠାରେ ନାହିଁ। ଓଡ଼ିଶାର ପରିସ୍ଥିତିକୁ ବିଚାର କଲେ, ମୋର ସେପରି ଦୃଢ଼ତା ହୃଦୟରେ ସ୍ଥାନ ପାଉ ନାହିଁ। ମୁଁ ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ସମ୍ମୁଖରେ ଦେଖିଛି। ତାହାଙ୍କ ପରି ଜଣେ ମହାନ୍ ବ୍ୟକ୍ତି ଓଡ଼ିଶାର ପରିସ୍ଥିତି ଦେଖି କିଂକର୍ତ୍ତବ୍ୟବିମୂଢ଼ ହୋଇ ଯାଉଅଛନ୍ତି। ମୁଁ କଣ କରିବି କିଛି ବୁଝି ପାରୁନାହିଁ। କର୍ମ କରିବାକୁ ମୋର ଅର୍ଥ ନାହିଁ କିମ୍ବା ସାଥି ନାହାନ୍ତି। ଗାନ୍ଧୀଙ୍କ ପତ୍ର ପାଠ କରି ମୁଁ ଟିକିଏ ଅସ୍ଥିର ହୋଇ ପଡ଼ିଛି। ମୋତେ ଏପରି ଅସ୍ଥିର ଓ ବ୍ୟଥିତ ହେବା ଦେଖି ଦାସେ ଆପଣେ ମୋତେ

ସାନ୍ତ୍ୱନା ଦେଇ କହୁଛନ୍ତି, "ଗୋବିନ୍ଦ, ତୁମ୍ଭେ ଗାନ୍ଧିଜୀଙ୍କ କଥାରେ ଏପରି ବିଚଳିତ ହୁଅନାହିଁ। ତୁମେ ଯାଇ ଗୋଟିଏ ଗ୍ରାମରେ ବସି ରହ ଓ ଯେତିକି ପାରିବ ସେତିକ କରିବାକୁ ଚେଷ୍ଟା କର। ପଲ୍ଲୀବାସୀଙ୍କ ସେବାରେ ଲଗାଇବାକୁ ବୋଲପୁର ଶାନ୍ତିନିକେତନର ଛାତ୍ରମାନେ ଚାନ୍ଦା କରି ମୋ ନିକଟକୁ ପଚାଶଟି ଟଙ୍କା ପଠାଇ ଦେଇଛନ୍ତି। ଶାନ୍ତିନିକେତନରେ ତୁମେ ଥିଲ। ତୁମେ ଏହି ଟଙ୍କା ନେଇ କୌଣସି ଗୋଟିଏ ଗ୍ରାମରେ ଯାଇ କିଛି କାର୍ଯ୍ୟ ଆରମ୍ଭ କର।"

ଦାସ ଆପଣଙ୍କ ନିକଟରୁ ଏତକ ଉତ୍ସାହବାଣୀ ପାଇଲି। ପଚାଶଟି ଟଙ୍କା ମଧ୍ୟ ପାଇଲି। ମୋ ନିକଟରେ ମଧ୍ୟ କିଛି ଟଙ୍କା ଥାଏ। ୧୯୨୩ରେ ବମ୍ବେଇରେ ମୋର ବନ୍ଧୁମାନେ ମୋତେ ଏକହଜାର ଟଙ୍କା ମୋର ନିଜ ଖର୍ଚ୍ଚପାଇଁ ଦେଇଥିଲେ। ସେଥିରୁ ମୁଁ କେତେକ ନିଜ ଖର୍ଚ୍ଚରେ ଲଗାଇଛି। କେତେକ ବହି ଛପାରେ ଖର୍ଚ୍ଚ କରିଛି। ବମ୍ବେଇରୁ ଫେରି 'ଗୀତା ଓ ସ୍ୱରାଜ୍ୟ' ଏବଂ 'କାରାଗାର କାହାଣୀ' ନାମରେ ଦୁଇଖଣ୍ଡ ବହି ଛପାଇଛି। ୧୯୨୧ ମସିହାରେ 'ଗାନ୍ଧୀଜୀଙ୍କ ଜୀବନ-ଚରିତ୍ର' ଓ 'ସତ୍ୟବାଣୀ' ନାମରେ ଦୁଇଖଣ୍ଡି ବହି ଛପାଇଥିଲି। ସେହି ବହି ଦୁଇଖଣ୍ଡି ସମସ୍ତଙ୍କଦ୍ୱାରା ଆଦୃତ ହୋଇଥିଲେ ମଧ୍ୟ ସନ୍ତୋଷଜନକ ବିକ୍ରି ହୋଇ ନାହିଁ। ଏପରି ଅବସ୍ଥାରେ ରାଜନୈତିକ ବହି ଛପାଇବା ଅର୍ଥ ପଇସା ପାଣିରେ ପକାଇବା ସଂଗେ ସମାନ। ରାଜନୈତିକ ବହି ଉତ୍କଳରେ ଆଦର ନ ପାଇଲେ ମଧ୍ୟ ଓଡ଼ିଆ ସାହିତ୍ୟରେ ସେପରି ବହି ରହିବା ନିହାତି ଦରକାର, ଏଥିରେ ସନ୍ଦେହ ନାହିଁ। ବ୍ୟବସାୟ ଦୃଷ୍ଟିରେ ଯେଉଁମାନେ ବହି ଲେଖନ୍ତି ଅବା ଛପାନ୍ତି ସେମାନେ ଏପରି ବହି କଦାପି ଲେଖିବେ ନାହିଁ କିମ୍ବା ଛପାଇବେ ନାହିଁ। ଦେଶପାଇଁ ଯେଉଁମାନେ ଜୀବନ ଦାନ କରିଛନ୍ତି, ସେହିମାନଙ୍କୁ ବର୍ତ୍ତମାନ କ୍ଷେତ୍ରରେ ମଧ୍ୟ ଏପରି ବହି ଲେଖି ଛପାଇବାକୁ ହେବ। ଏହି ଭାବରେ ପ୍ରଭାବିତ ହୋଇ ମୁଁ ଉକ୍ତ ବହି ଦୁଇଖଣ୍ଡି ଛପାଇଛି। ମୋର ଆର୍ଥିକ ଅବସ୍ଥା ସଂକଟାପନ୍ନ ଥିଲେ ମଧ୍ୟ ମୁଁ ତହିଁର ବିଚାର କରି ନାହିଁ। ବହି ଦୁଇଖଣ୍ଡି ପାଠ କରି ସମସ୍ତେ ପ୍ରଶଂସା କରିଛନ୍ତି, ମାତ୍ର ତହିଁର ପ୍ରସାର ସନ୍ତୋଷଜନକ ନୁହେଁ। ବମ୍ବେଇରୁ ନିଜ ଖର୍ଚ୍ଚପାଇଁ ପାଇଥିବା ପଇସାକୁ ଦେଶ କାର୍ଯ୍ୟରେ ଲଗାଇବାକୁ ସଂକଳ୍ପ କରିଥିବାରୁ ରାଜନୈତିକ ବହି ଛପାଇବାରେ କିଛି ଖର୍ଚ୍ଚ କରିଛି। ଅବଶିଷ୍ଟ ଦୁଇଶହ ଟଙ୍କା ମୋ ନିକଟରେ ଥାଏ। ପଣ୍ଡିତ ଗୋପବନ୍ଧୁ ଦାସ ପଚାଶ ଟଙ୍କା ଦେଲେ। ଏହି ଅଢ଼େଇଶ ଟଙ୍କା ଧରି କଟକ ଜିଲାରେ କାର୍ଯ୍ୟ ଆରମ୍ଭ କରିବାକୁ ମୁଁ ନିଶ୍ଚୟ କଲି। ବର୍ତ୍ତମାନ ଜଣାଶୁଣା ଚମ୍ପାପୁର ହାଟ ନିକଟ ସ୍ଥାନଟିକୁ ମୋର କର୍ମକ୍ଷେତ୍ର ରୂପେ ବାଛିଲି।

ଏହି ସ୍ଥାନଟି କର୍ମକ୍ଷେତ୍ରରୂପେ ବାଛିବାର କାରଣ କଣ ତାହା ଟିକିଏ ବୁଝାଇବା ଆବଶ୍ୟକ ମନେ କରୁଛି। ମୋର କୌଣସି ଜିଲ୍ଲାଗତ ଭାବ ନାହିଁ। ମୋର ଘର

ଗଡ଼ଜାତ ହୋଇଥିବାରୁ କୌଣସି ବିଶିଷ୍ଟ ଜିଲ୍ଲା ଅଥବା ସ୍ଥାନପ୍ରତି ଅତ୍ୟଧିକ ଆଗ୍ରହ ଦେଖାଇବାର କିଛିମାତ୍ର କାରଣ ନାହିଁ। ଓଡ଼ିଶାର ପ୍ରତ୍ୟେକ ସ୍ଥାନ ମୋ ଦୃଷ୍ଟିରେ ସମାନ। ପଲ୍ଲୀର ପ୍ରକୃତ ଅବସ୍ଥା ମୋତେ ଜଣା ନାହିଁ। ଯେ କୌଣସିଠାରେ ବସି କାର୍ଯ୍ୟାରମ୍ଭ କରିବାର କଥା। ତେବେ ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନ ବେଳେ କଟକଜିଲ୍ଲା ସଦର ସବ୍‌ଡ଼ିଭିଜନ କାର୍ଯ୍ୟକ୍ରମ ପରିଚାଳନା କରିବାର ଭାର ମୋ ଉପରେ ନ୍ୟସ୍ତ ଥିଲା। ସେହି ସମୟରେ ଚମ୍ପାପୁର ହାଟ ନିକଟ ବଉଳା ମଠରେ କେତୋଟି କର୍ମୀ ରହି କାର୍ଯ୍ୟ କରୁଥିଲେ। ସେମାନଙ୍କ କାର୍ଯ୍ୟ ଦେଖିବାକୁ ମୁଁ ଦୁଇ ତିନି ଥର ଏ ଅଞ୍ଚଳକୁ ଆସିଛି ଏବଂ ସଭା କରି ଅସହଯୋଗ ବାର୍ତ୍ତା ପ୍ରଚାର କରିଛି। ଏହି ସୂତ୍ରରେ ଏ ଅଞ୍ଚଳର ଲୋକେ ମୋତେ ଦେଖିଛନ୍ତି ଏବଂ ମୋ କଥା ଶୁଣିଛନ୍ତି। ଏହିଠାରେ ଗୋଟିଏ ସୂତାକଟା କେନ୍ଦ୍ର ୧୯୨୨ରେ ସ୍ଥାପିତ ହୋଇଥିଲା। ତାହାଛଡ଼ା ମଉଦା ଜମିଦାର ପଣ୍ଡିତ ଶ୍ରୀ ଆର୍ତ୍ତତ୍ରାଣ ମିଶ୍ରଙ୍କ ସହିତ ମୋର ଟିକିଏ ଘନିଷ୍ଠତା ଜନ୍ମିଛି। ତାହାଙ୍କର ଜ୍ୟେଷ୍ଠପୁତ୍ର ଶ୍ରୀମାନ୍ ଉପେନ୍ଦ୍ରଚନ୍ଦ୍ର ମିଶ୍ର ଓ ମୁଁ କଟକରେ ପାଠ ପଢ଼ିଲାବେଳେ ଏକତ୍ର ମିଶନ ହିନ୍ଦୁ ହଷ୍ଟେଲରେ ରହିଥିଲୁ। କେବଳ ସେତିକି ନୁହେଁ, ଉପେନ୍ଦ୍ରକୁ ମୁଁ ଅତିଶୟ ସ୍ନେହ ଚକ୍ଷୁରେ ଦେଖିଛି ଏବଂ ପଢ଼ିଲାବେଳେ ଥରେ ତାଙ୍କ ଗ୍ରାମକୁ ଆସିଥିଲି। ସେହିଦିନୁ ପଣ୍ଡିତ ଆର୍ତ୍ତତ୍ରାଣ ମିଶ୍ର ମୋତେ ପୁତ୍ରବତ୍ ସ୍ନେହ କରନ୍ତି। ୧୯୨୧ରେ ତାହାଙ୍କ ଘର ଅସହଯୋଗ ଆନ୍ଦୋଳନର ଗୋଟିଏ କେନ୍ଦ୍ରଥିଲା। ଆର୍ତ୍ତତ୍ରାଣ ବାବୁ ମୋ ସାଙ୍ଗରେ ବୁଲି କଂଗ୍ରେସ ମେମ୍ବର କରିବାରେ ଏବଂ ତିଳକ ସ୍ୱରାଜ୍ୟ ପାଣ୍ଠିକୁ ଚାନ୍ଦ ସଂଗ୍ରହ କରିବାରେ ସାହାଯ୍ୟ କରିଛନ୍ତି। ଏହି କାରଣରୁ ସରକାରଙ୍କ କୋପଦୃଷ୍ଟିରୁ ସେ ତ୍ରାହି ପାଇ ନାହାନ୍ତି। ଚୌକିଦାରୀ ପ୍ରେସିଡେଣ୍ଟ ପଦ ତାହାଙ୍କ ଠାରୁ ଛଡ଼ାଇ ନିଆଯାଇଛି। ତାହାଙ୍କ କନିଷ୍ଠ ପୁତ୍ର ଶ୍ରୀମାନ୍ ମହେନ୍ଦ୍ରଚନ୍ଦ୍ର ମିଶ୍ର ଏହି ଦୋଷରୁ ଖଣ୍ଡିଏ ସରକାରୀ ଚାକିରି ମଧ ପାଇ ପାରି ନାହାନ୍ତି। ଏହିପରି ଭାବରେ ମଉଦା ଜମିଦାର ବଂଶଙ୍କ ସହିତ ମୋର ଘନିଷ୍ଠତା ଜନ୍ମିଛି। ମୁଁ ଓଡ଼ିଶାର କୌଣସି ସ୍ଥାନରେ ଗୋଟିଏ ସ୍ଥାୟୀ ଅନୁଷ୍ଠାନ ଗଢ଼ିବାର କଳ୍ପନା କରୁଥିବାର ସେ ଜାଣନ୍ତି। ଏହା ଜାଣି ତାହାଙ୍କ ଅଞ୍ଚଳରେ କାର୍ଯ୍ୟ କରିବା ପାଇଁ ସେ ମୋତେ ବାରମ୍ବାର ଅନୁରୋଧ କରିଛନ୍ତି। ଚମ୍ପାପୁର ହାଟ ନିକଟ କୈଥା ମଉଜା ତାଙ୍କର ଜମିଦାରୀ। ସେଠାରେ ଖଣ୍ଡିଏ ତାଙ୍କର କଚେରୀ ଘର ଅଛି। ଏହି ସ୍ଥାନଟି ବୈରୀ ରେଳ ଷ୍ଟେସନକୁ ଚାରି ମାଇଲ ଦୂର। ଗୋଟିଏ ପକା ସଡ଼କ ଅଛି। କଟକ ସହର ମଧ ନିକଟ। ଏହି ସବୁ କାରଣରୁ ମୁଁ ଏହି ସ୍ଥାନଟିକୁ ବାଛିଛି। ବାଛିଛି ବୋଲି କହିବା ମଧ ଠିକ୍ ନୁହେଁ। କାରଣ ଭାବି ବିଚାରି ମୁଁ ସ୍ଥାନ ବାଛି ନାହିଁ। ଗାନ୍ଧିଜୀଙ୍କ ପତ୍ର ମୋତେ ଅସ୍ଥିର କରିଥାଏ। ମୁଁ କିଛି ଭାବି ନାହିଁ କିମ୍ବା ବିଚାର ମଧ କରିନାହିଁ। ହଠାତ୍ ଏକ ମହଣ ତୁଳା,

ଦୁଇ ଚାରି ଖଣ୍ଡି ଅରଟ ଓ ଦେଢ଼ଶତ ଟଙ୍କା ସହିତ ଏହିଠାରେ ଉପସ୍ଥିତ ହେଲି। ପଣ୍ଡିତ ଆର୍ତ୍ତତ୍ରାଣ ମିଶ୍ରଙ୍କ କଚେରୀ ଘର ହେଲା ମୋର ଆଶ୍ରୟସ୍ଥଳ।

ଏହି ଘରେ ମୁଁ ରହିଲି। ଏ ଘରର ଅବସ୍ଥା ଟିକିଏ ନ ଲେଖିଲେ ଚଳୁନାହିଁ। ଜମିଦାରଙ୍କର ମାସକୁ ତିନିଟଙ୍କା ଦରମା ପାଉଥିବା ଜଣେ ତହସିଲଦାର ଏହି ଘରେ ବର୍ଷରେ ପାଞ୍ଚ ସାତ ଦିନ ରହନ୍ତି କି ନାହିଁ ସନ୍ଦେହ। ଘରଟି ସାତ ସତର ଭାଗ ମାପରେ ତିଆରି। ଘର ଚାରିପଟେ ଉଇହୁଙ୍କା ଓ ଜଙ୍ଗଲ। ଘରର ମାଟିକାନ୍ଥ ଫାଟି ଆଁ କରି ଠିଆ ହୋଇଛି। ଘରଟି ବେଠିରେ ଛପର ହୁଏ। ମୂଷା ଖାଇବାକୁ ରାତ୍ରିରେ ସାପ ଘରେ ବୁଲୁଥିବାର ମୁଁ ଦେଖିଛି। ରାତ୍ରିରେ ଚିଡ଼ିସାପ ମୋ ମଶାରିରେ ପଡ଼ିଛନ୍ତି। ଏହିପରି ଘରେ ମୁଁ ରହିଲି। ହାତରେ ରୋଷେଇ କରି ଖାଏ। ଦିନ ତମାମ ବସି ସୂତା କାଟେ। ଦିନେ ଦିନେ ନିକଟବର୍ତ୍ତୀ ଗ୍ରାମମାନ ବୁଲି ଅରଟ ଅନୁସନ୍ଧାନ କରେ। ଏହିପରି ଏକମାସ ରହିଲା ପରେ କୋଡ଼ିଏ ଖଣ୍ଡି ଅରଟ ଖୋଜି ବାହାର କଲି। ସେଥିରେ ତୂଳାଦେଇ ସୂତା କଟାଇଲି। ସେହି ସୂତାକୁ ଖଦଡ଼ ବୁଣାଇ କଟକ ଆସେ ବିକ୍ରି କରିବାକୁ। ଖଦଡ଼ ବିକ୍ରି ନ ହେଲେ କାମ ବନ୍ଦ। ଖଦଡ଼ ବିକ୍ରି ହେଲେ ପୁଣି ଏକ ମହଣ ତୂଳା ମଗାଏ। ସୂତା କଟାଇ, ଖଦଡ଼ ତିଆରି କରି ପୁଣି ବିକ୍ରି କରିବାକୁ ବାହାରେ। ଯେ କେତେଦିନ କଟକ ଆସେ ଜଣକୁ କିଛି ପଇସା ଦେଇ ରାତିରେ ଘର ଜଗିବାର ବ୍ୟବସ୍ଥା କରିଦିଏ। ଏହି ହେଲା ମୋର କାର୍ଯ୍ୟାରମ୍ଭ।

## ତୃତୀୟ ପରିଚ୍ଛେଦ

### ଗ୍ରାମ୍ୟ ସଂଗଠନ ଆୟୋଜନ

ଗ୍ରାମ ସଂଗଠନ ଉଦ୍ଦେଶ୍ୟରେ ମୁଁ କାର୍ଯ୍ୟ ଆରମ୍ଭ କଲି। ଭବିଷ୍ୟତ କଣ ହେବ କିଏ ଜାଣେ। ମୁଁ ମୋର ଆଦର୍ଶ ଅନୁସାରେ ଏହି ସ୍ଥାନଟିକୁ ଗୋଟିଏ ପ୍ରଧାନ କର୍ମକେନ୍ଦ୍ର କରିବାକୁ କେତେଦୂର ସକ୍ଷମ ଏହାର କଳ୍ପନା ମଧ୍ୟ ମୁଁ କରି ପାରୁ ନାହିଁ। ଦୁଇ ବେଳା ଖାଇବାକୁ ମୋର ସମ୍ବଳ ନାହିଁ। ଅନେକ ସମୟରେ ଉପବାସ ରହିଯାଏ। ଯେଉଁ ପାଣ୍ଠି ହାତରେ ଅଛି ତହିଁରୁ ଖର୍ଚ୍ଚ କରିଦେଲେ କାମ କରିବି କିପରି– ଏହି ଚିନ୍ତା ସବୁବେଳେ ଅସ୍ଥିର କରେ। ବେଳେବେଳେ ଧୈର୍ଯ୍ୟ ଧରି ହୁଏ ନାହିଁ। ସୂତା କଟାଇ ମାସରେ ଚାଳିଶ ପଚାଶ ଟଙ୍କାର ଖଦଡ଼ ତିଆରି କରି ବିକ୍ରି କରିବାରେ ଦେଶସେବା କଣ ହେଲା ? ଏଥିରେ ମୋର ତ୍ୟାଗ ଅବା ରହିଲା କଣ ? ମୋର ତ୍ୟାଗ ଅବା ସେବାକୁ ବୁଝୁଛି କିଏ ? ମୋର କର୍ମ ଯଦି

କାହାରି ଦୃଷ୍ଟି ଆକର୍ଷଣ କରି ନ ପାରିଲା, କିମ୍ବା ତାହା ଯଦି କାହାରିକୁ ପ୍ରଭାବିତ ନ କଲା ତେବେ ଶୁଷ୍କ ମରୁଭୂମିରେ ବସିଲା ପରି କେତେ ଦିନ ମୁଁ ବସି ପାରିବି ? ପଲ୍ଲୀବାସୀଙ୍କ ଭିତରେ ଜୀବନ ସଂଚାର ହେବାର ଉପାୟ ଅବଲମ୍ବନ ନ କଲେ ଗ୍ରାମ ସଂଗଠନ କାର୍ଯ୍ୟରେ କୌଣସି ମୂଲ୍ୟନାହିଁ। ଏହା କରିବାକୁ ହେଲେ ପ୍ରଥମେ ଶିକ୍ଷା ଓ ସ୍ୱାସ୍ଥ୍ୟ ନେଇ କାର୍ଯ୍ୟ କରିବାକୁ ହେବ। କିନ୍ତୁ ଏହି କାର୍ଯ୍ୟ ପାଇଁ କର୍ମୀ ଓ ଅର୍ଥ ଲୋଡ଼ା। ଅର୍ଥ ହେଲେ କେତୋଟି କର୍ମୀ ନିଯୁକ୍ତ କରି କାମ କରାଯାଇପାରେ। ଅର୍ଥ କେଉଁଠାରୁ ଆସିବ ? ଦେଶବାସୀ ମୋତେ ଅର୍ଥ ଦେବେ କେଉଁ ବିଶ୍ୱାସରେ ? ଏହିପରି ଅନେକ ପ୍ରକାର ଭାବନା ମନରେ ଖେଳିଯାଉଥାଏ। ଚାରିଆଡ଼ ମୋତେ ଅନ୍ଧକାର ଦେଖାଯାଏ। ବେଳେ ବେଳେ ସ୍ଥାନ ଛାଡ଼ି ଚାଲିଯିବାକୁ ଇଚ୍ଛା ହୁଏ।

୧୯୨୫ ମସିହା ଜୁନ ମାସରେ ମୁଁ କାର୍ଯ୍ୟ ଆରମ୍ଭ କରିଛି। ବର୍ଷା ଯାଇ ଶୀତ ଆରମ୍ଭ ହେଉଛି। ଠିକ୍ ଏହି ସମୟରେ ମାଲେରିଆର ପ୍ରକୋପ ଦେଖାଗଲା। ଏହିବର୍ଷ କଟକ ଜିଲାରେ ମାଲେରିଆ ଜ୍ୱର ସଂକ୍ରାମକ ରୂପେ ଦେଖାଦେଲା। ପ୍ରବଳ ଝଞ୍ଜା ପବନରେ ବୃକ୍ଷଲତା ଶୋଇଗଲା ପରି ଗ୍ରାମେ ଗ୍ରାମେ ଲୋକ ସବୁ ଜ୍ୱରରେ ପଡ଼ିଗଲେ। ଅନେକ ପରିବାରରେ ରୋଗୀକୁ ଟିକିଏ ପାଣି ଦେବାକୁ କେହି ରହିଲେ ନାହିଁ। ଏହି ଦୃଶ୍ୟ ଦେଖି ପଲ୍ଲୀ ଗ୍ରାମରେ ସ୍ଥିର ହୋଇ ବସିବା ଅସମ୍ଭବ। ମୁଁ ଖଦଡ଼ କାମ ଭୁଲିଗଲି। ସୂତାକଟା ଛାଡ଼ି ରୋଗୀସେବାରେ ମୋର ସମସ୍ତ ସମୟ ଓ ଶକ୍ତି ବ୍ୟୟ କଲି। ଏହାଦ୍ୱାରା ଲୋକଙ୍କର ଦୃଷ୍ଟି ଟିକିଏ ମୋ ଆଡ଼କୁ ପଡ଼ିଲା। ଏପର୍ଯ୍ୟନ୍ତ ଗ୍ରାମବାସୀ ମୋ ନିକଟକୁ ଆସୁ ନ ଥିଲେ। ରୋଗୀସେବା କାର୍ଯ୍ୟ ପ୍ରତିଦିନ ବହୁତ ଲୋକଙ୍କୁ ମୋ ନିକଟକୁ ଟାଣି ଆଣିଲା। ଟିକିଏ ଔଷଧ ପାଇବା ଆଶାରେ ବହୁତ ଲୋକ ମୋ ନିକଟରେ ଉପସ୍ଥିତ ହୁଅନ୍ତି। ମୁଁ ଆସିବା ବେଳକୁ ଏଠାରେ କୌଣସି ସ୍କୁଲ ନ ଥିଲା। ଗୋଟିଏ ସ୍କୁଲ ଆରମ୍ଭ କରିବାପାଇଁ ମୁଁ ପ୍ରସ୍ତାବ କଲି। ମୋରି ପ୍ରସ୍ତାବରେ ଗୋଟିଏ ସ୍କୁଲ ବସିଲା। ଲୋକାଲବୋର୍ଡ଼କୁ ଧରିବାରେ ମାସକୁ ସାତ ଟଙ୍କା କରି ଗୋଟିଏ ସାହାଯ୍ୟ ମଧ୍ୟ ମିଳିଲା। ଏହା ସହିତ ମୋର କାର୍ଯ୍ୟର ପରିସର ମଧ୍ୟ ଟିକିଏ ବଢ଼ିଗଲା। ମୁଁ ଦେଖିଲି, ଜଣେ କାହାକୁ ସାଥିରେ ନ ରଖିଲେ କାର୍ଯ୍ୟ ଚଳିବ ନାହିଁ। କିନ୍ତୁ କାହାରିକୁ ରଖିଲେ କିଛି ଦରମା ଦେବାକୁ ପଡ଼ିବ। ଏହି ଉଦ୍ଦେଶ୍ୟରେ କିଛି ଚାନ୍ଦା ସଂଗ୍ରହ କରିବାପାଇଁ କଟକ ଗଲି। କଟକରୁ ମାସିକ ଚାନ୍ଦା ବାରଟଙ୍କା ପର୍ଯ୍ୟନ୍ତ ସ୍ଥିର କରି କର୍ମକେନ୍ଦ୍ରକୁ ଫେରିଲି। ସେତେବେଳେ ମୋତେ ଯେଉଁମାନେ ସାହାଯ୍ୟ ଓ ସହାନୁଭୂତି ଦେଉଥିଲେ, ସେମାନଙ୍କ ମଧ୍ୟରେ ବାବୁ ଗୋପାଳଚନ୍ଦ୍ର ପ୍ରହରାଜ, ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଓ ବାବୁ ସତ୍ୟନାରାୟଣ ସେନଗୁପ୍ତଙ୍କର ନାମ ଉଲ୍ଲେଖଯୋଗ୍ୟ। ଏହି ସାହାଯ୍ୟରେ ମାସକୁ ବାର ଟଙ୍କା ବେତନ ଦେଇ ବୃନ୍ଦାବନ ଷଡ଼ଙ୍ଗୀ ନାମକ ଜନୈକ କର୍ମୀ ନିଯୁକ୍ତ କଲି। ବୃନ୍ଦାବନଙ୍କ ଘର

ଚମ୍ପାପୁର ନିକଟରେ। ୧୯୨୧ ରୁ ସେ କଂଗ୍ରେସ କାର୍ଯ୍ୟ କରୁଛନ୍ତି। ଖଦୀ କାର୍ଯ୍ୟ କିଛି ଜାଣନ୍ତି ବୋଲି ମୋର ବିଶ୍ୱାସ। ତାଙ୍କ ଉପରେ ସୂତାକଟାଇବା, ଖଦଡ଼ ବୁଣାଇବା ଓ ହିସାବ କିତାବ ରଖିବା ଭାର ଅର୍ପଣ କଲି। ଖଦୀ-ବିକ୍ରି, ଚାନ୍ଦା-ସଂଗ୍ରହ ଓ ରୋଗୀ-ସେବା ଆଦି କାର୍ଯ୍ୟ ମୋ ଉପରେ ରହିଲା। କାର୍ଯ୍ୟର ପ୍ରସାର ସହିତ ଖର୍ଚ୍ଚ ମଧ ବଢ଼ିଲା। ଅତିଥି କେହି କେହି ବେଳେ ବେଳେ ଉପସ୍ଥିତ ହୁଅନ୍ତି। କୌଣସି କୌଣସି ରୋଗୀ ପାଇଁ ପଥ୍ୟାଦିର ବ୍ୟବସ୍ଥା କରିବାକୁ ପଡ଼େ। ମୋର ନିଜ ଖର୍ଚ୍ଚରୁ ଏ ସବୁ ମୁଁ ବହନ କରେ। ନିଜର ଖର୍ଚ୍ଚ ମାସକୁ ଚାରି ପାଞ୍ଚଟଙ୍କାରୁ ମୋର ଅଧିକ ଖର୍ଚ୍ଚ ନ ଥାଏ। ଅଧିକାଂଶ ସମୟରେ ଉପବାସ ରହି ମୁଁ ଏହି ଅଧିକା ଖର୍ଚ୍ଚ ବହନ କରେ।

ଏହିପରି ଭାବରେ ଛମାସ ବିତିଗଲା। ଡିସେମ୍ବର ମାସରେ କଂଗ୍ରେସକୁ ଯିବାର କଥା। ଏହି ବର୍ଷ କାନପୁରଠାରେ କଂଗ୍ରେସ ବସୁଛି। ଶ୍ରୀମତୀ ସରୋଜିନୀ ନାଇଡୁ କଂଗ୍ରେସର ସଭାନେତ୍ରୀ। କଂଗ୍ରେସର କାର୍ଯ୍ୟକ୍ରମରେ ସେପରି କିଛି ନୂତନତ୍ୱ ନାହିଁ। ସେ ଯାହାହେଉ କାନପୁର କଂଗ୍ରେସରେ ମହାତ୍ମାଜୀଙ୍କୁ ସାକ୍ଷାତ କରି କିପରି କାର୍ଯ୍ୟ ଆରମ୍ଭ କରିଛି ସେ ସବୁ କହିଲି। ମୁଁ ଆଶା କରିଥିଲି, ମୁଁ କାର୍ଯ୍ୟାରମ୍ଭ କରିବାର ଦେଖିଲେ ମହାତ୍ମାଜୀ ନିଶ୍ଚୟ ମୋତେ କିଛି ସାହାଯ୍ୟ କରିବେ। କିନ୍ତୁ ମୋର ସେ ଆଶା ବୃଥା। ମହାତ୍ମାଜୀ ମୋ କାର୍ଯ୍ୟ କଥା ଶୁଣି କହିଲେ, "ତୁମ୍‌ନେ ଯୋ କିୟା ଓଦ୍ କୁଛ୍ ନହୀଁ ହେଁ, ତୁମ୍ ଅପନେ ପୟର୍ ସେ ଖାଡ଼ା ହୋ। ମଁଏ ତୁମ୍‌କୋ କୁଛ୍‌ଭୀ ମଦଦ୍ ନହୀଁ କରସକ୍‌ତାହୁଁ।" ମହାତ୍ମାଜୀଙ୍କ ଠାରୁ ଏପରି ନିଷ୍ଠୁର ବାଣୀ ଶୁଣିବାକୁ ପାଇବି ବୋଲି ମୁଁ ସ୍ୱପ୍ନରେ ମଧ ଭାବି ନ ଥିଲି। ମନେ ମନେ ବିଚାରିଲି, ମୁଁ ଅନେକ ଦିନ କିଛି କାର୍ଯ୍ୟ ନ କରି ବସି ରହିଥିବାରୁ ମହାତ୍ମାଜୀ ବୋଧହୁଏ ବିରକ୍ତ ଅଛନ୍ତି। ମହାତ୍ମାଜୀଙ୍କ ପ୍ରତି ମୋ ମନ ମଧ ଟିକିଏ ଚିଡ଼ିଗଲା। ମୁଁ ଭାବିଲି, "ବୁଢ଼ାଟା କିଛି ବୁଝୁ ନାହିଁ। ଖାଲି ବିରକ୍ତ ହେଉଛି।" ମୁଁ ଆଉ କିଛି କହିଥାନ୍ତି କିନ୍ତୁ ଇତ୍ୟବସରରେ ପଣ୍ଡିତ ମୋତିଲାଲ ପ୍ରଭୃତି କେତେ ବିଶିଷ୍ଟ ନେତୃସ୍ଥାନୀୟ ବ୍ୟକ୍ତି ଉପସ୍ଥିତ ହେବାରୁ ମୁଁ ଉଠି ଆସିଲି। ସେଠାରୁ ବମ୍ବେଇ ଗଲି। ବମ୍ବେଇରୁ ଅହମ୍ମଦାବାଦ ଯାଇ ପୁଣି ମହାତ୍ମାଜୀଙ୍କୁ ମୋତେ ସାହାଯ୍ୟ କରିବାକୁ ଅନୁରୋଧ କଲି। ଏଥର ମୋ କଥା ଶୁଣି ନ ଶୁଣିଲା ପରି ସେ ନୀରବ ରହିଲେ। ସେ ନୀରବ ରହିଲେ ବୋଲି ତାଙ୍କୁ ଛାଡ଼ିଦେବା ମୋ ପ୍ରକୃତି ନୁହେଁ। ମୁଁ ପୁଣି କହିଲି, "ଆପଣ ଯଦି ଟଙ୍କା ପଇସା ମୋତେ ସାହାଯ୍ୟ କରିବାକୁ କୁଣ୍ଠିତ ତେବେ ମୋତେ ଆଶୀର୍ବାଦ କରନ୍ତୁ ମୁଁ ଯେପରି ଏହି କାର୍ଯ୍ୟରେ କୃତକାର୍ଯ୍ୟ ହୁଏ। ଆଉ ମୋର ପରିଚୟ ଦେଇ ଖଣ୍ଡିଏ ସାର୍ଟିଫିକେଟ୍ ମୋତେ ଦିଅନ୍ତୁ, ଯାହାକୁ ବ୍ୟବହାର କରି ମୁଁ କିଛି ଅର୍ଥ ସଂଗ୍ରହ କରି ପାରିବି। ଏତିକି ଯଦି ନ କରନ୍ତି ତେବେ

ମୋ ପକ୍ଷେ କାର୍ଯ୍ୟ କରିବା ଅସମ୍ଭବ ହେବ।'' ଏଥର ମହାତ୍ମାଜୀ ତାଙ୍କ ଲେଖା ଛାଡ଼ି ମୋ ଆଡ଼କୁ ଚାହିଁଲେ। ମୋତେ କହିଲେ, ''ତୁ ଏତେଦିନ ମୋ ନିକଟରେ ରହି ପୁଣି ମୋଠାରୁ ପରିଚୟପତ୍ର ମାଗୁଛୁ? ଦେବୀଦାସ (ମହାତ୍ମାଜୀଙ୍କ ସାନପୁଅ) ଯଦି କେଉଁଠାକୁ କାର୍ଯ୍ୟ କରିବାକୁ ଯାଏ ତେବେ ସେ କଣ ମୋଠାରୁ ପରିଚୟପତ୍ର ମାଗିବ? ତୋତେ ମୋର ପରିଚୟପତ୍ର ଦେବା କିଛି ଦରକାର ନାହିଁ।'' ଏତିକି କହି ପୁଣି ସେ ତାଙ୍କ କାର୍ଯ୍ୟରେ ମନ ଦେଲେ। ମୁଁ ଦେଖିଲି, ଏ ବୁଢ଼ାକୁ କୌଣସି ମତେ ବୁଝାଇ ପାରିବି ନାହିଁ। ମୁଁ ଆଉ କିଛି ନ କହି ସେଠାରୁ ଉଠି ଆସିଲି। ମହାତ୍ମାଜୀ ଯାହା କହିଲେ ସେଥିରେ ମୋର ପୂରାପୂରି ମନ ମାନିଲା ନାହିଁ। ତାଙ୍କ ସଙ୍ଗରେ ଲାଗି ତାଙ୍କ କାର୍ଯ୍ୟରେ ବ୍ୟାଘାତ ଦେବା ମୋତେ ଭଲ ଲାଗିଲା ନାହିଁ। ଅହମ୍ମଦାବାଦରୁ ମୁଁ ନିରାଶ ହୋଇ ବମ୍ବେଇକୁ ଫେରିଲି। ମୋତେ ନିଜ ଗୋଡ଼ରେ, ଠିଆ ହେବାକୁ ହେବ— ଏହା ବୁଝିବାକୁ ଆଉ କିଛି ବାକି ରହିଲା ନାହିଁ। ଏଥର ବମ୍ବେଇରେ କେତେକ ବନ୍ଧୁଙ୍କୁ ସମସ୍ତ କଥା କହି କିଛି ସାହାଯ୍ୟ ପ୍ରାର୍ଥନା କଲି। ସେମାନଙ୍କ ସାହାଯ୍ୟରେ ଦୁଇହଜାର ଟଙ୍କା ଧରି ଓଡ଼ିଶାକୁ ଫେରିଲି। ଏଥର ଖଦଡ଼ କାର୍ଯ୍ୟରେ କିଛି ବେଶି ଟଙ୍କା ଖଟାଇ ଖଦୀ ଆମଦାନୀ ବଢ଼ାଇଦେଲି। ଔଷଧ ବିତରଣ କାର୍ଯ୍ୟ ପ୍ରତିଦିନ ନିୟମିତ ରୂପେ ଚାଲିଲା। ଦୁଇ ତିନି ଶହ ଟଙ୍କା ଖର୍ଚ୍ଚରେ ଆଉ ଖଣ୍ଡିଏ ଘର ତୋଳାହେଲା। ମାସକୁ ଆଠଟଙ୍କା ଦରମାରେ ଗ୍ରାମର ଗୋଟିଏ ଲୋକ ନିଯୁକ୍ତ କଲି। ତୂଳା, ସୂତା, ଖଦଡ଼ ନିଆ ଆଣ କରିବା ଆଦି ହେଲା ତାହାର କାର୍ଯ୍ୟ।

ଏହିବର୍ଷ ଗ୍ରାମବାସୀଙ୍କ ସହିତ ଘନିଷ୍ଠ ଭାବରେ ମିଳାମିଶା କରିବାର ଯଥେଷ୍ଟ ସୁବିଧା ଓ ସୁଯୋଗ ମିଳିଲା। କାରଣ ସେମାନେ ମୋତେ ଚିହ୍ନିପାରିବା ସଙ୍ଗେ ସେମାନଙ୍କ ଆପତ୍ତି ଅଭିଯୋଗ ନେଇ ମୋ ନିକଟରେ ଉପସ୍ଥିତ ହୁଅନ୍ତି। ଗ୍ରାମର ଅବସ୍ଥା ଜାଣିବାକୁ ମୋର ନିକଟରେ ଆଉ କିଛି ବାଧା ରହେ ନାହିଁ। ଗ୍ରାମର ସାଧାରଣ ଲୋକଙ୍କ ସହିତ ମିଳାମିଶା କରିବାରେ ପଲ୍ଲୀଗ୍ରାମର ପରିସ୍ଥିତି ବିଷୟରେ ମୁଁ ଯେପରି ଯାହାସବୁ ଜାଣିବାକୁ ପାଇଲି ତହିଁରେ ମୋତେ ଏକାବେଳେକ ଅନ୍ଧକାର ଦେଖାଗଲା। ମୁଁ ସ୍ପଷ୍ଟ ଦେଖି ପାରିଲି ଯେ, ବିଦେଶୀ ଶାସନର ପ୍ରଭାବରେ ଏ ଦେଶ ପ୍ରକୃତ ମୃତ ହୋଇଛି। ଲୋକଙ୍କର ଜୀବନ ନାହିଁ। ଆତ୍ମା କହିଲେ ଯାହା ବୁଝାଏ ତାହା ଏ ଦେଶରେ ନାହିଁ। ସତ୍ୟ, ନ୍ୟାୟ ଓ ଧର୍ମ ଏସବୁ ପ୍ରହେଳିକା। ଦାରିଦ୍ର୍ୟତା ସେମାନଙ୍କୁ ଶେଷ କରିଛି। ଧନୀ, ଜମିଦାର ଓ ମହାଜନମାନଙ୍କର ଦାଉରେ ସେମାନଙ୍କ ପିଣ୍ଡରେ ପ୍ରାଣ ନାହିଁ। ଧର୍ମ କହିଲେ ଠାକୁର ଠାକୁରାଣୀ ନିକଟରେ କିଛି ଭୋଗଦେବା, ନତୁବା ଗୋଟିଏ ମୁଣ୍ଡିଆ ମାରି ଟିକିଏ ତୁଳସୀପତ୍ର ଭୋଗ ପାଇବା ହୋଇଛି ଧର୍ମର ବଡ଼ ଚିହ୍ନ। ଆଖି ଆଗରେ କେହି ନ ଖାଇ

ନ ପିଇ ମରି ଯାଉଥିଲେ ମଧ ସେ ଦୃଶ୍ୟ କାହାରି ଆଖିକୁ ଦେଖାଯାଉ ନାହିଁ। ହୃଦୟରୁ ସ୍ନେହ, ମାୟା, ମମତା ଶୁଖି ଯାଇଛି। ଏପରି ଲୋକଙ୍କ ମଧରେ ଜୀବନ-ସଂଚାର ହେବ କିପରି? ସହସ୍ର ବର୍ଷ ଧରି ଏପରି ଟିକିଏ ଔଷଧ ବାଣ୍ଟିଲେ କିମ୍ବା ସୂତା କଟାଇ ଖଦଡ଼ ତିଆର କଲେ ଦେଶର କିଛି ହେବ ନାହିଁ। ଏହା ପଲ୍ଲୀ ଜୀବନରେ ପ୍ରାଣ-ସଂଚାର ହେବାର ବାଟ କେଉଁଠାରେ? ଏହାର ଔଷଧ କଣ? ଏହିସବୁ ଚିନ୍ତା ମୋ ମନରେ ଖେଳିଲା। ମୃତ ଶରୀରରେ ପ୍ରାଣ-ସଂଜୀବନୀ-ମନ୍ତ୍ର ଦେବାପାଇଁ ମୋର ଶକ୍ତି କଣ ଅଛି ମୁଁ ଭାବି ସ୍ଥିର କରି ପାରିଲି ନାହିଁ।

ଗ୍ରାମ୍ୟ ଲୋକେ ଧନୀ, ମହାଜନର ଦାଉରେ, ଜମିଦାର ତହସିଲଦାରର ଜୁଲୁମରେ, ପୋଲିସର ଭୟରେ ଡରି ସଢ଼ି ଗଲେଣି। ମୋ କଥାରେ ସେମାନଙ୍କର ବିଶ୍ବାସ ଜନ୍ମିବା ସହଜ ନୁହେଁ। ମୁଁ ପୁଣି ଗୋଟିଏ ଉଡ଼ି ଆସିଲା ଚଢ଼େଇ କହିଲେ ଚଳେ। ମୋର ଘର କେଉଁ ରାଜ୍ୟରେ, ମୁଁ କଣ ଏବଂ କିଏ, ତାହା ସେମାନେ ଜାଣନ୍ତି ନାହିଁ। ଦେଶସେବା କରିବାକୁ ମୁଁ ବାହାରିଛି ଏ କଥାଟା ସେମାନେ ବୁଝି ପାରୁଥିଲେ ମଧ ହୃଦୟର ସହିତ ବୁଝି ନାହାନ୍ତି। ଅସହଯୋଗ ଦବିଗଲା ଦିନୁ, ଜିଲ୍ଲାବୋର୍ଡ଼ ଓ କାଉନ୍‌ସିଲ ଆଦି ନିର୍ବାଚନରେ ଏହି ଧନୀ, ମହାଜନ ଓ ଜମିଦାର ଶ୍ରେଣୀର ଲୋକେ ମୋ ଭଳି କଂଗ୍ରେସ କର୍ମୀମାନଙ୍କୁ ନୀଚ ସ୍ୱାର୍ଥପର ଲୋକ ବୋଲି ଚିତ୍ରିତ କରି ଅଛନ୍ତି। ଜୀବିକା ନିର୍ବାହ କରିବାର ଅନ୍ୟ କିଛି ସୁବିଧା ନ ଥିବାରୁ ଦେଶସେବାର ବାହାନା କରି, ସାଧାରଣ ଲୋକଠାରୁ ଠକି ଖାଇବାକୁ, ଆମ୍ଭେମାନେ ଗୋଟିଏ ବାନା ଧରି ବୁଲୁଛୁ ବୋଲି ସ୍ୱାର୍ଥପର ଲୋକେ ପ୍ରଚାର କରିବାରେ ତ୍ରୁଟି କରି ନାହାନ୍ତି। ଏହାଛଡ଼ା ଅତି ପ୍ରାଚୀନ କାଳରୁ ସାଧାରଣ ଲୋକେ ଧନୀ, ଜମିଦାର ଶ୍ରେଣୀର ଲୋକଙ୍କୁ ସମାଜର ଆଦର୍ଶ ରୂପେ ଦେଖି ଆସିଛନ୍ତି। ଲୋକେ କହିବାର ମୁଁ ଜାଣେ, "ଅମୁକ ଲୋକ ଏଡ଼େ ବଡ଼ ଲୋକ ଯେ ତାଙ୍କ ଗୋଡ଼ ତଳେ ଲାଗେ ନାହିଁ, କିମ୍ବା ଅମୁକ ଲୋକ ଏଡ଼େ ବଡ଼ ଲୋକ ଯେ ତା ଆଗରେ କେହି ସଳଖରେ ଠିଆ ହେବାକୁ ସାହସ କରିବ ନାହିଁ।" ବଡ଼ ଲୋକ କହିଲେ ଲୋକ ସାଧାରଣଙ୍କ ଧାରଣା ଏହିପରି। ପରପାଇଁ ଅଥବା ଦେଶପାଇଁ ଯେ ଯେତିକି ତ୍ୟାଗ କରିପାରେ, ଯେ ଯେତିକି ଦୁଃଖ କଷ୍ଟ ସହିପାରେ ସେ ହେଉଛି ଯଥାର୍ଥରେ ବଡ଼ ଲୋକ, ଏପରି ଧାରଣା ଲୋକଙ୍କ ମନରେ ନାହିଁ। ଏପରି କଥା ସେମାନେ ଶୁଣିବାକୁ ପାଇ ନାହାନ୍ତି କିମ୍ବା ଏପରି ଆଦର୍ଶ ଦେଖି ନାହାନ୍ତି। ଏହା ସେମାନଙ୍କ କଳ୍ପନାର ଅତୀତ।

ଏପରି ଅବସ୍ଥାରେ ଲୋକସାଧାରଣଙ୍କର ମନରେ ବିଦ୍ରୋହଭାବ ଜାଗ୍ରତ କରାଇ ନ ପାରିଲେ ଗ୍ରାମ-ସଂଗଠନର କୌଣସି ମୂଲ୍ୟନାହିଁ। ସେମାନେ ଯେଉଁ ସବୁ ଧର୍ମ ଓ ଆଦର୍ଶ ରୂପେ ଦେଖୁଛନ୍ତି ତାହାରି ବିରୁଦ୍ଧରେ ବିଦ୍ରୋହଭାବ ଜାଗ୍ରତ କରାଇବାକୁ ହେବ।

ଦେଶସେବା ଓ ପରର ମଙ୍ଗଳ ଚିନ୍ତା ମନୁଷ୍ୟର ଏକମାତ୍ର ଆଦର୍ଶ ଏବଂ ତାହାହିଁ ଧର୍ମ୍ମ, ଏହି ଭାବ ପଲ୍ଲୀବାସୀର ହୃଦୟରେ ଜାଗ୍ରତ କରାଇ ନ ପାରିଲେ ଗ୍ରାମ ସଂଗଠନର କୌଣସି ମୂଲ୍ୟନାହିଁ। ଭାରତର ଅନ୍ୟାନ୍ୟ ପ୍ରଦେଶରେ ଦେଶସେବା କାର୍ଯ୍ୟ କେତେଦିନୁଁ ଆରମ୍ଭ ହେଲାଣି। ଦେଶପାଇଁ କାର୍ଯ୍ୟ କରି ଦେଶ ଓ ସମାଜରେ ଜଣାଶୁଣା କେତେ ଲୋକ ଜୀବନର ସର୍ବସ୍ୱ ତ୍ୟାଗ କରିଛନ୍ତି। ଦେଶପାଇଁ ଜେଲ ଖଟିଛନ୍ତି, ଫାଶି କାଠିରେ ଝୁଲିଛନ୍ତି ଓ ଦେଶତ୍ୟାଗୀ ହୋଇଛନ୍ତି। ମୋଟ ଉପରେ ଦେଶର ସାର୍ବଜନୀନ ଜୀବନରେ ଗୋଟିଏ ପରଂପରା ସ୍ରୋତ ବହି ଆସୁଛି। ଦେଶ ଜୀବନର ପରଂପରା ଅଛି। କିନ୍ତୁ ଓଡ଼ିଶାରେ ସେପରି ଧାରାବାହିକ ଜୀବନ କାହିଁ? ଆମ୍ଭମାନଙ୍କଠାରୁ ଓଡ଼ିଶାର ରାଜନୈତିକ ଜୀବନ ଆରମ୍ଭ। ରାଜନୈତିକ ଜୀବନ ଓଡ଼ିଶାରେ ଆମ୍ଭେମାନେ ସୃଷ୍ଟି କରିଛୁ ଏବଂ ଦେଶକାର୍ଯ୍ୟ କରି ଜେଲ ଖଟିଛୁ। ଓଡ଼ିଶାରେ ପରିବର୍ତ୍ତନ ଆଣିବା ପାଇଁ ସମୟ ଆବଶ୍ୟକ। ତାହା ପୁଣି ଜଣଙ୍କ ଜୀବନର କାର୍ଯ୍ୟ ନୁହେଁ। ପଛକୁ ପଛ ଲାଗି ନୀରବ ସାଧନା କରିବାକୁ ହେବ। ଦୁଃଖକଷ୍ଟ ଅପମାନ ସହି ପଲ୍ଲୀ ଗ୍ରାମରେ ପଡ଼ି ରହି କାର୍ଯ୍ୟ କରିବାକୁ ହେବ। ପଲ୍ଲୀବାସୀର ଜୀବନରେ ପରିବର୍ତ୍ତନ ଆଣିବା ପାଇଁ ପୁରୁଷାନୁକ୍ରମେ ସାଧନା ଆବଶ୍ୟକ। ଏହି କଥା ମୁଁ ଉପଲବ୍ଧି କଲି। ମୋ ମନରୁ ଅଧୈର୍ଯ୍ୟ ଭାବ ଓ ଅସ୍ଥିରତା ଦୂର ହେଲା। ମୁଁ ପଣ କଲି, ଏଠାରେ ମୁଁ ମରିବି ପଛକେ ଏ ସ୍ଥାନ କଦାପି ତ୍ୟାଗ କରିବି ନାହିଁ।

ଏହିପରି ସଂକଳ୍ପ କରି ମୋର ଚିନ୍ତା ଓ କଳ୍ପନାକୁ ସ୍ଥୂଳ ସ୍ୱରୂପ ଦାନ କରିବାର ଆବଶ୍ୟକତା ଅନୁଭବ କଲି। ମୋର କର୍ମ ଓ ଚିନ୍ତାର ରୂପାନ୍ତର କି ନାମରେ ପ୍ରକାଶ ପାଇବ ଏଥିପାଇଁ ଚିନ୍ତିତ ହେବାକୁ ପଡ଼ିଲା। ମୋ ଜୀବନର କ୍ରମବିକାଶ ଓ ଆଦର୍ଶ, ମୋର କର୍ମ ଓ ଚିନ୍ତାର ମୂଳଭିତ୍ତି ହେବା ଦରକାର। ମହାତ୍ମାଗାନ୍ଧୀଙ୍କ କର୍ମ ଓ ଆଦର୍ଶ ମୋତେ ପ୍ରଭାବିତ କରିଛି ଏବଂ ମୋର ଜୀବନର କ୍ରମବିକାଶ ଓ ଆଦର୍ଶକୁ ପରିବର୍ତ୍ତିତ କରିଛି। ମୁଁ ଯାହା କରୁଛି ଅବା ଯାହା କିଛି ଚିନ୍ତା କରୁଛି, ତହିଁରେ ମହାତ୍ମାଜୀ ପ୍ରତ୍ୟକ୍ଷ ରୂପେ ସଂଶ୍ଳିଷ୍ଟ ନ ଥିଲେ ମଧ୍ୟ ସେସବୁ ତାହାଙ୍କ ପ୍ରେରଣାର ଫଳମାତ୍ର ବୋଲି ମୁଁ ସବୁବେଳେ ଅନୁଭବ କରୁଛି। ମୋର କର୍ମପ୍ରଗତିକୁ 'ଗାନ୍ଧୀସେବାଶ୍ରମ' ନାମରେ ପରିଚୟ ଦେବାକୁ ବହୁଦିନରୁ ମୋର ଗୋଟିଏ ଆକାଂକ୍ଷା ଜନ୍ମିଛି। ଆଜି ସେହି ନାମ ଦେଇ ମୁଁ ଏହି ସ୍ଥାନରେ ଜୀବନ ଉତ୍ସର୍ଗ କରିବି ବୋଲି ସଂକଳ୍ପ କଲି। ମୋର କର୍ମକେନ୍ଦ୍ରର ନାମ ହେଲା 'ଗାନ୍ଧୀସେବାଶ୍ରମ'।

୧୯୨୬ ମସିହା ଶେଷ ହେବାକୁ ଲାଗିଲା। ଏଠାରେ କାର୍ଯ୍ୟାରମ୍ଭ କଲା ଦିନୁ ସଭା କରି ଲୋକଙ୍କୁ କିଛି କହି ନାହିଁ। ମୁଁ ଏଠାରେ କାହିଁକି ଅଛି, ଯାହାସବୁ କାର୍ଯ୍ୟ କରୁଛି ସେ ସବୁର ଉଦ୍ଦେଶ୍ୟ କଣ, ଇତ୍ୟାଦି କଥା ଲୋକଙ୍କୁ ବୁଝାଇ

ଦେବା ଆବଶ୍ୟକ। ଏଣୁ ଗୋଟିଏ ସଭା କରାଇଲି। ପଣ୍ଡିତ ଗୋପବନ୍ଧୁ ଦାସ ସେହି ସଭାର ସଭାପତି ହେଲେ। ଅନ୍ୟାନ୍ୟ କଂଗ୍ରେସ କର୍ମୀ ଓ ନେତାମାନଙ୍କୁ ନିମନ୍ତ୍ରଣ କରିଥିଲେ ମଧ ବାବୁ ରାଜକୃଷ୍ଣ ବୋଷଙ୍କ ଛଡ଼ା ଅନ୍ୟ କେହି ଆସି ପାରି ନଥିଲେ। ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜ ଓ ବାବୁ ସତ୍ୟନାରାୟଣ ସେନଗୁପ୍ତ ମଧ ଯୋଗ ଦେଇଥିଲେ। ଲୋକସାଧାରଣ ମଧ ଉତ୍ସାହର ସହିତ ଯୋଗ ଦେଇଥିଲେ। ସଭାରେ ମୁଁ ମୋର ମନୋଗତ ଭାବ ନେଇ ସମସ୍ତ କଥା ବୁଝାଇଲି। ଗାନ୍ଧୀସେବାଶ୍ରମର ନାମ ମଧ ଏହି ସଭାରେ ପ୍ରକାଶ କଲି। ଗତ ଦେଢ଼ବର୍ଷର ଗୋଟିଏ କାର୍ଯ୍ୟ ବିବରଣୀ ରିପୋର୍ଟ ଆକାରରେ ଛପା ହୋଇଥିଲା। ଆୟ ବ୍ୟୟର ଗୋଟିଏ ହିସାବ ମଧ ପ୍ରକାଶ କରିଥିଲି। ଏହିପରି ଭାବରେ ଆଶ୍ରମର ନାମକରଣ ଉତ୍ସବ ସଂପାଦିତ ହେଲା। ଏହି ଛପା ରିପୋର୍ଟ ନେଇ ମୁଁ ଗୌହାଟୀ କଂଗ୍ରେସରେ ମହାତ୍ମାଜୀଙ୍କୁ ଭେଟିଲି। ମୋର କାର୍ଯ୍ୟର ଖଣ୍ଡିଏ ଛପା ରିପୋର୍ଟ ପାଇ ମହାତ୍ମାଜୀ ପ୍ରଥମେ ଖୁସି ହୋଇଥିଲେ। ରିପୋର୍ଟ ଖଣ୍ଡିକ ଆମୂଳଚୂଳ ପାଠ କଲେ। ଗୌହାଟି କଂଗ୍ରେସରେ ମୁଁ ତାହାଙ୍କ ନିକଟରେ ରହିଥିଲେ ମଧ କୌଣସି ବିଷୟରେ କଥା ହେବାକୁ ସମୟ ପାଇ ନାହିଁ। ଏଣୁ କଂଗ୍ରେସ ପରେ ମୁଁ ତାହାଙ୍କ ସହିତ କଲିକତା ଫେରିଲି। ରେଳଗାଡ଼ିରେ ମୋର କାର୍ଯ୍ୟ ନେଇ କଥା ହେବାକୁ ସୁବିଧା ମିଳିଲା। ଓଡ଼ିଶାର ବର୍ତ୍ତମାନ ଅବସ୍ଥା ନେଇ କେତେକ କଥା ମୁଁ ରିପୋର୍ଟରେ ଲେଖିଥାଏ। ଏତକ ଲେଖିବା ଅନାବଶ୍ୟକ ଓ ଖଦଡ଼ କାର୍ଯ୍ୟ ସନ୍ତୋଷଜନକ ନୁହେଁ ବୋଲି ମହାତ୍ମାଜୀ ସମାଲୋଚନା କଲେ। ଓଡ଼ିଶାର ପରିସ୍ଥିତିରେ କିଛି କାର୍ଯ୍ୟ କରିବା କି କଠିନ କେବଳ ସେତିକି ଜଣାଇଦେବା ପାଇଁ ରିପୋର୍ଟରେ ମୁଁ ସେତକ ଲେଖିଥାଏ। ମହାତ୍ମାଜୀଙ୍କ ସମାଲୋଚନା ଶୁଣି ମୁଁ କହିଲି, "ଆପଣ କିଛି ନ ବୁଝି ମୋତେ ଦୋଷ ଦେଉଥିଲେ ମୁଁ କିଛି କଲି ନାହିଁ ବୋଲି। କିନ୍ତୁ ଓଡ଼ିଶାର ପରିସ୍ଥିତିରେ କିଛି କରିବା କି ପ୍ରକାର କଠିନ ତାହା ଆପଣଙ୍କୁ ଜଣାଇବା ପାଇଁ ମୁଁ ସେତକ ଲେଖିଛି।" ମୋଠାରୁ ଏତକ ଶୁଣି ମହାତ୍ମାଜୀ କହିଲେ, "ମୁଁ ଓଡ଼ିଶାକୁ ଦୁଇଥର ଯାଇ ଆସିଲିଣି, ଓଡ଼ିଶା କଥା ମୁଁ କିଛି ଜାଣେ ନାହିଁ? ତୁ କଣ ମୋତେ ଶିଖାଇବାକୁ ଚାହୁଁ?" ଏହାର ଜବାବରେ ମୁଁ କହିଲି, "ଆପଣ ଓଡ଼ିଶା କଥା କିଛି ଜାଣନ୍ତି ନାହିଁ ସେ କଥା ତ ମୁଁ କହୁ ନାହିଁ। କିନ୍ତୁ ଓଡ଼ିଶାର ଅବସ୍ଥା ଜାଣିବାକୁ ଆପଣ କି ସୁବିଧା ପାଇଛନ୍ତି? ଓଡ଼ିଶାରେ ଯାଇ ମାସେ ରହନ୍ତୁ ତେବେ ଆପଣ ଆମ୍ଭମାନଙ୍କ ସୁବିଧା ଅସୁବିଧା ବୁଝିପାରିବେ।" ମୋର ଏପରି ଉକ୍ତି ଶୁଣି ମହାତ୍ମାଜୀ ଓଡ଼ିଶାରେ ଏକମାସ ରହିବା ପାଇଁ ଜବାବ ଦେଲେ। ପଣ୍ଡିତ ଗୋପବନ୍ଧୁ ଦାସ କଂଗ୍ରେସରୁ ଫେରି କଲିକତାରେ ଥାନ୍ତି। ସେ ହେଉଛନ୍ତି ଓଡ଼ିଶାର ଏକମାତ୍ର ନେତୃସ୍ଥାନୀୟ ବ୍ୟକ୍ତି। ତାହାଙ୍କ ସହିତ ପରାମର୍ଶ ନ କରି ମହାତ୍ମାଜୀ ଓଡ଼ିଶାକୁ ଏକମାସ ଯାଇ ରହିବା ସ୍ଥିର ହୋଇ

ନ ପାରେ। ତେଣୁ ମୁଁ ଆସି ଗୋପବନ୍ଧୁ ବାବୁଙ୍କୁ ଡାକି ନେଲି। ତାହାଙ୍କ ସହିତ ଆଲୋଚିତ ହୋଇ ୧୯୨୭ ମସିହା ନଭେମ୍ବର ତା ୧୫ ରିଖରୁ ମହାତ୍ମାଜୀ ଓଡ଼ିଶାରେ ଏକମାସ ରହିବାର ସ୍ଥିର ହେଲା। ଏତେ କଥା ହେଲା, ତଥାପି କୌଣସି ପ୍ରକାର ଆର୍ଥିକ ସାହାଯ୍ୟ ଦେବାକୁ କିମ୍ବା ଦିଆଇ ଦେବାକୁ ମହାତ୍ମାଜୀ ସ୍ୱୀକୃତ ହେଲେ ନାହିଁ। ଏହିଠାରେ ମୁଁ କିଛି ବୁଝି ପାରିଲି ନାହିଁ। ମୋ ମନରେ ଏକ ପ୍ରକାର ନିରାଶ ଭାବ ଜାତ ହେଲା। ମନେ ମନେ ସ୍ଥିର କଲି, ଆଉ ଏଣିକି ମୁଁ ମହାତ୍ମାଜୀଙ୍କୁ ମୋର କାର୍ଯ୍ୟ ବିଷୟ ନେଇ କିଛି କହିବି ନାହିଁ, କିମ୍ବା ସାହାଯ୍ୟ ପାଇଁ ଅନୁରୋଧ କରିବି ନାହିଁ। ଯଦି ପାରେ ନିଜ ଚେଷ୍ଟାରେ ଠିଆ ହେବି, ନଚେତ ଯାହା ହେବାର ଥିବ ତାହା ହୋଇଯିବ।

ଏପର୍ଯ୍ୟନ୍ତ ମୋର ବିଶ୍ୱାସ ଥିଲା ଯେ, ମୁଁ କିଛି କାର୍ଯ୍ୟାରମ୍ଭ କଲେ ମହାତ୍ମାଜୀ ନିଶ୍ଚୟ କିଛି ସାହାଯ୍ୟ କରିବେ କିମ୍ବା କରାଇ ଦେବେ। ସେ ଆଶା ଗଲା। ଓଡ଼ିଶାରେ କଂଗ୍ରେସ କର୍ମୀମାନଙ୍କ ମଧ୍ୟରେ ପରସ୍ପର ପ୍ରତି ସ୍ନେହ ସହାନୁଭୂତିର ବଡ଼ ଅଭାବ। ମୁଁ ଏକାକୀ କିପରି କଣ କରିବି—ଏହି ବିଷୟ ନେଇ ନାନା ପ୍ରକାର ଭାବନା ମନରେ ଖେଳିଲା। ତଥାପି ରିପୋର୍ଟ ଖଣ୍ଡିକ ଧରି ବମ୍ବେଇ ବାହାରିଲି। ଅନେକ ବ୍ୟକ୍ତି ମହାତ୍ମାଜୀଙ୍କ ଠାରୁ କିଛି ଲେଖାଇ ଆଣିବାକୁ ମୋତେ ପରାମର୍ଶ ଦିଅନ୍ତି। କିନ୍ତୁ ବଡ଼ ସାବଧାନତାର ସହିତ ଏପ୍ରକାର ପ୍ରଶ୍ନର ମୁଁ ଉତ୍ତର ଦିଏ। କେହି କିଛି ନ ପଚାରିଲେ ମହାତ୍ମାଜୀଙ୍କ ନାମ ଧରେ ନାହିଁ। କାରଣ ତାହାଙ୍କ ନାମ ଧରି ପଇସା ଆଦାୟ କରିବା ଅର୍ଥ ଠକେଇବା। ଏହା ଜାଣିପାରିଲେ ହୁଏତ ମୋର ନିନ୍ଦା କରିପାରନ୍ତି। କାରଣ ମହାଦେବ ଭାଇ ଖଣ୍ଡିଏ ପତ୍ର ଡାକ୍ତର ରାଜଭ ଅଲ୍ଲିଙ୍କୁ ଲେଖି ମୋତେ ସାହାଯ୍ୟ କରିବାକୁ ଅନୁରୋଧ କରିଥିଲେ ମହାତ୍ମାଜୀ ତାହା ଜାଣିପାରି ମହାଦେବ ଭାଇଙ୍କୁ ଭତ୍ସନା କଲେ ଏବଂ ଡାକ୍ତର ରାଜଭ ଅଲ୍ଲିଙ୍କ ନିକଟରୁ ସାହାଯ୍ୟ ଆଣିବା ପାଇଁ ମୁଁ ନ ଯିବା ସକାଶେ ମୋତେ ମନା କରିବାକୁ ଶ୍ରୀଯୁକ୍ତ ମହାଦେବ ଦେଶାଇଙ୍କୁ ଆଦେଶ ଦେଲେ। ତଦନୁସାରେ ମହାଦେବ ଭାଇଙ୍କଠାରୁ ପତ୍ର ପାଇ ମୁଁ ଡାକ୍ତର ରାଜଭ ଅଲ୍ଲିଙ୍କ ନିକଟକୁ ଆଉ ଯାଇ ନାହିଁ। ଏଣୁ ସାହାଯ୍ୟ ସଂଗ୍ରହରେ ମହାତ୍ମାଜୀଙ୍କ ନାମ ମୁଁ ବ୍ୟବହାର କରି ନାହିଁ। ଏପରି ଅବସ୍ଥାରେ ବମ୍ବେଇରୁ ମୋ ପରି ଅଜଣା ଅଶୁଣା ଲୋକ ସାହାଯ୍ୟ ପାଇଲା କିପରି ? ମୋର ବନ୍ଧୁମାନଙ୍କ ନିକଟରୁ ବମ୍ବେଇର କେତେକ ଦାନଶୀଳ ଲୋକଙ୍କ ନାମ ସଂଗ୍ରହ କଲି। ସେମାନଙ୍କ ନିକଟକୁ ପତ୍ର ଦେଇ ଦେଖା କରିବାପାଇଁ ଗୋଟିଏ ସମୟ ନିରପୂଣ କରେ। ନିର୍ଦ୍ଦିଷ୍ଟ ସମୟରେ ଦେଖା କରି ମୁଁ ଏ ପର୍ଯ୍ୟନ୍ତ କିପରି କଣ କରି ଆସିଛି ତହିଁର କିଛି କହେ ଏବଂ ବର୍ତ୍ତମାନ କଣ କରିବାକୁ ଇଚ୍ଛା କରିଛି ତାହା କହି ସେ ଯାହା ଯେତେଦୂର ପାରନ୍ତି ତଦନୁସାରେ ସାହାଯ୍ୟ କରିବାକୁ ଅନୁରୋଧ କରେ।

ପ୍ରଥମତଃ ଏହିପରି ଭାବରେ କେତେଜଣଙ୍କଠାରୁ କିଛି ସାହାଯ୍ୟ ସଂଗ୍ରହ କଲି। ତାପରେ ସେମାନଙ୍କ ନାମ ଦେଖାଇ ଅନ୍ୟ ସାହାଯ୍ୟକାରୀ ସଂଗ୍ରହ କଲି। ଏହିପରି ଭାବରେ ବମ୍ବେଇରୁ ଦୁଇହଜାର ଟଙ୍କା ସଂଗ୍ରହ କରି ଏହି ବର୍ଷ ରେଙ୍ଗୁନ୍ ଯାତ୍ରାକଲି। ବମ୍ବେଇରୁ ଖଣ୍ଡିଏ ଦୁଇଖଣ୍ଡି ସୁପାରିସ ପତ୍ର ରେଙ୍ଗୁନକୁ ଆଣିଥାଏ। ରେଙ୍ଗୁନରୁ ଏହିବର୍ଷ ପ୍ରାୟ ପନ୍ଦରଶହ ପର୍ଯ୍ୟନ୍ତ ଟଙ୍କା ସାହାଯ୍ୟ ପାଇଲି। ସର୍ବମୋଟରେ ଚାରିହଜାର ଟଙ୍କାର ଅର୍ଥ ସାହାଯ୍ୟ ଘେନି ଓଡ଼ିଶାକୁ ଫେରି ଆସିଲି।

ବମ୍ବେଇ ଯିବା ପୂର୍ବରୁ ବୃନ୍ଦାବନ ଷଡ଼ଙ୍ଗୀକୁ ବିଦାୟ ଦେଇଥିଲି। ତାହାଙ୍କ କାର୍ଯ୍ୟ ସନ୍ତୋଷଜନକ ନ ହେବାରୁ ତାଙ୍କୁ ବିଦାୟ ଦେଇ ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ପରାମର୍ଶରେ ବିଶ୍ୱନାଥ ମିଶ୍ର ନାମକ ଜନୈକ କର୍ମୀଙ୍କୁ ନିଯୁକ୍ତ କରିଥାଏ। ଆଶ୍ରମରେ ଉପସ୍ଥିତ ହୋଇ ଖଦଡ଼ କାର୍ଯ୍ୟ ପ୍ରସାର କରିବାପାଇଁ ସ୍ଥିର କଲି। ଆଶ୍ରମଠାରୁ ୬ ମାଇଲ ଦୂର କଟରପା ଗ୍ରାମରେ ଗୋଟିଏ ସୂତାକଟା କେନ୍ଦ୍ର ସ୍ଥାପିତ ହେଲା। ସେଠାରେ କୃଷ୍ଣ ରାଉତ ନାମକ ଜନୈକ କଂଗ୍ରେସ କର୍ମୀ ନିଯୁକ୍ତ ହେଲେ। କୃଷ୍ଣ ରାଉତ ୧୯୨୧ରେ କଂଗ୍ରେସ କାର୍ଯ୍ୟ କରି ଜେଲ ଯାଇଥିଲେ। ବକ୍ସାର ଜେଲରେ ମଧ୍ୟ ସେ ମୋ ସାଥିରେ ଥିଲେ। ସେ ମାସିକ କୋଡ଼ିଏ ଟଙ୍କା ବେତନରେ ନିଯୁକ୍ତ ହେଲେ। ନିଜର ଅଭାବ ବହୁତ ଦର୍ଶାଇ ତାହା ଦୂର ନ ହେଲେ ମନପ୍ରାଣ ଦେଇ କାର୍ଯ୍ୟ କରିପାରିବେ ନାହିଁ ବୋଲି ମୋତେ କହିଲେ। ଗ୍ରାମ ସଂଗଠନ କାର୍ଯ୍ୟରେ ମାସକୁ କୋଡ଼ିଏ ଟଙ୍କା ବେତନ ବହୁତ ବେଶି। କିନ୍ତୁ ସେତେବେଳେ ଦେଶରେ କର୍ମୀ ନ ଥାଡି ବୋଲି କହିଲେ ଚଳେ। ୧୯୨୧ରେ ଯେ କେତେଜଣ କଂଗ୍ରେସ କାମ କରିବାକୁ ବାହାରି ଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ନାମ ଶୁଣିବାକୁ ମିଳେ ନାହିଁ। ଅବଶିଷ୍ଟ କେତେଜଣ ଚରଖା ସଂଘର ଖଦଡ଼ କାର୍ଯ୍ୟରେ ରହିଛନ୍ତି। ମୁଁ ବର୍ତ୍ତମାନ ଉପଯୁକ୍ତ କର୍ମୀର ଅଭାବ ତୀବ୍ର ଭାବରେ ଅନୁଭବ କରୁଛି। ଏଣୁ କଂଗ୍ରେସ କର୍ମୀ କାହାକୁ ପାଇଲେ ତାହାର ଅଭାବ ଦୂର କରି ଏହି କାର୍ଯ୍ୟରେ ନିଯୁକ୍ତ କରିବାକୁ ଚେଷ୍ଟା କରୁଛି। ଏହିସବୁ କାରଣରୁ କୃଷ୍ଣ ରାଉତଙ୍କୁ ଏତେ ଟଙ୍କା ଦେବାକୁ ବାଧ୍ୟ ହେଲି।

ଏହିବର୍ଷ କପାଷ୍ଟିକିରି ନାମକ ଗ୍ରାମରେ ହଇଜା ଲାଗିଲା। ଏହି ଗ୍ରାମଟି ଆଶ୍ରମକୁ ଚାରି ମାଇଲି ଦୂର ହେବ। ଏହି ଗ୍ରାମଟି ଖଣ୍ଡିଏ ଛୋଟ ପଲ୍ଲୀଗ୍ରାମ। ଗ୍ରାମରୁ ପ୍ରତିଦିନ ଚାରି ପାଞ୍ଚ ଜଣ ହଇଜାରେ ମରିବାକୁ ଲାଗିଲେ। ଗ୍ରାମବାସୀ ଭୟରେ ତ୍ରସ୍ତ ହୋଇ ଉଠିଲେ। ନିକଟବର୍ତ୍ତୀ ଗ୍ରାମମାନଙ୍କରେ ମଧ୍ୟ ଭୟରେ ଥରି ଉଠିଲେ। ଏହି ଗ୍ରାମରେ ଉପସ୍ଥିତ ହୋଇ ସେବା କରିବା ମୋର ପରମ କର୍ତ୍ତବ୍ୟ ବୋଲି ବିଚାରିଲି। କିନ୍ତୁ ହଇଜା ମଳୁର ମୁଁ କେବେ ସେବା କରି ନାହିଁ। ହଇଜା ରୋଗ ପାଇଁ ଔଷଧ ମଧ୍ୟ ବ୍ୟବହାର କରିବାର ଜାଣେ ନାହିଁ। ଔଷଧ ଦେଇ

ରୋଗୀ ଭଲ କରିବାର ଆଶା କିମ୍ବା ସାହସ ମୋର ନାହିଁ। ତଥାପି ବିପଦ ବେଳେ ଲୋକଙ୍କ ଦୁଆରେ ହାଜର ହେବା କର୍ତ୍ତବ୍ୟ ମନେ କରି କପାଷ୍ଟିକିରି ଗ୍ରାମରେ ଉପସ୍ଥିତ ହେଲି। ସେହି ଗ୍ରାମରେ ମୁଁ ନିଜେ ରହିଲି। ମୁଁ ସେହି ଗ୍ରାମରେ ରହିବାର ପ୍ରସ୍ତାବ ଶୁଣି ଗ୍ରାମବାସୀମାନେ ପ୍ରଥମେ ବିଶ୍ୱାସ କରି ପାରିଲେ ନାହିଁ। ସେ ଯାହା ହେଉ, କପାଷ୍ଟିକିରି ଗ୍ରାମରେ ରହିବା ପରେ ମୁଁ ଦେଖିଲି, ଗ୍ରାମବାସୀମାନେ ହଇଜାକୁ ଗୋଟିଏ ମାରାତ୍ମକ ରୋଗ ବୋଲି ବିଚାରୁ ନାହାନ୍ତି। ହଇଜାକୁ ଗ୍ରାମଦେବୀ ମା ଠାକୁରାଣୀର କୋପ ବୋଲି ସେମାନେ ଭାବୁଛନ୍ତି। ପ୍ରତିଦିନ କାଳସୀଠାରେ ଦେବୀ ଅବତରି ନାନାକଥା କହୁଛନ୍ତି। ଏଥିରେ ଗ୍ରାମବାସୀମାନେ ଆହୁରି ଭୟକରି ଯାଉଛନ୍ତି। ହଇଜାର ମୂଳ କାରଣ ହେଲାଣି ଭୟ। ମୁଁ ଦେଖିଲି, ଏହି ଠାକୁରାଣୀ ଭୟ ନ ଛଡ଼ାଇଲେ ଏ ଗ୍ରାମରୁ ହଇଜା ଭଲ ହେବ ନାହିଁ। ଗ୍ରାମର କୂଅ ପୋଖରୀରେ ପଟାସ୍ ଆଦି ପକାଇଲି। ଘର ଘର ପଶି ମଇଳା ସଫା କରାଇଲି। ହଇଜା ରୋଗୀର ମଇଳା ପୋତାଇବାର ବ୍ୟବସ୍ଥା କଲି। ରାତିରେ କୀର୍ତ୍ତନ, ଭାଗବତ ପାଠର ବ୍ୟବସ୍ଥା ହେଲା। କାଳସୀର ଉପଦ୍ରବ କମିବ କିପରି ? ମୋ ସମ୍ମୁଖରେ ଦିନେ ରାତିରେ କାଳସୀଠାରେ ଦେବୀ ଉଭାହେଲେ। ଏ ଦେବୀ ଉଭାହେବା ମୋତେ ତାମସା ପ୍ରାୟ ବୋଧ ହେଲା। ମୁଁ ହଠାତ୍ କାଳସୀ ସହିତ ବାକବିତଣ୍ଡା ଲଗାଇବାରୁ ଦେବୀ ଛାଡ଼ିଗଲେ। ତା ପରେ ବହୁତ କଥା ବୁଝାଇ କାଳସୀକୁ ଏକ ଧମକ୍ ଦେଲି। ପୁଣି ଦେବୀ ଉଭାହେଲେ। ପ୍ରହାର ଦେଇ ପରେ ପୋଲିସ ଥାନାରେ ତାକୁ ବନ୍ଧାଇ ଦେବି ବୋଲି କହିଲି। ଏହାଦ୍ୱାରା ଚାରିପାଞ୍ଚଦିନ ଆଉ କାଳସୀ ଲାଗିଲା ନାହିଁ। ଲୋକେ ଟିକିଏ ମୋ କଥାକୁ ସତ ବୋଲି ମଣିଲେ। କାଳସୀ ବିଚାରା ଦେଖିଲା ଯେ ଏଣିକି ତାର ଆଉ ଖାତିରି ରହିବ ନାହିଁ। ଗାଁ ଲୋକେ ଆଉ କେହି ତାକୁ ଡରିବେ ନାହିଁ। ସୁତରାଂ ଦିନେ ରାତି ଆଠଟାରେ ପୁଣି ଦେବୀ ଉଭାହେଲେ। ସେଦିନ ତାର ବିକଟାଳ ରୂପ ଓ ଚିତ୍କାର ଶୁଣି ଗ୍ରାମବାସୀମାନେ ତଟସ୍ଥ ହୋଇ ଉଠିଲେ। ମୁଁ ଯେତେ ବୁଝାଇଲି ମୋ କଥା ଶୁଣିଲେ ନାହିଁ। କାଳସୀ ମଧ୍ୟ ଧମକାଇ କହିଲା, "ତୁମେ ଗାନ୍ଧୀଲୋକ ନିକଟରେ ମୋର ଅବମାନନା କରିଛ, ମୁଁ ଏ ଗ୍ରାମରୁ ଆଉ ପଚିଶ ମୁଣ୍ଡ ନେବି" ଏଥିରେ କି ଗାଁ ଲୋକ ମୋ କଥା ଶୁଣିବେ। ମୁଁ ଦେଖିଲି, ମୋର ସମସ୍ତ ପରିଶ୍ରମ ପଣ୍ଡ ହେବା ଉପରେ। ମତେ ଏଠାରେ କିଛି କରିବାକୁ ହେବ। ମୁଁ ହଠାତ୍ କାଳସୀ ନିକଟରେ ଏକ ଠେଙ୍ଗା ଧରି ହାଜର ହେଲି। ତାକୁ କହିଲି, ତୋ ଦେବୀ କେଉଁଠାରେ ମୋତେ ଦେଖା, ନଚେତ୍ ଏହି ଠେଙ୍ଗାରେ ତୋ ମୁଣ୍ଡ ଚୂନା କରିଦେବି। କାଳସୀ ବିଚରା କହିଲା, ମୋର କଣ ଦୋଷ। ମା ଅବତରିଲେ। ତାଙ୍କର ଯାହା କହିବାର ତାହା ସେ କହିଲେ, ମା ଏଠି ସେ ଘରେ ଅଛନ୍ତି। ତୁମେ କଣ କରୁଛ କର। ତାଠାରୁ

ଏତକ ଶୁଣି ଠାକୁରାଣୀ ଘର ନିକଟକୁ ଯାଇ ଠାକୁରାଣୀ ସମ୍ମୁଖରେ ତିନି ଗୋଇଠା ଭୂଇଁରେ ମାରି ସାରି କହିଲି, ''ଏ ଦେଖ୍, ମା ଯଦି ସତ ହୋଇଥିବ, ସେ ଯଦି ସତେ ରାଗି ହଇଜା ରୂପେ ଗ୍ରାମବାସୀଙ୍କୁ ଖାଉଥିବ, ତେବେ ଏଠାରେ ଜୋତାରେ ଗୋଇଠା ମାରୁଛି। ତାର ପ୍ରତିଜ୍ଞା ଥିଲେ ଆଜି ରାତି ନ ପାଉଣୁ ମୋତେ ହଇଜା ହେବ, ମୁଁ ମରିବି। ନଚେତ୍ ତୋର ମା ମିଛ। ତୁ ମିଛୁଆ ଓ ଠକ'' ଏହାପରେ ଦୁଇ ଘଣ୍ଟାଧରି ଏକ ଦୀର୍ଘବକ୍ତୃତା ଦେଲି। ମୋର ଏ ବ୍ୟବହାରରେ ଗ୍ରାମରେ ଗୋଟାଏ ଚହଳ ପଡ଼ିଗଲା। ଠାକୁରାଣୀ ସତ କି ମିଛ ଏହା ଜାଣିବାକୁ ସମସ୍ତେ ଉଦବିଗ୍ନ ହୋଇ ଉଠିଲେ। ରାତି ପାଇଲା, ମୋର କିଛି ହୋଇ ନାହିଁ ଦେଖି ସମସ୍ତେ ଅବାକ୍ ହୋଇଗଲେ। ଆଲୋକରେ ଅନ୍ଧାର ଲୁଚିଗଲା ପ୍ରାୟ ସବୁପ୍ରକାର ଭୟ ହଠାତ୍ କୁଆଡ଼େ ଉଭେଇ ଗଲା। ଭୟ କମିବା ସଂଗେ ସଂଗେ ହଇଜା ମଧ୍ୟ କମିଲା। ଶେଷରେ ସେ ଗ୍ରାମରୁ ବିଦାୟ ନେଇ ମୁଁ ଆଶ୍ରମରେ ଉପସ୍ଥିତ ହେଲି।

ଆଶ୍ରମ ନିକଟ ଚମ୍ପାପୁର ହାଟ। ମୁଁ ହଇଜା ସେବାରେ ଯାଇଥିବା ସମୟରେ ଏଠାରେ ଥିବା ଗୋଟିଏ ଦୋକାନରେ ଚୋରୀ ହେଲା। ସେ ବଡ଼ଚଣା ପୋଲିସରେ ଇତଲା ଦେବାରୁ ବଡ଼ଚଣା ଥାନାର ସବଇନ୍ସପେକ୍ଟର ତଦନ୍ତ କରିବାକୁ ଆସିଲେ। ଚମ୍ପାପୁର ଗ୍ରାମରେ ଗୋଟିଏ ନାଟ ଆଖଡ଼ା ଦଳ ଥାଏ। ଏହି ନାଟ ଦଳରେ ଯୋଗ ଦେଇଥିବା ପ୍ରତ୍ୟେକ ପିଲାଙ୍କୁ ଧରି ମାଡ଼ ଦେଇ ରାତି ତମାମ ଅଟକାଇ ରଖି ସମସ୍ତଙ୍କ ନିକଟରୁ ପ୍ରାୟ ଦେଢ଼ଶତ ଟଙ୍କା ରିସପତ ଖାଇ ଚାଲିଗଲେ। ନାଟଦଳର ଓସ୍ତାତ କ୍ଷେତ୍ରବାସୀ ନାୟକ ଉପରେ ବେଶି ମାଡ଼ ହୋଇଥାଏ। ମୁଁ ଆଶ୍ରମରେ ଉପସ୍ଥିତ ହେବାର ଦିନକ ପୂର୍ବରୁ ଏସବୁ ଘଟି ଯାଇଥାଏ। ମୁଁ ଆସିବାର ଶୁଣି କ୍ଷେତ୍ରବାସୀ ନାୟକଙ୍କ ବାପ ମୋ ନିକଟକୁ ଔଷଧ ପାଇଁ ଆସିଲା। ତା ପୁଅର ଦେହ ଦରଜ, ସେ ବିଛଣାରୁ ଉଠି ପାରୁ ନାହିଁ, ଏଥିପାଇଁ ଔଷଧ ଦରକାର। ପୋଲିସ ମାଡ଼ରେ ସେ ମଲା ପ୍ରାୟ ହୋଇଛି, ଏତକ କହିବାକୁ ତାହାର ସାହସ ନାହିଁ। ଦରଜର କାରଣ କଣ ପଚାରିଲେ କ୍ଷେତ୍ରବାସୀ ନାୟକ ବାପ କାନ୍ଦୁଛି, ଆଉ କିଛି କହୁନାହିଁ। ତାର କାନ୍ଦିବାରେ କିଛି ରହସ୍ୟ ଅଛି ଅନୁମାନ କରି ମୁଁ ଚମ୍ପାପୁର ଗ୍ରାମକୁ ଗଲି। ସେଠାରୁ ସମସ୍ତ ଘଟଣା ବୁଝିବାକୁ ପାଇଲି। ଏହି ସଂବାଦ ପାଇ ମୁଁ କ୍ରୋଧରେ ଅନ୍ଧ ହୋଇଗଲି। ମୋ ପରି ଜଣେ କଂଗ୍ରେସ କର୍ମୀ ଏଠାରେ ଥିବାସ୍ଥଳେ ପୋଲିସ୍ ଯଦି ଏପରି ଅତ୍ୟାଚାର କରିବାକୁ ସଶଂକିତ ନ ହୁଏ ତେବେ ମୁଁ ଏ ସ୍ଥାନରେ ରହିବା ଉଚିତ ନୁହେଁ। ଏପରି ଅହଂଭାବ ମନରେ ଜାଗି ଉଠିଲା। ଦେଶର ଜନସାଧାରଣଙ୍କ ସେବା କରୁଥିବା ଯେ କେହି ବ୍ୟକ୍ତି ପ୍ରତି ସରକାରୀ ଅଫିସରଙ୍କ ଭୟ ରହିବା ଉଚିତ। ସେହିମାନେ ସରକାରୀ କର୍ମଚାରୀଙ୍କ ସମାଲୋଚକ। ସେହିମାନେ ଦେଶରେ, ଲୋକମତ ଗଠନ କରନ୍ତି। ଏପରି ଅବସ୍ଥାରେ ବଡ଼ଚଣା

ପୋଲିସ୍ ନିର୍ଭୀକ ଭାବରେ ଏଠାରେ ଜୁଲମ କରିଯିବ, ଏହା ନୀରବରେ ସହ୍ୟ କରିବା ମୋ ପକ୍ଷେ ଅସମ୍ଭବ। ପୋଲିସ, ଜମିଦାର ଓ ମହାଜନଙ୍କର ଏପରି ଜୁଲମ ଅତ୍ୟାଚାରରୁ ଯଦି ଲୋକଙ୍କୁ ରକ୍ଷା କରାଯାଇ ନ ପାରେ ଗ୍ରାମ ସଂଗଠନର କିଛି ମୂଲ୍ୟ ନାହିଁ। ମୁଁ ଏଠାରେ ଥିବାର ଜାଣି ଯଦି କୌଣସି ବ୍ୟକ୍ତି ଗ୍ରାମବାସୀମାନଙ୍କ ପ୍ରତି ଜୁଲମ କରିବାକୁ ଭୟଭୀତ ନ ହୁଏ ତେବେ ମୋର ଦେଶସେବା କାର୍ଯ୍ୟର ମୂଲ୍ୟ ଅବା କଣ ଅଛି। ଏହିପରି ଅନେକ ଭାବନା ମୋ ମନରେ ଖେଳିଲା। ମୁଁ କ୍ଷେତ୍ରବାସୀ ନାୟକଙ୍କୁ ସଂଗରେ ନେଇ ବଡ଼ଚଣା ପୋଲିସ୍ ବିରୁଦ୍ଧରେ ମକଦ୍ଦମା ଦାୟର କରାଇଲି। ମକଦ୍ଦମା ଆଠ ମାସ ପର୍ଯ୍ୟନ୍ତ ଚାଲିଲା। ମୋର ସେଥିରେ ତିନିଶହ ଟଙ୍କା ଖର୍ଚ୍ଚ। ଏହି ମକଦ୍ଦମା ବିଚାର ହୋଇ ଯେପରି ନିଷ୍ପତ୍ତି ହେଲା ସେ ବିଷୟରେ କିଛି ଲେଖିବା ଅନାବଶ୍ୟକ। ବ୍ରିଟିଶ କୋର୍ଟରେ କିପରି ନ୍ୟାୟ ବିଚାର ହୁଏ ତାହା ସମସ୍ତଙ୍କୁ ଜଣା ଅଛି। ସେ ଯାହା ହେଉ, ପୋଲିସ ବିରୁଦ୍ଧ ମକଦ୍ଦମାରେ ଗ୍ରାମବାସୀମାନେ ଜୟ ପାଇ ପୋଲିସକୁ ଶାସ୍ତି ମିଳିଲା ନାହିଁ ଏହା ଅବଶ୍ୟ ସତ୍ୟ। କିନ୍ତୁ ପରିଣାମରେ ଏହାର ଫଳ ଖୁବ୍ ଭଲ ହୋଇଛି। ଏହି ଦିନୁ ଏଠାରେ ଲୋକଙ୍କର ସାହସ ବଢ଼ିଛି, ସେମାନଙ୍କ ଆଖି ଫିଟିଛି। ଲୋକଙ୍କୁ ଧମକାଇବାକୁ ଆଉ କେହି ସାହସ କରି ନାହିଁ। ଲୋକଙ୍କ ଭୟ ବିପଦରେ ମୁଁ ଯାଇ ସାହାଯ୍ୟ କରିପାରେ ଏହି ବିଶ୍ୱାସ ସେମାନଙ୍କର ଜନ୍ମିଲା। ମୋର କଳ୍ପିତ ଆଶ୍ରମର ମୂଳଭିତ୍ତି ସ୍ଥାପିତ ହେଲା ବୋଲି କହିଲେ ଚଳେ।

# ଚତୁର୍ଥ ପରିଚ୍ଛେଦ

## ଗାନ୍ଧୀ ସେବାସଂଘର ଶୁଭ ପ୍ରଦାନ

ବଡ଼ଚଣା ପୋଲିସ ବିରୁଦ୍ଧରେ ମୋକଦ୍ଦମା ଯଥାତଥା ଭାବରେ ନିଷ୍ପତ୍ତି ପାଇଲା। ବିଚରା କ୍ଷେତ୍ରବାସୀ ନାୟକ ନାମରେ ପୋଲିସ ୨୧୧ ଦଫାରେ ମୋକଦ୍ଦମା ଦାଏର କରି ମଧ ଜୟ ଲାଭ କରି ନାହିଁ। କିନ୍ତୁ ଏହି ମୋକଦ୍ଦମା ଚାଲୁଥିବାବେଳେ ବହୁତ ଲୋକ ମୋର ଶତ୍ରୁ ହୋଇ ଠିଆହେଲେ। ଏ ଅଞ୍ଚଳରେ ମୁଁ ବହୁତ ଶତ୍ରୁ ଭିଆଇଲି। ପ୍ରକାଶ୍ୟ ଓ ଅପ୍ରକାଶ୍ୟ ଭାବରେ କେତେକ ଜମିଦାର ଓ ମହାଜନ ଶ୍ରେଣୀର ଲୋକେ ମୋ ବିରୁଦ୍ଧରେ ଲାଗିଲେ। ଏହି ମୋକଦ୍ଦମାରେ ମୁଦେଇ ଓ ସାକ୍ଷୀମାନଙ୍କୁ ମିଥ୍ୟା ମୋକଦ୍ଦମା କରିଥିବାର ପ୍ରମାଣ କରାଇ, ସେମାନଙ୍କୁ ଜେଲ ଦେଇ ପାରିଲେ ପୋଲିସ ପକ୍ଷ ମୋତେ ଯେପରି ହଇରାଣ କରିବେ, ଏହାର ଚେଷ୍ଟା ଚାଲିଲା। ମୋତେ ଏକାକୀ ଦେଖି ମାଡ଼ଦେବା, ଆଶ୍ରମର ଘର ପୋଡ଼ିଦେବା

ଇତ୍ୟାଦିର ଚେଷ୍ଟା କରାଯାଇଛି। ସେମାନେ ବୁଝିଲେ ଯେ ଏଥିରେ ଯଦି ପୋଲିସ ଦଣ୍ଡ ପାଇଥାଏ ତେବେ ସାଧାରଣ ଲୋକଙ୍କର ମୁହଁ ପାଇଯିବ। ସେମାନଙ୍କ ସାହସ ବଢ଼ିଯିବ। ତାହା ହେଲେ ଏହି ଧନୀ ମାନୀ ଲୋକେ ଆଉ ନିଜର ବଡ଼ାଇ ଦେଖାଇ ପାରିବେ ନାହିଁ। ଲୋକସାଧାରଣଙ୍କ ମୁହଁ ବଢ଼ାଉଛି ମୁଁ। ମୋତେ ସାଧ କରି ଗୋଟାଏ ଉପଯୁକ୍ତ ଶିକ୍ଷା ଦେଲେ ମୁଁ ଏ ସ୍ଥାନ ଛାଡ଼ି ପଳାଇବି। ଲୋକେ ଯେପରି ଡରି ସଢ଼ି ପଡ଼ିଛନ୍ତି ସେପରି ରହିବେ।

ଏ ସବୁ ବ୍ୟାପାର ମୁଁ ଯେପରି ଏବଂ ଯେତିକି ଜାଣିଛି ଏଠାରେ ଦୃଢ଼ ହୋଇ ବସିବା ପାଇଁ ମୁଁ ସେତିକି ଟାଣ ହୋଇଛି, ନାନାପ୍ରକାର କାର୍ଯ୍ୟରେ ମୁଁ ନିଜକୁ ଭସାଇ ଦେଇଛି। ରୋଗୀ-ସେବାଠାରୁ ସ୍କୁଲକୁ ପିଲାଙ୍କୁ ଡାକି ଆଣିବା ପର୍ଯ୍ୟନ୍ତ ଯାବତୀୟ କାର୍ଯ୍ୟ କରିଛି। ମୁଁ ମୋର ମନପ୍ରାଣ ଦେଇ ଖଟିଛି। ମୋର ଶତ୍ରୁମାନେ ମନେ ମନେ ମୋ ପ୍ରତି ଶତ୍ରୁତାଚରଣ କଲେ ମଧ୍ୟ ମୋର ସମ୍ମୁଖରେ ସେମାନେ ମୋର ପରମ ମିତ୍ର। ସେମାନଙ୍କ ମୁଖରୁ ପଛରେ ଲୋକେ ମୋର ନିନ୍ଦା ଶୁଣନ୍ତି। ମୋର ସମ୍ମୁଖରେ ସେମାନେ ପୁଣି ମୋର ପ୍ରଶଂସା ଶୁଣନ୍ତି। ଏହାଦ୍ୱାରା ଲୋକେ ମନେ କଲେ ଯେ, ଏହି ଧନୀ ବଡ଼ଲୋକମାନେ ମୋତେ ଡରୁଛନ୍ତି; ଫଳରେ ଲୋକଙ୍କର ଭୟ ଓ ଭକ୍ତି ମୋ ପ୍ରତି ଟିକିଏ ବଢ଼ିଲା। ତଥାପି ମୁଁ ଦେଖେ ଯେ ଜଣେ ଧନୀ ମହାଜନ ଓ ଜମିଦାରର କଥାକୁ ପାଳିବାକୁ ସେମାନେ ଯେତେ ବ୍ୟଗ୍ରତା ଦେଖାନ୍ତି ମୋ କଥା ଶୁଣିବାକୁ ସେପରି ବ୍ୟଗ୍ରତା ନ ଥାଏ। ଏଥିରୁ ମୁଁ ଅନୁମାନ କଲି ଯେ ଲୋକେ ମୋ କଥା ଯେପରି ଭାବରେ ଶୁଣିବା ଉଚିତ ସେପରି ଭାବରେ ଶୁଣୁ ନାହାନ୍ତି। ମୋ କାର୍ଯ୍ୟର ମହତ୍ତ୍ୱ ହୁଏତ କିଛି ନାହିଁ। ନଚେତ୍ ମୋର ସେବା ଭାବ ସେମାନଙ୍କୁ ପ୍ରଭାବିତ କରିପାରୁ ନାହିଁ। ମୋର ସେବା କର୍ମରେ ତ୍ୟାଗ ଫୁଟି ଉଠୁ ନାହିଁ। ସେମାନଙ୍କ ପାଇଁ, ଦେଶ ପାଇଁ ମୁଁ ତ୍ୟାଗ କରିଛି ଅବା ଦୁଃଖ କଷ୍ଟ ସହି ଏଠାରେ ପଡ଼ିଛି, ଏ ଦୃଶ୍ୟ ସେମାନଙ୍କ ଆଖିରେ ପଡୁ ନାହିଁ। ମୁଁ ନିଜ ଭିତରକୁ ଦେଖୁଛି। ମୋର ଚିନ୍ତା ଓ କର୍ମକୁ ପରୀକ୍ଷା କରୁଛି। କିନ୍ତୁ କାହିଁରେ ମୋର କିଛି ସ୍ୱାର୍ଥ ଥିଲା ପରି ମୋତେ ଦେଖାଯାଉ ନାହିଁ।

ଆମ ଦେଶରେ ଲୋକ ସାଧାରଣ ଧନୀ, ଜମିଦାର, ବଡ଼ ଲୋକମାନଙ୍କ କାର୍ଯ୍ୟକୁ ବେଶି ଦେଖନ୍ତି। ସାଧୁ, ବୈଷ୍ଣବମାନଙ୍କର କାର୍ଯ୍ୟକୁ ଭକ୍ତି ଓ ସମ୍ମାନ କରନ୍ତି। ଦେଶ ସେବାରେ ନିଃସ୍ୱାର୍ଥପରତା ଅଛି ବୋଲି ସେମାନେ କଳ୍ପନା କରି ପାରୁ ନାହାନ୍ତି। ବିଭବ ଥିଲେ ତ୍ୟାଗ ଫୁଟି ଉଠେ। ଅନ୍ଧାର ଥିଲେ ଆଲୋକର ମହତ୍ତ୍ୱ ବୁଝି ହୁଏ। ମୋ ପରି ଜଣେ ଅଜଣା ଅଶୁଣା ଲୋକର କାର୍ଯ୍ୟକୁ ସବୁବେଳେ ଲୋକେ ବୁଝିବା ସହଜ ନୁହେଁ। ମୋ କାର୍ଯ୍ୟରେ କିଛି ସ୍ୱାର୍ଥଭାବ ନାହିଁ ଏହା ନୀରକ୍ଷର ପଲ୍ଲିବାସୀ ସହଜରେ ହୃଦୟଙ୍ଗମ କରିବା ସହଜ ନୁହେଁ। ଅତି ପ୍ରାଚୀନ

କାଳରୁ ଆମ ଦେଶର ଲୋକେ ଧନୀ, ଜମିଦାରମାନଙ୍କୁ ଆଦର୍ଶ କରି ଦେଖିଛନ୍ତି। ସୁଖ ଦୁଃଖରେ ସେମାନଙ୍କର ସାହାଯ୍ୟ ସହାନୁଭୂତି ଲାଭ କରିବା ପାଇଁ ଲାଳାୟିତ ହୋଇଛନ୍ତି। ଆପଦ ବିପଦରେ ସେମାନଙ୍କ ପରାମର୍ଶ ଲୋଡ଼ିଛନ୍ତି। ଏବେ ମଧ୍ୟ ସେମାନଙ୍କର ସେହି ମନୋବୃତ୍ତି ଅଛି। ଏହି ମନୋବୃତ୍ତି ବଦଳିବ କିପରି ? ନୀରକ୍ଷର ପଲ୍ଲୀବାସୀ ଭଲମନ୍ଦ ଓ ସୁଖଦୁଃଖରେ ଧନୀ, ଜମିଦାର ଓ ମହାଜନମାନଙ୍କର ପରାମର୍ଶ ପାଇଁ ଲାଳାୟିତ ନ ହୋଇ ଦେଶସେବା କରୁଥିବା ବ୍ୟକ୍ତି କିମ୍ବା ଅନୁଷ୍ଠାନ ନିକଟରେ ସେହି ପରାମର୍ଶ ପାଇଁ ଉପସ୍ଥିତ ହେବେ, ଏହି ଦିଗରେ ପଲ୍ଲୀବାସୀର ମନୋବୃତ୍ତି ପରିବର୍ତ୍ତନ କରି ନ ପାରିଲେ ଗ୍ରାମ ସଂଗଠନର କୌଣସି ମୂଲ୍ୟନାହିଁ। ପଲ୍ଲୀଜୀବନର ଦୃଷ୍ଟି ଓ ଚିନ୍ତାଧାରାରେ ବିପ୍ଳବ ସୃଷ୍ଟି କରିବାକୁ ହେବ। ଏହିପରି ଭାବନା ମୋ ମନରେ ଯେତେ ପ୍ରକାରରେ ଜାଗି ଉଠିଲା ମୁଁ ସେତେ ଭାବରେ ନିଜ ଭିତରକୁ ଦୃଷ୍ଟି ଦେଲି। କିଛି କାର୍ଯ୍ୟ କଲେ ତାହାର ଫଳାଫଳ ପ୍ରତି ଦୃଷ୍ଟି ନ ଦେଇ ଆଗ ସମ୍ବାଦ ପତ୍ରରେ ପ୍ରକାଶ କରିବାକୁ ମନ ଦୌଡ଼େ। କିନ୍ତୁ ଏ ସବୁ ଭାବନା ପରେ ନିରବରେ ବସି କାର୍ଯ୍ୟକରିବାକୁ ମୁଁ ପସନ୍ଦ କରିଛି। କୌଣସି ସମ୍ବାଦ ଖବରକାଗଜକୁ ପଠାଇ ନାହିଁ। ଉତ୍କଳର କୌଣସି ସଭା ସମିତିରେ ଯୋଗ ଦେଇ ନାହିଁ। ମୁଁ ଯେତେବେଳେ ଯାହା ଆବଶ୍ୟକ ମନେ କରିଛି ତଦନୁସାରେ କାର୍ଯ୍ୟ କରିଛି। ଏଠାରେ ସ୍ଥାୟୀ ଅନୁଷ୍ଠାନ ଗଢ଼ିବାକୁ ହେଲେ ଖଣ୍ଡିଏ ସ୍ଥାୟୀ ଘର ଦରକାର, ସୁତରାଂ ଖଣ୍ଡିଏ କୋଠାଘର କରିବାର ଆବଶ୍ୟକତା ଅନୁଭବ କଲି।

ଏହିବର୍ଷ ମହାତ୍ମାଗାନ୍ଧୀ ଓଡ଼ିଶାକୁ ଆସିବାର ଥାଏ। ତାହାଙ୍କ ଦ୍ୱାରା ତଥା ଆଶ୍ରମର ଶୁଭାନୁଷ୍ଠାନ କ୍ରିୟା ସମ୍ପାଦନ କରିବାପାଇଁ ସ୍ଥିର କଲି। ନଭେମ୍ବର ତା ୧୫ ରିଖରୁ ମହାତ୍ମାଜୀ ଓଡ଼ିଶାରେ ଏକମାସ ରହିବାର ସ୍ଥିର ହୋଇଥିଲା ମାତ୍ର କାର୍ଯ୍ୟବଶତଃ ତାହା ହୋଇପାରିଲା ନାହିଁ। ସେ ଡିସେମ୍ବର ମାସରେ ଆସି କେବଳ କୋଡ଼ିଏ ଦିନ ଓଡ଼ିଶାକୁ , ଦେଇ ପାରିବେ ବୋଲି ଲେଖିଲେ। ନିଖିଳ ଭାରତ ଚରଖା ସଂଘର କାର୍ଯ୍ୟରେ ମହାତ୍ମାଜୀ ପରିଭ୍ରମଣ କରୁଥାନ୍ତି। ଏହି ଚରଖାସଂଘ ଉତ୍କଳ ଶାଖାର ଏଜେଣ୍ଟ ବାବୁ ନିରଞ୍ଜନ ପଟ୍ଟନାୟକ। ମହାତ୍ମାଜୀ ଉତ୍କଳକୁ ଖଦୀ ଓ ଚରଖା ପ୍ରଚାର ଉଦ୍ଦେଶ୍ୟରେ ଆସୁଛନ୍ତି। ତେଣୁ ସେ କେଉଁଠାକୁ ଯିବା ନ ଯିବାର କଥା ଚରଖା ସଂଘର ଏଜେଣ୍ଟ ବାବୁ ନିରଞ୍ଜନ ପଟ୍ଟନାୟକ ସ୍ଥିର କରୁଥାନ୍ତି। ମହାତ୍ମାଜୀ ଓଡ଼ିଶା ଆସିବାର ମୂଳ କାରଣ ମୁଁ। ତଥାପି ମୋତେ କିଛି ନ କହି ଅବା ନ ଜଣାଇ ନିରଞ୍ଜନ ବାବୁ ନିଜେ ନିଜେ ଗୋଟିଏ ଗସ୍ତ ପ୍ରୋଗ୍ରାମ ସ୍ଥିର କରୁଥାନ୍ତି। ମୋର କର୍ମକେନ୍ଦ୍ରକୁ ଆସିବା ମହାତ୍ମାଜୀଙ୍କ ଗସ୍ତ ପ୍ରୋଗ୍ରାମରେ ନ ଥାଏ। ଏ ସବୁ ଜାଣି ମୁଁ ମନେ ମନେ ବଡ଼ ବିରକ୍ତ ଓ ଦୁଃଖିତ ଥାଏ। ତଥାପି ଆଶ୍ରମ ପାଇଁ କଳ୍ପିତ କୋଠାଘର ଶୁଭ ପକାଇବା କାର୍ଯ୍ୟ ମହାତ୍ମାଗାନ୍ଧୀ ଯେପରି ସମ୍ପାଦନ କରିବେ

ସେଥିପାଇଁ ସବୁପ୍ରକାର ଆୟୋଜନ କରୁଥାଏ। ଘରର ଗୋଟିଏ ନକ୍ସା ଅଙ୍କନ କରାଇଥାଏ। ଅନ୍ୟାନ୍ୟ ଉପକରଣ ସଂଗ୍ରହ କରିଥାଏ। ମହାତ୍ମାଗାନ୍ଧୀ ଆନ୍ଧ୍ରପ୍ରଦେଶରୁ ଓଡ଼ିଶାରେ ପ୍ରବେଶ କଲେ। ସେ ଓଡ଼ିଶାରେ ପଦାର୍ପଣ କରିବା ମାତ୍ରକେ ତାହାଙ୍କ ନିକଟରେ ହାଜର ହେବା ମୋର ଉଚିତ। କିନ୍ତୁ ଜାଣି ବୁଝି ମୁଁ ତାହା କଲି ନାହିଁ। ମହାତ୍ମାଜୀ ଓଡ଼ିଶାରେ ଉପସ୍ଥିତ ହୋଇ ପ୍ରଥମେ ମୋତେ ଖୋଜିଛନ୍ତି ଏବଂ ମୋ କଥା ପଚାରିଛନ୍ତି। ଏହା ମଧ୍ୟ ମୋତେ କେହି ଜଣାଇ ନାହାନ୍ତି। ବାଣପୁରରୁ ମହାତ୍ମାଜୀ ମଟରରେ ବୋଲଗଡ଼ ଯାତ୍ରା କଲେ। ଏହି ବୋଲଗଡ଼ ଯିବା ରାସ୍ତାରେ ଖୋରଧାଠାରେ ମୁଁ ମହାତ୍ମାଜୀଙ୍କୁ ଭେଟିଲି। ମୋତେ ଦେଖିଲା ମାତ୍ରକେ ମହାତ୍ମାଜୀ କହିଲେ, "ତୁମ୍ ଅବତକ୍ କିଧର ଥା, ତୁମ୍‌କୋ ମଏଁ ଢୁଣ୍ଢ୍ ରହାହୁଁ।"

ମହାତ୍ମାଜୀଙ୍କ ଏଭଳି କଥାରେ ମୋର କିଛି ଉତ୍ତର ଦେବାର ନାହିଁ। ମୁଁ କିଛି ନ କହି ତାହାଙ୍କ ଗାଡ଼ିରେ ବସି ବୋଲଗଡ଼ ଗଲି। ବୋଲଗଡ଼ରେ ମହାତ୍ମାଜୀ ତିନିଦିନ ରହଣି କଲେ। ଏହିଠାରୁ ଶ୍ରୀଯୁକ୍ତ ମହାଦେବ ଦେଶାଇ, କାକା କ୍ୟାଲେଲକର ପ୍ରଭୃତି ଆମ୍ଭେମାନେ କେତେଜଣ ନୟାଗଡ଼ ବୁଲିବାକୁ ଗଲୁ। ନୟାଗଡ଼ ଇଟାମାଟି ଗ୍ରାମ ଦେଖି କାକା ସାହେବ ଓ ମହାଦେବ ଭାଇ ଉଭୟଙ୍କ ଆନନ୍ଦର ସୀମା ନ ଥିଲା। ଉତ୍କଳ ପଲ୍ଲୀଜୀବନ କିପରି ସରଳ ଓ ଉନ୍ନତ ଥିଲା ସେ ବିଷୟ ନେଇ ବହୁତ ଆଲୋଚନା ଚାଲିଲା। ଓଡ଼ିଆର ଜାତୀୟ ଜୀବନର ଚିହ୍ନ ଦେଖିବାପାଇଁ ଇଟାମାଟି ଗ୍ରାମରେ ଜଣେ ଦୁଇଜଣଙ୍କ ଘରେ ସେମାନେ ପ୍ରବେଶ କରି ସବୁ ତନ୍ନ ତନ୍ନ କରି ଦେଖିଥିଲେ। ସେମାନେ ଦେଖିଲେ ସବାଙ୍କୁ ଘରଦ୍ୱାର ଲିପାପୋଛା ହୋଇଛି। ଗୋରୁଗୁହାଳଟି ସଫାହୋଇ ପାଉଁଶ ଛିଞ୍ଚା ହୋଇଛି। କଂସାବାସନ ଗୁଡ଼ିକ ମଜାହୋଇ ଗୋଟିଏ ସ୍ଥାନରେ ସାଇତା ହୋଇଛି। ଅଗଣାରେ ତୁଳସୀ ଚଉରାଟି ସଫା ଓ ସତେଜ ଅଛି। ଏ ସବୁ ଦେଖି ମହାଦେବ ଭାଇ ଓ କାକା ସାହେବ ଭାବବିହ୍ୱଳ ହୋଇଗଲେ ବୋଲି କହିଲେ ଚଳେ। କାକା ସାହେବ ହଠାତ୍ କହି ପକାଇଲେ "How beautiful, how simple and innocent look these people and their dwellings." ଅର୍ଥାତ୍ ଏହି ଲୋକେ ଏବଂ ସେମାନଙ୍କର ବସବାସ ଦେଖିବାକୁ କି ସୁନ୍ଦର, ସରଳ ଓ ନିରୀହ। କିନ୍ତୁ ଏ ସୌନ୍ଦର୍ଯ୍ୟ ଓ ସରଳତା ଭିତରେ ଜୀବନ ନାହିଁ। ସବୁ ମୃତ। ଶାସନର ସ୍ୱେଚ୍ଛାଚାରିତାର ପଲ୍ଲୀଜୀବନଧାରା ଶୁଖି ଯାଇଛି। ଭୟରେ ଏ ଲୋକଙ୍କ ପିଣ୍ଡରେ ପ୍ରାଣ ନାହିଁ। ଇଟାମାଟିରେ ଏହିପରି କେତେ କଥା ଦେଖିଲୁ ଓ କେତେ ମଧ୍ୟ ଆଲୋଚନା ଚାଲିଲା। ବିଶେଷତଃ ଗଡ଼ଜାତ ରାଜ୍ୟରେ ପ୍ରବେଶ କରିବାରୁ ମୋତେ ସବୁ ସୁନ୍ଦର ଲାଗୁଥାଏ। ଏ ସମାଲୋଚନା ମଧ୍ୟ ମଧୁର ବୋଧ ହେଉଥାଏ। ଶେଷରେ ଇଟାମାଟିରୁ ଫେରି ଆସିଲୁ। ବୋଲଗଡ଼ରୁ ମହାତ୍ମାଜୀ ସତ୍ୟବାଦୀ ପୁରୀ ହୋଇ ବାଲେଶ୍ୱର ଗଲେ। ମୁଁ ତାହାଙ୍କୁ ଶୁଭଦୈବା

କଥା ଜଣାଇଛି। ଏହି ଶୁଭ ଦେବା କାର୍ଯ୍ୟ ଆୟୋଜନ କରିବାପାଇଁ ମୁଁ ଆଶ୍ରମକୁ ଫେରିଲି।

ମହାତ୍ମାଜୀ ବାଲେଶ୍ୱରରୁ କଟକ ଫେରିଲେ। ତାହାଙ୍କ ଦେହ ଭଲ ନ ଥାଏ। ତାହାଙ୍କ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ନ ରଖି ତାହାଙ୍କୁ ଅନବରତ ଖଟାଇବାରେ ସେ କଟକରେ ଆସି ବେମାର ପଡ଼ିଲେ। କଟକରେ ଆସି ମହାତ୍ମାଜୀ ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଘରେ ରହିଲେ। ମହାତ୍ମାଜୀ ଶ୍ରୀଯୁକ୍ତ ପ୍ରହରାଜଙ୍କ ଘରେ ରହିବାରେ ମୋର ହାତ ଅଛି। ପ୍ରହରାଜେ ଖଦଡ଼ ପିନ୍ଧି କଂଗ୍ରେସବାଲା ପାଲଟି ଅଛନ୍ତି। ମୋର ଇଚ୍ଛା ସେ କିପରି ଜଣେ ଟାଣ କଂଗ୍ରେସବାଲା ହୁଅନ୍ତୁ। ଏହି ଇଚ୍ଛାରେ ମହାତ୍ମାଗାନ୍ଧୀଙ୍କୁ ତାହାଙ୍କ ଘରେ ରଖାଇବାର ଆୟୋଜନ କରାଯାଇଛି। ସେ ଯାହାହେଉ ଏହିଠାରେ ମୋ ଆଶ୍ରମକୁ ଯାଇ ଶୁଭଦେବା ପ୍ରଶ୍ନ ଉଠିଲା। ମହାତ୍ମାଜୀ ମୋର ପ୍ରାର୍ଥନା ରକ୍ଷା କଲେ। କିନ୍ତୁ ଡାକ୍ତରମାନଙ୍କ ପରାମର୍ଶ ଅନୁସାରେ କଟକରେ ବିଶ୍ରାମ ନେବାର ସ୍ଥିର ହେଲା। କଟକ ଜିଲ୍ଲା ପାଇଁ ଦେଇଥିବା ତିନି ଚାରିଦିନ ମହାତ୍ମାଜୀ କଟକରେ ରହି ବିଶ୍ରାମ ନେଲେ। ମୋତେ କହିଲେ, "ମୁଁ ଯଦି ଆଗ୍ରହ କରେ ତେବେ ସେ ମୋତେ ଆଶ୍ରମକୁ ଯାଇ ଶୁଭଦେବା କ୍ରିୟା ସଂପାଦନ କରିବାକୁ ପ୍ରସ୍ତୁତ" ମହାତ୍ମାଜୀ ମୋ ଉପରେ ଏହି ଦାୟିତ୍ୱ ଫିଙ୍ଗିଦେଲେ। ଏକ ବିଷମ ସମସ୍ୟା ମୋର ସମ୍ମୁଖୀନ ହେଲା। ମହାତ୍ମାଗାନ୍ଧୀ ଆଶ୍ରମର ଶୁଭଦେବେ ବୋଲି ମୁଁ ଏକ ବିରାଟ ଆୟୋଜନ କରିଛି। ସେ ନ ଯିବା କଥା ମୁଁ କଳ୍ପନା କରିପାରୁ ନାହିଁ। ବର୍ତ୍ତମାନ ତାହାଙ୍କ ଯିବା ନ ଯିବା କଥା ମୋ ଉପରେ। ତାହାଙ୍କୁ ନେଇ ଶାନ୍ତିପୂର୍ଣ୍ଣ ଭାବରେ କାର୍ଯ୍ୟ ସଂପାଦନ କରିବା ଅସମ୍ଭବ। ଲୋକ ଭିଡ଼ ଓ କୋଳାହଳରୁ ସେ ମୁକ୍ତ ପାଇବେ କିପରି? ତାହାଙ୍କୁ ନେବା ଦ୍ୱାରା ଯଦି ଅଧିକ ମାତ୍ରାରେ ସେ ପୀଡ଼ିତ ହୋଇ ପଡ଼ନ୍ତି ଏଥିପାଇଁ ସାରା ଦେଶ କ୍ରୋଧ ଓ ବିରକ୍ତିଭାବ ମୋ ଉପରେ ଅଜାଡ଼ି ହୋଇ ପଡ଼ିବ। ଏ ସବୁ ବିଚାର କଲାବେଳକୁ ମହାତ୍ମାଜୀଙ୍କୁ ଆଶ୍ରମକୁ ନେବା ପାଇଁ ମୋର ସାହସ ପାଇଲା ନାହିଁ। ସେ ନ ଗଲେ ତହିଁରେ ମୋର କୌଣସି ଦୁଃଖ ନାହିଁ ବୋଲି ମୁଁ ଜଣାଇଲି। ମହାତ୍ମାଜୀ ସ୍ୱୟଂ ଗଲେ ନାହିଁ, କିନ୍ତୁ ଏହି ଶୁଭକ୍ରିୟା ସଂପାଦନ କରିବାକୁ ଶ୍ରୀମତି ମୀରାବାଈ, କାକା କ୍ୟାଲେଲ୍‌କର ଓ ଶ୍ରୀଯୁକ୍ତ ମହାଦେବ ଦେଶାଇଙ୍କୁ ପଠାଇଲେ। ମହାତ୍ମାଜୀ ନିଜ ହାତରେ ଲେଖି ଗୋଟିଏ ସନ୍ଦେଶ ଦେଲେ। କଳ୍ପିତ କୋଠାଘର ନକ୍‌ସାରେ ଲେଖିଦେଲେ ଯେ "Mira Bahin will lay the foundation of this proposed building on my behalf & it should be taken as if I have laid the foundation." ଅର୍ଥାତ୍ ଭଉଣୀ ମିରା ମୋ ନାମରେ ଏହି କୋଠାର ଶୁଭ ଦେବେ, ଏହାକୁ ମୁଁ ଶୁଭ ଦେଲି ବୋଲି ବୁଝିବାକୁ ହେବ।

କଟକରୁ ମହାତ୍ମାଜୀ ମାନ୍ଦ୍ରାଜ କଂଗ୍ରେସକୁ ଗଲେ। ମୁଁ ଏଥର କଂଗ୍ରେସକୁ ନ ଯାଇ ବମ୍ବେଇ ଯାତ୍ରା କଲି। ବମ୍ବେଇରେ ଭଟ୍ଟି ସେବାସମାଜ ନାମକ ଗୋଟିଏ ସମିତି ଅଛି। ଭାଟିଆ ଗୋଷ୍ଠୀର ଯୁବକମାନେ ଏହି ସମିତି ଗଢ଼ିଥାନ୍ତି। ପାର୍ସୀମାନଙ୍କୁ ଛାଡ଼ିଦେଲେ ବମ୍ବେଇ ସହରରେ ଏହି ଭାଟିଆ ଗୋଷ୍ଠୀର ଲୋକେ ବଡ଼ ଧନୀ ଓ ବ୍ୟବସାୟୀ। ଏହି ଧନୀ ବ୍ୟବସାୟୀ ଯୁବକମାନଙ୍କ ମଧ୍ୟରେ ମୋର କେତେକ ପରିଚିତ ବନ୍ଧୁ ଅଛନ୍ତି। ଏମାନଙ୍କ ସାହାଯ୍ୟ ସହାନୁଭୂତିରେ ଗାନ୍ଧୀସେବାଶ୍ରମକୁ ଗୋଟିଏ ସ୍ଥାୟୀ ଅନୁଷ୍ଠାନ ରୂପେ ଗଢ଼ିବାକୁ ମୁଁ ସାହସ କରିଛି। ସେହି ବନ୍ଧୁମାନଙ୍କ ସାହାଯ୍ୟରେ ଭଟ୍ଟି ସେବାସମାଜର ଯୁବକମାନେ ମୋତେ ସାହାଯ୍ୟ କରିବା ପାଇଁ ଦୁଇଟି ନାଟକ ଅଭିନୟ କରିଥିଲେ। ତହିଁରୁ ମୋତେ ଚାରି ହଜାର ଟଙ୍କା ସାହାଯ୍ୟ ମିଳିଲା। ଆଶ୍ରମ କୋଠା ପାଇଁ ସେମାନେ ଏହି ସାହାଯ୍ୟ ଦେଲେ। ଆଶ୍ରମ କୋଠାର ନାମ ହେବ "ଭଟ୍ଟୀ ସେବା ସମାଜ ବିଲିଡ଼ିଙ୍ଗ୍"। ଏହାଛଡ଼ା ଆଉ ହଜାରେ ଟଙ୍କା ମଧ୍ୟ କୋଠା ପାଇଁ ଅନ୍ୟାନ୍ୟ ବନ୍ଧୁମାନଙ୍କଠାରୁ ସାହାଯ୍ୟ ପାଇଲି। ବମ୍ବେଇରୁ ଓଡ଼ିଶାକୁ ଫେରିଲି। ଏହି ବର୍ଷ ସର୍ବମୋଟରେ ଆଠହଜାର ଟଙ୍କା ଚାନ୍ଦା ସଂଗ୍ରହ କଲି। ଆଶ୍ରମରେ ଉପସ୍ଥିତ ହୋଇ ଆଶ୍ରମ କୋଠା ଖଣ୍ଡି କିପରି ଗଢ଼ା ହେବ ତହିଁର ଆୟୋଜନ କଲି। କିନ୍ତୁ ଖାଲି ଘର ତିଆରି କରିବାରେ ସମୟ ଦେଲେ ଚଳିବ ନାହିଁ। ଆଶ୍ରମର ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟ ଦେଖିବାକୁ ହେବ। ଏଣେ କୃଷ୍ଣ ରାଉତଙ୍କ କାର୍ଯ୍ୟ ସନ୍ତୋଷଜନକ ବୋଧ ହେଲା ନାହିଁ। ମୁଁ ଯେଉଁ ଆଦର୍ଶରେ କାର୍ଯ୍ୟାରମ୍ଭ କରିଛି ସେଥିପ୍ରତି ତାଙ୍କ ଦୃଷ୍ଟି ନାହିଁ। ସେ ସବୁବେଳେ ତାହାଙ୍କ ଘରର ଅବସ୍ଥା ନେଇ ଯେତେ ଚିନ୍ତିତ, କାର୍ଯ୍ୟ ପାଇଁ ତେତେ ଚିନ୍ତିତ ନୁହନ୍ତି। ତାଙ୍କ କାର୍ଯ୍ୟ ଓ ମନୋବୃତ୍ତି ମୋତେ ଉତ୍ସାହିତ କରି ନ ପାରିବାରୁ ତାହାଙ୍କୁ ବିଦାୟ ଦେବାକୁ ବାଧ୍ୟ ହେଲି। ଏହାପର ଆଶ୍ରମର କାର୍ଯ୍ୟ ଦୁଇ ଭାଗରେ ବିଭକ୍ତ କରି ଦେଲି। ଗୋଟିଏ ହେଉଛି ଖଦି ଆମଦାନୀ କାର୍ଯ୍ୟ ଅନ୍ୟଟି ଗ୍ରାମ ସଂଗଠନ। ଖଦି କାର୍ଯ୍ୟକୁ ବ୍ୟବସାୟ ଦୃଷ୍ଟିରେ ଚଳାଇବାକୁ ହେବ। ଖଦି କର୍ମୀମାନେ ବେତନ ପାଇ କାର୍ଯ୍ୟ କରିବେ। ଖଦି ଆମଦାନୀ ଓ ବିକ୍ରିହେବା ସେମାନଙ୍କର ଏକମାତ୍ର କାର୍ଯ୍ୟ। ଖଦି କାର୍ଯ୍ୟ ପାଞ୍ଚ ହଜାର ଟଙ୍କାରେ ବର୍ତ୍ତମାନ ଚାଲୁଛି। କଟରପାରୁ କେନ୍ଦୁପାଟଣାକୁ କାର୍ଯ୍ୟର ସୀମା ବଢ଼ାଇବା ପାଇଁ ବିଚାର ଚାଲିଛି। କୃଷ୍ଣ ରାଉତଙ୍କୁ ବିଦାୟ ଦେଇ ଚିନ୍ତାମଣି ଭୂୟାଁ ନାମକ ଜଣେକ କଂଗ୍ରେସ କର୍ମୀଙ୍କୁ କଟରପା କେନ୍ଦ୍ରରେ ରଖିଲି। ଏଣେ ବିଶ୍ୱନାଥ ମିଶ୍ରଙ୍କ ହିସାବ ପତ୍ରରେ କେତେକ ସନ୍ଦେହ ହେବାକୁ ସେ ଆଶ୍ରମ ଛାଡ଼ି ପଳାଇଗଲେ। ତାହାଙ୍କ ସ୍ଥାନରେ ଶ୍ରୀମାନ୍ ରଘୁନାଥ ପଣ୍ଡା ନିଯୁକ୍ତ ହେଲେ। ରଘୁନାଥ ୧୯୨୧ ରେ ମାଟ୍ରିକ୍ ତୃତୀୟ ଶ୍ରେଣୀରେ ପାଠ ପଢୁଥିଲେ। ଅସହଯୋଗ ଆନ୍ଦୋଳନରେ ସ୍କୁଲ ଛାଡ଼ି କଂଗ୍ରେସ କାର୍ଯ୍ୟ କରୁଥିଲେ। ସେତେବେଳୁ ମୁଁ ତାଙ୍କୁ ଜାଣେ। ଆଶ୍ରମ ନିକଟ

ରୁଦ୍ରପୁର ଗ୍ରାମରେ ତାଙ୍କର ଘର। ତାଙ୍କୁ ଆଶ୍ରମରେ ରଖାଇବା ପାଇଁ ସତ୍ୟବାଦୀଠାରେ ପୁରୀ ରିଲିଫ୍ ଖଦୀକେନ୍ଦ୍ରରେ ଶିକ୍ଷା ଦେବାକୁ ପଠାଇଥିଲି। ବିଶ୍ୱନାଥ ମିଶ୍ରଙ୍କ ବିଦାୟ ନେବାପରେ ଏହି ରଘୁନାଥ ଆଶ୍ରମର ସମସ୍ତ ଭାର ଗ୍ରହଣ କଲେ।

ବୃନ୍ଦାବନ ଷଡ଼ଙ୍ଗୀ, କୃଷ୍ଣ ରାଉତ ଓ ବିଶ୍ୱନାଥ ମିଶ୍ରଙ୍କୁ ବିଦାୟ ଦେବା ପରେ ମୋ ମନରେ ନାନାପ୍ରକାର ଭାବ ଜାତ ହେଲା। କେବଳ କଂଗ୍ରେସ କର୍ମୀ ବୋଲି ବାଛିଲେ ସବୁବେଳେ ସେମାନେ ମନ ପ୍ରାଣ ଦେଇ କାର୍ଯ୍ୟ କରିବେ ଏହି ବିଶ୍ୱାସ ଆଉ ମୋର ରହିଲା ନାହିଁ। ଆଶ୍ରମର କାର୍ଯ୍ୟ ଦିନକୁ ଦିନ ବଢ଼ିଯାଉଛି। ମୁଁ ପୁଣି ନାନା କ୍ଷେତ୍ରରେ କାର୍ଯ୍ୟ ଆରମ୍ଭ କରିବାକୁ ବିଚାର କରୁଛି। ଏପରି ଅବସ୍ଥାରେ ଗୋଟିକ ପରେ ଗୋଟିଏ କର୍ମୀ ଯଦି ଅବିଶ୍ୱାସର କାର୍ଯ୍ୟ କରି ବିଦାୟ ହୋଇଯାନ୍ତି ତେବେ ଶେଷ ଫଳ କଦାପି ଆଶାଜନକ ନୁହେଁ। ଏହିପରି ଭୟ ଜାତ ହେବା ସ୍ୱାଭାବିକ। ଏହି କର୍ମୀମାନେ ଚୋରି କରି ଟଙ୍କା ପଇସା ଖାଇଯିବା ଇଚ୍ଛାରେ କେହି କିଛି କରିନାହାନ୍ତି। ହିସାବ କିତାବରେ ଗୋଳମାଳ ଦେଖାଯାଉଛି। ତାହା ହିସାବ ରଖି ନ ଜାଣିବା ଦୋଷ ବୋଲି ମନେ ହୁଏ। କେବଳ ସେମାନଙ୍କ ମନୋବୃତ୍ତି, ଗ୍ରାମ ସଂଗଠନର ଅନୁକୂଳ ବୋଲି ମୋର ବିଶ୍ୱାସ ହେଲା ନାହିଁ। ତେଣୁ ସେମାନେ ବିଦାୟ ନେଲେ। ସେମାନଙ୍କୁ ବିଦାୟ ଦେଇ ନୂତନ ବ୍ୟବସ୍ଥା ମଧ ମନ ମାନିଲା ନାହିଁ। ଆଉ ଜଣେ କେହି ଦାୟିତ୍ୱପୂର୍ଣ୍ଣ ସାଥି ନ ହେଲେ ମୁଁ ଏକାକୀ ସବୁକାର୍ଯ୍ୟ ଦେଖି ଶୁଣି କରିବା ସହଜ ନୁହେଁ। ଏହା କିଛି ଗୋଟାଏ ବ୍ୟବସାୟ ନୁହେଁ। ଏହି କାର୍ଯ୍ୟରେ ପ୍ରତ୍ୟେକ କର୍ମୀର ମୌଳିକତା ନ ଥିଲେ କୌଣସି କାର୍ଯ୍ୟରେ ଅଗ୍ରସର ହେବା କଠିନ ହେବ। ଭାବ ଓ ଚିନ୍ତାରେ ମୌଳିକତା ଥିଲେ କର୍ମ ଆପେ ଆପେ ଦେଖାଦେବ। ଗୋଟିଏ ଆଦର୍ଶ ସମ୍ମୁଖରେ ନ ଥିଲେ ଭାବ ଓ ଚିନ୍ତା ରାଜ୍ୟରେ ପୁଣି ମୌଳିକତା ରହିବା ସହଜ ନୁହେଁ। ଏପରି ଆଦର୍ଶ ଥିବା କର୍ମୀ ଦେଶରେ ନାହାନ୍ତି? ଆଦର୍ଶ ପାଇଁ ଜୀବନର ସର୍ବସ୍ୱ ପଣ କରିଥିବା କର୍ମୀ ନ ହେଲେ ଗ୍ରାମ ସଂଗଠନ କାର୍ଯ୍ୟ ହୋଇ ନପାରେ। ଏହି ମାପ କାଠିରେ ମାପିଲା ବେଳକୁ କୌଣସି କର୍ମୀର କାର୍ଯ୍ୟ ମୋତେ ସନ୍ତୋଷ ଦେଇ ପାରୁନାହିଁ। କର୍ମ ଓ ଚିନ୍ତାରେ ମୌଳିକତା କାହା ନିକଟରେ ମୁଁ ଦେଖୁନାହିଁ। ତେଣୁ ଗୋଟିକ ପରେ ଗୋଟିଏ କର୍ମୀଙ୍କୁ ବିଦାୟ ଦେଇ ନୂତନ କର୍ମୀ ରଖି କାର୍ଯ୍ୟ କରିବାକୁ ଅଗ୍ରସର ହେଉଛି। ଜଣେ ସାଥି ଖୋଜୁଛି। ଜଗତସିଂହପୁର ଅଳକାଶ୍ରମ ଭାଙ୍ଗି ଯାଇଛି। ଏ ଅନୁଷ୍ଠାନଟି ଭାଙ୍ଗିବା ଉଚିତ ନ ଥିଲା। ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ, ବାବୁ ଭାଗୀରଥି ମହାପାତ୍ର, ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିହାରୀ ପ୍ରଭୃତି ବଡ଼ ବଡ଼ କର୍ମୀ ଅଳକାଶ୍ରମ ଗଢ଼ିବାକୁ ମନ ପ୍ରାଣ ଢାଳି ଦେଇଥିଲେ। ଏ ସମସ୍ତଙ୍କ ଘର ଜଗତସିଂହପୁର। ଏମାନଙ୍କ ସୁନାମ ଓ ପ୍ରତିପତ୍ତି ଦେଶରେ ଅଛି। ଏପରି ଅବସ୍ଥାରେ ଅଳକାଶ୍ରମ

ଭାଙ୍ଗିଯିବା ଅତ୍ୟନ୍ତ ପରିତାପର ବିଷୟ। ଓଡ଼ିଶାରେ ଗୋଟିଏ ମାତ୍ର ଜାତୀୟ ଅନୁଷ୍ଠାନ ରହୁନାହିଁ। ଏହାର ଏକମାତ୍ର କାରଣ କର୍ମୀମାନଙ୍କ ମଧ୍ୟରେ ଚିନ୍ତା ଓ ଆଦର୍ଶରେ ଐକ୍ୟଭାବର ଅଭାବ। ଆଦର୍ଶକୁ ସମ୍ମୁଖରେ ରଖି ଅବିଚଳିତ ଭାବରେ ପଡ଼ି ରହି କାର୍ଯ୍ୟ କରିବାକୁ ହେଲେ ଯେ ପ୍ରକାର ଧୈର୍ଯ୍ୟ ଓ ସାଧନା ଆବଶ୍ୟକ ତାହା ଓଡ଼ିଶାର କର୍ମୀମାନଙ୍କର ନିକଟରେ ନାହିଁ। ଅଳକାଶ୍ରମ ଭାଙ୍ଗି ଯିବା ଦ୍ୱାରା ମୋ ମନରେ ଏକ ଆତଙ୍କ ଉପସ୍ଥିତ ହୋଇଛି। ଅଳକାଶ୍ରମ ସହଯୋଗରେ ମୁଁ ଆଉ ଗୋଟିଏ ଅନୁଷ୍ଠାନ ଗଢ଼ିବାକୁ ଉଦ୍ୟୋଗ କଲାବେଳକୁ ଅଳକାଶ୍ରମ ଭାଙ୍ଗି ଯାଉଛି। କର୍ମୀମାନେ ଇତସ୍ତତଃ ହେଲେଣି। ପଣ୍ଡିତ ପ୍ରାଣକୃଷ୍ଣ ପ୍ରତିହାରୀ କର୍ମଶୂନ୍ୟ ହୋଇ ବସିଛନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ଏହାଙ୍କ ଉପରେ ମୋର ଦୃଷ୍ଟି ପଡ଼ିଲା। ମୋ ସହିତ ଯୋଗ ଦେବାକୁ ପଣ୍ଡିତ ପ୍ରାଣକୃଷ୍ଣଙ୍କୁ ମୁଁ ଅନୁରୋଧ କଲି।

ପଣ୍ଡିତଜୀଙ୍କର ବହୁତ ଅଭାବ। ସେ କିଛି ଟଙ୍କା କରଜ କରିଛନ୍ତି। ଏସବୁ ଅଭାବ ଅସୁବିଧା ଦୂର ନ ହେଲେ ସେ କୌଣସି କାର୍ଯ୍ୟରେ ହାତ ଦେଇ ପାରିବେ ନାହିଁ। ଏସବୁ ଯଥାର୍ଥ କଥା। ପଣ୍ଡିତ ପ୍ରାଣକୃଷ୍ଣ ଯଦି ଆଜୀବନ ମୋ ସହିତ କାର୍ଯ୍ୟ କରିବାକୁ ପ୍ରସ୍ତୁତ ହୁଅନ୍ତି ତେବେ ଉକ୍ତ ଋଣ ପରିଶୋଧର ବ୍ୟବସ୍ଥା କରିବାକୁ ମୁଁ ସ୍ୱୀକୃତ ହେବି। ଋଣ ପରିଶୋଧ କରିବା ପର୍ଯ୍ୟନ୍ତ ସେ ମାସକୁ ଚାଳିଶ ଟଙ୍କା ନେବେ, ତାରପର ମାସକୁ ପନ୍ଦର ଟଙ୍କା ଖର୍ଚ୍ଚ ନେଇ ମୋ ସହିତ କାର୍ଯ୍ୟ କରିବେ ବୋଲି କଥା ସ୍ଥିର ହେଲା। ତଦନୁସାରେ ପଣ୍ଡିତ ପ୍ରାଣକୃଷ୍ଣ ପ୍ରତିହାରୀ ଚମ୍ପାପୁରରେ ଆସି ଉପସ୍ଥିତ ହେଲେ। ଆଶ୍ରମ ପରିଚାଳନାର ସମସ୍ତ ଭାର ତାହାଙ୍କ ଉପରେ ଦେଇ, ମୁଁ ଟିକିଏ ଆଶ୍ୱସ୍ତ ହେଲି।

ଆଶ୍ରମର କିଛିଦୂରରେ ଯାଜପୁର ସବଡ଼ିଭିଜନ୍‌ର ଧୋଇଆ ମୁଲକ। କାଠଯୋଡ଼ି ନଦୀରେ ଅଠରଫୁଟ ପାଣି ହେଲେ ଏ ଅଞ୍ଚଳ ଧୋଇରେ ଯାଏ। ଏହି ଧୋଇ ସମସ୍ୟା ବିଚାର କରିବାକୁ ଭାକୁଡ଼ ଗ୍ରାମ ନିକଟରେ ଗୋଟିଏ ସଭା ହୋଇଥିଲା। ଉକ୍ତ ସଭାରେ ପଣ୍ଡିତ ଗୋପବନ୍ଧୁ ଦାସ ସଭାପତି ହୋଇଥିଲେ। ନଦୀ ମୁହାଣ ତିନୋଟି ଥିବାରୁ ଏ ଅଞ୍ଚଳ ଧୋଇ ହେଉଛି। ଏହି ମୁହାଣ ତିନୋଟିରେ କବାଟ ଲଗା ତିନୋଟି ବନ୍ଧ ବାନ୍ଧି ଦେଲେ ଧୋଇ ହେବାର ସମ୍ଭାବନା ରହିବ ନାହିଁ। ଏହି ମୁହାଣମାନଙ୍କ ବନ୍ଧ ବାନ୍ଧିବାର ସଭାରେ ସ୍ଥିର ହେଲା। ଏ ଅଞ୍ଚଳର ଲୋକେ ସାହାଯ୍ୟ ଦେଇ ବନ୍ଧ ବାନ୍ଧିବେ। ଏଥିପାଇଁ କର୍ମୀ ଲୋଡ଼ା ପଣ୍ଡିତ ଗୋପବନ୍ଧୁ ଦାସ ଏହି କାର୍ଯ୍ୟ କରାଇବା ପାଇଁ ମୋତେ ଅନୁରୋଧ କରିଥାନ୍ତି। ଏ ଅଞ୍ଚଳର ଲୋକେ ମଧ୍ୟ ମୋର ସହଯୋଗ ମାଗିଛନ୍ତି। ଏପରି ଅବସ୍ଥାରେ ପଣ୍ଡିତ ପ୍ରତିହାରୀଙ୍କ ଉପରେ ଆଶ୍ରମଭାର ଅର୍ପଣ କରି ଏହି ଧୋଇଆ ଅଞ୍ଚଳରେ କାର୍ଯ୍ୟ କରିବାକୁ ମୁଁ ବାହାରିଲି। ଭାକୁଡ଼ ଗ୍ରାମର ପଣ୍ଡିତ ନରସିଂହ ମିଶ୍ର ମୋ ସହିତ ଯୋଗ ଦେଲେ।

ହିସାବ କରି ଦେଖିବାରେ ଗୋଟିଏ ମୁହାଣରେ ବନ୍ଧ ବାନ୍ଧିବାକୁ ହେଲେ ଅତି କମ୍‌ରେ ପାଞ୍ଚଶତ ଟଙ୍କା ଆବଶ୍ୟକ। ଏଣୁ ଗୋଟିଏ ମୁହାଣ ବନ୍ଧାଇବା ପାଇଁ ଚେଷ୍ଟା କରାଗଲା। ସେ ଅଞ୍ଚଳର ଜମିଦାର ବାବୁ କାର୍ତ୍ତିକଚନ୍ଦ୍ର ପାଳ, ଗୌରଚନ୍ଦ୍ର ପାଳ ପ୍ରଭୃତି ଆଉ ଦୁଇଜଣଙ୍କ ସହିତ ଚାନ୍ଦା ଆଦାୟ କରିବାପାଇଁ ବାହାରିଲେ। ଗ୍ରାମ ଗ୍ରାମ ବୁଲି ସଭା ଡକାଇ ଲୋକଙ୍କୁ ବୁଝାଇବା ଦରକାର ପଡ଼ିଲା। ଜମି ଏକର ପିଛା ଚାରିଅଣା ଚାନ୍ଦା ଧାର୍ଯ୍ୟ ହେଲା। କିନ୍ତୁ ଏତକ ଲୋକେ ଦେବାକୁ କୁଣ୍ଠିତ। ଯେ କୌଣସି ପ୍ରକାର ଗୋଟିଏ ମୁହାଣ ବନ୍ଧାଇ ଲୋକଙ୍କୁ ଉପକାର ଦେଖାଇ ପାରିଲେ ଅନ୍ୟ ଦୁଇଟି ମୁହାଣ ବନ୍ଧାଇବା ପାଇଁ କଷ୍ଟ ହେବ ନାହିଁ। ଏହି ଉଦ୍ଦେଶ୍ୟରେ ମୁଁ ଓ ନରସିଂହ ମିଶ୍ରେ ଭୋକ ଉପବାସରେ ଗାଁକୁ ଗାଁ ବୁଲିଲୁ। କୌଣସି ଗ୍ରାମରେ କେହି ଅବୁଝା ହେଲେ ନ ଖାଇ, ନ ପିଇ, ଖରାରେ ବସି ରହି ମୁଁ ସତ୍ୟାଗ୍ରହ କରିଛି। ଲୋକଙ୍କ ଏପରି ଅବୁଝା ପଣିଆ ଓ ଅଯଥା ଯୁକ୍ତି ଦେଖି ଶୁଣି ମୁଁ ଆବାକ୍ ହୋଇ ଯାଇଛି। ସେମାନଙ୍କ ଜମି ବାଡ଼ି ଧୋଇରେ ଭାସି ଯାଉଛି। ତହିଁରୁ ସେମାନେ ରକ୍ଷା ପାଇବା ପାଇଁ ମୁଁ ଯାଇ ବୁଲୁଛି, ଏହା ସେମାନଙ୍କ ଆଖିକୁ ଦେଖା ଯାଉନାହିଁ। ସେମାନେ ନିଜେ ଯାହା କରନ୍ତେ, ତାହା ମୁଁ ଯାଇ କରୁଛି। ଏଥିରେ ସେମାନେ ମୋଠାରେ କୃତଜ୍ଞ ହେବା ଦୂରେ ଥାଉ, ଅନେକ ସମୟରେ ଅଯଥା ସମାଲୋଚନା ଶୁଣିବାକୁ ପାଉଛି। ଏଥିରୁ ଦେଶର ଅବସ୍ଥା କେତେ ତଳେ, ପଲ୍ଲୀବାସୀଙ୍କ ମନୋବୃତ୍ତି କଣ ତାହା ବୁଝିବାକୁ ଆଉ ବାକି କଣ ରହୁଛି। ମୁଁ ସେମାନଙ୍କୁ ଦୋଷ ଦେଉ ନାହିଁ। ସେମାନେ ମୋର ଏପରି ଖରା ତରାରେ ବୁଲି କାର୍ଯ୍ୟ କରିବାରେ ନିଃସ୍ୱାର୍ଥଭାବ ଅଛି ବୋଲି ବିଶ୍ୱାସ କରି ନ ପାରୁଥିବାର ମୁଁ ସ୍ପଷ୍ଟ ହୃଦୟଙ୍ଗମ କରୁଛି। କିଛି ସ୍ୱାର୍ଥ ନ ଥାଇ ଲୋକ ମିଛରେ ବୈଶାଖ ମାସ ଖରାରେ ଆସି ଦ୍ୱାର ଦ୍ୱାର ବୁଲିବ, ଏହା ସେମାନେ କଳ୍ପନାତୀତ। ଏଥିପାଇଁ ଦାୟୀ ନୁହନ୍ତି। ଦେଶର ଧନୀ ଓ ଶିକ୍ଷିତ ଲୋକେ ଏଥିପାଇଁ ଦାୟୀ। ଲୋକ ପର ପାଇଁ ଦୁଃଖକଷ୍ଟ ସହି କାର୍ଯ୍ୟ କରିବାର ଉଦାହରଣ ସେମାନେ ଦେଖିବାକୁ ପାଇ ନାହାନ୍ତି। ପଲ୍ଲୀବାସୀ ନିର୍ଜୀବ ହୋଇ ପଡ଼ିଛି। ପ୍ରତିଦିନର ଆହାର ମୁଠାକ ଭିଆଇବାର ଚିନ୍ତା ଛଡ଼ା ଅନ୍ୟ କିଛି ସେ ଜାଣେ ନାହିଁ। ଏହିପରି ମୁଁ ଭାବୁଛି। ଲୋକଙ୍କର ଶିଥିଳତା ଓ ଅନାଦର ଭାବକୁ ଭୁଲିବାକୁ ଚେଷ୍ଟା କରୁଛି। ଗୋଟିଏ ମୁହାଣ କିପରି ବନ୍ଧାଇବି ଏହି ଚିନ୍ତା କେବଳ ମୋ ମନରେ ଖେଳୁଛି। ଏହିପରି ବୁଲି ବୁଲି କିଛି ଅର୍ଥ ସଂଗ୍ରହ ହେଲା। ଶେଷରେ ଧାର ସ୍ୱରୂପ ପଣ୍ଡିତ ନରସିଂହ ମିଶ୍ରଙ୍କୁ ଆଶ୍ରମରୁ ଚାଳିଶ ଟଙ୍କ ଦେଇ ଗୋଟିଏ ମୁହାଣ ଯଥାତଥା ଭାବରେ ବନ୍ଧାଇଲୁ। ଦୁଇମାସ ଅକ୍ଳାନ୍ତ ପରିଶ୍ରମ କରି ମୁଁ ଆଶ୍ରମକୁ ଫେରିଲି। ଆଶ୍ରମରେ ଉପସ୍ଥିତ ହେବା ପରେ ମୋତେ ମ୍ୟାଲେରିଆ ଜ୍ୱର ହେଲା।

ମୋତେ ଜ୍ୱର ହେଲା ସେ ଚିନ୍ତା ମୋର ନାହିଁ। ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ଆଉଥରେ ସେହି ଧୋଇୟା ଅଞ୍ଚଳକୁ ନେବାକୁ ମୋର ଇଚ୍ଛା। ସେ ଯାଇ ପୋଲଟିର ଉଦ୍‌ଘାଟନ କାର୍ଯ୍ୟ ସଂପାଦନ କରିବେ। ଏହି ସୂତ୍ରରେ ପୋଲଟିର ଅବଶିଷ୍ଟ କାର୍ଯ୍ୟ ମଧ୍ୟ ସଂପୂର୍ଣ୍ଣ ହୋଇଯିବ। କିନ୍ତୁ ଏହି ଇଚ୍ଛା ମୋର ପୂରଣ ହୋଇ ପାରିଲା ନାହିଁ। ହଠାତ୍ ବଜ୍ରପାତ ହୋଇ ମୋର ସମସ୍ତ ବଳ ଓ ସାହସ ଚୂର୍ଣ୍ଣୀଭୂତ ହୋଇଯିବ ବୋଲି କିଏ ଜାଣିଥିଲା ? ପଣ୍ଡିତ ଗୋପବନ୍ଧୁ କିଛିଦିନ ପୂର୍ବରୁ ପୀଡ଼ିତ ଥିଲେ। ତାହାଙ୍କର ଦେହ ଅତିଶୟ ଖରାପ ହୋଇପଡ଼ିବାର ସଂବାଦ ପାଇଲି। ମୁଁ ଜ୍ୱର ରୋଗରେ ଶାୟିତ। ଦାସ ଆପଣେ ଏପରି ବେମାର ପଡ଼ିବାର କେତେ ବାର ଶୁଣା ଯାଇଛି। କିନ୍ତୁ ତାହାଙ୍କ ଜୀବନ ସଂକଟାପନ୍ନ ହେବାର ସଂବାଦ ଶୁଣିବାକୁ ମିଳେ ନାହିଁ। ଏହି ସଂବାଦରେ ମୁଁ ଅସ୍ଥିର ହୋଇ ପଡ଼ିଲି। ଜ୍ୱରରେ ସତ୍ୟବାଦୀ ଯିବାକୁ ସାହସ ପାଇଲା ନାହିଁ। ଏହାର ଦୁଇଦିନ ପରେ ପଣ୍ଡିତ ପ୍ରତିହାରୀ ବୈରୀ ଷ୍ଟେସନରୁ ସଂବାଦ ଦେଲେ "ଦାସ ଆପଣେ ଆଉ ନାହାନ୍ତି" କି ଦାରୁଣ ସଂବାଦ, କି ବଜ୍ରପାତ ! ଏ ସଂବାଦ ପାଇ ମୋର ବାକ୍‌ରୁଦ୍ଧ ହୋଇ ଗଲା, ମୋତେ ଚାରିଆଡ଼ ଅନ୍ଧାର ଦେଖାଗଲା। ମୋର ସମସ୍ତ ବଳ, ସାହସ କୁଆଡ଼େ ଉଭେଇ ଗଲା। ଓଡ଼ିଶା ଛାଡ଼ି ପଳାଇବାକୁ ଇଚ୍ଛା ହେଲା। ଦାସ ଆପଣଙ୍କ ନାମ ଆଜିଠାରୁ ଲୁଚିଲା, ଏହା ତ ଭାବି ହେଉ ନାହିଁ। ଆଉ କାହାକୁ ଚାହିଁ କାର୍ଯ୍ୟ କରିବାକୁ ହେବ। ଆଉ କିଏ ଆସି ଆମ୍ଭମାନଙ୍କ ପଛରେ ଠିଆ ହୋଇ, ଆମ୍ଭମାନଙ୍କୁ କର୍ମ-ପ୍ରେରଣା ଦେବ। ଉତ୍କଳର କଂଗ୍ରେସ କର୍ମୀଙ୍କ କଥା ଆଉ କିଏ ଦିନ ରାତି ବସି ଚିନ୍ତା କରିବ। କୌଣସି ଗୋଟିଏ କର୍ମୀର ଦୁଃଖ ସଂବାଦରେ ଅଧୀର ହୋଇ ଆଖିରୁ ଲୁହ ଦି'ଟୋପା ବୁହାଇବ କିଏ। ଦାସ ଆପଣଙ୍କୁ ଭୁଲି ଦେଶସେବା କରିବା କଠିନ। ନିଜର ଦୁଃଖ କଷ୍ଟ ଦାସ ଆପଣଙ୍କୁ କହିଦେଲେ, ମନ ଉଶ୍ୱାସ ହୋଇଯାଏ। କିଛି କାର୍ଯ୍ୟ ଦେଖାଇ ପାରିଲେ ମନରେ ଆନନ୍ଦ ଜାତ ହୁଏ। କାହାକୁ କଠୋର ପରିଶ୍ରମ କରିବାର ଦେଖିଲେ ସେ ମଧ୍ୟ ଅପୂର୍ବ ଆନନ୍ଦ ଅନୁଭବ କରନ୍ତି। ଦାସ ଆପେଣେ ଥିଲେ କିଛି ଚିନ୍ତା ନ ଥିଲା। କିଏ କଣ କହୁଛି ସେଥିପ୍ରତି ଭୃକ୍ଷେକ ନ ଥିଲା। ଓଡ଼ିଶା ଭିତରେ ଓ ବାହାରକୁ ସେ ଥିଲେ ଆମ୍ଭର ପ୍ରଧାନ ସହାୟକ। କେଉଁ କର୍ମୀ କିପରି କର୍ମ କରୁଛି ଏହାର ଭଲମନ୍ଦ ତାଙ୍କରି ମୁଖରେ ପ୍ରଚାରିତ ହେଉଥିଲା। ସେ ଥିଲେ ଓଡ଼ିଶା କଂଗ୍ରେସର ଏକମାତ୍ର କର୍ଣ୍ଣଧାର। ନାବିକ ନ ଥିଲେ ନାବର ଯେ ଦଶା ଦାସ ଆପଣଙ୍କ ବିହୁନେ, ଓଡ଼ିଶା କଂଗ୍ରେସ କର୍ମୀଙ୍କର ସେହି ଦଶା କହିଲେ କଦାପି ଅତ୍ୟୁକ୍ତି ହେବ ନାହିଁ। ଏ ଭାବ କ୍ଷଣିକ ନୁହେଁ। ଦାସ ଆପଣେ ମନେ ପଡ଼ିଲେ ହୃଦୟରୁ କୋହ ଜାଗି ଉଠୁଛି। ଆଖି ଛଳ ଛଳ ହୋଇ ଯାଉଛି। ତାହାଙ୍କ ଅଭାବ ପ୍ରତି ମୁହୂର୍ତ୍ତରେ ଏବଂ ପ୍ରତିକର୍ମରେ ଅନୁଭବ କରିବାକୁ ପଡୁଛି। ଦାସ ଆପଣଙ୍କ ମୃତ୍ୟୁ ଓଡ଼ିଶାର ରାଜନୈତିକ ଜୀବନର ଏକ ଭୀଷଣ ବଜ୍ରପାତ।

ଗୋପବନ୍ଧୁ ଦାସଙ୍କ ମୃତ୍ୟୁରେ ସମଗ୍ର ଓଡ଼ିଶା କାତର ହୋଇ ଉଠିଲା । କେତେ ଶୋକସଭା ହୋଇଗଲା । ଗୋପବନ୍ଧୁ ବାବୁଙ୍କ ସ୍ମୃତି କିପରି ରହିବ ଏହି କଥା ସମସ୍ତଙ୍କ ମୁଖରେ ଶୁଣାଗଲା । ଏହି କଥା ବିଚାର କରିବାପାଇଁ ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ବସିଲା । 'ଗୋପବନ୍ଧୁ ହାସପାତାଳ' ନାମରେ ଗୋଟିଏ ଚିକିତ୍ସା ଗୃହ ପୁରୀରେ ସ୍ଥାପନ କରିବା ପାଇଁ ମୁଁ ପ୍ରସ୍ତାବ କଲି । ମାତ୍ର ମୋର ପ୍ରସ୍ତାବ ଗୃହୀନ ହେଲା ନାହିଁ । ମୋର ମନେହୁଏ, ମୋର ପ୍ରସ୍ତାବଟି ଗୃହୀତ ହୋଇଥିଲେ ଗୋପବନ୍ଧୁ ଦାସଙ୍କର ସ୍ମୃତି ନିଶ୍ଚୟ ରହି ପାରିଥାନ୍ତା । ଏଥିପାଇଁ ପୁରୀରେ ଯାତ୍ରୀମାନଙ୍କଠାରୁ ଅର୍ଥ ସାହାଯ୍ୟ ମଧ୍ୟ ମିଳିଥାନ୍ତା । 'ଗୋପବନ୍ଧୁ କଳାଶାଳା' ନାମରେ ଗୋଟିଏ (Industrial Institute) ବୈଷୟିକ ଶିକ୍ଷା ମନ୍ଦିର କଟକରେ ସ୍ଥାପନ କରିବାର ପ୍ରସ୍ତାବ ହେଲା । ସ୍ମୃତି ପାଣ୍ଠି ସଂଗ୍ରହ କରିବା ପାଇଁ ଗୋଟିଏ କମିଟି ଗଢ଼ା ହେଲା । ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଏହାର ପ୍ରଧାନ ଉଦ୍ୟୋକ୍ତା ହେଲେ । ପ୍ରାଦେଶିକ କଂଗ୍ରେସ କମିଟି ମଧ୍ୟ ଚୌଧୁରୀଙ୍କ ଉପରେ ଏହି ଭାର ମୁଖ୍ୟତଃ ଅର୍ପଣ କଲା । କିନ୍ତୁ ଫଳରେ ଯାହା ହୋଇଛି ତାହା ସମସ୍ତଙ୍କୁ ଜଣା । ଗୋପବନ୍ଧୁଙ୍କ ସ୍ମୃତି ରଖିବା ପାଇଁ କୌଣସି ଚେଷ୍ଟା ହେଲା ନାହିଁ । ମନ ପ୍ରାଣ ଦେଇ ଏଥିପାଇଁ କେହି କାର୍ଯ୍ୟ କରିନାହାନ୍ତି । ଗୋପବନ୍ଧୁଙ୍କ ସ୍ମୃତି ରଖିବା ଦେଶର ଗୋଟିଏ ମହତ୍ କାର୍ଯ୍ୟ ଏହି ଭାବନା କାହାରି ମନକୁ ସ୍ପର୍ଶ କଲା ନାହିଁ । ଏହା ଭିତରେ ଆଉ ଯାହା ରହସ୍ୟ ରହିଲା ସେସବୁ ଉଲ୍ଲେଖ ନ କରିବା ଉଚିତ । କିନ୍ତୁ ଏଥିରୁ ମୁଁ ଏକ ମହତ୍ ଶିକ୍ଷା ପାଇଲି । ଓଡ଼ିଶାରେ ସମ୍ମିଳିତ ଚେଷ୍ଟା ଅସମ୍ଭବ ଏହା ବୁଝିବାକୁ ଆଉ କିଛି ବାକି ରହିଲା ନାହିଁ । ମୋର ମନରେ ଏକ ପ୍ରକାର ଭୟ ଜାତ ହେଲା । ଗାନ୍ଧୀସେବାଶ୍ରମକୁ ଓଡ଼ିଶାରେ ଗୋଟିଏ ସ୍ଥାୟୀ ଅନୁଷ୍ଠାନ ରୂପେ ଗଢ଼ିବାକୁ ସଂକଳ୍ପ କରିଛି । ଏଥିରେ କୃତକାର୍ଯ୍ୟ ହୋଇପାରିବି ବୋଲି ମୋର ବିଶ୍ୱାସ ରହିଲା ନାହିଁ । ମୁଁ ସ୍ପଷ୍ଟ ଦେଖି ପାରିଲି ଗାନ୍ଧୀସେବାଶ୍ରମ ଯେତିକି ଉନ୍ନତି କରିବ, ସେତିକି ମାତ୍ରାରେ ମୁଁ ସମସ୍ତଙ୍କ ସ୍ନେହ ସହାନୁଭୂତି ହରାଇବି । ସମ୍ମିଳିତ ଚେଷ୍ଟା ନ ହେଲେ କୌଣସି ସ୍ଥାୟୀ ଅନୁଷ୍ଠାନ ଗଢ଼ା ଯାଇ ନ ପାରେ । ଏଥିପାଇଁ କେତୋଟି କର୍ମୀ ଦଳବଦ୍ଧ ହୋଇ ସମ୍ମିଳିତ ଚେଷ୍ଟା କରିବା ଆବଶ୍ୟକ ।

ଏହି ଉଦ୍ଦେଶ୍ୟରେ ମୁଁ ପଣ୍ଡିତ ପ୍ରତିହାରୀଙ୍କ ସହଯୋଗ ଲୋଡ଼ିଛି । ତାହାଙ୍କୁ ଋଣମୁକ୍ତ କରିବା ପାଇଁ ମାସକୁ ଚାଳିଶ ଟଙ୍କା ଦରମା ଦେବାର ବ୍ୟବସ୍ଥା କରାଯାଇଛି । ପଣ୍ଡିତଜୀ ମୋ ନିକଟରେ ଚାରି ମାସ ରହି ବିଦାୟ ନେବାକୁ ବସିଲେ । ତାହାଙ୍କୁ ବିଦାୟ ଦେବାକୁ ମୋତେ ମଧ୍ୟ ବାଧ୍ୟ ହେବାକୁ ପଡ଼ିଲା । ପଣ୍ଡିତେ ଚମ୍ପାପୁର ଗାନ୍ଧୀସେବାଶ୍ରମରେ ରହିଲେ ସତ୍ୟ, ମାତ୍ର ଜଗତସିଂହପୁରକୁ ସେ ଭୁଲି ପାରିଲେ ନାହିଁ । ଜଗତସିଂହପୁରରେ ତାଙ୍କର କର୍ମଜୀବନ ଆରମ୍ଭ । ସେଠାରେ ନାନା କାର୍ଯ୍ୟରେ ସେ ସଂପୃକ୍ତ ଅଛନ୍ତି । ଏପରି ଅବସ୍ଥାରେ ସେଠାରେ ପ୍ରତ୍ୟେକ ସ୍ଥାନ ଓ ପ୍ରତ୍ୟେକ

କର୍ମ ତାଙ୍କର ମନକୁ ଆକର୍ଷଣ କରୁଛି। ତାହା ସବୁ ଏକାବେଳକେ ଭୁଲିଯାଇ ଆଉ ଗୋଟିଏ ସ୍ଥାନକୁ ଆଦରି ନେବା ସମସ୍ତଙ୍କ ପକ୍ଷେ ସହଜ ହୋଇ ଉଠେ ନାହିଁ। ତାଙ୍କର ମନୋବୃତ୍ତି ଗ୍ରାମ-ସଂଗଠନ କାର୍ଯ୍ୟର, ଅନୁକୂଳ ହେବ ବୋଲି ମୋତେ ବୋଧ ହେଲା ନାହିଁ। ଏହାଛଡ଼ା ମୋର ବେଶି କିଛି ଲେଖିବା ଉଚିତ ମନେ କରୁ ନାହିଁ।

ପଣ୍ଡିତ ପ୍ରାଣକୃଷ୍ଣ ପ୍ରତିହାରୀ ଏଠାରୁ ବିଦାୟ ହୋଇଗଲେ। ସେ ଦେଖିଗଲେ ଏଠାରେ ମୋ ଚେଷ୍ଟା ଅସୀମ ଓ ଅଦମ୍ୟ। ଏଠାରେ ଗୋଟିଏ ବୃହତ୍ ଅନୁଷ୍ଠାନ ଗଢ଼ିବାର କଳ୍ପନା କରି ମୂଳଭିତ୍ତି ଗଢ଼ା ହେଉଛି। ଅଳକାଶ୍ରମ ଭାଙ୍ଗି ଯାଇଛି। ଏଥିରେ ତାହାଙ୍କ ମନରେ ଈର୍ଷାଭାବ ଜାତ ହେବା ସ୍ୱାଭାବିକ। ସେ ଆଶ୍ରମରୁ ବିଦାୟ ନେବା ପରେ କଟକରେ ମୁଁ ବହୁତ କଥା ଶୁଣିବାକୁ ପାଇଲି। ମୁଁ ଏଠାରେ ଆଶ୍ରମ ଗଢ଼ିବା ବାହାନା କରି ଟଙ୍କା ପଇସା ସଂଗ୍ରହ କରି ନାନାପ୍ରକାର ବ୍ୟବସାୟ କରୁଛି। ଧାନ, ଝୋଟ, ମଟରଗାଡ଼ି ଇତ୍ୟାଦି ବ୍ୟବସାୟରେ ଟଙ୍କା ଖଟାଉଛି। ଏସବୁ ସଂବାଦର ମୂଳ କାରଣ କିଏ ମୁଁ ଜାଣେ ନାହିଁ। ଗୋପବନ୍ଧୁ ଚୌଧୁରୀ ମଧ୍ୟ ଏହିସବୁ କଥା ଉଲ୍ଲେଖ କରି ମୋତେ ଖଣ୍ଡିଏ ପତ୍ର ଲେଖିଲେ। ସେ ଏସବୁ କଥା କାହା ନିକଟରୁ ଶୁଣିଛନ୍ତି ଏ ପ୍ରଶ୍ନ ପଚାରିବାରୁ ସେ ମୋତେ ତାହାଁର ଉତ୍ତର ଦେଇ ନାହାନ୍ତି। ଗୋପବାବୁଙ୍କ ପତ୍ର ପାଇ ମୁଁ ବିଶେଷଭାବରେ ଦୁଃଖିତ ହୋଇଛି। ସେ ଜଣେ ବିଶିଷ୍ଟ କର୍ମୀ। ତାଙ୍କର ଉଚିତ ଥିଲା ମୋ ବିରୁଦ୍ଧରେ ଯାହା ଶୁଣିଲେ, ସେସବୁର ଅନୁସନ୍ଧାନ କରି ସନ୍ଦେହ ଦୂର କରିବା। ତାହା ସେ କରି ନାହାନ୍ତି। ମୋ ବିରୁଦ୍ଧ କଥାଗୁଡ଼ିକ ଶୁଣି ସେ ନୀରବ ରହିଛନ୍ତି। ଦେଶର କୌଣସି ବିଶିଷ୍ଟ କର୍ମୀଙ୍କ ପକ୍ଷରେ ଏପରି ନୀରବ ରହିବା କଦାପି ଶୋଭନୀୟ ନୁହେଁ। ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ଭାବରେ ଦେଶର ପ୍ରତ୍ୟେକ କର୍ମରେ ପ୍ରତ୍ୟେକ ବିଶିଷ୍ଟ କର୍ମୀଙ୍କର ହାତ ରହିଛି। ଦେଶରେ ଯାହା କିଛି କାର୍ଯ୍ୟ ହୁଏ ତାହା ସମସ୍ତଙ୍କ ସମ୍ମିଳିତ କର୍ମ ଓ ଚିନ୍ତାର ରୂପାନ୍ତର ମାତ୍ର। ଦେଶରେ ଯେତେବେଳେ ଯେଉଁ ଭାବ ଖେଳିଯାଏ, ତାହା ଦେଶସେବା କରୁଥିବା ପ୍ରତ୍ୟେକ କର୍ମୀଙ୍କର ସାଧନାର ଫଳ। ଦେଶର କୌଣସି କାର୍ଯ୍ୟରେ କେହି ଜଣେ କର୍ମୀ ଏକାକୀ କର୍ମ କରିଛି ବୋଲି ବାହାଦୁରି କରି ନ ପାରେ। ଦେଶରେ ବାୟୁମଣ୍ଡଳ ସୃଷ୍ଟି ନ ହେଲେ ଜନସାଧାରଣଙ୍କ ମନରେ କୌଣସି ଭାବର ସଂଚାର ହୁଏ ନାହିଁ। ଦେଶର କର୍ମୀମାନେ ଦେଶର ବାୟୁମଣ୍ଡଳ ସୃଷ୍ଟି କରନ୍ତି ଓ ନୂତନ ଭାବ ଉଦ୍ରେକ କରାନ୍ତି। ଦେଶ ଏହିପରି ଜାଗ୍ରତ ହେଲେ ପ୍ରତ୍ୟେକଙ୍କୁ କର୍ମ କରିବା ପାଇଁ ବାଟ ଦେଖାଯାଏ ଏବଂ ସେହି ବାଟ ପୁଣି ସରଳ ଓ ସୁଗମ ହୁଏ। ସୁତରାଂ ଦେଶସେବା କାର୍ଯ୍ୟରେ କେହି ବିଶିଷ୍ଟ କର୍ମୀ କୌଣସି କର୍ମ ସହିତ ପ୍ରତ୍ୟକ୍ଷ ଭାବରେ ସଂପୃକ୍ତ ନ ଥିଲେ ମଧ୍ୟ ତାହାଁର ଭଲମନ୍ଦ ପାଇଁ

ସେ ଦାୟୀ। ଏହି ଦୃଷ୍ଟିରେ ଦେଶ କାର୍ଯ୍ୟକୁ ମୁଁ ଦେଖେ। ଅଳକାଶ୍ରମ ଭାଙ୍ଗିଯିବାରେ ଏହି କାରଣରୁ ମୁଁ ଦୁଃଖିତ ହୋଇଛି। ମୁଁ ଗୋଟିଏ ଅନୁଷ୍ଠାନ ଗଢ଼ିବାକୁ ଚେଷ୍ଟା କରୁଛି। ସେଥିରେ ପ୍ରତ୍ୟକ୍ଷ ଭାବରେ କାହାରିଠାରୁ ସାହାଯ୍ୟ ସହାନୁଭୂତି ନ ପାଇଲେ ମଧ୍ୟ ପରୋକ୍ଷରେ ମୋ ବିରୁଦ୍ଧରେ ପ୍ରତିକୂଳ ବାୟୁମଣ୍ଡଳ ସୃଷ୍ଟି ହେଉଚି। ମୋର ଦୋଷ ଘଟିଥିଲେ ସଂଶୋଧନ କରିବା କିମ୍ବା ଅଯଥା ପ୍ରତିକୂଳ ବାୟୁମଣ୍ଡଳ ସୃଷ୍ଟି ହେଉଥିଲେ ତାହାକୁ ପରିଷ୍କାର କରିବା ପ୍ରତ୍ୟେକ ଜଣାଶୁଣା କର୍ମୀଙ୍କ କର୍ତ୍ତବ୍ୟ ନୁହେଁ କି? କିନ୍ତୁ ଏହି ଭାବ ଆମ ଏ ଉତ୍କଳ ଭୂମିରେ ନାହିଁ ବୋଲି ମୁଁ ପଦେ ପଦେ ଅନୁଭବ କରୁଛି। ଆମ୍ଭେମାନେ ପ୍ରତ୍ୟେକେ ପ୍ରତ୍ୟେକଙ୍କୁ କ୍ଷୁର୍ଣ୍ଣ କରିବାରେ ସବୁବେଳେ ଆନନ୍ଦ ଅନୁଭବ କରୁ। ଓଡ଼ିଶାରେ ଏରୂପ ବିକୃତ ମନୋବୃତ୍ତି ଦେଖିଲେ ଅଧୀର ହେବାକୁ ପଡ଼େ। କର୍ମ କରିବାକୁ ସାହସ ରହେ ନାହିଁ।

ଚମ୍ପାପୁର ନିକଟରେ ମୁଁ ଯାହା କରୁଛି ସେଥିରେ ମୁଁ ବ୍ୟକ୍ତିଗତ ଭାବରେ ଅହଂକାର କରିବାର କିଛିମାତ୍ର କାରଣ ନାହିଁ। ଅବଶ୍ୟ ମୁଁ ମୋର ନିଜର ମନୋଗତ ଭାବନା ଓ କଳ୍ପନାନୁସାରେ କାର୍ଯ୍ୟ କରୁଛି। ମୁଁ ମୋର ନିଜ ଚେଷ୍ଟାରେ ଗୋଟିଏ ଅନୁଷ୍ଠାନର ଅବୟବ ଗଠନ କରୁଛି। ତଥାପି ମୁଁ ମନେକରେ, ମୋର କର୍ମରେ ଛୋଟ ବଡ଼ ପ୍ରତ୍ୟେକ କର୍ମୀଙ୍କର କର୍ମର ପରିଣାମ ରହିଛି। ଦେଶର ରାଜନୈତିକ ଅବସ୍ଥା ଦେଶ ପାଇଁ କର୍ମ କରୁଥିବା ପ୍ରତ୍ୟେକ କର୍ମୀଙ୍କର ସମୂହ ଚେଷ୍ଟାର ସୋପାନ ମାତ୍ର। ଦେଶର ରାଜନୈତିକ ପରିସ୍ଥିତି ଯେପରି ଆକାର ଧାରଣ କରେ, କର୍ମର ପ୍ରକୃତି ମଧ୍ୟ ତଦ୍ରୂପ ହୁଏ। ମୁଁ ଗ୍ରାମ-ସଂଗଠନ କରିବାକୁ ଭାବୁଛି, କିମ୍ବା ଗୋଟିଏ ସ୍ଥାୟୀ ଅନୁଷ୍ଠାନ ଗଢୁଛି, ଏହି ଭାବନା ଦେଶର ରାଜନୈତିକ ପରିସ୍ଥିତିର ପରିଚୟ ଦେଉଛି। ଏହିପରି ରାଜନୈତିକ ପରିସ୍ଥିତି ଦେଶରେ ସୃଷ୍ଟି ହୋଇଛି କାହାଲାଗି। ମୁଁ ଏକାକୀ ଏପରି ଅବସ୍ଥା ସୃଷ୍ଟି କରିପାରିଛି ବୋଲି ଯଦି କହେ, ତେବେ ମୋର ମାନସିକ ବିକୃତି ଘଟିଲା ବୋଲି ବୁଝିବାକୁ ହେବ। ବାସ୍ତବିକ ମୋର କର୍ମ ମୋର ନିଜ ଚେଷ୍ଟାର ରୂପାନ୍ତର ନୁହେଁ। ମୋର କର୍ମ ଦେଶର ରାଜନୈତିକ ଜୀବନ ସୂଚିତ କରାଉଛି। ଏଥିରେ ପ୍ରତ୍ୟେକ କର୍ମୀର କର୍ମଫଳ ନିହିତ ଅଛି। ଦେଶରେ ଯେ କୌଣସି କର୍ମୀ ଯେଉଁଠାରେ ଯାହା କରୁ ତହିଁରେ ପ୍ରତ୍ୟେକ କର୍ମୀ ଆନନ୍ଦ ଅନୁଭବ କରିବା ଉଚିତ୍। କୌଣସି କ୍ଷେତ୍ରରେ କୌଣସି କର୍ମ ଦେଶର ସମୂହ କଲ୍ୟାଣ ଉଦ୍ଦେଶ୍ୟରେ ସାଧିତ ହୋଇ ସଫଳ ହେଲେ ସେଥିରେ ପ୍ରତ୍ୟେକ କର୍ମୀଙ୍କର ଗୌରବ ଅନୁଭବ କରିବାର କଥା। କିନ୍ତୁ ଏହି ମୌଳିକ ସୁଖ ଆମ ଓଡ଼ିଶା ଦେଶର କର୍ମୀମାନେ ବୁଝି ନାହାନ୍ତି। ଏହି କାରଣରୁ କୌଣସିଠାରେ କୌଣସି କର୍ମୀ କିଛି କରି ପାରୁ ନାହିଁ। ଏହି କାରଣରୁ ଗୋପବନ୍ଧୁ ଦାସଙ୍କ ସ୍ମୃତି ରକ୍ଷା କରି ହେଲାନାହିଁ, ଅଳକାଶ୍ରମ ଭାଙ୍ଗିଗଲା, ସତ୍ୟବାଦୀ ଜାତୀୟ ଅନୁଷ୍ଠାନ ଲୋପ ପାଇଲା।

ଏ ଅବସ୍ଥା କେବେ ବଦଳିବ କିଏ ଜାଣେ। ଏହିସବୁ ମୁଁ ଅନୁଭବ କରୁଛି। ତଥାପି ଦୃଢ଼ ହୋଇ ଗାନ୍ଧୀ ସେବାଶ୍ରମକୁ ଗଢ଼ିବାକୁ ଚେଷ୍ଟା କରୁଛି। ଆଶା ନ ଥିଲେ ମଧ୍ୟ ଆଶା ପୋଷଣ କରୁଛି।

୧୯୨୮ରେ କେତେଗୁଡ଼ିଏ ନୂଆ କାର୍ଯ୍ୟ ସୃଷ୍ଟି କରିଛି। ପଲ୍ଲୀବାସୀଙ୍କୁ ମହାଜନଙ୍କ କବଳରୁ ରକ୍ଷା କରିବା ପାଇଁ ପ୍ରୟାସ କରୁଛି। ଗୋଟିଏ 'ପଲ୍ଲୀ-ସହଯୋଗ-ବ୍ୟାଙ୍କ'ର କଳ୍ପନା କରି କିଛି ଟଙ୍କା ଅତ୍ୟଳ୍ପ ସୁଧରେ ଲୋକଙ୍କୁ ଦିଆ ହୋଇଛି। 'ଗୋପବନ୍ଧୁ ଦାସ ଦାତବ୍ୟ ଚିକିତ୍ସାଳୟ' ନାମରେ ଗୋଟିଏ ଚିକିତ୍ସାଳୟ ଉଦ୍‌ଘାଟନ କରି ଜଣେ ଡାକ୍ତର ନିଯୁକ୍ତ କରିଛି। ପଲ୍ଲୀବାସୀଙ୍କ ମଧ୍ୟରେ ଶିକ୍ଷା ପ୍ରଚାର ପାଇଁ ଗୋଟିଏ ପୁସ୍ତକାଳୟ ସ୍ଥାପନ କରାଯାଇଛି। ଆଶ୍ରମପାଇଁ ଭବିଷ୍ୟତ୍ କର୍ମୀ ଗଢ଼ିବା ଉଦ୍ଦେଶ୍ୟରେ କେତୋଟି ଛାତ୍ରଙ୍କୁ ଆଶ୍ରମରେ ରଖିଅଛି। ଏହିପରି ଭାବରେ ମୁଁ କର୍ମର ପ୍ରସାର କରି ସବୁଠାରେ ଉପଯୁକ୍ତ ଅଭାବ ଅନୁଭବ କରୁଛି। ସେ ଯାହାହେଉ ଏହିପରି କେତୋଟି କାର୍ଯ୍ୟରେ ହାତ ଦେବା ନିହାତି ଆବଶ୍ୟକ ପଡ଼ିଲା। ଦିନକୁ ଦିନ କାର୍ଯ୍ୟ ବଢ଼ିବା ସଂଗେ ସଂଗେ ଖର୍ଚ୍ଚ ମଧ୍ୟ ବଢ଼ୁଛି। ରୋଗୀ-ସେବା, ଖଦଡ଼-ବିକ୍ରି, ଚାନ୍ଦା-ସଂଗ୍ରହ ଆଦି ସବୁ କାର୍ଯ୍ୟ ମୁଁ ନ ଦେଖିଲେ ଚଳୁ ନାହିଁ। ହିସାବ କିତାବ ସଠିକ ଭାବରେ କିପରି ରହିବ—ଏହି ଚିନ୍ତା ମୋତେ ସବୁବେଳେ ଅସ୍ଥିର କରୁଛି। ହିସାବ ରଖିବା ବିଷୟରେ ଆମ୍ଭେମାନେ କେହି ନିପୁଣ ନୋହୁଁ। ଟଙ୍କା ପଇସାର ହିସାବ ଦିନକୁ ଦିନ ଜଟିଳ ଆକାର ଧାରଣ କରୁଛି। ଯେତେପ୍ରକାର କାର୍ଯ୍ୟ ଗଢ଼ାଯାଉଛି ହିସାବର ସେତେ ପ୍ରକାର ଶାଖା ମେଲୁଛି। ଭିନ୍ନ ଭିନ୍ନ ଶାଖାର ହିସାବ ନିର୍ମଳ ରଖି ପୁଣି ସେ ସବୁକୁ ଗୋଟାଏ ସୂତ୍ରରେ ପକାଇବାକୁ ହେଲେ ଟିକିଏ ବ୍ୟବସାୟ-କୌଶଳର ଜ୍ଞାନ ଥିବା ଦରକାର। ଏପରି ଜ୍ଞାନ କିମ୍ବା ଅଭିଜ୍ଞତା କାହାରି ନାହିଁ। ମୋର ଆଦୌ ନାହିଁ ଏକଥା ମୋତେ ସ୍ୱୀକାର ନ କରି ଗତି ନାହିଁ। ଏପରି ଅବସ୍ଥାରେ କଟକ ଟ୍ରେଡ଼ିଂ କମ୍ପାନୀର ମାଲିକ ପଣ୍ଡିତ ଆକୁଳ ମିଶ୍ର ସାହାଯ୍ୟ ନ କରିଥିଲେ ମୋର ଅବସ୍ଥା କଣ ହୋଇଥାନ୍ତା ମୁଁ ଜାଣେ ନାହିଁ। ସେ ମହାଶୟଙ୍କ ସାହାଯ୍ୟ ପାଇବାରୁ ଆଶ୍ରମର ହିସାବ ଶୃଙ୍ଖଳାବଦ୍ଧ ହୋଇଛି। ତାହାଙ୍କ ସାହାଯ୍ୟ ସହାନୁଭୂତି ପାଇଲା ଦିନ ଆଶ୍ରମର ହିସାବ କିତାବ ଓ ଟଙ୍କା ପଇସା ସହିତ ମୋର ସଂବନ୍ଧ ନ ଥାଏ ବୋଲି ମୁଁ କହି ପାରେ। ମୁଁ ଚାନ୍ଦା ସଂଗ୍ରହ କରି ବ୍ୟାଙ୍କରେ ଜମା ଦିଏ। ପଣ୍ଡିତ ଆକୁଳ ମିଶ୍ରଙ୍କ ଅନୁମତି ନ ହେଲେ ବ୍ୟାଙ୍କରୁ ଟଙ୍କା ଆସେ ନାହିଁ। ପ୍ରତି ମାସରେ ହିସାବ ସେ ନିରୀକ୍ଷଣ କରନ୍ତି। ପ୍ରତିବର୍ଷ ଆଶ୍ରମର ଗୋଟିଏ ରିପୋର୍ଟ ଛପା ହୁଏ। ସେହି ରିପୋର୍ଟରେ ଚାନ୍ଦାଦାତାଙ୍କ ନାମ ଓ ଚାନ୍ଦାର ପରିମାଣ ଉଲ୍ଲେଖ ଥାଏ। ବର୍ଷ ଭିତରେ କି କାର୍ଯ୍ୟ ହେଲା ତହିଁର ଗୋଟିଏ ବିବରଣୀ ରହେ। ହିସାବ ଅଡ଼ିଟ କରାଯାଇ ଆୟବ୍ୟୟର ଫର୍ଦ୍ଦ ପ୍ରକାଶିତ ହୁଏ। ଏହିପରି ନିୟମିତ ଓ ଶୃଙ୍ଖଳାବଦ୍ଧ

ଭାବରେ ଗାନ୍ଧୀସେବାଶ୍ରମ ଯେପରି ଆୟବ୍ୟୟ ଓ କର୍ମର ବିବରଣୀ ବର୍ଷକୁ ବର୍ଷ ପ୍ରକାଶ କରିଛି, ଓଡ଼ିଶାରେ ଆଉ କୌଣସି ଅନୁଷ୍ଠାନର ସେପରି ବିବରଣୀ ପ୍ରକାଶ ପାଇଥିବାର ମୁଁ ଜାଣେ ନାହିଁ। ମୁଁ ସବୁବେଳେ ଡରି ଡରି ଚଳୁଥାଏ। କର୍ତ୍ତବ୍ୟରେ ଟିକିଏ ଅବହେଳା କରିବାର କାହାକୁ ଦେଖିଲେ ମୁଁ ସହ୍ୟ କରି ପାରେ ନାହିଁ। ମୁଁ ରାଗିଯାଏ। ମୁଁ ସ୍ୱୀକାର କରୁଛି ବେଳେ ବେଳେ ମୋର ଏପରି ରାଗର ମାତ୍ରା ସୀମା ଲଙ୍ଘିଯାଏ। ଏ କଥା ମୁଁ ପରକ୍ଷଣରେ ବୁଝି ପାରେ। କିନ୍ତୁ ପୁଣି ସମୟ ପଡ଼ିଲେ ନିଜକୁ ଭୁଲିଯାଏ। ଏହା ମୋର ଗୋଟିଏ ବଡ଼ ଦୋଷ। ଦୋଷ ବୁଝି ତାହାକୁ ଦୂର କରି ନ ପାରିବା ଦୁର୍ବଳତା। ଏପରି ଟିକିଏ କଥାରେ ବେଶି ରାଗିଯିବା ଦୁର୍ବଳତା ମୋର ଅଛି, ଏହା ସ୍ୱୀକାର ନ କରିବାକୁ ଉପାୟ ନାହିଁ। ମୋର ମନେହୁଏ, ମୁଁ ମୋର ଆଦର୍ଶର ଅନୁରୂପ ଜଣେ ଦୁଇ ଜଣ କର୍ମୀ ପାଇଥିଲେ ଏ ଚିଡ଼ା ପ୍ରକୃତି ରହି ନ ଥାନ୍ତା। ମୋ ଅବସ୍ଥାରେ ପଡ଼ିଲେ ଲୋକର ପ୍ରକୃତି କିପରି ହେବ, ତାହା ବିଚାର କରି ମୋତେ କ୍ଷମା ଦେବାକୁ ମୁଁ କାହାକୁ ପାଇ ନାହିଁ। ବରଂ ମୋର ଏହି ଚିଡ଼ା ପ୍ରକୃତିକୁ ଚିତ୍ରଣ କରି ସମସ୍ତେ ମୋତେ ସମାଲୋଚନା କରିଛନ୍ତି।

୧୯୨୮ ମସିହା ଅକ୍ଟୋବର ମାସରେ ମୋତେ ଭୟଙ୍କର ମାଲେରିଆ ଜ୍ୱର ହେଲା। ତିନି ମାସ କାଳ ମୁଁ ରୋଗଶଯ୍ୟାରେ ପଡ଼ି ରହିଲି। ଆଶ୍ରମ ଛାଡ଼ି କଟକରେ ଦଶପଲ୍ଲା ମେସରେ ଅଛି। ଆଜକୁ ଚାରି ପାଞ୍ଚ ବର୍ଷ ହେବ କଟକରେ ଦଶପଲ୍ଲା ମେସ ସ୍ଥାପିତ ହୋଇଛି। ଏହି ମେସ ଗଠନରେ ମୋର ହାତ ଅଛି ଏହା କହିବା ଅନାବଶ୍ୟକ। ଏହି ମେସଟି ମୋର କର୍ମ-ଜୀବନର ଆଉ ଗୋଟିଏ ଚିହ୍ନ। ଦଶପଲ୍ଲାରୁ ଛାତ୍ର ଆସି କଟକରେ ପାଠ ପଢ଼ିବେ। ଏହି ଉଦ୍ଦେଶ୍ୟରେ ମେସଟି ସ୍ଥାପିତ ହୋଇଛି। ଦଶପଲ୍ଲାରେ ମାଇନର ପାଶ୍ କଲା ମାତ୍ରକେ ଯେ କେହି ବୁଦ୍ଧିଥିବା ଛାତ୍ର ଘରେ ନ ବସି ପାଠ ପଢ଼ିବ—ଏହି କଥା ସବୁବେଳେ ଆମମାନଙ୍କ ମନରେ ଥାଏ। ଦଶପଲ୍ଲାରେ ଭାବଗ୍ରାହୀ ବିଶ୍ୱାଳଙ୍କ ଶାସନର କଟକଣା ସମସ୍ତଙ୍କୁ ଏକାଠି ବାନ୍ଧି ରଖିଥାଏ। ଦଶପଲ୍ଲା ମେସଟି କଟକରେ ପ୍ରତ୍ୟେକ ଦଶପଲ୍ଲା ପ୍ରଜାର ଗୋଟିଏ ଘର। ଦଶପଲ୍ଲା ଷ୍ଟେଟର ରାଜନୀତି, ବାଣିଜ୍ୟ, ବ୍ୟବସାୟ, ରୋଗ, ଚିକିତ୍ସା ଆଦି ପ୍ରତ୍ୟେକ ବିଷୟର ଆଲୋଚନା କେନ୍ଦ୍ର ଦଶପଲ୍ଲା ମେସ। କଟକ ସହରରେ ଦଶପଲ୍ଲା ମେସ ପରି ମେସ ହୋଇ ନାହିଁ କିମ୍ବା ଆଉ କେବେ ହେବ ତାହାର କଳ୍ପନା କରି ହେଉ ନାହିଁ। ପଣ୍ଡିତ ଦୀନବନ୍ଧୁ ପଣ୍ଡା ମେସର ସୁପରିଂଟେଣ୍ଡେଣ୍ଟ। ଶ୍ୟାମସୁନ୍ଦର ହୋତା ଜଣେକ ଛାତ୍ର ହେଲେ ମଧ୍ୟ ମେସ ପରିଚାଳକ ଓ ଶିକ୍ଷକର କର୍ତ୍ତବ୍ୟ କରନ୍ତି। ଏହି ମେସ ବିଷୟରେ ଲେଖିବାକୁ ଗଲେ ଗୋଟିଏ ସ୍ୱତନ୍ତ୍ର ଇତିହାସ ଗ୍ରନ୍ଥ ଲେଖିବାକୁ ପଡ଼ିବ। ସେ ସବୁ ମୋର ଆତ୍ମକାହାଣୀରେ ଉଲ୍ଲେଖ କରିବା ଆବଶ୍ୟକ ନାହିଁ। ଏହି ମେସଟି ମୋତେ ପ୍ରଭାବିତ କରିଛି ଏବଂ ଉତ୍ସାହ ଓ

ଆନନ୍ଦ ମଧ ଦେଉଛି। ରାଜନୈତିକ କଳ୍ପନା ଓ କାର୍ଯ୍ୟରେ ଯେତିକି ଆନନ୍ଦ ଅଛି, ତାଠାରୁ ବଳି ଅଧିକ ଦୁଃଖ ସେଥିରେ ଅଛି। ଏହି କାର୍ଯ୍ୟରେ ଅସୀମ ଧୈର୍ଯ୍ୟ ଓ ସାହସ ଆବଶ୍ୟକ। ରାଜନୈତିକ ବାୟୁମଣ୍ଡଳ ଓ ପରିସ୍ଥିତି, ନିଜ କଳ୍ପନା ଓ ଆଦର୍ଶର ଅନୁକୂଳ ନ ହେଲେ ମାନସିକ ଅବସାଦ ଜାତ ହୁଏ। ଅଧୈର୍ଯ୍ୟ ଓ ଅସହିଷ୍ଣୁତା ଭାବ ମନକୁ ଦୋହଲାଇ ଦିଏ। ମନୁଷ୍ୟର ମନ ଓ ଶରୀର ତାତି ଉଠେ। ଏପରି ଅବସ୍ଥାରେ ମନୁଷ୍ୟ ପ୍ରିୟ ବନ୍ଧୁ ଖୋଜେ; ଯାହାଙ୍କ କଥା ଓ ବ୍ୟବହାର ରାଜନୈତିକ କ୍ଷେତ୍ରରେ ବିରକ୍ତିଜନକ ଭାବନାର ପ୍ରଭାବକୁ ଦୂର କରି ମନୁଷ୍ୟର ମନକୁ ଟିକିଏ ଶୀତଳ କରିବ। ଦଶପଲ୍ଲା ମେସରେ ମୁଁ ଏହି ଆନନ୍ଦ ଟିକକ ପାଏ। ଦଶପଲ୍ଲା ଛାତ୍ରମାନଙ୍କୁ ମୁଁ ପୁତ୍ରବତ୍ ସ୍ନେହ କରେ। ସେମାନଙ୍କ ନିକଟରେ ବସି ଦଶପଲ୍ଲାର ସୁଖ ଦୁଃଖ କଥା ହେବାରେ ମୁଁ ପରମ ଆନନ୍ଦ ଅନୁଭବ କରେ। ସେ ଯାହା ହେଉ ମୁଁ ପୀଡ଼ିତ ହୋଇ ଏହି ଦଶପଲ୍ଲା ମେସରେ ଆସି ରହିଲି। ଦଶପଲ୍ଲା ଛାତ୍ରମାନଙ୍କ ସେବା ଶୁଶ୍ରୂଷା ପାଇ ନ ଥିଲେ ମୋର ଜୀବନ ଏହି ଜ୍ୱରରେ ସଂକଟାପନ୍ନ ହୋଇଥାନ୍ତା ଏଥିରେ ସନ୍ଦେହ ନାହିଁ। ମୁଁ ଏପରି ରୋଗଶଯ୍ୟାରେ ପଡ଼ିଛି, ଏହି ସମୟରେ କଟକରେ ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ବସିଲା। ଉତ୍କଳର ପ୍ରତ୍ୟେକ ଜିଲ୍ଲାରୁ କର୍ମୀମାନେ ଏଥିରେ ଯୋଗ ଦେବାକୁ ଆସିଲେ। କମିଟିରେ ଯୋଗ ଦେବାକୁ ମୋର ଶକ୍ତି ନଥାଏ। ରୋଗଶଯ୍ୟାରେ ପଡ଼ି ସବୁ ମୁଁ ଜାଣୁଥାଏ। ଅସହଯୋଗ ଆନ୍ଦୋଳନ ଦବିଗଲା ପରେ ଦେଶରେ ମତାନ୍ତର ଆକାର ଧାରଣ କରିଛି। ନାନା କାରଣରୁ କର୍ମୀମାନଙ୍କ ମଧ୍ୟରେ ହୃଦୟର ମିଳନ ନ ଥାଏ। ସୁତରାଂ କମିଟି ବୈଠକରେ ଏକାଠି ବସିଲେ ଦେଶର ପ୍ରତ୍ୟେକ ପ୍ରଶ୍ନକୁ ଆଲୋଚନା କରିବାର ପ୍ରବୃତ୍ତି ନ ଥାଏ, କିମ୍ବା କୌଣସି କାର୍ଯ୍ୟରେ କାହାରି ଆନ୍ତରିକତା ଥିଲା ପରି ବୋଧ ହୁଏ ନାହିଁ। ଏ ସବୁ ରୋଗଶଯ୍ୟାରେ ପଡ଼ି ମୁଁ ହୃଦୟଙ୍ଗମ କରୁଛି। ଗାନ୍ଧୀସେବାଶ୍ରମକୁ ପ୍ରତିଷ୍ଠିତ କରି ତହିଁର ଭବିଷ୍ୟତ୍ କେବଳ ମୋର ବ୍ୟକ୍ତିଗତ ଚେଷ୍ଟା ଉପରେ ନିର୍ଭର କରୁଛି ଏ କଥା ବୁଝିବାକୁ କିଛି ବାକି ନଥାଏ। ଉତ୍କଳ କର୍ମୀମାନଙ୍କର ଯେପରି ମନୋଭାବ ତହିଁରେ କେହି କାହାକୁ ସାହାଯ୍ୟ ସହାନୁଭୂତି କରିବାର ଲକ୍ଷଣ ଦେଖା ଯାଉ ନାହିଁ। ତଥାପି ସମସ୍ତଙ୍କ ସହାନୁଭୂତି ଲାଭ କରିବାକୁ ମୁଁ ସବୁବେଳେ ଲାଳାୟିତ। ଏହାକୁ ମନେରଖି କିଛି କରିବା ଦରକାର। ଏହି ଉଦ୍ଦେଶ୍ୟରେ ୧୯୨୮ ମସିହାରେ ଆଶ୍ରମ ରିପୋର୍ଟରେ ଆଶ୍ରମର ଲକ୍ଷ୍ୟ ଓ ଆଦର୍ଶ ବିଷୟରେ ଉଲ୍ଲେଖ କରିବାକୁ ପଡ଼ିଲା।

ଏଣେ ଦେଶର ରାଜନୈତିକ ପରିସ୍ଥିତିରେ ପୁଣି ସଙ୍ଘର୍ଷଣ ଉପସ୍ଥିତ ହେବାର ସୂଚନା ମିଳୁଛି। ଦେଶର ଶାସନ ପ୍ରଣାଳୀରେ କି ପ୍ରକାର ପରିବର୍ତ୍ତନ ଲୋଡ଼ା ତାହା ଇଂରେଜ ସରକାରଙ୍କୁ ଜଣାଇବା ପାଇଁ ରାଜନୈତିକ ମତାବଲମ୍ବୀ ସବୁ ଦଳର ଲୋକେ ଏକାଠି ବସି ଗୋଟାଏ କମିଟି ଗଢ଼ିଛନ୍ତି। ପଣ୍ଡିତ ମୋତିଲାଲ ନେହେରୁ

ଉକ୍ତ କମିଟିର ସଭାପତି ଥିବାରୁ ତାହାର ନାମ ହୋଇଛି 'ନେହେରୁ କମିଟି'। ଏହି ନେହେରୁ କମିଟିରେ ଭାରତର ପ୍ରତ୍ୟେକ ଜଟିଳ ପ୍ରଶ୍ନର ସମାଧାନ କରି ସ୍ୱାୟତ୍ତ ଶାସନର ଦାବୀ କରାଯାଇଛି। ଏହି ନେହେରୁ ରିପୋର୍ଟରେ ଯାହାର ଦାବୀ କରାଯାଇଛି ସେ ବିଷୟ ନେଇ କଂଗ୍ରେସ ମହଲରେ ଘୋର ବାଦ ପ୍ରତିବାଦ ସୃଷ୍ଟି ହୋଇଛି। ମାନ୍ଦ୍ରାଜ କଂଗ୍ରେସରେ ଭାରତ ପୂର୍ଣ୍ଣ ସ୍ୱାଧୀନତା ଦାବୀ କରି ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଛି। ଏହି ପ୍ରସ୍ତାବ ଅନୁସାରେ କଂଗ୍ରେସର ଲକ୍ଷ୍ୟ ପୂର୍ଣ୍ଣ ସ୍ୱାଧୀନତା ହେବା ଦରକାର। ତାହା ନ ହୋଇ ନେହେରୁ ରିପୋର୍ଟରେ ଔପନିବେଶିକ ସ୍ୱାୟତ୍ତ ଶାସନ ଦାବୀ କରାଯାଇ ଥିବାରୁ ଏହି ବାଦ ପ୍ରତିବାଦ ସୃଷ୍ଟି ହୋଇଛି। ପଣ୍ଡିତ ମୋତିଲାଲଙ୍କ ଇଚ୍ଛା, କଂଗ୍ରେସ ବର୍ତ୍ତମାନ ପୂର୍ଣ୍ଣ ସ୍ୱାଧୀନତା ଦାବୀ ନ କରି ନେହେରୁ ରିପୋର୍ଟ ଦାବୀକୁ ସମର୍ଥନ କରୁ। ଏଥିପାଇଁ ସେ ମହାତ୍ମାଗାନ୍ଧୀଙ୍କୁ ଆହ୍ୱାନ କରିଛନ୍ତି। ବେଲଗ୍ରାମ କଂଗ୍ରେସ ପରଠାରୁ କଂଗ୍ରେସ ପରିଚାଳନା ସ୍ୱରାଜ୍ୟ ଦଳଙ୍କ ହାତରେ। ଗାନ୍ଧୀଜୀ କେବଳ ଦେଖଣାହାରୀ କହିଲେ ଚଳେ। କଂଗ୍ରେସର ପୂର୍ଣ୍ଣ ସ୍ୱାଧୀନତା ଦାବୀ କରୁଥିବା ସଂଖ୍ୟା କମ୍ ନୁହନ୍ତି। ଗାନ୍ଧୀଜୀ ନ ଆସିଲେ ସହି ସମ୍ଭାଳି କାର୍ଯ୍ୟ କରାଇନେବା ସହଜ ହେବ ନାହିଁ। ଏଣୁ ଗାନ୍ଧୀଜୀ କଲିକତା କଂଗ୍ରେସରେ ଯୋଗ ଦେଇଛନ୍ତି। ପୂର୍ଣ୍ଣ ସ୍ୱାଧୀନତାବାଦୀମାନଙ୍କ ସହିତ ଗାନ୍ଧୀଜୀ ମିଳାମିଶା କରି ଗୋଟିଏ ସାଲିସ ପ୍ରସ୍ତାବ ଆଗତ କରାଇଲେ। କଲିକତା କଂଗ୍ରେସ ନେହେରୁ ରିପୋର୍ଟ ଗ୍ରହଣ କରି ସେହି ଅନୁସାରେ ଦାବୀ କରିବ। ଇଂରେଜ ସରକାରଙ୍କୁ ସମୟ ଦେବ। ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଇଂରେଜ ସରକାର ନେହେରୁ ରିପୋର୍ଟରେ ଦାବୀ କରାଯାଇଥିବା ଶାସନ କ୍ଷମତା ଦେବାକୁ ପ୍ରସ୍ତୁତ ନ ହେଲେ କଂଗ୍ରେସ ପୂର୍ଣ୍ଣ ସ୍ୱାଧୀନତା ଦାବୀ କରିବ। ଏହି ମର୍ମରେ କଲିକତା କଂଗ୍ରେସରେ ଗୋଟିଏ ସାଲିସ ପ୍ରସ୍ତାବ ଗୃହୀତ ହେଲା। ଜବାହାରଲାଲ୍ ପ୍ରଭୃତି ସ୍ୱାଧୀନତା ବାଦୀମାନେ, ହୃଦୟ ସହିତ ସ୍ୱୀକାର ନ କଲେ ମଧ୍ୟ ଗାନ୍ଧୀଜୀଙ୍କ ସାଲିସ୍ ପ୍ରସ୍ତାବକୁ ଅଙ୍ଗୀକାର କଲେ। ଇଂରେଜ ସରକାରଙ୍କୁ ଏକ ବର୍ଷ ସମୟ ଦିଆଯାଇ ଆହ୍ୱାନ କରାଗଲା। କଲିକତା କଂଗ୍ରେସରେ ଗାନ୍ଧୀଜୀ ଘୋଷଣା କଲେ, ୧୯୨୯ ମସିହା ଡିସେମ୍ବର ମାସ ତା ୩୧ ରିଖ ରାତ୍ରି ବାରଟା ପର୍ଯ୍ୟନ୍ତ କଂଗ୍ରେସ ଇଂଲଣ୍ଡର ସୂଚନାକୁ ଅପେକ୍ଷା କରି ରହିବ। ଏହି ସମୟ ମଧ୍ୟରେ ବ୍ରିଟିଶ ସରକାର ଭାରତ ଦାବୀକୁ ସ୍ୱୀକାର ନ କଲେ କଂଗ୍ରେସ ପୂର୍ଣ୍ଣ ସ୍ୱାଧୀନତା ଘୋଷଣା କରିବ ଏବଂ ସେଥିପାଇଁ ଉପାୟ ମଧ୍ୟ ଅବଲମ୍ବନ କରିବ।

ଦେଶର ରାଜନୈତିକ ପରିସ୍ଥିତିରେ ଏପରି ଚାଞ୍ଚଲ୍ୟ ଉପସ୍ଥିତ ହୋଇଛି। ଲଢ଼ାଇ କରିବାକୁ ଆହ୍ୱାନ କଲାଭଳି ସରକାରଙ୍କୁ ଆହ୍ୱାନ କରାଯାଇଛି। ସରକାର ସହିତ କଂଗ୍ରେସର ପୁଣି ସଂଘର୍ଷଣ ଜାତ ହେବାର ସମ୍ଭାବନା। ଏପରି ସଂଘର୍ଷଣ ବେଳେ ନୀରବରେ ବସି ଆଶ୍ରମ କାର୍ଯ୍ୟରେ ମନୋନିବେଶ କରିବା ମୋ ପକ୍ଷରେ ଅସମ୍ଭବ। ଏହିକଥା ମୁଁ ଉପଲବ୍ଧି କରିବାକୁ ଲାଗିଲି। ସୁତରାଂ ୧୯୨୯ ମେ ଫେର୍ଟ ସନ୍

କାର୍ଯ୍ୟ କରିବାକୁ କଳ୍ପନା କରିଥିଲି, ସେ ସବୁରୁ କାହିଁରେ ହାତ ଦେଲି ନାହିଁ। ବର୍ଷକ ପରେ ଭାରତର ରାଜନୈତିକ ପରିସ୍ଥିତି କି ଆକାର ଧାରଣ କରିବ, ତାହା ନ ଦେଖି ହଠାତ୍ ଆଶ୍ରମର କାର୍ଯ୍ୟକ୍ରମକୁ ପ୍ରସାର କରି ଦେବାକୁ ସାହାସ ହେଲା ନାହିଁ। ପ୍ରଥମରୁ ଗୋଟିଏ କର୍ମୀଦଳ ଗଠନ କରିବାର ଆବଶ୍ୟକତା ତୀବ୍ର ଭାବରେ ଅନୁଭବ କଲି। ମନେ ମନେ ବିଚାରିଲି, କର୍ମ କରିବାର ଉପକରଣ ସଂଗୃହୀତ ହେଲେ କର୍ମୀ ଆପେ ଆପେ ଆସି ଉପସ୍ଥିତ ହେବେ। ଆଦର୍ଶ ଅନୁରୂପ କର୍ମୀ ଟାଣିବାକୁ ହେଲେ କଣ କରିବାକୁ ହେବ, ଏହି ଚିନ୍ତା ମନରେ ଖେଳିଲା। ୧୯୨୯ରେ ଆଶ୍ରମର କୋଠା ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ କରିବାକୁ ସ୍ଥିର କରିଛି। କାରଣ ଘରକାମ ସାରି ଦେଲେ ଲୋକ ଦୃଷ୍ଟି ମଧ୍ୟ ଆକର୍ଷିତ ହେବ ଏବଂ ଗୋଟାଏ ଚିନ୍ତା କମିଯିବ। ଆଶ୍ରମ କୋଠା କାମରେ ଏ ବର୍ଷ ମନ ଦେଲି। ଖଦଡ଼ କାର୍ଯ୍ୟକୁ ପ୍ରସାର କରିବା ପାଇଁ କେନ୍ଦ୍ରପାଟଣାରେ ଗୋଟିଏ କେନ୍ଦ୍ର ସ୍ଥାପନ କରାଗଲା। କେନ୍ଦ୍ରପାଟଣା କାର୍ଯ୍ୟ ପାଇଁ ନିରଞ୍ଜନ ନନ୍ଦ ନାମରେ ଜଣେକ କର୍ମୀ ଆଶ୍ରମରେ ତିନି ମାସ ଶିକ୍ଷା ପାଇ ମାସିକ ବାରଟଙ୍କା ବେତନରେ ନିଯୁକ୍ତ ହେଲେ।

ସବୁବେଳେ ମୁଁ ନାନାପ୍ରକାର କର୍ମ ଯୋଜନା ଚିନ୍ତା କରୁଥାଏ। ତନ୍ମଧ୍ୟରୁ କୌଣସି ଗୋଟିଏ କର୍ମ କରିବାକୁ ନିଶ୍ଚୟ କଲା ପରେ ସେହି କର୍ମକୁ ସଂପୂର୍ଣ୍ଣ ନ କରିବା ପର୍ଯ୍ୟନ୍ତ ମୁଁ ବଡ଼ ଅସ୍ଥିରତା ଅନୁଭବ କରେ। କାର୍ଯ୍ୟ ଆରମ୍ଭ କଲେ ତାହା ଶେଷ କରିବା ପାଇଁ ମୋର ମନ ସବୁବେଳେ ବ୍ୟଗ୍ର। କୌଣସି କାର୍ଯ୍ୟ ହାତକୁ ନେଲେ ମୁଁ ନିଜକୁ ଭୁଲିଯାଏ। ବର୍ଷକ କାର୍ଯ୍ୟକୁ ଦିନକରେ କରିବା ଭଳି ମୋର ମନ ଦୌଡ଼େ। ଦିନ ରାତି ଓ ଭୋଗ ଉପବାସ ସବୁ ମୁଁ ଭୁଲିଯାଏ। ମୋ ସାଙ୍ଗରେ କାର୍ଯ୍ୟ କରିବା କର୍ମୀଙ୍କୁ ମୋ ପରି ଦୌଡ଼ିବାର ନ ଦେଖିଲେ ମୁଁ ବଡ଼ ଅସ୍ଥିର ହୋଇପଡ଼େ। ବେଳେବେଳେ ଭାରୀ ରାଗିଯାଏ। କିନ୍ତୁ ମୋର ସେହି ରାଗ ମୁଁ ଭୁଲିଯାଏ। ବାଳକ ପରି ମୋର ହୃଦୟ ଅତି ସରଳ ଓ କୋମଳ। ମୁଁ ମୋର ରାଗକୁ ଭୁଲିଗଲେ ମଧ୍ୟ ମୁଁ ଦେଖିଛି ମୋର କେହି କର୍ମୀ ମୋର ରାଗିଯିବା ଦୋଷକୁ ଭୁଲି ପାରେ ନାହିଁ। ସେ ତାହା ମନେ ରଖେ, ଏବଂ ମୋତେ ଅତି ସରଳ ବିଶ୍ୱାସୀ ଦେଖି ପ୍ରତିହିଂସା ନେବାପାଇଁ ମୋତେ ଠକେଇବାକୁ ଉପାୟ ବାନ୍ଧେ। ମୋର ଏହି ଉଗ୍ର କର୍ମ ପ୍ରବୃତ୍ତି ଓ ସରଳ ବିଶ୍ୱାସ ମୋର ଦୋଷ କି ଗୁଣ ମୁଁ କିଛି ବୁଝି ପାରୁ ନାହିଁ। କର୍ମକ୍ଷେତ୍ରର ଅଭିଜ୍ଞତା ସଂଗେ ସଂଗେ ମୁଁ ମୋର ଏହି ସରଳ ପ୍ରବୃତ୍ତିକୁ ହରାଉଛି। ଜଗି ରଖି କଥା କହିବାକୁ ବାଧ ହେଉଛି। କାହାରିକୁ ସହଜରେ ଶୀଘ୍ର ବିଶ୍ୱାସ କରି ପାରୁ ନାହିଁ। ରାଜନୈତିକ କର୍ମକ୍ଷେତ୍ରରେ ସରଳତା ନାହିଁ ବୋଲି ମୋତେ ବୋଧ ହେଉଛି। ଏହିପରି ଭାବରେ ମୋର ଜୀବନ କ୍ରମବିକାଶ ଲାଭ କରୁଛି। ଏଥିପାଇଁ ଏହାର ନାମ ଦେଇଛି ଜାତୀୟ ଜୀବନର ଆତ୍ମ ବିକାଶ।

# ପଞ୍ଚମ ପରିଚ୍ଛେଦ

## ଆଶ୍ରମର ପରିସମାପ୍ତି

୧୯୨୯ ମସିହା ଶେଷ ହେଲା। ଏହି ବର୍ଷ କୋଠାକାମ ଶେଷ ପାଇଲା। ଖଦଡ଼ କାର୍ଯ୍ୟରେ ଆଠ ହଜାର ଟଙ୍କା ଖଟାଇ ଖଦି ଆମଦାନୀ ବଢ଼ାଇଛି। ଖଦଡ଼ କାର୍ଯ୍ୟ ପାଇଁ ଆଉ ଜଣେ କର୍ମୀ ଆବଶ୍ୟକ। ବର୍ତ୍ତମାନ ପ୍ରତିଦିନ ପ୍ରତି ମୁହୂର୍ତ୍ତରେ ଉପଯୁକ୍ତ କର୍ମୀର ଅଭାବ ମୁଁ ଅନୁଭବ କରୁଛି। ଆଶ୍ରମକୁ ଗୋଟିଏ ସ୍ଥାୟୀ ଅନୁଷ୍ଠାନ ରୂପେ ଗଢ଼ିବାର କଳ୍ପନା କରିଛି। ଏହି ଉଦ୍ଦେଶ୍ୟରେ ଆଶ୍ରମର ଆଦର୍ଶ, ଉଦ୍ଦେଶ୍ୟ ଓ କର୍ମପନ୍ଥା ନିରୂପଣ କରିଛି। ଉତ୍କଳ ପଲ୍ଲୀଗ୍ରାମରେ କିପରି କି କାର୍ଯ୍ୟ କରିବା ଦରକାର, ମୋର ଅଭିଜ୍ଞତାନୁସାରେ ସେ ସମସ୍ତ ଲିପିବଦ୍ଧ କରି ମୋର ବନ୍ଧୁମାନଙ୍କୁ ଜଣାଉଛି। ଏ ପର୍ଯ୍ୟନ୍ତ ଯେଉଁ ବନ୍ଧୁମାନେ ମୋତେ ସାହାଯ୍ୟ କରିଛନ୍ତି ଏବଂ ଆଶ୍ରମକୁ ସ୍ଥାୟୀ କରିବାକୁ ସାହାଯ୍ୟ କରିବାପାଇଁ ପ୍ରତିଶ୍ରୁତ ହୋଇଛନ୍ତି, ସେମାନଙ୍କୁ ମୋର କଳ୍ପନା ଓ କାର୍ଯ୍ୟକର୍ମ ଜଣାଇବା ଦରକାର। ମୁଁ କିପରି କଣ କରୁଛି, ତାହା ମହାତ୍ମାଗାନ୍ଧୀ ମଧ୍ୟ ନିରୀକ୍ଷଣ କରୁଛନ୍ତି। ଏହି ସବୁ କାରଣରୁ ଆଶ୍ରମର ପୁଷ୍ଟି ସାଧନ ପାଇଁ ମୁଁ ଯାହା କିଛି କଳ୍ପନା କରୁଛି ସେ ସବୁ ଲିପିବଦ୍ଧ କରି ମୋର ହିତାକାଙ୍କ୍ଷୀ ମିତ୍ରମାନଙ୍କ ସମ୍ମୁଖରେ ସ୍ଥାପନ କରିବା ଏକ ପ୍ରକାର କର୍ତ୍ତବ୍ୟର ଆହ୍ୱାନ ବୋଲି ମୁଁ ମନେ କଲି। ଗତ କେତେବର୍ଷ ହେଲା ପଲ୍ଲୀବାସୀଙ୍କର ଘନିଷ୍ଠ ସଂପର୍କରେ କାର୍ଯ୍ୟ କରି ମୁଁ ଯେଉଁ ଅଭିଜ୍ଞତା ଲାଭ କରିଛି ଏବଂ ମୋର ଯେ ପ୍ରକାର ରାଜନୈତିକ ଅନୁଭୂତି ଅଛି, ଏହି ଉଭୟ ପ୍ରତି ଦୃଷ୍ଟି ଦେଇ ଆଶ୍ରମ ପାଇଁ ଗୋଟିଏ ନିୟମାବଳୀ ମୁଁ ପ୍ରକାଶ କଲି। ଦେଶ ସେବାରେ ମନୁଷ୍ୟର ମୁକ୍ତି, ଏହାହିଁ ଆଶ୍ରମର ଆଦର୍ଶ ବୋଲି ମୁଁ କଳ୍ପନା କରିଛି। ଆଶ୍ରମର ଉଦ୍ଦେଶ୍ୟ ହେଲା ଦେଶବାସୀଙ୍କ ମନରେ ଦେଶପ୍ରୀତି ଭାବ ଜାଗରଣ କରାଇବା। ଦେଶକୁ ସ୍ୱାଧୀନ କରିବା ପାଇଁ ମୋର ଜୀବନ ଆରମ୍ଭ। ମୋର ସମସ୍ତ ଚିନ୍ତା ଓ କର୍ମ ମୋର ସ୍ୱାଧୀନତା-ପିପାସକୁ ଦୂର କରିବାର ପ୍ରୟାସ ମାତ୍ର। ଖଦଡ଼କାର୍ଯ୍ୟ, ରୋଗୀସେବା କିମ୍ବା ଆଶ୍ରମ ପାଇଁ ଗୋଟିଏ କୋଠାଘର ବାନ୍ଧିବାରେ ଆଶ୍ରମର ଉଦ୍ଦେଶ୍ୟ ସାଧିତ ହେଲା ନାହିଁ। ଏହି ସବୁ ହେଉଛି ଆଦର୍ଶକୁ କାର୍ଯ୍ୟରେ ପରିଣତ କରିବାର ଉପାଦାନ ମାତ୍ର। ଏହି ଉପାଦାନ ମୁଁ ସଂଗ୍ରହ କରିଛି ଏବଂ ପୁଣି କରିବି। କିନ୍ତୁ ଆଦର୍ଶ ଅନୁରୂପ କର୍ମୀ ନ ମିଳିଲେ ଉଦ୍ଦେଶ୍ୟ ସାଧନ ହୋଇ ପାରିବ ନାହିଁ। ବର୍ତ୍ତମାନ ଏହି ଅଭାବ ହେଉଛି ବଡ଼ ଅଭାବ। ଅର୍ଥ ଅବା ଅନ୍ୟ ଉପାଦାନର ଅଭାବ ମୋତେ ବଡ଼ ଦେଖା ଯାଉ ନାହିଁ। ମୋର କଳ୍ପନାନୁସାରେ ମୁଁ ଆଶ୍ରମର ମୂଳଭିତ୍ତି ସ୍ଥାପନ କଲି।

ଏଣିକି ଏହାକୁ ଦୃଢ଼ କରିବାର କଥା। ଯେଉଁ ସବୁ ଉପାଦାନ ସଂଗ୍ରହ କରିଛି ଏବଂ ଯେତେଗୁଡ଼ିଏ କର୍ମର ଶାଖା ପ୍ରସାର କରିଛି ତହିଁର ସୁବ୍ୟବସ୍ଥା ନ ହେଲେ, ସବୁ ନଷ୍ଟ ହୋଇଯିବାର ସମ୍ଭାବନା।

ଏହି ପ୍ରକାର ଚିନ୍ତା ମୋ ମନରେ ଖେଳୁଛି। ଆଶ୍ରମକୁ ସ୍ଥାୟୀ ଓ ଦୃଢ଼ କରିବା ପାଇଁ ଦିନ ରାତି ଭାବୁଛି ଏବଂ ନାନା ଉପାୟ ଅବଲମ୍ବନ କରିବାକୁ କଳ୍ପନା କରୁଛି। ଏପରି ସମୟରେ ଲାହୋର କଂଗ୍ରେସ ବସିଲା। ପଣ୍ଡିତ ଜବାହାରଲାଲ୍ ସଭାପତି। ଲାହୋର କଂଗ୍ରେସରେ ପୂର୍ଣ୍ଣ ସ୍ୱାଧୀନତା ହାସଲ କରିବା କଂଗ୍ରେସର ହେଲା ଲକ୍ଷ। ଦେଶକୁ ପୂର୍ଣ୍ଣ ରୂପେ ସ୍ୱାଧୀନ କରିବାପାଇଁ କଂଗ୍ରେସର ନୀତି ବଦଳିଲା। କଂଗ୍ରେସବାଲାଙ୍କୁ କାଉନ୍‌ସିଲ୍, ମ୍ୟୁନିସିପାଲିଟି, ଜିଲ୍ଲାବୋର୍ଡ଼ ଆଦି ତ୍ୟାଗ କରି ଆସିବାପାଇଁ କଂଗ୍ରେସ ଆହ୍ୱାନ କଲା। ଜାନୁୟରୀ ତା ୨୬ ରିଖ ସ୍ୱାଧୀନତା ଦିବସ ରୂପେ ପ୍ରତିପାଳିତ ହେଲା। ମୁଁ ଲାହୋର ଯାଇଛି ଏବଂ ସେଠାରୁ ବମ୍ବେଇ ଆସିଛି। ବମ୍ବେଇରେ ଏହି ସ୍ୱାଧୀନତା ଦିବସରେ ଦେଶକୁ ସ୍ୱାଧୀନ କରିବା ପାଇଁ ପ୍ରତିଜ୍ଞାପତ୍ର ପାଠ କରିଛି। ସାରା ଦେଶରେ ପୁଣି ଏକ ପ୍ରକାର ଅପୂର୍ବ ନୂତନ ଜୀବନ ଖେଳି ଯାଇଛି। ସାବରମତୀ ଆଶ୍ରମରେ କଂଗ୍ରେସର କାର୍ଯ୍ୟକାରୀ କମିଟି ବସି ଯୁଦ୍ଧ ପରିଚାଳନା କରିବାର ପୂର୍ଣ୍ଣ କ୍ଷମତା ମହାତ୍ମା ଗାନ୍ଧୀଙ୍କ ଉପରେ ଅର୍ପଣ କରା ହୋଇଛି। ମହାତ୍ମାଜୀ ବଡ଼ଲାଟ ଲର୍ଡ଼ ଇରଉଇନ୍‌କୁ ଶେଷ ଜବାବ (ultimatum) ପଠାଇ ସାରି ଲବଣ ସତ୍ୟାଗ୍ରହ ଆରମ୍ଭ କରିବେ ବୋଲି ଘୋଷଣା କରିଛନ୍ତି। ପ୍ରତ୍ୟେକ ପ୍ରଦେଶ ସ୍ୱାଧୀନତା ଲଢ଼ାଇ ପାଇଁ ପ୍ରସ୍ତୁତ ହୋଇଛି। ମୁଁ ବର୍ତ୍ତମାନ ବିଚଳିତ। ସତ୍ୟାଗ୍ରହ ଲଢ଼ାଇରେ ଯୋଗ ନ ଦେଇ ଆଶ୍ରମକୁ ଜଗି ବସିବି ଏପରି କଳ୍ପନା ମନକୁ ସ୍ପର୍ଶ କରୁ ନାହିଁ। ବମ୍ବେଇରୁ ଓଡ଼ିଶାକୁ ଫେରିଲି। ମାର୍ଚ୍ଚମାସ ତା ୧୨ ରିଖ ଦିନ ମହାତ୍ମା ଗାନ୍ଧୀ ସାବରମତୀ ଆଶ୍ରମରୁ ସମରଯାତ୍ରା ଆରମ୍ଭ କଲେ। ଦାଣ୍ଡି ନାମକ ସ୍ଥାନରେ ସେ ପ୍ରଥମେ ଲବଣ ସତ୍ୟାଗ୍ରହ ଆରମ୍ଭ କରିବେ। ସାବରମତୀ ଆଶ୍ରମ ଛାଡ଼ି ଗଲାବେଳେ ମହାତ୍ମାଜୀ କହିଲେ, ଦେଶ ସ୍ୱାଧୀନ ନ ହେଲେ ସେ ଆଉ ଆଶ୍ରମକୁ ଫେରିବେ ନାହିଁ। ଦେଶ ସ୍ୱାଧୀନ ହେବ, ନଚେତ ତାହାଙ୍କ ମୃତ ଶରୀର ସମୁଦ୍ରରେ ଭାସମାନ ହେବ। ଏହାହିଁ ତାହାଙ୍କର ଅଟଳ ପ୍ରତିଜ୍ଞା।

ମହାତ୍ମା ଗାନ୍ଧୀଙ୍କର ଏହି ଉକ୍ତି ଓ ତାହାଙ୍କର ଦାଣ୍ଡିଯାତ୍ରା ଭାରତର ପୁର ପଲ୍ଲୀରେ ବିଦ୍ୟୁତ୍ ଖେଳାଇ ଦେଲା। ପ୍ରବଳ ବନ୍ୟାରେ ଗ୍ରାମ ସହର ସବୁ ଭାସିଗଲା ପ୍ରାୟ ଭାରତର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ସମସ୍ତେ ଏଥିରେ ଭାସିଗଲେ। ଦେଶରେ ଯୁଦ୍ଧ-ଜ୍ୱର ବ୍ୟାପିଗଲା। ଆମର ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ବସିଲା। ଓଡ଼ିଶାରେ ଲବଣ ସତ୍ୟାଗ୍ରହ ଆରମ୍ଭ କରାଯିବ କି ନାହିଁ ଏହି ପ୍ରଶ୍ନର ବିଚାର ଚାଲିଲା। ବର୍ତ୍ତମାନ ରାଜନୈତିକ ପରିସ୍ଥିତିରେ ଲଢ଼ାଇରେ ଯୋଗ

ଦେବା ଭିନ୍ନ ଅନ୍ୟଥା ବିଚାର କରିବାର ସମୟ ନୁହେଁ। କିନ୍ତୁ ଓଡ଼ିଶାର ପରିସ୍ଥିତିକୁ ବିଚାର କଲାବେଳକୁ ଲଢ଼ାଇରେ ଯୋଗ ଦେବା ନ ଦେବା ପ୍ରଶ୍ନ ସ୍ୱତଃ ମନରେ ଜାଗି ଉଠୁଛି। ଭାରତର ଅନ୍ୟାନ୍ୟ ପ୍ରଦେଶରେ ଉନ୍ମାଦନା ଖେଳି ଯାଉଥିଲା ବେଳେ, ଓଡ଼ିଶାର ପ୍ରାଣରେ ସ୍ପନ୍ଦନ ଥିଲା ପ୍ରାୟ ବୋଧ ହେଉ ନ ଥାଏ। ଉତ୍କଳ କଂଗ୍ରେସ କମିଟିର ବୈଠକରେ କେହି କେହି ମଧ୍ୟ ଲବଣ ସତ୍ୟାଗ୍ରହରେ ଯୋଗ ନ ଦେଇ, ଅଧିକ ମାତ୍ରାରେ ଗ୍ରାମ ସଂଗଠନ କାର୍ଯ୍ୟ କରିବାକୁ ପରାମର୍ଶ ଦେଲେ। ଏହି ଯୁକ୍ତି ମଧ୍ୟ ନିହାତି ଖାମ୍‌ଖିଆଲି ଭାବରେ ଉଡ଼ାଇ ଦେବାର ନୁହେଁ। ତଥାପି ଆମ୍ଭେମାନେ ବିଚାର କଲୁ, ଓଡ଼ିଶା ନିସ୍ପନ୍ଦିତ। ଓଡ଼ିଶାର ଲୋକେ ନିଦ୍ରିତ ଓ ଆଜି ଜଡ଼ ଓ ମୂର୍ଖ ପ୍ରାୟ ପଡ଼ିଛନ୍ତି। ଏହି ନିଦ୍ରା ଭାଙ୍ଗିବାକୁ ହେଲେ, ଏଡ଼ି ଜଡ଼ତା ଦୂର କରିବାକୁ ହେଲେ ଭୀଷଣ ଭୂମିକମ୍ପ ପରି ଏମାନଙ୍କୁ ଦୋହଲାଇ ଦେବା ଦରକାର। ବର୍ତ୍ତମାନ ଏହି ଭୂମିକମ୍ପ ସୃଷ୍ଟି କରିବାର ବେଳ। ଏହା ଗ୍ରାମ ସଂଗଠନର ବେଳ ନୁହେଁ। ଗ୍ରାମ ସଂଗଠନ ଭାଙ୍ଗି, ସବୁ ଆହୁତି ଦେବାର ବେଳ ବର୍ତ୍ତମାନ। ଏହିପରି ମର୍ମରେ ମୁଁ ମୋର ମନର ଭାବ ପ୍ରକାଶ କଲି। ବାଲେଶ୍ୱର ବୈଠକରେ ଓଡ଼ିଶାରେ ସତ୍ୟାଗ୍ରହ ସମର ଆରମ୍ଭ କରିବାର ସ୍ଥିର ହେଲା।

ମୁଁ ଆଶ୍ରମକୁ ଫେରିଲି। ସତ୍ୟାଗ୍ରହରେ ଯୋଗ ଦେବା ପାଇଁ ବେଳେ ବେଳେ ମନ ମାନୁ ନାହିଁ। ଆଶ୍ରମର ମୂଳଭିତ୍ତି ପଡ଼ିଛି। ତାହା ଦୃଢ଼ ହୋଇ ନାହିଁ। ଉପଯୁକ୍ତ କର୍ମୀ କେହି ନାହିଁ, ଯାହା ଉପରେ ସବୁ ଅର୍ପଣ କରି ମୁଁ ନିଶ୍ଚିନ୍ତରେ ଆବଶ୍ୟକ ପଡ଼ିଲେ ପ୍ରାଣବଳି ଦେଇ ପାରେ। ପ୍ରାଣବଳି ଦେବାକୁ ମୁଁ କୁଣ୍ଠିତ ନୁହେଁ। ଦେଶର ସ୍ୱାଧୀନତା ପାଇଁ ଲଢ଼ି ମରି ପାରିଲେ ତହିଁରେ ମନୁଷ୍ୟର ମୁକ୍ତି, ଏହାହିଁ ମୋର ବିଶ୍ୱାସ। ମୁକ୍ତି ସଂଗ୍ରାମର ଆଧାର ସ୍ୱରୂପ ଆଶ୍ରମକୁ ଗଢ଼ିଛି। ତାହାକୁ ଅଧା ଅଧି କରି ଛାଡ଼ିଦେଇ ଯିବାରେ କର୍ତ୍ତବ୍ୟରେ ତ୍ରୁଟି ହେବ ବୋଲି ଭାବୁଛି। ମୁଁ ଚାଲିଗଲେ ସବୁ ବିଶୃଙ୍ଖଳା ହୋଇଯିବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ। ଆଶ୍ରମର କଳ୍ପନା ଫଳୀଭୂତ ହେବା ଉପରେ। ଜୀବନର ସମସ୍ତ ଚିନ୍ତା ଓ ସାଧନାକୁ ପ୍ରତ୍ୟକ୍ଷ ଫଳୀଭୂତ ହେବାର ମୁଁ ଆଶ୍ରମ କାର୍ଯ୍ୟରେ ଦେଖିପାରୁଛି। ତଥାପି ଲଢ଼ାଇରେ ଯୋଗ ନ ଦେଇ ଆଶ୍ରମ କାର୍ଯ୍ୟକୁ ଧରିବସିବା ମୋତେ ଗୋଟାଏ ମୋହ ଓ ମମତା ପ୍ରାୟ ବୋଧ ହେଲା। ଆହୁରି ମଧ୍ୟ ବୁଝିଛି, ଆଶ୍ରମର ବର୍ତ୍ତମାନ ଅବସ୍ଥାରେ ପରିଚାଳନା ଭାର ଛାଡ଼ି ଦେଇ ମୁଁ ଚାଲିଗଲେ ଆଶ୍ରମର ବହୁତ କ୍ଷତି ହେବ। ହୁଏତ ଏହାଦ୍ୱାରା ଆଶ୍ରମ ଭାଙ୍ଗି ଯାଇ ପାରେ। ତଥାପି ଏହାକୁ ଧରି ବସିବାକୁ ମନରେ ଉତ୍ସାହ ଆସିଲା ନାହିଁ। ଶେଷରେ ଆଶ୍ରମ ଛାଡ଼ିବାର ନିଶ୍ଚୟ କଲି। ଲଢ଼ାଇରେ ଯୋଗ ଦେବି—ଏଥିରେ ଯଦି ଆଶ୍ରମ ଭାଙ୍ଗି ଯିବ, ତେବେ ତାହା ଭାଙ୍ଗିଯାଉ। ଏହାହିଁ ମୋର ଜୀବନର ଆଉ ଗୋଟିଏ ଉଚିତ୍ ପରୀକ୍ଷା ଓ ତ୍ୟାଗର ପରାକାଷ୍ଠା ହେବ।



# ନବମ ଭାଗ

## ପ୍ରଥମ ପରିଚ୍ଛେଦ

### ଲବଣ ସତ୍ୟାଗ୍ରହ
### (ଦାଣ୍ଡିଯାତ୍ରା)

୧୯୩୦ ମସିହା ମାର୍ଚ୍ଚ ୧୨ ତାରିଖ ମାନବ ଜାତିର ଇତିହାସରେ ଗୋଟିଏ ପ୍ରଧାନ ଦିବସ। ଅଦ୍ୟ ଭାରତରେ ଏପରି ଗୋଟିଏ ମହଦ୍ କର୍ମାନୁଷ୍ଠାନ କରାଗଲା ଯାହାର ବଳରେ ଭାରତର ସୁପ୍ତ ଶକ୍ତି ଜାଗି ଉଠିଥିଲା ଏବଂ ଭାରତର ଲୁପ୍ତ ଗୌରବର ରଶ୍ମିଶିଖା ପ୍ରଚଣ୍ଡ ତେଜରେ ପ୍ରତିଭାତ ହୋଇ କୋଟି କୋଟି ଭାରତବାସୀଙ୍କ ହୃଦୟରୁ ପରାଧୀନତାର କାଳିମାକୁ ଚିରକାଳ ନିମିତ୍ତ ଅପସାରିତ କରିବାକୁ ଏକ ନୂତନ ଆଲୋକ ପ୍ରଦାନ କରିଥିଲା। ଅଦ୍ୟ ମହାତ୍ମାଗାନ୍ଧୀ 'ମନ୍ତ୍ରଂ ବା ସାଧୟେତ୍ ଶରୀରଂ ବା ପାତୟେତ୍' ମନ୍ତ୍ରରେ ଭାତବାସୀଙ୍କୁ ଦୀକ୍ଷିତ କରି ସାବରମତୀ ଆଶ୍ରମରୁ ସମର ଯାତ୍ରା ଆରମ୍ଭ କରିଥିଲେ। "ଭାରତରେ ସ୍ୱରାଜ୍ୟ ନ ହେବା ପର୍ଯ୍ୟନ୍ତ ମୁଁ ଆଉ ଆଶ୍ରମକୁ ଫେରିବି ନାହିଁ। ସ୍ୱରାଜ୍ୟ ଆଣି ଫେରିବି, ନଚେତ୍ ମୋର ମୃତ ଶରୀରକୁ ସମୁଦ୍ରରେ ଭସାଇ ଦେବ।" ଏହି କେତୋଟି ଶକ୍ତି ଉଚ୍ଚାରଣ କରି ମହାତ୍ମାଜୀ ଆଶ୍ରମ ତ୍ୟାଗକରି ଗଲାବେଳର ଦୃଶ୍ୟ କିପରି ମର୍ମସ୍ପର୍ଶୀ ତାହା ନ ଦେଖିଲା ବ୍ୟକ୍ତି ସହଜରେ ଅନୁଭବ କରିପାରିବ ନାହିଁ। ସେହି ଦୃଶ୍ୟ ଏବଂ ସେହି ଦିନର ଘଟଣାବଳୀ ମନେ ପଡ଼ିଲେ ମୋ ମନରେ ସ୍ୱତଃ ରାଜା ରାମଚନ୍ଦ୍ରଙ୍କର ବନବାସ କଥା ମନେ ପଡ଼େ। ରାଜା ରାମଚନ୍ଦ୍ର ସୀତା ଓ ଲକ୍ଷ୍ମଣଙ୍କୁ ସଙ୍ଗରେ ଧରି ଚଉଦବର୍ଷ ବନବାସ କରିବା ପାଇଁ ଅଯୋଧ୍ୟା ନଗରୀ ଯେଉଁ ଦିନ ତ୍ୟାଗ କରିଥିଲେ ସେତେବେଳର ଦୃଶ୍ୟ କିପରି ମର୍ମସ୍ପର୍ଶୀ ହୋଇଥିବ ତାହା କଳ୍ପନା କରି ହେବ ନାହିଁ। ଅଗଣିତ ନରନାରୀଙ୍କ ହୃଦୟ ଅଧୀର, ଚକ୍ଷୁ ଲୋତକପୂର୍ଣ୍ଣ ଏବଂ ତାହାଙ୍କ ସହିତ ବନଗମନ କରିବାକୁ ସମସ୍ତଙ୍କର ଆକୁଳ ପ୍ରାର୍ଥନା। କିନ୍ତୁ ଶ୍ରୀରାମଚନ୍ଦ୍ର ଧୀର ଓ ଗମ୍ଭୀର ଭାବରେ ଏସବୁ ଦ୍ୱାରା ପ୍ରଭାବିତ ନ ହୋଇ, ହସି ହସି ବନଗମନ କରିଥିଲେ।

ସାବରମତୀ ଆଶ୍ରମରୁ ମହାତ୍ମାଗାନ୍ଧୀଙ୍କର ସମର ଅଭିଯାନ ବେଳର ଦୃଶ୍ୟ ଅତୀତର ସେହି ଘଟଣାକୁ ସ୍ମରଣ କରାଇ ଦେଉଛି। ଦୁଇଦିନ ପୂର୍ବରୁ ସାବରମତୀ

ଆଶ୍ରମର ଚତୁଃପାର୍ଶ୍ୱସ୍ଥ ଗ୍ରାମ, ନଗର ଓ ବଣ ପ୍ରାନ୍ତର ଯେଉଁ ଅପୂର୍ବ ରୂପ ଧାରଣ କରୁଛି ତାହା ବର୍ଣ୍ଣନା କରିବାକୁ ମୁଁ ଭାଷା ପାଉ ନାହିଁ। ଯେଉଁଦିନ ମହାତ୍ମାଜୀ ଆଶ୍ରମ ଛାଡ଼ିବେ ସେଦିନ ପୂର୍ବରାତ୍ରି, ଆଶ୍ରମ କିମ୍ବା ଆଶ୍ରମ ଚତୁଃପାର୍ଶ୍ୱସ୍ଥ ଜନପଦରେ ଏପରି କି କୌଣସି ଜୀବଜନ୍ତୁ ନିଦ୍ରା ଯାଇଛନ୍ତି କି ନାହିଁ ସନ୍ଦେହ। ଅହମଦାବାଦ ସହରର ଲକ୍ଷ ଲକ୍ଷ ନରନାରୀ ରାତିରେ ଶୋଇ ନାହାନ୍ତି। ରାତି ପାହିଲା ବେଳକୁ ବାଟଘାଟ ସବୁ ଲୋକାରଣ୍ୟ। ମହାତ୍ମାଜୀ ଆଶ୍ରମ ତ୍ୟାଗକରି ଗଲାବେଳେ ଆଶ୍ରମବାସୀ ସମସ୍ତେ ତାଙ୍କ ପଦଧୂଳି ଗ୍ରହଣ କରିଥିଲେ। ସେତେବେଳର ଦୃଶ୍ୟ ଆହୁରି ମର୍ମସ୍ପର୍ଶୀ। ଲକ୍ଷ ଲକ୍ଷ ନରନାରୀ ଶୋକାକୁଳ। ସମସ୍ତଙ୍କ ଚକ୍ଷୁ ଲୋତକପୂର୍ଣ୍ଣ। ସମସ୍ତେ ମହାତ୍ମାଜୀଙ୍କ ଆଡ଼କୁ ଚାହିଁଛନ୍ତି; ଏବଂ ଆକୁଳ ପ୍ରାଣରେ ପ୍ରାର୍ଥନା କରୁଛନ୍ତି। "ବାପୁଜୀ, ଆମ୍ଭମାନଙ୍କୁ ସଙ୍ଗରେ ଯିବାକୁ ଅନୁମତି ଦିଅ। ତମେ ଯୁଆଡ଼େ ଯିବ ଆମ୍ଭେମାନେ ସମସ୍ତେ ତମ ସଙ୍ଗରେ ସିଆଡ଼େ ଯିବୁ। ଯାହା ଆଦେଶ ଦେବ ତାହା ପାଳନ କରିବୁ ଏବଂ ସ୍ୱରାଜ୍ୟ ପାଇଁ ପ୍ରାଣବଳି ଦେବାକୁ କୁଣ୍ଠିତ ହେବୁ ନାହିଁ।"

ମହାତ୍ମାଗାନ୍ଧୀ ଏ ସମସ୍ତଙ୍କ କାତର ପ୍ରାର୍ଥନା ପ୍ରତି କର୍ଣ୍ଣପାତ ନ କରି ତାହାଙ୍କ ପଛରେ ଯିବାକୁ ସମସ୍ତଙ୍କୁ ମନା କରିଛନ୍ତି ଏବଂ କହିଛନ୍ତି, "ବର୍ତ୍ତମାନ ସମୟ ଆସିନାହିଁ। ଯଥା ସମୟରେ ମୁଁ ମୋର ବାଣୀ ଶୁଣାଇ ଦେବି। ବର୍ତ୍ତମାନ ସମସ୍ତେ ଖଦଡ଼ ପରିଧାନ କରି ବିଦେଶୀ ବର୍ଜ୍ଜନ କର। ଆମ୍ଭମାନଙ୍କର ଦାବୀ ଦୁର୍ଦ୍ଦମନୀୟ। ଉପାୟ ସାଧୁ ଏବଂ ସହାୟ ଭଗବାନ୍। ସତ୍ୟାଗ୍ରହୀ ଯଦି ସତ୍ୟ ଓ ଅହିଂସାକୁ ତ୍ୟାଗ ନ କରନ୍ତି ତେବେ ଆମ୍ଭମାନଙ୍କର ଜୟ ସୁନିଶ୍ଚିତ।

## ଓଡ଼ିଶାର ରାଜନୈତିକ ପରିସ୍ଥିତି

ଏହି ଦୃଶ୍ୟର ମୁଁ ପ୍ରତ୍ୟକ୍ଷଦର୍ଶୀ। ଏହି ଦୃଶ୍ୟ ଓ ଘଟଣା ମୋର କର୍ମ ଓ ଚିନ୍ତାକୁ ପ୍ରଭାବିତ କରିଛି। ସତ୍ୟାଗ୍ରହ ସଂଗ୍ରାମରେ ଯୋଗଦେବାକୁ ମୋର ମନ ଚଞ୍ଚଳ ହୋଇ ଉଠିଲା। ଓଡ଼ିଶାକୁ ଯଥା ସମୟରେ ଫେରିଲି। ଆଶ୍ରମ କାର୍ଯ୍ୟରେ ଆଉ ମନ ନାହିଁ। ଲବଣ ସତ୍ୟାଗ୍ରହରେ ଯୋଗଦେବାକୁ ହେବ ଏହା ସ୍ୱତଃସିଦ୍ଧ। କିନ୍ତୁ ଓଡ଼ିଶାରେ ଲବଣ ସତ୍ୟାଗ୍ରହ ଆରମ୍ଭ ନ ହେଲେ କଣ କରିବାକୁ ହେବ ତାହା ଠିକ୍ କରିପାରୁ ନ ଥାଏ। ଗତ ଜାନୁଆରୀ ଛବିଶ ତାରିଖ ଦିନ ଗୋଟିଏ ଜାତୀୟ ଦିବସ ରୂପେ ପାଳିତ ହୋଇ ଭାରତର ସର୍ବତ୍ର ଲୋକେ ସ୍ୱାଧୀନତା ସଂକଳ୍ପ ପାଠ କରିଛନ୍ତି। ଓଡ଼ିଶାରେ ଏହି ଦିବସଟି ପାଳନ କରାଯାଇ ପାରିନାହିଁ। ମୁଁ ବମ୍ବେଇରେ ଏହି ସଂକଳ୍ପ ପାଠ କରିଥିଲି। କଟକରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ତାଙ୍କ ଗୃହ ପ୍ରାଙ୍ଗଣରେ ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିହାରୀ ପ୍ରଭୃତି କେତୋଟି ସାଥିଙ୍କୁ ଧରି ପତାକା ଉତ୍ତୋଳନ କରିଥିଲେ ଏବଂ ସ୍ୱାଧୀନତା ସଂକଳ୍ପ ମଧ୍ୟ ପାଠ କରିଥିଲେ।

ଏହି କେତେ ଜଣ ଓଡ଼ିଶା ଛାଡ଼ି ଗୁଜୁରାତ କିମ୍ବା ଅନ୍ୟ କୌଣସି ପ୍ରଦେଶକୁ ଯାଇ ସତ୍ୟାଗ୍ରହ ସମରରେ ଯୋଗ ଦେବାକୁ ବିଚାର କରୁଥିଲେ । ବାବୁ ହରେକୃଷ୍ଣ ମହତାବ ଓଡ଼ିଶାରେ ଲବଣ ସତ୍ୟାଗ୍ରହ ଆରମ୍ଭ କରିବା ପାଇଁ ଚିନ୍ତା କରୁଥିଲେ । ଓଡ଼ିଶାରେ ଲବଣ ସତ୍ୟାଗ୍ରହ ଆରମ୍ଭ କଲେ ଜନସାଧାରଣଙ୍କଠାରୁ ସମର୍ଥନ ମିଳିବ ବୋଲି ଅନେକଙ୍କ ମନରେ ବିଶ୍ୱାସ ଜନ୍ମୁ ନ ଥାଏ । ଏଣୁ ଓଡ଼ିଶାରେ ଲବଣ ସତ୍ୟାଗ୍ରହ ଆରମ୍ଭ କରି ହାସ୍ୟାସ୍ପଦ ହେବା ଅପେକ୍ଷା ଓଡ଼ିଶା ବାହାରକୁ ଯାଇ ସତ୍ୟାଗ୍ରହରେ ଯୋଗ ଦେବା ଶ୍ରେୟସ୍କର । ଏପରି ଭାବନା ଅନେକଙ୍କ ମନରେ ଥାଏ । ଏଥିପାଇଁ କାହାରିକୁ ଦୁର୍ବଳମନା କହିବା ଠିକ୍ ହେବ ନାହିଁ ।

କାରଣ, ୧୯୨୧ ମସିହାରେ ଉତ୍କଳଭୂମିରେ କଂଗ୍ରେସର ଜନ୍ମ । ୧୯୨୦ ମସିହା ଡିସେମ୍ବର ମାସ ଶେଷରେ ନାଗପୁରଠାରେ କଂଗ୍ରେସର ଯେଉଁ ବାର୍ଷିକ ଅଧିବେଶନ ବସିଲା, ସେଠାରେ କଂଗ୍ରେସ ବର୍ଷକ ଭିତରେ ସ୍ୱରାଜ୍ୟ ପ୍ରାପ୍ତି କରିବାକୁ ମହାତ୍ମାଗାନ୍ଧୀଙ୍କ ଅସହଯୋଗ ପ୍ରସ୍ତାବ ଗ୍ରହଣ କଲା । କଂଗ୍ରେସର ନିୟମାବଳୀରେ ପରିବର୍ତ୍ତନ କରାଗଲା । ଭାରତକୁ ଭାଷାସୂତ୍ରରେ ପ୍ରଦେଶ ଗଠନ କରିବାର ବିଧାନ କଂଗ୍ରେସ ନିୟମାବଳୀରେ ଲିପିବଦ୍ଧ ହେଲା । କଂଗ୍ରେସ ସଂଗଠନରେ ଉତ୍କଳ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ରୂପରେ ଆତ୍ମପ୍ରକାଶ କରିବାର ସୁବିଧା ପାଇଲା । ୧୯୨୧ ମସିହାରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଗଠନ କରାଗଲା । ସର୍ବ ପ୍ରଥମେ ଏହି ବର୍ଷ ଭାରତର ମୁକ୍ତି ସଂଗ୍ରାମରେ ଉତ୍କଳ ଯୋଗ ଦେଲା ଏବଂ କଂଗ୍ରେସର ଅସହଯୋଗ କାର୍ଯ୍ୟକ୍ରମକୁ ଯଥାସମ୍ଭବ କାର୍ଯ୍ୟରେ ପରିଣତ କରିବାକୁ ଆମ୍ଭେମାନେ ଚେଷ୍ଟା କରିଥିଲୁ । ଏହି ଅସହଯୋଗ ଆନ୍ଦୋଳନ ମୁକ୍ତିସଂଗ୍ରାମ ନୁହେଁ । ଏହା ହେଉଛି ସଂଗ୍ରାମ ପାଇଁ ଦେଶର ସାଧନା ଓ ସଂଗଠନ । ସତ୍ୟାଗ୍ରହ ତଥା ଆଇନ ଅମାନ୍ୟ କରିବା ହେଉଛି ସଂଗ୍ରାମ । ଏଥିପାଇଁ କଂଗ୍ରେସର ଦେଶକୁ ଭାଷାସୂତ୍ରରେ ସଂଗଠନ କରି ସଂଗ୍ରାମ ପାଇଁ ପ୍ରସ୍ତୁତ ହେବା ସକାଶେ ଅସହଯୋଗ ବାର୍ତ୍ତା ପ୍ରଚାର କଲା । ମହାତ୍ମାଗାନ୍ଧୀଙ୍କର ଏହି ଅସହଯୋଗ ବାର୍ତ୍ତାରେ ଭାରତ ଏକ ନୂତନ ଆଦର୍ଶରେ ଅନୁପ୍ରାଣିତ ହୋଇ ଏକ ନୂତନ ଜୀବନ ଲାଭ କଲା । ଏହିଠାରୁ ଭାରତରେ ଏକ ନବଯୁଗର ସୃଷ୍ଟି । ୧୯୨୦ ମସିହାରେ ପୁରୀ ଦୁର୍ଭିକ୍ଷ ଅଞ୍ଚଳରେ କାମ କରୁଥିବା ବେଳେ ପ୍ରଥମେ ଏହି ବାର୍ତ୍ତା ମୁଁ ଉତ୍କଳରେ ପ୍ରଚାର କରିଥିଲି । ଏହି ନୂତନ ଯୁଗ ଓ ନୂତନ ଆଦର୍ଶର ବାଣୀ ଉତ୍କଳରେ ପ୍ରବେଶ କଲା । ୧୯୨୧ ରେ ପଣ୍ଡିତ ଗୋପବନ୍ଧୁ ଦାସ ଏହି ବାଣୀର ପ୍ରଧାନ ବାର୍ତ୍ତାବହ ।

ଅସହଯୋଗ ଆନ୍ଦୋଳନ ଅହିଂସାପୂର୍ଣ୍ଣ । ଆଇନ ଅମାନ୍ୟ କରି ଖଜଣା ଟିକସ ବନ୍ଦ କରିବା ସତ୍ୟାଗ୍ରହର ଅମୋଘ ଅସ୍ତ୍ର । ଏହି ଅମୋଘ ଅସ୍ତ୍ର ପ୍ରୟୋଗ କରିବା ପାଇଁ ମହାତ୍ମା ଗାନ୍ଧୀ ଗୁଜରାତର ବାର୍ଦୋଲୀ ତାଲୁକାକୁ ସଂଗଠନ କଲେ । ଏହି

ଅସ୍ତ୍ର ପ୍ରୟୋଗ କରିବା ପୂର୍ବରୁ ମହାତ୍ମାଗାନ୍ଧୀ ତାଙ୍କର ନିଧାର୍ଯ୍ୟ ଶେଷ ବାଣୀ ସରକାରଙ୍କୁ ଶୁଣାଇ ଦେଲେ। ଏହି ସମୟରେ ସମଗ୍ର ଭାରତ ଆଶା ଓ ଉନ୍ମାଦନାରେ ପରିପୂର୍ଣ୍ଣ। ଏତିକିବେଳେ ଯୁକ୍ତ ପ୍ରଦେଶର ଚୌରୀଚୌରା ନାମକ ସ୍ଥାନରେ ଏକ ହିଂସାକାଣ୍ଡ ଘଟିଲା। ତହିଁରୁ ଭାରତର ବାୟୁମଣ୍ଡଳ ହିଂସାପୂର୍ଣ୍ଣ ବୋଲି ଗାନ୍ଧିଜୀ ଉପଲବ୍ଧି କରି ଅସହଯୋଗ ଆନ୍ଦୋଳନକୁ ସ୍ଥଗିତ ରଖିଦେଲେ ଏବଂ ଗ୍ରାମ ସଂଗଠନ କାମ ପାଇଁ ଗୋଟିଏ କାର୍ଯ୍ୟକ୍ରମ ଉଲ୍ଲେଖ କରି ତହିଁରେ ମନୋନିବେଶ କରିବାକୁ ଦେଶବାସୀଙ୍କୁ ଆହ୍ୱାନ କଲେ। କିନ୍ତୁ ଏହି କାର୍ଯ୍ୟକ୍ରମ ଦେଶବାସୀଙ୍କୁ ଅନୁପ୍ରାଣୀତ କରି ପାରିଲା ନାହିଁ। ପରିଣାମରେ ଦେଶରୁ ଉନ୍ମାଦନା ଏକାବେଳକେ କମିଗଲା। କର୍ମୀମାନେ ଶିଥିଳ ହୋଇ ପଡ଼ିଲେ। ଜୀବନର ସମସ୍ତ ଆଶା ଭରସାକୁ ଜଳାଞ୍ଜଳି ଦେଇ ଯେଉଁ ଶତ ଶତ ଯୁବକ ଭାରତର ମୁକ୍ତି ସଂଗ୍ରାମରେ ଯୋଗ ଦେଇଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଛତ୍ରଭଙ୍ଗ ଦେଲେ। ଦେଶରେ ଏକ ବିରାଟ ନୈରାଶ୍ୟ ଭାବ ଖେଳିଗଲା। ଅନ୍ୟ ପ୍ରଦେଶମାନଙ୍କ ତୁଳନାରେ ଉତ୍କଳ ପରିସ୍ଥିତି ସ୍ୱତନ୍ତ୍ର। ଅନ୍ୟ ପ୍ରଦେଶସବୁରେ ସଙ୍ଗଠିତ ରାଜନୈତିକ ଜୀବନ ବହୁଦିନୁ ପ୍ରକାଶ ପାଇଛି। ଉତ୍କଳର କୌଣସି ସ୍ୱତନ୍ତ୍ରତା ନ ଥିଲା କିମ୍ବା ଉତ୍କଳ ନାମରେ କୌଣସି ପ୍ରଦେଶ ନ ଥିଲା। ଗୋଟିଏ ସ୍ୱତନ୍ତ୍ର ପ୍ରାଦେଶିକ ରାଜନୈତିକ ସଂଗଠନ ରୂପେ ଆତ୍ମବିକାଶ ଲାଭ କରିବା ଉତ୍କଳରେ ଏହାହିଁ ପ୍ରଥମ। ତାହା ପୁଣି ଏକବର୍ଷରୁ ଅଧିକ ନୁହେଁ। ଏପରି ଅବସ୍ଥାରେ ଭାରତର ରାଜନୈତିକ ଜୀବନରେ ନୈରାଶ୍ୟ ଘୋଟିଯିବା ହେତୁ, ଆମ୍ଭମାନଙ୍କର ରାଜନୈତିକ ଜୀବନୀଶକ୍ତି କ୍ଷୀଣରୁ କ୍ଷୀଣତର ହେବାକୁ ଲାଗିଲା। କଂଗ୍ରେସ ଅନୁଷ୍ଠାନକୁ ବଞ୍ଚାଇ ରଖିବା ବୋଧହେଲା ଗୋଟିଏ ବିଷମ ସମସ୍ୟା। କଂଗ୍ରେସର ଜିଲା ଓ ପ୍ରାଦେଶିକ କମିଟିମାନଙ୍କରେ ସଭ୍ୟ ହେବାକୁ ଲୋକ ମିଳିଲେ ନାହିଁ। ବୁଝାଇ ସୁଝାଇ ଯେଉଁ କେତେ ଜଣକୁ ସଭ୍ୟ କରାଯାଉଥିଲା, ସେମାନଙ୍କ ଠାରୁ ସଭ୍ୟ ଚାନ୍ଦା ମିଳୁ ନ ଥିଲା କିମ୍ବା କମିଟି ବୈଠକରେ ମଧ୍ୟ ସେମାନେ ଯୋଗ ଦେଉ ନ ଥିଲେ। ଉତ୍କଳରେ କଂଗ୍ରେସ ଅନୁଷ୍ଠାନର ନାମ ମାତ୍ର ଥିଲା। ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ବସିଲେ ଆଠ ଦଶ ଜଣରୁ ଅଧିକ ସଭ୍ୟ ଉପସ୍ଥିତ ହେଉ ନ ଥିଲେ। ଏପରି ଅବସ୍ଥାରେ ୧୯୩୦ ମସିହାରେ ଉତ୍କଳ ପ୍ରଦେଶରେ ଜାନୁୟାରୀ ତା ୨୬ ରିଖକୁ ସ୍ୱାଧୀନତା ଦିବସ ରୂପେ ପାଳନ କରାଯାଇ ପାରି ନାହିଁ। ସୁତରାଂ ଲବଣ ସତ୍ୟାଗ୍ରହ ଆରମ୍ଭ କରିବାକୁ କଳ୍ପନା କରିବା କେବଳ ଦୁଃସାହସିକ କର୍ମ ବ୍ୟତୀତ ଆଉ କଣ ହୋଇପାରେ। ତଥାପି ସତ୍ୟାଗ୍ରହ ସଂଗ୍ରାମରେ ପ୍ରାଣପାତ କରିବାକୁ କେତେଜଣଙ୍କର ଦୃଢ଼ ପ୍ରତିଜ୍ଞା ଥିଲା ଏବଂ ଯେ କୌଣସି ଅବସ୍ଥାରେ ଉତ୍କଳରେ ଲବଣ ସତ୍ୟାଗ୍ରହ ଆରମ୍ଭ କରିଦେବାକୁ ଶ୍ରୀ ହରେକୃଷ୍ଣ ମହତାବ ଦୃଢ଼ ସଂକଳ୍ପ କରିଥିଲେ। କଂଗ୍ରେସ ଅନୁଷ୍ଠାନରେ ରହି କେହି ନିଜର ସଂକଳ୍ପ ଅନୁଯାରେ

କିଛି କରି ନ ପାରନ୍ତି। କିଛି କରିବାକୁ ଗଲେ, ପ୍ରାଦେଶିକ କଂଗ୍ରେସ କମିଟିର ଅନୁମୋଦନ ଆବଶ୍ୟକ।

## ଓଡ଼ିଶାରେ ଲବଣ ସତ୍ୟାଗ୍ରହ କରିବାର ସିଦ୍ଧାନ୍ତ

ସୁତରାଂ ଲବଣ ସତ୍ୟାଗ୍ରହ ପ୍ରଶ୍ନ ମୀମାଂସା କରିବା ପାଇଁ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ଗୋଟିଏ ସ୍ୱତନ୍ତ୍ର ବୈଠକ ବାଲେଶ୍ୱରରେ ବସିଲା। ଓଡ଼ିଶାରେ ଲବଣ ସତ୍ୟାଗ୍ରହ ଆରମ୍ଭ ନକରି ଗ୍ରାମସଂଗଠନ କାର୍ଯ୍ୟରେ ସମସ୍ତ ଶକ୍ତି ନିୟୋଗ କରିବାକୁ ଅନେକ ମତାମତ ବ୍ୟକ୍ତ କଲେ। ଶ୍ରୀ ଗୋପବନ୍ଧୁ ଚୌଧୁରୀ ୧୯୨୦ ମସିହାରେ ଡେପୁଟି ଚାକିରି ଛାଡ଼ି କଂଗ୍ରେସରେ ଯୋଗ ଦେଇଥିଲେ। ଏହି ଦଶବର୍ଷ ମଧ୍ୟରେ ସେ ତାଙ୍କ ପରିବାରର ସମସ୍ତଙ୍କୁ ଦେଶ ସେବାରେ ଜୀବନ ଦେବାକୁ ପ୍ରସ୍ତୁତ କରି ପାରିଛନ୍ତି। ଓଡ଼ିଶାରେ ସତ୍ୟାଗ୍ରହ ଆରମ୍ଭ ନ କଲେ ଓଡ଼ିଶା ଛାଡ଼ି ଅନ୍ୟ ପ୍ରଦେଶରେ ସତ୍ୟାଗ୍ରହ ସଂଗ୍ରାମରେ ଯୋଗ ଦେବାକୁ ସେ ସ୍ଥିର କରିଥାନ୍ତି। ଗ୍ରାମସଂଗଠନ ପ୍ରସ୍ତାବ ଆଲୋଚନା ବେଳେ ସମସ୍ତେ ମୋ ମତାମତ ଜାଣିବାକୁ ଇଚ୍ଛା ପ୍ରକାଶ କରିଥିଲେ। କାରଣ ସେତେବେଳକୁ ମୁଁ ହେଉଛି ଏକମାତ୍ର କର୍ମୀ ଯେ କି ଓଡ଼ିଶାର ପଲ୍ଲୀ ଅଞ୍ଚଳରେ ଗୋଟିଏ ଅନୁଷ୍ଠା ଗଢ଼ି ଗ୍ରାମସଂଗଠନ କାମ କରୁଛି। ଆଉ ସେପରି ଅନ୍ୟ ଅନୁଷ୍ଠାନ କେଉଁଠାରେ ନାହିଁ। ଗୋପବାବୁ, ଭାଗୀରଥି ମହାପାତ୍ର, ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିହାରୀ ପ୍ରଭୃତି ମିଶି ଜଗତସିଂହପୁରରେ ଅଳକାଶ୍ରମ ନାମରେ ଗୋଟିଏ ଅନୁଷ୍ଠାନ ଗଢ଼ିଥିଲେ। ସେହି ଅନୁଷ୍ଠାନଟି ଭାଙ୍ଗି ଯାଇଛି। ବର୍ତ୍ତମାନ ଚମ୍ପାପୁର ଗାନ୍ଧୀସେବାଶ୍ରମ ଗୋଟିଏ ମାତ୍ର ଅନୁଷ୍ଠାନ ଯଦ୍ଦ୍ୱାରା ଗ୍ରାମସଂଗଠନ କାମ କିଛି ହେଉଛି। କଟରପା ଓ କେନ୍ଦୁପାଟଣା ପ୍ରଭୃତି କେତୋଟି କେନ୍ଦ୍ର ସଂଗଠନ କରି ସୂତାକଟା ଓ ଖଦଡ଼ ବୁଣା ଯାଉଛି। ପଲ୍ଲୀବାସୀଙ୍କ ଚିକିତ୍ସା ପାଇଁ ଗୋଟିଏ ଡାକ୍ତର ରହିଛନ୍ତି। ଗୋଟିଏ ଜାତୀୟ ବିଦ୍ୟାଳୟ ଖୋଲାଯାଇଛି। ଗୋଟିଏ ପୁସ୍ତକାଗାର ସ୍ଥାପିତ ହୋଇଛି। ପନିପରିବା ଚାଷ ଶିଖେଇବା ପାଇଁ ଗୋଟିଏ ଆଦର୍ଶ ବଗିଚା କରାଯାଇଛି। ଏହିପରି ନାନାଭାବରେ ଚମ୍ପାପୁର ଗାନ୍ଧୀସେବାଶ୍ରମ ଗ୍ରାମସଂଗଠନ କାମ ଆରମ୍ଭ କରିଛି। ମୁଁ ଏହାର ପ୍ରତିଷ୍ଠାତା ଓ ପ୍ରଧାନ ପରିଚାଳକ ଥିବାରୁ ଗ୍ରାମସଂଗଠନ ବିଷୟରେ ମୋର ମତାମତ ଜାଣିବାକୁ ଆଗ୍ରହ ପ୍ରକାଶ କରିବା ସ୍ୱାଭାବିକ।

ଓଡ଼ିଶାରେ ଲବଣ ସତ୍ୟାଗ୍ରହ ଆରମ୍ଭ କରିବା ସପକ୍ଷରେ ମୁଁ ମତ ପ୍ରକାଶ କରିଥିଲି। କେବଳ ସେତିକି ନୁହେଁ। ମୁଁ କହିଥିଲି, ଆମ୍ଭମାନଙ୍କ କର୍ମ ଓ ଚିନ୍ତାର କିଛି ଲକ୍ଷ୍ୟ ଅଛି। ଆମ୍ଭମାନଙ୍କର ଏକମାତ୍ର ଲକ୍ଷ୍ୟ ଦେଶକୁ ସ୍ୱାଧୀନ କରିବା। ଏହି ଲକ୍ଷ୍ୟ ସମ୍ମୁଖରେ ରଖି, ଗ୍ରାମସଙ୍ଗଠନ ଆଦି ପ୍ରତ୍ୟେକ କାର୍ଯ୍ୟ ଆମ୍ଭେମାନେ

ସଂପାଦନ କରୁଅଛେ। ଆମ୍ଭର ଲକ୍ଷ୍ୟ ହାସଲ କରିବା ପାଇଁ ଉପାୟ ଅବଲମ୍ବନ କଲାବେଳକୁ ଗ୍ରାମସଂଗଠନ ପ୍ରଶ୍ନ ବିଚାର କରିବାର ବେଳ ଆଉ ନାହିଁ। ବର୍ତ୍ତମାନ ଆମ୍ଭେମାନେ ଉପସ୍ଥିତ ସଂଗ୍ରାମରେ ଯୋଗ ନ ଦେଇ ଗ୍ରାମସଂଗଠନ, ଖଦଡ଼ ପ୍ରଚାର, ଇତ୍ୟାଦି କଥା ଉଠାଇ ଯଦି ନୀରବ ରହେ ତେବେ ଆମ୍ଭେମାନେ ନିଜକୁ ନୁହେଁ, ଦେଶକୁ ମଧ୍ୟ ପ୍ରତାରଣା କରିବା। ସୁତରାଂ ଲବଣ ସତ୍ୟାଗ୍ରହ ଓଡ଼ିଶାରେ ଆରମ୍ଭ କରିବା ଛଡ଼ା ଅନ୍ୟ କୌଣସି ଚିନ୍ତା ମନରେ ସ୍ଥାନ ଦେବା ଉଚିତ ନୁହେଁ ବୋଲି ମୁଁ ମୋର ମତ ବ୍ୟକ୍ତ କରିଥିଲି। ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିହାରୀ ମୋର ଏହି ମତକୁ ଦୃଢ଼ ଭାବରେ ସମର୍ଥନ କରିଥିଲେ। ଓଡ଼ିଶାରେ ଲବଣ ସତ୍ୟାଗ୍ରହ ଆରମ୍ଭ ନ କଲେ ଓଡ଼ିଶାରୁ କଂଗ୍ରେସର ନାମ ଲୋପ ପାଇଯିବ ଏବଂ ଆମ୍ଭମାନଙ୍କର ମଧ୍ୟ ରାଜନୈତିକ ମୃତ୍ୟୁ ଘଟିବ। ଏହିପରି ଦୃଢ଼ମତ ପ୍ରକାଶ ପାଇବାରୁ ଓଡ଼ିଶାରେ ଲବଣ ସତ୍ୟାଗ୍ରହ ଆରମ୍ଭ କରିବା ସପକ୍ଷରେ ପ୍ରାଦେଶିକ କଂଗ୍ରେସ କମିଟି ପ୍ରସ୍ତାବ ଗ୍ରହଣ କଲା। ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି ନାମକ ସ୍ଥାନ ପ୍ରଥମେ ରଣପ୍ରାଙ୍ଗଣ ରୂପେ ବଛାଗଲା। ଶ୍ରୀ ହରେକୃଷ୍ଣ ମହତାବ ଏହି ସ୍ଥାନକୁ କେବଳ ବାଛିଥିଲେ ତାହା ନୁହେଁ, ଏହି ସ୍ଥାନକୁ ପ୍ରଥମ ରଣପ୍ରାଙ୍ଗଣରେ ପରିଣତ କରିବାକୁ ସଂଗଠନ ଆରମ୍ଭ କରିସାରିଥିଲେ। ମହତାବ ବାବୁଙ୍କ ପ୍ରେରଣା ଓ ପରାମର୍ଶରେ ବାଲେଶ୍ୱରର କଂଗ୍ରେସ କର୍ମୀ ଶ୍ରୀ ସୁରେନ୍ଦ୍ରନାଥ ଦାସ ଇଞ୍ଚୁଡ଼ି ପ୍ରାଙ୍ଗଣକୁ ଭଲରୂପେ ସଂଗଠନ କରିପାରିଥିବାରୁ, ୧୯୩୦ ରେ ଉତ୍କଳର ଲବଣ ସତ୍ୟାଗ୍ରହ ବେଳୁ 'ସେ ସର୍ଦାର ସୁରେନ୍ଦ୍ର' ନାମରେ ଖ୍ୟାତି ଅର୍ଜନ କରି ପାରିଛନ୍ତି। ଅପ୍ରେଲ ଛ' ତାରିଖ ଦିନ ମହାତ୍ମାଗାନ୍ଧୀ ଦାଣ୍ଡି ନାମକ ସମୁଦ୍ର ବେଳାଭୂମିରେ ଲୁଣ ଆଇନକୁ ଅମାନ୍ୟ କରି ସତ୍ୟାଗ୍ରହ ସମର ଆରମ୍ଭ କରିବେ। ସେହିଦିନ ଓଡ଼ିଶାର ପ୍ରଥମ ସେନା ବାହିନୀ କଟକ ସହରରୁ ସମରାଭିଯାନ ଆରମ୍ଭ କରିବାର ସ୍ଥିର ହେଲା। ଶ୍ରୀ ଗୋପବନ୍ଧୁ ଚୌଧୁରୀ ପ୍ରଥମ ସେନାପତି ପଦରେ ବରିତ ହେଲେ।

# ଦ୍ୱିତୀୟ ପରିଚ୍ଛେଦ

## ମୋର ରେଙ୍ଗୁନ ଯାତ୍ରା ଓ ଦାଣ୍ଡୀଯାତ୍ରାର ବିବରଣୀ

ଓଡ଼ିଶାରେ ଲବଣ ସତ୍ୟାଗ୍ରହ ଆରମ୍ଭ କରିବାକୁ ପ୍ରାଦେଶିକ କଂଗ୍ରେସ କମିଟି ପ୍ରସ୍ତାବ ଗ୍ରହଣ କରିବା ଦ୍ୱାରା ମେଘାଚ୍ଛନ୍ନ ଅନ୍ଧକାର ରାତିରେ ବିଜୁଳି ଝଟକିଲା ପ୍ରାୟ ଓଡ଼ିଶାର ବାୟୁମଣ୍ଡଳରେ ବିଦ୍ୟୁତ୍ ବେଗରେ ଗୋଟାଏ ଚାଞ୍ଚଲ୍ୟ ଖେଳିଗଲା। ଗୋଟାଏ ନୂତନ ଆଲୋକ ଦେଖାଗଲା ପ୍ରାୟ ବୋଧ ହେଲା। ନିର୍ଜୀବ ହୋଇ ପଡ଼ି ରହିଥିବା କଂଗ୍ରେସ କର୍ମୀଙ୍କ ଭିତରେ ଏକ ଅପୂର୍ବ ଶକ୍ତି ଓ କର୍ମପ୍ରେରଣାର

ଭାବ ଜାଗି ଉଠିଲା । ବଜ୍ରପାତର ଶବ୍ଦ ପ୍ରାଣୀ ଜଗତକୁ ଚମକେଇ ଦେଲା ପରି ଉତ୍କଳ କଂଗ୍ରେସର ସତ୍ୟାଗ୍ରହ ସମର ଆରମ୍ଭ କରିବାର ପ୍ରସ୍ତାବ ଓଡ଼ିଶାରେ ଚମକ ପକାଇ ଦେଲା । ଦେଶର ଯୁବଶକ୍ତି ଚମକି ଉଠିଲେ । ଓଡ଼ିଶାର ପଥମ ସମର ଅଭିଯାନ ଯାତ୍ରା ଆରମ୍ଭ କରିବାପାଇଁ ସମସ୍ତପ୍ରକାର ସଂଗଠନ ଆରମ୍ଭ ହୋଇଗଲା । କିନ୍ତୁ ବାଲେଶ୍ୱର ବୈଠକ ପରେ କଟକ ଫେରି ନ ଆସି ମୁଁ ରେଙ୍ଗୁନ ଯାତ୍ରା କଲି । ରେଙ୍ଗୁନ ଯିବାର ବହୁ ଆଗରୁ ସ୍ଥିର କରିଥାଏ । ଉଦ୍ଦେଶ୍ୟ, ଚମ୍ପାପୁର ଗାନ୍ଧୀସେବାଶ୍ରମ ପାଇଁ କିଛି ଅର୍ଥ ସଂଗ୍ର କରିବା । ସତ୍ୟାଗ୍ରହ ଲଢ଼ାଇରେ ଯୋଗଦେଲା ପର ପରିଣାମରେ କଣ ଘଟିବ ତାହା ଅନିଶ୍ଚିତ । ଏଣୁ ଆଶ୍ରମର ଆର୍ଥିକ ଅବସ୍ଥାକୁ ଟିକିଏ ଦୃଢ଼ କରିଦେବା ବର୍ତ୍ତମାନ ମୋର ରେଙ୍ଗୁନ ଯାତ୍ରାର ପ୍ରଧାନ କାରଣ । ରେଙ୍ଗୁନରେ ପହୁଞ୍ଚି ପ୍ରତିଦିନ ସମ୍ବାଦପତ୍ରରୁ ମହାତ୍ମାଗାନ୍ଧୀଙ୍କ ଦାଣ୍ଡିଯାତ୍ରାର ବିବରଣୀ ସବୁ ପାଠ କରୁଥାଏ । ପ୍ରତିଦିନ ପାଇଁ ନିର୍ଦ୍ଦିଷ୍ଟ ପଥ ଗାନ୍ଧୀଜୀ ଯାତ୍ରା କରୁଥାନ୍ତି । ସେ ଯେଉଁ ପଥ ଦେଇ ଚାଲିଯାଉଥାନ୍ତି ସେ ସବୁ ସ୍ଥାନ ଏକ ଅଭିନବ ଶକ୍ତି ଲାଭ କରୁଥାଏ । କେବଳ ନରନାରୀ ନୁହନ୍ତି ଏପରି କି ସମସ୍ତ ପ୍ରାଣୀ ଓ ଉଭିଦ୍ ଜଗତ ମଧ୍ୟ ତାଙ୍କର ବାଣୀ ଶ୍ରବଣରେ ଏକ ଅଶ୍ରୁତପୂର୍ବ ନୂତନ ଜୀବନ ଶକ୍ତି ଲାଭ କରୁଥିଲା ପରି ଜଣା ଯାଉଥାଏ । ଦୈନିକ ନିର୍ଦ୍ଦିଷ୍ଟ ପଥ ଅତିକ୍ରମ କରିବାକୁ ଗାନ୍ଧୀଜୀ ଘନ ଅନ୍ଧକାର ଅର୍ଦ୍ଧରାତିରେ ମଧ୍ୟ ପଦଯାତ୍ରା ସମାପ୍ତ କରିଛନ୍ତି । ତାହାଙ୍କର ଦୁର୍ବଳ ଶରୀର ଅବଶ ହୋଇ ପଡ଼ିଲେ ମଧ୍ୟ ଅନ୍ୟର କନ୍ଧ ଉପରେ ଅବଲମ୍ବନ ରଖି ଅନ୍ଧକାର ରାତ୍ରିରେ କର୍ଦ୍ଦମପୂର୍ଣ୍ଣ ନଦୀ ନାଳ ଅତକ୍ରମ କରିଛନ୍ତି । ତାହାଙ୍କର ଅଟଳ ପ୍ରତିଜ୍ଞା ସମ୍ମୁଖରେ ବୋଧ ହେଉଛି ସତେ ଯେପରି ହିମାଳୟ ପର୍ବତ ଟଳି ପଡ଼ିବ । ଏହି ସବୁ ସମ୍ବାଦ ଭାରତର ପୁରପଲ୍ଲୀରେ ନୂତନ ଜୀବନର ହିଲ୍ଲୋଳ ଖେଳାଇ ଦେଉଛି । ଶୀଘ୍ର ଓଡ଼ିଶାକୁ ଫେରିଯିବାକୁ ମନ ଉଦ୍‌ବିଗ୍ନ ହୋଇ ଉଠିଲା । ଅତି ତରତର ହୋଇ ରେଙ୍ଗୁନ ସହରରୁ ଦୁଇହଜାର ଟଙ୍କା ସଂଗ୍ରହ କରି ଓଡ଼ିଶାକୁ ଫେରି ଆସିଲି । ଅପ୍ରେଲ ଛ' ତାରିଖ ଦିନ ଓଡ଼ିଶାର ପ୍ରଥମ ସେନା ବାହିନୀର ବିଦାୟ ସମ୍ବର୍ଦ୍ଧନାରେ ଯୋଗ ଦେବା ମୋର ଇଚ୍ଛା । ଏହା ଛଡ଼ା ସତ୍ୟାଗ୍ରହ ଲଢ଼ାଇରେ ଯୋଗଦେବା ପୂର୍ବରୁ ଆଶ୍ରମ କାର୍ଯ୍ୟ ପରିଚାଳନା ପାଇଁ କିଛି ବନ୍ଦୋବସ୍ତ କରିବାର ବ୍ୟଗ୍ରତା ମତେ ଶୀଘ୍ର ଫେରେଇ ଆଣିଲା ।

## କଟକରୁ ପ୍ରଥମ ସମରାଭିଯାନ

ଅପ୍ରେଲ ତିନି ତାରିଖ ଦିନ ରେଙ୍ଗୁନରୁ ଫେରି ଆଶ୍ରମରେ ଉପସ୍ଥିତ ହେଲି । ପାଞ୍ଚ ତାରିଖ ଦିନ କଟକରେ । କାଲି ସକାଳୁ ପ୍ରଥମ ସେନାବାହିନୀ ଇଂରେଜୀ ସରକାରଙ୍କର ଲୁଣ ଆଇନ ଭଙ୍ଗ କରିବାପାଇଁ କଟକ ସହରରୁ ଇଞ୍ଚୁଡ଼ି ଅଭିମୁଖେ

ସମରଯାତ୍ରା ଆରମ୍ଭ କରିବେ। କଟକ ସହରର ଅଧିବାସୀ ସମସ୍ତେ ନ ହେଲେ ମଧ୍ୟ ଅଧିକାଂଶ ଭାବବିହ୍ୱଳିତ ହେଲାପ୍ରାୟ ଜଣାପଡୁଛି। ଆନନ୍ଦ ଉତ୍ସାହରେ କଟକ ଉଚ୍ଛୁଳି ପଡୁଛି। ଅପ୍ରେଲ ଛ' ତାରିଖ ହେଉଛି ଜାତୀୟ ସପ୍ତାହର ପ୍ରଥମ ଦିବସ। ୧୯୧୯ ମସିହାରେ ଏହି ଛ' ତାରିଖ ଦିନ ମହାତ୍ମାଗାନ୍ଧୀ ସର୍ବପ୍ରଥମେ ତାହାଙ୍କର ସତ୍ୟାଗ୍ରହ ବାଣୀ ଶୁଣାଇ ଭାରତବାସୀଙ୍କୁ ସତ୍ୟାଗ୍ରହ ମନ୍ତ୍ରରେ ଦୀକ୍ଷିତ କରାଇଥିଲେ। ଅଦ୍ୟ ରାଓଲାଟ ଆଇନ ବିରୁଦ୍ଧରେ ସତ୍ୟାଗ୍ରହ ଲଢ଼ାଇ ଘୋଷଣା କରି ମହାତ୍ମାଜୀ ଆଇନ ଅମାନ୍ୟ ଆନ୍ଦୋଳନ ସୃଷ୍ଟି କରିଥିଲେ। ମୃତସଂଜୀବନୀ ମନ୍ତ୍ର ପରି ମହାତ୍ମାଜୀଙ୍କର ଆହ୍ୱାନ ଭାରତରେ ଅପୂର୍ବ ଜାଗରଣ ସୃଷ୍ଟି କରିଥିଲା। ଏହି ନୂତନ ଜାଗରଣରେ ଭୀତତ୍ରସ୍ତ ହୋଇ ଇଂରେଜୀ ସରକାର ଏହି ନୂତନ ଜୀବନକୁ ସମୂଳେ ଉତ୍ପାଟନ କରିବା ଉଦ୍ଦେଶ୍ୟରେ ପଞ୍ଜାବର ଅମୃତସର ଠାରେ ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡ ଘଟାଇଥିଲେ। ଅପ୍ରେଲ ତେର ତାରିଖଦିନ ଏହି ହତ୍ୟାକାଣ୍ଡ ଘଟିଥିଲା। ଏଣୁ ଅପ୍ରେଲ ଛ'ରୁ ତେର ତାରିଖ ପର୍ଯ୍ୟନ୍ତ ଏହି ସପ୍ତାହକୁ ଜାତୀୟ ସପ୍ତାହ ରୂପେ ପ୍ରତିପାଳନ କରିବାକୁ ମହାତ୍ମାଜୀ ପରାମର୍ଶ ଦେଇଥିଲେ। ଗାନ୍ଧୀଜୀଙ୍କ ପରାମର୍ଶ ଅନୁସାରେ ୧୯୨୦ ମସିହାରୁ ଏହି ସପ୍ତାହକୁ ଭାରତ ଜାତୀୟ ସପ୍ତାହରୂପେ ପ୍ରତିପାଳନ କରୁଛି। ଆଜି ପୁଣି ଜାତୀୟ ସପ୍ତାହର ପ୍ରଥମ ଦିନ, ସେହି ଅପ୍ରେଲ ଛ'ତାରିଖ। ମହାତ୍ମାଗାନ୍ଧୀ ଅଦ୍ୟ ଦିବସ ଗୁଜରାଟର ଦାଣ୍ଡି ବେଳାଭୂମିରେ ଲବଣ ଆଇନ ଭଙ୍ଗ କରି ଭାରତର ସ୍ୱାଧୀନତା ସଂଗ୍ରାମ ଘୋଷଣା କରିବେ। ଓଡ଼ିଶାରେ ଆଜି କଟକ ସହରରୁ ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ପ୍ରଥମ ସମରାଭିଯାନ ଆରମ୍ଭ କରାଯିବ। (ଦାଣ୍ଡି କେବଳ ଭାରତ ନୁହେଁ ସମଗ୍ର ପୃଥିବୀର ଦୃଷ୍ଟି ଆକର୍ଷଣ କଲାପରି, ଆମର ପ୍ରଥମ ସେନାବାହିନୀ କେବଳ କଟକ ନୁହେଁ, ସମଗ୍ର ଓଡ଼ିଶାର ଦୃଷ୍ଟି ଆକର୍ଷଣ କରିପାରିଛି। କଟକର ପ୍ରତ୍ୟେକ ନରନାରୀ ପ୍ରଥମ ବାହିନୀକୁ ଅଭିବାଦନ ଜଣାଇବାକୁ ଉଦ୍‌ଗ୍ରୀବ ହୋଇ ଉଠିଛନ୍ତି। ଶ୍ରୀ ଗୋପବନ୍ଧୁ ଚୌଧୁରୀ ପ୍ରଥମ ସେନାପତି। ସେ ମୁଣ୍ଡିତ ମସ୍ତକ, ହସ୍ତରେ ପତାକାଶୋଭିତ ଖଣ୍ଡିଏ ଯଷ୍ଟି, ଖଣ୍ଡିଏ କ୍ଷୁଦ୍ର ଧୋତି ପରିଧାନ କରିଛନ୍ତି। ମସ୍ତକରେ ଗୋଟିଏ ସିନ୍ଦୂର ଟୋପା। ତାଙ୍କୁ ଦେଖିଲେ ବୋଧ ହେଉଛି, ସତେ ଜଣେ କେହି ଯୋଗୀ, ସାଧକ ତାହାଙ୍କର ସାଧନା ପରିତ୍ୟାଗ କରି ଦେଶର ସ୍ୱାଧୀନତା ପାଇଁ ପ୍ରାଣ ବଳି ଦେବାକୁ ଉଦ୍‌ଗ୍ରୀବ ହୋଇ ଦୌଡ଼ି ଆସିଛନ୍ତି। ତାଙ୍କର ସେନାବାହିନୀ ତଦ୍ରୂପ ମୁଣ୍ଡିତ ମସ୍ତକ ଓ କପାଳରେ ସିନ୍ଦୂର ଟୋପା। ଭାରତମାତାର ପରାଧୀନତା ଶୃଙ୍ଖଳାକୁ ଛିନ୍ନ କରିବା ପାଇଁ ବିନ୍ଦୁ ବିନ୍ଦୁ ରକ୍ତପାତ କରିବାକୁ ସେନାଧକ୍ଷ ଅଧୀର ହେଉଥିବା ପ୍ରାୟ ତାଙ୍କ ଭାବଭଙ୍ଗୀରୁ ପ୍ରକାଶ ପାଉଛି। କଟକ ସହର ଉନ୍ମାଦନାରେ ପରିପୂର୍ଣ୍ଣ। କଟକ ସହରରୁ ପ୍ରଥମ ସେନାବାହିନୀକୁ ମହାନଦୀ ପାର କରାଇ ମୁଁ ଚମ୍ପାପୁର ଆଶ୍ରମକୁ ଫେରିଲି।

## ସଂଗ୍ରାମରେ ଯୋଗ ଦେବାରେ ମୋର ପ୍ରତିବନ୍ଧକ

ଲବଣ ସତ୍ୟାଗ୍ରହରେ ଯୋଗ ଦେବାକୁ ମନ ଚଞ୍ଚଳ ହେଉଥିଲା ସତ୍ୟ, କିନ୍ତୁ ବର୍ତ୍ତମାନ ଆଶ୍ରମର କାର୍ଯ୍ୟରୁ ନିଜକୁ ଅନ୍ତର କରିବା ବେଳ ଉପସ୍ଥିତ ହେବାରୁ ମନରେ ଆଉ ଆନନ୍ଦ ଜାତ ହେଉନାହିଁ। ମନ ଦବି ଯାଉଛି। ଆଶ୍ରମର କାର୍ଯ୍ୟ ଯେପରି ଅବସ୍ଥାରେ ଅଛି ତାହା କଦାପି ସୁଦୃଢ଼ ନୁହେଁ। ଓଡ଼ିଶାରେ ଗୋଟିଏ ସୁଦୃଢ଼ ଅନୁଷ୍ଠାନ ଦୀର୍ଘକାଳ ସ୍ଥାୟୀ ରହି ଦେଶର ସେବା କରିବା ପାଇଁ ନାନାପ୍ରକାର କଳ୍ପନା କରିଛି। ଗୋଟିଏ ଆଦର୍ଶ ସମ୍ମୁଖରେ ରଖି ତଦନୁସାରେ ବିଭିନ୍ନ ପ୍ରକାର କାର୍ଯ୍ୟାରମ୍ଭ କରାଯାଇଛି। ମାତୃଭୂମିର ସେବାରେ ଜୀବନର ବିକାଶ (Self realisation through the service of the mother country), ଆଶ୍ରମର ଆଦର୍ଶ ବୋଲି ନିରୂପଣ କରିଛି। ଏହି ଆଦର୍ଶକୁ ଉପଲବ୍ଧି କରିବା ଉଦ୍ଦେଶ୍ୟରେ ନିଃସ୍ୱାର୍ଥ ଓ ନିର୍ଭୀକ ଭାବରେ ଲୋକ କଲ୍ୟାଣକର କାର୍ଯ୍ୟରେ ସମସ୍ତ ଜୀବନ ଉତ୍ସର୍ଗ କରିବା ପାଇଁ କର୍ମକ୍ଷେତ୍ର ସବୁ ସୃଷ୍ଟି କରିଛି। ସୂତା କଟେଇ ଖଦଡ଼ ଉତ୍ପାଦନ ଓ ବିକ୍ରୀର ବ୍ୟବସ୍ଥା, ଚିକିତ୍ସାଳୟ, ସ୍କୁଲ, ପୁସ୍ତକାଳୟ, ଗୋଟିଏ ପଲ୍ଲୀ ବ୍ୟାଙ୍କର ସୂତ୍ରପାତ ଇତ୍ୟାଦି ନାନାପ୍ରକାର କାର୍ଯ୍ୟ ଆରମ୍ଭ କରିଛି। ଅନୁଷ୍ଠାନକୁ ଦୀର୍ଘକାଳ ସ୍ଥାୟୀ କରିବା ଉଦ୍ଦେଶ୍ୟରେ ଆଠହଜାର ଟଙ୍କା ଖର୍ଚ୍ଚ କରି ଗୋଟିଏ ବୃହତ ପଥର କୋଠାଘର ନିର୍ମାଣ କରିସାରିଛି। ପ୍ରତିବର୍ଷ ଅର୍ଥ ସଂଗ୍ରହ କରି ଆଶ୍ରମର ଶାଖା ପ୍ରଶାଖା ସ୍ଥାପନ କରି ପ୍ରତ୍ୟେକ କାର୍ଯ୍ୟକୁ ସୁଦୃଢ଼ ଓ ପ୍ରସାର କରିବାର ଅଦମ୍ୟ ଚେଷ୍ଟା ଚାଲିଛି। ଏ ସବୁ ପାଇଁ ନାନାପ୍ରକାର କଳ୍ପନା ଓ ଉପାୟ ଅବଲମ୍ବନ କରିବାର ସୋପାନ ମଧ୍ୟ ପ୍ରସ୍ତୁତ କରୁଛି। ସବୁବେଳେ ଉପଯୁକ୍ତ କର୍ମୀର ଅଭାବ ଅନୁଭବ କରୁଛି। ଯେଉଁ କେତେଜଣ କର୍ମୀ ରହି କାମ କରୁଛନ୍ତି, ସେମାନଙ୍କ କାର୍ଯ୍ୟରେ ମୁଁ ସନ୍ତୋଷ ଲାଭ କରିପାରୁ ନାହିଁ। ପ୍ରତ୍ୟେକ କାର୍ଯ୍ୟକୁ ନିରନ୍ତର ଭାବରେ ନିରୀକ୍ଷଣ କରି କାମ ଚଳେଇ ନେଉଛି। ଏପରି ପରିସ୍ଥିତିରେ ଆଶ୍ରମ ଛାଡ଼ି ଲବଣ ସତ୍ୟାଗ୍ରହରେ ଯୋଗ ଦେବାକୁ ସାହସ ହେଉନାହିଁ। ମନ ଦବି ଯାଉଛି। କାରଣ, ଓଡ଼ିଶାରେ କୌଣସି କାମ କରୁଥିବା ବ୍ୟକ୍ତିର କାର୍ଯ୍ୟ କାରଣକୁ ବିଚାର ନ କରି କାର୍ଯ୍ୟରେ କିଛି ତ୍ରୁଟି ଘଟିଲେ ସେଥିପାଇଁ ସମସ୍ତେ କ୍ରୂର ସମାଲୋଚନା କରନ୍ତି। ସାଧାରଣ କ୍ଷେତ୍ରରେ କାର୍ଯ୍ୟକରି ଓଡ଼ିଶାରେ କାହାଠାରୁ ସାହାଯ୍ୟ ସହାନୁଭୂତି ଲାଭ କରିବା ବଡ଼ କଠିନ।

ଓଡ଼ିଶାରେ ଯେତେବେଳେ ଘୋର ଅନ୍ଧକାର ସେତେବେଳେ ମୁଁ ଦଶପଲ୍ଲା କନ୍ଧମେଳି ସୃଷ୍ଟି କରାଇ ପାରିଥିଲି। ବହୁ ଭୟ ବିପଦପୂର୍ଣ୍ଣ ଅବସ୍ଥାରେ ମଧ୍ୟ ପ୍ରଲୋଭନକୁ ଏଡ଼ିଦେଇ ଜୀବନକୁ ବିପଦ ସଙ୍କୁଳ କରି ଓଡ଼ିଶା ଛାଡ଼ି ପଳାଇଥିଲି। ଓଡ଼ିଶାରେ ଆଶ୍ରୟ ପାଇ ନାହିଁ। ପୁଣି ଓଡ଼ିଶାକୁ ମହାତ୍ମାଗାନ୍ଧୀଙ୍କ ନିକଟରେ ପରିଚୟ କରାଇ

ପୁରୀ ଦୁର୍ଭିକ୍ଷ ପାଇଁ ମହାତ୍ମାଜୀଙ୍କ ସାହାଯ୍ୟ ଓ ଠକ୍କର ବାପାଙ୍କ ଓଡ଼ିଶା ଆଗମନ ଇତ୍ୟାଦି ଓଡ଼ିଶା ପାଇଁ ମୋ ଜୀବନରେ ପ୍ରଥମ ଓ ପ୍ରଧାନ କାର୍ଯ୍ୟ। ଠକ୍କର ବାପାଙ୍କ ଅନୁରୋଧରେ ଗାନ୍ଧୀଜୀ ପୁଣି ମତେ ପୁରୀ ଦୁର୍ଭିକ୍ଷ ଅଞ୍ଚଳରେ କାର୍ଯ୍ୟ କରିବା ପାଇଁ ଓଡ଼ିଶା ପଠାଇଥିଲେ। ସେହି ସମୟରୁ ଓଡ଼ିଶାରେ କାର୍ଯ୍ୟକରି ଓଡ଼ିଶାର ରାଜନୈତିକ ଜୀବନର ବିକାଶରେ ମୁଁ ମୋର ମନ ପ୍ରାଣ ଢ଼ାଳି ଦେଇ କାର୍ଯ୍ୟ କରି ଆସିଛି। ଓଡ଼ିଶା ବାହାରେ ମଧ୍ୟ ରାଜନୈତିକ କ୍ଷେତ୍ରରେ କାର୍ଯ୍ୟ କରିବାର ବହୁ ସୁବିଧା ସୁଯୋଗ ଲାଭ କରିଛି। ଏହିପରି କାର୍ଯ୍ୟକରି ଓଡ଼ିଶାରେ ମୁଁ ଯେଉଁ ଅଭିଜ୍ଞତା ଲାଭ କରିଛି, ତାହାହିଁ ଗାନ୍ଧୀସେବାଶ୍ରମ ସ୍ଥାପନ କରିବାର ମୁଖ୍ୟ କାରଣ। ଏହିସବୁ ଭାବି ମୁଁ ସ୍ପଷ୍ଟ ବୁଝି ପାରୁଛି ଯେ ଆଶ୍ରମର ବର୍ତ୍ତମାନ ଅବସ୍ଥାରେ ଏହାକୁ ଛାଡ଼ିଦେଇ ଲବଣ ସତ୍ୟାଗ୍ରହରେ ଯୋଗଦେଲେ, ଯେଉଁ (ଆଦର୍ଶ ଧରି ଗାନ୍ଧୀସେବାଶ୍ରମ ପ୍ରତିଷ୍ଠା କରିଛି ତାହା ଆଉ କାର୍ଯ୍ୟରେ ପରିଣତ ହୋଇ ପାରିବ ନାହିଁ। ଆଶ୍ରମର କାର୍ଯ୍ୟରେ ଉନ୍ନତି ଘଟିବା ଦୂରେ ଥାଉ ଆଶ୍ରମ ତିଷ୍ଠିବା ଅସମ୍ଭବ ହୋଇ ପଡ଼ିବ। ସୁତରାଂ ଆଶ୍ରମ ଛାଡ଼ିଦେଇ ସତ୍ୟାଗ୍ରହ ସଂଗ୍ରାମରେ ଯୋଗ ଦେବା ନ ଦେବା ପ୍ରଶ୍ନର ସମାଧାନ ମୋ ସମ୍ମୁଖରେ ବିରାଟ ଆକାର ଧାରଣ କଲା। ଦୁଇଚାରି ଦିନ ନୀରବରେ ବସିଗଲି। ପୂର୍ବରୁ ଲବଣ ସତ୍ୟାଗ୍ରହ ଓଡ଼ିଶାରେ ଆରମ୍ଭ କରିବାକୁ ମୁଁ ମୋର ପୂର୍ଣ୍ଣ ସମର୍ଥନ ଜଣାଇ ଦେଇଛି। ଦିନେ ଦୁଇଦିନ ପରେ ମୋର ମନ ଅତିଶୟ ଚଞ୍ଚଳ ହୋଇଉଠିଲା। ୧୯୧୧ ମସିହାରେ ଭାରତକୁ ସ୍ୱାଧୀନ କରିବାର ସ୍ୱପ୍ନ ଦେଖି ଦେଶ କାର୍ଯ୍ୟରେ ଜୀବନ ଦାନ କରିବାକୁ ସଂକଳ୍ପ କରିଥିଲି। କୌଣସି କାର୍ଯ୍ୟରେ ଫଳାଫଳ ପ୍ରତି ଦୃଷ୍ଟି ନ ରଖି ଆଗକୁ ମାଡ଼ିଯିବା ମୋର ପ୍ରକୃତି। କାର୍ଯ୍ୟରେ ଓ କଥାରେ ମୋର ଏପରି ଉଗ୍ର ପ୍ରକୃତି ସର୍ବତ୍ର ଓ ସର୍ବଦା ପ୍ରକାଶ ପାଇଛି। ଏଥିପାଇଁ ମତେ ସମସ୍ତେ ନିଆଁଗିଳା ଓ ଅସହିଷ୍ଣୁ ଲୋକ ବୋଲି କହନ୍ତି। ସୁତରାଂ ଏପରି ପ୍ରକୃତିର ଲୋକ କଦାପି ନିଆଁ ଲାଗିବାର ଦେଖିଲେ ନୀରବ ରହି ନପାରେ। ହଜାର ହଜାର ଲୋକ ଦେଶପାଇଁ କାର୍ଯ୍ୟ କରି ଜେଲ ଯାଉଥିବେ, ଏବଂ ଅଶେଷ ଦୁଃଖ ଯନ୍ତ୍ରଣା ଭୋଗ କରିବାରେ ପରମ ଆନନ୍ଦ ଅନୁଭବ କରୁଥିବେ, ଏସବୁ ଶୁଣି ଜାଣି ଆଶ୍ରମ କାର୍ଯ୍ୟକୁ ଜଗିବସିବା ପାଇଁ ମୋର ପ୍ରକୃତି ବିଦ୍ରୋହୀ ହୋଇ ଉଠିଲା। ଇତିମଧ୍ୟରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଧରା ହୋଇ ଦୁଇବର୍ଷ ଜେଲଦଣ୍ଡ ପାଇଲେଣି। ଆଚାର୍ଯ୍ୟ ହରିହର ଦାସ, ପ୍ରଥମ ବାହିନୀର ଅଧ୍ୟକ୍ଷ ଭାର ଗ୍ରହଣ କରି ଇଞ୍ଚୁଡ଼ି ଅଭିମୁଖେ ଧାବମାନ ହେଉଛନ୍ତି। କଟକରୁ ଦ୍ୱିତୀୟ ସେନାବାହିନୀ ଆସି ଚମ୍ପାପୁର ଆଶ୍ରମରେ ରାତି ଶିବିର ସ୍ଥାପନ କଲେ। ଶ୍ରୀ ମଦନମୋହନ ପଟ୍ଟନାୟକ ଦ୍ୱିତୀୟ ବାହିନୀର ସେନାପତି। ଏହି ଦ୍ୱିତୀୟ ବାହିନୀକୁ ବିଦାୟ ଦେଇ ମୁଁ ଆଶ୍ରମ ତ୍ୟାଗ କଲି। ଅପ୍ରେଲ ୧୩ ତାରିଖ ଦିନ କଟକରେ ଉପସ୍ଥିତ ହୋଇ କାଠଯୋଡ଼ି ନଦୀବାଲିରେ ବସିଥିବା ସଭାରେ ସଭାପତିର ଆସନ ଗ୍ରହଣ କରିଥିଲି।

# ସତ୍ୟାଗ୍ରହ ସଂଗ୍ରାମରେ ଯୋଗଦାନ

ଆଜି ଏପ୍ରିଲ ୧୩ ତାରିଖ, ଜାଲିଆନ୍‌ବାଗ୍ ଦିବସ। ଅଦ୍ୟ ଇଞ୍ଚୁଡ଼ି ରଣଭୂମିରେ ଲୁଣ ଆଇନ ଲଙ୍ଘନ କରି ଭାରତର ସ୍ୱାଧୀନତା ପାଇଁ ଓଡ଼ିଶାରେ ସତ୍ୟାଗ୍ରହ ସଂଗ୍ରାମ ଆରମ୍ଭ କରାଯିବ। ଆଜି ଦିନଟି ଗୋଟିଏ ଚିରସ୍ମରଣୀୟ ଦିନ। ଅଦ୍ୟ ଦିବସର ଘଟଣାବଳୀ ସହିତ ମୋର ପ୍ରତ୍ୟକ୍ଷ ସମ୍ବନ୍ଧ ରହିଛି। ସାବରମତୀ ଆଶ୍ରମରେ ହିଁ ରଓଲାଟ ସତ୍ୟାଗ୍ରହରେ ଯୋଗ ଦେଇଥିବାରୁ ଏ ସମସ୍ତ ଘଟଣା ଭିତର ଦେଇ ମୋର ଜୀବନ ଗଢ଼ି ଉଠିଛି। ପଞ୍ଜାବକୁ ଯାଇ ସେବାକାର୍ଯ୍ୟ କରିଛି ଏବଂ ଜେଲିଆନ୍‌ବାଗ୍ ହତ୍ୟାକାଣ୍ଡର ଭୟାବହ କାହାଣୀ ଭୁକ୍ତଭୋଗୀଙ୍କ ମୁଖରୁ ଶୁଣିଛି, ରକ୍ତାକ୍ତ ଦୃଶ୍ୟ ଆଖିରେ ଦେଖିଛି। ଏହିସବୁ ଘଟଣା ବର୍ଣ୍ଣନା କରି ସଭାରେ ମୁଁ ଗୋଟିଏ ଦୀର୍ଘ ବକ୍ତୃତା ଦେଇଥିଲି। ସଭାସ୍ଥଳରେ ଉତ୍ତେଜନା ସୃଷ୍ଟି ହୋଇଥିଲା। ଏହା କହିବା ବାହୁଲ୍ୟମାତ୍ର। ଏଣିକି ପ୍ରତିଦିନ ନଦୀବାଲିରେ ସଭା ହୁଏ। ନୂତନ ନୂତନ ସତ୍ୟାଗ୍ରହୀ ସେନାବାହିନୀଙ୍କୁ ବିଦାୟ ସଂବର୍ଦ୍ଧନା ଦିଆଯାଏ। ନିୟମ କରାଗଲା ଯେ ସେ ଥରେ ସଭାପତି ହେବେ, ସେ ଧରା ନ ହେବା ପର୍ଯ୍ୟନ୍ତ ଆଉ କେହି ସଭାପତିର ଆସନ ଗ୍ରହଣ କରିବେ ନାହିଁ। ସୁତରାଂ ପ୍ରତିଦିନ ସଭାରେ ମତେ ସଭାପତିର କାର୍ଯ୍ୟ ଚଳାଇବାକୁ ପଡ଼େ। ଇତିମଧ୍ୟରେ ପୁରୀରେ ସଭାସମିତି କରି ଜନସାଧାରଣଙ୍କ ମଧ୍ୟରେ ଟିକିଏ ଚହଳ ପକାଇବା ଆବଶ୍ୟକ ପଡ଼ିଲା। ଶ୍ରୀ ଅନନ୍ତ ପଟ୍ଟନାୟକ ପୁରୀରୁ ଆସି ମତେ ଡାକି ନେଲେ। କଟକ ଛାଡ଼ି ମୁଁ ପୁରୀ ସହରରେ ଉପସ୍ଥିତ ହୋଇ ସଭାସମିତିରେ ବକ୍ତୃତା ଦେବାକୁ ଆରମ୍ଭ କଲି। ସେଠାରେ ପୋଲିସ ଆଇନ ଜାରୀ କରାଯାଇ ସଭା କରି ବକ୍ତୃତା ଦେବାକୁ ନିଷେଧାଜ୍ଞା ଘୋଷଣା କରାଗଲା। ଏପରି ଆଇନକୁ ଅବଜ୍ଞା କରି ମୁଁ ବକ୍ତୃତା ଆରମ୍ଭ କଲି। ମତେ ଧରିବାକୁ ଓ୍ୱାରେଣ୍ଟ ବାହାରିଲା। କୌଣସି ସୂତ୍ରରେ ଏ ସମ୍ବାଦ ପାଇ ମୁଁ ପୁରୀ ଛାଡ଼ି କଟକ ଚାଲିଆସିଲି। କାରଣ କେତୋଟି ବକ୍ତୃତା ଦେଇ ଧରାପଡ଼ି ଜେଲ ଯିବାରେ କିଛି ବିଶେଷତ୍ୱ ରହିଲା ନାହିଁ। କିଛି ଆଉ ଅଧିକ କାମ କରିବା ଦରକାର। ଏହି ଭାବନାରେ ପ୍ରଭାବିତ ହୋଇ ଶୁଣିଲି, ମତେ ଧରିବାକୁ ପୋଲିସ ଖୋଜୁଛନ୍ତି ଏବଂ ମୋ ନାମରେ ଓ୍ୱାରେଣ୍ଟ ଜାରୀ ହୋଇଗଲାଣି। ସୁତରାଂ କଟକ ସହର ଛାଡ଼ି ମଫସଲ ଅଞ୍ଚଳକୁ ଚାଲିଲି। ବିଭିନ୍ନ ଥାନାର ପଲ୍ଲୀ ଅଞ୍ଚଳରେ ବୁଲି ବୁଲି ବକ୍ତୃତା ଦେଉଥାଏ ଏବଂ ସତ୍ୟାଗ୍ରହ ସଂଗ୍ରାମକୁ ଧନ, ଜନ ଇତ୍ୟାଦି ସବୁ ପ୍ରକାର ସାହାଯ୍ୟ କରିବାକୁ ଲୋକଙ୍କୁ ବୁଝାଉଥାଏ। ଏହା ଜାଣି ପୋଲିସ ମୋତେ ଗୋଡ଼ାଇ ଧରିବାକୁ ପ୍ରବଳ ଚେଷ୍ଟା କଲେ। ଓ୍ୱାରେଣ୍ଟ ଧରି ପୋଲିସ ଗୋଟିଏ ଥାନାରୁ ଅନ୍ୟ ଥାନାକୁ ଦୌଡ଼ୁଥାନ୍ତି। ଓ୍ୱାରେଣ୍ଟ ଧରି ପୋଲିସ ଥାନାରେ ଉପସ୍ଥିତ ହେବାର ସମ୍ବାଦ ମୁଁ ଜାଣି ପାରିଲେ, ସେ ଥାନା ଛାଡ଼ି ଅନ୍ୟ ଥାନାକୁ ପଳାଇ ଯାଏ। ଦିନତମାମ ଲୁଚି ରହେ, ରାତ୍ର ହେଲେ

ଗ୍ରାମକୁ ଗ୍ରାମ ବୁଲି ସତ୍ୟାଗ୍ରହ ବାଣୀ ପ୍ରଚାର କରେ। ଏହିପରି କିଛି ସମୟ ମାହାଙ୍ଗା, ସାଲେପୁର ଓ ବଡ଼ଚଣା ଇତ୍ୟାଦି ଥାନାରେ କାମ କଲାପରେ କଟକରେ ଉପସ୍ଥିତ ହୋଇ ପୋଲିସ ନିକଟରେ ଆତ୍ମସମର୍ପଣ କରିଥିଲି। ଏହି ଆତ୍ମସମର୍ପଣ କାର୍ଯ୍ୟ ମଧ୍ୟ ଏକପ୍ରକାର ନାଟକୀୟ ଭାବରେ ପରିଣତ ହୋଇଥିଲା। କଟକର କାଠଯୋଡ଼ି ନଦୀବାଲିରେ ଯେଉଁଠାରେ ସଭା କରି ବକ୍ତୃତା ଦେଉଥିବାରୁ ମୋ ନାମରେ ଓ୍ୱାରେଣ୍ଟ ବାହାରିଛି, ସେହି ସ୍ଥାନରେ ଗୋଟିଏ ସଭାର ଆୟୋଜନ କରାଯାଇଥିଲା। ସଭା ବସିଛି, ଅନ୍ୟ ଜଣେ ଦୁଇଜଣ କିଛି କହିବା ପରେ ମୁଁ ହଠାତ୍ ସଭା ଭିତରୁ ବାହାରିପଡ଼ି ବକ୍ତୃତା ଦେବାକୁ ଆରମ୍ଭ କରିଦେଲି। ମତେ ଏପରି ଅଚାନକ ଭାବରେ ସଭାରେ ବକ୍ତୃତା ଦେବାର ଦେଖି ପୋଲି ବିବ୍ରତ ହୋଇ ପଡ଼ିବାର ଜଣାଗଲା। ଓ୍ୱାରଣ୍ଟ ପରମାନା ନ ଶୁଣାଇ ପୋଲିସ ମତେ ଧରି ନ ପାରନ୍ତି। ସୁତରାଂ ଓ୍ୱାରଣ୍ଟ ଆଣିବାକୁ ପୋଲିସ ଥାନାକୁ ଦଉଡ଼ିଲେ। ଓ୍ୱାରଣ୍ଟ ଧରି ଫେରିଲା ବେଳକୁ ମୁଁ ମୋର ବକ୍ତୃତା ଶେଷ କରିଛି। ଶେଷରେ ମୁଁ କହିଲି, ଆଜି ଭାରତମାତାର ମୁକ୍ତି ପାଇଁ ସଂଗ୍ରାମ ଆରମ୍ଭ ହୋଇଛି। ଭାରତମାତାର ହାତ ପାଦ ଲୁହା ଶିକୁଳିରେ ବନ୍ଧା। ମା' ବିକଳ ହୋଇ ଉଚ୍ଚସ୍ୱରରେ ଚିତ୍କାର କରୁଛି। ସନ୍ତାନଗଣ, ମତେ ଶୀଘ୍ର ଉଦ୍ଧାର କର। ମା'ର କରୁଣ କ୍ରନ୍ଦନ ଶୁଣି ମୁଁ ଅଧୀର ହୋଇ ପଡ଼ିଛି। ମା'ର ମୁକ୍ତିପାଇଁ ମୁଁ ଆଜି ନିଜକୁ ସମର୍ପଣ କରୁଛି। ଇଂରେଜ ସରକାରଙ୍କ ଦୂତ ମତେ ବାନ୍ଧି ନେବାକୁ ଆସିଲେଣି। ଭାରତମାତାର ମୁକ୍ତି ପାଇଁ ନିଜକୁ ବଳିଦାନ କରିବାକୁ ଆତ୍ମସମର୍ପଣ କଲି। ଏହା କହି ପୋଲିସ ନିକଟ ଦୌଡ଼ିଯାଇ ମୋ ବେକରେ ପଡ଼ିଥିବା ଫୁଲମାଳାଟିକୁ ପୋଲିସ ବେକରେ ଗଳାଇ ଦେଲି ଏବଂ ହାତଯୋଡ଼ି ନତମସ୍ତକରେ ବସିପଡ଼ି ପୋଲିସ ମୁହଁକୁ ଚାହିଁ ରହିଲି। ସଭାରେ ସମସ୍ତଙ୍କ ଆଖି ଛଳ ଛଳ ହୋଇଗଲା। ପୋଲିସଙ୍କ ହୃଦୟ ମଧ୍ୟ ଦ୍ରବୀଭୂତ ହୋଇ ପଡ଼ିବାର ବୋଧ ହେଲା। ଚାକିରି କରିଥିବାରୁ କର୍ତ୍ତବ୍ୟର ତାଡ଼ନାରେ ବଶୀଭୂତ ହୋଇ ପୋଲିସ ମତେ ଧରି ଥାନାରେ ହାଜର କଲେ। ତାପରେ ମୋର ବିଚାର ହୋଇ ମତେ ଦୁଇବର୍ଷ ସଶ୍ରମ କାରାଦଣ୍ଡ ପୁରସ୍କାର ମିଳିଲା।

## ଜେଲରେ ସ୍ୱରାଜ୍ୟ କଏଦୀ

ଜେଲଖାନାକୁ ଆମ୍ଭେମାନେ ବିଶ୍ରାମାଗାର ବୋଲି ମନେ କରୁ। ଜେଲ ବାହାରେ ଅନବରତ କାର୍ଯ୍ୟ କରିବାକୁ ପଡ଼େ। ଟିକିଏ ବିଶ୍ରାମ କରିବାକୁ ସମୟ ନ ଥାଏ, କିମ୍ବା ବିଶ୍ରାମ ନେବାକୁ ମନ ମଧ୍ୟ ଡାକେ ନାହିଁ। ଜେଲ ଭିତରେ କିଛି କାମ କରିବାକୁ ପଡ଼େ ନାହିଁ। କାମ କରିବାକୁ ମନ ମଧ୍ୟ କହେ ନାହିଁ। ସୁତରାଂ ଜେଲକୁ ବିଶ୍ରାମାଗାର ନ କହି ଆଉ କଣ କୁହାଯିବ। ଜେଲ ଭିତରେ ଆମ୍ଭେମାନେ ସ୍ୱରାଜୀ କଏଦୀ।

ସ୍ୱରାଜୀ ଅର୍ଥ ରାଜନୈତିକ ବନ୍ଦୀ। ସାଧାରଣ କଏଦୀକୁ ଯେତେ କଟକଣାରେ ରହିବାକୁ ପଡ଼େ, ସ୍ୱରାଜୀ କଏଦୀଙ୍କ ପାଇଁ କେତେ କଟକଣା ନ ଥାଏ। କଟକ ଜେଲ ଭିତରେ ଶ୍ରୀ ରାଜକୃଷ୍ଣ ବୋଷ ମୋ ପୂର୍ବରୁ ଦୁଇବର୍ଷ ଜେଲଦଣ୍ଡ ପାଇ ରହିଥିଲେ। ମୋ ପରେ ଶ୍ରୀ ଯଦୁମଣି ମଙ୍ଗରାଜ ଆସିଲେ। କିଛି ସମୟ ପରେ ଆମ୍ଭେମାନେ ବିହାର ପ୍ରଦେଶର ହଜାରୀବାଗ ଜେଲକୁ ଚାଲି ଯାଇଥିଲୁ। ସ୍ୱରାଜୀ କଏଦୀସବୁଙ୍କୁ କ, ଖ ଓ ଗ ଏପରି ତିନି ଶ୍ରେଣୀରେ ବିଭାଗ କରାଇ ଥାଏ। କ ଓ ଖ ଶ୍ରେଣୀ କଏଦୀ ହଜାରୀବାଗ, ଗ ଶ୍ରେଣୀ କଏଦୀ ପାଟଣା କ୍ୟାମ୍ପ ଜେଲରେ ରହୁଥାନ୍ତି। ବିହାର-ଓଡ଼ିଶା ଗୋଟିଏ ପ୍ରଦେଶ ହୋଇଥିବାରୁ ଓଡ଼ିଶାର ରାଜବନ୍ଦିମାନେ ବିହାରରେ ଥିବା ହଜାରୀବାଗ ଓ ପାଟଣା କ୍ୟାମ୍ପ ଜେଲକୁ ଶ୍ରେଣୀ ବିଭାଗ ଅନୁସାରେ ପଠାଯାଉଥାନ୍ତି।

ରାଜବନ୍ଦିମାନଙ୍କୁ ରଖିବାପାଇଁ ହଜାରୀବାଗ ଜେଲ ତିଆରି ହୋଇଛି। ପ୍ରତ୍ୟେକ ବନ୍ଦୀପାଇଁ ଗୋଟିଏ କରି କୋଠରୀ। ଜେଲ ସବୁ କେତେଗୁଡ଼ିଏ ଭିନ୍ନ ଭିନ୍ନ ଖୁଆଡ଼ରେ ବିଭକ୍ତ। ପ୍ରତ୍ୟେକ ଖୁଆଡ଼ରେ ତିରିଶଟି କୋଠରୀ। ହଜାରୀବାଗ ଜେଲରେ ତିନିନମ୍ବର ଖୁଆଡ଼ରେ କେବଳ ଓଡ଼ିଶାର ରାଜବନ୍ଦୀ ରହୁଥିବାରୁ ଏହାର ନାମକରଣ ହେଲା ଓଡ଼ିଆପଡ଼ା। ଏହି ଓଡ଼ିଆପଡ଼ାରେ ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାସ, ଶ୍ରୀ ହରେକୃଷ୍ଣ ମହତାବ, ଶ୍ରୀ ନନ୍ଦକିଶୋର ଦାସ, ଶ୍ରୀ ଯଦୁମଣି ମଙ୍ଗରାଜ, ଶ୍ରୀ ରାଜକୃଷ୍ଣ ବୋଷ, ଶ୍ରୀ କୃପାସିନ୍ଧୁ ହୋତା, ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ, ଶ୍ରୀ ଗୋପବନ୍ଧୁ ଚୌଧୁରୀ ପ୍ରଭୃତି ମିଶି ଆମ୍ଭେମାନେ ପ୍ରାୟ ଚବିଶି ଜଣ ପର୍ଯ୍ୟନ୍ତ ଏକତ୍ର ରହିଥାଉ। କେବେ କିପରି ଦୁଇ ଚାରିମାସ ଜେଲଦଣ୍ଡ ପାଇ ଓଡ଼ିଶାରୁ ଆସି ଆମମାନଙ୍କ ନିକଟରେ ରହନ୍ତି, ମିଆଦ୍ ପୂରିଗଲେ ଚାଲିଯାନ୍ତି। ସମସ୍ତ ହଜାରୀବାଗ ଜେଲଟି ରାଜବନ୍ଦି ମାନଙ୍କ ଦ୍ୱାରା ପୂର୍ଣ୍ଣ। ଅଧିକାଂଶ ବିହାରର ରାଜବନ୍ଦୀ। ବାବୁ ରାଜେନ୍ଦ୍ରପ୍ରସାଦ ଓ ସୀମାନ୍ତ ଗାନ୍ଧୀ, ଗଫାର ଖା ଏହିଠାରେ ଆସି ରହିଲେ। କେହି ବିଶିଷ୍ଟ ନେତା ଜେଲରେ ପ୍ରବେଶ କରୁଥିବାର ଜଣାପଡ଼ିଲେ, ଜୟ ଶବ୍ଦ ଧ୍ୱନିରେ ଜେଲଖାନା ଥରି ଉଠୁଥାଏ। ଆମ୍ଭେମାନେ ଜେଲଖାନାରେ ରହିଲେ ମଧ୍ୟ ମନ ଜେଲ ଭିତରେ ନ ଥାଏ। ଦେଶରେ ଘଟୁଥିବା ଘଟଣାମାନଙ୍କର ସବିଶେଷ ସମ୍ବାଦ ଜାଣିବା ପାଇଁ ମନ ବ୍ୟଗ୍ର ହୋଇ ଉଠେ। ବିହାରରୁ ବହୁତ ରାଜବନ୍ଦୀ ହଜାରୀବାଗ ଜେଲକୁ ଆସୁଥାନ୍ତି। ଏହା ଜାଣି ଓ ଦେଖି ମୋ ମନରେ ଦୁଃଖ ହୁଏ। ବିହାରରୁ କେତେ ଉଚ୍ଚ ଶିକ୍ଷିତ, ଧନୀ, ବ୍ୟବସାୟୀ, ଜମିଦାର, ଓକିଲସବୁ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗଦେଇ ଜେଲ ବରଣ କରିଛନ୍ତି। କିନ୍ତୁ ଓଡ଼ିଶାରୁ ଏହି ଶ୍ରେଣୀର ଲୋକ ଦେଖିବାକୁ କେହି ନାହାନ୍ତି କହିଲେ ଚଳେ। କ ଶ୍ରେଣୀରେ ଓଡ଼ିଶାରୁ କେବଳ ଜଣେ ମାତ୍ର ପଣ୍ଡିତ ନୀଳକଣ୍ଠ ଦାସ, ଆଉ ଆମ୍ଭେମାନେ କେତେଜଣ ମୁଷ୍ଟିମେୟ ବ୍ୟକ୍ତି ଖ

ଶ୍ରେଣୀୟ ରାଜବନ୍ଦୀ। ଓଡ଼ିଶାର ରାଜନୈତିକ ଜୀବନ ସବ ଶ୍ରେଣୀର ଲୋକଙ୍କୁ ସ୍ପର୍ଶ କରିପାରି ନାହିଁ ଏହାହିଁ ପ୍ରମାଣିତ ହେଉଛି। ଏହି ପରି ଭାବନା ବେଳେ ବେଳେ ମନକୁ ଅଭିଭୂତ କରେ। ଦେଶର ସ୍ୱାଧୀନତା ପାଇଁ ଅହିଂସାପୂର୍ଣ୍ଣ ସତ୍ୟାଗ୍ରହ ସଂଗ୍ରାମରେ ଯୋଗଦେଇ ଆମ୍ଭେମାନେ କାରାଗାରରେ ବନ୍ଦୀ ହୋଇ ରହିଛୁ। ସୁତରାଂ ସତ୍ୟାଗ୍ରହ ସଂଗ୍ରାମ ସମଗ୍ର ଦେଶରେ କିପରି ଆକାର ଧାରଣ କରୁଛି ତାହା ଜାଣିବାପାଇଁ ମନ ଉଦ୍‌ବିଗ୍ନ ହେବା ସ୍ୱାଭାବିକ। ଗୁଜରାଟରେ ମହାତ୍ମାଗାନ୍ଧୀ କଣ କଲେ ଏବଂ କିପରି ଧରାହେଲେ, ଇତ୍ୟାଦି ସମ୍ବାଦ ଜାଣିବାକୁ ସ୍ୱତଃ ମନ ଚଞ୍ଚଳ ହୋଇ ଉଠେ।

## ସରକାରଙ୍କ ଦମନଲୀଳା

ଇଂରେଜ ସରକାର ପ୍ରଥମେ ଏହି ଆନ୍ଦୋଳନ ପ୍ରତି ଅବଜ୍ଞା ପ୍ରକାଶ କରୁଥିଲେ। ଦେଶର ନରମପନ୍ଥୀ ଲୋକେ ଉପହାସ କରି କହୁଥିଲେ, ଲୁଣମାରି ଦେଶକୁ ସ୍ୱାଧୀନ କରାଯାଇ ନ ପାରେ। ସୁତରାଂ କଂଗ୍ରେସର ଏହି ଲୁଣମରା ଆନ୍ଦୋଳନ ପ୍ରତି ଭ୍ରୂକ୍ଷେପ ନ କଲେ, ତାହା ଧୀମେଇ ଯାଇ ଶେଷରେ ଆପଣା ମନକୁ କୁଆଡ଼େ ମିଳେଇ ଯିବ। କିନ୍ତୁ ଲବଣ ସତ୍ୟାଗ୍ରହ ଧୀମେଇ ନ ଯାଇ ପ୍ରବଳ ଆକାର ଧାରଣ କଲା। ସରକାରଙ୍କର ଧୈର୍ଯ୍ୟଚ୍ୟୁତି ଘଟିଲା। କଂଗ୍ରେସ ଲୋକେ ଲୁଣ ମାରି ତାକୁ ଆଣି ଡାଣ୍ଡ ବଜାରରେ ବିକ୍ରି କରିବେ, ଏହା ସରକାର କେତେଦିନ ସହ୍ୟ କରିବେ। ସୁତରାଂ ଏହି ଆନ୍ଦୋଳନ ସମୂଳେ ଉତ୍ପାଟନ କରିବାପାଇଁ ସରକାର ନାନା ଉପାୟ ଅବଲମ୍ବନ କଲେ। ସ୍ଥାନେ ସ୍ଥାନେ ଲାଠି ଓ ଗୁଳି ଚଳାଇ ସତ୍ୟାଗ୍ରହୀମାନଙ୍କୁ ଛତ୍ରଭଙ୍ଗ କରିବାକୁ ଚେଷ୍ଟା କରାଗଲା। ସରକାରଙ୍କ ଦମନନୀତି ସୀମାଡିଙ୍ଗ୍ରମ କରିବାକୁ ବସିଲା। ଏହା ଦେଖି ମହାତ୍ମାଗାନ୍ଧୀ ସଂଗ୍ରାମକୁ ଅଧିକ ଦୃଢ଼ ଓ ବଳଶାଳୀ କରିବାକୁ କଳ୍ପନା କଲେ। ମହାତ୍ମାଜୀଙ୍କ ବିଶ୍ୱାସ ଭାରତବାସୀ ଭୀରୁ ହୋଇ ଆତ୍ମବିଶ୍ୱାସ ହରାଇ ବସିଥିବାରୁ ଇଂରେଜୀ ସରକାର ଏ ଦେଶ ରାଜତ୍ୱ କରୁଛି। (ଭାରତବାସୀର ହୃଦୟରୁ ଭୟ ଯେଉଁ ଦିନ ଦୂର ହେବ ଏବଂ ସେ ତାର ଅଧିକାର ଓ କ୍ଷମତା ବୁଝିପାରିବ, ସେଦିନ ଇଂରେଜୀ ସରକାର ଏ ଦେଶରୁ ସ୍ୱଇଚ୍ଛାରେ ଅପସରି ଯିବ। ଭାରତ ବାସୀର ହୃଦୟରୁ ଭୟ ଦୂର କରାଇ ଆତ୍ମବିଶ୍ୱାସ ଜନ୍ମାଇବା ପାଇଁ ସତ୍ୟାଗ୍ରହ ସଂଗ୍ରାମର ପରିକଳ୍ପନା। ଇଂରେଜୀ ସରକାର ବିଶ୍ୱାସ କରନ୍ତି, ଜେଲ ଲାଠିମାଡ଼ ଏବଂ ଶେଷରେ ତୋପ ବନ୍ଧୁକ ଓ ଉଡ଼ାଜାହାଜ ସାହାଯ୍ୟରେ ଜନସାଧାରଣଙ୍କୁ ଭୟଭୀତ କରାଇ ସ୍ୱରାଜ୍ୟ ପ୍ରାପ୍ତିପାଇଁ ଭାରତବାସୀର ସମସ୍ତ ପ୍ରକାର ଚେଷ୍ଟାକୁ ପଣ୍ଡ କରିଦେବେ। ସ୍ୱରାଜ୍ୟ ପ୍ରାପ୍ତି କରିବାକୁ ହେଲେ, ସେଥିପାଇଁ ଜେଲଦଣ୍ଡ ଲାଠି ଓ ଗୁଳିମାଡ଼ରେ ଯେଉଁ ଦୁଃଖ କଷ୍ଟ ଭୋଗ କରିବାକୁ ହୁଏ ତାହା ଯଥେଷ୍ଟ ନୁହେଁ। ଭାରତବାସୀ ପରାଧୀନତାକୁ ମାନି ନେଇ ଯେଉଁ ପାପ କରିଛି ସେଥିପାଇଁ ପୂର୍ଣ୍ଣମାତ୍ରାରେ

ଆତ୍ମବଳି ନ ଦେଲେ ପାପର ପ୍ରାୟଶ୍ଚିତ୍ତ ହେବ ନାହିଁ। ପୂର୍ଣ୍ଣମାତ୍ରାରେ ଆତ୍ମ-ବଳିଦାନ କରିବା ପାଇଁ ସାଧନ ଓ ମାର୍ଗ ବଛାଯିବା ଦରକାର। ସରକାରଙ୍କ ଶକ୍ତି ଅସୀମ। ସରକାର ତାଙ୍କର ସମସ୍ତ ଶକ୍ତି ଖଟାଇବାକୁ ଯେପରି ବାଧ୍ୟ ହେବେ ସେପରି ଅବସ୍ଥା ସୃଷ୍ଟି କରିବାକୁ ପଡ଼ିବ। ଜନଶକ୍ତି ସହିତ ସରକାରଙ୍କ ଶକ୍ତିର ବଳ କଷାକଷି ହୋଇଯିବା ନିହାତି ଦରକାର। ଏଥିପାଇଁ ଲୁଣଗୋଲା ଆକ୍ରମଣର ପରିକଳ୍ପନା। ଗୁଜରାଟ ପ୍ରଦେଶର ସୁରଟ ଜିଲାରେ ଧର୍ଷଣା ନାମକ ସ୍ଥାନରେ ସରକାରଙ୍କର ଗୋଟିଏ ବୃହତ ଲୁଣଗୋଲା ଅଛି। ଏହି ଲୁଣଗୋଲାକୁ ଆକ୍ରମଣ କରି ଲୁଣ ଲୁଟ୍ କରି ନେବାକୁ ମହାତ୍ମାଗାନ୍ଧୀ ଘୋଷଣା କଲେ।

## ସଂଗ୍ରାମର ଚିତ୍ର

ଇଂରେଜୀ ସରକାରଙ୍କ ଅନ୍ୟାୟ ଓ ଯଥେଚ୍ଛାପୂର୍ଣ୍ଣ ଦମନ ନୀତିର ଉତ୍ତର ଦେବାପାଇଁ ସତ୍ୟାଗ୍ରହ ସଂଗ୍ରାମକୁ ଅଧିକ ଉଗ୍ର କରାଇବା ଉଦ୍ଦେଶ୍ୟରେ ଗାନ୍ଧୀଜୀଙ୍କ ଲୁଣଗୋଲା ଆକ୍ରମଣର ପରିକଳ୍ପନା। ଏହି ଧର୍ଷଣା ଲୁଣଗୋଲା ଆକ୍ରମଣର ପରିକଳ୍ପନା ସତ୍ୟାଗ୍ରହ ସଂଗ୍ରାମରେ ଗୋଟିଏ ନୂତନ କୌଶଳ ଓ ଗୋଟିଏ ନୂତନ ପ୍ରେରଣା। କିନ୍ତୁ କୌଣସି ନୂତନ ପନ୍ଥା ଅବଲମ୍ବନ କରିବାକୁ ଯିବା ପୂର୍ବରୁ ଗାନ୍ଧୀଜୀ ତାହା ଅପର ପକ୍ଷକୁ ଜଣାଇ କିଛି କରନ୍ତି ନାହିଁ କିମ୍ବା କହନ୍ତି ନାହିଁ ମଧ୍ୟ। ସତ୍ୟାଗ୍ରହ ସଂଗ୍ରାମର ଏହାହିଁ ହେଉଛି ବିଶେଷତ୍ୱ। କାରଣ ଏହାହିଁ ସତ୍ୟର ସଂଗ୍ରାମ। ସତ୍ୟକୁ ଲୁଚାଇ କିଛି କରିବା ସତ୍ୟାଗ୍ରହର ନୀତି ନୁହେଁ। ସୁତରାଂ ଧର୍ଷଣା ଲୁଣଗୋଲା ଆକ୍ରମଣ କରିବା ପୂର୍ବରୁ ଗାନ୍ଧୀଜୀ ତାହା ବଡ଼ଲାଟ ଲର୍ଡ଼ ଇରଉଇନ୍ ସାହେବଙ୍କୁ ଜଣାଇ ଦେଇଥିଲେ। ବଡ଼ଲାଟ ସାହେବଙ୍କୁ ଗାନ୍ଧୀଜୀ କଣ ଲେଖିଲେ ତାହା ଏଠାରେ ଉଲ୍ଲେଖ କରିବା ଆବଶ୍ୟକ ମନେ କରୁନାହିଁ। ଯେଉଁସବୁ ଘଟଣା ମୋ ଜୀବନକୁ ପ୍ରଭାବିତ କରିଛି ଏବଂ ଆମ୍ଭ ସମସ୍ତଙ୍କ ଜୀବନରେ ଅସୀମ ରେଖାପାତ କରିଛି ତାହାହିଁ କେବଳ ଉଲ୍ଲେଖ କରୁଛି।

ଧର୍ଷଣା ଲୁଣାଗୋଲା ଆକ୍ରମଣ କରିବାର ଆଦେଶ ଏକ ଭୀଷଣ ଅଗ୍ନିପରୀକ୍ଷା। ଏପରି ଏକ ଭୀଷଣ ପରୀକ୍ଷାର ସମ୍ମୁଖୀନ ହେବା ପାଇଁ ଗାନ୍ଧୀଜୀ ଦେଶବାସୀଙ୍କୁ ଆହ୍ୱାନ କରିବାରେ ମହତ୍ତ୍ୱ କେଉଁଠାରେ ଏହି ଭାବନା ମୋର ମନକୁ ଅତିଶୟ ଚଞ୍ଚଳ କଲା। ମୋ ମନରେ ଯେଉଁସବୁ ଭାବନା ଜାଗି ଉଠିଥିଲା ଏବଂ ଲବଣ ସତ୍ୟାଗ୍ରହର ଯେଉଁ ଚିତ୍ର ମୋ ଆଖି ଆଗରେ ନାଚି ଉଠିଲା ତାହା ବର୍ଣ୍ଣନା ନ କରି ରହି ପାରୁନାହିଁ। ସରକାରୀ କର୍ମଚାରୀ ଚାହିଁଥିବେ ସେମାନଙ୍କ ଆଖି ଆଗରେ ଲୁଣ ଆଇନ ଭଙ୍ଗ କରି ଲୁଣ ମାରି ଲୋକେ ନେଇ ଯାଉଥିବେ। ଏହା ଅଧିକ ଦିନ ସହ୍ୟ କରିବା ସେମାନଙ୍କ ପକ୍ଷରେ ଅସମ୍ଭବ। କାରଣ ତାହା

ସମ୍ଭବ ହେଲେ ସରକାର ଅସ୍ତିତ୍ୱ ନ ଥିବାର ପ୍ରମାଣିତ ହୋଇଯିବ। ସୁତରାଂ ଲୋକଙ୍କୁ ଧରି ଜେଲ ଦେଲେ। ଜେଲ, ଜୋରିମାନା, ଲାଠିମାଡ଼, ଶେଷରେ ଗୁଳି ପର୍ଯ୍ୟନ୍ତ ଚାଲିଲା। କିନ୍ତୁ ଆନ୍ଦୋଳନ ଦବିଗଲା ନାହିଁ। ଏଥିରେ ଲୋକେ ଡରିଲେ ନାହିଁ। ଲୁଣ ମାରି ସେହି ଲୁଣକୁ ବିକ୍ରି କରିବା କାର୍ଯ୍ୟକୁ ଲୋକେ ପରମ ଭାଗ୍ୟ ବୋଲି ବିବେଚନା କଲେ। ସତ୍ୟାଗ୍ରହୀମାନେ ହାତରେ ଯେଉଁ ଲୁଣ ମୁଠାକ ଧରୁଛନ୍ତି, ତାକୁ ସେମାନେ ନିଜର ଜୀବନଠାରୁ ଅଧିକ ମୂଲ୍ୟବାନ ବୋଲି ବିବେଚନା କରୁଛନ୍ତି। ପୋଲିସ ସେମାନଙ୍କୁ ଧରି ନିର୍ଘୃମ ମାଡ଼ ଦେଉଛି। ତଳେ ପକାଇଦେଇ ଘୋଷାରୁଛି, ତଥାପି ସତ୍ୟାଗ୍ରହୀ ଲୁଣ ଛାଡ଼ି ଦେଉ ନାହିଁ। ଲୁଣ ଛଡ଼ାଇବା ପାଇଁ ସତ୍ୟାଗ୍ରହୀମାନଙ୍କ ହାତମୁଠାକୁ ଧରି ପୋଲିସ ଠେଙ୍ଗାରେ ଛେଚୁଛି। ଏହି ଛେଚାମାଡ଼ରେ ହାତ ଫାଟି ରକ୍ତ ବୋହି ଯାଉଛି। ତଥାପି ସତ୍ୟାଗ୍ରହୀ ଲୁଣ ଛାଡୁନାହିଁ। ଲୁଣ ଛାଡ଼ିଦେଲେ ତଥା ହାତମୁଠା ଫିଟାଇଦେଲେ, ହାର ହେଲା ଏବଂ ଦେଶ ଓ ଜାତିର ଗୌରବ କ୍ଷୁର୍ଣ୍ଣ ହେଲା ବୋଲି ସତ୍ୟାଗ୍ରହୀ ମନେ କରୁଛି। କାରଣ ଆଜି ଦେଶ ଓ ଜାତିର ମାନ, ମର୍ଯ୍ୟାଦା ଓ ଗୌରବର ପ୍ରତୀକ ହେଉଛି ଏହି ଲୁଣ। ଏଥିପାଇଁ ମହାତ୍ମାଗାନ୍ଧୀ ଘୋଷଣା କରୁଛନ୍ତି, "ହାତ ମୁଠା ଭାଙ୍ଗିଯାଉ କିନ୍ତୁ ମୁଠା ନ ଫିଟୁ।"

କିନ୍ତୁ ହାତ ମୁଠା ଭାଙ୍ଗି ନିର୍ଯ୍ୟାତନା ସହିବାର ସୀମା ଅଛି। ଏପରି ନିର୍ଯ୍ୟାତନା ଭାରତବାସୀ କେତେଦିନ ସହ୍ୟ କରିବ। ଆଜି ଏକ ମହାନ ଆଦର୍ଶ ଧରି ଭାରତବାସୀ ଠିଆ ହୋଇଛି ବିଦେଶୀ ଶାସନର କବଳରୁ ଦେଶକୁ ଉଦ୍ଧାର କରିବା ପାଇଁ ସେ ଆଜି ଦୃଢ଼ ସଂକଳ୍ପ କରିଛି। କାରଣ ତାର ନିଜ ଦେଶରେ ତାର ସ୍ଥାନ ନାହିଁ। ସେ ଆଜି ଦୀନ, ଦରିଦ୍ର ଓ ନିଃସ୍ୱ। ତା ଦେଶର ପାଣି, ପବନ, ମାଟି ପଥର ଆଉ ତାର ନୁହେଁ। ଯେଉଁ ମାଟି ଓ ପାଣିରୁ ଲୁଣ ମାରି ଖାଇଲେ ସେ ସୁସ୍ଥ ଓ ସବଳ ହେବ ସେଥିରେ ତାର କୌଣସି ଅଧିକାର ନାହିଁ। ଗରିବ ଭାରତବାସୀ ସମୁଦ୍ରରୁ ଲୁଣମାରି ଖାଇଲେ ସମୁଦ୍ରରୁ ପାଣି ଶୁଖିଯିବ ନାହିଁ ଏବଂ ତାର ଘର ଓ ଗ୍ରାମର ମାଟିରୁ ଲୁଣ ଆମଦାନୀ କରି ବ୍ୟବହାର କଲେ ପୃଥିବୀର କିଛି ଅଙ୍ଗହାନି ଘଟିବ ନାହିଁ। ଲୁଣ ପାହାଡ଼ସବୁ ଅଛି ସେଥିରେ କେହି ହାତ ଦେଇ ପାରିବେ ନାହିଁ। ମାଟି, ପାଣି, ପାହାଡ଼ସବୁ ବିଦେଶୀ ସରକାରଙ୍କ ଆଇନରେ ବନ୍ଧା। ଏହି ଅନ୍ୟାୟ ଆଇନକୁ ମୁଣ୍ଡପୋତି ନୀରବରେ ମାନି ନେବାକୁ ଭାରତବାସୀ ଆଉ ପ୍ରସ୍ତୁତ ନୁହେଁ। ସେ ଆଜି ବିଦ୍ରୋହୀ ହୋଇ ଉଠିଛି। ବିଦ୍ରୋହ କରିବା ପାଇଁ ତାର ପ୍ରକୃତି ତାକୁ ଆହ୍ୱାନ କରୁଛି। ଭାରତବାସୀର ବିଦ୍ରୋହ ହେଉଛି ତାର ପ୍ରକୃତିଗତ ଲକ୍ଷଣ। ଏଥିରେ ଦ୍ୱେଷ ନାହିଁ, ହିଂସା ନାହିଁ ଏବଂ କାହାରି ଅନିଷ୍ଟ ସାଧନ କରିବାର କଳ୍ପନା ମଧ ନାହିଁ।

## ଧର୍ଷଣା ଲୁଣଗୋଲା ଆକ୍ରମଣ ପରିକଳ୍ପନା

ଏହି କାରଣରୁ ଲାଠିମାଡ଼ ଖାଇବାରେ ସତ୍ୟାଗ୍ରହୀ ଗୌରବ ମନେ କରୁଛି। ଲାଠିମାଡ଼ରେ କାହାରି ଆଖି ଫୁଟିଯାଉଛି। କାହାର ଗୋଡ଼ହାତ ଭାଙ୍ଗିଯିବାରୁ ସେ ଅକର୍ମଣ୍ୟ ହୋଇ ଯାଉଛି। ସତ୍ୟାଗ୍ରହୀମାନଙ୍କୁ ଭୟତ୍ରସ୍ତ କରାଇବାକୁ ଦିନକୁ ଦିନ ନୂଆ ଉପାୟ ପ୍ରୟୋଗ କରାଯାଉଛି। ଲାଠିମାଡ଼ ଖାଇ ଅଚେତ ଅବସ୍ଥାରେ ପଡ଼ି ରହିଥିବା ସତ୍ୟାଗ୍ରହୀ ଉପରେ ଘୋଡ଼ା ଚଢ଼େଇ ଦିଆଯାଉଛି। ଅଚେତ ହୋଇ ପଡ଼ିଥିବା ସତ୍ୟାଗ୍ରହୀଙ୍କୁ ଉଠାଇ କଣ୍ଟାବୁଦା ଉପରକୁ ଫିଙ୍ଗି ଦେଉଛନ୍ତି। ସତ୍ୟାଗ୍ରହ ସଂଗ୍ରାମକୁ ଦମନ କରିବା ଉଦ୍ଦେଶ୍ୟରେ ନିଷ୍ଠୁର କ୍ରୁର କର୍ମ କରିବାରେ ସରକାରୀ କର୍ମଚାରୀମାନେ ତିଳେମାତ୍ର ଦ୍ୱିଧା ବୋଧ କରୁ ନାହାନ୍ତି। ଏହିସବୁ ଦେଖି ଶୁଣି ମହାତ୍ମାଗାନ୍ଧୀ କହୁଛନ୍ତି, "ସରକାରଙ୍କର ହିଂସା ପ୍ରଣୋଦିତ କ୍ଷୁଧା ଯେପରି ପ୍ରବଳ ଆକାର ଧାରଣ କରୁଛି, ସେଥିରେ ଲାଠିମାଡ଼ ଖାଇ ଭୂପତିତ ସତ୍ୟାଗ୍ରହୀର ରୁଧିରରେ ସେ କ୍ଷୁଧା ତୃପ୍ତି ହେବ ନାହିଁ। ସତ୍ୟାଗ୍ରହୀର ଜୀବନଦାନରେ ତାହା ତୃପ୍ତିଲାଭ କରିବ। ସରକାର ଗୁଳି ଫାୟାର କରନ୍ତୁ ଏବଂ ଶତ ଶତ ସତ୍ୟାଗ୍ରହୀ ଧରାଶାୟୀ ହୁଅନ୍ତୁ। ଏହା କିପରି ହେବ ଏବଂ କଣ କଲେ ସରକାର ଗୁଳି ଚଳାଇବାକୁ ବାଧ ହେବେ। କେବଳ ଲୁଣ ମାରିଲେ ହେବ ନାହିଁ। ଏଥିପାଇଁ ଲୁଣଗୋଲା ଆକ୍ରମଣ କରିବାକୁ ପଡ଼ିବ। ଲୁଣ କାରଖାନାର ଲୁଣ ଲୁଟ୍ କରିନେବାକୁ ହେବ। ଲୁଣଗୋଲା ଆକ୍ରମଣ କରିବା ପାଇଁ ଏହିପରି କଳ୍ପନା କରି ତାହା ଗାନ୍ଧୀଜୀ ବଡ଼ଲାଟ ସାହେବଙ୍କୁ ଜଣାଇ ଦେଇଥିଲେ। କେବଳ ଧର୍ଷଣା ଗୋଲା ନୁହେଁ, ଯେଉଁଠାରେ ସରକାରୀ ଲୁଣ କାରଖାନା ଅଛି ସେସବୁ ଲୁଟ୍ କରି ନେବାକୁ ଗାନ୍ଧୀଜୀ ଆଦେଶ ପ୍ରଦାନ କଲେ।

ଲୁଣଗୋଲା ଆକ୍ରମଣ କରିବାର କଳ୍ପନା ଏବଂ ତାହାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଦେଶବାସୀଙ୍କୁ ଗାନ୍ଧିଜୀଙ୍କ ଆହ୍ୱାନ। ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଗୋଟିଏ ଅଦ୍ଭୁତ ଲୋମହର୍ଷଣକାରୀ ବ୍ୟାପାର। ଏହାକୁ ମଧ୍ୟ ଗୋଟିଏ ଦୁଃସାହସିକ କାର୍ଯ୍ୟ ବୋଲି କୁହାଯାଇପାରେ। କିନ୍ତୁ ଏହା ଭାରତରେ ଏକ ଅଲୌକିକ ଶକ୍ତି ଜାଗ୍ରତ କରାଯାଇ ପାରିଥିଲା। ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ। ଗାନ୍ଧିଜୀଙ୍କର କି ପ୍ରକାର ଅଲୌକିକ କଳ୍ପନାଶକ୍ତି ଥିଲା, ତହିଁର କିଞ୍ଚିତ ଆଭାସ ଏଥିରୁ ଜଣାପଡ଼େ। କେଉଁ କାର୍ଯ୍ୟକୁ କିପରି କଲେ ତାହା ଅତି ଦୁର୍ବଳ ମାନବକୁ ସବଳ କରି ପାରିବ ତହିଁର ସୂକ୍ଷ୍ମ ଉପାୟ ଗାନ୍ଧିଜୀଙ୍କୁ ଦେଖା ଯାଉଥିଲା। ଇଂରେଜ ସରକାରଙ୍କର ଦମନ ଲୀଳାରେ ଲବଣ ସତ୍ୟାଗ୍ରହ ଧୀମେଇ ଯିବାର ଆଶଙ୍କା କରି ସରକାରୀ ଲୁଣଗୋଲା ଆକ୍ରମଣ ପରିକଳ୍ପନା ଗାନ୍ଧିଜୀ ଉଦ୍ଭାବନ କରିଥିଲେ। କିନ୍ତୁ କିଛି ନୂଆ କଥା କରିବାକୁ ଯିବା ପୂର୍ବରୁ ତାହା ଅପର ପକ୍ଷକୁ ଜଣାଇ ଦେବା ନୀତିକୁ ଅନେକ ସମର୍ଥନ କରି ପାରିନାହାନ୍ତି।

ରଣକ୍ଷେତ୍ରରେ ସୈନ୍ୟାଧ୍ୟକ୍ଷ କଦାପି ତାର ରଣ କୌଶଳ ଅପର ପକ୍ଷକୁ ଜଣାଇ ଦିଏ ନାହିଁ। ଭାରତର ମୁକ୍ତିସଂଗ୍ରାମ ଆରମ୍ଭ ହୋଇଛି। ଲୁଣଗୋଲା ଆକ୍ରମଣ କରିବା ହେଲା ଗୋଟିଏ କୌଶଳ। ଆକ୍ରମଣ ଆରମ୍ଭ କରିବା ପୂର୍ବରୁ ଗାନ୍ଧିଜୀ, ବଡ଼ଲାଟ ସାହେବଙ୍କୁ ତାହା ଜଣାଇ ଦେବା ଦ୍ୱାରା ସରକାର ସାବଧାନ ହୋଇଗଲେ। ଲୁଣଗୋଲା ଆକ୍ରମଣ ଆରମ୍ଭ ହେଲେ ତାହାର ସମ୍ମୁଖୀନ ହେବାପାଇଁ କଠୋର ବ୍ୟବସ୍ଥା ସରକାର ଅବଲମ୍ବନ କଲେ। ବଡ଼ଲାଟଙ୍କୁ ପୂର୍ବରୁ ଲୁଣଗୋଲା ଆକ୍ରମଣ କରିବା ଜଣାଇ ନ ଥିଲେ, ଅତର୍କିତ ଭାବରେ ଆକ୍ରମଣ କରି ଲୁଣଗୋଲାମାନଙ୍କରୁ ଲୁଣ ଲୁଟ୍ କରି ଆଣିବା ଅତି ସହଜ ହୋଇଥାନ୍ତା। ଗାନ୍ଧିନୀତିର ମହତ୍ତ୍ୱ ଏହିଠାରେ ହୃଦୟଙ୍ଗମ କରିବାର କଥା। ଗାନ୍ଧିନୀତିକୁ ଯେ ଯେପରି ଭାବରେ ଗ୍ରହଣ କରିଛି ତାହାର ଜୀବନ ସେହିପରି ପ୍ରଭାବିତ ହୋଇଛି।

ଲୁଣ ଲୁଟ୍ କରି ଆଣିବା ଗାନ୍ଧିଜୀଙ୍କର ଲକ୍ଷ୍ୟ ନୁହେଁ। ଇଂରେଜୀ ରାଜତ୍ୱ ଭାରତବାସୀଙ୍କୁ ଭୀରୁ ବନେଇଛି। ଭାରତବାସୀ ନିଜକୁ ବଡ଼ ଦୁର୍ବଳ ଓ ନିଃସହାୟ ମନେକରୁଛି। ତା'ର ଜୀବନର କୌଣସି ଆଦର୍ଶ ନାହିଁ। ଆଦର୍ଶ କଳ୍ପନା କରିବାର ଶକ୍ତି ଥାଇ ମଧ ତାହାକୁ କାର୍ଯ୍ୟରେ ପରିବର୍ତ୍ତନ କରିବା ପାଇଁ ଯେଉଁ ତ୍ୟାଗ ଆବଶ୍ୟକ ସେଥିପାଇଁ ମନରେ ବଳ କିମ୍ବା ସାହସ ଆସୁନାହିଁ। କୌଣସି ଆଦର୍ଶ ଉପଲବ୍ଧି କରିବା ପାଇଁ ଜୀବନ ବଳିଦାନ କରିବାକୁ ପଡ଼ିବ। ହସି ହସି ଭୟ, ବିପଦ ଏବଂ ମୃତ୍ୟୁକୁ ମଧ ବରଣ କରବାର ଶକ୍ତି ହାସଲ ନ କଲେ, ଭାରତ ମୁକ୍ତିଲାଭ କରିବା ଅସମ୍ଭବ। ଲୁଣାଗୋଲା ଆକ୍ରମଣ କରିବାକୁ ହେବ। କିନ୍ତୁ ଆକ୍ରମଣ ଅନାୟାସ ହେଲେ ତହିଁରେ ଜୀବନ ବଳିଦାନର ଅବସର ରହି ନପାରେ। ଜୀବନ ବଳିଦାନ କରିବାର ବାଟ ସହଜ ଓ ସରଳ କରିବା ଉଦ୍ଦେଶ୍ୟରେ ଗାନ୍ଧିଜୀଙ୍କ ଲୁଣଗୋଲା ଆକ୍ରମଣର ପରିକଳ୍ପନା। ସୁତରାଂ ଲୁଣ ଲୁଟ୍ କରିବାର ପ୍ରଶ୍ନ ଏଥିରେ ନାହିଁ। ଲୁଣଗୋଲା ଆକ୍ରମଣ କରି ଲୁଣ ଲୁଟ୍ କରି ଆଣି ନ ପାରିଲେ ସତ୍ୟାଗ୍ରହୀର ହାର ହେଲା ବୋଲି ଜଣା ପଡ଼ିବ। ଲୁଣଗୋଲା ଆକ୍ରମଣ କରିବାକୁ ଚିନ୍ତା କଲା ମାତ୍ରକେ ଜୀବନ ବଳିଦାନ କରିବାକୁ ପଡ଼ିବ, ଏହା ସମସ୍ତେ ବୁଝିବା ଉଚିତ। ଏଥିପାଇଁ ଗାନ୍ଧିଜୀ ଇଂରେଜୀ ସରକାରଙ୍କୁ ଜଣାଇ ଦେଇ ସଂଗ୍ରାମ ପାଇଁ ଆହ୍ୱାନ ପ୍ରଦାନ କରିଛନ୍ତି। ସୁତରାଂ ଭାରତର ମୁକ୍ତିସଂଗ୍ରାମ ପାଇଁ ଜୀବନ ବଳିଦାନ କରିବାରେ ମହତ୍ତ୍ୱ ଉପଲବ୍ଧ କରି ତହିଁରେ ଗୌରବ ଅନୁଭବ କରିବାର ମନୋବୃତ୍ତି ହେଉଛି ମୁଖ୍ୟ ପ୍ରଶ୍ନ। ଏହି ପ୍ରଶ୍ନର ସହଜ ଓ ସରଳ ଉପାୟରେ ସମାଧାନ କରିବାର କଳ୍ପନାରେ ଲୁଣଗୋଲା ଆକ୍ରମଣ କରି ଲୁଣ ଲୁଟ୍ କରିନେବାକୁ ଗାନ୍ଧିଜୀ ଆଦେଶ ପ୍ରଦାନ କଲେ ଏବଂ ତାହା ମଧ ବଡ଼ଲାଟ୍ ସାହେବଙ୍କୁ ଜଣାଇ ଦେଇଥିଲେ।

## ନିମକଚୋର ଗାନ୍ଧୀ

ଲୁଣଗୋଲା ଆକ୍ରମଣ କରି ଲୁଣ ଲୁଟ୍ କରିବା ଆଦେଶ ପ୍ରକାଶ ପାଇଲାପରେ ଗାନ୍ଧିଜୀଙ୍କୁ ଲୋକେ ଅତି ଶ୍ରଦ୍ଧାରେ ନିମକଚୋର ଗାନ୍ଧୀ ବୋଲି କହିବାକୁ ଆରମ୍ଭ କଲେ। ଏହା ଶୁଣି ଗାନ୍ଧିଜୀ କହିଥିଲେ, "ଭାରତରେ ମହାତ୍ମା ପଦ ପାଇବା ଅତି ସହଜ କିନ୍ତୁ ନିମକଚୋର ପଦ ପାଇବା ସହଜ ନୁହେଁ। ଧର୍ଷଣା ଲୁଣ ଗୋଲା ଦଖଲ ନ କଲା ପର୍ଯ୍ୟନ୍ତ ମତେ ନିମକଚୋର କହିବାରେ କିଛି ଅର୍ଥ ନାହିଁ। କାରଖାନା ଭିତରୁ କିମ୍ବା ବାହାରୁ, କିମ୍ବା କାରଖାନାର କୌଣସି ଗୋଟିଏ ସ୍ଥାନରୁ ଲୁଣ ନେଇ ଆସିବା ଦରକାର। ଲୁଣ ଆଣିଲାବେଳେ ତହିଁରେ ପରିମାଣ ପ୍ରତି ଦୃଷ୍ଟି ଦେବା ଉଚିତ ନୁହେଁ। ତାହା ଏକ ସେର, ଏକ ମୁଠା କିମ୍ବା ଏକ ପଗଡ଼ ଲୁଣ ମଧ୍ୟ ହୋଇପାରେ। ସରକାର ଏହାକୁ ପିଲାଖେଳ ବୋଲି ଭାବି ପାରନ୍ତି। ଏହି ଖେଳ ଯଦି ଖେଳିବାକୁ ଇଚ୍ଛା କର ତେବେ ଧର୍ଷଣା ଲୁଣଗୋଲା ଲୁଟ୍ କର। ଏହି ପିଲାଖେଳରୁ ମହାଭାରତ ସୃଷ୍ଟି ହେବ।"

## ଗାନ୍ଧିଜୀ ଗିରଫ

ଗାନ୍ଧିଜୀଙ୍କର ଏହି ଆଦେଶ ଦେବାର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ଏକ ବିଦ୍ୟୁତ୍‌ଶକ୍ତି ଖେଳାଇ ଦେଲା। ଗାନ୍ଧିଜୀ କେତେବେଳେ ଧରା ହୋଇଯିବେ ଠିକଣା ନାହିଁ। ସରକାରଙ୍କର କ୍ରୋଧର ସୀମା ଟପି ଯାଇଛି। କିଏ କେତେବେଳେ ଗାନ୍ଧିଜୀଙ୍କୁ ହତ୍ୟା କରି ଦେଇପାରେ। କିନ୍ତୁ ଗାନ୍ଧିଜୀ ଅଚଳ ଓ ଅଟଳ। କାର୍ଯ୍ୟ ଓ ଚିନ୍ତାରେ ବିଶ୍ରାମ ନାହିଁ। ଦିନରାତି ଘୋର କର୍ମରେ ଲିପ୍ତ ଥାଇ ମଧ୍ୟ କାହିଁରେ ଲିପ୍ତ ନ ଥିଲା ପ୍ରାୟ କର୍ମ କରି ଯାଉଛନ୍ତି। ଏହିଠାରେ ଗୀତାର ଗୋଟିଏ ବାକ୍ୟ ମନେ ପଡ଼େ। "ନ ମେ କର୍ମାଣି ଲିମ୍ପନ୍ତି, ନ ମେ କର୍ମଫଳେ ସ୍ପୃହାଃ। ସତ୍ୟାଗ୍ରହ ସଂଗ୍ରାମରେ ଲୁଣଗୋଲା ଆକ୍ରମଣ ସଫଳ ହେବ କି ନାହିଁ ସେପରି ଚିନ୍ତା ଗାନ୍ଧିଜୀଙ୍କ ମନକୁ ସ୍ପର୍ଶ କରିନାହିଁ। ସଂଗ୍ରାମ ପରିଚାଳନା କଲାବେଳେ କୌଣସି ପ୍ରକାର ଭୟବିପଦର ଆଶଙ୍କାକରି ସେଥିପାଇଁ ସାବଧାନ ରହିବା ଗାନ୍ଧିଜୀଙ୍କ ପ୍ରକୃତିର ପ୍ରତିକୂଳ ବ୍ୟାପାର। ତାଙ୍କର କୌଣସି ଆଶଙ୍କା ନାହିଁ। ବାଳକର ଧୂଳିଖେଳ ପରି ସମସ୍ତ କାର୍ଯ୍ୟ ପରିଚାଳନା କରୁଛନ୍ତି ଏବଂ ଅତି ଶାନ୍ତ ଚିତ୍ତରେ ଏକାକୀ ଗୋଟିଏ ଗଛତଳେ ଖଣ୍ଡିଏ ଦଉଡ଼ି ଖଟରେ ଶୋଇପଡୁଛନ୍ତି। ଦିନେ ଅର୍ଦ୍ଧରାତ୍ରିର ଘୋର ଅନ୍ଧକାରରେ ଏବଂ ନିର୍ଜନ ପ୍ରାନ୍ତରରେ ଗୋଟିଏ ଗଛତଳେ ଖଣ୍ଡିଏ ଖଟପକାଇ ଗାନ୍ଧିଜୀ ଏକାକୀ ଶୋଇଛନ୍ତି। ଏପରି ସମୟରେ ସରକାର ଗାନ୍ଧିଜୀଙ୍କୁ ଧରି ନେଇଥିଲେ।

ଗାନ୍ଧିଜୀଙ୍କୁ ଧରିବାକୁ ଯାଇ ମାଜିଷ୍ଟ୍ରେଟ ସାହେବ ଭାବବିହ୍ୱଳିତ ହୋଇ ପଡ଼ିଥିଲେ ବୋଲି ଶୁଣିବାକୁ ମିଳେ। ଗାନ୍ଧିଜୀଙ୍କୁ ଏପରି ନିରାଶ୍ରୟ ଲୋକପରି ଗଛତଳେ ଖଣ୍ଡିଏ

ଖଟିଆରେ ଏକାକୀ ଶୋଇଥିବାର ଦେଖି ମାଜିଷ୍ଟ୍ରେଟ ଭାବିଥିଲେ, ''ଏହି ବ୍ୟକ୍ତି କଣ ସେହି ଗାନ୍ଧୀ, ଯାହାଙ୍କ କଥା ଆଜି ପୃଥିବୀରେ ଚହଳ ପକାଇ ଦେଇଛି, ଯାହଙ୍କ କାର୍ଯ୍ୟ ଆଜି ପ୍ରବଳ ପରାକ୍ରମୀ ଇଂରେଜୀ ସରକାରଙ୍କୁ ବିବ୍ରତ କରି ପକାଉଛି।'' ସେ ଯାହାହେଉ, ଗାନ୍ଧିଜୀ ଧରାହୋଇ ଅଟକବନ୍ଦୀ ହୋଇ ରହିବା ସମ୍ବାଦ ଏବଂ ଲୁଣଗୋଲା ଆକ୍ରମଣ ପାଇଁ ତାହାଙ୍କ ଆଦେଶ ଓ ଉଦ୍‌ବୋଧନ ଭାରତବାସୀଙ୍କ ହୃଦୟରେ ଏକ ନୂତନ ଉତ୍ତେଜନା ଓ ଅସୀମବଳ ସଂଚାର କରିଥିଲା। ପ୍ରତି ପ୍ରଦେଶ, ଗ୍ରାମ, ସହରମାନଙ୍କରୁ ଅଂସଖ୍ୟ ନରନାରୀ ସମରଯାତ୍ରା ଆରମ୍ଭ କରି ଲୁଣମାରିବାକୁ ଆରମ୍ଭ କରିଦେଲେ। ଲୁଣ ମାରି ତାକୁ ବିକ୍ରିକରିବା କାର୍ଯ୍ୟରେ ଲୋକ ଆତ୍ମହରା ହୋଇପଡ଼ିଲେ। ମହାତ୍ମାଗାନ୍ଧୀ ନିଜେ ଧର୍ଷଣା ଲୁଣଗୋଲା ଆକ୍ରମଣ କରିବାକୁ ସଂକଳ୍ପ କରିଥିଲେ। ଧରାହୋଇ ଯିବାରୁ ସେ ନିଜେ ତାହାଙ୍କ ସଂକଳ୍ପକୁ କାର୍ଯ୍ୟରେ ପରିଣତ କରିପାରି ନ ଥିଲେ ସତ୍ୟ କିନ୍ତୁ ସେ ଅଟକବନ୍ଦୀ ହୋଇ ରହିବା ପରେ ଧର୍ଷଣା ଓ ବମ୍ବେଇ ନିକଟସ୍ଥ ୱାଦଲା ଲୁଣଗୋଲା ଆକ୍ରମଣ ଆରମ୍ଭ ହୋଇଗଲା।

## ଧର୍ଷଣା ଆକ୍ରମଣ

ଧର୍ଷଣା ଆକ୍ରମଣ ପୃଥିବୀ ବକ୍ଷରେ ଗୋଟିଏ ଲୋମହର୍ଷଣକାରୀ ଘଟଣା। ଏହିଠାରେ ହିଂସା ଓ ଅହିଂସାର ବଳକୁ ପରୀକ୍ଷା କରାଯାଇ ଥିଲା ବୋଲି କୁହାଯାଇ ପାରିବ। ଧରାବକ୍ଷରେ ଯୁଦ୍ଧ କରିବାର ଗୋଟିଏ ଆୟୁଧକୁ ଏହି ଧର୍ଷଣା ରଣପ୍ରାଙ୍ଗଣରେ ପରୀକ୍ଷା କରାଯାଇଥିଲା। କେବଳ ତାହା ନୁହେଁ, ଏହିଠାରେ ମନୁଷ୍ୟର ରକ୍ତମାଂସ ଶରୀର ସହନଶୀଳତାର ପରାକାଷ୍ଠା ପ୍ରଦର୍ଶନ କରାଇ ଜଗତକୁ ବିସ୍ମିତ କରିଛି। ଧର୍ଷଣା ଲୁଣଗୋଲା ଚାରିପାଖରେ ଲୁହାର କଣ୍ଟା ତାରବାଡ଼। ଏହି ତାରର ବାଡ଼ ସମୀପରେ ଗୋଟିଏ ଗଭୀର ଖାଇ ପାଣିରେ ପୂରି ରହିଛି। ଖାଇର ଭିତର ଓ ବାହାର ଉଭୟ ପଟେ ପୋଲିସ ଫଉଜ ପହରା ଦେଲେ। ଲୁଣଗୋଲା ଆକ୍ରମଣ କରି ଲୁଣ ଲୁଟ୍ କରିବାକୁ ହେଲେ ପ୍ରଥମେ ପୋଲିସ ଧାଡ଼ି ଅତିକ୍ରମ କରି ଖାଇ ପାରହେବାକୁ ପଡ଼ିବ। ତା' ପରେ ଦ୍ୱିତୀୟ ପୋଲିସ ଧାଡ଼ି ଅତିକ୍ରମ କରି ତାରବାଡ଼ ଡେଇଁ ଗୋଲା ଭିତରେ ପ୍ରବେଶ କରିପାରିଲେ ଲୁଣ ଆଣି ହେବ। ଲୁଣ ଧରି ଫେରିଲା ବେଳକୁ ପୂର୍ବପରି ତାର ବାଡ଼ ଡେଇଁ ପୋଲିସ ଧାଡ଼ି ଓ ଖାଇ ପାର ହେଇ, ପୁଣି ପୋଲିସ ଘର ଭାଙ୍ଗି ଲୁଣ ଧରି ବାହାରିବାକୁ ପଡ଼ିବ। ଗୁଜରାଟର ବୀର ସତ୍ୟାଗ୍ରହୀ ସହସ୍ର ସଂଖ୍ୟାରେ ଦଳକୁ ଦଳ ଧର୍ଷଣା ଲୁଣଗୋଲାକୁ ଚତୁର୍ଦ୍ଦିଗରୁ ଆକ୍ରମଣ କରି ଲୁଣ ଲୁଟ୍‌କରି ଆଣିଥିଲେ। ଏହି ଲୁଣ ଆକ୍ରମଣ କରି ଲୁଣ ଲୁଟ୍ କରି ଆଣିବା ପାଇଁ ଯେଉଁ ସଂଗ୍ରାମ ତାହା ବର୍ଣ୍ଣନା କରିବା କଠିନ। ସଂଗ୍ରାମର ବିଭିଷିକା ବର୍ଣ୍ଣନା କରିବାକୁ ଭାଷାନାହିଁ। ତାହା ଲେଖି ହେବ ନାହିଁ। କହିଲେ

ଶୁଣି ହେବନାହିଁ। ଶୁଣିଲେ ମନୁଷ୍ୟର ଧୈର୍ଯ୍ୟଚ୍ୟୁତ ଘଟିବ। ତାହା ଏକ ଅମର କାହାଣୀ। ଧର୍ଷଣା ସମସ୍ତ ପଶ୍ଚିମ ଭାରତରେ ଭୂମିକମ୍ପ ସୃଷ୍ଟିକଲା ଭଳି ଆବାଳବୃଦ୍ଧବନିତା ସମସ୍ତଙ୍କୁ ଦୋହଲାଇ ଦେଲା। ଶିକ୍ଷିତ ଅଶିକ୍ଷିତ, ଧନୀ ଦରିଦ୍ର, ସମସ୍ତଙ୍କୁ ଧର୍ଷଣାର ଆହ୍ୱାନ ବ୍ୟାକୁଳ କଲା। କେହି ଆଉ ଧୈର୍ଯ୍ୟ ଧରି ସମ୍ଭାଳି ହୋଇ ରହିପାରି ନଥିଲେ। ଭାରତର ଜନ-ସମୁଦ୍ରରେ ଉତ୍ତାଳ ତରଙ୍ଗମାଳା ସୃଷ୍ଟି ହେବାକୁ ଆରମ୍ଭ କଲା। ଏହି ତରଙ୍ଗମାଳାର ଘୋର ଗଭୀର ନିନାଦ ଭାରତର ପ୍ରତ୍ୟେକ ନରନାରୀଙ୍କ ହୃଦୟକୁ ସ୍ପର୍ଶ କରିଥିଲା ଏବଂ ଜେଲଖାନା ଉଚ୍ଚ ପ୍ରାଚୀର ଭେଦ କରି ଆମ୍ଭମାନଙ୍କ ହୃଦୟରେ ମଧ୍ୟ ଘାତ ପ୍ରତିଘାତ କରୁଥିଲା। ଦେଶରେ ଏଭଳି ଅଭିନବ ଜାଗରଣ ଦେଖି ଆମ୍ଭମାନଙ୍କ ମନ ଆନନ୍ଦରେ ନାଚି ଉଠୁଥାଏ।

## ଜେଲଜୀବନ

ହଜାରୀବାଗ ଜେଲଖାନାକୁ ଜେଲ ନ କହି ଗୋଟିଏ କଲେଜ ହଷ୍ଟେଲ ବୋଲି କହିଲେ କଦାପି ଅତ୍ୟୁକ୍ତି ହେବ ନାହିଁ। ଯେତେ ସ୍ୱରାଜୀ କଏଦୀ ଅଛନ୍ତି ସମସ୍ତେ ଶିକ୍ଷିତ। ସମସ୍ତଙ୍କ ନିକଟରେ ପଢ଼ିବାପାଇଁ ବହି ସବୁ ଅଛି। ସମସ୍ତଙ୍କର ରହିବାକୁ ଗୋଟିଏ କରି ଛୋଟ ଘର। ପ୍ରତ୍ୟେକ ଘରପାଇଁ ଖଟ ଗଦି ମଶାରୀ ସରକାର ଯୋଗାଇଥାନ୍ତି। ପ୍ରତିଘରେ ଗୋଟିଏ ଲଣ୍ଠଣ ରାତିରେ ଜାଳିବାକୁ ମିଳେ। ସନ୍ଧ୍ୟାରେ ଘର ବନ୍ଦ ହୋଇ ତାଲା ପଡ଼ିଲା ପରେ ପ୍ରତ୍ୟେକେ ନିଜ ନିଜର ଘରେ ବସି ଏକ ସମୟରେ ସନ୍ଧ୍ୟା ପ୍ରାର୍ଥନା ବୋଲନ୍ତି। ପ୍ରାର୍ଥନା ପରେ ଅଧ୍ୟୟନ। ରାତ୍ରି ୧୦ ଓ ୧୨ଟା ପର୍ଯ୍ୟନ୍ତ ଲେଖାପଢ଼ା ଚାଲେ। ଧର୍ମ, ରାଜନୀତି, ଅର୍ଥଶାସ୍ତ୍ର ଓ ସମାଜବାଦ ଇତ୍ୟାଦି ବିଷୟରେ ବହି ସବୁ ପଢ଼ିବାକୁ ମିଳେ। ସକାଳେ ନିତ୍ୟକର୍ମ ଶେଷକରି ସମସ୍ତେ ବସି ଏକତ୍ର ଚା ଓ ଜଳଖିଆ କରାଯାଏ। ହଜାରୀବାଗ ଜେଲରେ ଦୁଇପ୍ରକାର ଖାଦ୍ୟ ମିଳେ। ଭାରତୀୟ ଓ ସାହେବୀ ଖାନା। ଭାରତୀୟ ଖାନାରେ ଦୁଧ, ଘିଅ, ଫଳ ମିଳେ। ସାହେବୀ ଖାନାରେ ମାଂସ, ପାଉଁରୋଟୀ, ମାଖନ ଓ ଚା ମିଳୁଥାଏ। ଉଭୟ ଖାନା ବାଣ୍ଟିକରି ଆମ୍ଭେମାନେ ନେଇଥାଉ। ଉଭୟ ଖାନାକୁ ମିଶାଇ ସକାଳ ଚା ଜଳଖିଆ କରାଯାଏ। ଜଣଙ୍କ ଘରେ ଚା ସରଞ୍ଜାମ ରହିଥାଏ। ସେଠାରେ ସମସ୍ତେ ଏକଜୁଟ ହୁଅନ୍ତି। ସକାଳ ସାତଘଣ୍ଟାରୁ ନ'ଟା ପର୍ଯ୍ୟନ୍ତ ପଢ଼ାଶୁଣା। ନ'ଟା ପରେ ନାନାପ୍ରକାର ଗଳ୍ପ, ଥଟ୍ଟାତାମସା ହସଖେଳରେ ସମୟ କଟିଯାଏ। କେହି ମରିଗଲେ ତା ପାଇଁ କିପରି ଶୋକସଭା ବସି କଣ ବକ୍ତୃତା ଦେବାକୁ ହେବ ତହିଁରେ ଅନୁକରଣ କରାଯାଏ। ବାବୁ ରାଜକୃଷ୍ଣ ବୋଷଙ୍କ ବକ୍ତୃତା, ଯଦୁମଣି ମଙ୍ଗରାଜଙ୍କ ବାହୁନି କାନ୍ଦିବାର ପରିକ୍ରମା ଦେଖି ହସରୋଳରେ ଖୁଆଡ଼ ଚମକି ଉଠେ। ମହତାବବାବୁ ପାଲାଗାୟକ ସାଜି ପାଲାର ଅଭିନୟ କରନ୍ତି। ଛାଞ୍ଚୁଣୀ

ମୁଠାକ ଚର୍ଖାରର କାର୍ଯ୍ୟକରେ। ଅଧିକାଂଶ ସମୟରେ ରାଜନୈତିକ ପ୍ରଶ୍ନ ସବୁର ଆଲୋଚନା କରାଯାଏ। ସ୍ୱରାଜ୍ୟ ଅଥବା ସ୍ୱାଧୀନତା କଣ? ସ୍ୱାଧୀନତା ମିଳିଲାପରେ ଦେଶକୁ କିପରି ଶାସନ କରିବାକୁ ପଡ଼ିବ ଇତ୍ୟାଦି ବିଷୟର ଚର୍ଚ୍ଚା ପଡ଼େ। ସାହିତ୍ୟର ଆଲୋଚନା ହୁଏ। ପ୍ରତି ପନ୍ଦର ଦିନରେ ଥରେ ଭୋଜି କରାଯାଇଥାଏ। ଜେଲଖାନାର ଅଫିସ୍‌ରେ ଆମ୍ଭମାନଙ୍କ ସମସ୍ତଙ୍କର କିଛି କିଛି ଟଙ୍କା ଜମା ରହିଥାଏ। ଉକ୍ତ ଟଙ୍କାରୁ ବଜାରରୁ ଜିନିଷ ଖର୍ଚ୍ଚ କରିଥାଉ। ତେଲ, ସାବୁନ୍, କାଳୀ, କାଗଜ ଓଗେର ଯାହାର ଯାହା ଦରକାର ହୁଏ ତାହା ଲେଖିଦେଲେ ଜେଲ କର୍ତ୍ତୃପକ୍ଷ ଆମ୍ଭମାନଙ୍କ ଖର୍ଚ୍ଚରେ ମଗାଇ ଦେଇଥାନ୍ତି। କ ଶ୍ରେଣୀର ରାଜବନ୍ଦୀ ଇଚ୍ଛା କଲେ ବାହାରୁ ଖାଦ୍ୟ ପଦାର୍ଥ ମଧ ମଗାଇବାର ଅଧିକାର ଥାଏ। ନୀଳକଣ୍ଠବାବୁ ଆମ ଭିତରେ କ ଶ୍ରେଣୀର ଥାନ୍ତି। ତାଙ୍କ ନାମରେ ବଜାରରୁ ସୁଜି, ଚିନି, ଘିଅ ଓଗେର ମଗାଇ ଭୋଜିର ଆୟୋଜନ କରାଯାଏ। ଜାତୀୟ ପର୍ବପର୍ବାଣୀ ଦିବସରେ ସଭାବସି ବକ୍ତୃତା ଦିଆଯାଏ।

ଦିନ ବାରଟାରେ ସକାଳ ଭୋଜନାଦିକ୍ରିୟା ଶେଷ ହୋଇ ଯାଏ। ତା'ର ପରେ ଆମ ଓଡ଼ିଆ ପଡ଼ାରେ ପଶାଖେଳର ଧୂମ୍ ଲାଗେ। ୧୯୨୨ ମସିହାରେ ଭାଗଲପୁର ଜେଲରେ ମୁଁ ଚେଶ୍ ଖେଳି ଶିଖିଥିଲି। ୧୯୩୦ରେ ହଜାରୀବାଗ ଜେଲରେ ପଶାଖେଳ ଶିଖିଲି। ଏହି ପଶାଖେଳରେ ସମସ୍ତେ ଯୋଗଦିଅନ୍ତି। କେହି ଖେଳିବାକୁ ବସେ। କେହି ଦେଖଣାହାରୀ ଭାବରେ ଯୋଗଦିଏ। ଆଚାର୍ଯ୍ୟ ହରିହର ଦାସ, ମହତାବବାବୁ ଓ ଗୋପବାବୁ ଆଦି ସମସ୍ତେ ଏହି ଖେଳରେ ଭାଗ ନିଅନ୍ତି। ଖଣ୍ଡିଏ ଗାମୁଛାରେ କଳା ସ୍ୟାହୀରେ ଗାର କାଟି ଖେଳପାଲି ତିଆରି ହୋଇଥାଏ। ମଶାରୀ ବାନ୍ଧିବାକୁ ଖଟରେ ଥିବା ବାଉଁଶ ବତାକୁ ଆଣି ଚର୍ହିରେ ପଶାକାଠି ଓ ଗୋଟି ତିଆରି କରାଯାଇଥାଏ। ନୀଳ ଓ କଳା ସ୍ୟାହୀରେ ନାଲି କଳାରଙ୍ଗ, କାନସାରି ଅବା ପୋକଶୁଙ୍ଘା ପତ୍ରର ରସରେ ନେଳିରଙ୍ଗ ହଳଦୀରେ ହଳଦିଆ ରଙ୍ଗର ଗୋଟିସବୁ ତିଆରି ହୋଇ, ପଶାଖେଳ ଚାଲିଥାଏ। ଶ୍ରୀ ନାରାୟଣ ବୀରବର ସାମନ୍ତ ଏହି କାଠି, ଗୋଟି ଓ ପାଲିର ନିର୍ମାଣକର୍ତ୍ତା। ଦିନ ବାରଟାରୁ ତିନିଟା ପର୍ଯ୍ୟନ୍ତ ପଶାଖେଳ। ତା'ର ପର ନିତ୍ୟକର୍ମ ଶେଷ କରି ସନ୍ଧ୍ୟା ୫ଟାରେ ରାତ୍ରିଭୋଜନ। ଛ'ଟା ତିରିଶି ମିନିଟରେ ଘରେ ପଶିବାକୁ ପଡ଼େ। ତା'ର ପର ଜେଲ ସିପାହୀ ଆସି ଘରେ ତାଲା ପକାଇ ଦିଏ।

## ଜେଲରେ ସୁଖଦୁଃଖର ଅନୁଭୂତି

ଏହିପରି ଭାବରେ ଆମ୍ଭେମାନେ ଜଲେ ଜୀବନ ଅତିବାହିତ କରୁଥାଉ। କୌଣସି ଅଭାବ ଥିଲାପରି ଜଣାଯାଉ ନ ଥାଏ। ଖାଇବାର ଚିନ୍ତା ନାହିଁ। ବେମାର ପଡ଼ିଲେ ଚିକିତ୍ସାର ଅଭାବ ନାହିଁ। ପଢ଼ାଶୁଣା, ଖେଳକୌତୁକ, ସାଙ୍ଗସାଥି ଆଦି କୌଣସି

ବିଷୟର ଅଭାବ ନ ଥାଏ। ତଥାପି ମନ ଅସ୍ଥିର ହୋଇ ଉଠେ। ଖଣ୍ଡିଏ ଚିଠି କାହାରି ଆସିଲେ, ଦେଶର ସମ୍ବାଦ କଣ ଚିଠିରେ ଅଛି ତାହା ଜାଣିବାକୁ ସମସ୍ତଙ୍କ ମନ ଉଦ୍‌ବିଗ୍ନ ହୋଇ ଉଠେ। ଅଧିକାଂଶଙ୍କ ଘରୁ ଚିଠିପତ୍ର ଆସେ। ଜେଲ ଭିତରେ ଘରୁ ପ୍ରିୟଜନମାନଙ୍କ ଠାରୁ ଚିଠି ଖଣ୍ଡିଏ ପାଇଲେ ମନରେ କେତେ ଆନନ୍ଦ। ଆଶ୍ରମର କର୍ମୀମାନଙ୍କଠାରୁ ମୁଁ ପତ୍ର ପାଏ। ମୁଁ ଜେଲକୁ ଆସିବା ପରେ ଆଶ୍ରମ କାମ କିପରି ଚାଲିଛି ତାହା ଜାଣିବାକୁ ମନ ସବୁବେଳେ ଉଦ୍‌ବିଗ୍ନ ଥାଏ। ଆଶ୍ରମ କର୍ମୀମାନଙ୍କଠାରୁ ପତ୍ର ଖଣ୍ଡିଏ ପାଇଲେ ତାହା ମୋ ମନରେ ଆନନ୍ଦ ଦେଇପାରେ ନାହିଁ। ଆଶ୍ରମର କର୍ମୀମାନଙ୍କ ଦେଶ ତଥା ଆଶ୍ରମପ୍ରତି ଯେପରି ଅନୁରକ୍ତି ଥାଏ ତାହା ମୋର ଆଶାନୁରୂପ ନୁହେଁ। ସେମାନଙ୍କ ନିକଟରୁ ଚିଠି ଖଣ୍ଡିଏ ପାଇଲେ ତହିଁରେ ଆଶ୍ରମ କାର୍ଯ୍ୟରେ ବିଶୃଙ୍ଖଳା ଘଟୁଥିବାର ସମ୍ବାଦ କେବଳ ମୁଁ ପାଠ କରେ। ତଦ୍ୱାରା ମୋ ମନରେ ଦିନେ ଦୁଇଦିନ ପର୍ଯ୍ୟନ୍ତ ଆନନ୍ଦ ରହେ ନାହିଁ। ରାଜନୈତିକ ଜୀବନ ଅତି ନିର୍ମମ ଓ କଠୋର। ଭାଇବନ୍ଧୁ ଘରଦ୍ୱାର ସବୁ ମୁଁ ତ୍ୟାଗ କରିଛି। ସେପରି ମୋର ଆପଣାର ପ୍ରିୟଜନ କେହି ନାହିଁ ଯାହାର ସ୍ନେହ ଅଥବା ଶ୍ରଦ୍ଧାପୂର୍ଣ୍ଣ ଚିଠି ଖଣ୍ଡିଏ ପାଇବାକୁ ଆଶା କରିବି। ଦେଶବାସୀଙ୍କ ନିକଟରୁ ସ୍ନେହସୌହାର୍ଦ୍ଦ୍ୟ ଲାଭ କରିବା ସହଜ ନୁହେଁ। କୌଣସି କଥାର ଆମୂଳଚୂଳ ବିଚାର ନ କରି ଲୋକେ ଅତି ସାମାନ୍ୟ କଥାରେ କ୍ରୁର ସମାଲୋଚନା କରିବାକୁ ପଶ୍ଚାଦ୍‌ପଦ ହୁଅନ୍ତି ନାହିଁ। ମୁଁ ଜେଲ ଆସିବା ପରେ ଆଶ୍ରମ କାର୍ଯ୍ୟରେ ଯାହାସବୁ ତ୍ରୁଟି ଘଟିଯାଉଛି ସେଥିପାଇଁ ସମସ୍ତେ ମତେ ଦାୟୀ କରିବେ। ଏହିପରି ନାନା ପ୍ରକାର ଭାବନା ମନରେ ଜାଗି ଉଠେ। ଚିଠି ଖଣ୍ଡିଏ ପାଇଲେ ତାହା ମତେ ଆନନ୍ଦ ନ ଦେଇ ବରଂ ମୋର ଦୁଃଖର କାରଣ ହୁଏ। ତଥାପି ଏପରି ଚିଠି ପାଇବାକୁ ଚାତକ ପରି ଚାହିଁ ରହିଥାଏ। ସୁଖ ହେଉ ଅବା ଦୁଃଖ ହେଉ, ଚିଠି ଖଣ୍ଡିଏ ପାଇବାକୁ ମନ ସବୁବେଳେ ବ୍ୟାକୁଳ।

ଅବଶ୍ୟ ମୋ ମନରେ ଏପରି ଘଟୁଥିବା ବିଷାଦ କ୍ଷଣସ୍ଥାୟୀ। ଦେଶକୁ ସ୍ୱାଧୀନ କରିବାକୁ ହେଲେ, କେତେକ ଅନୁଷ୍ଠାନ ଏପରି ଗଢ଼ା ହେବ ଏବଂ ଭାଙ୍ଗିବ। ଚମ୍ପାପୁର ଗାନ୍ଧୀସେବାଶ୍ରମ ଯଦି ଭାଙ୍ଗିଯାଏ ସେଥିପାଇଁ ମୋର ଚିନ୍ତା କରିବା ଉଚିତ ନୁହେଁ। ଏହିପରି ଭାବି ମନକୁ ପୁଣି ଦୃଢ଼ କରିଦିଏ। ଦେଶରେ ଘଟୁଥିବା ଘଟଣାମାନ ଜାଣିବାକୁ ମନ ଉଦ୍‌ବିଗ୍ନ ହୋଇ ଉଠେ। ଓଡ଼ିଶାରେ ଲବଣ ସତ୍ୟାଗ୍ରହ ପ୍ରବଳ ଆକାର ଧାରଣ କଲାଣି ଏଥିରେ କୌଣସି ସନ୍ଦେହ ନାହିଁ। ସତ୍ୟାଗ୍ରହ ସଂଗ୍ରାମ ଆଉ କେବଳ ବାଲେଶ୍ୱରରେ ସୀମାବଦ୍ଧ ହୋଇ ରହିନାହିଁ। କଟକ ପୁରୀ ଜିଲାମାନଙ୍କରେ ମଧ ଲୁଣମରା ଆରମ୍ଭ ହୋଇଗଲାଣି। ପଣ୍ଡିତ ନୀଳକଣ୍ଠ ଦାସ ପୁରୀ ଜିଲ୍ଲାର କାକଟପୁର ଅଞ୍ଚଳରେ ଲୁଣମରା ଆରମ୍ଭ କରି ଧରା ହୋଇ ଆସି ହଜାରୀବାଗ

ଜେଲରେ ରହିଲେଣି। ଓଡ଼ିଶାର ପୁରପଲ୍ଲୀରେ ଉନ୍ମାଦନା ଖେଳିଯାଉଛି। କିନ୍ତୁ ଓଡ଼ିଶାରୁ ଧନୀ, ମାନୀ ଓ ଶିକ୍ଷିତ ଶ୍ରେଣୀର ଲୋକେ ଏଥିରେ ଯୋଗ ଦେଇନାହାନ୍ତି। ସ୍କୁଲ, କଲେଜର ଛାତ୍ର ନିରୀହ ଗ୍ରାମବାସୀ ଓ ଯୁବକ ସଂଗ୍ରାମରେ ଯୋଗ ଦେଇଛନ୍ତି। ସମସ୍ତଙ୍କୁ ଗ ଶ୍ରେଣୀର ରାଜବନ୍ଦୀ କରି ପାଟଣା କ୍ୟାମ୍ପଜେଲକୁ ପଠାଇ ଦିଆ ଯାଉଥିବାରୁ ହଜାରୀବାଗ ଜେଲକୁ ଓଡ଼ିଶାରୁ ରାଜବନ୍ଦୀ ବେଶୀ ଆସୁନାହାନ୍ତି। ବିହାରରୁ କ ଓ ଖ ଶ୍ରେଣୀ ରାଜବନ୍ଦୀ ବେଶୀ ଆସୁଛନ୍ତି। ବିହାର ସଂବାଦ ଯେପରି ଜଣା ପଡୁଛି, ଓଡ଼ିଶା ସଂବାଦ ସେପରି ତଟକା ଶୁଣିବାକୁ ପାଇବାର ସୁବିଧା ଘଟୁନାହିଁ।

## ଧର୍ଷଣା ଓ ଗୁଜରାଟ

କିନ୍ତୁ ସମସ୍ତ ଭାରତକୁ ଗୁଜରାଟ ପ୍ରେରଣା ଦେଉଛି। ଧର୍ଷଣାରେ ଇଂରେଜୀ ସରକାର ଯେ ପ୍ରକାର ସତ୍ୟାଗ୍ରହୀମାନଙ୍କୁ ଧର୍ଷଣ କଲେ, ସେଥିରେ ପାଣି ପବନ, ଆକାଶ, ପୃଥିବୀ ସମସ୍ତ ଥରହର ହେବାକୁ ଆରମ୍ଭ କଲା ପ୍ରାୟ ବୋଧ ହେଲା। ସମଗ୍ର ଭାରତକୁ ଧର୍ଷଣାର ଧର୍ଷଣ ଦୋହଲାଇ ଦେଲା। ଧର୍ଷଣା ଲୁଣଗୋଲାରୁ ଲୁଣ ଆଣିବେ ନତୁବା ଧର୍ଷଣା ରଣପ୍ରାଙ୍ଗଣରେ ପ୍ରାଣବଳୀ ଦେବେ ଏହାହିଁ ହେଲା ପ୍ରତିଜ୍ଞା। ସହସ୍ର ସଂଖ୍ୟାରେ ଗୁଜରାଟ, ବମ୍ବେଇ ଓ ମହାରାଷ୍ଟ୍ରରୁ ସତ୍ୟାଗ୍ରହୀ ଦଳକୁ ଦଳ ଧର୍ଷଣା ଅଭିମୁଖେ ଧାବମାନ ହେଲେ। ପ୍ରତ୍ୟେକ ରେଳଷ୍ଟେସନ, ବଡ଼ ବଡ଼ ରାସ୍ତାର ଛକ, ବଣ ପାହାଡ଼ ନିକଟ ଘାଟିସ୍ଥାନ, ନଦୀ ନାଳର ଘାଟସବୁ ସଶସ୍ତ୍ର ପୋଲିସ ଓ ସୈନ୍ୟ ଜଗି ରହିଲେ। ସତ୍ୟାଗ୍ରହୀକୁ ଦେଖିଲା ମାତ୍ରକେ ଧରି ମାରି ଘୋଷାରି ବଣ ପାହାଡ଼ କଣ୍ଟାଗଦା ଉପରକୁ ଫିଙ୍ଗି ଦେଉଥିଲେ। ଗୁଜୁରାଟର ପ୍ରତ୍ୟେକ ଗ୍ରାମରାସ୍ତା, ନଦୀ ଘାଟ, ନଈ ନାଳ ପୋଲ, ସହର ବଜାର ଆଦି ପ୍ରତ୍ୟେକ ସ୍ଥାନ ଗୋଟିଏ ଗୋଟିଏ ରଣକ୍ଷେତ୍ରରେ ପରିଣତ ହେଲା। ସମଗ୍ର ଭାରତ ମଧ ଉଣା ଅଧିକେ ଏହିପରି ଅବସ୍ଥା ସୃଷ୍ଟି ହୋଇଗଲା। ଓଡ଼ିଶାର ଅବସ୍ଥା ମଧ ତଦ୍ରୂପ ଆକାର ଧାରଣ କଲା ବୋଲି କୁହାଯାଇପାରେ।

## ସ୍ୱାଧୀନତା ସଂଗ୍ରାମର ପ୍ରଭାବ

ବହୁ କାଳରୁ ଭାରତ ପରାଧୀନ। ସ୍ୱାଧୀନତା ଅବା ସ୍ୱାଧୀନ ଜୀବନ କ'ଣ ତାହା ଅନୁଭବ କରିବାର ସୁଯୋଗ ଓ ସୁବିଧା ଭାରତ ଭାଗ୍ୟରେ ଘଟିନାହିଁ। ନିଜ ଦେଶର ଗୌରବ ତଥା ସ୍ୱାଧୀନତା ରକ୍ଷା କରିବା ପାଇଁ ଲଢ଼ାଇ କରିବାକୁ ହେଲେ ଲୋକେ କିପରି ଆତ୍ମହରା ହୋଇ ନିଜକୁ ଭୁଲିଯାନ୍ତି ସେ ଅଭିଜ୍ଞତା ପ୍ରାପ୍ତି କରିବାକୁ ସୁବିଧା ସେ ପାଇ ପାରି ନାହିଁ। ନିଜର ବ୍ୟକ୍ତିତ୍ୱ ପ୍ରକାଶ କରିବା ମନୁଷ୍ୟର ପ୍ରକୃତିଗତ ଲକ୍ଷଣ। ତହିଁରେ ତାହାର ପରମ ଆନନ୍ଦ ନିହିତ। କାର୍ଯ୍ୟ ଓ ଚିନ୍ତାରେ

ମନୁଷ୍ୟର ବ୍ୟକ୍ତିତ୍ୱ ବିକାଶ ପାଏ । ଏହି ବ୍ୟକ୍ତିତ୍ୱ ଯାହାଠାରେ ଯେତିକି ଫୁଟି ବାହାରେ ସେହି ଅନୁପାତରେ ତେତିକି ଲୋକ ତାହାଦ୍ୱାରା ପ୍ରଭାବିତ ହୁଅନ୍ତି । ଯେଉଁ କାର୍ଯ୍ୟ ମନୁଷ୍ୟକୁ ବଳ ଦିଏ, ଆନନ୍ଦ ଦିଏ ଏବଂ ଦେଶ ଓ ସମାଜରେ ଏକ ଅଭିନବ ଜାଗରଣ ସୃଷ୍ଟି କରେ, ସେପରି କାର୍ଯ୍ୟ ସଂପାଦନ କରିବାରେ ମନୁଷ୍ୟର ବ୍ୟକ୍ତିତ୍ୱ ବିକାଶ ଲାଭ କରେ । ପରର ଦୁଃଖ ଲାଘବ କରିବା, ଦେଶର ସ୍ୱାଧୀନତା ରକ୍ଷା କରିବା ପାଇଁ ତ୍ୟାଗ ସ୍ୱୀକାର କରିବା ଇତ୍ୟାଦି କାର୍ଯ୍ୟରେ ଯେଉଁ ଦୁଃଖ ନିର୍ଯ୍ୟାତନା ସହ୍ୟ କରିବାକୁ ପଡ଼େ ଏବଂ ଦରକାର ପଡ଼ିଲେ ନିଜର ଜୀବନ ବଳିଦାନ କରିବାକୁ ହୁଏ, ସେପରି କାର୍ଯ୍ୟରେ ମନୁଷ୍ୟର ମନୁଷ୍ୟତା ବିକାଶ ପାଏ । ଆଜି ସେହି ଶୁଭ ମୁହୂର୍ତ୍ତ ଉପସ୍ଥିତ ହୋଇଛି । ଏହି ଅମୃତ ବେଳାରେ ଭାରତର କୋଟି କୋଟି ନରନାରୀଙ୍କ ହୃଦୟ ଉଦ୍‌ବେଳିତ ହୋଇଛି । ଧର୍ଷଣାର ଆହ୍ୱାନ ସମସ୍ତଙ୍କ ହୃଦୟରେ ସ୍ପନ୍ଦନ ଜାତ କରିଛି । ଧର୍ଷଣାର ଆହ୍ୱାନ, ସତ୍ୟାଗ୍ରହ ସଂଗ୍ରାମର ଆହ୍ୱାନ ଏବଂ ଦେଶକୁ ସ୍ୱାଧୀନ କରିବାର ଆହ୍ୱାନ । ଏହି ଆହ୍ୱାନ ଶୁଣିବା ପାଇଁ ସମଗ୍ର ଭାରତ ଉଦ୍‌ଗ୍ରୀବ । ଏକ ଅପରକୁ ଟପି ଯାଇ ଲବଣ ସତ୍ୟାଗ୍ରହରେ ଆତ୍ମବଳିଦାନ କରିବାକୁ ପ୍ରତ୍ୟେକ ଉଦ୍‌ବିଗ୍ନ । ଧନ, ଜୀବନ, କୁଟୁମ୍ବ ଆଦିର ମାୟାମମତାସବୁ ଉଭେଇ ଯାଉଛି । ସତ୍ୟାଗ୍ରହୀ ଭାବୁଛି, ମୁଁ ସ୍ୱାଧୀନ ହେବି, ଦେଶକୁ ମୋର ସ୍ୱାଧୀନ କରିବି । ମହାତ୍ମାଗାନ୍ଧୀ ସମୁଦ୍ରତଟରେ ଉପସ୍ଥିତ ହୋଇ ଲବଣ ଆଇନକୁ ଅବଜ୍ଞା କରି ସ୍ୱାଧୀନତା ସଂଗ୍ରାମ ଆରମ୍ଭ କରିଛନ୍ତି । ଏହି ସ୍ୱାଧୀନତା ସଂଗ୍ରାମକୁ ଦମନ କରିବାକୁ ଯାଇ ଇଂରେଜ ସରକାର ଭାରତର ବିଭିନ୍ନ ପ୍ରଦେଶରେ ନିରୀହ ଅହିଂସାବାଦୀ ସତ୍ୟାଗ୍ରହୀ ଉପରେ ଯେପରି ଭାବରେ ଧର୍ଷଣ ଆରମ୍ଭ କରିଛନ୍ତି, ତଦ୍ୱାରା ସମୁଦ୍ର ମନ୍ଥନରୁ ଅମୃତ ଜାତ ହେଲାଭଳି ଅମୃତ ତୁଲ୍ୟ ନୂତନ ଜୀବନ ଭାରତବାସୀ ଲାଭ କରିଛି । ଏ ଜୀବନ ଅମର ଓ ଅନନ୍ତ । ଏହା ନିଷ୍ପ୍ରଭ ହୋଇ ପଡ଼ିଥିଲା । ପୁଣି ଜାଗ୍ରତ ହୋଇଛି । ଅତୀତରେ ଏହା ବହୁ ଅତ୍ୟାଚାର ସହ୍ୟ କରିଛି । ନିର୍ବାପିତ ହୋଇନାହିଁ । ଇଂରେଜୀ ସରକାର ଭାରତର ଜାଗ୍ରତ ଜୀବନକୁ ନିର୍ବାପିତ କରିଦେବାକୁ କଦାପି ସକ୍ଷମ ହେବେ ନାହିଁ ।

କେବଳ ମୋର ନୁହେଁ, ଆମ୍ଭମାନଙ୍କର ସମସ୍ତଙ୍କର ମନର ଭାବନା ଏହି ପ୍ରକାର । ଏଭଳି ଚିତ୍ର ଆଖି ଆଗରେ ଝଲକି ଉଠୁଛି ଏବଂ ଏଭଳି ଭାବନା ମନରେ ଅପୂର୍ବ ଆନନ୍ଦ ଜାଗ୍ରତ କରୁଛି । ସୁତରାଂ ଆଶ୍ରମ କର୍ମୀମାନଙ୍କ ନିକଟରୁ ପତ୍ର ପାଇ ମନରେ ଯେଉଁ ବିଷାଦ ଭାବ ଜାଗି ଉଠେ ତାହା କ୍ଷଣକେ କୁଆଡ଼େ ଉଭେଇଯାଏ । ଅନେକ ସମୟରେ ଭାବେ, ସଂଗ୍ରାମରେ ଯୋଗ ଦେବା ପୂର୍ବରୁ ଆଶ୍ରମକୁ ଭାଙ୍ଗିଦେଇ ସବୁ ବିକ୍ରି କରି ସତ୍ୟାଗ୍ରହ ପାଣ୍ଠିରେ ଜମା କରିଦେବା ଉଚିତ ଥିଲା । କିଛି ଦିନ ପୂର୍ବରୁ ଆଶ୍ରମରୁ ଖଣ୍ଡିଏ ପତ୍ର ପାଇଥାଏ । କେନ୍ଦୁପାଟଣା ନିକଟ ଗୋଟିଏ ସୂତାକଟା କେନ୍ଦ୍ରର କାମ ବନ୍ଦ କରି ଦିଆଯାଇଛି ବୋଲି ଉକ୍ତ ପତ୍ରରେ

ଲେଖାଥିଲା। ସେହି କେନ୍ଦ୍ରର କର୍ମୀ ହିସାବ କିତାବରେ ଗୋଳମାଳ କରିବା ଦୋଷରୁ ତାହାକୁ କାର୍ଯ୍ୟରୁ ଅନ୍ତରକରି ଦିଆଯାଇଅଛି। ତୂଳା ସୂତା ରହିଥିବା ଘରେ ତାଲା ପଡ଼ିଛି। ସେଠାକୁ କେହି ଯାଉ ନାହାନ୍ତି। ଗଲେ ଉକ୍ତ କର୍ମୀ ଫଉଜଦାରୀ କରିବାର ଭୟ। ଛ'ମହଣ ତୂଳା ଓ ୩/୪ ମହଣ ପର୍ଯ୍ୟନ୍ତ ଅରଟ କଟା ସୂତା ସେ ଘରେ ଅଛି। କଚା ମାଟି ଘର। ଦିନେ ନ ଦେଖିଲେ ମୂଷା ନଷ୍ଟ କରିଦେବ। ଉଈ ଲାଗିଯିବ। କାହାରି ସେ ବିଷୟରେ କିଛି ଚିନ୍ତା ନାହିଁ। ଏହିପରି ସଂବାଦ ପାଇ ମୋର ଯେପରି ଯାହା ନିର୍ଦ୍ଦେଶ ଦେବାର ତାହା ଲେଖି ପଠାଇଲି ସତ୍ୟ। ତଥାପି ଏପରି ସଂବାଦରେ ମନରେ ଗଭୀର ଦୁଃଖ ଏବଂ ଆଶ୍ରମର ଭବିଷ୍ୟତ ବିଷୟରେ ମନରେ ଉଦ୍‌ବେଗ ଜାତ ହୋଇଥିବାରୁ ଆଶ୍ରମ ଭାଙ୍ଗି ବିକ୍ରି କରିଦେବାର ଭାବନା ମନରେ ସ୍ଥାନ ପାଇଥିଲା। ଶେଷରେ ଆଶ୍ରମରେ ଏହିପରି ନାନା ବିଶୃଙ୍ଖଳା ଘଟି ସମସ୍ତ କାର୍ଯ୍ୟ ବନ୍ଦ ହୋଇ ଆଶ୍ରମ ଯଦି ଭାଙ୍ଗିଯାଏ ତେବେ ତାହା ମୋର ଗୋଟିଏ ଚରମ ତ୍ୟାଗ ହେବ ବୋଲି କବି ମନକୁ ଟାଣ କରି ନେଇଥିଲି।

ବର୍ତ୍ତମାନ କୌଣସି ପ୍ରକାର ତ୍ୟାଗ ବଡ଼ ତ୍ୟାଗ ବୋଲି ଭାବିବାକୁ ମନ ପ୍ରସ୍ତୁତ ନୁହେଁ। ଲାଠି ଓ ବନ୍ଧୁକ ମନୁଷ୍ୟ ହୃଦୟରୁ ବିଶ୍ୱାସ ଓ ଅଟଳ ପ୍ରତିଜ୍ଞାର ଦୃଢ଼ ଭାବନାକୁ ଲୋପ କରିଦେବାକୁ ବସିଛି। ଏଥିରେ ଆମ୍ଭମାନଙ୍କୁ କ'ଣ ଦେଖିବାକୁ ମିଳୁଛି। ଏକ ପକ୍ଷରେ ଲାଠି ଓ ବନ୍ଧୁକଧାରୀ ପୋଲିସ ସୈନ୍ୟ, ଅପର ପକ୍ଷରେ ଗାନ୍ଧିଟୋପି ପିନ୍ଧିଥିବା ସତ୍ୟାଗ୍ରହୀ ସେନା। ଏହି ଚିତ୍ର କଳ୍ପନା କଲେ ମନରେ ଘୋର ଦୁଃଖ ଓ ନୈରାଶ୍ୟ ଭାବ ଜାତ ହେଉଛି। କାରଣ ଉଭୟେ ଭାରତମାତାର ସନ୍ତାନ। ଭାରତର ସମସ୍ତ ବିଭବ ଅପହରଣ କରି ଯେଉଁ ବିଦେଶୀ-ସରକାର ଦେଶକୁ ଦଖଲ କରି ବସିଛି, ତାହାକୁ ସେହିପରି ଦୃଢ଼ ରଖିବା ପାଇଁ ଦଳେ ଲୋକ ନିଜକୁ ଆତ୍ମସମର୍ପଣ କରୁଛନ୍ତି। ଆଇନ୍ କାନୁନ୍ ବାହାନାରେ ସେମାନେ ଦରକାର ପଡ଼ିଲେ ନିଜର ଭାଇବନ୍ଧୁଙ୍କର ମୁଣ୍ଡ ପଠାଇ ଦେବାକୁ ତିଳେମାତ୍ର କୁଣ୍ଠାବୋଧ କରୁନାହାନ୍ତି। ଅନ୍ୟ ଦଳ ଭାରତର ମାନ୍‌ମର୍ଯ୍ୟାଦା ରକ୍ଷା କରିବାକୁ ଏବଂ ଭାରତର ଲୁପ୍ତ ଗୌରବ ପୁନଃଦ୍ଧାର କରିବା ଉଦ୍ଦେଶ୍ୟରେ ଏହି ବିଦେଶୀ ଶାସନକୁ ଲୋପ କରିବା ପାଇଁ ନିଜର ପିତା ମାତା ଭାଇ ଭଗ୍ନୀଙ୍କର ଜୀବନକୁ ବଳିଦାନ ଦେବା ପାଇଁ ସଂକଳ୍ପ କରିଛନ୍ତି। ଏକ ପକ୍ଷର ହାତର ଲାଠି ଓ ବନ୍ଧୁକ, ଅନ୍ୟ ପକ୍ଷରେ କେବଳ ମାତ୍ର ସେମାନଙ୍କ ହୃଦୟର ପ୍ରେରଣା ଏବଂ ସେହି ପ୍ରେରଣାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ନିଜର ଅଟଳ ପ୍ରତିଜ୍ଞା। ଏହି ପ୍ରତିଜ୍ଞା ବଳରେ ନିରସ୍ତ୍ର ସତ୍ୟାଗ୍ରହୀ ବଳୀୟାନ। ଲାଠି ବନ୍ଧୁକକୁ ତାର ଭୟ ନାହିଁ। କୌଣସି ପ୍ରକାର ମାୟାମମତା ତାକୁ ପଛକୁ ଟାଣି ପାରୁନାହିଁ। ଇଂରେଜୀ ସରକାରଙ୍କ ଆଇନ୍ କାନୁନ ଅବଜ୍ଞା କରିବାକୁ ସେ ଖକତି ହେଉନାହିଁ। ସମସ୍ତ ପ୍ରକାର ଦୁଃଖ ଓ ନିର୍ଯ୍ୟାତନାକୁ ସହ୍ୟ କରି ଓ ଲୁଣ

ମାରି ଆଣି ବିକ୍ରି କରୁଛି। ସେହି ବେଆଇନ୍ ଲୁଣ ହାଟ ବଜାରରେ ବିକ୍ରି ହେଉଛି। ଏହି ଲୁଣ ମୂଲ୍ୟ ଅମାପ। ପଗଡ଼େ ଲୁଣକୁ ମଧ୍ୟ ଲୋକେ ଶହେ ଓ ହଜାର ଟଙ୍କା ଦେଇ ଆନନ୍ଦରେ କିଣି ନେଉଛନ୍ତି। ଯେ ବିକିପାରୁଛି, ସେ ନିଜକୁ ଧନ୍ୟ ମନେ କରୁଛି, ଯେ କିଣି ପାରୁଛି ସେ ଭାବୁଛି ଦେଶପ୍ରତି ସେ ତାର କର୍ତ୍ତବ୍ୟ କରିପାରିଲା। ମହାପ୍ରସାଦକୁ ଲୋକେ ଯେଉଳି ଭକ୍ତି କରନ୍ତି, ବେଆଇନ୍ ଲୁଣକୁ ସେପରି ଭକ୍ତି ଓ ଶ୍ରଦ୍ଧାପୂର୍ଣ୍ଣ ହୃଦୟରେ ଲୋକେ ଗ୍ରହଣ କରୁଛନ୍ତି।

## ଶାନ୍ତିସ୍ଥାପନ ପାଇଁ ଚେଷ୍ଟା

ଆଜିପର୍ଯ୍ୟନ୍ତ ଦେଶରେ ଶାନ୍ତି ବିରାଜୁଥିଲା। ଦେଶର ଶାସନ ଚଳାଇବାରେ ଶାସନକର୍ତ୍ତାମାନଙ୍କ ମନରେ କୌଣସି ପ୍ରକାର ଉଦ୍‌ବେଗର ଭାବ ଜାତ ହେବା ଭଳି କୌଣସି ପରିସ୍ଥିତି ଉପୁଜି ନାହିଁ। ସରକାରଙ୍କର ଆଇନ୍ କାନୁନ୍ ସବୁ ପ୍ରକାଶ୍ୟରେ ଅମାନ୍ୟ କରି ତହିଁରେ ଆନନ୍ଦ ଓ ଗୌରବ ଅନୁଭବ କରିବା ମନୋବୃତ୍ତି ଦେଶରେ କ୍ରମଶଃ ବୃଦ୍ଧି ପାଇବା ଏକ ବିପଦଜନକ ପରିସ୍ଥିତି। ଏପରି ପରିସ୍ଥିତିରେ ଦେଶରେ ଶାନ୍ତିଶୃଙ୍ଖଳା ରଖି ଶାସନ କରିବା ସରକାରଙ୍କ କର୍ତ୍ତବ୍ୟ। ଲୋଭ ପରବଶ ହୋଇ ନିଜର ବ୍ୟକ୍ତିଗତ ସ୍ୱାର୍ଥସାଧନ କରିବାକୁ ଯାଇ କେହି ଆଇନକୁ ଅମାନ୍ୟ କଲେ ସେପରି ଲୋକକୁ ଦଣ୍ଡ ଦେବା ଯେପରି ସ୍ପୃହଣୀୟ, ଦେଶ ଓ ସମାଜ ପକ୍ଷରେ ତାହା ମଧ୍ୟ ସେପରି କଲ୍ୟାଣକର। କିନ୍ତୁ ଦେଶ ଓ ସମାଜର କଲ୍ୟାଣ କାମନା କରି ଯଦି ହଜାର ହଜାର ଏପରି କି ଲକ୍ଷ ଲକ୍ଷ ଲୋକ ଆଇନ୍ ଅମାନ୍ୟ କରନ୍ତି ଏବଂ ସେପରି କରିବାରେ ଗୌରବ ଅନୁଭବ କରି, ଅନ୍ୟାନ୍ୟ ସମସ୍ତଙ୍କୁ ସେପରି କରିବାକୁ ଆହ୍ୱାନ କରନ୍ତି ତେବେ ଦେଶର ଶାସନକଳ କଦାପି ତିଷ୍ଠି ନ ପାରେ। ଆଇନ୍ କାନୁନ୍ ଶାସନର ଅଙ୍ଗପ୍ରତ୍ୟଙ୍ଗ। ଆଇନ୍ କାନୁନ୍‌କୁ ଭଙ୍ଗ କରିବା ଅର୍ଥ ଏହି ଅଙ୍ଗ ପ୍ରତ୍ୟଙ୍ଗକୁ ଛେଦନ କରିବା। ଦେଶର ଏପରି ପରିସ୍ଥିତି ସୃଷ୍ଟିହେଲେ ଶାସନର ଦାୟିତ୍ୱ ବହନ କରିଥିବା ଲୋକେ କଦାପି ନିଶ୍ଚିନ୍ତ ହୋଇ ରହି ନ ପାରନ୍ତି। ସୁତରାଂ ସତ୍ୟାଗ୍ରହ-ସଂଗ୍ରାମ ଅତି ବ୍ୟାପକ ଆକାର ଧାରଣ କରିବାରୁ ଭାରତ ସରକାର ବିବ୍ରତ ହୋଇ ପଡ଼ୁଥିବାର ଲକ୍ଷଣ ପ୍ରକାଶ ପାଇଲା।

ଭାରତରେ ଦଳେ ରାଜନୈତିକ ପୁରୁଣା ଲୋକ ଅଛନ୍ତି। ଏହି ଦଳ ଲିବରାଲ ଅର୍ଥାତ୍ ନରମପନ୍ଥୀ ଦଳ ନାମରେ ପରିଚିତ। ଲାଟ ଓ ବଡ଼ଲାଟଙ୍କ ଦୁଇଟିଯାକ ସଭା ବର୍ଜନ କରି କଂଗ୍ରେସ ସତ୍ୟାଗ୍ରହ ଲଢ଼େଇ କରୁଥିବାବେଳେ ଏହି ନରମପନ୍ଥୀ ଦଳର ଲୋକେ ସେହି ଉଭୟ ସଭାରେ ସଭ୍ୟ ରହିଛନ୍ତି। ୧୯୩୦ ମସିହା ଜୁଲାଇ ୯ ତାରିଖ ଦିନ ବଡ଼ଲାଟ ସାହେବ ତାଙ୍କର ଉଭୟ ସଭାରେ ବୈଠକ ବସାଇ ଭାରତର ରାଜନୈତିକ ପ୍ରଶ୍ନର ସମାଧାନ କରିବାକୁ ବ୍ରିଟିଶ ସରକାର ବିଲାତରେ

ଗୋଟିଏ ଗୋଲଟେବୁଲ ବୈଠକ ବସାଇବାକୁ ସ୍ଥିର କରିଛନ୍ତି ବୋଲି ଘୋଷଣା କଲେ। ସତ୍ୟାଗ୍ରହ ସଂଗ୍ରାମ ଯୋଗୁ ଦେଶର ପରିସ୍ଥିତି ଅତି ଉତ୍କଟ ଆକାର ଧାରଣ କରୁଥିବାରୁ ବ୍ରିଟିଶ ସରକାର ଏପରି ଘୋଷଣା କରିବାକୁ ବାଧ ହୋଇଛନ୍ତି ବୋଲି ବୁଝିବାକୁ ଆଉ କାହାରି ମନରେ ସନ୍ଦେହ ରହିଲା ନାହିଁ। କିନ୍ତୁ ବଡ଼ଲାଟଙ୍କ ଉଭୟ ସଭାରେ ସଭ୍ୟଥିବା ନରମପନ୍ଥୀ ଦଳର ସମସ୍ତେ ଏକତ୍ର ବସି ସରକାର କଂଗ୍ରେସ ମଧ୍ୟରେ ମିଳାମିଶା କରେଇବାକୁ ଆଲୋଚନା କରିଥିଲେ। ଏହି ମିଳାମିଶା କାର୍ଯ୍ୟ କରେଇବା ପାଇଁ ଶ୍ରୀ ତେଜବାହାଦୂର ସାପ୍ରୁ ଏବଂ ଶ୍ରୀ ଜୟକରଙ୍କ ଉପରେ ଦାୟିତ୍ୱ ଅର୍ପଣ କରାଗଲା। ଏହି କାର୍ଯ୍ୟ ସାଧନ କରିବାକୁ ସମସ୍ତ ସୁବିଧା ପାଇବାକୁ ସେମାନେ ବଡ଼ଲାଟ ସାହେବଙ୍କ ଅନୁମତି ଲୋଡ଼ିଥିଲେ। ବଡ଼ଲାଟଙ୍କଠାରୁ ଅନୁମତି ଗ୍ରହଣ କରି ଶ୍ରୀ ସାପ୍ରୁ ଓ ଶ୍ରୀ ଜୟକର ପୁନା ନିକଟ ଜରବଦା ଜେଲରେ ଗାନ୍ଧିଜୀଙ୍କ ସହିତ ସାକ୍ଷାତ କଲେ। ଗାନ୍ଧିଜୀଙ୍କ ନିକଟରୁ କିଛି ବାର୍ତ୍ତା ଧରି ନୈନିତାଲ ଆସିଲେ। ସେଠା ଜେଲରେ ପଣ୍ଡିତ ମୋତିଲାଲ ଓ ଶ୍ରୀ ଜବାହାରଲାଲଙ୍କ ସହିତ କଥୋପକଥନ କରିଥିଲେ। କଂଗ୍ରେସର କାର୍ଯ୍ୟକାରୀ ସମିତିର ସଭ୍ୟମାନଙ୍କ ସହିତ, ନଚେତ୍ ମହାତ୍ମାଗାନ୍ଧୀଙ୍କ ସହିତ ସାକ୍ଷାତ ଭାବେ କଥା ନହୋଇ ସେମାନେ କୌଣସି କଥା ନିଶ୍ଚୟ କରି କହି ପାରିବେ ନାହିଁ ବୋଲି ଶୁଣାଇ ଦେଇଥିଲେ। ସୁତରାଂ ପୁଣି ବଡ଼ଲାଟ ସାହେବଙ୍କ ଅନୁମତି ମଗାଇ, ପିତା ପୁତ୍ର ଦୁହିଁକୁ ସଙ୍ଗରେ ଧରି ଶ୍ରୀ ସାପ୍ରୁ ଓ ଶ୍ରୀ ଜୟକର ଜେରବଦା ଜେଲରେ ପୁଣି ଉପସ୍ଥିତ ହେଲେ। ତିନି ଦିନ ପର୍ଯ୍ୟନ୍ତ ଆଲୋଚନା କଲା ପରେ ଗାନ୍ଧୀ ଖଣ୍ଡିଏ ପତ୍ର ବଡ଼ଲାଟ ସାହେବଙ୍କ ନିକଟକୁ ଲେଖିଥିଲେ ଏବଂ ଉକ୍ତ ପତ୍ରଖଣ୍ଡି ଧରି ଶ୍ରୀ ସାପ୍ରୁ ଓ ଜୟକର ଦିଲ୍ଲୀ ଫେରି ବଡ଼ଲାଟଙ୍କୁ ଉକ୍ତ ପତ୍ରଖଣ୍ଡି ପ୍ରଦାନ କରିଥିଲେ।

ଏହି ସଂବାଦ ଜେଲରେ ପ୍ରବେଶ କରିବାକୁ ରାଜବନ୍ଦୀମାନଙ୍କ ମଧ୍ୟରେ ଗୋଟାଏ ଚହଳ ପଡ଼ିଗଲା। ଏ ସଂବାଦ ଶୁଣି ନାନାପ୍ରକାର ଯୁକ୍ତିତର୍କ ଲାଗିଗଲା। କଂଗ୍ରେସ ସତ୍ୟାଗ୍ରହ ସ୍ଥଗିତ ରଖି ବିଲାତରେ ବସୁଥିବା ଗୋଲଟେବୁଲ ବୈଠକରେ ଯୋଗଦେବାକୁ ନିଷ୍ପତ୍ତି କଲେ। ରାଜବନ୍ଦୀ ସବୁ ଅଚିରେ ଜେଲରୁ ମୁକ୍ତହେବେ, ଏଥିରେ କୌଣସି ସନ୍ଦେହ ନାହିଁ। ଜେଲରୁ ଶୀଘ୍ର ମୁକ୍ତି ପାଇବାର ଆଶା ଅନେକଙ୍କ ମନରେ ପ୍ରବଳ ଆକାର ଧାରଣ କରିଥିଲା। ଏ ସମ୍ବନ୍ଧରେ ମୋ ମନ ମଧ ଚଞ୍ଚଳ ହୋଇ ଉଠିଥିଲା। କାରଣ ଆଶ୍ରମ କାର୍ଯ୍ୟରେ ବହୁ ତ୍ରୁଟି ଓ ବିଶୃଙ୍ଖଳା ଘଟୁଥିବାର ସମ୍ବାଦ ମୁଁ ପ୍ରତ୍ୟେକ ଚିଠିରେ ଜାଣିବାକୁ ପାଉଥାଏ। ତେଣୁ ଜେଲରୁ ଶୀଘ୍ର ମୁକ୍ତି ପାଇବାର ସଙ୍କେତ ଦେଖାଗଲେ ମୋ ମନରେ ଆନନ୍ଦ ଜାତ ହେଉଥିଲା। ଜେଲ ଜୀବନ କଦାପି ଆନନ୍ଦଦାୟକ ନୁହେଁ। କିଛି ଦିନ ଜେଲରେ ରହିଲା ପରେ ମନ ଓ ଶରୀରରେ ଅସ୍ଥିରତା ଆସିଯାଏ। ସୀମାବଦ୍ଧ ହୋଇ ରହିବା ମନୁଷ୍ୟ ପ୍ରକୃତିର କଦାପି ଅନୁକୂଳ ନୁହେଁ।

ଯେତେ ସୁଖ ସୁବିଧା ଓ ମନୋହର ବେଷ୍ଟନୀ ମଧ୍ୟରେ ରହିଲେ ମଧ ମନୁଷ୍ୟ ମନ ସବୁବେଳେ ପରିବର୍ତ୍ତନ ଇଚ୍ଛା କରେ। ଜେଲରେ ସେହି କ୍ଷୁଦ୍ର ବେଷ୍ଟନୀ, ସେହି ଘର, ସେହି ସାଙ୍ଗସାଥୀ, ପ୍ରତିଦିନ ମନୁଷ୍ୟ ଦେଖିବାକୁ ପାଏ। ଏକାଭଳି ଗୋଟିଏ ବାତାବରଣରେ ରହିଲେ ମନ ଘଷରା ଧରିଯାଏ। ଜେଲଖାନାରେ କେତେବର୍ଷ ରହିଗଲେ ଅକାଳବାର୍ଦ୍ଧକ୍ୟ ମାଡ଼ି ବସିଲା ପରି ମନୁଷ୍ୟ ବୋଧକରେ। ସ୍ୱାଧୀନ ଭାବରେ କାର୍ଯ୍ୟ କରିବା, ଖେଳିବା, ବୁଲିବା, ଇତସ୍ତତଃ ଗମନକରିବା, ବିଭିନ୍ନ ଲୋକଙ୍କୁ ବିଭିନ୍ନ କାର୍ଯ୍ୟ ପ୍ରସଙ୍ଗରେ ଦେଖାସାକ୍ଷାତ କରିବା ଇତ୍ୟାଦିର ସୁବିଧା ଅପହୃତ ହେଲେ, ସେପରି ପରିସ୍ଥିତି ବେଶୀଦିନ ସୁଖକର ହୁଏ ନାହିଁ। କିନ୍ତୁ ଦେଶର ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଜେଲ ବରଣ କରିଥିବାରୁ ଆମ୍ଭମାନଙ୍କ ମନ ସବୁବେଳେ ପ୍ରଫୁଲ୍ଲ ଥାଏ। ସେ ଯାହାହେଉ ବଡ଼ଲାଟଙ୍କ ଗୋଲମେଜ ବୈଠକର ଘୋଷଣା ପ୍ରକାଶ ଓ ଶ୍ରୀ ଜୟକର ଓ ସାପ୍ରୁଙ୍କର ଉଦ୍ୟମରେ ପଣ୍ଡିତ ମୋତିଲାଲ ଓ ଜହରଲାଲଙ୍କ ଜେରବଦା ଜେଲରେ ମହାତ୍ମାଗାନ୍ଧୀଙ୍କ ସହିତ ଭେଟ ହେବା ଇତ୍ୟାଦି ସମ୍ବାଦରେ ଜେଲରୁ ମୁକ୍ତି ପାଇବାପାଇଁ ଆଶାବାଦୀ ହେବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ।

## ଶାନ୍ତିସ୍ଥାପନ ହୋଇପାରିଲା ନାହିଁ

କିନ୍ତୁ ଜୟକର ଓ ସାପ୍ରୁଙ୍କ ଚେଷ୍ଟା ଫଳବତୀ ହେଲା ନାହିଁ। ଭାରତର ବଡ଼ଲାଟ ଲର୍ଡ଼ ଇରଉଇନ୍ ସାହେବ ଗାନ୍ଧୀଜୀ ଲେଖିଥିବା ସର୍ତ୍ତ ଗ୍ରହଣ ନ କରି ଯାହା ପ୍ରକାଶ କଲେ ତଦ୍ଦ୍ୱାରା ଭାରତର ରାଜନୈତିକ ପ୍ରଶ୍ନ ସମାଧାନ ହୋଇ ପାରିବ ବୋଲି କଂଗ୍ରେସ ନେତୃବର୍ଗଙ୍କର ବିଶ୍ୱାସ ଜନ୍ମିଲା ନାହିଁ। ଭାରତ ପୂର୍ଣ୍ଣ ସ୍ୱାଧୀନ ହେବାକୁ କଂଗ୍ରେସ ସଂଗ୍ରାମ ଆରମ୍ଭ କରିଛି। ଏହି ସଂଗ୍ରାମକୁ ସ୍ଥଗିତ ରଖି ବିଲାତର ଗୋଲଟେବୁଲ ବୈଠକରେ ଯୋଗଦେଲେ। ଏହି ପ୍ରଶ୍ନ ସମାଧାନ ହୋଇପାରିବା ଭଳି କୌଣସି କଥା ବଡ଼ଲାଟ ସାହେବଙ୍କ ଘୋଷଣା ସୂଚିତ କରୁନାହିଁ। ସମସ୍ତେ ଏକ ସ୍ୱରରେ ବରଂ କଂଗ୍ରେସର ଆନ୍ଦୋଳନକୁ ତୀବ୍ର ନିନ୍ଦା କରିଛନ୍ତି। ଏପରି ଅବସ୍ଥାରେ ସଂଗ୍ରାମକୁ ଅଧିକ ବ୍ୟାପକ ଓ ଉତ୍କଟ କରିବା ବ୍ୟତୀତ କଂଗ୍ରେସ ସମ୍ମୁଖରେ ଅନ୍ୟ କୌଣସି ବାଟ ରହିଲା ନାହିଁ। ଏହାପରେ ଏହ୍ଲାବାଦଠାରେ କଂଗ୍ରେସ କାର୍ଯ୍ୟକାରୀ ସମିତିର ବୈଠକ ବସିଥିଲା। ମାଦାଦଲଙ୍କ ପ୍ରସ୍ତାବ, ଅର୍ଥାତ୍ ସତ୍ୟାଗ୍ରହ ବନ୍ଦ କରି ଗୋଲଟେବୁଲ ବୈଠକରେ ଯୋଗଦେବା କଥା ଏବଂ ବଡ଼ଲାଟ ସାହେବଙ୍କର ବିବୃତ୍ତି, ଉଭୟକୁ ବିଚାର କରି କଂଗ୍ରେସ ଉପଲବ୍ଧି କଲା ଯେ ଭାରତର ସମସ୍ୟା ସମାଧାନ କରିବାର ଏକମାତ୍ର ସରଳ ଓ ସହଜ ମାର୍ଗ ମହାତ୍ମାଗାନ୍ଧୀଙ୍କ ଦ୍ୱାରା ପ୍ରଦର୍ଶିତ ସତ୍ୟାଗ୍ରହ ସଂଗ୍ରାମ। ଏଥିପାଇଁ କଂଗ୍ରେସର କାର୍ଯ୍ୟକାରୀ ସମିତି ପ୍ରଥମେ ମହାତ୍ମାଗାନ୍ଧୀଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରି ସଂଗ୍ରାମକୁ ଦୃଢ଼ିଭୂତ ଓ ବ୍ୟାପକ

କରିବା ପାଇଁ କର୍ମପନ୍ଥା ସ୍ଥିର କଲେ। ଧର୍ଷଣା ରଣପ୍ରାଙ୍ଗଣ ସମଗ୍ର ଭାରତର ରଣପ୍ରାଙ୍ଗଣ ରୂପେ ଘୋଷିତ ହେଲା। ବିଦେଶୀ ଲୁଗା ବର୍ଜନ କରି ବିଦେଶୀ ଲୁଗାଦୋକାନ, ମଦ, ଅଫିମ ଦୋକାନ ଆଦିରେ ପିକେଟିଙ୍ଗ୍ ଜାରୀ ହେବ। ଖଜଣାବନ୍ଦ ଆନ୍ଦୋଳନ ସୃଷ୍ଟି କରାଯିବ। ବିଦେଶୀ ବ୍ୟାଙ୍କ, ଜାହାଜ, ବିମାକମ୍ପାନୀ ଓ ବିଦେଶୀ କଳକାରଖାନାସବୁ ବର୍ଜନ କରାଯିବ। କଂଗ୍ରେସର ଇଙ୍ଗିତରେ ସତ୍ୟାଗ୍ରହ ସଂଗ୍ରାମ ଭୀଷଣ ବ୍ୟାପକ ଆକାର ଧାରଣ କଲା। ଏହାର ଗତିରୋଧ କରିବା ସରକାରଙ୍କର ହେଲା ବର୍ତ୍ତମାନ ଏକମାତ୍ର କାର୍ଯ୍ୟ।

ଜେଲଖାନାରୁ ଶୀଘ୍ର ବାହାରକୁ ବାହାରିବାର ମନରେ ଯେଉଁ ଉତ୍କଣ୍ଠା ଜାଗ୍ରତ ହୋଇଥିଲା ତାହା କୁଆଡ଼େ ଉଭେଇ ଗଲା, ମନଟା ଆଉ ଜେଲ ଭିତରେ ନ ଥିଲା। ବାହାରକୁ ଯାଇ କିପରି କଣ କରିବାକୁ ହେବ ସେହି ଭାବନା ଓ ଚିନ୍ତା ମନକୁ ଅଧିକାର କରିଥିଲା। ସାଧାରଣତଃ ଅଧିକାଂଶ ସମୟରେ ମନ ବାହାରେ ଥାଏ। ଦେଶରେ ଘଟୁଥିବା ଘଟଣାସବୁ ଜାଣିବାପାଇଁ ମନ ଯେତେ ଚଞ୍ଚଳ ହୋଇ ଉଠେ, ଆଉ କୌଣସି ବିଷୟ ମନକୁ ତେତେ ସ୍ପର୍ଶ କରେ ନାହିଁ। କିନ୍ତୁ ସତ୍ୟାଗ୍ରହ ସଂଗ୍ରାମର ଘଟଣା ଜାଣିବା ଓ ତହିଁର ଚିତ୍ରକଳ୍ପନା କରିବା ଦ୍ୱାରା ଯେଉଁ ମନୋବୃତ୍ତି ଏବଂ ବାହାରକୁ ଯାଇ କର୍ମକ୍ଷେତ୍ରରେ ଉପସ୍ଥିତ ହୋଇ କାର୍ଯ୍ୟ କରିବାପାଇଁ ଟଟକା ସୁବିଧା ଘଟିବାର ସମ୍ଭାବନା ଦେଖି ଯେଉଁ ମନୋବୃତ୍ତି ଜାତ ହୋଇଥିଲା ଏହି ଉଭୟ ମଧ୍ୟରେ ବହୁତ ପ୍ରଭେଦ। ସମାଧାନର ଚେଷ୍ଟା ବିଫଳ ହେବାରୁ ମନ ମଉଳି ଗଲା। କଠୋର ଦମନଲୀଳାର ଯେଉଁ ତାଣ୍ଡବନୃତ୍ୟ ସରକାର ଆରମ୍ଭ କଲେ ତଦ୍ୱାରା ମନ ଅଧିକ ଚଞ୍ଚଳ ହୋଇ ଉଠିଲା। ବିଭିନ୍ନ ପ୍ରଦେଶରେ ସତ୍ୟାଗ୍ରହ ସଂଗ୍ରାମ କିପରି ଆକାର ଧାରଣ କରୁଛି ତାହା ଜାଣିବାକୁ ମନ ଉଦ୍‌ବିଗ୍ନ ହେଲା। ଜେଲଖାନାରୁ ବାହାରି କର୍ମକ୍ଷେତ୍ରରେ ଉପସ୍ଥିତ ହୋଇ କାର୍ଯ୍ୟ କରିବାର ସବୁ ସ୍ୱପ୍ନ ଅବିଳମ୍ବେ କୁଆଡ଼େ ଉଭେଇ ଯାଇଥିଲା।

ଏ ପର୍ଯ୍ୟନ୍ତ କଂଗ୍ରେସର ଲୋକେ ଆଇନ୍ ଅମାନ୍ୟ କରୁଥିଲେ କିନ୍ତୁ କଂଗ୍ରେସର ଲୋକକୁ ଦମନ କରିବାକୁ ଯାଇ ସରକାରୀ ଲୋକ ମଧ୍ୟ ଆଇନର ମର୍ଯ୍ୟାଦା ଲଙ୍ଘନ କଲେ। ଦେଶରୁ ଆଇନ୍ କାନୁନ୍‌ର ମର୍ଯ୍ୟାଦା ଏକାବେଳେକେ ଲୋପ ପାଇଲା। ବଡ଼ଲାଟ ସାହେବ ଅଡ଼ିନାନ୍ସ ଉପରେ ଅଡ଼ିନାନ୍ସମାନ ଜାରୀ କଲେ। କଂଗ୍ରେସର ଲୋକ, କଂଗ୍ରେସର ପତାକା, କଂଗ୍ରେସ ଅଫିସ୍ ଏପରିକି କଂଗ୍ରେସର ନାମ ପର୍ଯ୍ୟନ୍ତ ସରକାରଙ୍କ ଚକ୍ଷୁକୁ ବିଦ୍ରୋହସୂଚକ ବୋଲି ଦେଖାଗଲା। କଂଗ୍ରେସକୁ ବେଆଇନ୍ ଅନୁଷ୍ଠାନ ବୋଲି ଘୋଷଣା କରାଗଲା। କଂଗ୍ରେସର ନାମ ଉଚ୍ଚାରଣ କରିବା ରାଜଦ୍ରୋହ ବୋଲି ଧରାଗଲା। କଂଗ୍ରେସ ନାମ ଧରିବା, କଂଗ୍ରେସ ଲୋକଙ୍କ ସହିତ କଥାହେବା, ସେମାନଙ୍କୁ ସାହାଯ୍ୟ କରିବା, ଘରେ ଆଶ୍ରୟ ଦାନ କରିବା, ଖାଦ୍ୟପେୟ କିଛି

ସାହାଯ୍ୟ ଦେବା ଇତ୍ୟାଦି କାର୍ଯ୍ୟ ସରକାରଙ୍କ ବିଦ୍ରୋହାତ୍ମକ ବୋଲି ବିବେଚିତ ହେଲା । ସୁତରାଂ କଂଗ୍ରେସ ଅଫିସଘର ଏବଂ କଂଗ୍ରେସ ନାମରେ ଯେତେ ସବୁ ଅନୁଷ୍ଠାନ ଦେଶରେ ଗଢ଼ା ଯାଇଥିଲା ସେ ସବୁ ସରକାର ଦଖଲ କରିନେଲେ । ବ୍ୟାଙ୍କରେ କଂଗ୍ରେସର ଯାହା କିଛି ପାଣ୍ଠି ଜମାଥିଲା ସେ ସବୁ ବାଜ୍ୟାପ୍ତ କରାଗଲା । କଂଗ୍ରେସର ନାମ ଗନ୍ଧ ଯେପରି ଦେଶରୁ ଲୋପ ପାଇଯିବ ସେହିପରି ବ୍ୟବସ୍ଥା ସରକାର ଅବଲମ୍ବନ କଲେ । ଲୁଣ ମାରିବାପାଇଁ ଗଢ଼ା ଯାଇଥିବା ଶିବିର ସବୁ ଧୂଳିସାତ୍ କରି ଦିଆଯାଇଥିଲା ।

ଦେଶକୁ ସ୍ୱାଧୀନ କରିବାକୁ ଯେଉଁ ଦେଶର ଲୋକେ ହସି ହସି ମରିବାକୁ ପରମ ଭାଗ୍ୟ ମନେ କରୁଛନ୍ତି, ସେ ଦେଶର ଲୋକଙ୍କୁ ଅଡ଼ିନାନ୍ସ ବଳରେ ଭୟଭୀତ କରାଇ ଦବାଇ ଦେବାକୁ ଚେଷ୍ଟାକରିବା କେବଳ ପାଗଳାମି ବ୍ୟତୀତ ଆଉ କଣ ହୋଇପାରେ ? ଦେଶର ପ୍ରାଣ ବିଦେଶୀ ଶାସନର ଉତ୍ପୀଡ଼ନରେ ଉଦ୍‌ବେଳିତ ହେଉଛି । ଏଥିରୁ ଉଦ୍ଧାର ପାଇବାକୁ ଦେଶ ବାଟ ଖୋଜୁଥିଲା । ମହାତ୍ମାଗାନ୍ଧୀ ଦେଶକୁ ବାଟ ଦେଖାଇ ପାରିଛନ୍ତି । ଅହିଂସା ହେଉଛି ଭାରତବାସୀର ସ୍ୱଭାବ ସୁଲଭ ଗୁଣ । ମହାତ୍ମାଗାନ୍ଧୀଙ୍କ ପ୍ରଦର୍ଶିତ ମାର୍ଗ ସେହି ଗୁଣର ଅନୁକୂଳ । ତେଣୁ ସେହି ମାର୍ଗ ଭାରତବାସୀ ପକ୍ଷରେ ସହଜ ଓ ସୁଲଭ ହୋଇଛି । ଏହାଦ୍ୱାରା ଭାରତର ଅନ୍ତର୍ନିହିତ ଶକ୍ତି ଜାଗି ଉଠିଛି । ଭାରତବାସୀ ଆଜି ସଦ୍ୟପ୍ରସ୍ଫୁଟିତ ପୁଷ୍ପ ପରି ନିଜ ଜୀବନକୁ ଭାରତମାତାର ଚରଣ ତଳେ ଅର୍ପଣ କରିବାକୁ ସଂକଳ୍ପ କରିଛି । ଭାରତବାସୀ ଭାବୁଛି, ଏଥର ମୃତ୍ୟୁ ଘଟିଲେ ସେ ମରୁନାହିଁ । ସେ ବଞ୍ଚି ରହୁଛି । ମନୁଷ୍ୟ ଅମର ନୁହେଁ । ଦେଶ ତଥା ମାନବଜାତିର କଲ୍ୟାଣ କାମନାରେ ହସି ହସି ଯେ ମୃତ୍ୟୁକୁ ବରଣ କରିପାରେ କେବଳ ସେହି ବ୍ୟକ୍ତି ଅମର ହୁଏ । ଇତିହାସରେ ତାର ନାମ ଚିରସ୍ମରଣୀୟ ରହେ । ସାଧାରଣ ମନୁଷ୍ୟ ଏହି ସତ୍ୟକୁ ଉପଲବ୍ଧି କରି କାର୍ଯ୍ୟରେ ପରିଣତ କରିବା ସହଜସାଧ୍ୟ ନୁହେଁ । କିନ୍ତୁ ମହାତ୍ମାଗାନ୍ଧୀ ଯେଉଁ ମାର୍ଗ ଦେଖାଇଛନ୍ତି, ତହିଁରେ ସାଧାରଣ ଭାରତବାସୀ ତାହା ପାଳନ କରିବା ଅତି ସହଜ ହୋଇ ଉଠିଛି ।

ଭାରତରେ ନିଜ ଶାସନ ଦୃଢ଼ କରିବାକୁ ଇଂରେଜ ସରକାର ଲର୍ଡ଼ ମିଣ୍ଟୋଙ୍କ ସମୟରୁ ଦୋମୁହାଁ ନୀତି ଅବଲମ୍ବନ କରୁଛନ୍ତି । ଶାସନ କ୍ଷେତ୍ରରେ କିଛି ଅଧିକାର ଦେବାକୁ ପ୍ରଲୋଭନ, ରାଜନୈତିକ ଆନ୍ଦୋଳନକୁ ଦବାଇବା ପାଇଁ କଠୋର ଦମନ, ଏପରି ଦୋମୁହାଁ ନୀତି ସରକାର ଏ ଦେଶରେ ଚଳାଇଛନ୍ତି । ଶ୍ରୀ ସାପ୍ରୁ ଓ ଶ୍ରୀଜୟକରଙ୍କ ସମାଧାନ ଚେଷ୍ଟା ବିଫଳ ହେବାର ଆଜି ପୁଣି ସେହି ନୀତି ପ୍ରୟୋଗ କରାଯାଉଛି । କଂଗ୍ରେସର ନାମକୁ ଲୋପ କରିଦେବା ଇଚ୍ଛାରେ କଠୋର ଆଇନସବୁ ଜାରୀ କରାଯାଉଛି ଏବଂ ଲଣ୍ଡନର ଗୋଲଟେବୁଲ୍ ବୈଠକରେ ଯୋଗ ଦେବାକୁ ପ୍ରତିନିଧି ବାଛି ପଠାଯାଉଛନ୍ତି । ନିଜର ସ୍ୱାର୍ଥ ପାଇଁ ଇଂରେଜ ସରକାର ସବୁ କରି ପାରନ୍ତି । ନିଜର ସ୍ୱାର୍ଥପ୍ରତି

ଦୃଷ୍ଟିଦେଇ କାର୍ଯ୍ୟ କରିବା ମନୁଷ୍ୟର ଗୋଟିଏ ପ୍ରଧାନ ସ୍ୱଭାବସୁଲଭ ଗୁଣ। ବ୍ରିଟିଶ ସରକାର ଯାହା ଯେପରି କରୁଛନ୍ତି, ସେମାନଙ୍କ ପରିସ୍ଥିତିରେ ଥିଲେ ଆମ୍ଭେମାନେ ସମ୍ଭବତଃ ସେପରି କରୁଥାନ୍ତେ। କିନ୍ତୁ ଯେଉଁ ଭାରତବାସୀ ତଥାକଥିତ ପ୍ରତିନିଧି ବନି ଲଣ୍ଡନ ଦୌଡ଼ିଲେ, କଂଗ୍ରେସକୁ ଚାହିଁଲେ ନାହିଁ ସେମାନେ କାହାର ସ୍ୱାର୍ଥ ରକ୍ଷା କରିବାକୁ ଏପରି କଲେ ଏପରି ପ୍ରଶ୍ନ ମନରେ ଜାଗିଉଠିଥିଲା। ଭାରତର ଦାସତ୍ୱ ମୋଚନ କରିବାର ପ୍ରବଳ ଇଚ୍ଛା କିମ୍ବା ବ୍ୟକ୍ତିଗତ ପ୍ରତିଷ୍ଠା ଲାଭ କରିବାର ଲାଳସା ସେମାନଙ୍କୁ ପ୍ରଭାବିତ କରିଥିଲା କିଛି ବୁଝି ହେଲା ନାହିଁ।

ଏକ ବର୍ଷ ପୂର୍ବରୁ ନେହେରୁ ରିପୋର୍ଟରେ ଔପନିବେଶିକ ଶାସନ ଦାବୀ କରି ଗୋଲଟେବୁଲ ବୈଠକ ବସାଇବାକୁ ଦାବୀ କରାଯାଇଥିଲା। ନରମପନ୍ଥୀ ଦଳ କଂଗ୍ରେସ ସହିତ ମିଶି ଏହି ଦାବୀ ଉପସ୍ଥାପିତ କରିଥିଲେ। ଏହି ଦାବୀକୁ ସ୍ୱୀକାର ନ କରି ଇଂରେଜ ସରକାର କୌଣସି ବୈଠକ ବସାଇଲେ ସେଥିରେ ଯୋଗ ଦେବେ ନାହିଁ ବୋଲି ଏମାନେ ଘୋଷଣା କରିଥିଲେ। ନେହେରୁ ରିପୋର୍ଟରେ ଉଲ୍ଲିଖିତ ଦାବୀକୁ ଗ୍ରହଣ କରିଥିବାର କୌଣସି ସୂଚନା ନାହିଁ। କୌଣସି ପ୍ରକାର ପ୍ରତିଶ୍ରୁତି ମଧ ସରକାର ଏଥିପାଇଁ ଦେଇନାହାନ୍ତି। ଏହି ଦାବୀ ହାସଲ କରିବାକୁ କଂଗ୍ରେସ ସଂଗ୍ରାମ ଆରମ୍ଭ କରିଛି। କଂଗ୍ରେସ ଓ ସରକାରଙ୍କ ମଧ୍ୟରେ ମିଳାମିଶା କରିବାକୁ ଚେଷ୍ଟାକରି ନରମପନ୍ଥୀ ଦଳ କୃତକାର୍ଯ୍ୟ ହୋଇନାହାନ୍ତି। ସରକାରଙ୍କ ଯଥେଚ୍ଛାଚାର ଶାସନ ନୀତିର ବିରୁଦ୍ଧାଚରଣ କରି ସମଗ୍ର ଭାରତର ଜନସାଧାରଣ ଅସୀମ ଦୁଃଖ ନିର୍ଯ୍ୟାତନା ଭୋଗ କରୁଛନ୍ତି। ଏପରି ପରିସ୍ଥିତିରେ କଂଗ୍ରେସକୁ ଅବଜ୍ଞା କରି ଲଣ୍ଡନରେ ବସୁଥିବା ଗୋଲଟେବୁଲ ବୈଠକରେ ଯେଉଁମାନେ ଯୋଗଦେଲେ ସେମାନଙ୍କ ପ୍ରତି ଆମ୍ଭମାନଙ୍କ ମଧ୍ୟରୁ ଅନେକଙ୍କ ହୃଦୟରେ କ୍ରୋଧ ଓ ଘୋର ବିରକ୍ତିଭାବ ଜାତ ହୋଇଥିଲା।

## ସଂଗ୍ରାମର ବ୍ୟାପକତା

ସବୁ ଯୁଗରେ ଏବଂ ସବୁ ଦେଶରେ ଏପରି ଦଳେ ଲୋକ ଥାନ୍ତି ଯେଉଁମାନେ ବିଧାତାଙ୍କର ଅଲକ୍ଷିତ ବିଧାନକୁ ବୁଝି ପାରନ୍ତି ନାହିଁ। ସେମାନେ ଜନସାଧାରଣଙ୍କ ଜାଗ୍ରତଜୀବନ ପ୍ରତି ଅବହେଳା କରି ନିଜ ବିଶ୍ୱାସ ଅନୁସାରେ କାମ କରିବାକୁ ସାହସ ବାନ୍ଧନ୍ତି। ସେମାନଙ୍କ କାର୍ଯ୍ୟ ଏବଂ କଥାର କୌଣସି ପ୍ରଭାବ ପଡ଼େ ନାହିଁ। ଭାରତରେ ବର୍ତ୍ତମାନ ତାହାହିଁ ଘଟୁଛି। ପରାଧୀନ ଭାରତ ଦୁର୍ବଳ, ଦୁର୍ଭିକ୍ଷପ୍ରପୀଡ଼ିତ। ନାନା ରୋଗ ଯନ୍ତ୍ରଣାରେ ତାହାର ପ୍ରାଣ ମ୍ରିୟମାଣ। ମନୁଷ୍ୟ ଇଚ୍ଛାକଲେ ଅସାଧ୍ୟସାଧନ କରପାରେ ଏହି ବିଶ୍ୱାସ ତାର ନ ଥିଲା। ସମସ୍ତ ପ୍ରକାର ଦୁଃଖକଷ୍ଟକୁ ତାର ଭାଗ୍ୟର ଫଳ ବୋଲି ବିଚାରି ସେ ମୃତପ୍ରାୟ ପଡ଼ି ରହିଥିଲା। ଅସାଧାରଣ କଳ୍ପନା

ଶକ୍ତିର ବଳରେ ମହାତ୍ମାଗାନ୍ଧୀ ଆଜି ଭାରତର ପ୍ରତି ଗୃହରେ ଏବଂ ପ୍ରତ୍ୟେକ ନରନାରୀଙ୍କ ହୃଦୟରେ ବିଦ୍ରୋହ ଭାବକୁ ଜାଗ୍ରତ କରାଇଛନ୍ତି। ତାହାଙ୍କର ମନ୍ତ୍ରମୁଗ୍ଧ ବାଣୀ ଆଜି ମୃତସଂଜ୍ଜିବନୀ ପରି କାର୍ଯ୍ୟ କରୁଛି। ମୃତ୍ୟୁମୁଖୀ ହଇଜା ରୋଗୀକୁ ଲୁଣପାଣି ଇଂଜେକସନ୍ ଦେଇ ତାହାର ଜୀବନ ରକ୍ଷା କରାଯାଏ। ଲବଣ-ସତ୍ୟାଗ୍ରହ ସେହିପରି ମୃତ୍ୟୁମୁଖୀ ଭାରତବାସୀର ଶରୀରରେ ସାଲାଇନ୍ ଇଂଜେକସନ୍ ସଦୃଶ ନୂତନ ଜୀବନ ସଂଚାର କରିଛି। ସୁତରାଂ କଂଗ୍ରେସକୁ ବେଆଇନ୍ ଘୋଷଣା କରି ଅଡ଼ିନାନ୍ସ ବଳରେ ଭାରତର ଅହିଂସାପୂର୍ଣ୍ଣ ସ୍ୱାଧୀନତା ସଂଗ୍ରାମକୁ ଦବେଇଦେବା ସାଧ୍ୟାତୀତ ହୋଇ ଉଠିଲା। ସରକାରଙ୍କ ଇଙ୍ଗିତରେ ଦଳେ ଖୁସାମତିଆ ଲୋକ ଦେଶରେ ଶାନ୍ତି ସଭାସବୁ ସ୍ଥାପନ କରି ଆନ୍ଦୋଳନ ବିରୁଦ୍ଧରେ ପ୍ରଚାର ଆରମ୍ଭକଲେ। ନିଜର ଧନ, ଜୀବନ ବିପଦ ପୂର୍ଣ୍ଣ କରି ଏ ବୃଥା ଆନ୍ଦୋଳନରେ ଯୋଗ ନ ଦେବାକୁ ଲୋକଙ୍କୁ ପ୍ରବର୍ତ୍ତାଇଲେ। କିନ୍ତୁ ଏହି ପ୍ରଚାରର ଫଳ ଓଲଟା ହେଲା। ଛୋଟ ବାଳକବାଳିକା ଶତ ସହସ୍ର ସଂଖ୍ୟାରେ ସଂଗ୍ରାମରେ ଯୋଗଦେଲେ ଓ ଅଶିକ୍ଷିତା ଅଗଣିତ ନାରୀ ଘରୁ ବାହାରି ପଡ଼ିଲେ। ଏହି ବାଳକ ବାଳିକା ଓ ନାରୀ ସତ୍ୟାଗ୍ରହୀ ଯେଉଁ ଅଭିନବ ବୀରତ୍ୱର ପରିଚୟ ଦେଲେ ସେହିସବୁ ସମ୍ବାଦରେ ଆମ୍ଭମାନଙ୍କର ହୃଦୟ ଆନନ୍ଦରେ ନାଚି ଉଠୁଥିଲା। ଭାରତର ଏହି ଶୁଭମୁହୂର୍ତ୍ତରେ ଜନ୍ମଲାଭ କରି ସ୍ୱାଧୀନତା ସଂଗ୍ରାମରେ ଭାଗନେବାର ସୁଯୋଗ ସୁବିଧା ଭାଗ୍ୟରେ ଘଟିଥିବାରୁ, ଆମ୍ଭେମାନେ ନିଜନିଜକୁ ଗୌରବାନ୍ୱିତ ମନେ କରୁଥିଲୁ।

ଭାରତର ସବୁ ପ୍ରଦେଶରେ ସଂଗ୍ରାମ ଅତି ଉତ୍କଟ ଆକାର ଧାରଣ କଲା। ଅଡ଼ିନାନ୍ସ ସବୁ ଜାରି କରି ସରକାର କୃତକାର୍ଯ୍ୟ ହୋଇ ପାରୁ ନାହାନ୍ତି। ସରକାର ଯେତୋଟି ଅଡ଼ିନାନ୍ସ ଜାରୀ କରୁଛନ୍ତି, ସତ୍ୟାଗ୍ରହ ସଂଗ୍ରାମ ପାଇଁ ସେତିକିଟି ରଣକ୍ଷେତ୍ର ସୃଷ୍ଟି ହୋଇଯାଉଛି। ଭିନ୍ନ ଭିନ୍ନ ଆଇନ ଅମାନ୍ୟ କରି କାରାବରଣ କରିବାର ଯେତେ ପ୍ରକାର ସୁବିଧା ଓ ସୁଯୋଗ ସୃଷ୍ଟି ହେବ ସତ୍ୟାଗ୍ରହ ସଂଗ୍ରାମ ସେତିକି ପ୍ରସାର ଲାଭ କରିବ ଏବଂ ସଂଗ୍ରାମରେ ବିଜୟ ଲାଭ ମଧ୍ୟ ସେତିକି ଆଶାପ୍ରଦ ହେବ। ସୁତରାଂ ସତ୍ୟାଗ୍ରହ ସଂଗ୍ରାମକୁ ଦମନ କରିବାକୁ ସରକାର ଯେତେସବୁ ଅସ୍ତ୍ର ପ୍ରୟୋଗ କଲେ, ସେହିସବୁ ଅସ୍ତ୍ର ସତ୍ୟାଗ୍ରହ ସଂଗ୍ରାମର ଆୟୁଧରେ ପରିଣତ ହୋଇଥିଲା।

## ବାନର ସେନା

ମହାତ୍ମାଗାନ୍ଧୀ ଧରା ହେଲା ବେଳେ କହିଯାଇଥିଲେ, "ମୋ ଧରା ହେବାରେ ଦେଶବାସୀ ଡରିଯିବା ଉଚିତ ହେବ ନାହିଁ। ଆମ୍ଭର ପନ୍ଥା ସ୍ଥିର ହୋଇଛି। ସ୍ୱୟଂ ଭଗବାନ ଏହି ସଂଗ୍ରାମର ସାରଥୀ। ସମସ୍ତଙ୍କ ଭିତରେ ସେ ବିଦ୍ୟମାନ। ନିଜ ଉପରେ ବିଶ୍ୱାସ ରଖିଲେ ସେ ନିଶ୍ଚୟ ବଳ ଓ ସାହସ ଦେବେ।" ମହାତ୍ମା ଗାନ୍ଧୀଙ୍କର

ଏହି ବାଣୀ ସତ୍ୟ ହୋଇଛି। ସଂଗ୍ରାମକୁ ପରିକଳ୍ପନା କରିବାକୁ ଆଜ କେହି ସେପରି ଜଣାଶୁଣା କର୍ମୀ ଅବା ନେତା ନାହାନ୍ତି। ସମସ୍ତେ ଧରା ହୋଇ ଜେଲ ଗଲେଣି। କେହି କାହାକୁ ପରିଚାଳନା କରୁନାହିଁ। କୌଣସି ସଙ୍ଗଠନ ନାହିଁ, ତଥାପି ସରକାରଙ୍କର ସମସ୍ତ ପ୍ରକାର ଆଇନ ସବୁର ସମ୍ମୁଖୀନ ହୋଇ ହଜାର ହଜାର ନରନାରୀ ଜେଲ ବରଣ କରୁଛନ୍ତି। ଜ୍ୱଳନ୍ତା ଅଗ୍ନିରେ ଝାସ ଦେବାକୁ କୀଟପତଙ୍ଗ ଧାବମାନ ହେବା ଭଳି ଭାରତର ନରନାରୀ ସତ୍ୟାଗ୍ରହ ସଂଗ୍ରାମରେ ଆସି ଯୋଗ ଦେଇ କାରାବରଣ କରୁଛନ୍ତି। ଦେଶର କୋମଳମତି ବାଳକ ଓ ବାଳିକା ପିତାମାତାଙ୍କ ସ୍ନେହବନ୍ଧନ ତୁଟାଇ ଦେଇ ସଂଗ୍ରାମରେ ଯୋଗ ଦେଇଛନ୍ତି। ଏହି ଅଳ୍ପବୟସର ବାଳକବାଳିକା ସତ୍ୟାଗ୍ରହୀ କଂଗ୍ରେସର ବାନର ସେନା ନାମରେ ପ୍ରସିଦ୍ଧ। ଏହି ବାନରସେନା ଯେଉଁ ବୀରତ୍ୱର ପରିଚୟ ଦେଇଛନ୍ତି ତାହା ବର୍ଣ୍ଣନା କରିବାକୁ ଭାଷା ନାହିଁ। ବାନର ସେନାର ଅଳ୍ପବୟସ୍କ ସତ୍ୟାଗ୍ରହୀଙ୍କୁ ଧରି ବେତମାଡ଼ ଦିଆଯାଏ। ସେମାନଙ୍କୁ ଧରି ଦିନଯାକ ଅଟକ ରଖି ରାତି ହେଲେ ମଟର ଟ୍ରକରେ ପୂରାଇ ଦୂର ଜଙ୍ଗଲ ଭିତରେ ନେଇ ଛାଡ଼ି ଦିଅନ୍ତି। ବାନରସେନାଙ୍କ ସାହସ କହିଲେ ନ ସରେ। ସେମାନେ ଜଙ୍ଗଲ ଭିତରୁ ଦଳବଦ୍ଧ ହୋଇ ଗ୍ରାମକୁ ଗ୍ରାମ ହୋଇ ବାହାରକୁ ଫେରି ଆସନ୍ତି। ବାଟରେ ଗୀତ ଗାଇ ଗାଇ ଫେରନ୍ତି। ସେମାନଙ୍କୁ ଦେଖି ଏବଂ ସେମାନଙ୍କ ଗୀତ ଶୁଣି ଲୋକେ ତନ୍ମୟ ହୋଇ ଉଠନ୍ତି ଏବଂ ସ୍ୱତଃପ୍ରବୃତ୍ତ ହୋଇ ସଂଗ୍ରାମକୁ ଧନଜନ ଦ୍ୱାରା ସାହାଯ୍ୟ କରନ୍ତି। ଏ ତ ଗଲା ଓଡ଼ିଶା ବାହାରର ଚିତ୍ର। ଓଡ଼ିଶାରେ ବାନରସେନା କିଛି କମ୍ କରି ନାହାନ୍ତି। ସରକାରଙ୍କ କୋର୍ଟ କଚେରୀ ଦଖଲ କରି କାର୍ଯ୍ୟ ଅଚଳ କରିଦେବା ହେଲା ସତ୍ୟାଗ୍ରହ ସଂଗ୍ରାମର ଗୋଟିଏ କାର୍ଯ୍ୟ। ଏହି କାର୍ଯ୍ୟ କରିବାକୁ ଯାଇ ଓଡ଼ିଶାର ବାନରସେନା ଅଦ୍ଭୁତ ସାହସ ଓ ଧୈର୍ଯ୍ୟର ପରିଚୟ ଦେଇଛନ୍ତି।

ହାକିମ ଆସିବା ପୂର୍ବରୁ ବାନର ସେନା କଚେରୀ ଘରେ ପଶି ବିଚାରକର୍ତ୍ତାଙ୍କ ଆସନକୁ ଅଧିକାର କରି ବସିଥାନ୍ତି। ବିଚାରକର୍ତ୍ତା ହାକିମ ଓଗେର ଘରେ ପ୍ରବେଶ କଲା ମାତ୍ରକେ ଅନଧିକାର ପ୍ରବେଶ ଦୋଷ କଲେ ବୋଲି କହି ବିଚାରକର୍ତ୍ତା ହାକିମଙ୍କୁ ବନ୍ଦୀ କରିବାକୁ ବାନରସେନା ସତ୍ୟାଗ୍ରହୀ ଘେରିଯାନ୍ତି। ତା'ର ପର ପୋଲିସ ଉପସ୍ଥିତ ହୋଇ ସେମାନଙ୍କୁ ଧରି ନିଅନ୍ତି। ସାଙ୍ଗେ ସାଙ୍ଗେ ସେମାନଙ୍କର ବିଚାର ହୋଇ ସେହି କୋର୍ଟ ଘରେ ବେତ୍ରାଘାତ ଦଣ୍ଡ ଦିଆଯାଏ। ବେତମାଡ଼ ଖାଇବାକୁ ବାନରସେନା ହାତ ଲମ୍ୱାଇ ଦିଅନ୍ତି। ବେତମାଡ଼ ଖାଇ ହାତରେ ନୋଳା ପଡ଼ି ଫାଟି ଯାଇ ରକ୍ତ ବାହାରିପଡ଼େ। ବେତମାଡ଼ ଖାଇ କାନ୍ଦୁଥାନ୍ତି କିନ୍ତୁ ହାତକୁ ତଳକୁ ଖସାଇ ଦେଇ ଡର ଅବା କାତରତାର ପରିଚୟ ଦେଇ ନାହାନ୍ତି। ବେତମାଡ଼ ବସିଲା ବେଳେ କାନ୍ଦି କାନ୍ଦି ଗୀତ ଗାଉଥାନ୍ତି। ''ମାର କେତେ ବେତ ତମେ ମାରିବ,

ଦେଶ ପାଇଁ ଆମେ ଜୀବନ ଦେଇଛୁ, ତୁମେ କି ଆମକୁ ପାରିବ ? ମାର କେତେ ବେତ ତମେ ମାରିବ।'' ବାନରସେନା ସୈନିକ ମାଡ଼ ଖାଉଥିବା ବେଳେ ତାକୁ ଏପରି କାନ୍ଦି କାନ୍ଦି ଗୀତ ଗାଇବାର ଦେଖିଲେ କାହାର ହୃଦୟ ତରଳି ନ ଯିବ ? ହାକିମ, ପୋଲିସ ଓ ଦେଖଣାହାରୀ ସମସ୍ତେ ବିଚଳିତ ହୋଇ ପଡ଼ନ୍ତି। ସମସ୍ତଙ୍କ ଆଖିରୁ ଲୋତକ ଖସି ପଡ଼େ। ତଥାପି ହାକିମ ବେତମାଡ଼ ଦେବାକୁ ହୁକୁମ ଦିଅନ୍ତି ଏବଂ ପୋଲିସ ବେତମାଡ଼ ଦିଏ। ଏଥିରେ ହାକିମ କିମ୍ବା ପୋଲିସ କାହାରି ମନରେ ସୁଖ ନ ଥାଏ। ଚାକିରି କରିଛନ୍ତି। ଇଂରେଜ ସରକାରଙ୍କୁ ଡର। ଇଚ୍ଛା ନ ଥାଇ ନିଜର ବିବେକ ବିରୁଦ୍ଧରେ ହାକିମ ଦଣ୍ଡାଜ୍ଞା ଶୁଣାନ୍ତି ଏବଂ ପୋଲିସ ମଧ୍ୟ ନିଜର ଇଚ୍ଛା ବିରୁଦ୍ଧରେ ମନ ନ କରୁଥିଲେ ମଧ୍ୟ ବାଧ ହୋଇ ଟାଣ ବେତମାଡ଼ ଦିଏ। ଇଂରେଜ ସରକାର ଭୂତଛାୟା ସଦୃଶ ସେମାନଙ୍କୁ ଜଗି ବସିଥିବା ପରି ଡରରେ ଏପରି ବିବେକ ବିରୁଦ୍ଧ କାର୍ଯ୍ୟ କରିବାକୁ ସେମାନେ ପଶ୍ଚାଦ୍‌ପଦ ହୁଅନ୍ତି ନାହିଁ।

ପ୍ରତିଦିନ ଏହିପରି ପାଲାର ଅଭିନୟ ହୁଏ। ବାନରସେନା ସୈନିକ ବେତମାଡ଼ ଖାଇ ହାତ ଫାଟି ଯାଉଥିଲେ, ଶ୍ରୀମତୀ ରମାଦେବୀ ତାକୁ ନିଜ ଘରକୁ ଡାକି ନେଇ ତା ହାତରେ ଔଷଧ ଲଗାଇ କନାପଟି ବାନ୍ଧି ଦିଅନ୍ତି। ହାତରେ ଖାଇ ନ ପାରିଲେ ରମାଦେବୀ ନିଜ ହାତରେ ଖୁଆଇ ଦିଅନ୍ତି। ରମାଦେବୀଙ୍କଠାରୁ ଅମାୟିକ ମାତୃସୁଲଭ ସ୍ନେହ ଓ ଆଦର ପାଇ ବାନରସେନାର ସୈନିକର ବେତମାଡ଼ ପାସୋର ଯାଏ। ସେ ପୁଣି ମହାଆନନ୍ଦରେ କୋର୍ଟ କଚେରୀ ଦଖଲ କରିବା କାର୍ଯ୍ୟରେ ଯୋଗଦିଏ। ବାନରସେନାମାନେ ଏହିପରି କାର୍ଯ୍ୟ କରି ଭାରତର ବହୁ ସ୍ଥଳରେ କୋର୍ଟ କଚେରୀ କାମକୁ ଅଚଳ କରି ଦେଇଛନ୍ତି। କୋର୍ଟ କଚେରୀ ଦଖଲ କରିବା ବଡ଼ କାମ ନୁହେଁ। ଏହାଦ୍ୱାରା ଇଂରେଜ ସରକାରଙ୍କ ବିଚାରକ ପ୍ରତି ଲୋକମାନଙ୍କ ମନରେ ଉତ୍କଟ ଅଶ୍ରଦ୍ଧାଭାବ ଜାଗ୍ରତ କରାଇ ସତ୍ୟାଗ୍ରହ ସଂଗ୍ରାମ ପ୍ରତି ଲୋକଚକ୍ଷୁ ଆକର୍ଷଣ କରିବା ହେଲା ପ୍ରଧାନ ଉଦ୍ଦେଶ୍ୟ।

## କଂଗ୍ରେସର ବିଶ୍ୱରୂପ

କଂଗ୍ରେସକୁ ବେଆଇନ୍ ଘୋଷଣା କଲାପରେ ସରକାରଙ୍କୁ କଂଗ୍ରେସର ବିଶ୍ୱରୂପ ଦେଖାଇବାକୁ ହେବ। ଯେଉଁ ଆଡ଼କୁ ଦୃଷ୍ଟି ପକାଇଲେ ସର୍ବତ୍ର ଓ ସବୁ ଜାଗାରେ ସରକାରୀ କର୍ମଚାରୀ କେବଳ କଂଗ୍ରେସର ନାମ ଦେଖିବାକୁ ପାଇବେ। ସୁତରାଂ ଗ୍ରାମ ନଗର ସର୍ବତ୍ର ଅସଂଖ୍ୟ ଘରେ କଂଗ୍ରେସର ଛାପ ମରିଛି ଓ କଂଗ୍ରେସର ପତାକା ଉଡ଼ୁଛି। ସହର ମଫସଲର ପ୍ରଧାନ ରାସ୍ତାର କଡ଼ରେ ଥିବା ବୃକ୍ଷରେ ବଡ଼ ବଡ଼ ଅକ୍ଷରରେ କଂଗ୍ରେସର ନାମ ଲେଖା ହେଉଛି ଏବଂ କଂଗ୍ରେସର ପତାକା ମଧ୍ୟ ଉଡ଼ୁଛି। ଏହା ଦେଖି ସରକାରୀ ଲୋକେ ଘର ଓ ଗଛ ଉପରେ ଚଢ଼ି

କଂଗ୍ରେସ ପତାକା ଉଠେଇ ଫିଙ୍ଗି ଦେବାରେ ଏବଂ ସେ ସବୁ ଜାଗାରୁ ଛାପ ମରିଥିବା କଂଗ୍ରେସର ନାମ ଲିଭାଇବାରେ ପାଗଳ ବନି ଯାଇଛନ୍ତି। କଂଗ୍ରେସର ଅଫିସ ଘର ଦଖଲ କରିନେଲା ପର, ରାସ୍ତା, ବଜାର ହାଟ ଆଦିରେ ଖଣ୍ଡିଏ ତାଳତାଟି ଘର କରି ତହିଁରେ କଂଗ୍ରେସ ପତାକା ଉଡ଼େଇ କଂଗ୍ରେସର ଅଫିସ ବୋଲି ଲେଖି ଦିଆଯାଉଛି। ଏପରି କଂଗ୍ରେସ ଅଫିସକୁ ଭାଙ୍ଗି ଦେବାକୁ ପୁଲିସ ଫଉଜ ଦଉଡ଼ୁଛନ୍ତି। ଲୋକେ ଏପରି କାମକୁ ଖେଳ ଖେଳିଲାପରି ବିଚାରି କାର୍ଯ୍ୟ କରୁଛନ୍ତି, କିନ୍ତୁ ଭାରତବାସୀ ପକ୍ଷରେ ଆଜି ଯାହା ଖେଳରେ ପରିଣତ ହୋଇଛି, ଇଂରେଜ ସରକାରଙ୍କୁ ତାହା କାଳସ୍ୱରୂପ ଦେଖା ଦେଉଛି। ସହର ମଫସଲ ସର୍ବତ୍ର, ବିଲାତି ଲୁଗା, ମଦ ଓ ଅଫିମ ଦୋକାନ ସବୁ ଆଗରେ ପିକେଟିଙ୍ଗ୍ ବସିଛି। ଗୁଜରାତରେ ଖଜଣା ବନ୍ଦ ଆନ୍ଦୋଳନ ସୃଷ୍ଟି ହୋଇଛି। ସରକାର ଖଜଣା ଆଦାୟ କରିବାକୁ କୌଣସି ବାଟ ପାଉନାହାନ୍ତି। ଲୋକେ ଧନଦ୍ରବ୍ୟସବୁ ଧରି ଗ୍ରାମ ତ୍ୟାଗକରି ଦୂରଦୂରାନ୍ତକୁ ଚାଲିଯାଇଛନ୍ତି। ଗ୍ରାମ ଛାଡ଼ି ଗଲାବେଳେ, ପାଚିଲା ଶସ୍ୟକ୍ଷେତ୍ରରେ ନିଆଁ ଲଗାଇ ପୋଡ଼ି ଦେଉଛନ୍ତି। ଗ୍ରାମରେ ବିରାଡ଼ି ଛୁଆଟିଏ ନାହିଁ। ସରକାର କାହାଠାରୁ କଣ ଆଦାୟ କରିବେ? ଜମିବାଡ଼ି ନିଲାମ ହେଉଛି। ସେଥିପ୍ରତି କାହାରି ଭ୍ରୂକ୍ଷେପ ନାହିଁ। ଦେଶକୁ ସ୍ୱାଧୀନ କରିବା ପାଇଁ ସମସ୍ତେ ପାଗଳ। ଦେଶରେ ଜାତୀୟ ଜୀବନ ଆତ୍ମବିକାଶ କରିଛି। କୌଣସି ବାଧା ଓ ପ୍ରତିବନ୍ଧକ ତା'ର ଗତିରୋଧ କରିବାକୁ ଆଜି ଅକ୍ଷମ। ଇଂରେଜ ସରକାର ବିବ୍ରତ। ଏହି ସଂଗ୍ରାମକୁ ଦମନ କରିବାକୁ ତାଙ୍କୁ ଆଉ ବାଟ ଦିଶୁନାହିଁ।

## ସତ୍ୟାଗ୍ରହଦ୍ୱାରା ଭାରତରେ ନୂତନ କଳେବର

ଲବଣ ସତ୍ୟାଗ୍ରହ ଦେଶରେ ଘୋର ପରିବର୍ତ୍ତନ ସୃଷ୍ଟି କରିଛି। ଭାରତର ଜାତୀୟ ଜୀବନ ଏକ ଅପୂର୍ବ ରୂପ ଧାରଣ କରିଛି। ବାଣିଜ୍ୟ ବ୍ୟବସାୟ, ବିଜ୍ଞାନ, ସାହିତ୍ୟ ଆଦି ସବୁ କ୍ଷେତ୍ରରେ ଲୋକେ ଏକ ନୂତନ ଆଲୋକ ଦେଖିବାକୁ ପାଇଛନ୍ତି। ନୂତନ ବାଟ ସମସ୍ତଙ୍କୁ ଦେଖାଯାଉଛି। ବ୍ରିଟିଶ୍ ସରକାରଙ୍କ ଅନୁଗ୍ରହ ଉପରେ କେବଳ ଭରସା ରଖିଲେ ଅଭିଷ୍ଟ ସିଦ୍ଧ ହେବ ନାହିଁ ବୋଲି ଏକ ବିଶ୍ୱାସ ଦେଶରେ ଆତ୍ମପ୍ରକାଶ କଲା। ସରକାରଙ୍କ ଅନୁଗ୍ରହ ଲାଭ କରିପାରିଲେ ଲୋକ ନିଜକୁ ଗୌରବାନ୍ୱିତ ମନେ କରୁଥିଲେ। ସରକାରଙ୍କ ପ୍ରଦତ୍ତ ଉପାଧି ଦେଶ ଓ ସମାଜରେ ମାନ ସମ୍ମାନର ଭୂଷଣ ନ ହୋଇ ଅପମାନ ସୂଚକ ବୋଲି ବିବେଚିତ ହେଲା। କଂଗ୍ରେସରୁ ଯେଉଁମାନେ ସମ୍ମାନ ଓ ଆଦର ପାଇଲେ ଦେଶର ଓ ସମାଜରେ ସେମାନଙ୍କର ମାନ ଗୌରବ ଓ ପ୍ରତିପତ୍ତି ବୃଦ୍ଧି ପାଇଲା। ସୁତରାଂ କଳ କାରଖାନାର ମାଲିକ, ବଡ଼ ବଡ଼ ଶେଠ ଓ ବ୍ୟବସାୟିମାନେ କଂଗ୍ରେସଠାରୁ ଅନୁଗ୍ରହ ପାଇବାକୁ ଲାଳାୟିତ ହୋଇ ଉଠିଲେ।

ଦେଶର ବୁଦ୍ଧିଜୀବୀ ଲୋକେ କଂଗ୍ରେସ ଆଡ଼କୁ ଧାଇଁଲେ। ଦେଶ ବିଦେଶରେ ଭାରତବାସୀ ସ୍ୱାଧୀନ ଭାରତର କଳ୍ପନାରେ ନିଜ ନିଜ ଜୀବନକୁ ଗଢ଼ିବାକୁ ପ୍ରୟାସ କଲେ। ସ୍ୱରାଜ୍ୟ ତଥା ସ୍ୱାଧୀନତାର ବାଣୀ ସମସ୍ତ ମୁଖରୁ ଶୁଣିବାକୁ ମିଳିଲା। ସ୍ୱାଧୀନତା ପ୍ରାପ୍ତ କରିବା ଉଦ୍ଦେଶ୍ୟରେ, କହିବା, ଲେଖିବା ଓ କାର୍ଯ୍ୟ କରିବା ହେଲା ଅଧିକାଂଶଙ୍କର ଲକ୍ଷ୍ୟ। ଯେ ଯେତିକି ଟାଣରେ ସାଧାରଣଙ୍କ ମନକୁ ସ୍ପର୍ଶ କରିପାରିଲା ଭଳି କଥା କହି ପାରିଲା, କିମ୍ବା ଯୁକ୍ତିଯୁକ୍ତ ଲେଖା ପ୍ରକାଶ କରିପାରିଲା ସେ ସେତକ ମାତ୍ରାରେ ନିଜକୁ ଗୌରବାନ୍ୱିତ ମନେ କଲା। ତ୍ୟାଗ ଓ ସେବାରେ ଏକ ଅପରକୁ ଟପି କାର୍ଯ୍ୟ କରିବାକୁ ଉଦ୍ୟମ କଲେ। ଏହିପରି ଭାରତରେ ଜାତୀୟଜୀବନର ଆତ୍ମବିକାଶ ସହସ୍ର ରୂପରେ ପ୍ରତିଭାତ ହେବାକୁ ଆରମ୍ଭ କଲା। ଜେଲଖାନାର ଦୀର୍ଘ ପ୍ରାଚୀର ପରିବେଷ୍ଟିତ, ନିଭୃତ କୋଠରୀରେ ତାଲାପଡ଼ି ବନ୍ଦ ରହୁଥିବା ସମୟରେ ଭାରତର ଏରୂପ ସ୍ୱପ୍ନ ଆମ୍ଭେମାନେ କଳ୍ପନା କରୁଥିଲୁ। ଆମ୍ଭମାନଙ୍କର ଏହା ସ୍ୱପ୍ନ ନ ହୋଇ ବାସ୍ତବ ଘଟଣା ବୋଲି ଜାଣିବାକୁ ପାଇବାରେ ମନରେ କି ଆନନ୍ଦ, ତାହା ଭାଷାରେ ବ୍ୟକ୍ତ କରିବା ସହଜ ନୁହେଁ।

ସତ୍ୟାଗ୍ରହ ସଂଗ୍ରାମ ଆଠ ଦଶମାସ ଚାଲିଲାପରେ କଂଗ୍ରେସ ଓ ସରକାର ଉଭୟେ ଥକି ପଡ଼ିଲା ପରି ବୋଧ ହେଲା। ସତ୍ୟାଗ୍ରହ ସଂଗ୍ରାମ କ୍ଷଣିକ ଉନ୍ମାଦନା ଉପରେ ନିର୍ଭର କରେ ନାହିଁ। ସମୁଦ୍ରରେ ଜୁଆର ଓ ଭଟ୍ଟା ପଡ଼ିଲା ପରି ସତ୍ୟାଗ୍ରହ ସଂଗ୍ରାମ ଗତି କରେ। ସମୁଦ୍ରରେ ଭଟ୍ଟା ପଡ଼ିଲାବେଳେ ପାଣି ଖସିପଡ଼ିବା ଏବଂ ପୁଣି ଜୁଆରବେଳେ ପାଣି ମାଡ଼ିଆସିବା ଯେପରି ପ୍ରକୃତିର ଖେଳ, ସତ୍ୟାଗ୍ରହ ସଂଗ୍ରାମର ପ୍ରକୃତି ତଦ୍ରୂପ। ବେଳେ ବେଳେ ଥମିଯାଏ ଏବଂ ପୁଣି ତେଜି ଉଠେ। ଭାରତର ଜନଶକ୍ତି ଏକ ଅକ୍ଷୟ ଭଣ୍ଡାର। ସମୁଦ୍ରରେ ଜୁଆର ଭଟ୍ଟା ପଡ଼ିଲା ଭଳି ସତ୍ୟାଗ୍ରହ ସଂଗ୍ରାମ ଗତି କରୁଛି। ଏଥିରେ କଂଗ୍ରେସ ଧୈର୍ଯ୍ୟଚ୍ୟୁତ ହେବାର କୌଣସି କାରଣ ନାହିଁ। କିନ୍ତୁ ଏହି ସତ୍ୟାଗ୍ରହ ସଂଗ୍ରାମକୁ ଦମନ କରିବାରେ ଶାସନ କଳ ଆଉ କୌଣସି କାର୍ଯ୍ୟ କରିପାରୁନାହିଁ। ଏପରି ଅବସ୍ଥାରେ କୌଣସି ସରକାର ସମ୍ଭାଳି ହୋଇ ରହି ନ ପାରନ୍ତି। ସୁତରାଂ ସତ୍ୟାଗ୍ରହ ସ୍ଥଗିତ ରଖି ସମାଧାନ କରିବା ପାଇଁ କଂଗ୍ରେସକୁ ଆହ୍ୱାନ କରିବାର ସଙ୍କେତ ଦେଖାଗଲା।

## ଗାନ୍ଧୀଙ୍କର କାରାମୁକ୍ତି

ଇତିମଧ୍ୟରେ ଲଣ୍ଡନ ସହରରେ ରାଉଣ୍ଡଟେବୁଲ ବୈଠକର ଉଦ୍‌ଯୋଗ ପର୍ବ ଶେଷ ପାଇଛି। ବୈଠକ ଶେଷରେ ବିଲାତର ପ୍ରଧାନମନ୍ତ୍ରୀ ବୈଠକରେ ଗୋଟିଏ ବକ୍ତୃତା ପ୍ରଦାନ କରିଛନ୍ତି। ବିଲାତର ପ୍ରଧାନମନ୍ତ୍ରୀ ଯାହା କହିଛନ୍ତି, ତାହା କଂଗ୍ରେସ ବିଚାର କରି ସତ୍ୟାଗ୍ରହ ଲଢ଼େଇ ବନ୍ଦ କରିବା ଉଚିତ ବୋଲି ଭାରତର ବଡ଼ଲାଟପାହେବ

ମତ ବ୍ୟକ୍ତ କଲେ। ଏଥିପାଇଁ ମହାତ୍ମାଗାନ୍ଧୀଙ୍କୁ କାରାମୁକ୍ତ କରିଦେଲେ। ଜେଲରୁ ମୁକ୍ତ ହୋଇ ଗାନ୍ଧୀଜୀ ଘୋଷଣା କଲେ, "ଇଂରେଜ ସରକାର ପ୍ରତି ତାଙ୍କ ହୃଦୟରେ କୌଣସି ପ୍ରକାର ବିଦ୍ୱେଷ ଭାବ ନାହିଁ। ବିଲାତର ପ୍ରଧାନମନ୍ତ୍ରୀ ଯାହା କହିଛନ୍ତି ତାହା ସେ ନିରପେକ୍ଷ ଭାବରେ ବିଚାର କରିବେ।" ଏତିକି କହି ଏଗାରଟି ସର୍ତ୍ତ ଦେଇ ଖଣ୍ଡିଏ ପତ୍ର ପ୍ରକାଶ କଲେ। ଏହି ଏଗାରଟି ସର୍ତ୍ତ ପୂରଣ କରି ପାରିବା ଭଳି ଅଧିକାର ପାଇବାର ସମ୍ଭବପର ହେଲେ ସତ୍ୟାଗ୍ରହ ସଂଗ୍ରାମ ସ୍ଥଗିତ ରଖିବାକୁ ସେ କଂଗ୍ରେସକୁ ପରାମର୍ଶ ଦେବେ। ସତ୍ୟାଗ୍ରହ ସଂଗ୍ରାମ ବନ୍ଦ କରିଦେବାର କ୍ଷମତା ତାଙ୍କର ନାହିଁ। କଂଗ୍ରେସର କାର୍ଯ୍ୟକାରୀ ସମିତି କେବଳ ତାହା କରିପାରେ।

## ଶାନ୍ତିସ୍ଥାପନ ପାଇଁ ସରକାରଙ୍କ ସଙ୍କେତ

ନିଖିଳ ଭାରତ କଂଗ୍ରେସ କାର୍ଯ୍ୟକାରୀ ସମିତିଠାରୁ ଆରମ୍ଭ କରି ଥାନା କଂଗ୍ରେସ କମିଟି ପର୍ଯ୍ୟନ୍ତ ସବୁ ବେଆଇନ ଘୋଷିତ ହୋଇଛି। ସଂଗ୍ରାମ ବନ୍ଦ କରିବ କିଏ ? ସୁତରାଂ ଇଂରେଜ ସରକାର ବିନା ସର୍ତ୍ତରେ କଂଗ୍ରେସକୁ ବେଆଇନ ଘୋଷଣା କରିଥିବା ଅଡ଼ିନାନ୍ସ ତଥା ଫତୁଆକୁ ଅବିଳମ୍ବେ ପ୍ରତ୍ୟାହାର କରିନେଇ କାର୍ଯ୍ୟକାରୀ ସମିତିର ସମସ୍ତ ସଭ୍ୟମାନଙ୍କୁ କାରାମୁକ୍ତ କରି ଦେଇଥିଲେ। ବିନା ସର୍ତ୍ତରେ କାର୍ଯ୍ୟକାରୀ ସମିତିର ସଭ୍ୟମାନେ କାରାମୁକ୍ତ ହୋଇ କଣ କରିବେ ତାହା ଅନିଶ୍ଚିତ। ଏପରି ବିନା ସର୍ତ୍ତରେ ମହାତ୍ମାଗାନ୍ଧୀ ଓ କାର୍ଯ୍ୟନିର୍ବାହିକା ସମିତିର ସଭ୍ୟମାନଙ୍କୁ କାରାମୁକ୍ତ କରିବା ଦ୍ୱାରା ବଡ଼ଲାଟ ଲର୍ଡ଼ ଇରଉଇନ୍ ସାହେବ ତାଙ୍କର ଉଦାର ମନୋବୃତ୍ତି ପ୍ରକାଶ କରିଥିଲେ ବୋଲି ସ୍ୱୀକାର କରିବାକୁ ହେବ। କେବଳ ତାହା ନୁହେଁ, ଭାରତ ଶାସନ ତାଙ୍କୁ ଆଉ ପ୍ରୀତିକର ବୋଧ ହେଉ ନଥିଲା ଏବଂ ଏହି ଅପ୍ରୀତକର ପରିସ୍ଥିତିର ପରିବର୍ତ୍ତନ କରିବା ଉଦ୍ଦେଶ୍ୟରେ ସେ ଏହା କରିଥିଲେ। ଏପରି କରିବା ଦ୍ୱାରା ଇଂରେଜ ସରକାର କଂଗ୍ରେସ ସହିତ କୌଣସି ପ୍ରକାର ଗୋଟାଏ ସମାଧାନ କରିବାକୁ ବ୍ୟଗ୍ରତା ପ୍ରକାଶ କରୁଛନ୍ତି ବୋଲି ବୁଝିବାରେ ମନରେ ଆଉ କିଛି ସନ୍ଦେହ ରହିଲା ନାହିଁ।

## ବିଜୟ ଲାଭ ବେଳେ ବଜ୍ରପାତ ପରି ଦୁଃଖ

ସତ୍ୟାଗ୍ରହ ଲଢ଼ାଇରେ ଶତ୍ରୁତାଭାବ ନାହିଁ କିମ୍ବା ସତ୍ୟାଗ୍ରହ କାହାରି ଶତ୍ରୁ ନୁହେଁ। ଯାହା ବିରୁଦ୍ଧରେ ସତ୍ୟାଗ୍ରହ ସଂଗ୍ରାମ କରାଯାଏ, କୌଣସି ସମୟରେ ଉକ୍ତ ପକ୍ଷ ସମାଧାନ କରିବାକୁ ଇଚ୍ଛା ପ୍ରକାଶ କଲେ ତାଙ୍କର ସେପରି ଇଚ୍ଛା ପୂରଣ ତଥା ପରୀକ୍ଷା କରିବା ପାଇଁ ପ୍ରସ୍ତୁତ ହେବା ଉଚିତ୍। ଦେଶରେ ଶାନ୍ତି ସ୍ଥାପନ କରିବା ଉଦ୍ଦେଶ୍ୟରେ କଂଗ୍ରେସ ସହିତ ସମାଧାନ କରିବାକୁ ଇଂରେଜ ସରକାର

ଯେଉଁ ବ୍ୟଗ୍ରତା ପ୍ରକାଶ କଲେ, ତଦ୍ବାରା ଭାରତର ସ୍ୱାଧୀନତା ଦାବୀକୁ ପ୍ରକାରାନ୍ତରେ ସ୍ୱୀକାର କରାଯାଇଛି, ଏଥିରେ କିଛିମାତ୍ର ସନ୍ଦେହ ନାହିଁ। ମହାତ୍ମାଗାନ୍ଧୀ ଓ କଂଗ୍ରେସ କାର୍ଯ୍ୟକାରୀ ସମିତିର ସମସ୍ତ ସଭ୍ୟ ଏପରି ବିନା ସର୍ତ୍ତରେ ଜେଲରୁ ମୁକ୍ତି ପାଇବାର ସମ୍ବାଦ ସମଗ୍ର ଭାରତରେ ବିଜୟ ଉଲ୍ଲାସର ଏକ ଭାବର ତରଙ୍ଗ ସୃଷ୍ଟି କରିଦେଲା। ଜେଲ ଭିତରେ ଏ ସଂବାଦ ପାଇ ଆମ୍ଭେମାନେ ଆନନ୍ଦ ବିହ୍ୱଳ ହୋଇପଡ଼ିଲୁ। ଦେଶର ରାଜନୈତିକ ପରିସ୍ଥିତିରେ ଏ ପ୍ରକାର ଶୁଭସୂଚକ ପରିବର୍ତ୍ତନର ଲକ୍ଷଣ ଦୃଷ୍ଟିଗୋଚର ହେବା ସମୟକୁ ଏକ ଦାରୁଣ ଦୁଃଖଦାୟକ ସମ୍ବାଦ ଆମ୍ଭମାନଙ୍କୁ ମ୍ରିୟମାଣ କରି ପକାଇଲା। ପଣ୍ଡିତ ମୋତିଲାଲ ନେହ୍ରୁ ରୋଗଶଯ୍ୟା। ତାଙ୍କର ଜୀବନ ସଂକଟାପନ୍ନ ହୋଇପଡ଼ିଲା। ବମ୍ବେଇ ଛାଡ଼ି ମହାତ୍ମାଗାନ୍ଧୀ ମୋତିଲାଲଙ୍କ ନିକଟକୁ ଦୌଡ଼ିଲେ। ଗାନ୍ଧୀଜୀ ଆସୁଛନ୍ତି ବୋଲି ପଣ୍ଡିତ ମୋତିଲାଲ ଜାଣିବାକୁ ପାଇଲେ। ସେତେବେଳକୁ ଡାକ୍ତରମାନେ ତାଙ୍କ ଜୀବନର ଆଶା ତ୍ୟାଗ କରିସାରିଲେଣି। ଗାନ୍ଧିଜୀ ଆସୁଛନ୍ତି ଶୁଣି ମୃତ୍ୟୁଶଯ୍ୟାରେ ପଣ୍ଡିତ ମୋତିଲାଲଜୀଙ୍କ ଆଖିପତା ପଡୁନାହିଁ। ଗାନ୍ଧୀଜୀ ଉପସ୍ଥିତ ହୋଇ ମୋତିଲାଲଜୀଙ୍କ ଶଯ୍ୟା ଉପରେ ବସିପଡ଼ି କହିଲେ, "ଏଥର ଏ ସଂକଟରୁ ଆପଣ ଉଧୁରି ଗଲେ। ଆମ୍ଭେ ନିଶ୍ଚୟ ସ୍ୱରାଜ୍ୟ ଜିଣିବା।" ଏହା ଶୁଣି ମୋତିଲାଲଜୀ କହିଲେ, "ମହାତ୍ମାଜୀ ମୁଁ ଶୀଘ୍ର ଚାଲିଯିବି। ସ୍ୱରାଜ୍ୟ ଦେଖିବାକୁ ଆଉ ଏଠାରେ ନ ଥିବି। କିନ୍ତୁ ମୁଁ ଜାଣେ ତୁମ୍ଭେ ଜୟ କରିଛ ଏବଂ ଶୀଘ୍ର ସ୍ୱରାଜ୍ୟ ମଧ୍ୟ ଲାଭ କରିବ।" ସତକୁ ସତ ସେ ଆଉ ବେଶି ସମୟ ବଞ୍ଚିଲେ ନାହିଁ। ଫେବୃୟାରୀ ମାସ ଛଅ ତାରିଖ ଦିନ ସମଗ୍ର ଭାରତକୁ ଶୋକ ସାଗରରେ ଭସାଇ ଦେଇ ଇହଧାମ ତ୍ୟାଗ କରିଥିଲେ। ସ୍ୱାଧୀନ ଭାରତରେ ମୋ ମୃତ୍ୟୁ ଘଟୁଛି—ଏହି କେତୋଟି ବାକ୍ୟ ଉଚ୍ଚାରଣ କରୁ କରୁ ତାଙ୍କର ପ୍ରାଣବାୟୁ ଉଡ଼ିଯାଇଥିଲା ଭାରତ ଗଗନରୁ ଗୋଟିଏ ଜାଜ୍ୱଲ୍ୟମାନ ଗ୍ରହ ଖସି ପଡ଼ିଲା। ପଣ୍ଡିତ ମୋତିଲାଲଜୀଙ୍କ ବିୟୋଗବାର୍ତ୍ତା ଗୋଟାଏ ବଜ୍ରପାତ ପରି ବୋଧହେଲା। ଆମ୍ଭମାନଙ୍କ କଥା କିଏ ପଚାରେ, ମହାତ୍ମାଗାନ୍ଧୀ ମଧ୍ୟ ମୋତିଲାଲଜୀଙ୍କ ମୃତ୍ୟୁରେ ଅଧୀର ହୋଇ ପଡ଼ିବାର ଜଣାଗଲା। ସେ ହଠାତ୍ କହି ପକାଇଲେ, "ସବୁଦିନ ପାଇଁ ମୋତିଲାଲଜୀଙ୍କୁ ହରାଇ ମୁଁ ଅତି ନିଃସହାୟ ବୋଧ କରୁଛି। ମୁଁ ସହି ପାରୁନାହିଁ। ପୃଥିବୀ ଫାଟି ଯା, ତୋର କୋଳରେ ମୋର ମୁହଁକୁ ମୁଁ ଲୁଚାଇ ଦିଏ।"

ପଣ୍ଡିତ ମୋତିଲାଲଙ୍କ ମୃତ୍ୟୁ ସଂବାଦ ଏପରି ବିଜୟ ଉଲ୍ଲାସ ସମୟରେ ସମସ୍ତଙ୍କ ମନରୁ ଉତ୍ସାହ ଭାଙ୍ଗିଦେଲା। ଏହା ସତ୍ୟାଗ୍ରହ ସଂଗ୍ରାମକୁ ଶିଥିଳ କରି ପକାଇଲା। ମହାତ୍ମାଗାନ୍ଧୀ ଓ ଅନ୍ୟାନ୍ୟ ନେତୃବୃନ୍ଦ ଜେଲରୁ ମୁକ୍ତହେବା ଦ୍ୱାରା ସମାଧାନର ଆଶା ସମସ୍ତଙ୍କ ମନରେ ସ୍ଥାନ ପାଇଛି। ଏହାର ଶେଷ ପରିଣାମ ଜାଣିବାକୁ ଚାହିଁ ରହିବା ମଧ୍ୟ ସତ୍ୟାଗ୍ରହ ଶିଥିଳ ପଡ଼ିଯିବାର ଅନ୍ୟ ଏକ କାରଣ। ଜେଲରୁ ମୁକ୍ତହୋଇ

ଗାନ୍ଧୀଜୀ ଯେଉଁ ସର୍ତ୍ତସବୁ ଉଲ୍ଲେଖ କରିଥିଲେ ତହିଁର କୌଣସି ଉତ୍ତର ମିଳିବାର ସଙ୍କେତ ଦେଖାଗଲା ନାହିଁ। ବଡ଼ଲାଟଙ୍କ ନିକଟରୁ କୌଣସି ପ୍ରକାର କିଛି ସୂଚନା ଆଉ ଗାନ୍ଧୀଜୀଙ୍କୁ ମିଳି ନ ଥିଲା। ଦେଶରେ ଦମନଲୀଳା ଯଥାବତ୍ ଚାଲିଛି। ଦେଶର ପରିସ୍ଥିତି ଅନିଶ୍ଚିତ ଆକାର ଧାରଣ କରୁଥିବାରୁ ତହିଁର ଚିନ୍ତାରେ ଗାନ୍ଧୀଜୀ ପଣ୍ଡିତ ମୋତିଲାଲଜୀଙ୍କ ବିୟୋଗଜନିତ ଦୁଃଖକୁ ଭୁଲି ଯାଇଛନ୍ତି। ମୋତିଲାଲଜୀଙ୍କ ଶ୍ରାଦ୍ଧ ଶେଷରେ କାର୍ଯ୍ୟକାରୀ ସମିତିର ବୈଠକ ବସିଲା। ଦେଶରେ ଉପୁଜିଥିବା ଅନିଶ୍ଚିତ ଅବସ୍ଥାର କୌଣସି ପ୍ରକାରେ ଅବସାନ ଘଟାଇବାକୁ ପଡ଼ିବ। ସତ୍ୟାଗ୍ରହ ଶିଥିଳ ପଡ଼ିଯାଉଛି। କାଳବିଳମ୍ବ ଅସହ୍ୟ ବୋଧହେବାରୁ କାର୍ଯ୍ୟକାରୀ ସମିତିର ସଭ୍ୟମାନେ ଶୀଘ୍ର ଜେଲକୁ ଫେରିଯିବାକୁ ସ୍ଥିର କଲେ। ଇତିମଧ୍ୟରେ ବିଲାତର ଗୋଲଟେବୁଲ ସମ୍ମିଳନୀରୁ ଫେରି, ଶ୍ରୀ ତେଜବାହାଦୁର ସାପ୍ରୁ, ଶ୍ରୀ ଜୟକର ଓ ଶ୍ରୀନିବାସ ଶାସ୍ତ୍ରୀ ବମ୍ବେଇରେ ପହଞ୍ଚିଲେ। ବମ୍ବେଇରେ ଉପସ୍ଥିତ ହୋଇ ସେମାନେ ଘୋଷଣା କରିଥିଲେ ଯେ, ଭାରତକୁ ଔପନିବେଶିକ ସ୍ୱାୟତ୍ତଶାସନ ନିଶ୍ଚୟ ମିଳିବ। ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ। ଗାନ୍ଧୀଜୀଙ୍କ ନିକଟକୁ ତାର ପଠାଇ ସେମାନେ ଅନୁରୋଧ କଲେ ଯେ ସେମାନଙ୍କଠାରୁ ନ ଶୁଣି କଂଗ୍ରେସ କିଛି କରିଦବା ଉଚିତ ହେବ ନାହିଁ। କିନ୍ତୁ ଦେଶରେ ଚାଲିଥିବା ଅମାନୁଷିକ ଦମନଲୀଳା ଦେଖି କାର୍ଯ୍ୟ ନିର୍ବାହିକା ସମିତିର ସଭ୍ୟମାନେ ସଂଗ୍ରାମକୁ ଅଧିକ ବଳଶାଳୀ କରିବାକୁ ଗୋଟିଏ ପ୍ରସ୍ତାବ ଗ୍ରହଣ କରି ସାରିଥାନ୍ତି। ଶ୍ରୀ ସାପ୍ରୁ ଓ ଶ୍ରୀ ଶାସ୍ତ୍ରୀ ପ୍ରଭୃତି ଆସି ଏହ୍ଲାବାଦରେ ଉପସ୍ଥିତ ହୋଇ ଗାନ୍ଧୀଜୀଙ୍କ ସହିତ କଥା ହେଲେ। କାର୍ଯ୍ୟକାରୀ ସମିତିର ଉକ୍ତ ପ୍ରସ୍ତାବ ସ୍ଥଗିତ ରଖାଗଲା। ତାହା ଆଉ ଦାଣ୍ଡକୁ ପ୍ରକାଶ ପାଇ ନାହିଁ। ଗାନ୍ଧୀଜୀଙ୍କ ସହିତ କଥା ହୋଇ ଶ୍ରୀ ସାପ୍ରୁ ଓ ଶ୍ରୀ ଶାସ୍ତ୍ରୀ ପ୍ରଭୃତି ଦିଲ୍ଲୀକୁ ଦୌଡ଼ିଲେ। ଦିଲ୍ଲୀରେ ବଡ଼ଲାଟ ସାହେବଙ୍କ ସହିତ କଥାବାର୍ତ୍ତା କରି ପୁଣି ଏହ୍ଲାବାଦ ଆସି କାର୍ଯ୍ୟକାରୀ କମିଟିର ସଭ୍ୟ ଓ ଗାନ୍ଧୀଜୀଙ୍କ ସହିତ ଆଲୋଚନା କରିଥିଲେ। ଏହି ଆଲୋଚନା ଫଳରେ ବଡ଼ଲାଟ ସାହେବଙ୍କ ସହିତ ସାକ୍ଷାତ କରି ସମସ୍ତ କଥା ଆଲୋଚନା କରିବାପାଇଁ ଗାନ୍ଧୀଜୀ ବଡ଼ଲାଟଙ୍କୁ ପତ୍ର ଲେଖିବାକୁ କାର୍ଯ୍ୟକାରୀ ସମିତି ପ୍ରସ୍ତାବ କଲା। ତଦନୁସାରେ ଗାନ୍ଧୀଜୀ ବଡ଼ଲାଟ ସାହେବଙ୍କୁ ସାକ୍ଷାତ କରିବା ଉଦ୍ଦେଶ୍ୟରେ ଖଣ୍ଡିଏ ପତ୍ର ଲେଖିଥିଲେ। ଯଥା ସମୟରେ ଉତ୍ତର ପାଇ ଗାନ୍ଧୀଜୀ ଦିଲ୍ଲୀରେ ଉପସ୍ଥିତ ହେଲେ। ବର୍ତ୍ତମାନ କଂଗ୍ରେସ ତରଫରୁ ମହାତ୍ମାଗାନ୍ଧୀ ଏବଂ ଇଂରେଜ ସରକାରଙ୍କ ତରଫରୁ ବଡ଼ଲାଟ ଲର୍ଡ଼ ଇରଉଇନ୍ ସାହେବ ଉଭୟେ ବସି ସମାଧାନର ବାଟ ଫିଟାଇବା ପାଇଁ ଆଲୋଚନା ଆରମ୍ଭ କଲେ।

## କଂଗ୍ରେସ ଓ ସରକାରଙ୍କ ମଧ୍ୟରେ ଟଣାଓଟରା

ଏକ ପକ୍ଷରେ ମହାତ୍ମାଗାନ୍ଧୀ ଓ କଂଗ୍ରେସର କାର୍ଯ୍ୟନିର୍ବାହିକା ସମିତି, ଅନ୍ୟ ପକ୍ଷରେ ବଡ଼ଲାଟ ସାହେବ ଓ ତାଙ୍କର କାଉନ୍‌ସିଲ। ଗାନ୍ଧୀଜୀ ଓ ବଡ଼ଲାଟ ସାହେବ ଉଭୟେ ଯେଉଁ ସର୍ତ୍ତ ସ୍ଥିର କରନ୍ତି ତାହା ଶେଷ ସିଦ୍ଧାନ୍ତ ନୁହେଁ। ଏଥିପାଇଁ କଂଗ୍ରେସର କାର୍ଯ୍ୟକାରୀ ସମିତି ଓ ବଡ଼ଲାଟଙ୍କ କାଉନ୍‌ସିଲ ଉଭୟଙ୍କ ଅନୁମୋଦନ ଆବଶ୍ୟକ ପଡ଼େ। ସର୍ଦ୍ଦାର ପଟେଲ ଓ ଶ୍ରୀ ଜବାହାରଲାଲ କଂଗ୍ରେସର ଦୁର୍ବଳତା ପ୍ରକାଶ ପାଇଲା ଭଳି କୌଣସି ସର୍ତ୍ତ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି। ଲୁଣ ଟିକସ ଉଠାଇ ଦେଇ ବାର୍ଦୋଲି ପ୍ରଜାଙ୍କ ନିଲାମ ହୋଇଥିବା ଜମି ଫେରସ୍ତ ଦେବାର କଥା ସ୍ଥିର ନ ହେଲେ କୌଣସି ସର୍ତ୍ତରେ ସରକାରଙ୍କ ସହିତ ସାଲିସ କରିବାକୁ ସର୍ଦ୍ଦାର ପ୍ରସ୍ତୁତ ନୁହନ୍ତି। ପୁଣି ଭାରତର ସ୍ୱାଧୀନତା ଦାବୀକୁ ଇଂରେଜ ସରକାର ସ୍ୱୀକାର କରିବା ପ୍ରଥମ ପ୍ରଶ୍ନ। ଭାରତ ଶାସନରେ ଗୋରା ସିଭିଲିୟାନ୍ କର୍ମଚାରୀମାନଙ୍କର ଅଖଣ୍ଡ ପ୍ରତିପତ୍ତି। ସେମାନଙ୍କ ମତାମତର ପ୍ରତିକୂଳରେ କାର୍ଯ୍ୟକରି କୌଣସି ବଡ଼ଲାଟ ସୁନାମ ଅର୍ଜ୍ଜନ କରିପାରି ନାହାନ୍ତି। କଂଗ୍ରେସର ସତ୍ୟାଗ୍ରହ ସଂଗ୍ରାମ ଦ୍ୱାରା ସେମାନଙ୍କ ମଧ୍ୟରୁ ଅଧିକାଂଶ କ୍ରୋଧରେ ଉତ୍‌କ୍ଷିପ୍ତ ହୋଇ ଉଠୁଛନ୍ତି। କଂଗ୍ରେସ ସହିତ କୌଣସି ପ୍ରକାର ସାଲିସ ପ୍ରସ୍ତାବରେ ପୂରା ସମ୍ମତି ପ୍ରଦାନ କରିବାକୁ ସେମାନେ ପ୍ରସ୍ତୁତ ନୁହଁନ୍ତି। ମହାତ୍ମାଗାନ୍ଧୀ ଓ ବଡ଼ଲାଟ ଲର୍ଡ଼ ଇରଉଇନ୍ ଯେଉଁ ସବୁ ସର୍ତ୍ତରେ କଂଗ୍ରେସ ଓ ସରକାରଙ୍କ ମଧ୍ୟରେ ବୁଝାମଣା ହୋଇ ଚୁକ୍ତି କରିବାକୁ ସ୍ଥିର କରନ୍ତି ତାହାସବୁ ଉଭୟଙ୍କ ପରିଷଦରେ ଆଲୋଚିତ ହୁଏ। କୌଣସି ଗୋଟିଏ କଥା ସ୍ଥିର ହୋଇପାରେ ନାହିଁ। ଗାନ୍ଧୀଜୀ ଓ ବଡ଼ଲାଟ ବସି ପୁଣି ମନ୍ତ୍ରଣା କରନ୍ତି। ଉଭୟ ପରିଷଦ ଥରକୁ ଥର ବସି ଚିକିନିଖି କରି ସମସ୍ତ କଥା ବିଚାର କରନ୍ତି। କେହି କାହାରି କଥାକୁ ପୂରା ମାନିନେବାକୁ ସମର୍ଥନ ମିଳେ ନାହିଁ।

## ଶାନ୍ତିପାଇଁ ଚୁକ୍ତି

ଦିଲ୍ଲୀରେ ଶାନ୍ତିସ୍ଥାପନ ପାଇଁ ଏପରି ଦୀର୍ଘ ମନ୍ତ୍ରଣା ଚାଲିବାରୁ ଜେଲ ଭିତରେ ଆମ୍ଭମାନଙ୍କ ଚିନ୍ତା ଓ ବିଚାରରେ ବହୁ ପାର୍ଥକ୍ୟ ଦେଖାଗଲା। ଜେଲଖାନା ଭିତରେ ବାକ୍‌ବିତଣ୍ଡାର ସୀମା ଅତିକ୍ରମ କରିବାକୁ ବସିଲା। ପରିଣାମ କି ଆକାର ଧାରଣ କରୁଛି ତାହା ଜାଣିବାକୁ ସମସ୍ତଙ୍କ ମନ ଉତ୍କଣ୍ଠିତ। ମହାତ୍ମାଗାନ୍ଧୀ ବଡ଼ଲାଟଙ୍କ ନିକଟକୁ ଆଗ ଚିଠି ଲେଖି ଅନୁମତି ପାଇଲାପରେ ଦିଲ୍ଲୀକୁ ଯାଇ ଶାନ୍ତିସ୍ଥାପନ ପାଇଁ ଚେଷ୍ଟା କରିବା କାର୍ଯ୍ୟକୁ କେତେକ ତୀବ୍ର ସମାଲୋଚନା କରିବାକୁ ଆରମ୍ଭ କଲେ। ସତ୍ୟାଗ୍ରହ ସଂଗ୍ରାମ ଅହିଂସ। ଏଥିରେ ଶତ୍ରୁତା ଭାବ ନାହିଁ। ସୁତରାଂ ଆଦର୍ଶର ଅନୁକୂଳରେ ଯେପରି ଯାହା କରିବାର ତାହାହିଁ କେବଳ ମହାତ୍ମାଗାନ୍ଧୀ କରିଛନ୍ତି। ଏହିପରି ବିଶ୍ୱାସ

କରୁଥିବା ଲୋକେ ସମାଲୋଚନାକୁ ସମର୍ଥନ କରିପାରିଲେ ନାହିଁ। ତେଣୁ ଜେଲ ଭିତର ବାୟୁମଣ୍ଡଳ ବାକ୍‌ବିତଣ୍ଡାରେ ଗରମ ହୋଇ ଉଠିଲା। କୌଣସି ପ୍ରକାରେ ଗୋଟାଏ ସମାଧାନ ହୋଇଯାଇ ଶାନ୍ତିସ୍ଥାପନ କରାଯାଇ ପାରିଲେ ତୁରନ୍ତ ଜେଲଖାନାରୁ ମୁକ୍ତ ହେବାର ବାସନା ମଧ୍ୟ ଅନେକଙ୍କ ମନରେ ପ୍ରବଳ ହୋଇ ଉଠିଥିଲା। ଯାହା ହେବାର ତାହା ଅତି ଶୀଘ୍ର ହେଉ ଏହି ଇଚ୍ଛା ମଧ୍ୟ ସମସ୍ତଙ୍କ ମନକୁ ପ୍ରଭାବିତ କଲା। ଦିଲ୍ଲୀ ଆଡ଼କୁ ସମସ୍ତେ ଚାହିଁ ରହିଲେ। ସଂଗ୍ରାମ ମଧ୍ୟ ଶିଥିଳ ହୋଇ ପଡ଼ିଲା। ଶାନ୍ତିସ୍ଥାପନ କିମ୍ବା ସଂଗ୍ରାମର ଆହ୍ୱାନ, ଦିଲ୍ଲୀରୁ କଣ ଘୋଷଣା ଜାରୀ ହେବ, ସେହି ଆହ୍ୱାନ ଶୁଣିବାକୁ ମନ ଧ୍ୟାନ, ସବୁ ନିମଗ୍ନ ରହିଲା।

ଦୀର୍ଘ ପନ୍ଦରଦିନ ଆଲୋଚନା ଚାଲିବା ପରେ ସତ୍ୟାଗ୍ରହ ସଂଗ୍ରାମ ସ୍ଥଗିତ ରଖି ଶାନ୍ତିସ୍ଥାପନ କରିବାପାଇଁ ଘୋଷଣା ଜାରୀ କରାଗଲା। କଂଗ୍ରେସର କାର୍ଯ୍ୟକାରୀ ସମିତି ଓ ବଡ଼ଲାଟଙ୍କ କାଉନ୍‌ସିଲ ଉଭୟେ ଯାହା ଯେପରି ଅନୁମୋଦନ କରିଥିଲେ ତାହା ଗାନ୍ଧୀ-ଇରଉଇନ୍ ଚୁକ୍ତି ନାମରେ ପ୍ରକାଶ ପାଇଲା। ୧୯୩୧ ମସିହା ମାର୍ଚ୍ଚ ୫ ତାରିଖ ଦିନ କଂଗ୍ରେସ ସତ୍ୟାଗ୍ରହ-ସଂଗ୍ରାମ ସ୍ଥଗିତ ରଖିବାକୁ ଘୋଷଣା କଲା। ସେହିଦିନ ସମସ୍ତ ସତ୍ୟାଗ୍ରହୀ ବନ୍ଦୀମାନଙ୍କୁ ମୁକ୍ତିଦେବାର ଆଦେଶ ମଧ୍ୟ ସରକାର ପ୍ରକାଶ କଲେ। ଏହି ଚୁକ୍ତିବଳରେ ଏହି ପାଞ୍ଚ ତାରିଖ ଦିନ ସକାଳ ଆଠଟା ସମୟରେ ଆମ୍ଭେମାନେ ହଜାରୀବାଗ ଜେଲରୁ ବାହାରି ଓଡ଼ିଶା ଅଭିମୁଖେ ଯାତ୍ରାକଲୁ।

## ଶ୍ରୀଜଙ୍ଗର ଦୁଃଖ

ହଜାରୀବାଗ ଜେଲରୁ ବାହାରି ଆମ୍ଭେମାନେ ବାଲେଶ୍ୱରରେ ଉପସ୍ଥିତ ହେଲୁ। ବାଲେଶ୍ୱରରୁ ଶ୍ରୀଜଙ୍ଗ ମଉଜାକୁ ଯାଇଥିଲୁ। ଓଡ଼ିଶାର ଲବଣ-ସତ୍ୟାଗ୍ରହ ସଂଗ୍ରାମରେ ଶ୍ରୀଜଙ୍ଗ ମଉଜାର ନାମ ସମସ୍ତେ ଶୁଣିବାକୁ ପାଇଛନ୍ତି। ଏହି ଗ୍ରାମର ବିଶିଷ୍ଟ ବ୍ୟକ୍ତି ଶ୍ରୀ ଗୌରମୋହନ ଦାସଙ୍କ ନାମ ମଧ୍ୟ ଆମ୍ଭେମାନେ ଶୁଣିବାକୁ ପାଇଥିଲୁ। ଏହି ଶ୍ରୀଜଙ୍ଗ ମଉଜାକୁ ପରିଦର୍ଶନ କରି ଶ୍ରୀ ଗୌରମୋହନ ଦାସଙ୍କ ନିକଟରେ ଆମ୍ଭମାନଙ୍କର ଶ୍ରଦ୍ଧାପୂର୍ଣ୍ଣ ସଂବର୍ଦ୍ଧନା ଜ୍ଞାପନ କରିବା କର୍ତ୍ତବ୍ୟ ମନେକରି ଆମ୍ଭେମାନେ ସେଠାରୁ ଯାତ୍ରା କରିଥିଲୁ। ଖଜଣା ଟିକସ ବନ୍ଦକରିବା ସତ୍ୟାଗ୍ରହର ଶେଷ ଅସ୍ତ୍ର। ଓଡ଼ିଶାରେ ଶ୍ରୀଜଙ୍ଗ ମଉଜା ଅଧିବାସୀ ଏହି ଶେଷ ଅସ୍ତ୍ର ପ୍ରୟୋଗ କରିବାକୁ ସଂକଳ୍ପ କରି ଚୌକିଦାରୀ ଟିକସ ବନ୍ଦ କରିଥିଲେ। ସେମାନେ କୃତକାର୍ଯ୍ୟ ହୋଇ ପାରି ନଥିଲେ ସତ୍ୟ, କିନ୍ତୁ ସେମାନଙ୍କ ଉପରେ ଯେପରି ପୋଲିସ ଅତ୍ୟାଚାର କରାଯାଇଥିଲା ତଦ୍ୱାରା ସମଗ୍ର ଓଡ଼ିଶାର ଦୃଷ୍ଟି ଶ୍ରୀଜଙ୍ଗ ମଉଜା ଆଡ଼କୁ ଆକୃଷ୍ଟ ହୋଇଥିଲା। ଏହି କାରଣରୁ ଭକ୍ତି ଶ୍ରଦ୍ଧା ଜଣାଇ ସେମାନଙ୍କୁ ହାର୍ଦ୍ଦିକ ଅଭିବାଦନ ଦେବା ଆମ୍ଭମାନଙ୍କ ଉଦ୍ଦେଶ୍ୟ। ସେହି ଗ୍ରାମରେ ଉପସ୍ଥିତ ହୋଇ ଯେଉଁ ଦୃଶ୍ୟ ଦେଖିବାକୁ ପାଇଲୁ

ତାହା ବଡ଼ ହୃଦୟବିଦାରକ। ଦଳେ ପୋଲିସ ସେହି ଗ୍ରାମକୁ ଅଦ୍ୟାପି ଜଗି ରହିଛନ୍ତି। ଶ୍ରୀ ଗୌରମୋହନ ଦାସଙ୍କ ଘର ଭିତର ଧାନ କୋଠି ନିକଟରେ ପୋଲିସ ପହରା ଦେଉଛି। ତାଙ୍କର ଘର ଧନଦ୍ରବ୍ୟ ସବୁ ଲୁଟ୍ ହୋଇଯାଇଛି। ପେଡ଼ି, ପେଟରା, ସିନ୍ଧୁକ, ବାକ୍ସ ଭଙ୍ଗାହୋଇ ଘର ଭିତରେ ଖେଳେଇ ହୋଇ ପଡ଼ିଛି। ଆମ୍ଭମାନଙ୍କୁ ତାଙ୍କ ଘରେ ଦେଖି ଶ୍ରୀ ଗୌରମୋହନ ଦାସ ବଡ଼ ଶୋକାକୁଳ ହୋଇ ପଡ଼ିଲେ। ତାଙ୍କ ଆଖି ଛଳ ଛଳ ହୋଇଗଲା। ତାହାଙ୍କଠାରୁ ସମସ୍ତ ବିବରଣୀ ଶୁଣିବାକୁ ପାଇଲୁ। କେବଳ ସଂଗଠନ ଅଭାବରୁ ଏପରି ଘଟିଲା ବୋଲି ମୋର ତ ଦୃଢ଼ ବିଶ୍ୱାସ ହୋଇଥିଲା। ଶ୍ରୀ ନବକୃଷ୍ଣ ଚୌଧୁରୀ ଜେଲ ନ ଯାଇ ବାହାରେ ଥାଇ ସଂଗ୍ରାମକୁ ପରିଚାଳନା କରୁଥିଲେ। ତାହାଙ୍କ ଇଙ୍ଗିତରେ ଚୌକିଦାରୀ ଟିକସ ଆନ୍ଦୋଳନ ସୂତ୍ରପାତ ହେଲା ବୋଲି କହିଲେ ଚଳେ। ଏଥିପାଇଁ ସେ ଶ୍ରୀଜଙ୍ଗ ମଉଜାବାସୀଙ୍କୁ ଉତ୍ସାହିତ କରିଥିଲେ। ଶ୍ରୀଜଙ୍ଗବାସୀ ଚୌକିଦାରୀ ଟିକସ ବନ୍ଦ କଲେ। କିନ୍ତୁ ସେମାନଙ୍କୁ ପରିଚାଳନା କରିବାକୁ କେହି ରହିଲେ ନାହିଁ। କୌଣସି କାରଣବଶତଃ, ନବବାବୁ କଟକ ଚାଲିଗଲେ। ଶ୍ରୀଜଙ୍ଗ ମଉଜାର ପ୍ରଜାମାନଙ୍କ ସହିତ ପୋଲିସର ସଂଘର୍ଷ ଜାତ ହୋଇଗଲା। ଫଳରେ ଶ୍ରୀଜଙ୍ଗ ମଉଜାବାସୀଙ୍କୁ ଅସୀମ ଦୁଃଖ ନିର୍ଯ୍ୟାତନା ସହ୍ୟ କରିବାକୁ ପଡ଼ିଲା। ଧନସମ୍ପତ୍ତି ସବୁ ହରାଇ ବସିଲେ। ପିଟୁଣୀ ପୋଲିସ ବସାଇ ଗ୍ରାମକୁ ଯବତ୍ କରାଗଲା। ପିଟୁଣୀ ପୋଲିସ ଯେତେଦିନ ବସିଲା ସେ ସମସ୍ତ ଖର୍ଚ୍ଚ ଶ୍ରୀଜଙ୍ଗ ମଉଜାବାସୀ ବହନ କରିବାକୁ ବାଧ୍ୟ ହେଲେ। ଏଥିପାଇଁ ମୋ ମନରେ ଦୁଃଖ ହୋଇ ନାହିଁ। ସଂଗ୍ରାମରେ ଧନକ୍ଷୟ ଓ ଦୁଃଖଭୋଗ ଅନିବାର୍ଯ୍ୟ। କିନ୍ତୁ ଏପରି ଦୁଃଖ ଓ ଧନକ୍ଷୟ ଯଦି ମନରେ ସାହସ ଓ ବଳ ସଂଚାର କରିବାର ଉପାଦାନ ନ ହୋଇ ଅବସାଦ ଜାତ କରେଇବାରା କାରଣ ହୁଏ ତାହା ଦେଶପକ୍ଷରେ ଗୌରବ ଜନକ ନୁହେଁ। ସୁତରାଂ ଶ୍ରୀଜଙ୍ଗ ମଉଜାରେ ଯାହାସବୁ ଯେପରି ଘଟିଲା, ତାହା ଓଡ଼ିଶାର ସତ୍ୟାଗ୍ରହ ସଂଗ୍ରାମର ଇତିହାସରେ କଳାଦାଗ ଅଙ୍କନ କଲାପ୍ରାୟ ହେଲା ଏବଂ ଦେଶର ଗୌରବକୁ କ୍ଷୁର୍ଣ୍ଣ କଲାବୋଲି ମତେ ବୋଧହେଲା। ଏପରି ଘଟିବା ଉଚିତ ନୁହେଁ। ମୋର ବିଶ୍ୱାସ କେହି ଜଣେ ଜଣାଶୁଣା କଂଗ୍ରେସ କର୍ମୀ ସେଠାରେ ଉପସ୍ଥିତ ଥିଲେ ଏପରି ଘଟିବା ବୋଧହୁଏ ସମ୍ଭବପର ହୋଇ ନଥାନ୍ତା। ନବବାବୁ ବାଲେଶ୍ୱରକୁ ଆଉ ଫେରିଲେ ନାହିଁ। ତାଙ୍କର ନ ଫେରିବାର କାରଣ କିଛି ଜଣା ଯାଇନାହିଁ।

ଏହି ଦୃଶ୍ୟ ମନରେ ଆନନ୍ଦ ଦେଇ ନ ପାରେ। ସମସ୍ତଙ୍କ ମୁଖମଣ୍ଡଳ ଗମ୍ଭୀର। ଶ୍ରୀଜଙ୍ଗ ଘଟଣା ଚିନ୍ତା କରି ମନରେ ନାନା ପ୍ରକାର ଭାବନା ଜାଗିଉଠିଲା। ଆମ୍ଭେମାନେ ବାଲେଶ୍ୱରକୁ ଫେରିଲୁ। ଏ ପର୍ଯ୍ୟନ୍ତ ମହତାବବାବୁ ଜେଲରୁ ମୁକ୍ତ ହୋଇ ଆମ୍ଭମାନଙ୍କ ସହିତ ଯୋଗ ଦେଇ ନାହାନ୍ତି। ହଜାରୀବାଗ ଜେଲରୁ ପାଟଣା

କ୍ୟାମ୍ପ ଜେଲକୁ ତାଙ୍କୁ ବଦଳି କରାଯାଇଥିଲା । ସେ ଖ ଶ୍ରେଣୀ ବନ୍ଦୀ ଭାବରେ ଆମ୍ଭମାନଙ୍କ ସହିତ ହଜାରୀବାଗରେ ଥିଲେ । ସଂଗ୍ରାମ ପରିଚାଳନା କରିବା ପାଇଁ କେତେକ ଉପଦେଶ ଦେଇ ଖଣ୍ଡିଏ ପତ୍ର ସେଠାରୁ ସେ ଜେଲ କର୍ତ୍ତୃପକ୍ଷଙ୍କ ଅଜାଣତରେ ବାଲେଶ୍ବରକୁ ପଠାଇଥିଲେ । ଉକ୍ତ ପତ୍ରଖଣ୍ଡି ଧରାପଡ଼ିବାରୁ ତାଙ୍କୁ ଖ ଶ୍ରେଣୀରୁ ଗ ଶ୍ରେଣୀକୁ ଖସାଇ ପାଟଣା କ୍ୟାମ୍ପ ଜେଲକୁ ପଠାଇ ଦିଆଯାଇଥିଲା । ହଜାରୀବାଗ ଜେଲରୁ ଖଲାସ ପାଇ ଆସିଲାବେଳେ ଖଡ୍ଗପୁର ରେଳଷ୍ଟେସନରେ ଆମ୍ଭେମାନେ ଦୁଇଦିନକାଳ ତାଙ୍କୁ ଅପେକ୍ଷା କରି ରହିଥିଲୁ । ସେ ନ ଆସିବାରୁ ଆମ୍ଭେମାନେ ବାଲେଶ୍ବର ଆସିଲୁ । ବାଲେଶ୍ବରରେ ଦୁଇଦିନ ବିତିଲାଣି । ମହତାବବାବୁ କିମ୍ବା ଅନ୍ୟ ଶହ ଶହ ଓଡ଼ିଶାର ରାଜବନ୍ଦୀ କେହି ଏ ପର୍ଯ୍ୟନ୍ତ ଆସି ଆମ୍ଭମାନଙ୍କ ସହିତ ଯୋଗ ଦେଇ ପାରିଲେ ନାହିଁ । ସୁତରାଂ ମନରେ ସୁଖ ନ ଥାଏ । ଓଡ଼ିଶାର ସମସ୍ତ ରାଜବନ୍ଦୀ ଜେଲରୁ ମୁକ୍ତ ହୋଇ ଏକାସଂଗରେ ଓଡ଼ିଶାରେ ପ୍ରବେଶ କରିବାର କଳ୍ପନା କାର୍ଯ୍ୟରେ ପରିଣତ ହୋଇ ପାରିନାହିଁ । ସେ କଳ୍ପନା ବାଲେଶ୍ବରଠାରୁ ଆଂଶିକ ଭାବରେ ପୂରଣ କରିବା ଆଶା ଆଉ ଆମ୍ଭମାନଙ୍କର ରହିଲା ନାହିଁ । ଘଟଣାଚକ୍ରରେ ବାଧ ହୋଇ ଆମ୍ଭେମାନେ କଟକ ଅଭିମୁଖେ ଯାତ୍ରା କଲୁ । ବାଟରେ ଦୃଶ୍ୟ କଣ ବର୍ଣ୍ଣନା କରିବି ? ବାଲେଶ୍ବରଠାରୁ କଟକ ପର୍ଯ୍ୟନ୍ତ ପ୍ରାୟ ଅଧିକାଂଶ ଷ୍ଟେସନରେ ଅସଂଖ୍ୟ ନରନାରୀ ଠୁଳ ହୋଇଛନ୍ତି, ଆମ୍ଭମାନଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ । କଟକ ଷ୍ଟେସନ ଓ ସହରର ଦୃଶ୍ୟ ବର୍ଣ୍ଣନା କରିବାକୁ ଭାଷା ନାହିଁ । ରକ୍ତାକ୍ତ ସଂଗ୍ରାମରେ ଜୟଲାଭ କରି ସୈନିକମାନେ ଦେଶକୁ ପ୍ରତ୍ୟାବର୍ତ୍ତନ କଲାବେଳେ ଦେଶବାସୀ ଯେପରି ଆନନ୍ଦରେ ବିହ୍ବଳ ହୋଇ ସେମାନଙ୍କୁ ସ୍ବାଗତ ସମ୍ଭାଷଣ କରନ୍ତି, କଟକ ସହରର ଅଭିବାଦନ ଦେଖି ସେହିପରି ଭାବନା ହୃଦୟରେ ଜାଗରିତ ହୋଇ ଉଠୁଛି । ସହରର ଅଗଣିତ ନରନାରୀ ଆଜି ଆନନ୍ଦରେ ଆତ୍ମହରା ହୋଇ ପଡ଼ିଥିଲା ପରି ବୋଧ ହେଉଛି । ସ୍ବାଧୀନତା ପାଇଁ ସଂଗ୍ରାମ କରି କଂଗ୍ରେସ ଏକ ବଡ଼ ବିଜୟଲାଭ କରିଛି, ଏପରି ବିଶ୍ବାସ ହୃଦୟରେ ଦୃଢ଼ୀଭୂତ ନ ହୋଇଥିଲେ, ଜନସାଧାରଣ କଦାପି ଏପରି ଭାବବିହ୍ବଳ ହୋଇ ସ୍ବାଗତ ସମ୍ଭାଷଣ ଜଣାଇ ପାରି ନ ଥାନ୍ତେ । ଜନସାଧାରଣଙ୍କର ଏତାଦୃଶ ଆନନ୍ଦ ଅନୁଭବ କରୁଥିବାର ଜାଣି ଆମ୍ଭମାନଙ୍କ ମନରେ ଗଭୀର ଆନନ୍ଦ ଏବଂ ହୃଦୟରେ ଗର୍ବ ଭାବ ଜାଗ୍ରତ ହୋଇଛି ଏବଂ ଆମ୍ଭମାନଙ୍କ ଜୀବନର ଲକ୍ଷ୍ୟ ବହୁପରିମାଣରେ ପୂରଣ ହୋଇ ପାରିଛି ବୋଲି ଆତ୍ମବିଶ୍ବାସ ଦୃଢ଼ ହୋଇଛି । କେବଳ ଉତ୍କଳଭୂମିରେ ନୁହେଁ ସମଗ୍ର ଭାରତରେ ଜେଲ ପ୍ରତ୍ୟାଗତ ସତ୍ୟାଗ୍ରହୀ ଜନସାଧାରଣଙ୍କ ଠାରୁ ଏହିପରି ସ୍ବାଗତ ସଂବର୍ଦ୍ଧନା ଲାଭ କରିଛନ୍ତି । ଏହା କି ପ୍ରକାର ଅପୂର୍ବ ଦୃଶ୍ୟ ଓ ଅପୂର୍ବ ପରିବର୍ତ୍ତନର ସୂଚନା ଦେଉଛି ! ଚବିଶ ଘଣ୍ଟା ପୂର୍ବରୁ କଂଗ୍ରେସର ନାମ ଉଚ୍ଚାରଣ କଲେ କାରାଦଣ୍ଡ ଭୋଗ କରିବାକୁ ପଡୁଥିଲା । ସାଧାରଣ ଲୋକେ

କଂଗ୍ରେସର ନାମ ଧରିବାକୁ ଡରୁଥିଲେ। କିନ୍ତୁ ରାତି ପାହିଲା ବେଳକୁ କଂଗ୍ରେସର ଜୟ ଶବ୍ଦରେ ଭାରତର ଦିଗଦିଗନ୍ତ ପ୍ରତିଧ୍ୱନିତ ହୋଇ ଉଠୁଛି। ଭାରତ ଗଗନ-ଜୟ ଶବ୍ଦରେ ମୁଖରିତ। ପଞ୍ଚତିରିଶ କୋଟି ନରନାରୀଙ୍କ ହୃଦୟ ଆନନ୍ଦ ଓ ଆଶାରେ ପରିପୂର୍ଣ୍ଣ। କଂଗ୍ରେସ ଓ ମହାତ୍ମାଗାନ୍ଧୀଙ୍କ ଜୟ ଶବ୍ଦ ବ୍ୟତୀତ ଆଉ କିଛି ଶୁଣିବାକୁ ମିଳୁ ନାହିଁ। ଇଂରେଜ ସରକାର ଲୋକଙ୍କ ମନରୁ ପାସୋର ଯାଇଛି ଏବଂ ସରକାରଙ୍କ ମନରେ ଏଭଳି ଯେଉଁ ପରିବର୍ତ୍ତନ ଲକ୍ଷ୍ୟ କରାଯାଉଛି, ତାହା ହିଁ କଂଗ୍ରେସର ବିଜୟ ଏବଂ ପରାଧୀନ ଭାରତର ଅପୂର୍ବ ରୂପ ପରିବର୍ତ୍ତନ ବୋଲି ବିଶ୍ୱାସ କରିବା ସ୍ୱାଭାବିକ। ଏଥିରେ ଦ୍ୱିଧା ବୋଧ କରିବାର କୌଣସି କାରଣ ନାହିଁ।

ଏହିପରି କଳ୍ପନା ମନରେ ଆନନ୍ଦ ଦେଇଛି ଏବଂ ହୃଦୟରେ ବଳ ସଂଚାର କରିଛି। ଏପରି ମାନସିକ ଅବସ୍ଥାରେ କଟକ ଛାଡ଼ି ମୁଁ ଚମ୍ପାପୁର ଗାନ୍ଧୀ ସେବାଶ୍ରମରେ ଉପସ୍ଥିତ ହୋଇଥିଲି। ଆଶ୍ରମ କାର୍ଯ୍ୟରେ କଣ ସବୁ ତ୍ରୁଟି ଘଟିଛି ସେ ସବୁ ବିଚାର କରିବାକୁ ଇଚ୍ଛା ହେଲା ନାହିଁ। କର୍ମୀମାନଙ୍କଠାରୁ ସମସ୍ତ କଥା ଶୁଣି ଶାଖା କେନ୍ଦ୍ର ସବୁ ବୁଲି ଦେଖିଆସିଲି। ଓଡ଼ିଶାରେ ଗୋଟିଏ ସ୍ଥାୟୀ ଅନୁଷ୍ଠାନର କଳ୍ପନା କରି ଆଶ୍ରମକୁ ମୁଁ ଗଢ଼ିଛି। ଏହି ଅନୁଷ୍ଠାନକୁ ଦୃଢ଼ କରିବାପାଇଁ ଆଦର୍ଶ ଓ ଉଦ୍ଦେଶ୍ୟ ଉଲ୍ଲେଖ କରି ଗୋଟିଏ ନିୟମାବଳୀ (Constitution) ପ୍ରକାଶ କରି ସାରିଛି। ଉଦ୍ଦେଶ୍ୟ ସାଧନ କରିବାକୁ କର୍ମୀର ଅଭାବ ବଡ଼ ଅନ୍ତରାୟ ହେଉଛି। ଏଥିପାଇଁ ଉପଯୁକ୍ତ କର୍ମୀଦଳ ଗଠନ କରିବା ନିହାତି ଦରକାର। ଏହି କଥା କର୍ମୀମାନଙ୍କ ସହିତ ଆଲୋଚନା କଲି। ଆଲୋଚନାରୁ ବୁଝିଲି, କେତୋଟି ଟଙ୍କା ଦରମା ହିସାବରେ ନେଇ କାମ କଲେ ଆଶ୍ରମ କାର୍ଯ୍ୟକୁ ଜୀବନର ଲକ୍ଷ୍ୟ ବୋଲି ଧରି ନେଇ କାମରେ ଆତ୍ମନିୟୋଗ କରିବା ସମ୍ଭବ ନୁହେଁ। ସମସ୍ତଙ୍କୁ ମୋ ପରି ସର୍ବତ୍ୟାଗୀ ରୂପରେ କଳ୍ପନା କରି କାର୍ଯ୍ୟ ଆଶା କରିବା ମହା ଭ୍ରମ। ସେମାନଙ୍କ ଅଭାବ ପୂରଣ ହୋଇ ପାରିବାଭଳି ବ୍ୟବସ୍ଥା କରି ଭବିଷ୍ୟତ ପାଇଁ ସୋପାନ ବାନ୍ଧିପାରିଲେ ଉପଯୁକ୍ତ କର୍ମୀ ପାଇବା କଠିନ ହେବ ନାହିଁ। କିନ୍ତୁ ଏଥିପାଇଁ ପ୍ରଚୁର ଅର୍ଥ ଲୋଡ଼ା। ପୁଣି ବ୍ୟବସ୍ଥା ଉପରେ ଆସ୍ଥା ଜନ୍ମାଇବା ପାଇଁ ଗୋଟିଏ ସ୍ଥାୟୀ ପାଣ୍ଠି ଗଚ୍ଛିତ ରହିବା ଆବଶ୍ୟକ। ଅତି କମ୍‌ରେ ଲକ୍ଷେ ଟଙ୍କା ଗଚ୍ଛିତ ରଖିପାରିଲେ ଆଶ୍ରମର ଦୃଢ଼ସ୍ଥିତି ଉପରେ କର୍ମୀମାନଙ୍କର ବିଶ୍ୱାସ ଜାତ ହେବ। ଆଶ୍ରମର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ପ୍ରତି ଦୃଷ୍ଟି ରଖି ଆଜୀବନ କାର୍ଯ୍ୟ କରିବାକୁ କେତେଜଣ କର୍ମୀ ପାଇବା କଠିନ ହେବନାହିଁ। ପରିସ୍ଥିତିକୁ ବିଚାର ଆଲୋଚନା କରି ମୁଁ ଏହିପରି ଗୋଟିଏ ସିଦ୍ଧାନ୍ତରେ ଉପନୀତ ହେଲି। ଆଶ୍ରମର ଆୟବ୍ୟୟର ହିସାବ ଦେଇ ଆଶ୍ରମ କାର୍ଯ୍ୟ ବିବରଣୀର ଗୋଟିଏ ରିପୋର୍ଟ ମୁଁ ପ୍ରତିବର୍ଷ ପ୍ରକାଶ କରେ। ପଣ୍ଡିତ ଆକୁଳ ମିଶ୍ରଙ୍କ ପରାମର୍ଶରେ ଶ୍ରୀ ଅଲେଖ ପ୍ରସାଦ ଦାସ ଖଣ୍ଡିଏ ରିପୋର୍ଟ ପ୍ରକାଶ କରି ସାରିଥିଲେ। ଉକ୍ତ ରିପୋର୍ଟ ଖଣ୍ଡି ଧରି ମୁଁ କଟକ ଫେରିଲି।

# ଓଡ଼ିଶା କଂଗ୍ରେସରେ ଦଳ ସୃଷ୍ଟି

ମାର୍ଚ୍ଚମାସ ଶେଷକୁ କଂଗ୍ରେସର ବାର୍ଷିକ ଅଧିବେଶନ କରାଚୀରେ ବସିବ ବୋଲି ସ୍ଥିର ହୋଇଗଲାଣି। ସର୍ଦ୍ଦାର ବଲ୍ଲଭଭାଇ ପଟେଲ ସଭାପତି। କଟକରେ ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ବସୁଛି। ପ୍ରାଦେଶିକ କର୍ମକର୍ତ୍ତା ଓ ନିଖିଳ ଭାରତ କଂଗ୍ରେସ କମିଟି ପାଇଁ ପ୍ରତିନିଧି, ଉଭୟର ନିର୍ବାଚନ କରିବାକୁ ହେବ। କିନ୍ତୁ ଅତ୍ୟନ୍ତ ଦୁଃଖର ବିଷୟ ଏହି ଯେ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ନିର୍ବାଚନ ନିର୍ଦ୍ଵନ୍ଦରେ ହୋଇ ପାରିଲା ନାହିଁ। ଉତ୍କଳ କଂଗ୍ରେସରେ ନିର୍ବାଚନ ପାଇଁ ଆଜି ପର୍ଯ୍ୟନ୍ତ କୌଣସି ସମୟରେ ପ୍ରତିଦ୍ୱନ୍ଦିତା ଆତ୍ମପ୍ରକାଶ କରିବାର ଅବସର ଘଟି ନ ଥିଲା। ଯଦି କୌଣସି ସମୟରେ କିଛି ପ୍ରତିଦ୍ୱନ୍ଦିତାର ଆଭାସ ମିଳିଛି ଅବା ମତଦ୍ୱୈଧ ଦେଖା ଦେଇଛି ତଦ୍ଦ୍ୱାରା ସମଷ୍ଟିଗତ ଜୀବନରେ ଭେଦ ସୃଷ୍ଟି କରି ପାରିଲା ଭଳି ଘଟଣାର ଉପକ୍ରମ ହୋଇ ପାରି ନାହିଁ। ବର୍ତ୍ତମାନ ସଭାପତି ନିର୍ବାଚନ ପାଇଁ ଯେଉଁ ପ୍ରତିଦ୍ୱନ୍ଦିତା ଆତ୍ମ ପ୍ରକାଶ କଲା ତଦ୍ଦ୍ୱାରା ଉତ୍କଳ କଂଗ୍ରେସ ଦୁଇଟି ବିବଦମାନ ଦଳରେ ବିଭକ୍ତ ହୋଇଯିବାର ଉପକ୍ରମ ଆରମ୍ଭ ହେଲା। ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓ ପଣ୍ଡିତ ନୀଳକଣ୍ଠ ଦାସ ଉଭୟଙ୍କ ନାମ ସଭାପତି ପଦ ପାଇଁ ପ୍ରସ୍ତାବିତ ହୋଇଥିଲା। କେହି ଜଣେ ନିଜର ନାମ ପ୍ରତ୍ୟାଖ୍ୟାନ କରିନେବାକୁ ମତାମତ ପ୍ରକାଶ କଲାଭଳି କୌଣସି ସୂଚନା ମିଳିଲା ନାହିଁ। ଏହି କାରଣରୁ ଦୁଇଟି ଦଳ ସୃଷ୍ଟି ହେବାର ଅୟମାରମ୍ଭ ହେଲା। ତଥାପି ଉଭୟେ ଅଟଳ ରହିଲେ। ଦଳଗତ ଲୋକଙ୍କ ପ୍ରଭାବକୁ ଏଡ଼ି ଦେଇ ନିଜର ବ୍ୟକ୍ତିଗତ ମତାମତ ପ୍ରକାଶ କରିବାକୁ ସମ୍ଭବତଃ କାହାରି ସାହସ ନ ଥିଲା ବୋଲି କହିବାକୁ ହେବ। ଶେଷରେ ଭଙ୍ଗାଘରେ କାଦୁଅ ଲେସି ଘରର ସୌନ୍ଦର୍ଯ୍ୟ ପରିବର୍ଦ୍ଧିତ କଲାଭଳି ଗୋଟାଏ ସମାଧାନ କରାଯାଇଥିଲା। ଆଚାର୍ଯ୍ୟ ହରିହର ଦାସ ସଭାପତି ଓ ଗୋପବାବୁ ଓ ନୀଳକଣ୍ଠବାବୁ ଯୁଗ୍ମ ସମ୍ପାଦକ ରୂପେ ବଛାଯାଇ ନିର୍ବାଚନ ପ୍ରହସନ ଶେଷ କରାଗଲା।

ଲବଣ ସତ୍ୟାଗ୍ରହ ଓଡ଼ିଶାରେ ଏକ ନୂତନ ଜୀବନ ସୃଷ୍ଟି କରିଛି। କଂଗ୍ରେସ ତଥା ଦେଶ ପାଇଁ କାର୍ଯ୍ୟ କରିବାକୁ ଜନ ସାଧାରଣଙ୍କଠାରେ ଆଗ୍ରହ ପ୍ରକାଶ ପାଇଛି। ଏହିପରି ଦେଶାତ୍ମବୋଧପୂର୍ଣ୍ଣ ନୂତନ ଜାଗରଣକୁ ଦୃଢ଼ କରିବା ଦରକାର। କଂଗ୍ରେସର ବାର୍ଷିକ ଅଧିବେଶନ ଉତ୍କଳରେ ବସାଇ ପାରିଲେ ଉତ୍କଳର ଜାଗ୍ରତ ଜୀବନ ପରିପୁଷ୍ଟ ହୋଇ ପାରିବ। କଂଗ୍ରେସର ଅଧିବେଶନ ବସାଇବାକୁ କଂଗ୍ରେସକୁ ନିମନ୍ତ୍ରଣ ଦେବା ପାଇଁ ଆମ୍ଭେମାନେ ପୂର୍ବରୁ ବହୁବାର ପ୍ରବଳ ଇଚ୍ଛା ପ୍ରକାଶ କରି ମଧ୍ୟ ତାହା କାର୍ଯ୍ୟରେ ପରିଣତ କରିବାକୁ ସାହସ କରି ପାରିନାହୁଁ। ବର୍ତ୍ତମାନ ପୂର୍ବର ଅବସ୍ଥା ବଦଳିଛି। ଲୋକଙ୍କର ଆଖି ଫିଟିଛି। କଂଗ୍ରେସ ଆଡ଼କୁ ଜନସାଧାରଣ ଆକୃଷ୍ଟ ହୋଇଛନ୍ତି। କଂଗ୍ରେସର ବାର୍ଷିକ ଅଧିବେଶନ ବସାଇବାପାଇଁ ବିରାଟ ଦାୟିତ୍ୱ

ବନ୍ଧନ କରିବାର ପ୍ରଶ୍ନ ଭାବିଲା ବେଳକୁ ମନ ଦବିଯାଉ ନାହିଁ. ବରଂ ମନ ଓ ହୃଦୟରେ ଅସୀମ ବଳ ସଂଚାରିତ ହେଉଛି। ଓଡ଼ିଶାର ସବୁ ଜିଲାରୁ ବହୁତ କଂଗ୍ରେସ କର୍ମୀ କଟକରେ ଏକତ୍ରିତ ହୋଇଛନ୍ତି। ସମସ୍ତ କଂଗ୍ରେସ କର୍ମୀମାନଙ୍କ ବୈଠକ ବସିଲା। ଉତ୍କଳରେ କଂଗ୍ରେସର ସାଧାରଣ ଅଧିବେଶନ ବସାଇବା ପାଇଁ ନିମନ୍ତ୍ରଣ ଦେବା ପ୍ରଶ୍ନର ବିଚାର ଆଲୋଚନା କରାଗଲା। ସମସ୍ତେ ଅତି ଆନନ୍ଦ ସହକାରେ ଏହି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ଏବଂ ଶେଷରେ ସର୍ବସମ୍ମତିକ୍ରମେ କଂଗ୍ରେସକୁ ନିମନ୍ତ୍ରଣ ଦବାର ପ୍ରସ୍ତାବ ଗୃହୀତ ହୋଇଥିଲା। ଏହି ପ୍ରସ୍ତାବର ମହତ୍ତ୍ୱ ସାଧାରଣ ହୃଦୟଙ୍ଗମ କରିବା କଠିନ। କଂଗ୍ରେସକୁ ଜୀବିତ ରଖିବା ଦିନେ ଓଡ଼ିଶାରେ କଠିନ ସମସ୍ୟା ରୂପେ ଦେଖା ଦେଇଥିଲା। ଉତ୍କଳଭୂମିରେ କଂଗ୍ରେସର ମୂଳଭିତ୍ତି ସ୍ଥାପନ କରି ତାହାକୁ ବଞ୍ଚାଇ ରଖିବାକୁ ଯେଉଁ କେତେଜଣ ଆଜି ପର୍ଯ୍ୟନ୍ତ କାର୍ଯ୍ୟ କରି ଆସିଛନ୍ତି ସେମାନଙ୍କ ଦୃଷ୍ଟିରେ ଏହାର ମହତ୍ତ୍ୱ ଅକଳନୀୟ।

## କରାଚୀ କଂଗ୍ରେସ

କରାଚୀ କଂଗ୍ରେସରେ ଯୋଗ ଦେବା ପାଇଁ ଆମ୍ଭେମାନେ ଯାତ୍ରା କଲୁ। କଲିକତା, ଦିଲ୍ଲୀ ଓ ଲାହୋର ହୋଇ ଆମ୍ଭମାନଙ୍କୁ କରାଚୀ ଯିବାକୁ ହେଲା। ବାଟରେ କେବଳ କରାଚୀ କଂଗ୍ରେସର ଚିନ୍ତା ଏବଂ ଗାନ୍ଧୀ ଇରଉଇନ୍ ଚୁକ୍ତି ବିଷୟରେ ଆଲୋଚନା। ଭାରତରେ ବିଭିନ୍ନ ରାଜନୈତିକ ମତବାଦର ଲୋକେ ସର୍ବାନ୍ତଃ କରଣରେ ଏହି ଚୁକ୍ତିକୁ ଗ୍ରହଣ କରିପାରି ନାହାନ୍ତି। ଗାନ୍ଧୀ ଇରଉଇନ୍ ଚୁକ୍ତି ବିରୁଦ୍ଧରେ ଉଗ୍ରମତବାଦୀ ବିଶେଷତଃ ଯୁବ ସଂପ୍ରଦାୟ ବିକ୍ଷୋଭ ପ୍ରଦର୍ଶନ କରୁଛନ୍ତି। କରାଚୀ କଂଗ୍ରେସରେ ଏହି ଚୁକ୍ତିକୁ ସମର୍ଥନ କରାଇ ନ ଦେବା ସେମାନଙ୍କର ବର୍ତ୍ତମାନ ଏକମାତ୍ର ଲକ୍ଷ୍ୟ। ଏପରି ଲକ୍ଷ୍ୟ ରଖି ବିକ୍ଷୋଭ ପ୍ରଦର୍ଶନ କରିବାଦ୍ୱାରା ମହାତ୍ମାଗାନ୍ଧୀଙ୍କର ନେତୃତ୍ୱକୁ ମଧ ସେମାନେ ଅସ୍ୱୀକାର କରୁଥିବା ଜଣାପଡ଼ୁଛି। ଭାରତର ପୂର୍ଣ୍ଣ ସ୍ୱାଧୀନତା ଲାଭ ପାଇଁ ଲବଣ ସତ୍ୟାଗ୍ରହ ସଂଗ୍ରାମ ଘୋଷଣା କରାଯାଇଥିଲା। ଭାରତର ଏହି ଦାବୀକୁ ଇଂରେଜ ସରକାର ସ୍ୱୀକାର କରିନାହାନ୍ତି। ଭାରତର ସ୍ୱାଧୀନତା ଘୋଷଣା କରା ନ ଯାଇ ମହାତ୍ମାଗାନ୍ଧୀ ଇଂରେଜ ସରକାର ସହିତ କେତେକ ସର୍ତ୍ତରେ ଗୋଟାଏ ଚୁକ୍ତିନାମାରେ ଦେଶକୁ ଆବଦ୍ଧ କରି ଦେଇଛନ୍ତି? ସୁତରାଂ ଏହି ଚୁକ୍ତିକୁ କଂଗ୍ରେସ ଗ୍ରହଣ ନ କରୁ। ଏହାହିଁ ହେଲା ବିକ୍ଷୋଭର ମୂଳ କାରଣ। କିନ୍ତୁ ସତ୍ୟାଗ୍ରହ ସଂଗ୍ରାମ ଅହିଂସ ସଂଗ୍ରାମ। ଏହା ହିଂସାପୂର୍ଣ୍ଣ ରକ୍ତାକ୍ତ ସମର ନୁହେଁ। ଏଥିରେ ଜୟ ପରାଜୟର ପ୍ରଶ୍ନ ନାହିଁ। ଅହିଂସାରେ ଶତ୍ରୁତାର ଭାବନା ନାହିଁ। ମହାତ୍ମାଗାନ୍ଧୀଙ୍କ ବିଚାରରେ ଇଂରେଜ ସରକାରଙ୍କ ଶାସନକୁ ନୀରବରେ ମାନି ଚଳିବା ଯେପରି ଭାରତବାସୀ ପକ୍ଷରେ ଏକ ମହାପାପ, ଇଂରେଜମାନେ ଭାରତକୁ ଶାସନ କରିବାକୁ

ଆସିବା ସେପରି ସେମାନଙ୍କ ପକ୍ଷରେ ଘୋର ଅନ୍ୟାୟ ଓ ପାପ। ଏହି ପାପକୁ ପ୍ରକ୍ଷାଳନ କରିବାକୁ ହେଲେ ଭାରତବାସୀ ଶକ୍ତିଲାଭ କରିବା ଦରକାର। ଭାରତର ଜନସାଧାରଣଙ୍କ ମନରେ ଦୃଢ଼ ଆତ୍ମବିଶ୍ୱାସ ଓ ହୃଦୟରେ କର୍ମପ୍ରେରଣା ଭାବ ଜାଗ୍ରତ କରାଇବା ସତ୍ୟାଗ୍ରହର ଚରମ ଲକ୍ଷ୍ୟ।

ଇଂରେଜମାନଙ୍କୁ ଶତ୍ରୁ ଭାବି ସତ୍ୟାଗ୍ରହ ସଂଗ୍ରାମର କଳ୍ପନା କରାଯାଇ ନାହିଁ। ସତ୍ୟାଗ୍ରହର ମୂଳମନ୍ତ୍ର ଅନ୍ୟାୟ ବିରୁଦ୍ଧରେ ବିଦ୍ରୋହ। ଇଂରେଜମାନେ ଏ ଦେଶକୁ ଶାସନ କରିବା ଯେପରି ଅନ୍ୟାୟ ସେମାନଙ୍କ ଶାସନକୁ ମାନିନେବା ମଧ୍ୟ ସେପରି ଅନ୍ୟାୟ। ଏହି ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ ହେଉଛି ଏକ ଧର୍ମସଂଗ୍ରାମ। ଧର୍ମ ପାଳିବାକୁ ଗଲେ ଅଧର୍ମ ଓ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବାକୁ ପଡ଼ିବ। ହିଂସା ପ୍ରଣୋଦିତ ଲଢ଼ାଇ ଦ୍ୱାରା ଧର୍ମପାଳନ କରାଯାଇ ନ ପାରେ। ସତ୍ୟ ଓ ନ୍ୟାୟ ପ୍ରତି ହୃଦୟରେ ବିଚାରଶକ୍ତି ଜାଗ୍ରତ କରାଇବା ଧର୍ମପାଳନର କଷଟିପଥର। ଇଂରେଜ ଶାସନ ଦ୍ୱାରା ସର୍ବସ୍ୱାନ୍ତ ହୋଇ ଭାରତବାସୀ ଯେ ପ୍ରକାର ଅଶେଷ ଦୁଃଖଯନ୍ତ୍ରଣା ଭୋଗ କରୁଛନ୍ତି, ଇଂରେଜ ଜାତି ପରି ସଭ୍ୟ ଜାତି ପକ୍ଷରେ ତାହା କଦାପି ଗୌରବଜନକ ନୁହେଁ। ଏହି ସତ୍ୟକୁ ଇଂଲଣ୍ଡର ଅଧିବାସୀ ଉପଲବ୍ଧି କରନ୍ତୁ। ଯେଉଁଦିନ ସେମାନଙ୍କର ହୃଦୟରେ ଏପରି ଅନୁଭୂତି ଜାଗି ଉଠିବ, ଭାରତ ଶାସନ ସେମାନଙ୍କ ପକ୍ଷରେ ଆଉ ପ୍ରୀତିକର ବୋଧ ହେବ ନାହିଁ। ସୁତରାଂ ଭାରତବାସୀର ଅହିଂସ ବିଦ୍ରୋହ ବଳପୂର୍ବକ ରାଜ୍ୟ ଅଧିକାର କରବା ପାଇଁ ବିଦ୍ରୋହ ନୁହେଁ। ଏହି ବଦ୍ରୋହରେ ଯେଉଁ କର୍ମପନ୍ଥା ଉଦ୍ଭାବନ କରାଯାଇଅଛି ତାହାର ଲକ୍ଷ୍ୟ ସ୍ୱତନ୍ତ୍ର। This rebellion is not a programme of transformation of relationship ending in peaceful transfer of power."

ରକ୍ତାକ୍ତ ଲଢ଼ାଇରେ ବିଜୟଲାଭ କଲେ ବଳପୂର୍ବକ ରାଜ୍ୟ ଦଖଲ କରାଯାଏ। ସୁତରାଂ ରାଜ୍ୟ ଦଖଲର ପ୍ରଶ୍ନ ଏ ବିଦ୍ରୋହରେ ନାହିଁ। ଭାରତ ଓ ଇଂଲଣ୍ଡ ଉଭୟ ଦେଶର ଅଧିବାସୀଙ୍କ ମଧ୍ୟରେ ଯେ ପ୍ରକାରର ସଂବନ୍ଧ ଗଢ଼ିହୋଇ ଉଠିଛି ତାହାରି ପରିବର୍ତ୍ତନ ପାଇଁ କାର୍ଯ୍ୟ ପଦ୍ଧତି ଅବଲମ୍ବନ କରାଯାଇଛି। ଏହି ସଂବନ୍ଧରେ ପରିବର୍ତ୍ତନ ଘଟାଇ ପାରିଲେ ଇଂରେଜୀମାନେ ସ୍ୱତଃପ୍ରବୃତ୍ତ ହୋଇ ରାଜ୍ୟ ଶାସନ ଛାଡ଼ିଦେବେ ଏବଂ ଭାରତର ଶତ୍ରୁ ନ ହୋଇ ମିତ୍ର ଭାବରେ ରହିବେ। ପାଚିଲା ଫଳ ଗଛରୁ ଖସି ପଡ଼ିଲା ପରି ଭାରତର ଶାସନ ଭାରତବାସୀଙ୍କ ହାତକୁ ଖସି ପଡ଼ିବ। ଗାନ୍ଧୀଜୀ ଏହିପରି ସ୍ୱପ୍ନ ଦେଖିଛନ୍ତି ଏବଂ ତଦନୁସାରେ କର୍ମପନ୍ଥା ନିରୂପଣ କରିଛନ୍ତି। ସୁତରାଂ ଇଂରେଜ ସରକାରଙ୍କ ସହିତ ସେ ଚୁକ୍ତି କରିବାକୁ ଦ୍ୱିଧା ବୋଧ କରିନାହାନ୍ତି। ସୁତରାଂ ମହାତ୍ମାଗାନ୍ଧୀ, ବଡ଼ଲାଟ ଲର୍ଡ଼ ଇରଉଇନ୍‌ଙ୍କ ସହିତ ଯେଉଁ ଚୁକ୍ତିପତ୍ର ସ୍ୱାକ୍ଷର କଲେ ତଦ୍ଦ୍ୱାରା ସତ୍ୟାଗ୍ରହ ସଂଗ୍ରାମ ନ୍ୟାୟୋଚିତ ବୋଲି ସ୍ୱୀକୃତି ହୋଇଛି। ନ୍ୟାୟ ଓ

ସତ୍ୟ ନ ଥାଇ କୌଣସି କଥା କେହି ଶୁଣନ୍ତି ନାହିଁ। ଇଂରେଜ ସରକାରଙ୍କ ମୁଖ୍ୟକର୍ତ୍ତା ହିସାବରେ ବଡ଼ଲାଟ ସାହେବ, କଂଗ୍ରେସର ମୁଖ୍ୟ ପ୍ରତିନିଧି ମହାତ୍ମାଗାନ୍ଧୀଙ୍କ ସହିତ ବିଚାର ଆଲୋଚନା କରି ଚୁକ୍ତି ପତ୍ରରେ ସ୍ୱାକ୍ଷର କରିବା ଅର୍ଥ ଭାରତର ସ୍ୱାଧୀନତା ଦାବୀକୁ ସ୍ୱୀକାର କରିବା ସଙ୍ଗେ ସମାନ। ପୁଣି ଅନ୍ୟାୟ, ବେଆଇନ୍ ଏବଂ ଦେଶର ଅନିଷ୍ଟକର କାର୍ଯ୍ୟସବୁ କରୁଥିବା ମନେକରି ଇଂରେଜ ସରକାର ଯେଉଁମାନଙ୍କୁ କାରାବନ୍ଦୀ କରିଥିଲେ ସେମାନଙ୍କୁ ମୁକ୍ତିଦେବା ଅର୍ଥ ନିଜର ଅନ୍ୟାୟକୁ ପ୍ରକାରାନ୍ତରେ ସ୍ୱୀକାର କରିବା। ପୁଣି ଲୁଣ ମାରି ବ୍ୟବହାର କରିବାର ଅଧିକାର ଭାରତବାସୀର ନ ଥିଲା।

ଏହି ଚୁକ୍ତି ବଳରେ ଭାରତବାସୀ ସେହି ଅଧିକାର ଫେରି ପାଇଲା। ସାଧାରଣ ଜନସାଧାରଣଙ୍କ ଦୃଷ୍ଟିରେ ଏହା ଗୋଟିଏ ବଡ଼ ବିଜୟ। କଂଗ୍ରେସ ଲବଣ-ସତ୍ୟାଗ୍ରହ ଲଢ଼େଇ କରି ଇଂରେଜ ସରକାରକୁ ହଟେଇ ଦେଲା ବୋଲି ଲୋକେ ଭାବିଲେ। ସତ୍ୟାଗ୍ରହ ବଳରେ ଏ ଦେଶରୁ ଇଂରେଜସରକାରକୁ ହଟେଇ ଦେଇ ପାରିବା ବୋଲି ସାଧାରଣ ଲୋକଙ୍କର ବିଶ୍ୱାସ ଜନ୍ମିଲା। ସରକାର ପ୍ରତି ଲୋକଙ୍କ ହୃଦୟରୁ ଭୟ ଭାଙ୍ଗିଗଲା। ଲୋକଙ୍କର ତେଜ ଓ ସାହସ ବଢ଼ିଲା। ପରାଧୀନ ଦେଶ ପକ୍ଷରେ ଏହାଠାରୁ ବଡ଼ ବିଜୟ ଆଉ କଣ ହୋଇପାରେ? ଅହିଂସା ଲଢ଼ାଇ ଦ୍ୱାରା ବଳପୂର୍ବକ ସମସ୍ତ ଅଧିକାର ଦଖଲ କରିବାର ପ୍ରଶ୍ନ ନାହିଁ। ନୈତିକ ବିଜୟ ହେଉଛି ବଡ଼ ବିଜୟ। ଭାରତର ନୈତିକ ବିଜୟ ହୋଇଛି। ଭାରତବାସୀ ଆତ୍ମବିଶ୍ୱାସ ଲାଭ କରିଛି। ସରକାର କର୍ମଚାରୀଙ୍କ ତେଜ ଓ ପ୍ରଭାବ ହ୍ରାସ ପାଇଛି। ଏହାହିଁ କଂଗ୍ରେସର ବିଜୟ।

ଭାରତ ଶାସନର ମେରୁଦଣ୍ଡ ଗୋରା ସିଭିଲିୟାନ୍। ବଡ଼ଲାଟ ଲର୍ଡ଼ ଇରଉଇନ୍ ମହାତ୍ମାଗାନ୍ଧୀଙ୍କ ସହିତ ଯେଉଁ ଚୁକ୍ତି କଲେ ସେଥିରେ ସେମାନେ ମନେକଲେ ଯେ ସେମାନଙ୍କ ମେରୁଦଣ୍ଡ ଭାଙ୍ଗି ପଡ଼ିଲା। ସେମାନଙ୍କ କ୍ଷମତା ଓ ପ୍ରତିପତ୍ତି ତଦ୍ୱାରା କ୍ଷୁର୍ଣ୍ଣ ହେଲା। ସୁତରାଂ ଏହି ଚୁକ୍ତିକୁ କାର୍ଯ୍ୟରେ କରାଇ ନ ଦେବା ପାଇଁ ସେମାନେ ନାନାପ୍ରକାର ଖେଳ ଖେଳିଲେ। ମହାତ୍ମାଗାନ୍ଧୀ ଓ କଂଗ୍ରେସର ପ୍ରଭାବ ଓ ପ୍ରତିପତ୍ତି କ୍ଷୁର୍ଣ୍ଣ କରବା ପାଇଁ ସେମାନେ କୌଶଳ କଲେ। ୧୯୨୮ ମସିହାରେ ବ୍ରିଟିଶ ସରକାର ଗୋଟିଏ କମିଶନ ଭାରତକୁ ପଠାଇଲେ। ତାହାର ନାମ ସାଇମନ କମିଶନ। ଭାରତବାସୀ ଦେଶ ଶାସନ କରିବାର ଅଧିକାର ପାଇବାକୁ କେତେ ଯୋଗ୍ୟ ଏହି କଥା ତଦନ୍ତ କରି ରିପୋର୍ଟ କରିବା ଉକ୍ତ କମିଶନର ଥିଲା କାମ। ଆମ ଦେଶ ଆମେ ଶାସନ କରିବା ପାଇଁ ଆମ୍ଭର ଯୋଗ୍ୟତା ବିଷୟ ବିଚାର କରିବାକୁ ବିଦେଶୀ ଲୋକଙ୍କର ଅଧିକାର ନାହିଁ। ସୁତରାଂ ତାହାର ବିରୋଧ କରାଗଲା। ସାଇମନ କମିଶନ ଦେଶରେ ଯେଉଁଠାକୁ ଗଲେ ତାଙ୍କ ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା। ଏହି କମିଶନ ଲାହୋର ଗଲାଦିନ ସେଠାରେ ବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା ପଞ୍ଜାବ କେଶରୀ ଲାଲା ଲଜପତ୍ ରାଏ ଏହି ବିକ୍ଷୋଭର ଅଗ୍ରଣୀ ଥିଲେ। ବିକ୍ଷୋଭକାରୀଙ୍କୁ

ଘଉଡ଼ାଇବା ପାଇଁ ଲାଠି ଚାଲିଲା। ଜଣେ ଗୋରା ସର୍ଜେଣ୍ଟର ଲାଠିମାଡ଼ରେ ଲାଲାଜୀ ଆହତ ହୋଇଥିଲେ ଏବଂ ସେହି ଲାଠିର ଆଘାତରେ ସେ ପୀଡ଼ିତ ହୋଇ ମୃତ୍ୟୁ ମୁଖରେ ପତିତ ହେଲେ। ଲାଲାଜୀଙ୍କର ଏପରି ଆକସ୍ମିକ ମୃତ୍ୟୁରେ ସମଗ୍ର ଭାରତରେ ବିଷାଦଛାୟା ଘୋଟିଗଲା। ଯୁବ-ସଂପ୍ରଦାୟ ଏହାକୁ ବରଦାସ୍ତ କରି ପାରିଲେ ନାହିଁ। ଏଥି ପୂର୍ବରୁ ଭଗତ ସିଂହ ନାମକ ଜଣେ ଉଦୀୟମାନ ଯୁବକ ଦିଲ୍ଲୀର ବଡ଼ଲାଟଙ୍କ ସଭା ବସିଥିବା ସମୟରେ ସଭାଗୃହରେ ଗୋଟିଏ ବୋମା ନିକ୍ଷେପ କରିଥିଲେ। କାହାରିକୁ ହତ୍ୟା କରିବା ତାଙ୍କର ଉଦ୍ଦେଶ୍ୟ ନ ଥିଲା। ବିଦେଶୀ ଶାସନ ବିରୁଦ୍ଧରେ ଭାରତର ବିଦ୍ରୋହ ଭାବର ପ୍ରମାଣ ଦେବାକୁ ସେ ବୋମା ନିକ୍ଷେପ କରିଥିଲେ। ସେ ଧରାହୋଇ ଜେଲରେ ଥିଲେ। ତାହାଙ୍କର ସହପାଠୀ କେତେଜଣ ଲାହୋର ସହରରେ ଲାଲାଜୀଙ୍କ ମୃତ୍ୟୁର ପ୍ରତିଶୋଧ ନେବାପାଇଁ ଜଣେ ଜଣେ ଗୋରା କର୍ମଚାରୀଙ୍କୁ ହତ୍ୟା କରିଥିଲେ। ସେମାନଙ୍କ ବିରୁଦ୍ଧରେ ରାଜନୈତିକ ଷଡଯନ୍ତ୍ରର ମାମଲା ହେଲା। ଭଗତ ସିଂହ, ତାଙ୍କର ସାଥୀ ଶୁକଦେବ ଓ ରାଜଗୁରୁ ତିନିଜଣ ଫାଶୀ ଦଣ୍ଡ ପାଇଲେ। ଗାନ୍ଧୀ-ଇରଉଇନ୍ ଚୁକ୍ତି ପରେ ସେମାନଙ୍କୁ ଫାଶୀକାଠରୁ ତ୍ରାହି କରିବା ଦେଶରେ ହେଲା ଗୋଟିଏ ମୁଖ୍ୟ ପ୍ରଶ୍ନ। ଚୁକ୍ତି ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ କରୁଥିବା ଲୋକେ ଏହି ପ୍ରଶ୍ନକୁ ଗୋଟିଏ ପ୍ରଧାନ ପ୍ରଶ୍ନ କରି ଧଇଲେ। ଏମାନେ ସମସ୍ତେ ଯାଇ କରାଚୀ କଂଗ୍ରେସରେ ଯୋଗ ଦେଇଚନ୍ତି। ଶ୍ରୀ ସୁବାସଚନ୍ଦ୍ର ବୋଷ ଏହି ବିଦ୍ରୋହୀଦଳରେ ଅଗ୍ରଣୀ। କରାଚୀ କଂଗ୍ରେସର ବୈଠକ ବସିବା ପୂର୍ବରୁ ଭଗତ ସିଂହ ପ୍ରଭୃତିଙ୍କ ଫାଶୀ ହୁକୁମ ରଦ୍ଦ ପାଇବାର ଆଦେଶ ଘୋଷଣା ପ୍ରକାଶ ପାଇବା ଦରକାର। ତାହା ନ ହେଲେ ଗାନ୍ଧୀ-ଇରଉଇନ୍ ଚୁକ୍ତିର କୌଣସି ମୂଲ୍ୟ ରହିବ ନାହିଁ। ସୁତରାଂ କରାଚୀ କଂଗ୍ରେସ କଥା ଭାବିଲା ବେଳେ ମନ ଉଦ୍‌ବିଗ୍ନ ହୋଇ ଉଠୁଛି। କଂଗ୍ରେସ ଯଦି ଗାନ୍ଧୀ-ଇରଉଇନ୍ ଚୁକ୍ତିକୁ ଗ୍ରହଣ ନ କରେ ତେବେ ଦେଶର ଅବସ୍ଥା କି ଆକାର ଧାରଣ କରିବ ତାହା କଳ୍ପନା କରି ହେଉ ନାହିଁ। ତାହା ଯଦି ହୁଏ, ତଦ୍ୱାରା ମହାତ୍ମାଗାନ୍ଧୀଙ୍କ ପ୍ରଭାବ ହ୍ରାସ ପାଇଲା ଭଳି ଜଗତ ଜାଣିବ। କଂଗ୍ରେସର ବଳ ଭାଙ୍ଗିଯିବ। ଦେଶରେ ଏକ ଅନିଶ୍ଚିତ ପରିସ୍ଥିତି ସୃଷ୍ଟି ହୋଇଯିବ। ଗୋରା ସିଭିଲିୟାନ ଶାସକଗୋଷ୍ଠୀ ଏହାହିଁ ଇଚ୍ଛା କରନ୍ତି।

ଭଗତ୍ ସିଂହ ପ୍ରଭୃତିଙ୍କୁ ଫାଶୀକାଠରୁ ମୁକ୍ତିଦେବା ପାଇଁ ମହାତ୍ମାଗାନ୍ଧୀ ବଡ଼ଲାଟ ଲର୍ଡ୍ ଇରଉଇନ୍ ସାହେବଙ୍କୁ ଅନୁନୟ ବିନୟ ସହକାରେ ପତ୍ର ଲେଖିଛନ୍ତି। ସମଗ୍ର ଦେଶରୁ ବଡ଼ଲାଟଙ୍କ ନିକଟ ଆବେଦନପତ୍ର ଗଲା। ବଡ଼ଲାଟଙ୍କ କାଉନ୍‌ସିଲର ଗୋରାସଭ୍ୟମାନେ କିଛି ଶୁଣିଲେ ନାହିଁ। କଂଗ୍ରେସ ଅଧିବେଶନ ବସିବା ପୂର୍ବରୁ ସେମାନେଙ୍କୁ ଫାଶୀକାଠରେ ଝୁଲାଇ ଦିଆଗଲା। ସେମାନଙ୍କ ମୃତଶରୀରକୁ ମଧ କେହି ଦେଖିବାକୁ ପାଇ ନାହାନ୍ତି। ଶବସତ୍କାର କରିବାର ସୁଯୋଗ ମଧ ସେମାନଙ୍କ

ଭାଇ ବିରାଦର ପାଇ ପାରିଲେ ନାହିଁ। ଏହାଦ୍ୱାରା ଭାରତର ଜନମତ ଅତିଶୟ ତିକ୍ତ ହୋଇ ଉଠିଲା। ଗାନ୍ଧୀ-ଇରଉଇନ୍ ଚୁକ୍ତିକୁ ରଦ୍ଦ କରଦେବା ପାଇଁ ଜନମତ ଏହାଦ୍ୱାରା ପ୍ରଭାବିତ ହୋଇଥିବ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି କାରଣ ନାହିଁ। ଚୁକ୍ତି ବିରୁଦ୍ଧରେ ମତାମତ ପ୍ରକାଶ କରୁଥିବା ବହୁଲୋକ କରାଚୀ କଂଗ୍ରେସରେ ଠୁଳ ହୋଇଛନ୍ତି। କଂଗ୍ରେସର ପ୍ରତିନିଧିମାନଙ୍କୁ ପ୍ରଭାବିତ କରିବା ପାଇଁ ସେମାନଙ୍କୁ ଏକ ଅକାଟ୍ୟ ଯୁକ୍ତି ମିଳିଗଲା। କଂଗ୍ରେସ ନଗର ଭିତରେ ସଭା ଓ ଶୋଭାଯାତ୍ରାର ବିରାମ ନାହିଁ। ଗାନ୍ଧୀଜୀ ଓ ଗାନ୍ଧୀ-ଇରଉଇନ୍ ଚୁକ୍ତି ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ କରାଯାଉଛି। ବିରୁଦ୍ଧାତ୍ମକ ଚିତ୍କାର ଓ ଦୁଆଧରି ଡାକଦେବାର ନିନାଦରେ କଂଗ୍ରେସ ନଗର ଥରି ଉଠୁଛି। ଏ ସବୁ ଦୃଶ୍ୟ ଦେଖି ଏବଂ ଚିତ୍କାର ଶୁଣି ମନ ଥୟ ଧରୁ ନଥାଏ। କିନ୍ତୁ ଏ ସବୁ ଲକ୍ଷ୍ୟ କରି ଗାନ୍ଧୀଜୀ ଅଚଳ ଓ ଅଟଳ। ଗୀତାରେ ଅଛି, ''ନ ମେ କର୍ମାଣି ଲିପ୍ୟନ୍ତେ, ନ ମେ କର୍ମଫଳେ ସ୍ପୃହାଃ।'' ଅର୍ଥାତ୍ କୌଣସି କର୍ମ ମତେ ବନ୍ଧନରେ ପକାଏ ନାହିଁ, ତଥାମତେ ବିଚଳିତ କରେ ନାହିଁ, କିମ୍ବା କର୍ମର ଫଳାଫଳ ପ୍ରତି ମୋ ମନରେ କୌଣସି ପ୍ରକାର ଆସକ୍ତି ପ୍ରକାର ଆସକ୍ତି ନ ଥାଏ। ଗାନ୍ଧୀଜୀଙ୍କୁ ଆବଲୋକନ କଲେ ଗୀତାର ଏହି ବାକ୍ୟଟି ମୋର ମନେ ପଡୁଥାଏ।

କରାଚୀ କଂଗ୍ରେସ କାର୍ଯ୍ୟ ଆରମ୍ଭ ହେଲା। ଗାନ୍ଧୀ-ଇରଉଇନ୍ ଚୁକ୍ତି ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା ବୋଲି କୁହାଯାଇ ପାରେ। ମହାତ୍ମାଗାନ୍ଧୀଙ୍କର ବ୍ୟକ୍ତିତ୍ୱ ଏବଂ ତାହାଙ୍କର କଣ୍ଠ ନିସୃତ ବାଣୀ ସକଳ ଉଗ୍ରବିରୋଧଭାବର ଅବସାନ ଘଟାଇଥିଲା। କଂଗ୍ରେସକୁ ଦୁର୍ବଳ କରି ଗାନ୍ଧୀଜୀଙ୍କର ପ୍ରଭାବକୁ ଖର୍ବ କରିବାପାଇଁ ଯେଉଁ ବ୍ୟୁହ ରଚନା କରାଗଲା ତାହା ଝଡ଼ ତୋଫାନ ସୃଷ୍ଟିକଲା ସତ୍ୟ କିନ୍ତୁ ଅଦିନିଆ ମେଘପରି କୁଆଡ଼େ ଉଭେଇଗଲା। ଆକାଶ ନିର୍ମଳ ହେଇଗଲେ ସୂର୍ଯ୍ୟ କରିରଣର ତେଜ ବୃଦ୍ଧି ପାଇଲା ପରି କଂଗ୍ରେସର ଶକ୍ତି ଓ ମହାତ୍ମାଗାନ୍ଧୀଙ୍କର ବିରାଟ ବ୍ୟକ୍ତିତ୍ୱ ସେପରି ଅଧିକ ତେଜରେ ଜଗତର ଜନମନକୁ ପ୍ରଭାବିତ କରିଥିଲା।

## ଆଶ୍ରମପାଇଁ ଚାନ୍ଦା ସଂଗ୍ରହ

କରାଚୀରେ କଂଗ୍ରେସର ଅଧିବେଶନ ଶେଷ ହେଲା। ଜଗନ୍ନାଥଧାମ ପୁରୀ କ୍ଷେତ୍ରରେ ଆଗାମୀ କଂଗ୍ରେସର ଅଧିବେଶନ ବସାଇବାକୁ ଉତ୍କଳ ପ୍ରାଦେଶିକ କମିଟି ନିମନ୍ତ୍ରଣ ଦେଲେ। ନିମନ୍ତ୍ରଣ କରିବାପାଇଁ ଗୋପବାବୁଙ୍କୁ ବାଛିବାରେ ଅନେକଙ୍କର ମନ ନ ଥିଲା। ପଣ୍ଡିତ ନୀଳକଣ୍ଠ ଦାସ ଜଣେ ପ୍ରବୀଣ ଓ ପୁରାତନ କର୍ମୀ ଏବଂ ପଣ୍ଡିତ ବ୍ୟକ୍ତି। କଂଗ୍ରେସକୁ ନିମନ୍ତ୍ରଣ କରିବାକୁ ତାଙ୍କୁ ବଛା ନ ଯିବାରୁ ସେ ବଡ଼ କ୍ଷୁବ୍ଧ ହୋଇ ଓଡ଼ିଶାକୁ ଫେରିଲେ ବୋଲି ମୋର ମନେ ହୁଏ। ଏପରି ସାମାନ୍ୟ ସାମାନ୍ୟ କଥାରେ ଟଣାଓଟରା ଓ ମତାନ୍ତର ଦେଖି ବେଳେ ବେଳେ

ମୁଁ ବଡ଼ ଅସ୍ଥିରତା ବୋଧ କରିଛି। କେହି କାହାରିକୁ ଦେଖି ନ ପାରିବା ଓଡ଼ିଶାର ଜାତୀୟ ଜୀବନରେ ଗୋଟାଏ ବ୍ୟାଧି। ଆଗରୁ ଯେଉଁମାନେ ତ୍ୟାଗ ସ୍ୱୀକାର କରି ଦେଶସେବା କରିଛନ୍ତି ସେଥିପାଇଁ ସେମାନଙ୍କୁ ଯଥାସମୟରେ ଉପଯୁକ୍ତ କାମ କରିବାର ସୁବିଧାରୁ ବଞ୍ଚିତ କରାଗଲେ, ଦେଶରେ ଜାତୀୟ ଜୀବନର ବିକାଶ ବାଧାପ୍ରାପ୍ତ ହେବ। ଏହା ସମସ୍ତଙ୍କର ହୃଦ୍‌ବୋଧ ହୋଇ ନ ପାରିବାର କାରଣ କଣ ମୁଁ ବୁଝିପାରୁ ନାହିଁ। ଏପରି ଅବସ୍ଥାରେ କାର୍ଯ୍ୟ କରିବାକୁ ମନ ଦବି ଯାଉଛି। କରାଚୀରୁ ସମସ୍ତେ ଓଡ଼ିଶାକୁ ଫେରିଲେ ଏବଂ ମୁଁ ବମ୍ବେଇ ଯାତ୍ରାକଲି। ଚମ୍ପାପୁର ଗାନ୍ଧୀ ସେବାଶ୍ରମ ପାଇଁ ଅର୍ଥସଂଗ୍ରହ କରିବା ମୋର ବମ୍ବେଇ ଯାତ୍ରାର ଉଦ୍ଦେଶ୍ୟ। ପ୍ରତିବର୍ଷ ମୁଁ ଅର୍ଥସଂଗ୍ରହ କରି କାର୍ଯ୍ୟ କରୁଛି। ବମ୍ବେଇ, ଅହମଦାବାଦ୍, ସୁରଟ୍, ଦିଲ୍ଲୀ, କଲିକତା ଓ ରେଙ୍ଗୁନ ଆଦି ସ୍ଥାନ ବୁଲି ମୁଁ ଅର୍ଥସଂଗ୍ରହ କରିଛି। ଅର୍ଥସଂଗ୍ରହ କରିବା କେତେ କଠିନ ତାହା ସହଜରେ ଅନୁମାନ କରାଯାଇ ନ ପାରେ। ନିଜର ତ୍ୟାଗ ଓ ସେବା ଉପରେ ଅପରର ବିଶ୍ୱାସ ଜନ୍ମାଇ ନପାରିଲେ କୌଣସି କାର୍ଯ୍ୟପାଇଁ ଟଙ୍କା ସଂଗ୍ରହ କରିବା କଦାପି ସମ୍ଭବପର ନୁହେଁ। ଥରେ ଦୁଇଥର ପାଇଁ ନୁହେଁ, ନିୟମିତ ଭାବରେ କେତେଜଣ ମତେ ଅର୍ଥ ସାହାଯ୍ୟ କରିଛନ୍ତି ଓ ଅନ୍ୟଠାରୁ କରାଇ ଦେଇଛନ୍ତି। ସେମାନଙ୍କ ଆଗରେ ମୁଁ ମନ ଖୋଲି ସମସ୍ତ କଥା କହେଁ। ଆଶ୍ରମ କାର୍ଯ୍ୟରେ କଣ ତ୍ରୁଟି ଘଟୁଛି, ତାହା ମଧ୍ୟ କହିଥାଏ। ଓଡ଼ିଶାରେ ଉପଯୁକ୍ତ କର୍ମୀ ଅଭାବରୁ କାର୍ଯ୍ୟ କରିବା କିପରି କଠିନ ଏହି କଥା କହି, ସେହି ଅଭାବ ପୂରଣ କରିବାକୁ ମୁଁ ଯେଉଁ କର୍ମଯୋଜନା କଳ୍ପନା କରିଥିଲି, ତାହା କେତେଜଣଙ୍କ ଆଗରେ ପ୍ରକାଶ କରିଥିଲି। ସେମାନଙ୍କ ନିକଟରୁ କଳ୍ପନାତୀତ ଆଶା ଓ ଭରସା ପାଇଲି। ଆଶ୍ରମର ସ୍ଥାୟୀ ପାଣ୍ଠିପାଇଁ ପଚାଶ ହଜାର ଟଙ୍କାର ପ୍ରତିଶ୍ରୁତି ମିଳିଲା। ଟ୍ରଷ୍ଟବୋର୍ଡ଼ ଗଠନ ନ କରି ଉକ୍ତ ପ୍ରତିଶ୍ରୁତି ଟଙ୍କା ଆଣିବାକୁ ମୁଁ ଉଚିତ ମନେ କଲି ନାହିଁ। ଟ୍ରଷ୍ଟବୋର୍ଡ଼ ବିଷୟରେ ମୋର ବିଚାର ସ୍ୱତନ୍ତ୍ର। ଆଶ୍ରମର କର୍ମୀ ନ ଥିବା ବ୍ୟକ୍ତିବିଶେଷଙ୍କୁ ଆଣି ଟ୍ରଷ୍ଟବୋର୍ଡ଼ ଗଠନ କରିବା ନୀତିକୁ ମୁଁ ଗ୍ରହଣ କରିପାରି ନାହିଁ। ତେଣୁ ଟ୍ରଷ୍ଟି ନିଯୁକ୍ତ କେହି ହୋଇନାହାନ୍ତି। ଆଶ୍ରମର କର୍ମୀମାନେ ସେମାନଙ୍କ ମଧ୍ୟରୁ ଟ୍ରଷ୍ଟବୋର୍ଡ଼ ପାଇଁ ନାମ ସୁପାରିଶ କରିବା ବିଧେୟ। କିନ୍ତୁ ସେପରି କର୍ମୀ ଏପର୍ଯ୍ୟନ୍ତ ମୁଁ କାହାକୁ ପାଇପାରି ନାହିଁ। ସୁତରାଂ ଯେ କୌଣସି ପ୍ରକାରେ ଟ୍ରଷ୍ଟବୋର୍ଡ଼ ଗଠନ କରିଦେଇ ତାକୁ ରେଜିଷ୍ଟରୀ କରାଇ ଟଙ୍କା ନେଇ ଆସିବା କଦାପି ବାଞ୍ଛନୀୟ ନୁହେଁ। ସୁତରାଂ ଟଙ୍କା ଆଣିବାର ପ୍ରଲୋଭନକୁ ଛାଡ଼ି ତୁରନ୍ତ କାର୍ଯ୍ୟ ପାଇଁ ଚାନ୍ଦା ସଂଗ୍ରହ କରିଥିଲି। କଂଗ୍ରେସକୁ ନିମନ୍ତ୍ରଣ କରିଥିବାରୁ, ଓଡ଼ିଶା ଶୀଘ୍ର ଫେରିବାକୁ ମନ ଚଞ୍ଚଳ ହେଉଥିଲା। ପନ୍ଦର କୋଡ଼ିଏ ଦିନ ଭିତରେ ଓଡ଼ିଶାକୁ ଫେରି ଆସିଲି। ଏଥର ଆଶ୍ରମ କାର୍ଯ୍ୟ ପାଇଁ ଚାରିହଜାର ଟଙ୍କା ସଂଗ୍ରହ କରିଥିଲି।

ବମ୍ବେଇରୁ ଫେରି ଆଶ୍ରମରେ ଉପସ୍ଥିତ ହେଲି। ଓଡ଼ିଶା ବାହାରେ କିଛିଦିନ ରହି ଆସିଲେ ମନ ଟିକିଏ ଉଶ୍ବାସ ଲାଗେ। ପୁଣି କିଛିଦିନ ପରେ ମନରେ କେତେ କଣ ଭାବନା ପଶି ମନଟା ଭାରାକ୍ରାନ୍ତ ହୋଇପଡ଼େ। ଏପରି ମନର ପରିବର୍ତ୍ତନ ଘଟିବାର କାରଣ କଣ ଅନେକ ସମୟରେ ମୁଁ ଚିନ୍ତାକରେ। ଓଡ଼ିଶାରେ ସ୍ନେହସୌହାର୍ଯ୍ୟ କାହାରିଠାରୁ ମିଳେ ନାହିଁ। ଦୋଷ ବାଛିବାଟାକୁ ସମସ୍ତେ ଗୋଟାଏ ବିଶେଷ ଗୁଣ ବୋଲି ମନେ କରନ୍ତି। ଚାନ୍ଦା ସଂଗ୍ରହ କରି ଓଡ଼ିଶାକୁ ଫେରିଲା ବେଳକୁ ସବୁବେଳେ ମୋ ମନଟା ଦବିଯାଏ। ମନରେ ଗୋଟିଏ ଭାବନା ଜାଗିଉଠେ, ମୁଁ କାହାପାଇଁ ଏତେ ହାଡ଼ଭଙ୍ଗା ପରିଶ୍ରମ କରୁଛି। ମୋ କାମ ଅଥବା ପରିଶ୍ରମ ଦେଖି ଆନନ୍ଦ ପ୍ରକାଶ କରିବାକୁ କେହି ନାହିଁ। ମତେ କିପରି ଗୋଟାଏ ଶୂନ୍ୟଭାବ ଜଣାପଡ଼େ। ଅନେକ ସମୟରେ ଦାସେ ଆପଣେ ମନେ ପଡ଼ନ୍ତି। ଦେଶପାଇଁ କେହି କେଉଁଠାରେ କିଛି କରୁଥିବାର ଜାଣିଲେ ତାଙ୍କ ମନରେ କେଡ଼େ ଆନନ୍ଦ। କୌଣସି କଥାରେ କେହି କର୍ମୀ ଟିକିଏ ଦବି ଯାଉଥିବାର ଜାଣିପାରିଲେ ସେ କିପରି ସାହସ ଓ ଆଶ୍ବାସନା ଦେଉଥିଲେ, ତାହାଙ୍କର ସମୟ କର୍ମୀ ଭଣା ଅଧିକେ ଏହା ଜାଣନ୍ତି। ତାଙ୍କର କରୁଣଚିତ୍ର ମୋ ଆଖିରେ ନାଚିଯାଏ। ଅଯଥା ଦୋଷାରୋପ ଓ କଟୁ ସମାଲୋଚନାରେ ତାଙ୍କର ହୃଦୟ କିପରି ବ୍ୟଥିତ ହୋଇ ଉଠୁଥିଲା ଏବଂ ସହକର୍ମୀମାନଙ୍କ ଉଦାସୀନତାରେ ସେ କିପରି ମର୍ମାହତ ହେଉଥିଲେ, ସେ ଚିତ୍ର ଭୁଲି ହେବ ନାହିଁ। ତାହାଙ୍କ ପରି ଆଡ଼ମ୍ବର ଶୂନ୍ୟ ସରଳପ୍ରାଣ ବ୍ୟକ୍ତି କେବଳ ଓଡ଼ିଶାରେ ନୁହେଁ ଭାରତରେ ମଧ୍ୟ ଦେଖିବାକୁ ବିରଳ। ବ୍ୟଥିତ ହୃଦୟରେ କାନ୍ଦି କାନ୍ଦି, ତାହାଙ୍କର ପ୍ରାଣବାୟୁ ଉଡ଼ିଯାଇଛି। ଏପରି ଅବସ୍ଥାରେ ମୋ କାର୍ଯ୍ୟ ପ୍ରତି କାହାରିଠାରୁ ଆଗ୍ରହ ଆଶା କରିବି କିପରି? ମତେ ବଡ଼ ଅନ୍ଧକାର ଦେଖାଯାଏ। ଏହି ଅନ୍ଧକାର ଭିତରେ ମୁଁ ଆଲୋକର ଅନୁସନ୍ଧାନ କରେ। ମରୁଭୂମିରେ ଗୋଟିଏ ଶ୍ୟାମଳ କ୍ଷେତ୍ର ସୃଷ୍ଟି କରୁଥିବାର କଳ୍ପନା କରି ମୋର ଆଲୋକର ଅନୁସନ୍ଧାନ କର୍ମମୟ ଜୀବନରେ ପରିଣତ ହୁଏ। ଏହିପରି ଭାବନା ମୋ ମନରେ ଆନନ୍ଦ ଦିଏ ଏବଂ ହୃଦୟରେ ବଳ ଦିଏ। ପରିଣାମରେ ମନରୁ ଅବସାଦ ଦୂର ହୋଇଯାଏ ଏବଂ ଦେଶସେବା କାର୍ଯ୍ୟରେ ନିଜକୁ ଭୁଲିଯାଏ।

ଓଡ଼ିଶାରେ କଂଗ୍ରେସର ବାର୍ଷିକ ଅଧିବେଶନ ବସିବ। ଏହା ଗୋଟିଏ ଅତ୍ୟନ୍ତ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ। ଏଥିପାଇଁ ବିରାଟ ଆୟୋଜନ କରିବାକୁ ପଡ଼ିବ। ସୁଚାରୁରୂପେ ସଂଗଠନ କରି ନ ପାରିଲେ ଓଡ଼ିଶାର ନିନ୍ଦା ହେବ। ଏହି ବିଷୟ ଭାବିଲା ବେଳକୁ ଅନ୍ୟ କୌଣସି ଚିନ୍ତା ମନକୁ ସ୍ପର୍ଶ କରିପାରୁନାହିଁ। କିନ୍ତୁ ଆଶ୍ରମ କାର୍ଯ୍ୟକୁ ନିୟନ୍ତ୍ରିତ କରିବା ନିହାତି ଦରକାର। କଂଗ୍ରେସରେ ଯୋଗ ଦେବାକୁ ବମ୍ବେଇ ଓ ଅହମଦାବାଦ୍‌ରୁ କେତେ ଲୋକ ଆସିବେ। ସେମାନଙ୍କ ମଧ୍ୟରୁ ଅନେକ ହୁଏତ ମୋର ଆଶ୍ରମ

କାର୍ଯ୍ୟ ଦେଖିବାକୁ ଆସିପାରନ୍ତି। ପୁଣି କଂଗ୍ରେସ ଅଧିବେଶନ ବେଳକୁ ଗୋଟିଏ ପ୍ରଦର୍ଶନୀ ବସିବ। ଉକ୍ତ ପ୍ରଦର୍ଶନୀରେ ଗାନ୍ଧୀସେବାଶ୍ରମର ଖଦଡ଼ କାର୍ଯ୍ୟ ପ୍ରଦର୍ଶନ କରିବାକୁ ହେବ। ମହାତ୍ମାଗାନ୍ଧୀ ସେତିକି ଦେଖି ତାଙ୍କରି ଗାନ୍ଧୀସେବାଶ୍ରମ ନାମରେ ଯେଉଁ ଅନୁଷ୍ଠାନ ଗଢ଼ୁଛନ୍ତି, ତାହାର କାର୍ଯ୍ୟ ସେ ବିଚାର କରିବେ। ଏହି ସବୁ କଥାପ୍ରତି ଦୃଷ୍ଟି ରଖି ଆଶ୍ରମକାର୍ଯ୍ୟକୁ ସଂଗଠନ କରିବା ଅତୀବ ଆବଶ୍ୟକ। ଆଉ କେହି ନାହିଁ ଯାହା ଉପରେ ଏହି ଦାୟିତ୍ୱ ଛାଡ଼ି ଦେଇ ମୁଁ ନିଶ୍ଚିତ ମନରେ ଅନ୍ୟ କାର୍ଯ୍ୟ କରିପାରିବି। ଆଗ ଆଶ୍ରମ କାର୍ଯ୍ୟର ବ୍ୟବସ୍ଥା ଦରକାର ପଡ଼ୁଛି। ଏଥିପାଇଁ କେତେଜଣ ନୂଆକର୍ମୀ ନିଯୁକ୍ତ କଲି। ଶ୍ରୀ ନିରଞ୍ଜନ ନନ୍ଦ ଓ ଶ୍ରୀ ରତ୍ନାକର ମିଶ୍ର ନାମରେ ଦୁଇଜଣ କର୍ମୀ ସୂତାକଟା ଓ ଖଦଡ଼ବୁଣା କାମ କରିବା ପାଇଁ ଆଶ୍ରମର କେନ୍ଦୁପାଟଣା କେନ୍ଦ୍ରରେ ରହିଲେ। ଶ୍ରୀ ଚିନ୍ତାମଣି ଭୂୟାଁ ନାମକ ଜଣେ କର୍ମୀ ଆଗରୁ ଥିଲେ। ତାଙ୍କ ଉପରେ କଟରପା କେନ୍ଦ୍ରର ସୂତାକଟାଇବାର ଭାର ଅର୍ପଣ କଲି। ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାନ୍ତି ନାମକ ଜଣେ ହିସାବରକ୍ଷକ ନିଯୁକ୍ତ ହେଲେ। ଶ୍ରୀ ବୃନ୍ଦାବନ ଷଡ଼ଙ୍ଗୀ ଆଶ୍ରମ ନିକଟବର୍ତ୍ତୀ ଅଞ୍ଚଳରେ ସୂତାକଟାଇବା ଓ ଖଦଡ଼ ବୁଲାଇ ବିକ୍ରି କରିବାକୁ ରହିଲେ। ଶ୍ରୀ ଭାଗବତ ପଟ୍ଟନାୟକ ନାମକ ଆଉଜଣେ ମଧ୍ୟ ନିଯୁକ୍ତ ହେଲେ। ଶ୍ରୀ ନରହରି ସ୍ୱାଇଁ କଟରପା କେନ୍ଦ୍ରରେ ଚିନ୍ତାମଣି ଭୂୟାଁଙ୍କୁ ସାହାଯ୍ୟ କରିବାକୁ ରହିଲେ। ଶ୍ରୀ ରଘୁନାଥ ପଣ୍ଡା ପୁରୁଣା କର୍ମୀ। ତାଙ୍କ ଉପରେ କେନ୍ଦ୍ରସବୁ ପରିଚାଳନା କରିବା ଏବଂ ହିସାବ ରଖିବାରେ ସାହାଯ୍ୟ କରବା, ଆଶ୍ରମ ଚତୁଃପାର୍ଶ୍ୱ ଗ୍ରାମ ସବୁରେ କାମ କରାଇବାର ଦାୟିତ୍ୱ ପ୍ରଦାନ କଲି। ଡାକ୍ତର କୃପାସିନ୍ଧୁ ଉକ୍ତ ଆଶ୍ରମର ଡାକ୍ତଖାନା ଚଳାଉ ଥାନ୍ତି। ଗ୍ରାମ ସଂଗଠନର କେତେକ ଦାୟିତ୍ୱ ତାଙ୍କ ଉପରେ ଅର୍ପଣ କଲି। ଖଦଡ଼ ରଙ୍ଗେଇବା ଓ ଛପେଇବା ପାଇଁ ଗୋଟିଏ ନୂଆ ବିଭାଗ ଖୋଲାଗଲା। ଜଣେ ମୁସଲମାନ କର୍ମୀ ଉକ୍ତ କାମରେ ରହିଲେ। ତାଙ୍କୁ ସାହାଯ୍ୟ କରି ରଙ୍ଗ ଓ ଛାପାକାମ ଶିଖିବା ପାଇଁ ଶ୍ରୀ ବିଶ୍ୱକେଶନ ଡାଳୁଆ ନାମକ ଜଣେ କର୍ମୀ ନିଯୁକ୍ତ ହେଲେ। ଖଦଡ଼ କାମ ଭଲକରି ଶିଖିବା ପାଇଁ ଶ୍ରୀ ଦାମୋଦର ସାହୁ ନାମକ ଜଣେ କର୍ମୀକୁ ସାବରମତୀ ଆଶ୍ରମକୁ ପଠାଇଲି। ଶ୍ରୀ ଅଲେଖପ୍ରସାଦ ଦାସଙ୍କ ଉପରେ ସମସ୍ତ କାର୍ଯ୍ୟର ପରିଚାଳନା ଭାର ରହିଲା। ଏହିପରି ବ୍ୟବସ୍ଥା କରି ପୁରୀ କଂଗ୍ରେସ ଅଧିବେଶନ ପାଇଁ କାର୍ଯ୍ୟ କରିବାରୁ ମୁଁ ଆଶ୍ରମ ଛାଡ଼ିଲି।

## ଅଭ୍ୟର୍ଥନା ସମିତିର ବୈଠକ ବସାଇବାକୁ ପ୍ରତିଦ୍ୱନ୍ଦିତା:

ଜୁଲାଇ ଶେଷ କିମ୍ବା ଅଗଷ୍ଟ ମାସ ହେବ। ବାଲେଶ୍ୱରଠାରେ ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ବସିଲା। କଂଗ୍ରେସ ଅଧିବେଶନ ପାଇଁ ବ୍ୟବସ୍ଥା କରିବା

ବିଷୟକୁ ବିଚାର କରିବା ପ୍ରଧାନ ପ୍ରଶ୍ନ। କିନ୍ତୁ ମୁଖ୍ୟ ପ୍ରଶ୍ନ କୁଆଡ଼େ ଉଭେଇଗଲା। କଂଗ୍ରେସ ଅଧିବେଶନ କେଉଁଠାରେ ବସିବ ଏହି ବିଷୟରେ ମତର ଅମେଳ ଘଟିଲା। କଟକରେ କଂଗ୍ରେସ ଅଧିବେଶନ ବସାଇଲେ ସୁବିଧା ହେବ ବୋଲି ଅନେକ ମତାମତ ବ୍ୟକ୍ତ କଲେ। କିନ୍ତୁ ପୁରୀକୁ ନିମନ୍ତ୍ରଣ ଦେଇ କଟକ ନାମ ଉଠାଇବା ଯୁକ୍ତିସଙ୍ଗତ ହେଉନାହିଁ। କଟକ ଓ ପୁରୀ ନେଇ ବିବାଦ ଆରମ୍ଭ ହେଲା ପୂର୍ବରୁ ଦଳଗତ ମନୋଭାବ ପ୍ରକାଶ ପାଇଛି। ବର୍ତ୍ତମାନ ଏହି କଟକ ପୁରୀ ନେଇ ବିବାଦରେ ବ୍ୟକ୍ତିଗତ ପ୍ରତିଷ୍ଠା ଲାଭ କରିବା ମତଲବ ଥିବାର ପ୍ରମାଣିତ ହୋଇଯାଉଛି। ଏହିପରି ଦଳଗତ ବିବାଦ ସବୁକଥାରେ ଯଦି ଆତ୍ମପ୍ରକାଶ କରେ ପରିଣାମରେ କଣ ଘଟିବ ତାହା ଚିନ୍ତାକରି ବଡ଼ ମର୍ମବେଦନା ମୁଁ ଅନୁଭବ କରିଛି। ବହୁଲୋକ ମିଳିମିଶି କୌଣସି କାମ କରିବାର ଦୃଷ୍ଟାନ୍ତ ଓଡ଼ିଶାରେ ବିରଳ। କେବଳ କଂଗ୍ରେସ ପତାକା ତଳେ ବହୁଲୋକ ଏକତ୍ର ହୋଇ ଗୋଟିଏ ଦଳ ଗଠିତ ହୋଇଥିଲା। ଏକତା ହେଉଛି ଆମ ଏକମାତ୍ର ବଳ। ସେହି ଏକତା ବର୍ତ୍ତମାନ ଭାଙ୍ଗି ଯାଉଛି। ସମସ୍ତଙ୍କ ମନରେ ମେଳ ରହୁନାହିଁ। ଗୋଟିଏ କଥାରେ ଆମ୍ଭେମାନେ ସମସ୍ତେ ଏକମତ ହୋଇପାରୁ ନାହୁଁ। ଆଦର୍ଶଗତ ପ୍ରଶ୍ନ ଉପରେ ମତର ପାର୍ଥକ୍ୟ ଘଟିଲେ ତାହା ମନୁଷ୍ୟକୁ ଦୁର୍ବଳ ନ କରି ବରଂ ସବଳ କରେ। କଂଗ୍ରେସ କେଉଁ ସ୍ଥାନରେ ବସିବ ଏଥିପାଇଁ ମତର ପାର୍ଥକ୍ୟ। କଟକ କିମ୍ବା ପୁରୀ କୌଣସି ଗୋଟିଏ ସ୍ଥାନ ସ୍ଥିର ହୋଇ ପାରିଲା ନାହିଁ। କଂଗ୍ରେସ ଅଧିବେଶନ ପାଇଁ ଯେଉଁ ଅଭ୍ୟର୍ଥନା ସମିତି ଗଢ଼ାଯିବ ତାହାରି ଉପରେ ସ୍ଥାନ ନିରୂପଣ କରିବାର ଭାର ଛାଡ଼ିଦିଆଗଲା। ଏତିକିରେ ମଧ୍ୟ କଥା ତୁଟିଗଲା ନାହିଁ। ସମିତିର ପ୍ରଥମ ବୈଠକ କେଉଁସ୍ଥାନରେ ବସିବ ସେଥିପାଇଁ ଟଣାଓଟରା ଲାଗିଲା। ସେପ୍ଟେମ୍ବର ୨୦ ତାରିଖ ଭିତରେ ଯେଉଁ ଜିଲ୍ଲାରେ ଅଧିକ ସଂଖ୍ୟାରେ ଅଭ୍ୟର୍ଥନା ସମିତିର ସଭ୍ୟ ସଂଗୃହୀତ ହୋଇଥିବେ ସେହି ଜିଲାରେ ଅଭ୍ୟର୍ଥନା ସମିତିର ପ୍ରଥମ ବୈଠକ ବସିବାକୁ ସ୍ଥିର କରାଗଲା।

ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ଶେଷରେ ଆମ୍ଭେମାନେ ନିଜ ନିଜର ଜିଲାକୁ ଫେରି ଯାଇଥିଲୁ। ଅଭ୍ୟର୍ଥନା ସମିତି ପାଇଁ ସଭ୍ୟ ସଂଗ୍ରହ କରିବା ହେଲା ବର୍ତ୍ତମାନ ପ୍ରଧାନ କାର୍ଯ୍ୟ। ସେହି କାମରେ ମୁଁ ନିଜକୁ ଭସାଇ ଦେଲି। ପଚିଶ ଟଙ୍କା ସଭ୍ୟ ଚାନ୍ଦା ରଖା ଯାଇଥାଏ। ପଲ୍ଲୀ ଅଞ୍ଚଳରେ ପଚିଶଟଙ୍କା ଦେଇ ଅଭ୍ୟର୍ଥନା ସମିତିର ଜଣେ ସଭ୍ୟ ହେବାକୁ ଲୋକ ପାଇବା ସହଜ ନୁହେଁ। ଏଥିପାଇଁ କଠିନ ପରିଶ୍ରମ କରିବାକୁ ପଡ଼ିଛି। ଗ୍ରାମକୁ ଗ୍ରାମ ମୁଁ ବୁଲିଛି, ସଭାକରି ବକ୍ତୃତା ଦେଇଛି। ବ୍ୟକ୍ତି ବିଶେଷଙ୍କ ଗୃହଠାରେ ଉପସ୍ଥିତ ହୋଇ ନାନାକଥା ବୁଝାଇ ସଭ୍ୟ କରେଇବାକୁ ଅଦମ୍ୟ ଚେଷ୍ଟା କରିଛି। ପ୍ରତିଦିନ କେତେଜଣ ସଭ୍ୟ ସଂଗ୍ରହ କଲି, ରାତିରେ ତହିଁର ହିସାବ କରେ। ଯେଉଁଦିନ କାହାରିକୁ ସଭ୍ୟ କରି ନପାରେ ସେଦିନ ରାତିରେ

ନିଦ ହୁଏ ନାହିଁ। ପ୍ରତ୍ୟେକ ଜଣାଶୁଣା କଂଗ୍ରେସ କର୍ମୀ ସଭ୍ୟ ସଂଗ୍ରହ କରିବା କାର୍ଯ୍ୟରେ ଏହିପରି ମନପ୍ରାଣ ଢାଳିଦେଇ କାର୍ଯ୍ୟ କରୁଥାନ୍ତି। ପ୍ରତିଦିନର ସଭ୍ୟତାଲିକା ଜିଲ୍ଲା କଂଗ୍ରେସ ଅଫିସକୁ ଲେଖି ଜଣାଇଦେବାକୁ ହୁଏ। କାରଣ ପ୍ରତ୍ୟହ ଦୈନିକ ସଂବାଦ ପତ୍ରରେ ସଭ୍ୟତାଲିକା ପ୍ରକାଶ କରାଯାଉଥାଏ। ତହିଁରୁ କେଉଁ ଜିଲାରେ କେତେ ସଭ୍ୟ ହେଲେ ଜଣାପଡ଼େ। ନିର୍ଦ୍ଦିଷ୍ଟ ତାରିଖ ଦିନ ସନ୍ଧ୍ୟାରେ ଯେଉଁ ସଭ୍ୟ ତାଲିକା ପ୍ରକାଶ ପାଇଲା ସେଥିରୁ ଜଣାଗଲା ଯେ ସବୁ ଜିଲ୍ଲା ଅପେକ୍ଷା କଟକଜିଲ୍ଲାରେ ଦୁଇଶହ ଅଧିକ ସଭ୍ୟ ସଂଗୃହୀତ ହୋଇଛନ୍ତି। ବର୍ତ୍ତମାନ ରାତ୍ରି ବାରଟା ପର୍ଯ୍ୟନ୍ତ କେତେ ଆଉ ଅଧିକ ସଭ୍ୟ ସଂଗୃହୀତ ହେବେ ତହିଁର ସଂଖ୍ୟା ଜାଣିବାକୁ ବାକୀ ରହିଲା। ପୁରୀ, କଟକ ନେଇ ବିବାଦ। ସୁତରାଂ ଆଉ କେତେ ଘଣ୍ଟାରେ ଯେତେ ଯାହା କଲେ ମଧ ପୁରୀ କଟକକୁ ଟପିଯିବାର କୌଣସି ଆଶଙ୍କା ରହିଲା ନାହିଁ।

ପଣ୍ଡିତ ନୀଳକଣ୍ଠ ଦାସ ବାଲେଶ୍ୱରରୁ ପୁରୀକୁ ଫେରିଥିଲେ ଅତ୍ୟନ୍ତ ମନଦୁଃଖରେ। ପୁରୀରେ କଂଗ୍ରେସ ନ ବସିଲେ ତାଙ୍କର ଗୋଟାଏ ବଡ଼ ରାଜନୈତିକ ହାର ହେବ। କଟକରେ କଂଗ୍ରେସ ବସାଇବାକୁ ଚକ୍ରାନ୍ତ କରାଯାଉଛି। ନେତୃତ୍ୱ ପାଇଁ ପୁରୀ, କଟକ ନେଇ ଟଣାଓଟରା। କଟକ ତାଙ୍କ ପକ୍ଷରେ ସୁବିଧାଜନକ ନୁହେଁ। ତେଣୁ ନୀଳକଣ୍ଠବାବୁ ପୁରୀରେ ଉପସ୍ଥିତ ହୋଇ ମନ୍ଦିର ପଣ୍ଡା ପଡ଼ିହାରୀମାନଙ୍କର ଗୋଟିଏ ସଭା ଡକାଇ ତାଙ୍କୁ ନାନା କଥା କହି ଅଭ୍ୟର୍ଥନା ସମିତିର ସଭ୍ୟହେବାପାଇଁ ଆହ୍ୱାନ କରିଥିଲେ। ପୁରୀରେ କଂଗ୍ରେସର ଅଧିବେଶନ ବସିଲେ ବହୁଲୋକଙ୍କ ସମାଗମ ହେବ। ବହୁ ବିଶିଷ୍ଟବ୍ୟକ୍ତି ପୁରୀକୁ ଆଗମନ କରିବେ। ଭାରତର ବିଶିଷ୍ଟ ବ୍ୟକ୍ତିମାନଙ୍କ ଚର୍ଚ୍ଚା କରିବାର ସୁବିଧା ପାଇଁ ସେମାନେ ସୁନାମ ଅର୍ଜନ କରିବେ ଇତ୍ୟାଦି। ଏହିପରି ଉଦ୍‌ବୋଧନ ପାଇ ପଣ୍ଡା ଓ ପଡ଼ିହାରୀ ଶ୍ରେଣୀର ବହୁ ଲୋକ ଅଭ୍ୟର୍ଥନା ସମିତିର ସଭ୍ୟ ହୋଇଥିଲେ ଏବଂ ସଭ୍ୟ କରାଇଥିଲେ। ବହୁଲୋକ ଅଧା ଟଙ୍କା ଦେଇ ସଭ୍ୟ ହେଲେ। ଶୁଣିବାକୁ ମିଳିଲା, ନୀଳକଣ୍ଠବାବୁ ନିଜେ କରଜ କରି ଅଧା ଟଙ୍କା ଦେଇଥିଲେ। ପଣ୍ଡାପଡ଼ିହାରୀଙ୍କଠାରୁ ଚାନ୍ଦା ଆଦାୟ ହୋଇ ଅଧା ଟଙ୍କାରେ ସଭ୍ୟ ସଂଗ୍ରହ କରାଯାଇଥିଲା ବୋଲି ମଧ ଶୁଣିବାକୁ ମିଳିଛି। ଶୁଣିବା କଥା ସତ୍ୟ ହୋଇ ନ ପାରେ, ତହିଁର ବିଚାର କରିବା ଆବଶ୍ୟକ କରୁନାହିଁ। ନୀଳକଣ୍ଠବାବୁଙ୍କ ଜ୍ଞାତସାରରେ ହେଉ, ଅବା ଅଜ୍ଞାତସାରରେ ହେଉ, ଚାନ୍ଦା ଅଥବା କରଜ ହୋଇ ପୁରୀରେ ଅଧାଟଙ୍କାରେ ସଭ୍ୟ ସଂଗ୍ରହ କରାଯାଇଥିଲା ଏଟା ଧ୍ରୁବ ସତ୍ୟ। ପୁରୀକୁ ଛାଡ଼ି, କଟକରେ କଂଗ୍ରେସ ଅଧିବେଶନ ବସାଇବାକୁ ଦଳଗତ ରାଜନୀତିଦ୍ୱାରା ଯେଉଁ ବ୍ୟୂହ ରଚନା କରାଯାଇଥିଲା, ସେ ବ୍ୟୂହକୁ ଭାଙ୍ଗି ରଣ ପ୍ରାଙ୍ଗଣରେ ନୀଳକଣ୍ଠବାବୁ ଏହାଦ୍ୱାରା ଏକ ବିଜୟ ହାସଲ କରିଥିଲେ ବୋଲି ମୁଁ ବୁଝିଲି। ପୁରୀର ସଭ୍ୟତାଲିକା କଟକ ସ୍ୱରାଜ୍ୟ ଆଶ୍ରମରେ ପହୁଞ୍ଚିବା ପରେ ଜଣାପଡ଼ିଲା କଟକ ଅପେକ୍ଷା ପୁରୀ ସଭ୍ୟସଂଖ୍ୟା ଦୁଇଶହରୁ ବେଶି।

ଏ ସମ୍ବାଦ କଟକଜିଲ୍ଲା ସାନବଡ଼ ସମସ୍ତ କର୍ମୀଙ୍କ ମନରେ ଦୁଃଖ ଜାତ କରେଇଥିଲା । ଜିଲ୍ଲାର କର୍ମୀମାନେ ମନଦେଇ କାମ ନ କରିବାରୁ ଏପରି ଘଟିଲା ବୋଲି ନେତୃସ୍ଥାନୀୟ ବ୍ୟକ୍ତି ମତପ୍ରକାଶ କରିଥିଲେ ।

କିନ୍ତୁ ଏହିଠାରେ ସଭ୍ୟ ସଂଗ୍ରହ କାମ ବନ୍ଦ ରହିଲା ନାହିଁ । ଏଣିକି ସାଧାରଣ ଭାବରେ କାମ ଚାଲିଲା । ବଡ଼ଚଣା, ମାହାଙ୍ଗା, ଟାଙ୍ଗୀ ଓ ଧର୍ମଶାଳା ଅଞ୍ଚଳରେ ବୁଲି ମୁଁ କାମ କରୁଥାଏ । କଂଗ୍ରେସ ଅଧିବେଶନ ବସାଇବା ପାଇଁ ଲକ୍ଷ ଲକ୍ଷ ଟଙ୍କା ଦରକାର ହେବ । ଅଭ୍ୟର୍ଥନା ସମିତିର ଅଧିକ ସଭ୍ୟ ନ ହେଲେ ଏତେ ଟଙ୍କା କୁଆଡୁ ଆସିବ । ଏଥିପାଇଁ ଚାନ୍ଦା ମଧ ଆଦାୟ କରାଯାଉଥାଏ । ଅଧିବେଶନ ପାଇଁ ଏକ ବିରାଟ ଆୟୋଜନ ଏବଂ ସଂଗଠନ ଦରକାର । କେବଳ କଂଗ୍ରେସର ଲୋକେ ଏତେ ବଡ଼ ଦାୟିତ୍ୱ ବହନ କରିବା ସହଜ ନୁହେଁ । ସଂଗଠନକୁ ସର୍ବାଙ୍ଗ ସୁନ୍ଦର କରିବାର ଗୁରୁଦାୟିତ୍ୱ ଓଡ଼ିଶାର ସାଧାରଣ ଲୋକେ ଜଣା ଅଧିକେ ହୃଦୟଙ୍ଗମ କରିବା ଉଚିତ । ସଭ୍ୟ ସଂଗ୍ରହ ଓ ଚାନ୍ଦା ଆଦାୟ କରିବା କାର୍ଯ୍ୟ ସଙ୍ଗେ ସଙ୍ଗେ ଲୋକଙ୍କୁ କଂଗ୍ରେସ ଅଧିବେଶନର ଗୁରୁତ୍ୱ ବୁଝାଇବା ଆବଶ୍ୟକ । ଗ୍ରାମକୁ ଗ୍ରାମ ବୁଲି ସଭାକରି ଏହିକଥା ମୁଁ ବୁଝାଉଥାଏ । ଲୋକବିଶେଷଙ୍କୁ ସଭ୍ୟ କରାଇ ସେମାନଙ୍କ ସାହାଯ୍ୟରେ ଚାନ୍ଦା ଆଦାୟ ଓ ସଭ୍ୟ ସଂଗ୍ରହ କରୁଥାଏ ଏବଂ ମଧ୍ୟେ ମଧ୍ୟେ ଆଶ୍ରମକୁ ଫେରି ଆଶ୍ରମର କାର୍ଯ୍ୟ ମଧ୍ୟ ବୁଝେ । ବାଦବିବାଦରେ ମୁଁ ଏ ପର୍ଯ୍ୟନ୍ତ ଜଡ଼ିତ ହୋଇନାହିଁ । ଏସବୁ ଯାହା ଯେପରି ମୁଁ ଶୁଣିଛି ତହିଁରେ ମୋ ମନ ଦବିଯାଉଛି । ଏହି ସମୟରେ ଶୁଣିଲି, ମହାତ୍ମାଗାନ୍ଧୀ ସାବରମତୀ ଆଶ୍ରମରେ ଆଉ ରହୁନାହାନ୍ତି । ଦାଣ୍ଡି ଅଭିମୁଖେ ସମରଯାତ୍ରା ଆରମ୍ଭ କରି ସାବରମତୀ ଆଶ୍ରମ ତ୍ୟାଗ କଲାବେଳେ ଗାନ୍ଧୀଜୀ ଘୋଷଣା କରିଥିଲେ, ''ସ୍ୱରାଜ୍ୟ ନେଇ ଆଶ୍ରମକୁ ଫେରିବେ, ନଚେତ୍ ତାଙ୍କର ମୃତ ଶରୀରକୁ ସମୁଦ୍ର ଜଳରେ ଭସାଇ ଦେବେ ।'' ସେହି ସତ୍ୟ ବାକ୍ୟ ଅନ୍ୟଥା ହୋଇ ନ ପାରେ । ତେଣୁ ସେ ସାବରମତୀ ଆଶ୍ରମକୁ ଫେରି ସେଠାରେ ଆଉ ରହିଲେ ନାହିଁ । ସ୍ୱରାଜ୍ୟଲାଭ ହୋଇନାହିଁ ବୋଲି ମହାତମାଗାନ୍ଧୀ ତାଙ୍କର ପ୍ରିୟ ସାବରମତୀ ଆଶ୍ରମକୁ ଆଉ ଫେରିଲେ ନାହିଁ । ସ୍ୱରାଜ୍ୟପାଇଁ ତାଙ୍କର ଅବିରାମ ସଂଗ୍ରାମ ଚାଲିଛି । ସେଥିରେ ସେ ନିଷ୍ଫଳ ହୋଇନାହାନ୍ତି । ସୁତରାଂ ତାଙ୍କର ମୃତ ଶରୀରକୁ ସମୁଦ୍ରରେ ଭସାଇ ଦେବାର ପ୍ରଶ୍ନ ଉଠୁନାହିଁ । କିନ୍ତୁ ପୂର୍ଣ୍ଣ ସ୍ୱରାଜ୍ୟ ଲାଭ ନହେଲା ପର୍ଯ୍ୟନ୍ତ ଆଶ୍ରମକୁ ଫେରିଯାଇ ସେଠାରେ ରହିଲେ ସତ୍ୟର ଅପଳାପ ହେବ । ତେଣୁ ଆଶ୍ରମରେ ସେ ଆଉ ରହୁନାହାନ୍ତି । ତାହା ଖଦି ତାଲିମ କେନ୍ଦ୍ରରେ ପରିଣତ ହୋଇଛି । ଭାରତର ବିଭିନ୍ନ ପ୍ରଦେଶରୁ ଖଦି କାମରେ ତାଲିମ ପାଇବାକୁ କର୍ମୀମାନେ ଆସୁଛନ୍ତି ।

ମହାତ୍ମାଜୀ ଆଶ୍ରମରେ ନ ରହିବା ଗୋଟିଏ ବିଶେଷ ଘଟଣା । ଗୁଜରାଟ ଛାଡ଼ି ସେ ଓ୍ୟାର୍ଦ୍ଧାରେ ଆସି ରହିବାକୁ ସ୍ଥିର କରିଛନ୍ତି । ଏହା ବନ୍ଧୁଲୋକଙ୍କୁ ବିଚଳିତ

କରିଛି। ମହାତ୍ମାଗାନ୍ଧୀ ଅହମଦାବାଦ ଓ ଗୁଜରାତକୁ ଛାଡ଼ିଦେଇ ଚାଲି ଆସିବାରେ ଗୁଜରାତରେ ବହୁ ନରନାରୀ ଶୋକାକୁଳ ହୋଇପଡ଼ିଲେ। ସର୍ଦ୍ଦାର ପଟେଲ ମଧ୍ୟ ଏଥିରେ ଅଧୀର ହୋଇ ପଡ଼ିଥିଲେ। ଗାନ୍ଧୀଜୀଙ୍କୁ ପୁଣି ଫେରାଇ ଆଣିପାରିବେ ବୋଲି କହି ଗୁଜରାତର କର୍ମୀମାନଙ୍କୁ ସେ ଆଶ୍ୱାସନା ଦେଇଥିଲେ। ଏହି ସଂବାଦରେ ମୁଁ ବଡ଼ ବିଚଳିତ ହୋଇ ପଡ଼ିଥିଲି। ସାବରମତୀ ଆଶ୍ରମର ସମସ୍ତ ଚିତ୍ର ମୋ କଳ୍ପନାର ଦିଗ୍‌ବଳୟରେ ଦଣ୍ଡାୟମାନ ହେଲା ପ୍ରାୟ ବୋଧହେଲା। ଆଶ୍ରମର ଅବୟବ ଗଠନରେ ମୋର ପରିଶ୍ରମ ରହିଛି। ପ୍ରତ୍ୟେକ ସ୍ଥାନ ମତେ ଜଣା ଏବଂ ମୋର ପ୍ରିୟ। ଏଠାରେ ଘର ଯେତେବେଳେ ତୋଳା ହୋଇ ନ ଥିଲା, ତମ୍ବୁ ପକାଇ ଆମ୍ଭେମାନେ ରହିଥିଲୁ। ଗୋଟିଏ ତମ୍ବୁରେ ମୁଁ ଆଉ ଶ୍ରୀ ବିନୋବାଭାବେ ଏକାଠି ରହିଲୁ। ଦୁହେଁ ରାତି ୪ଟାରୁ ଉଠି ଗୋଟିଏ ଚକିରେ ଗହମ ପେଷିଲୁ। ଏକାଠି ବସି ଭୋଜନ କରିଲୁ ଏବଂ ରନ୍ଧା ଯାଇଥିବା ପିଇକହଣ୍ଡା ମଧ୍ୟ ଦୁଇଜଣ ଏକ ସଙ୍ଗରେ ବସି ମାଜିଲୁ। କାକା କାଲେଲକର, ମହାଦେବ ଭାଇ, ଦେବିଦାସ ଭାଇ, ଇମାମ ସାହେବ ଏବଂ ପୂଜ୍ୟା ବା ଇତ୍ୟାଦିଙ୍କ ସହିତ ଆଳାପ, ଆଲୋଚନା ଓ କାର୍ଯ୍ୟ ଇତ୍ୟାଦି ସବୁ ମନେ ପଡ଼ି ମୋର ହୃଦୟ ଶୋକାକୁଳ ହୋଇଉଠିଥିଲା। ଆଶ୍ରମରେ ଅନେକ ଦିନ ରହିଛି। ଏବେ ପ୍ରତିବର୍ଷର ଚମ୍ପାପୁର ଆଶ୍ରମ ପାଇଁ ଚାନ୍ଦା ସଂଗ୍ରହ କରିବାକୁ ଗଲାବେଳେ ସେଠାକୁ ଯାଇ କିଛିଦିନ ରହିଛି। ସମସ୍ତଙ୍କ ସହିତ ଦେଖାସାକ୍ଷାତ ହୋଇ ପାରୁଥିଲା। ଏବେ ସବୁ ଗଲା। କିନ୍ତୁ ସେ ସବୁର ସ୍ମୃତି ତ ଯିବାର ନୁହେଁ। ସେହି ସ୍ମୃତିସବୁ ମନେ ପଡ଼ିଲେ, ମନରେ ଯେପରି ଆନନ୍ଦ ଆସେ ମନ ସେପରି ମଧ୍ୟ ବ୍ୟାକୁଳ ହୋଇଉଠେ। କେତେ ଭାବନା ମନରେ ଖେଳିଯାଏ। ଓଡ଼ିଶାର ବାତାବରଣ ବିଚାର କଲେ ସାବରମତୀ ଆଶ୍ରମରୁ ଓଡ଼ିଶାକୁ ଫେରି ଭୁଲ କରିଛି ବୋଲି ଭାବି ଚିନ୍ତିତ ହୋଇ ପଡ଼େ।

ବର୍ତ୍ତମାନ ବିଲାତର ଶାସନକ୍ଷମତା ରକ୍ଷଣଶୀଳ ଜାଠଦଳ ହାତରେ। ଲର୍ଡ୍ ଇରଉଇନ୍ ସାହେବ ବିଦାୟ ନେଲାପରେ ଏହି ଜାଠଦଳ ଦ୍ୱାରା ମନୋନୀତ ହୋଇ ଲର୍ଡ୍ ୱେଲିଙ୍ଗଟନ୍ ସାହେବ ଭାରତର ବଡ଼ଲାଟ ଆସନ ଗ୍ରହଣ କରିଛନ୍ତି। ଏଥିପୂର୍ବରୁ ସେ ବମ୍ବେଇ ଓ ମାନ୍ଦ୍ରାଜର ଲାଟ ଥିଲେ। ଭାରତ ରାଜନୀତିର ସମସ୍ତ ରହସ୍ୟ ତାଙ୍କୁ ଉତ୍ତମରୂପେ ଜଣା। ଗାନ୍ଧୀ-ଇରଉଇନ୍ ଚୁକ୍ତିକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନା କରିବା ବ୍ୟକ୍ତି ସେ ନୁହଁନ୍ତି। ତେଣୁ ସବୁ ପ୍ରଦେଶରେ ରାଜନୈତିକ ପରିସ୍ଥିତି ଜଟିଳ ଆକାର ଧାରଣ କରୁଛି। ଚୁକ୍ତି ଖିଲାପ କାର୍ଯ୍ୟ ପ୍ରତି କଂଗ୍ରେସ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଉଦ୍ୟତ ହେବାରୁ ସରକାର କଂଗ୍ରେସ ଉପରେ ଚୁକ୍ତି ଖିଲାପ ଦୋଷ ଆରୋପଣ କରିବାକୁ ପଶ୍ଚାତ୍‌ପଦ ହେଉ ନାହାନ୍ତି। ଏହି ପ୍ରକାର ଟଣାଓଟରା କଂଗ୍ରେସ ଓ ସରକାରଙ୍କ ମଧ୍ୟରେ ଆରମ୍ଭ ହୋଇଗଲାଣି। କଂଗ୍ରେସ ଓ ସରକାରଙ୍କ ମଧ୍ୟରେ

ଚୁକ୍ତିଭଙ୍ଗର ଦୃଷ୍ଟାନ୍ତ ଦର୍ଶାଇବାରେ ଯେଉଁ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇଛି ତାହା ଚରମସୀମାକୁ ଗତିକଲା ପରି ବୋଧ ହେଉଛି। କେତେବେଳେ କଣ ଘଟିବ ତାହା କଳ୍ପନା କରି ହେଉ ନାହିଁ। ବଡ଼ଲାଟ ଲର୍ଡ଼ ୱେଲିଙ୍ଗଟନ ସାହେବଙ୍କ ସହିତ ସାକ୍ଷାତ କରିବାକୁ ମହାତ୍ମାଗାନ୍ଧୀ ଇଚ୍ଛା ପ୍ରକାଶ କରିଛନ୍ତି।

ଭାରତର ରାଜନୈତିକ ପରିସ୍ଥିତି ଏପରି ଜଟିଳ ଅବସ୍ଥା ଧାରଣ କରୁଥିବା ସମୟରେ ପୁରୀରେ କଂଗ୍ରେସ ବାର୍ଷିକ ଅଧିବେଶନ ପାଇ ଗଢ଼ାଯାଉଥିବା ଅଭ୍ୟର୍ଥନା ସମିତିର ପ୍ରଥମ ବୈଠକ ବସିଥିଲା। ବୈଠକ ବସିବା ଦିନ ପର୍ଯ୍ୟନ୍ତ ସଭ୍ୟ ସଂଗ୍ରହ କରାଯାଇଛି। ସମିତିର ପ୍ରଥମ ବୈଠକରେ ଉପସ୍ଥିତ ସଭ୍ୟ ସଂଖ୍ୟା ଅଧିକ କରାଇ ପାରିଲେ ଦଳଗତ ଉଦ୍ଦେଶ୍ୟ ସାଧନ ହୋଇ ପାରିବ ଏଥିପାଇଁ ଆମରଣ ଚେଷ୍ଟା କରାଯାଇଛି। ସମିତିର ପ୍ରଥମ ବୈଠକ ବସି ଶେଷରେ ପଣ୍ଡିତ ନୀଳକଣ୍ଠ ଦାସ, ଅଭ୍ୟର୍ଥନା ସମିତିର ଚେୟାରମ୍ୟାନ ଶ୍ରୀ ଗୋପବନ୍ଧୁ ଚୌଧୁରୀ ସଂପାଦକ ଏବଂ ଶ୍ରୀ ହରେକୃଷ୍ଣ ମହତାବ ସେବାଦଳର ଅଧ୍ୟକ୍ଷ ରୂପେ ବଛା ଯାଇଥିଲେ। କଂଗ୍ରେସପାଇଁ ସ୍ଥାନନିରୂପଣ ପ୍ରଶ୍ନ କୁଆଡ଼େ ମିଳେଇଗଲା। ସେ ପ୍ରଶ୍ନ କେହି ଆଉ ଉତ୍‌ଥାପନ କରିନାହାନ୍ତି। କିନ୍ତୁ ଏହି କର୍ମକର୍ତ୍ତା ବାଛିବା ପ୍ରସଙ୍ଗ ନେଇ ଯେଉଁ ବିବାଦ ଓ ମନୋମାଳିନ୍ୟ ସୃଷ୍ଟିହେଲା ସେ ବିଷୟରେ ବିଶେଷ କିଛି ଉଲ୍ଲେଖ ନ କରିବା ଉଚିତ। କୌଣସି ଗୋଟିଏ ନୀତିକୁ ଗ୍ରହଣ କଲାପରେ ତାକୁ ମାନିନେଇ ସମସ୍ତେ ଏକାମନ ଓ ଏକ ପ୍ରାଣରେ କାମ କରିବାର ମନୋବୃତ୍ତି ଆମ୍ଭମାନଙ୍କର ରହୁନାହିଁ। ବ୍ୟକ୍ତି ବିଶେଷଙ୍କ ପ୍ରତିଷ୍ଠା ଦୃଢ଼ କରିବା ପାଇଁ ଦଳ ସୃଷ୍ଟି ହୋଇ ବହୁ ଅବାଞ୍ଛିତ କାର୍ଯ୍ୟ ସବୁ କରାଯାଉଛି। ନେତୃତ୍ୱ ପାଇଁ ବିବାଦ ଲାଗେ—ବିବାଦ ଲାଗିବା ମଧ୍ୟ ଉଚିତ୍। ଏପରି ବିବାଦ ଲାଗିବା ଗୋଟାଏ ନୂଆ କଥା ନୁହେଁ, କିମ୍ବା ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ନେତୃତ୍ୱ ପାଇଁ ବିବାଦରେ ଜୀବନ ବିକାଶ ଲାଭ କରେ। ମନୁଷ୍ୟ କୌଣସି ଗୋଟିଏ ଆଦର୍ଶ ସମ୍ମୁଖରେ ରଖି ତାର କର୍ମଯୋଜନା କଳ୍ପନା କରେ। ମନୁଷ୍ୟ ତାର କଳ୍ପନାରେ ଅନ୍ଧ। ଅନେକ ସମୟରେ ସବୁ ଦିଗକୁ ଦୃଷ୍ଟି ଦେଇ କାମ କରିବା ସମ୍ଭବପର ହୁଏ ନାହିଁ। ନିଜର କଳ୍ପନାକୁ ରୂପରେଖ ଦେବାକୁ ସୁବିଧା ଅନ୍ୱେଷଣ କରିବା ସାଧାରଣ ମନୁଷ୍ୟ ପକ୍ଷରେ ସ୍ୱାଭାବିକ। ତେଣୁ ଦେଶରେ ପ୍ରତିଷ୍ଠା ଲାଭ କରିଥିବା କୌଣସି ଗୋଟିଏ ପ୍ରଭାବଶାଳୀ ଅନୁଷ୍ଠାନକୁ ନିୟନ୍ତ୍ରଣ କରିବାର ଅଧିକାର ପ୍ରାପ୍ତି କରିବାକୁ ସେ ଚେଷ୍ଟାକରେ। ତାହା କରିପାରିଲେ ନିଜର ଆଦର୍ଶ ଅନୁକୂଳ କଳ୍ପନାକୁ କାର୍ଯ୍ୟରେ ପରିଣତ କରିବାର ମାର୍ଗ ସରଳ ଓ ସହଜ ହୋଇଥାଏ। ଏରୂପ ଅଧିକାର ପ୍ରାପ୍ତି କରିବାକୁ ବ୍ୟକ୍ତିବିଶେଷଙ୍କ ମଧ୍ୟରେ ଯେଉଁ ପ୍ରତିଦ୍ୱନ୍ଦ୍ୱିତା ଲାଗେ ତାହା ବିବାଦରେ ପରିଣତ ହୁଏ। ଏପରି ବିବାଦ ଲାଗିବା ବାଞ୍ଛନୀୟ। ତାହା ସବୁ ଯୁଗରେ ଏବଂ ସବୁ ଦେଶରେ ମଧ୍ୟ ଲାଗିଛି। ମହାଭାରତ

ଲଢ଼ାଇ ଏହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । କଂଗ୍ରେସ ଭିତରେ ସ୍ୱରାଜ୍ୟ ଦଳ ଓ ଅପରିବର୍ତ୍ତନବାଦୀ ଗାନ୍ଧୀଦଳଙ୍କ ମଧ୍ୟରେ ଯେଉଁ ବିବାଦ ସୃଷ୍ଟି ହୋଇଥିଲା ତାହା ଏହି ଆଦର୍ଶଗତ ବିବାଦ । କିନ୍ତୁ ଆମ୍ଭମାନଙ୍କ ଓଡ଼ିଶା କଂଗ୍ରେସ ଲୋକଙ୍କ ଭିତରେ ଯେଉଁ ବିବାଦ ଲାଗିଲା ତହିଁରେ ଆଦର୍ଶଗତ କୌଣସି ପ୍ରଶ୍ନ ନ ଥିଲା । ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ପଦ ପାଇଁ ଯେଉଁ ବିବାଦ ଜାତ ହୋଥିଲା ତହିଁରେ ଆଦର୍ଶଗତ କିଛି ବିଚାର ଥାଇପାରେ । କିନ୍ତୁ କରାଚୀରେ କଂଗ୍ରେସ ଅଧିବେଶନ ବସାଇବାକୁ ପୁରୀକୁ ନିମନ୍ତ୍ରଣ ବାର୍ତ୍ତା ଶୁଣାଇ ପୁଣି କଟକର ନାମ ଉଠାଇ ଝଗଡ଼ା ସୃଷ୍ଟି କରିବାରେ କୌଣସି ଆଦର୍ଶ ଥାଇ ନପାରେ । ପୁଣି ଅଭ୍ୟର୍ଥନା ସମିତିର ପ୍ରଥମ ବୈଠକ ବସାଇବା ପାଇଁ ସ୍ଥାନ ବାଛିବାରେ ଝଗଡ଼ା ଏବଂ ସମିତିର ଚେୟାରମ୍ୟାନ ପଦ ପାଇଁ ଝଡ଼ତୋଫାନ ସୃଷ୍ଟିକରି ଦଳବାନ୍ଧିବା ଇତ୍ୟାଦି ବ୍ୟାପାର କେବଳ ମୋର ନୁହେଁ ବହୁକର୍ମୀଙ୍କ ମନରେ ଦାରୁଣ ଆଘାତ ଦେଇଛି ।

ଶ୍ରୀ ନୀଳକଣ୍ଠ ଦାସ ଜଣେ ପଣ୍ଡିତ ଓ ପୁରୁଣା ଦେଶସେବକ । ଅଭ୍ୟର୍ଥନା ସମିତିର ସଭାପତି ପଦପାଇଁ ତାଙ୍କୁ ବାଛି ନ ଥିଲେ ଅନ୍ୟାୟ ହୋଇଥାନ୍ତା ବୋଲି ମୋର ବିଶ୍ୱାସ । ତାଙ୍କୁ ମୋର ସମର୍ଥନା ଜଣାଇ କଟକ ଜିଲ୍ଲାର ମୁଖ୍ୟ କଂଗ୍ରେସ କର୍ମକର୍ତ୍ତାମାନଙ୍କଠାରୁ ମୁଁ କରଛଡ଼ା ହୋଇଗଲି ବୋଲି ବୁଝିବାକୁ ମୋ ମନରେ ଆଉ କିଛି ସନ୍ଦେହ ରହି ନ ଥିଲା । ଏହି ବିବାଦ ଯେଉଁ ଦଳ ସୃଷ୍ଟିକଲା ତହିଁରେ ମୁଁ ବିଚଳିତ ହୋଇପଡ଼ିଲି । ୧୯୨୧ ମସିହାରେ ଓଡ଼ିଶାରେ କଂଗ୍ରେସ ଜନ୍ମଲାଭ କରିଛି । ସେହି ସମୟରୁ ଅଦ୍ୟାବଧି ଆମ୍ଭେମାନେ ସମସ୍ତେ ଗୋଟିଏ ପରିବାର ପରି ଚଳୁଥିଲୁ ! ପରସ୍ପର ପ୍ରତି ସ୍ନେହ ସହାନୁଭୂତି ରହିଥିଲା । କିନ୍ତୁ ୧୯୩୦ ବେଳକୁ ପୂର୍ବର ସେହି ଭାବ ଆଉ ରହିପାରିଲା ନାହିଁ । କଂଗ୍ରେସକୁ ନିମନ୍ତ୍ରଣ କରିବାପାଇଁ ପ୍ରସ୍ତାବ ଗ୍ରହଣ କଲାବେଳେ ମନରେ ଉତ୍ସାହ ଓ ଆନନ୍ଦର ଢେଉ ଖେଳି ଯାଇଥିଲା । ମନରେ ସେପରି ଭାବନା ଆଉ ଜାଗି ଉଠିନାହିଁ । ମନରେ ପ୍ରଶ୍ନଉଠୁଚି, କଂଗ୍ରେସକୁ ନିମନ୍ତ୍ରଣ କରିବା ଗୋଟିଏ ଅଭିଶାପ ନୁହେଁ ତ ?

## ଗଡ଼ଜାତ ପ୍ରଜାସମ୍ମିଳନୀ

ଉତ୍କଳ କଂଗ୍ରେସ ଭିତରେ ଏପରି ଦୁଇଟି ଦଳ, କେବଳ ବ୍ୟକ୍ତିଗତ ପ୍ରତିଷ୍ଠା ଲାଭପାଇଁ ବିବାଦ ଲାଗିବାରୁ ସୃଷ୍ଟ ହୋଇଗଲା । ଏଥିରେ ଆଦର୍ଶ କିଛି ନ ଥିଲା । ଏପରି ଦଳ ସୃଷ୍ଟି ହେଲେ ମଧ୍ୟ ପୁରୀରେ କଂଗ୍ରେସ ଅଧିବେଶନକୁ ସର୍ବାଙ୍ଗ ସୁନ୍ଦର କରିବାକୁ ସମସ୍ତେ ମନପ୍ରାଣ ଦେଇ କାର୍ଯ୍ୟରେ ଲାଗିଗଲେ । ଦଳଗତ ଝଗଡ଼ାରେ ଲିପ୍ତ ହେଲେ ମଧ ଦେଶର ସାଧାରଣ କାର୍ଯ୍ୟରେ କଂଗ୍ରେସ ଲୋକେ ସବୁବେଳେ ଏକମନ ଏକପ୍ରାଣରେ କାର୍ଯ୍ୟ କରନ୍ତି । କଂଗ୍ରେସ ଓ ମହାତ୍ମାଗାନ୍ଧୀଙ୍କର ନାମ ସଂଜୀବନୀ

ମନ୍ତ୍ର ସଦୃଶ କାର୍ଯ୍ୟ କରେ। ପୁରୀରେ କଂଗ୍ରେସର ଯେଉଁ ବାର୍ଷିକ ଅଧିବେଶନ ବସିବ, ସେଥିପାଇଁ ଯେଉଁ ସବୁ ଆୟୋଜନ କରିବାକୁ ପଡ଼ିବ, ସେହି ସବୁ ଯଦି ନିଖୁଣ ହୋଇପାରିବ, ତେବେ ତଦ୍ଦ୍ୱାରା ଓଡ଼ିଆଜାତିର ସଂଗଠନ ଶକ୍ତି ପ୍ରକାଶ ପାଇବ। ଓଡ଼ିଶାର ଲୋକେ କୌଣସି ଗୋଟାଏ ବଡ଼ ସଂଗଠନ ଠିକଣାରେ କରିପାରନ୍ତି ନାହିଁ ବୋଲି କଂଗ୍ରେସର ନେତୃବର୍ଗଙ୍କର ଗୋଟାଏ ଧାରଣା ଜନ୍ମିଛି। ମହାତ୍ମାଗାନ୍ଧୀ ଏପରି ଭାବ କଥାପ୍ରସଙ୍ଗରେ ଅନେକଥର ବ୍ୟକ୍ତ କରିଛନ୍ତି। ସୁତରାଂ ପୁରୀରେ କଂଗ୍ରେସ ଅଧିବେଶନ ପାଇଁ କାର୍ଯ୍ୟ କରିବା ବର୍ତ୍ତମାନ ଓଡ଼ିଶାର ଏକମାତ୍ର ରାଜନୈତିକ କର୍ମ ଓ ଚିନ୍ତା।

ପୁରୀ କଂଗ୍ରେସ ପାଇଁ କାର୍ଯ୍ୟ କରିବାରେ ମୁଁ ଅଧିକାଂଶ ସମୟ ଖଟୁଛି ଏହା କହିବା ନିଷ୍ପ୍ରୟୋଜନ। କିନ୍ତୁ ଏହାଛଡ଼ା ଆଶ୍ରମ କାର୍ଯ୍ୟ ପ୍ରତି ମୋର ଦୃଷ୍ଟି ରହିଛି। ବର୍ତ୍ତମାନ ଅନେକ ସମୟରେ ଓଡ଼ିଶା ଗଡ଼ଜାତ ପ୍ରଶ୍ନ ମତେ ବ୍ୟଥିତ କରୁଛି। ଲବଣ ସତ୍ୟାଗ୍ରହରେ ଓଡ଼ିଶା ଗଡ଼ଜାତ ଭିତରୁ କେତେଜଣ ଯୁବକ ଯୋଗଦେଇ କାରାବରଣ କରିଛନ୍ତି। କିନ୍ତୁ ଗଡ଼ଜାତ ଲୋକଙ୍କ ପାଇଁ କିଛି କାର୍ଯ୍ୟକରିବା ଚିନ୍ତା କେହି ନିର୍ଦ୍ଦିଷ୍ଟ ଭାବେ କରି ପାରୁନାହାନ୍ତି। କାର୍ଯ୍ୟ କରିବା ଦୂରର କଥା, ସେମାନଙ୍କ ଦୁଃଖଦୁର୍ଦ୍ଦଶା ବିଷୟରେ ପାଟି ଫିଟାଇ ପଦେ କଥା କହିବାକୁ ସୁବିଧା ନାହିଁ। 'ପ୍ରିନ୍‌ସେସ୍ ପ୍ରୋଟେକ୍‌ସନ୍ ଆକ୍ଟ' ନାମରେ ଗୋଟିଏ ଆଇନ୍ ଇଂରେଜ ସରକାର ବାନ୍ଧିଛନ୍ତି। ଏହି ଆଇନ୍ ଦ୍ୱାରା ରାଜାରାଜୁଡ଼ାଙ୍କ ନିରଙ୍କୁଶ ଶାସନ ବିଷୟରେ କିଛି କହିବା ଅବା ସମାଲୋଚନା କରିବା ଅସମ୍ଭବ ହୋଇଛି। କୌଣସି ରାଜ୍ୟରେ କୌଣସି ରାଜାଙ୍କର କିଛି କାର୍ଯ୍ୟ ଦ୍ୱାରା ପ୍ରଜାକୁଳ ଦୁଃଖ ଭୋଗକଲେ, ଉକ୍ତ କାର୍ଯ୍ୟ ବିଷୟରେ ଉକ୍ତ ରାଜାଙ୍କୁ ଅଥବା ପଲଟିକ୍ୟାଲ ଏଜେଣ୍ଟଙ୍କୁ ଖଣ୍ଡିଏ ପତ୍ର ଲେଖିବାପାଇଁ କିଛି ବ୍ୟବସ୍ଥା ହେବା ଉଚିତ। ଏହିପରି ଗୋଟିଏ ଚିନ୍ତା ମୋ ମନକୁ ଆଲୋଡ଼ିତ କରୁଛି। ବହୁଦିନ ପୂର୍ବେ, କଟକରେ ବିଭିନ୍ନ ଶିକ୍ଷାନୁଷ୍ଠାନମାନଙ୍କରେ ଅଧ୍ୟୟନ କରୁଥିବା ଛାତ୍ରମାନଙ୍କର ଗୋଟିଏ ସଭା ଡକାଇ ଗଡ଼ଜାତ ବିଷୟ ଆଲୋଚନା କରିଥିଲି। ଏହା ହେଉଛି ଲବଣ-ସତ୍ୟାଗ୍ରହର ପୂର୍ବ ଘଟଣା। ସେତେବେଳେ କୌଣସି ବାଟ ଦେଖାଯାଇ ନ ଥିଲା। କିନ୍ତୁ ଲବଣ-ସତ୍ୟାଗ୍ରହ ପୂର୍ବ ଓ ପରର ଅବସ୍ଥା ମଧ୍ୟରେ ଆକାଶ ପାତାଳ ପ୍ରଭେଦ ଘଟିଛି। ଭାରତରେ ଅପୂର୍ବ ଜାଗରଣ ସୃଷ୍ଟି ହୋଇଛି। ଭାରତର ଦେଶୀୟ ରାଜ୍ୟ ସବୁରେ ପ୍ରଜା ଆନ୍ଦୋଳନ ସୃଷ୍ଟିହୋଇ ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜାସମ୍ମିଳନୀର ବୈଠକ କେତେଥର ବସିଲାଣି। ଓଡ଼ିଶାରେ ଏହାର କୌଣସି ସ୍ପନ୍ଦନ ନ ଥିବା ଅବସ୍ଥାରେ ଅଛି। ଏପରି ଅବସ୍ଥା ଆଉ ଅଧିକ ଦିନ ରହିବା ଉଚିତ ନୁହେଁ। ସୁତରାଂ ଓଡ଼ିଶା ଗଡ଼ଜାତ ପ୍ରଜାଙ୍କର ଗୋଟିଏ ସମ୍ମିଳନୀ ବସାଇବା ପାଇଁ ମୁଁ ବ୍ୟଗ୍ର ହୋଇ ଉଠିଲି। ଏହି ଉଦ୍ଦେଶ୍ୟରେ ଓଡ଼ିଶା ଗଡ଼ଜାତ ପ୍ରଜାଙ୍କ ପରାମର୍ଶଦାତା କମିଟି ନାମରେ ଗୋଟିଏ କମିଟି ପ୍ରଥମେ ମୁଁ ଗଠନ କରିଥିଲି।

ଦଶପଲ୍ଲା ମେଳି ସମୟରେ, ସାପ୍ତାହିକ ଆଶା କାଗଜ, ମୋର କେତୋଟି ଲେଖା ପ୍ରକାଶ କରିଥିଲା। ଦଶପଲା ମେଳିକୁ ଲକ୍ଷ୍ୟକରି ଆଶା କାଗଜ ଅଗ୍ରଲେଖା ପ୍ରକାଶ କରି ନିଜର ନିର୍ଭିକ ସ୍ୱାଧୀନ ଚିନ୍ତାର ପରିଚୟ ଦେଇଛି। ଏଣୁ ଆଶା କାଗଜର ସମ୍ପାଦକ ଶ୍ରୀ ଶଶୀଭୂଷଣ ରଥଙ୍କୁ ସଭାପତି କରି ଉକ୍ତ ପରାମର୍ଶଦାତା କମିଟି ଗଠନ କରି ମୁଁ ତହିଁର ସମ୍ପାଦକ ଭାର ଗ୍ରହଣ କରିଥିଲି। ସମ୍ମିଳନୀପାଇଁ ସଭ୍ୟ ଓ ଅର୍ଥସଂଗ୍ରହ କରିବାକୁ ଆବଶ୍ୟକ ରସିଦ ବହି ଓଗେର ନିଜ ଖର୍ଚ୍ଚରେ ଛପାଇ ବଣ୍ଟନ କଲି। ପ୍ରଥମ ସମ୍ମିଳନୀ କଟକରେ ବସିଲା। ସ୍ୱର୍ଗୀୟ କବିରାଜ ବାଲୁଁକେଶ୍ୱର ଆଚାର୍ଯ୍ୟ, ଶ୍ରୀ ରାଧାନାଥ ରଥ ସମ୍ମିଳନୀରେ ପୂର୍ଣ୍ଣପ୍ରାଣରେ ଯୋଗ ଦେଲେ। ପ୍ରଥମ ବୈଠକ କବିରାଜ ମହାଶୟଙ୍କ ଗୃହପ୍ରାଙ୍ଗଣରେ ବସିଥିଲା। ପ୍ରଥମ ଥର ପାଇଁ ଓଡ଼ିଶାର ଗଡ଼ଜାତ ଭିତରୁ କେତେଜଣ ଏକତ୍ର ବସି ଗଡ଼ଜାତ ବିଷୟରେ ଆଲୋଚନା କରିଥିଲୁ। ସମ୍ମିଳନୀରେ ଅବଶ୍ୟ କୌଣସି ପ୍ରସ୍ତାବ ଆଲୋଚିତ ହୋଇ ଗୃହୀତ ହୋଇ ନଥିଲା। ଗୋଟିଏ ସ୍ଥାୟୀ କମିଟି ଗଠନ କରିବା ହେଲା ସମ୍ମିଳନୀର ପ୍ରଧାନ କାର୍ଯ୍ୟ। ଆମ୍ଭମାନଙ୍କର ବିଚାରରେ ଆଇନ୍ ଗଢ଼ି ଅଧିକାର ଅଥବା କ୍ଷମତା ସୃଷ୍ଟିକରିବା ପ୍ରଥମ କାର୍ଯ୍ୟ। କୌଣସି ବ୍ୟକ୍ତିଗତ ମତାମତର କୌଣସି ମୂଲ୍ୟନାହିଁ। ଅନୁଷ୍ଠାନିକ ମତାମତ ହେଉଛି ମୂଲ୍ୟବାନ୍। ଅନୁଷ୍ଠାନ ସୃଷ୍ଟି ନ କଲେ ଆନୁଷ୍ଠାନିକ ଭାବରେ କଥା କହିବାର ଅଧିକାର ଆସିବ କୁଆଡୁ? ସୁତରାଂ ବୈଧାନିକ ଭାବରେ ଗଡ଼ଜାତ ପ୍ରଜାଙ୍କ ସକାଶେ କାର୍ଯ୍ୟ କରିବାପାଇଁ ପ୍ରତିନିଧିମୂଳକ ସଂଗଠନର ମୂଳଭିତ୍ତି ଆମ୍ଭେମାନେ ସ୍ଥାପନ କରିଥିଲୁ। ୧୯୩୧ ମସିହା ଜୁନମାସ ଶେଷ ଆଡ଼କୁ ପ୍ରଥମ ଥର ପାଇଁ ଓଡ଼ିଶା ଗଡ଼ଜାତ ପ୍ରଜାସମ୍ମିଳନୀର ପ୍ରଥମ ବୈଠକ ଏହିପରି ଭାବରେ କଟକ ସହରରେ ବସି ଗଡ଼ଜାତ ସମୂହର ବର୍ତ୍ତମାନ ପରିସ୍ଥିତି ଓ ଭବିଷ୍ୟତ ରୂପରେଖ ବିଷୟ ଆଲୋଚନା କରିଥିଲୁ। ଗଡ଼ଜାତ ଶାସନ ସମ୍ପୂର୍ଣ୍ଣ ଅନ୍ଧାରୀ ଶାସନ। ଆଇନ୍ କାନୁନ କିଛି ନାହିଁ ବୋଲି କହିଲେ ଚଳେ। ସଭା ସମିତି କରିବାର ଚିନ୍ତା ମଧ୍ୟ ସ୍ୱପ୍ନାତୀତ କଥା। ଶାସନ ବିଷୟରେ ପଦେ କଥା ରାଜ ଅପରାଧ ବୋଲି ବିବେଚିତ ହେଉଥିଲା। ଓଡ଼ିଶା ଦେଶ ବୋଲି ମାନଚିତ୍ରରେ ଯେଉଁ ରେଖା ଟଣା ଯାଇଥିଲା ତାହା ଗଡ଼ଜାତ ଓ ମୋଗଲବନ୍ଦୀ ନାମରେ ସାଧାରଣ ଲୋକେ ବୁଝୁଥିଲେ। ମୋଗଲବନ୍ଦୀରେ ରାଜନୈତିକ ଆନ୍ଦୋଳନ ହୋଇ ନୂତନ ଜାଗରଣ ସୃଷ୍ଟି ହୋଇଛି। ଏହି ନୂତନ ଜାଗରଣର ପ୍ରଭାବ ଗଡ଼ଜାତ ପ୍ରଜାସାଧାରଣଙ୍କ ଉପରେ ପଡ଼ିଛି। ଏହିପରି ନୂତନ ଆଲୋକ ଗଡ଼ଜାତର ପ୍ରଜାମାନେ ଦେଖିବାକୁ ପାଇଛନ୍ତି। ସେହି ନୂତନ ଆଲୋକ ରେଖାପାତ କିପରି ଲିଭି ନ ଯିବ ସେଥିପାଇଁ ଗଡ଼ଜାତ ପ୍ରଜାଙ୍କର ସଂଗଠନ ଆରମ୍ଭ କରିବାକୁ ପ୍ରଥମେ ମୁଁ କାର୍ଯ୍ୟ ଆରମ୍ଭ କରିଥିଲି। ସମାଜ କାଗଜର ସମ୍ପାଦକ ଶ୍ରୀ ରାଧାନାଥ ରଥଙ୍କ ସହଯୋଗରେ ଗଡ଼ଜାତ ପ୍ରଜାସମ୍ମିଳନୀର ପ୍ରଥମ ବୈଠକର

ମୂଳଭିତ୍ତି ସ୍ଥାପନ କରାଗଲା। ନିଖିଳ ଭାରତ ପ୍ରଜାସମ୍ମିଳନୀ ସହିତ ଏହି ଶିଶୁ ଅନୁଷ୍ଠାନକୁ ଯୋଗ କରିଦେଇ ଆମେ ଦୁଇଜଣ ଉକ୍ତ ଅନୁଷ୍ଠାନର ସ୍ଥାୟୀ କମିଟିର ସଭ୍ୟରୂପେ ଗୃହୀତ ହୋଇଥିଲୁ। ଉକ୍ତ ସ୍ଥାୟୀ କମିଟିର ସଭାପତି ଥିଲେ ଶ୍ରୀ ଜବାହାରଲାଲ ନେହେରୁ।

## କଟକରେ ଖଦଡ଼ଭଣ୍ଡାର ଉଦ୍‌ଘାଟନ

ଗଡ଼ଜାତ ପ୍ରଜାସମ୍ମିଳନୀ କାମ ଶେଷକରି ମୁଁ ଚମ୍ପାପୁର ଆଶ୍ରମକୁ ଫେରିଲି। ପୁରୀ କଂଗ୍ରେସ ଅଧିବେଶନ ପାଇଁ କାର୍ଯ୍ୟ କରୁଥିବାରୁ ଆଶ୍ରମ କାର୍ଯ୍ୟପ୍ରତି ବିଶେଷ ଦୃଷ୍ଟି ଦେଇପାରୁ ନାହିଁ। ବିଶେଷ ଜରୁରୀ କାମ ନ ଥିଲେ ଆଶ୍ରମକୁ ଆସୁନାହିଁ। କିନ୍ତୁ ଏଥର ଆଶ୍ରମରେ ଉପସ୍ଥିତ ହୋଇ ଜାଣିବାକୁ ପାଇଲି କାମ ସବୁ ଅଚଳ ଅବସ୍ଥାରେ ପହଞ୍ଚିଲାଣି। ଖଦଡ଼ ଦଶହଜାର ଟଙ୍କା ମୂଲ୍ୟର ବୁଣା ହୋଇ ଜମାହେଲାଣି। ବିକ୍ରୀ ନ ହେଲେ ସୂତାକଟା ଓ ଲୁଗାବୁଣା କାମ ବନ୍ଦ ହୋଇଯିବ। ଦୁଇଜଣ କର୍ମୀ ରହି ଖଦଡ଼ ବୁଲେଇ ବିକ୍ରୀ କରୁଥିଲେ। କଟକ ସହରରେ ମୁଁ ମଧ୍ୟ କାନ୍ଧରେ ବୋହି, ବୁଲି ବୁଲି ଖଦଡ଼ ବିକ୍ରୀ କରୁଥିଲି। ଲବଣ ସତ୍ୟାଗ୍ରହ ପୂର୍ବରୁ ସୂତା କଟାଇ ଖଦଡ଼ ବୁଣେଇ, ଖଦଡ଼କୁ ବୁଲି ବିକ୍ରୀ କରିବା ଥିଲା ପ୍ରଧାନ କାର୍ଯ୍ୟ। ଖଦଡ଼ କାନ୍ଧରେ ବୋହି ବିକ୍ରୀ କରିବାରେ କର୍ମୀର ମହତ୍ତ୍ୱ ବୃଦ୍ଧି ପାଉଥିଲା। ସମଗ୍ର ଭାରତରେ କଂଗ୍ରେସ କର୍ମୀମାନେ ଏପରି ଖଦଡ଼ ବିକ୍ରୀ କରିବା କାର୍ଯ୍ୟରେ ଆତ୍ମତୃପ୍ତି ଲାଭ କରୁଥିଲେ। କଂଗ୍ରେସର ନେତୃସ୍ଥାନୀୟ ବ୍ୟକ୍ତିମାନେ ମଧ୍ୟ ଏପରି ଭାବରେ ଖଦଡ଼ ବିକ୍ରୀ କରି ଖଦଡ଼ର ପ୍ରଚାର କରୁଥିଲେ। କାରଣ ଲୋକେ ଖଦଡ଼ ପିନ୍ଧିବାକୁ ଡରୁଥିଲେ ଏବଂ ଖଦଡ଼ ପିନ୍ଧିଲା ବ୍ୟକ୍ତି ଉପରେ ପୋଲିସର ଦୃଷ୍ଟି ପଡୁଥିଲା। ଖଦଡ଼ର ମୂଲ୍ୟ ମଧ୍ୟ ଅଧିକ ଥିଲା। ଖଦଡ଼ ତୁଳନାରେ ମିଲ୍ ଲୁଗା ଶସ୍ତା ଥିଲା। ଖଦଡ଼ ବିକ୍ରୀ କରିବା କଂଗ୍ରେସର ରଚନାତ୍ମକ କାର୍ଯ୍ୟରେ ଗୋଟିଏ ପ୍ରଧାନ କାର୍ଯ୍ୟ ଥିଲା। ଦିନରେ ପଚିଶ ପଚାଶ ଟଙ୍କା ଖଦଡ଼ ବିକ୍ରୀ କରି ପାରୁଥିଲେ ମନରେ ଅପୂର୍ବ ଆନନ୍ଦ ଜାତ ହେଉଥିଲା। ଦଶ ପନ୍ଦରଟଙ୍କା ମୂଲ୍ୟର ଖଦଡ଼ କିଣୁଥିବା ବ୍ୟକ୍ତିଙ୍କ ପ୍ରତି ହୃଦୟରେ ଅନୁରକ୍ତି ଭାବ ଜାଗି ଉଠୁଥିଲା।

କିନ୍ତୁ ଦଶହଜାର ଟଙ୍କାର ଖଦଡ଼ ବୁଲେଇ ବିକ୍ରୀ କରିବା ସମ୍ଭବ ନୁହେଁ। ଖଦଡ଼ କାର୍ଯ୍ୟରେ ବହୁତ କ୍ଷତି ସହିବାକୁ ପଡୁଥିଲା। ସୂତା କଟାଇ, ଖଦଡ଼ ବୁଣାଇବାରେ ଯେତେ ଖର୍ଚ୍ଚ ହୁଏ, ତାହା ଖଦଡ଼ ବାବଦରେ ହଜାରେ ବାରଶହ ଟଙ୍କା କ୍ଷତି ସହିବାକୁ ପଡ଼େ। ଦେଶରୁ ଚାନ୍ଦା ଉଠାଇ ଏହି କ୍ଷତିପୂରଣ ମୁଁ କରୁଥାଏ ଏବଂ ଖଦଡ଼ ଆମଦାନୀ ବୃଦ୍ଧି କରିବା ପାଇଁ ଖଦଡ଼ କାମ ସକାଶେ ମୂଳଧନକୁ ଅଧିକରୁ ଅଧିକ ବୃଦ୍ଧି କରୁଥାଏ। ପୁରୀ କଂଗ୍ରେସ ବେଳକୁ ଗାନ୍ଧୀସେବାଶ୍ରମ ଖଦଡ଼ କାମରେ ଦଶହଜାର ଟଙ୍କା ଚଳନ୍ତି କାର୍ଯ୍ୟରେ ଖଟେଉଛି। ପ୍ରଥମେ ପଚାଶଟଙ୍କା ଧରି କାର୍ଯ୍ୟ

ଆରମ୍ଭ କରିଥିଲି। ଆଜି ଚଳନ୍ତି ନଗଦ ମୂଳଧନ ଦଶହଜାର ଟଙ୍କା। ଏହାଛଡ଼ା ତନ୍ତ, ଅରଟ, ରଙ୍ଗ ଓ ଛପେଇ କାର୍ଯ୍ୟ ପାଇଁ ବିଭିନ୍ନ ଧରଣର କାଠ, ଖୋଦିତ କାଠର ବ୍ଲକସବୁ ପାଞ୍ଚହଜାର ଟଙ୍କାରୁ ଊର୍ଦ୍ଧ୍ୱ ସାମଗ୍ରୀମାନ କିଣାହୋଇ କାର୍ଯ୍ୟରେ ଲାଗିଛି। ସୁତରାଂ ଏସବୁ ପ୍ରତି ଆଖି ବୁଜି ଦେଇ ପୁରୀରେ କଂଗ୍ରେସ ଅଧିବେଶନ ପାଇଁ କେବଳ କାର୍ଯ୍ୟ କରିବା ଠିକ୍ ହେବନାହିଁ ବୋଲି ମତେ ବୋଧହେଲା। ଆଶ୍ରମର କର୍ମୀମାନଙ୍କ ସହିତ ପରାମର୍ଶ କରି କଟକ ସହରରେ ଖଦଡ଼ ବିକ୍ରୀ ପାଇଁ ଗୋଟିଏ ଖଦଡ଼-ଭଣ୍ଡାର ସ୍ଥାପନ କରିବାକୁ ସ୍ଥିର କଲି। କଟକ ସହରରେ ଚରଖା ସଂଘର ଖଦଡ଼ ଭଣ୍ଡାର ଅଛି। ସାଧାରଣ ଭାବରେ ଭଣ୍ଡାରଟିଏ ଖୋଲିଦେଲେ ଖଦଡ଼ ବିକ୍ରୀ ହୋଇଯିବ ନାହିଁ। ତେଣୁ ଭଣ୍ଡାରର ଉଦ୍‌ଘାଟନ କାର୍ଯ୍ୟକୁ ଗୋଟିଏ ଉତ୍ସବରେ ପରିଣତ କରିବାକୁ ହେବ। କାରଣ କଟକବାସୀଙ୍କ ଦୃଷ୍ଟି ଆକର୍ଷଣ କରିପାରିବା ଭଳି ଖଦଡ଼-ଭଣ୍ଡାର ଖୋଲା ନ ଗଲେ ଶୀଘ୍ର ଓ ସହଜରେ ଖଦି ବିକ୍ରୀ ହୋଇପାରିବ ନାହିଁ। ଶୀଘ୍ର ବିକ୍ରୀ ନ ହେଲେ କାମ ବନ୍ଦ ହୋଇଯିବ। ଜଣେ କୌଣସି ବିଶିଷ୍ଟ ବ୍ୟକ୍ତିଙ୍କ ଦ୍ୱାରା ଉଦ୍‌ଘାଟନ କ୍ରିୟା ସଂପାଦନ କରାଇବାକୁ କର୍ମୀମାନେ ସ୍ଥିର କଲେ। ସେତେବେଳେ ଓଡ଼ିଶା କଂଗ୍ରେସରେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓ ପଣ୍ଡିତ ନୀଳକଣ୍ଠ ଦାସ ଦୁଇଜଣ ଅଧିକ ଜଣାଶୁଣା ଓ ମାନ୍ୟାସ୍ପଦ ବ୍ୟକ୍ତି। ଆଶ୍ରମର କର୍ମୀମାନେ ପଣ୍ଡିତ ନୀଳକଣ୍ଠ ଦାସଙ୍କୁ ବାଛିଲେ। କାରଣ ସେ ହେଉଛନ୍ତି ଓଡ଼ିଶାର ରାଜନୈତିକ କ୍ଷେତ୍ରରେ ଜଣେ ପୁରୁଣା ଓ ମୁଖ୍ୟ ବ୍ୟକ୍ତି। ଓଡ଼ିଶାରେ କୌଣସି ସାଧାରଣ କାର୍ଯ୍ୟ ସଂପାଦନ କରିବା ପାଇଁ ତାହାଙ୍କୁ ମୁଖ୍ୟରୂପେ ବରଣ କରିବା ସୁନ୍ଦର ହେବ ଓ ଉଚିତ ମଧ୍ୟ। ଏହି ବିଷୟ ଉପରେ ଆଶ୍ରମର କର୍ମୀମାନଙ୍କ ସହିତ ବହୁତ ଆଲୋଚନା କରିବାକୁ ପଡ଼ିଥିଲା। କିନ୍ତୁ ମୁଁ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କୁ ବାଛିଲି ଓ ଶେଷରେ ମୋ ସହିତ ସମସ୍ତେ ଏକମତ ହୋଇଥିଲେ। ଆମ୍ଭମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ହେଉଛି, ଗାନ୍ଧୀ ସେବାଶ୍ରମ କାର୍ଯ୍ୟ ପ୍ରତି ଲୋକଦୃଷ୍ଟି ଆକର୍ଷଣ କରିବା। ଶୂନ୍ୟ ଓ ମହାଶୂନ୍ୟରୁ ଗାନ୍ଧୀସେବାଶ୍ରମ ଭଳି ଗୋଟିଏ ବିରାଟ ଅନୁଷ୍ଠାନ ଓଡ଼ିଶାରେ ମୁଣ୍ଡ ଟେକିଛି। ଉତ୍କଳଭୂମିରେ କଂଗ୍ରେସ କର୍ମୀମାନଙ୍କ ଦ୍ୱାରା କୌଣସି କ୍ଷେତ୍ରରେ ସେପରି ଗୋଟିଏ ସୁଦୃଢ଼ ଅନୁଷ୍ଠାନ ଗଢ଼ାଯାଇ ପାରି ନାହିଁ। ଏ ପର୍ଯ୍ୟନ୍ତ ଲୋକ ଅନ୍ତରାଳରେ ଗାନ୍ଧୀ ସେବାଶ୍ରମ ରହିଛି ବୋଲି କହିଲେ ଚଳେ। ଉତ୍କଳ କଂଗ୍ରେସର ଜଣେ ବିଶିଷ୍ଟ ବ୍ୟକ୍ତିଙ୍କ ଦ୍ୱାରା ଖଦି ଭଣ୍ଡାର ଉଦ୍‌ଘାଟନ କାର୍ଯ୍ୟ ସଂପାଦନ କରାଇଲେ ସେ ଗାନ୍ଧୀସେବାଶ୍ରମର ବିଶେଷ ପରିଚୟ ଦେଇ ତାହାର ଖଦଡ଼ କିଣିବାକୁ ଜନସାଧାରଣଙ୍କୁ ଆହ୍ୱାନ କରିବେ; ତେବେ ଖଦଡ଼ ବିକ୍ରୀକରିବା ସହଜ ହେବ, କର୍ମୀମାନେ କାର୍ଯ୍ୟ କରିବାକୁ ଉତ୍ସାହିତ ହେବେ। ପଣ୍ଡିତ ନୀଳକଣ୍ଠ ଦାସ ଏହି କାର୍ଯ୍ୟ ଭଲଭାବରେ କରିପାରିଥାନ୍ତେ, ଏଥିରେ ସନ୍ଦେହ ନାହିଁ। ନୀଳକଣ୍ଠ ବାବୁ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ପୁରୁଣା ସହକର୍ମୀ। କଲିକତାରେ

ପୋଲିସ ମୋତେ ଖୋଜୁଥିବାବେଳେ ସେଠାରୁ ପଳାଇ ଆସି କେତେକ ମାସ ସତ୍ୟବାଦୀରେ ଦାସେ ଆପଣଙ୍କ ସହିତ ରହିଥିଲି। ଯେଉଁମାନେ ସେତେବେଳର ଦାସେ ଆପଣଙ୍କ ସହକର୍ମୀ ସେମାନଙ୍କ ସହିତ ମୋର ଘନିଷ୍ଠ ସମ୍ବନ୍ଧ ସ୍ଥାପିତ ହୋଇଥିଲା। ଦଶପଲ୍ଲା ମେଳି ସମୟରେ ଦାସେ ଆପଣଙ୍କ ପରାମର୍ଶ ଲୋଡ଼ିଲାବେଳେ ନୀଳକଣ୍ଠବାବୁ ଓ ଗୋଦାବରୀଶବାବୁଙ୍କ ଠାରୁ ସ୍ନେହ ସହାନୁଭୂତି ପାଇ ପାରିଥିଲି। ୧୯୨୧ ମସିହାର ପୁରୀ ଦୁର୍ଭିକ୍ଷ ଅଞ୍ଚଳରେ ଠକ୍କରବାପାଙ୍କ ସହିତ କାମ କରୁଥିବା ବେଳେ ସତ୍ୟବାଦୀ ସ୍କୁଲର ଶିକ୍ଷକବୃନ୍ଦଙ୍କ ସହିତ ଘନିଷ୍ଠ ସମ୍ବନ୍ଧ ଦୃଢ଼ୀଭୂତ ହୋଇଥିଲା। ଦାସେ ଆପଣେ ଜେଲରେ ଥିବା ସମୟରେ ୧୯୨୩ ମସିହାରେ ସତ୍ୟବାଦୀ ସ୍କୁଲ ପାଇଁ ପାଞ୍ଚ ହଜାରଟଙ୍କା ସାହାଯ୍ୟ ବମ୍ବେଇରୁ ମୁଁ କରାଇ ଦେଇଥିଲି। ଏହିପରି ନାନା କାରଣରୁ ନୀଳକଣ୍ଠବାବୁ ପ୍ରଭୃତିଙ୍କୁ ଦେଖିଲେ ମୁଁ ଆପଣାର ଲୋକ ବୋଲି ମନେ କରେ। ରାଜନୈତିକ ମତବାଦ ସହିତ ଘନିଷ୍ଠ ସଂପର୍କ ନ ଥିଲେ ମଧ୍ୟ ବ୍ୟକ୍ତିଗତ ସଂପର୍କରେ କୌଣସି ଆଞ୍ଚ କେବେ ଆସିନାହିଁ। ସୁତରାଂ ନୀଳକଣ୍ଠବାବୁଙ୍କୁ ଗାନ୍ଧୀସେବାଶ୍ରମର ଖଦଡ଼ ଭଣ୍ଡାର ଉଦ୍‌ଘାଟନ କରିବାକୁ ଡାକିଥିଲେ ସେ ଆମର ଉଦ୍ଦେଶ୍ୟ ସାଧନ କରିପାରିଲା ଭଳି ଅନେକ କଥା ନିଶ୍ଚୟ କହିଥାନ୍ତେ ଏବଂ ତାଙ୍କର ଉଦ୍‌ବୋଧନ ବାଣୀ ଗାନ୍ଧୀସେବାଶ୍ରମ ପ୍ରତି ଲୋକଚକ୍ଷୁ ଆକର୍ଷଣ କରିପାରିଥାନ୍ତା ଏଥିରେ ତିଳେମାତ୍ର ସନ୍ଦେହ ନ ଥିଲା। କିନ୍ତୁ ମୁଁ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କୁ ମନୋନୀତ କରିଥିଲି।

ଉତ୍କଳ କଂଗ୍ରେସରେ ପରସ୍ପର ପ୍ରତି ସ୍ନେହଭାବ ଆଉ ନାହିଁ। ଦଳଗତ ମନୋଭାବ ପୂରାମାତ୍ରରେ ଉତ୍କଳ କଂଗ୍ରେସକୁ ଗ୍ରାସ କଲାଣି। ପୁରୀ କଂଗ୍ରେସର ଅଭ୍ୟର୍ଥନା ସମିତିର ଚେୟାରମ୍ୟାନ ପଦପାଇଁ ମୁଁ ପ୍ରକାଶ୍ୟରେ ଶ୍ରୀ ନୀଳକଣ୍ଠ ଦାସଙ୍କ ସମର୍ଥନ କରିଛି। ଏଥିପାଇଁ କଟକ ଜିଲାର ମୁଖ୍ୟକର୍ମୀମାନଙ୍କ ମଧ୍ୟରୁ ଅନେକେ ମୋ ପ୍ରତି ବିତଶ୍ରଦ୍ଧ ହେବାର ମୁଁ ଜାଣେ। କଟକ ଜିଲ୍ଲାରେ ମୋର କର୍ମକ୍ଷେତ୍ର। ପ୍ରାଦେଶିକ ରାଜନୈତିକ କ୍ଷେତ୍ରରେ ମତାନ୍ତର ଅବା ମନାନ୍ତର ଘଟିଥିଲେ ମଧ୍ୟ ଜିଲା ଭିତରେ ତାହାର ବିଷମୟ ପରିଣାମ ନ ଘଟୁ ବୋଲି ମୋର ଇଚ୍ଛା। ଯେତେ ଯାହା ଘଟିଲେ ମଧ୍ୟ ଦଳଗତ ରାଜନୀତିଦ୍ୱାରା ପ୍ରଭାବିତ ହୋଇ ଗୋପବାବୁ କିଛି ଚିନ୍ତା କରୁଥିବେ ବୋଲି ମୁଁ ବିଶ୍ୱାସ କରିନାହିଁ। ସୁତରାଂ ତାଙ୍କୁ ନ ଲୋଡ଼ି, ନୀଳକଣ୍ଠବାବୁଙ୍କୁ ଏ କ୍ଷେତ୍ରରେ ଡାକିଲେ, ଆମ୍ଭେମାନେ ଅଧିକ ମାତ୍ରାରେ ଜିଲ୍ଲା ଭିତରେ କର୍ମୀମାନଙ୍କଠାରୁ ସ୍ନେହ ସହାନୁଭୂତି ହରାଇବା। ଏହିକଥା ବୁଝାଇ ଦେବାରୁ ଆଶ୍ରମର ସମସ୍ତ କର୍ମୀ ମୋ ସହିତ ଏକମତ ହୋଇଥିଲେ।

କଟକ ସହରର ଚୌଧୁରୀବଜାର ଡାକଘର ନିକଟରେ ଭଣ୍ଡାର ଖୋଲିବା ପାଇଁ ଗୋଟିଏ ଘର ଭଡ଼ା ନିଆଗଲା। ଦୁଇହଜାର ଟଙ୍କା ମୂଲ୍ୟର ଖଦଡ଼ ଭଣ୍ଡାର ଘରେ ରଖାଗଲା। ସହରର ବହୁ ବିଶିଷ୍ଟ ବ୍ୟକ୍ତି ନିମନ୍ତ୍ରିତ ହୋଇ ଉପସ୍ଥିତ ହୋଇଥିଲେ।

ଯଥା ସମୟରେ ମୁଁ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କୁ ଭଣ୍ଡାର ଉଦ୍‌ଘାଟନକ୍ରିୟା ସଂପନ୍ନ କରିବାକୁ ଆହ୍ୱାନ କଲି। ଗୋପବାବୁ ଉପସ୍ଥିତ ଭଦ୍ର ବ୍ୟକ୍ତିମାନଙ୍କ ମଧ୍ୟରୁ ଉଠିଆସି ଭଣ୍ଡାର ସମ୍ମୁଖରେ ଠିଆହେଲେ। ଭଣ୍ଡାର ଖୋଲିବାକୁ ଯାଇ ସେ କହିଥିଲେ, ''ଗୋବିନ୍ଦ ମିଶ୍ରେ କେତେଗୁଡ଼ିଏ ଖଦଡ଼ ପ୍ରସ୍ତୁତ କରିଛନ୍ତି। ସେହି ଖଦଡ଼ ବିକ୍ରୀକରିବା ଉଦ୍ଦେଶ୍ୟରେ ଏଠି ଭଣ୍ଡାରଟି ଖୋଲିବାକୁ ଇଚ୍ଛାକରି ଆପଣମାନଙ୍କୁ ଡାକିଛନ୍ତି। ଭଣ୍ଡାର ଦ୍ୱାରା ଉଦ୍‌ଘାଟନ କରିବାକୁ ମତେ ଅନୁରୋଧ କରିଛନ୍ତି। ମୁଁ ଭଣ୍ଡାରଟିର ଦ୍ୱାର ଖୋଲି ଦେଉଛି। ଆପଣମାନେ ସମସ୍ତେ ଏଣିକି ତାଙ୍କର ଖଦଡ଼ କିଣନ୍ତୁ ବୋଲି ତାଙ୍କର ଇଚ୍ଛା। ମୁଁ ଅଧିକ ଆଉ କଣ କହିବି। ତାଙ୍କର ଖଦଡ଼ ବିକ୍ରୀ ହେଉ, ଏହି ଇଚ୍ଛା ମୁଁ ପ୍ରକାଶ କରି ଦ୍ୱାର ଖୋଲୁଛି।'' ଏତିକି କହି ଗୋପବାବୁ ବସିପଡ଼ିଲେ। ସେଦିନ ନଗଦ ତିନିଶହ ଟଙ୍କାର ଖଦଡ଼ ବିକ୍ରୀ ହୋଇଥିଲା। ନିମନ୍ତ୍ରିତ ଭଦ୍ରବ୍ୟକ୍ତି ଏବଂ ଦେଖଣାହାରୀଙ୍କ ମଧ୍ୟରୁ ଅନେକ କିଛି କିଛି ଖଦଡ଼ କିଣିଥିଲେ। ଖଦଡ଼ କିଛି ବିକ୍ରୀହେଲା ସତ, କିନ୍ତୁ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଦୁଇଧାଡ଼ିରେ ତାଙ୍କ ବକ୍ତବ୍ୟ ଶେଷ କରିଦେବା ମତେ କିମ୍ବା କର୍ମୀମାନଙ୍କୁ କାହାରିକୁ ଭଲ ଲାଗିଲା ନାହିଁ। ଏଥିପାଇଁ ସମସ୍ତେ ମତେ ଦୋଷ ଦେଇଥିଲେ। ସାଧାରଣ କର୍ମୀ ସବୁବେଳେ ଦେଶର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କଠାରୁ ଦୁଇପଦ ଉତ୍ସାହବାଣୀ ଶୁଣିବାକୁ ଆଶା କରନ୍ତି। ଗୋପବାବୁଙ୍କ ବକ୍ତବ୍ୟରେ ଆଶ୍ରମ କର୍ମୀମାନଙ୍କୁ ଉତ୍ସାହିତ କରିବା ଭଳି କୌଣସି କଥା ନ ଥିଲା। ତେଣୁ ସେମାନେ ବିଶେଷ ଭାବରେ ଦୁଃଖିତ ହୋଇଥିଲେ। ସେମାନଙ୍କ ମନ ଦବିଗଲା ପ୍ରାୟ ମତେ ଜଣାଗଲା। ସଭାସମିତିରେ ବେଶି କଥା କହିବା ଗୋପବାବୁଙ୍କ ସ୍ୱଭାବ ନୁହେଁ। ତେବେ ତାଙ୍କର ମନରେ ଗୋଟାଏ ଭ୍ରାନ୍ତଧାରଣା ସ୍ଥାନ ପାଇଥିବାର ମୁଁ ଜାଣେ। ଆଶ୍ରମ ପାଇଁ କୋଠାଘର କରିବା ସେ ପସନ୍ଦ କରିନାହାନ୍ତି ଏବଂ ଓଡ଼ିଶାରେ କିଛି କାର୍ଯ୍ୟ କରିବାପାଇଁ ଓଡ଼ିଶା ବାହାରୁ ଅର୍ଥ ଆଣିବା ତାଙ୍କ ଦୃଷ୍ଟିରେ ଓଡ଼ିଶାରେ ପାପ ଉର୍ଜିକରିବା ସଙ୍ଗେ ସମାନ। ଏପରି ମତାମତ ସେ ଏକାଧିବାର ପ୍ରକାଶ କରିଥିବାର ଜାଣି ମଧ୍ୟ ମୁଁ ତାଙ୍କୁ ଖଦଡ଼ ଭଣ୍ଡାର ଉଦ୍‌ଘାଟନ କାର୍ଯ୍ୟ ସମାଧାନ କରିବାକୁ ନିମନ୍ତ୍ରଣ କରିଥିଲି। କାରଣ ମୁଁ ଜାଣିଥିଲି, ତାଙ୍କର ଏ ପ୍ରକାର ଭ୍ରମଧାରଣା ଚିରସ୍ଥାୟୀ ହୋଇ ନପାରେ। ଗୋପବାବୁଙ୍କୁ ଯେଉଁମାନେ ଉତ୍ତମରୂପେ ଜାଣନ୍ତି ନାହିଁ ତାଙ୍କୁ ଭୁଲ ବୁଝିବା ସେମାନଙ୍କ ପକ୍ଷରେ ସହଜ ହୋଇପାରେ। ସେ ଜଣେ ନିରାଡ଼ମ୍ବର ପ୍ରକୃତିର ବ୍ୟକ୍ତି। ନିଜକୁ ସମସ୍ତଙ୍କଠାରୁ ଦୂରରେ ରଖିବାକୁ ସବୁବେଳେ ଚେଷ୍ଟା କରିବାଦ୍ୱାରା ତାଙ୍କର ସରଳ ଓ ନିରାଡ଼ମ୍ବର ସ୍ୱଭାବ କେହି ପସନ୍ଦ କରିପାରନ୍ତି ନାହିଁ। ସେ ସାଧାରଣ କର୍ମୀଙ୍କର ସୁଖ ଦୁଃଖରେ ଜଡ଼ିତ ହେବାକୁ ପସନ୍ଦ କରୁ ନ ଥିବାରୁ, ଅନ୍ୟର କାମରେ କଣ ମହତ୍ତ୍ୱ ଅଛି, ତାହା ସେ ହୃଦ୍‌ବୋଧ କରୁଛନ୍ତି ବୋଲି ତାଙ୍କ ବକ୍ତବ୍ୟରୁ ମୋର ବିଶ୍ୱାସ ହେଲା ନାହିଁ।

କୌଣସି କଂଗ୍ରେସ କର୍ମୀ କେଉଁଠାରେ କିଛି ସଂଗଠନ କାର୍ଯ୍ୟ ଆରମ୍ଭ କଲେ କଂଗ୍ରେସ ଅନୁଷ୍ଠାନର ପ୍ରତ୍ୟେକ ନେତୃସ୍ଥାନୀୟ ବ୍ୟକ୍ତିଙ୍କର ସେପରି କର୍ମୀ ପ୍ରତି କିଛି କର୍ତ୍ତବ୍ୟ ଅଛି। ଯେ କୌଣସି କର୍ମୀ, କୌଣସିଠାରେ କିଛି କାମ କଲେ ସେହି କାର୍ଯ୍ୟର ପ୍ରଣାଳୀ ଓ ପରିମାଣ ଉକ୍ତ କର୍ମୀର ନିଷ୍ଠା ଓ ସାଧନାର ମାପକାଠି, ଏହା ସତ୍ୟ। ଏଥିରେ କୌଣସି ସନ୍ଦେହ ନାହିଁ। କିନ୍ତୁ ସେହି କର୍ମାନୁଷ୍ଠାନ କୌଣସି କର୍ମୀର ବ୍ୟକ୍ତିଗତ ସାଧନାର ପରିଣାମକୁ ସୂଚିତ କରି ନପାରେ। ଦେଶର ସମଷ୍ଟିଗତ ରାଜନୈତିକ ଜୀବନର ଆଭାସ କେବଳ ଉକ୍ତ କର୍ମୀର କାର୍ଯ୍ୟରେ ପ୍ରତିଭାତ ହୁଏ। ସୁତରାଂ କର୍ମୀର କର୍ମ ଦେଶ ଓ ସମାଜର ପ୍ରଗତିର ସୂଚକ ଓ ପରପୂରକ। କୌଣସି କାର୍ଯ୍ୟରେ ବ୍ୟକ୍ତିଗତ ଭାବରେ କୌଣସି କର୍ମୀର ଅହଂକାର ପ୍ରଦର୍ଶନ କରିବା ସ୍ଥାନ ନାହିଁ। ଅନୁଷ୍ଠାନ ଭିତରେ ପ୍ରତ୍ୟେକର କାର୍ଯ୍ୟ ପ୍ରତ୍ୟେକ ବ୍ୟକ୍ତିକୁ ବଳ ଦେବାର କଥା। କିନ୍ତୁ ଏହି ସତ୍ୟ ଓଡ଼ିଶାର କଂଗ୍ରେସ ଅନୁଷ୍ଠାନ ଭିତରେ କେତେଜଣ ଉପଲବ୍ଧି କରି ପାରୁଛନ୍ତି ତାହା ବୁଝିବା କଠିନ। ଗୋପବାବୁଙ୍କ ବକ୍ତବ୍ୟର ଉଣାଧିକ୍ୟରେ କିଛି ବିଶେଷ ପାର୍ଥକ୍ୟ ନାହିଁ। କଂଗ୍ରେସର ବଡ଼ ସାନ ପ୍ରତ୍ୟେକ କର୍ମୀର ମନୋବୃତ୍ତି ହେଉଛି ପ୍ରଧାନ ପ୍ରଣିଧାନର ବିଷୟ। ଓଡ଼ିଶାରେ କେହି କାହାର କାର୍ଯ୍ୟକୁ ନିଜର ସହକର୍ମୀର କାର୍ଯ୍ୟବୋଲି ଭାବି ପାରୁନାହାନ୍ତି। କୌଣସି କର୍ମୀର କାର୍ଯ୍ୟରେ କୌଣସି ଦୋଷ ତ୍ରୁଟି ଘଟୁଥିବାର ଜାଣିଲେ ଅବା ଶୁଣିଲେ ତାହାର ସତ୍ୟାସତ୍ୟ ଅନୁସନ୍ଧାନ କରି ଉକ୍ତ କର୍ମୀକୁ ସହକର୍ମୀ ଭାବରେ ସାହାଯ୍ୟ କରିବାର ମନୋବୃତ୍ତି କାହାରି ନାହିଁ। କେହି କାହାର କାର୍ଯ୍ୟକୁ ଶୁଭ ଦୃଷ୍ଟିରେ ଦେଖୁନାହାନ୍ତି। ଲୋକଦୃଷ୍ଟି ଆକର୍ଷଣ କଲା ଭଳି ପଦେ କଥା କହିବାକୁ କାହାରି ମନରେ ଆଗ୍ରହ ଆସୁନାହିଁ। କେହି କିଛି କାର୍ଯ୍ୟ କଲେ, ଲୋକଦୃଷ୍ଟିରେ ତାକୁ ତଳକୁ ଖସେଇ ଦବାକୁ କେହି ଦ୍ୱିଧା ବୋଧ କରୁନାହାନ୍ତି। ଏହି କାରଣରୁ ଦାସେ ଆପଣଙ୍କ ସଦୃଶ ମହାନ୍ ପୁରୁଷ ମଧ୍ୟ ବ୍ୟଥିତ ହୃଦୟରେ କାନ୍ଦି କାନ୍ଦି ତାଙ୍କ ପ୍ରାଣବାୟୁ ଉଡ଼ି ଯାଇଥିବା କଥା ପୂର୍ବରୁ ପ୍ରକାଶ କରିଛି। ଉତ୍କଳର ସାଧାରଣ ଜୀବନରେ ଏ ପ୍ରକାର ମନୋବୃତ୍ତି ପରିବର୍ତ୍ତନ କେବେ ଘଟିବ ତାହା ଈଶ୍ୱରଙ୍କୁ ଗୋଚର। ଏହିପ୍ରକାର କେତେକ କଥା ଶୁଣାଇ ମୁଁ କର୍ମୀମାନଙ୍କୁ ମନପ୍ରାଣ ଦେଇ କାମ କରିବାପାଇଁ ଉତ୍ସାହିତ କରିଥିଲି। କାମର ଅଚଳ ଅବସ୍ଥା ଦୂରକଲେ ଆଉ ହଜାରେ ଟଙ୍କା ଦେଇ ପୁରୀ କଂଗ୍ରେସ କାମ କରିବାପାଇଁ ଆଶ୍ରମ ଛାଡ଼ିଲି।

କରାଚୀଠାରେ ବାର୍ଷିକ ଅଧିବେଶନରେ କଂଗ୍ରେସ ଗାନ୍ଧୀ-ଇରଉଇନ୍ ଚୁକ୍ତିକୁ ସମର୍ଥନ କଲା। ଏହି ଚୁକ୍ତିର ସର୍ତ୍ତାନୁସାରେ ବିଲାତରେ ବସୁଥିବା ଗୋଲଟେବୁଲ ସମ୍ମିଳନୀର ଦ୍ୱିତୀୟ ବୈଠକରେ କଂଗ୍ରେସ ଯୋଗଦାନ କରିବାର କଥା। କିନ୍ତୁ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଭେଦଭାବ ଦୂର ନ ହେଲେ ବିଲାତ ଯାଇ କୌଣସି ସମ୍ମିଳନୀରେ

ଯୋଗଦେବା ଗାନ୍ଧୀଜୀଙ୍କ ଇଚ୍ଛା ନୁହେଁ। ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ମେଳ ଆଣିବାକୁ ବହୁ ଚେଷ୍ଟା କରାଗଲା। କାହିଁରେ କିଛି ଫଳ ଫଳିଲା ନାହିଁ। ହିନ୍ଦୁମୁସଲମାନ ପ୍ରଶ୍ନକୁ ମୁଖ୍ୟ ପ୍ରତିବନ୍ଧକ ରୂପେ ଠିଆ କରେଇବା ଉଚିତ ନୁହେଁ ବୋଲି ଅନେକଙ୍କର ମତାମତ ପ୍ରକାଶ ପାଇଲା। ପୁଣି ରାଜନୈତିକ ପରିସ୍ଥିତି ଦେଶରେ ଯେପରି ହେବାର ସେପରି ହେଉନାହିଁ। ଚୁକ୍ତି ସର୍ତ୍ତକୁ ମାନି କାର୍ଯ୍ୟ କରିବାକୁ ସରକାରୀ କର୍ମଚାରୀବୃନ୍ଦ ପ୍ରସ୍ତୁତ ନ ଥିଲା ପରି ଜଣାପଡୁଛି। ଚୁକ୍ତି ଖିଲାପ କାର୍ଯ୍ୟମାନ ସର୍ବତ୍ର ସେମାନେ କରୁଛନ୍ତି। ସୀମାନ୍ତ ପ୍ରଦେଶରେ ମନମୁଖୀ ଶାସନ ଚାଲିଛି। ଶ୍ରୀ ଜବାହାରଲାଲ ନେହେରୁ ସେଠାକୁ ଯିବାକୁ ଅନୁମତି ମିଳିଲା ନାହିଁ। ମହାତ୍ମାଗାନ୍ଧୀଙ୍କୁ ମଧ୍ୟ ସୀମାନ୍ତ ପ୍ରଦେଶ ପ୍ରବେଶ କରିବାକୁ ମନା କରାଗଲା– ଯୁକ୍ତ ପ୍ରଦେଶର ଅବସ୍ଥା କହିଲେ ନ ସରେ। କୃଷକମାନଙ୍କର ଅବସ୍ଥା ବିଚାରକରି ଖଜଣା ଛାଡ଼ିଦେବାର କଥା ଚୁକ୍ତି ସର୍ତ୍ତରେ ଅଛି। କିନ୍ତୁ ଅବିଚାର ଭାବରେ ସେଠାରୁ ବଳପୂର୍ବକ ଖଜଣା ଆଦାୟ କରାଯାଉଥିବାରୁ ଅବସ୍ଥା ଗୁରୁତର ଆକାର ଧାରଣ କରୁଛି। କହିଲେ ଓଲଟା କଂଗ୍ରେସ ଉପରେ ଚୁକ୍ତିଭଙ୍ଗର ଦୋଷ ଆରୋପ କରାଯାଉଛି।

ଏହିପରି ଜଟିଳ ପରିସ୍ଥିତିର ବିଚାର କରିବାକୁ ବମ୍ବେଇରେ ଜୁଲାଇ ୭ ତାରିଖ ଦିନ କଂଗ୍ରେସ କାର୍ଯ୍ୟକାରୀ ସମିତିର ବୈଠକ ବସିଲା। ସରକାରଙ୍କ ପରେ ଚୁକ୍ତିଭଙ୍ଗ କରୁଥିବା ଦୋଷ ଆରୋପ କରି ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା। ଚୁକ୍ତିଭଙ୍ଗ କରାଯାଉଥିବା କେତେକ ଦୃଷ୍ଟାନ୍ତ ଉପଯୁକ୍ତ ପ୍ରମାଣ ସହକାରେ ଉଲ୍ଲେଖ କରି ଖଣ୍ଡିଏ ରିପୋର୍ଟ ସଂକଳନ କରାଗଲା। ଉକ୍ତ ରିପୋର୍ଟ ଖଣ୍ଡିକ ଧରି ଗାନ୍ଧୀଜୀ ବଡ଼ଲାଟ ଲର୍ଡ୍ ୱେଲିଙ୍ଗଡ଼ନ୍‌ଙ୍କ ସହିତ ଦେଖା କରିଥିଲେ। ତାହାଙ୍କ ସହିତ ଆଲୋଚନା କରି ଗାନ୍ଧୀଜୀ ବୁଝାଇଥିଲେ, ଚୁକ୍ତି ସର୍ତ୍ତ ମାନି କଂଗ୍ରେସ ସତ୍ୟାଗ୍ରହ ସ୍ଥଗିତ ରହିଛି ସତ୍ୟ, କିନ୍ତୁ ସେଥିପାଇଁ ସରକାରୀ କର୍ମଚାରୀଙ୍କ ମନଇଚ୍ଛା ଶାସନ ଦେଖି କଂଗ୍ରେସ ମୂକସାକ୍ଷୀ ବନିବାକୁ ଇଚ୍ଛା କରେନାହିଁ। ଯୁକ୍ତି ଓ ତର୍କ ବଳରେ (Argument and negotiation), ସ୍ୱରାଜ୍ୟ ହାସଲ କରିବାକୁ ଲଢ଼େଇ ବନ୍ଦକରି ଚୁକ୍ତି ସର୍ତ୍ତରେ କଂଗ୍ରେସ ସ୍ୱୀକାର କରିଛି। ସରକାର ଯଦି ଚୁକ୍ତି ସର୍ତ୍ତାନୁସାରେ କାର୍ଯ୍ୟ ନ କରନ୍ତି ତେବେ କଂଗ୍ରେସ ତାହାର ନିଜର ପନ୍ଥା ଅବଲମ୍ବନ କରିବ। ତାହାହେଲେ ଗୋଲଟେବୁଲ ସମ୍ମିଳନୀରେ ଯୋଗଦେବା ପ୍ରଶ୍ନ ଆଉ ଉଠି ନପାରେ।

କିନ୍ତୁ କଂଗ୍ରେସ ସହଯୋଗ ନ କଲେ ଭାରତର ରାଜନୈତିକ ପ୍ରଶ୍ନ ସମାଧାନ କରିବାକୁ ବିଟ୍ରିଶ ସରକାର ଯେଉଁ ଖେଳ ଖେଳୁଛନ୍ତି ତାହାର ଗୁମର ପଦାରେ ପଡ଼ିଯିବ। ସୁତରାଂ ଭାରତର ଗୋରା ସିଭିଲିୟାନ୍ କର୍ମଚାରୀବୃନ୍ଦ ସନ୍ଧିସର୍ତ୍ତ ଅବମାନନା କରିବାକୁ ନାନା ଷଡ଼ଯନ୍ତ୍ର କରୁଥିଲେ ମଧ୍ୟ ବଡ଼ଲାଟ ଲର୍ଡ୍ ୱେଲିଙ୍ଗଡ଼ନ୍ ପ୍ରକାଶ୍ୟରେ ସେମାନଙ୍କୁ ସମର୍ଥନ କରିପାରୁ ନାହାନ୍ତି। କଂଗ୍ରେସ ସନ୍ଧିସର୍ତ୍ତକୁ ମାନି ଚଳିଲେ, ସରକାର

କଦାପି ସର୍ତ୍ତ ଭଙ୍ଗ କଲାଭଳି କୌଣସି କାର୍ଯ୍ୟ କରିବେ ନାହିଁ ବୋଲି ବଡ଼ଲାଟ ସାହେବ ନିର୍ଭର ଜବାବ ପ୍ରଦାନ କଲେ। ବଡ଼ଲାଟଙ୍କ ସହିତ ଆଲୋଚନା କରି ଗାନ୍ଧୀଜୀ ଆଉ ଗୋଟିଏ କଥା ସ୍ପଷ୍ଟ କରିଦେଲେ। କଂଗ୍ରେସରୁ ବିଲାତ ଗୋଲଟେବୁଲ ସମ୍ମିଳନୀରେ ଯୋଗଦେବାକୁ ବଡ଼ଲାଟ ସାହେବ ନିଜ ଇଚ୍ଛାନୁସାରେ ଜଣେ କିମ୍ବା ଦୁଇଜଣ ପ୍ରତିନିଧି ମନୋନୀତ କରିବାର କଥା। କିନ୍ତୁ କଂଗ୍ରେସ ଯାହାକୁ ବାଛିବ, ବଡ଼ଲାଟ କେବଳ ତାହାକୁ ହିଁ ମନୋନୀତ କରିବେ। ଏ ବିଷୟରେ ବଡ଼ଲାଟଙ୍କର କୌଣସି ଆପତ୍ତି ଗ୍ରହଣ କରାଯିବ ନାହିଁ।

ମହାତ୍ମାଗାନ୍ଧୀ ସିମଲାରୁ ପ୍ରତ୍ୟାବର୍ତ୍ତନ କଲେ। ବଡ଼ଲାଟ ସାହେବଙ୍କ ପ୍ରତିଶ୍ରୁତି ପାଳିତ ହେଉଥିବାର କିଛି ଲକ୍ଷଣ ଦେଖାଗଲା ନାହିଁ। ସରକାର କଂଗ୍ରେସକୁ ଏବଂ କଂଗ୍ରେସ ମଧ୍ୟ ସରକାରକୁ ସନ୍ଧିସର୍ତ୍ତ ଭଙ୍ଗ କରୁଥିବାର ଦୋଷାରୋପ କରି ବାରମ୍ବାର ଚିଠିପତ୍ରର ଆଦାନ ପ୍ରଦାନ ଚାଲିଲା। ଦୁର୍ଭାଗ୍ୟବଶତଃ ଏତିକିବେଳେ ଦେଶରେ ହିଂସାତ୍ମକ କାଣ୍ଡ ସବୁ ଘଟିବାକୁ ଆରମ୍ଭ କଲା। ବମ୍ବେଇର ଲାଟ ନିମନ୍ତ୍ରିତ ହୋଇ ପୁନାର ପ୍ରସିଦ୍ଧ ଫର୍ଗୁସନ କଲେଜ ପରିଦର୍ଶନ କରିବାକୁ ଯାଇଥିଲେ। କଲେଜ ପରିଦର୍ଶନ କରୁଥିବା ସମୟରେ କଲେଜର ଜନୈକଛାତ୍ର ଲାଟସାହେବଙ୍କ ଉପରକୁ ଗୁଳି ଚଳାଇଲା। ଲାଟ ସାହେବ ଅଳ୍ପକେ ରକ୍ଷା ପାଇଗଲେ। ଏହି ଘଟଣାର ଏକ ସପ୍ତାହ ପରେ କଲିକତାରେ ଆଲିପୁର ଜିଲ୍ଲା ଜଜ୍ ସାହେବଙ୍କୁ ହତ୍ୟା କରାଗଲା। ମେଦିନୀପୁରରେ ଜିଲ୍ଲା ମାଜିଷ୍ଟ୍ରେଟ ଜଣକ ପରେ ଜଣକୁ ହତ୍ୟା କରାଗଲା। ଏହି ହତ୍ୟାକାଣ୍ଡରେ କଲିକତା ଗୋରା ଅଧିବାସୀ ଉତ୍ତ୍ୟକ୍ତ ହୋଇ ଉଠିଲେ। ଏହି ହିଂସାତ୍ମକ କାଣ୍ଡ ଦମନ କରିବାକୁ କଠୋର ନୀତି ଅବଲମ୍ବନ କରିବାକୁ ସେମାନେ ଦାବୀ କରିଥିଲେ।

ଦେଶରେ ଗତି କୁଆଡ଼କୁ କିଛି ବୁଝିହେଲା ନାହିଁ। ଏପରି ପରିସ୍ଥିତିରେ ମୋର ମନ ଚଞ୍ଚଳ ହୋଇଉଠିଲା। ଦେଶରେ ରାଜନୈତିକ ପରିସ୍ଥିତି ସବୁବେଳେ ଆମ୍ଭମାନଙ୍କ କାର୍ଯ୍ୟ ଓ ଚିନ୍ତାକୁ ପ୍ରଭାବିତ କରେ। ଦେଶରେ ସେବା କରିବା ହେଲା ଜୀବନର ମୁଖ୍ୟବ୍ରତ। କିନ୍ତୁ କର୍ମୀମାନଙ୍କର ଚିନ୍ତା ଓ କାର୍ଯ୍ୟ ଦେଶର ପରିସ୍ଥିତିକୁ ଯେତେବେଳେ ଯେପରି ପରିବର୍ତ୍ତନ କରାଏ, ଦେଶର ପରିସ୍ଥିତି ସେପରି କର୍ମୀର କର୍ମପ୍ରେରଣା ଭାବକୁ ଜାଗ୍ରତ କରାଏ। ସୁତରାଂ ମୋର ମନ ଚଞ୍ଚଳ ହୋଇ ଉଠିବାରେ ଅସ୍ୱାଭାବିକ କିଛି ନାହିଁ। ପୁରୀରେ କଂଗ୍ରେସ ଅଧିବେଶନ ବସି ପାରିବ ବୋଲି ମୋର ବିଶ୍ୱାସ ରହୁନାହିଁ। ଯେ କୌଣସି ମୁହୂର୍ତ୍ତରେ ସତ୍ୟାଗ୍ରହ ଲଢ଼ାଇ ଆରମ୍ଭ ହୋଇଯାଇ ପାରେ। ଲଢ଼ାଇ ଆରମ୍ଭ ହୋଇଗଲେ ଆଶ୍ରମ ପାଇଁ କିପରି କଣ ବ୍ୟବସ୍ଥା କରିବି ଏହି ଚିନ୍ତା ମୋ ମନକୁ ଅସ୍ଥିର କଲା। ଆଶ୍ରମକୁ ଦୃଢ଼ କରିବାକୁ ମୁଁ ନିଶ୍ଚୟ କଲି। ବମ୍ବେଇରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ବସିଲା। ସେଥିରେ ଯୋଗ ଦେବାକୁ ମୁଁ ବମ୍ବେଇ ଯାତ୍ରା କଲି। ଶ୍ରୀ ଦାମୋଦର ସାହୁ, ଘର ଦଶପଲ୍ଲା—ସେ

ମାଟ୍ରିକ୍ ପାଶ୍ କରିଛନ୍ତି। ତାଙ୍କୁ ସାବରମତୀ ଆଶ୍ରମରେ ଖଦି କାର୍ଯ୍ୟରେ ଶିକ୍ଷା ଦେବାକୁ ସାଙ୍ଗରେ ନେଇଛି। ସାବରମତୀ ଆଶ୍ରମରେ ଶିକ୍ଷା ପାଇ ପାରିଲେ ସେ ଚମ୍ପାପୁର ଆଶ୍ରମର ଜଣେ ସଚ୍ଚୋଟ କର୍ମୀ ହୋଇ ପାରିବେ। ଆଶ୍ରମର ଭବିଷ୍ୟତ ଚିନ୍ତା କରି ମୁଁ ତାଙ୍କୁ ସାବରମତୀ ପଠାଉଛି।

ଅଗଷ୍ଟ ୭ ତାରିଖରେ ବମ୍ବେଇରେ କଂଗ୍ରେସ କମିଟିର ବୈଠକ ବସିଲା। ଦେଶରେ ଘଟିଥିବା ହିଂସାତ୍ମକ କାର୍ଯ୍ୟକୁ ନିନ୍ଦାକରି ଗୋଟିଏ ପ୍ରସ୍ତାବ ଗୃହୀତ ହେଲା। କାୟମନୋବାକ୍ୟରେ ଅହିଂସା ପାଳନ କରିବାକୁ ଦେଶବାସୀଙ୍କୁ ଆହ୍ୱାନ କରି ଗୋଟିଏ ପ୍ରସ୍ତାବ ମଧ୍ୟ ଗୃହୀତ ହୋଇଥିଲା। ବିଲାତର ଗୋଲଟେବୁଲ ସମ୍ମିଳନୀରେ ଯୋଗ ଦେବା ପାଇଁ ମହାତ୍ମାଗାନ୍ଧୀଙ୍କୁ ଏକମାତ୍ର ପ୍ରତିନିଧି ରୂପେ କଂଗ୍ରେସ ବାଛିଲା। କିନ୍ତୁ ଦେଶରେ ଶାନ୍ତି ସ୍ଥାପିତ ନ ହେଲେ ବିଳାତ ଯାତ୍ରା କରିବାକୁ ଗାନ୍ଧୀଜୀ ନାସ୍ତିବାଣୀ ଶୁଣାଇ ଦେଲେ।

ଚୁକ୍ତିଭଙ୍ଗର ପ୍ରମାଣ ଦର୍ଶାଇ ଯେଉଁ ରିପୋର୍ଟ ଗାନ୍ଧୀଜୀ ବଡ଼ଲାଟ ସାହେବଙ୍କୁ ଦେଇ ଆସିଥିଲେ ତାହାର କୌଣସି ସନ୍ତୋଷ ଜନକ ଉତ୍ତର ମିଳିଲା ନାହିଁ। ଓଲଟା କଂଗ୍ରେସକୁ ଦୋଷୀ ସାବ୍ୟସ୍ତ କରି ସରକାର ଉକ୍ତ ରିପୋର୍ଟର ଉତ୍ତର ପ୍ରଦାନ କଲେ। ସରକାରଙ୍କର ଏଭଳି ମନୋବୃତ୍ତି ଦେଖି କଂଗ୍ରେସ କାର୍ଯ୍ୟନିର୍ବାହିକା ସମିତିର ବୈଠକ ବସିଲା। ସରକାର କିମ୍ବା କଂଗ୍ରେସ କାହାଆଡୁ ସର୍ତ୍ତଭଙ୍ଗ ହେଉଛି, ତହିଁର ନିରପେକ୍ଷ ତଦନ୍ତ ପାଇଁ ଗୋଟିଏ କମିଟି ବସାଇବାକୁ କଂଗ୍ରେସ ଦାବୀ କଲା। କମିଟି ବସି, ସର୍ତ୍ତଭଙ୍ଗ କାହାଦ୍ୱାରା ହେଉଛି, ତାହା ତଦନ୍ତ କରି ସତ୍ୟାସତ୍ୟ ପ୍ରକାଶ ନ କଲା ପର୍ଯ୍ୟନ୍ତ ବିଲାତର ଗୋଲଟେବୁଲ ବୈଠକରେ ସହଯୋଗ କରିବା ସର୍ତ୍ତକୁ କଂଗ୍ରେସ ପାଳନ କରି ପାରିବ ନାହିଁ।

ବିଲାତରେ ଗୋଲଟେବୁଲ ସମ୍ମିଳନୀର ବୈଠକ ବସିବାରେ ବିଳମ୍ବ ଘଟୁଛି। ଭାରତରୁ ଅନ୍ୟ ପ୍ରତିନିଧି ଯାଇ ବିଲାତରେ ଉପସ୍ଥିତ ହେଲେଣି। କଂଗ୍ରେସର ପ୍ରତିନିଧିଙ୍କ ପାଇଁ ବମ୍ବେଇ ବନ୍ଦରରେ ଜାହାଜ ଥରକୁ ଥର ଅଟକିଛି କିନ୍ତୁ କଂଗ୍ରେସର ପ୍ରତିନିଧି କେହି ତହିଁରେ ଯାଇ ନାହାନ୍ତି। ଅଗଷ୍ଟ ୨୯ ତାରିଖରେ ଯେଉଁ ଜାହାଜ ବମ୍ବେଇ ଛାଡ଼ିବ ସେଥିରେ କେହି ନ ଗଲେ ଗୋଲଟେବୁଲ ସମ୍ମିଳନୀରେ କଂଗ୍ରେସ ଆଉ ଯୋଗଦେଇ ପାରିବ ନାହିଁ। ଏହା ହେଲେ ବଡ଼ଲାଟ ଲର୍ଡ଼ ୱେଲିଙ୍ଗଡନ୍‌ଙ୍କ ଅପାରଗତା ପ୍ରମାଣିତ ହୋଇଯିବ। କଂଗ୍ରେସର ଉପରୋକ୍ତ ଦାବୀ ଶୁଣି ବଡ଼ଲାଟ ସାହେବ ତୁରନ୍ତ ଗାନ୍ଧୀଜୀଙ୍କୁ ଡାକରା ଦେଲେ। ଏହି ଡାକରା ପାଇ ଗାନ୍ଧୀଜୀ ସିମଳାରେ ଉପସ୍ଥିତ ହେଲେ। ଏଥର ଗାନ୍ଧୀଜୀ ଏକା ଯାଇନାହାନ୍ତି, ତାହାଙ୍କ ସହିତ ସର୍ଦ୍ଦାର ପଟେଲ, ଡାକ୍ତର ଆନସାରୀ, ସୀମନ୍ତଗାନ୍ଧୀ ଓ ଶ୍ରୀ ଜବାହାରଲାଲ ନେହେରୁ ପ୍ରଭୃତି ଯାଇଥିଲେ। ଅଗଷ୍ଟ ୨୫ ତାରିଖ ଦିନ ସିମଳାର କଂଗ୍ରେସ ନେତୃବର୍ଗଙ୍କ ସହିତ ବଡ଼ଲାଟ ଆଲୋଚନା

ଆରମ୍ଭ କରିଥିଲେ। ଏହି ଆଲୋଚନା ଦ୍ୱାରା ଯାହାସବୁ ସିଦ୍ଧାନ୍ତ କରାଗଲା ତାହାକୁ ସରକାର ସହିତ କଂଗ୍ରେସର ଦ୍ୱିତୀୟ ଚୁକ୍ତିପତ୍ର ବୋଲି କହିଲେ ଚଳେ।

(୧)–ସନ୍ଧିସର୍ତ୍ତ ଭଙ୍ଗ କରୁଥିବାରୁ ଅଭିଯୋଗ ବିଷୟରେ କେତେକ ନିର୍ଦ୍ଦିଷ୍ଟ ଅଭିଯୋଗକୁ ବାର୍ଦ୍ଦୋଲି ତାଲୁକାରେ ଜଣେ ଜିଲ୍ଲା ମାଜିଷ୍ଟ୍ରେଟ ତଦନ୍ତ କରିବେ ଏବଂ ଅନ୍ୟ ସବୁ ସ୍ଥାନରେ ନିର୍ଦ୍ଦିଷ୍ଟ ଅଭିଯୋଗ କରାଗଲେ, ସଂପୃକ୍ତ ପ୍ରଦେଶର ଶାସନ ବିଭାଗ ତଦନ୍ତ କରିବ। (୨) ମହାତ୍ମାଗାନ୍ଧୀ, କଂଗ୍ରେସର ଏକମାତ୍ର ପ୍ରତିନିଧି ହୋଇ ଗୋଲଟେବୁଲ ସମ୍ମିଳନୀରେ ଯୋଗଦେବେ। (୩) ବଡ଼ଲାଟଙ୍କୁ ସ୍ପଷ୍ଟଭାଷାରେ ଗାନ୍ଧୀଜୀ ବୁଝାଇ କହିଥିଲେ, ଯଦି କୌଣସିଠାରେ ନିର୍ଦ୍ଦିଷ୍ଟ ଘଟଣାର ତଦନ୍ତରେ କଂଗ୍ରେସର ମନ ନ ମାନେ ତେବେ ତହିଁର ଉଚିତ ପ୍ରତିକାର ଅବଲମ୍ବନ କରିବାକୁ କଂଗ୍ରେସ ଦ୍ୱିଧାବୋଧ କରିବ ନାହିଁ। ଏପରି ଘଟିଲେ, ସତ୍ୟାଗ୍ରହ ସ୍ଥଗିତ ରଖିବାକୁ ପ୍ରତିଶ୍ରୁତି ଦେଇ କଂଗ୍ରେସ ସର୍ତ୍ତଭଙ୍ଗ କଲାବୋଲି ଦୋଷ ଦିଆଯାଇ ନ ପାରେ। ଏହି ତିନୋଟି ସର୍ତ୍ତ ଦ୍ୱିତୀୟ ଚୁକ୍ତିପତ୍ରରେ ହେଲା ସାରାଂଶ। ଅଗଷ୍ଟ ୨୮ ତାରିଖ ସକାଳେ ଏହି ଚୁକ୍ତିପତ୍ର ସ୍ୱାକ୍ଷରିତ ହେଲା। ସ୍ୱତନ୍ତ୍ର ରେଳଗାଡ଼ି ବ୍ୟବସ୍ଥା କରାଗଲା। ଗାନ୍ଧୀଜୀ ସିମଲାରୁ ପ୍ରତ୍ୟାବର୍ତ୍ତନ କରି ତହିଁଆରଦିନ ଅର୍ଥାତ୍ ଅଗଷ୍ଟ ୨୯ ତାରିଖରେ ଦ୍ୱିତୀୟ ଗୋଲଟେବୁଲ ସମ୍ମିଳନୀରେ ଯୋଗଦେବା ପାଇଁ ବିଲାତ ଯାତ୍ରା କଲେ।

ରାଉଣ୍ଡ ଟେବୁଲ କନଫରେନ୍ସରେ ଯୋଗଦେବା ପାଇଁ ଗାନ୍ଧୀଜୀଙ୍କର ବିଲାତଯାତ୍ରା କଂଗ୍ରେସ ଇତିହାସରେ ଗୋଟିଏ ନୂତନ ଅଧ୍ୟାୟ। କଂଗ୍ରେସର ଏକମାତ୍ର ପ୍ରତିନିଧିରୂପେ ଗାନ୍ଧୀଜୀ ବିଲାତ ଯାତ୍ରା କଲେ। ଭାରତର ଅହିଂସାପୂର୍ଣ୍ଣ ସ୍ୱାଧୀନତା ସଂଗ୍ରାମକୁ ଲକ୍ଷ୍ୟ କରୁଥିବା ପୃଥିବୀର ବିଭିନ୍ନ ଦେଶର ଲୋକଙ୍କ ଦୃଷ୍ଟି ବର୍ତ୍ତମାନ ଲଣ୍ଡନରେ ବସୁଥିବା ସମ୍ମିଳନୀ ଉପରେ। ଲଣ୍ଡନ ଯିବା ବାଟରେ ଗାନ୍ଧୀଜୀ ସର୍ବତ୍ର ଅଭିନବ ସ୍ୱାଗତ ସମ୍ଭାଷଣ ଲାଭ କରୁଛନ୍ତି। ଭାରତରେ ବର୍ତ୍ତମାନ ସମସ୍ତଙ୍କ ଦୃଷ୍ଟି ଲଣ୍ଡନ ଆଡ଼କୁ। କଂଗ୍ରେସ ମହାତ୍ମାଗାନ୍ଧୀଙ୍କୁ ଏକମାତ୍ର ପ୍ରତିନଧି ରୂପେ ବାଛି ଲଣ୍ଡନ ପଠାଇଥିଲେ ମଧ୍ୟ ବ୍ରିଟିଶ ସରକାର କଂଗ୍ରେସର ପୂରାଦାବୀ ଗ୍ରହଣ କରିବ ବୋଲି ଅତ୍ୟଳ୍ପ ଲୋକଙ୍କର ବିଶ୍ୱାସ ଥାଏ। ମହାତ୍ମାଗାନ୍ଧୀଙ୍କର କେତେଦୂର ବିଶ୍ୱାସ ଥିଲା କହିହେବ ନାହିଁ। ଏଠାରେ ଗୋଟିଏ ସଂଶୟାତ୍ମକ ପ୍ରଶ୍ନ ମନରେ ଜାଗି ଉଠୁଛି। ଆଦର୍ଶ ଉପଲବ୍ଧ କରିବାକୁ ଯିବା ବାଟରେ ଯଦି କାର୍ଯ୍ୟ ହାସଲ କରିବାର ସମ୍ଭାବନା ସନ୍ଦେହଜନକ, ତେବେ ସେପରି ବାଟ, ଗାନ୍ଧୀଜୀ ଓ କଂଗ୍ରେସ ଅନୁସରଣ କରିବାର ମହତ୍ତ୍ୱ କଣ ରହିଲା ? ଏପରି ପ୍ରଶ୍ନ ମୋ ମନରେ ଜାଗି ଉଠିଛି। ଆହୁରି ଅନେକ କଂଗ୍ରେସ କର୍ମୀଙ୍କ ମନରେ ଏପରି ପ୍ରଶ୍ନ ଜାଗି ଉଠିଥିବ ବୋଲି ଅନୁମାନ କରିବାର ଯଥେଷ୍ଟ କାରଣ ମଧ୍ୟ ଅଛି। ଏପରି ପ୍ରଶ୍ନ ମନରେ ସ୍ଥାନ ପାଇବା ଅସ୍ୱାଭାବିକ ନୁହେଁ।

କଂଗ୍ରେସ ଏବଂ ଦେଶରେ ମଧ୍ୟ ଦଳେ ଲୋକ ଅଛନ୍ତି, ବିଶେଷତଃ ଯୁବକଦଳ, ଯେଉଁମାନେ ନିଜକୁ ବାମପନ୍ଥୀ ବୋଲି କହୁଛନ୍ତି। ସେମାନେ ଗାନ୍ଧୀ-ଇରଉଇନ୍ ଚୁକ୍ତିକୁ

ଅତି ନିର୍ମମ ଭାବରେ ଅଦ୍ୟାବଧି ସମାଲୋଚନା କରୁଛନ୍ତି। ରାଉଣ୍ଡ ଟେବୁଲ କନ୍‌ଫରେନ୍‌ସରେ ଯୋଗଦେଇ ସ୍ୱାଧୀନତା ସଂଗ୍ରାମକୁ କଂଗ୍ରେସ ଦୁର୍ବଳ କରିଦେଲା ବୋଲି ସେମାନଙ୍କ ଅଭିଯୋଗ। ବମ୍ବେଇରେ ନିଖିଳ ଭାରତ କଂଗ୍ରେସ କମିଟି ବସିବାବେଳେ ଏହି ଦଳର ଲୋକେ ବିକ୍ଷୋଭ ପ୍ରଦର୍ଶନ କରିଥିଲେ। ଦେଶର ବିଭିନ୍ନ ପ୍ରଦେଶରେ ସଭା ସମିତି କରି ଏହି ବାମପନ୍ଥୀ ଦଳ କଂଗ୍ରେସ ଓ ମହାତ୍ମାଗାନ୍ଧୀଙ୍କୁ ଉତ୍କଟ ସମାଲୋଚନା କରୁଛନ୍ତି। ସରକାରୀ କର୍ମଚାରୀମାନେ ଗାନ୍ଧୀ-ଇରଉଇନ୍ ଚୁକ୍ତିକୁ ଅବଜ୍ଞା କରି କଂଗ୍ରେସ କର୍ମୀ ଓ ସାଧାରଣ ଲୋକଙ୍କୁ ମଧ୍ୟ ନାନାପ୍ରକାର ହଇରାଣ ହରକତ୍ କରୁଛନ୍ତି। ଏପରି ପରିସ୍ଥିତିରେ ସମ୍ମିଳନୀରେ ଯୋଗଦେବାକୁ ଗାନ୍ଧୀଜୀଙ୍କର ବିଲାତଯାତ୍ରା ବାମପନ୍ଥୀଙ୍କ ଦୃଷ୍ଟିରେ ଦେଶଦ୍ରୋହ କାର୍ଯ୍ୟ ବ୍ୟତୀତ ଅନ୍ୟ କିଛି ନୁହେଁ।

ଗୋଲଟେବୁଲ ସମ୍ମିଳନୀର ବୈଠକରେ ଯୋଗଦେବାକୁ ଇଂରେଜ ସରକାର ଏ ଦେଶରୁ ବିଭିନ୍ନ ଗୋଷ୍ଠିରୁ ବହୁ ବ୍ୟକ୍ତିଙ୍କୁ ବାଛିଛନ୍ତି। ଜାତି, ଧର୍ମ ଓ ନାନା ସ୍ୱାର୍ଥଜନିତ ବ୍ୟକ୍ତି ସବୁ ବଛା ଯାଇଛନ୍ତି। ଏହିପରି ବଛାଯାଇ ସମ୍ମିଳନୀରେ ଯୋଗଦେବାକୁ ଯେଉଁମାନେ ଲଣ୍ଡନ ଯାଇଛନ୍ତି, ସେମାନେ ସମସ୍ତେ ଗୋଟିଏ ପ୍ରଶ୍ନ ଉପରେ ଏକମତ ହୋଇ ପାରିବାର ସମ୍ଭାବନା ଖୁବ୍ କମ୍। ଭାରତର ସ୍ୱାଧୀନତା ଦାବୀକୁ ଏକମତ ହୋଇ ସମସ୍ତେ ସମର୍ଥନ କରିବେ, ସେପରି ଆଶା କରିବା ବୃଥା। ରାଜନ୍ୟମଣ୍ଡଳୀର ପ୍ରତିନିଧି କଂଗ୍ରେସର ଦାବୀକୁ କଦାପି ସମର୍ଥନ କରିବେ ନାହିଁ। ମୁସଲିମ୍ ଲିଗ୍‌ର ପ୍ରତିନିଧି ମିଃ ଜିନ୍ନା ଏବଂ ତପସିଲଭୁକ୍ତ ଜାତିର ପ୍ରତିନିଧି ଡାକ୍ତର ଆମ୍ବେଦକର ବହୁ ଜଟିଳ ପ୍ରଶ୍ନ ଉତ୍‌ଥାପନ କରିବେ ଯାହାର ଉତ୍ତର ଦେବା ଗାନ୍ଧୀଜୀଙ୍କ ପକ୍ଷରେ କାଠିକର ପାଠ ହେବ। ପୃଥିବୀର ଲୋକେ ଜାଣିବେ, ଭାରତର ଲୋକେ ପରସ୍ପର ଭିତରେ ଝଗଡ଼ା କରୁଛନ୍ତି ଏବଂ ଦେଶକୁ ସ୍ୱାଧୀନ କରିବାର ପ୍ରଶ୍ନ ସେମାନଙ୍କ ମନରେ ନାହିଁ। ଏହିପରି ଦୃଶ୍ୟ ପୃଥିବୀକୁ ଦେଖାଇ ଦେବା ବ୍ରିଟିଶ ସରକାରଙ୍କର ଇଚ୍ଛା ବୋଲି ଅନେକଙ୍କର ସନ୍ଦେହ।

ମନରେ ସନ୍ଦେହଜନକ ପ୍ରଶ୍ନ ଜାଗି ଉଠୁଥିଲେ ମଧ୍ୟ ଜାଣି ଶୁଣି କଂଗ୍ରେସ କିମ୍ବା ମହାତ୍ମାଗାନ୍ଧୀ ଭୁଲ କରୁଛନ୍ତି ବୋଲି ମୋ ମନ ମାନୁନାହିଁ। କିନ୍ତୁ ପରିଷ୍କାର ଭାବରେ ମନରେ କିଛି ଧାରଣା କରି ହେଉ ନାହିଁ। ଝଞ୍ଜାପବନରେ ଜୀବଜଗତ ଯେପରି ଆକୁଳ ହୋଇ ଉଠେ, ରାଜନୈତିକ ଘଟଣାବଳୀ ଝଞ୍ଜା ସୃଷ୍ଟିକରି ସେପରି ଦେଶର କର୍ମୀମାନଙ୍କୁ ଆକୁଳ କରାଏ। ମନରେ ଝଞ୍ଜା ସୃଷ୍ଟି ହୋଇଛି। କୌଣସି କାର୍ଯ୍ୟରେ ମନ ଲାଗୁନାହିଁ। ବ୍ରିଟିଶ ସରକାରଙ୍କ କଥାରେ ବିଶ୍ୱାସ କରି ମହାତ୍ମାଗାନ୍ଧୀ ବିଲାତ ଯାତ୍ରା କରିବା ପରିଣାମରେ କଣ ଘଟିବ ସବୁ ଅନିଶ୍ଚିତ। ମାୟାମୃଗ ପଛରେ ଗାନ୍ଧୀଜୀ ଗୋଡ଼ାଇଲେ ବୋଲି ମନ କଳ୍ପନା କରୁଛି। ମୃଗୟାରୁ ଫେରି ସୀତାଦେବୀଙ୍କୁ ରାବଣ ହରଣ କରିନେଲା ଭଳି ଗାନ୍ଧୀଜୀ ବିଲାତରୁ ଫେରିଲା ବେଳକୁ କଂଗ୍ରେସର

ଜଣାଶୁଣା ଲୋକେ ସମସ୍ତେ ଧରାହୋଇ ଜେଲରେ ବନ୍ଦୀ ହୋଇଥିବେ। କଂଗ୍ରେସ ଆଉ ନ ଥିବ। ଗାନ୍ଧୀଜୀ ରୋଦନ କରିବେ। ବଡ଼ଲାଟ ତାହାଙ୍କ କଥା ଶୁଣିବେ ନାହିଁ କିମ୍ବା ଦେଖାସାକ୍ଷାତ ଦେବେ ନାହିଁ। କିଛି କହିବାକୁ ଗଲେ ତାହାଙ୍କୁ ଧରି ଜେଲରେ ଭର୍ତ୍ତି କରିଦେବେ। ଏପରି ଗୋଟିଏ ଭାବନା ସବୁବେଳେ ମୋ ମନରେ ଖେଳିଲା। ଗାନ୍ଧୀଜୀ ବିଲାତରୁ ଫେରି ଭାରତରେ ପଦାର୍ପଣ କଲା ମାତ୍ରକେ ସତ୍ୟାଗ୍ରହ ସଂଗ୍ରାମ ଆରମ୍ଭ ହୋଇଯିବ ବୋଲି ଏକ ବିଶ୍ୱାସ ମୋ ମନରେ ଦୃଢ଼ ଆକାର ଧାରଣ କଲା।

ଏପରି ଦୃଢ଼ ବିଶ୍ୱାସ ମନରେ ସ୍ଥାନ ପାଇବାରୁ ଚମ୍ପାପୁର ଆଶ୍ରମକୁ ଦୃଢ଼ କରିବାକୁ ମୁଁ ବ୍ୟଗ୍ର ହୋଇ ଉଠିଲି। ଏହି ଉଦ୍ଦେଶ୍ୟରେ ଶ୍ରୀ ଦାମୋଦର ସାହୁଙ୍କୁ ସାବରମତୀ ଆଶ୍ରମକୁ ତାଲିମ ପାଇବାକୁ ପଠାଇଛି। ଏହି ସମୟରେ ଶ୍ରୀ ଶରତଚନ୍ଦ୍ର ପଟ୍ଟନାୟକ ମୋ ନିକଟରେ ଉପସ୍ଥିତ ହୋଇ ତାଙ୍କର ଅଧ୍ୟୟନ ଶେଷ କରିବାକୁ ଆର୍ଥିକ ସାହାଯ୍ୟ ପାଇବାକୁ ଇଚ୍ଛା ପ୍ରକାଶ କଲେ। ମୁଁ ତାଙ୍କୁ ପୂର୍ବରୁ ଉତ୍ତମରୂପେ ଜାଣେ। ସେ ଅହମ୍ମଦାବାଦର ଗୁଜରାତ ବିଦ୍ୟାପୀଠରେ ଅଧ୍ୟୟନ କରୁଥିଲେ। ଆଶ୍ରମ ପାଇଁ ଚାନ୍ଦା ସଂଗ୍ରହ କରିବାକୁ ପ୍ରତିବର୍ଷ ମୁଁ ସେଠାକୁ ଯାଏ ଏବଂ ତାଙ୍କ ସହିତ ଦେଖା ହୋଇ ଦେଶର ଭଲ ମନ୍ଦ ଆଲୋଚନା କରିଥାଏ। ବର୍ତ୍ତମାନ ଗୁଜରାତ ବିଦ୍ୟା-ପୀଠରୁ ଆସି କାଶୀ ବିଦ୍ୟାପୀଠରେ ସେ ନାମ ଲେଖାଇଛନ୍ତି। ଅଧ୍ୟୟନ ଶେଷକରି ଦେଶସେବାରେ ସେ ଜୀବନ ନିୟୋଜିତ କରିବାକୁ ସଂକଳ୍ପ କରିଛନ୍ତି। ମୋଠାରୁ ଆର୍ଥିକ ସାହାଯ୍ୟ ପାଇପାରିଲେ ସେ ଆସି ଚମ୍ପାପୁର ଆଶ୍ରମରେ ଜଣେ ଆଜୀବନ ସେବକ ଭାବରେ ଯୋଗଦେବାକୁ ପ୍ରତିଶ୍ରୁତି ଦେଲେ। ଶ୍ରୀମାନ୍ ଶରତଙ୍କ ପରି କର୍ମୀ ପାଇବାକୁ ମୁଁ ସବୁବେଳେ ବ୍ୟାକୁଳ। ସୁତରାଂ ତାହାଙ୍କର ଆବଶ୍ୟକ ଖର୍ଚ୍ଚ ପାଇବାର ବନ୍ଦୋବସ୍ତ କରିଦେଇ ମୁଁ ପୁଣି ପୁରୀକୁ କଂଗ୍ରେସ ପାଇଁ କାର୍ଯ୍ୟ କରିବାକୁ ଫେରି ଆସିଲି। ଓଡ଼ିଶା କଂଗ୍ରେସରେ ଆମ୍ଭେମାନେ ସମସ୍ତେ ଗାନ୍ଧୀମତାବଲମ୍ବୀ। ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଆମ୍ଭମାନଙ୍କର ଅଟଳ ବିଶ୍ୱାସ। ତାହାଙ୍କ କଥା ଓ କାର୍ଯ୍ୟ ସବୁବେଳେ ଅଭ୍ରାନ୍ତ ବୋଲି ଆମ୍ଭମାନଙ୍କର ମନରେ ଦୃଢ଼ ଧାରଣା। ସୁତରାଂ ରାଜନୈତିକ ପରିସ୍ଥିତି ଯାହାହେଲେ ମଧ୍ୟ ସିଆଡ଼କୁ ମନ ନ ଦେଇ କଂଗ୍ରେସ ଅଧିବେଶନକୁ ସର୍ବାଙ୍ଗ ସୁନ୍ଦର କରିବାକୁ ପ୍ରାଣ ଦେଇ ଆମ୍ଭେମାନେ କାର୍ଯ୍ୟରେ ଲାଗି ପଡ଼ିଲୁ।

ମହାତ୍ମାଗାନ୍ଧୀ ମାୟାମୃଗ ପଛରେ ନ ଗୋଡ଼ାଇ ସତ୍ୟ ମୃଗ୍ୟ ପଛରେ ଗୋଡ଼ାଇଛନ୍ତି ବୋଲି ଜାଣିବାକୁ ଅବା ବୁଝିବାକୁ ବେଶି ସମୟ ଲାଗିଲା ନାହିଁ। ଅତି ବିଭବ ପରିପୂର୍ଣ୍ଣ ବିରାଟ ଲଣ୍ଡନ ନଗରୀରେ ବାସ ନ କରି ଲଣ୍ଡନର ପୂର୍ବାଞ୍ଚଳରେ ଦରିଦ୍ର ଲୋକେ ବାସ କରୁଥିବା ବସ୍ତି ମଧ୍ୟରେ ଗାନ୍ଧୀଜୀ ଯାଇ ରହିଥିଲେ। ଭାରତରେ ସନ୍ଧି ସର୍ତ୍ତ ପାଳନ କରିବାକୁ ବଡ଼ଲାଟ ଯେଉଁ ପ୍ରତିଶ୍ରୁତି ଦେଇଛନ୍ତି ସରକାରୀ

କର୍ମଚାରୀ ସେ ସବୁ ପାଳନ କରି ନ ପାରନ୍ତି। ବିଲାତରେ ସେ କୃତକାର୍ଯ୍ୟ ହୋଇ ନ ପାରନ୍ତି ଏବଂ ବିଲାତରେ ତାହାଙ୍କ ଜୀବନ ଉପରେ ବିପଦ ପଡ଼ିପାରେ। ଏ ସବୁର ପୂର୍ଣ୍ଣ ସମ୍ଭାବନା ଥିଲେ ମଧ୍ୟ ସବୁକଥା ଜାଣିଶୁଣି, କିଛି ନ ଜାଣିଲା ଭଳି ଗାନ୍ଧୀଜୀ କାର୍ଯ୍ୟ କରୁଛନ୍ତି। ଗାନ୍ଧୀଜୀ ସବୁବେଳେ ଆଶାବାଦୀ। କର୍ତ୍ତବ୍ୟ ପଥ ବିପଦପୂର୍ଣ୍ଣ ଜଣା ଯାଉଥିଲେ ମଧ୍ୟ ସେଥିରୁ ବିଚ୍ୟୁତ ହେବା ତାହାଙ୍କ ପକ୍ଷରେ କଳ୍ପନାତୀତ ବିଷୟ। ଗାନ୍ଧୀଜୀଙ୍କର ବାଟ ସବୁବେଳେ ନିର୍ମଳ। ତାହାଙ୍କୁ ଟାଣିଟୁଣି ପଙ୍କରେ ପକାଇବା ସହଜ ନୁହେଁ। ଗୋଲଟେବୁଲ ସମ୍ମିଳନୀର ବୈଠକରେ ଆଲୋଚନା କରି, ଭାରତବାସୀ କୌଣସି ଗୋଟିଏ ବିଷୟରେ ଏକମତ ହୋଇ ନ ପାରିବା ବିଷୟକୁ ପୃଥିବୀକୁ ଜଣାଇବା ଉଦ୍ଦେଶ୍ୟରେ ବିଲାତର କୂଟନୀତି ବିଶାରଦମାନେ ନାନା କୌଶଳ ରଚନା କରିଛନ୍ତି। ସେ ବ୍ୟୂହକୁ ଭେଦ କରି ଗାନ୍ଧୀଜୀ ସମସ୍ତଙ୍କୁ ଏକମତ କରାଇ ଭାରତର ଦାବୀ ଉପସ୍ଥାପିତ କରେଇବାକୁ ଚେଷ୍ଟା କଲେ। କିନ୍ତୁ ଗାନ୍ଧୀଙ୍କର ସମସ୍ତ ଚେଷ୍ଟା ବିଫଳ ହୋଇଥିଲା। ମି: ଜିନ୍ନା ଓ ଡାକ୍ତର ଆମ୍ବେଦକର ବହୁ ଅନ୍ତରାୟ ସୃଷ୍ଟି କରିଥିଲେ। କଂଗ୍ରେସର ଦାବୀକୁ ସମର୍ଥନ କଲେ, ମୁସଲମାନଙ୍କ ପାଇଁ ଜିନା ଯାହା ଦାବୀ କରିବେ କଂଗ୍ରେସ ସେ ସବୁ ସମର୍ଥନ କରିବାକୁ ପ୍ରତିଶ୍ରୁତି ଦେଲେ ମଧ୍ୟ ତାଙ୍କର ସମର୍ଥନ ମିଳିଲା ନାହିଁ। ଶେଷରେ ଗାନ୍ଧୀଜୀ ଘୋଷଣା କରିଥିଲେ, ଆମ୍ଭେମାନେ ପ୍ରକୃତ ଲୋକପ୍ରତିନିଧି ନୋହୁଁ। ଲୋକେ ଆମ୍ଭମାନଙ୍କୁ ବାଛି ଏଠାକୁ ପଠାଇ ନାହାନ୍ତି। ଇଂରେଜ ସରକାର ଆମ୍ଭ ସମସ୍ତଙ୍କୁ ବାଛିଛନ୍ତି। ସବୁ ଶ୍ରେଣୀ ଲୋକଙ୍କର ପ୍ରତିନିଧିତ୍ୱ କରିବାକୁ, କଂଗ୍ରେସ ହେଉଛି ଭାରତର ଏକମାତ୍ର ରାଜନୈତିକ ଅନୁଷ୍ଠାନ। ଭାରତରେ ୩୫ କୋଟି ଅଧିବାସୀଙ୍କର ପ୍ରତିନିଧିତ୍ୱ କରିବାକୁ କଂଗ୍ରେସ ହିଁ କେବଳ ହକଦାର। ଦେଶୀୟ ରାଜ୍ୟମାନଙ୍କର କେବଳ ପ୍ରଜାଙ୍କର ନୁହେଁ, ରାଜନ୍ୟମଣ୍ଡଳୀଙ୍କର ପ୍ରତିନିଧିତ୍ୱ କରିବାକୁ ମଧ୍ୟ କଂଗ୍ରେସ ଦାବୀ କରେ। କଂଗ୍ରେସ ଦାବୀକରେ, ଭାରତରୁ ବ୍ରିଟିଶ ରାଜତ୍ୱର ଅବସାନ। ଏହାକୁ ପୂରାମାତ୍ରାରେ କାର୍ଯ୍ୟରେ ପରିଣତ କରିବାକୁ କିଛି ସମୟ ସାପେକ୍ଷ ହୋଇପାରେ। ତାହାହେଲେ ଏହି ମଧ୍ୟବର୍ତ୍ତୀ କାଳପାଇଁ କଣ ବ୍ୟବସ୍ଥା କରିବାକୁ ହେବ ସେହି ବିଷୟରେ କଥୋପକଥନ କରିବାକୁ କଂଗ୍ରେସ ମତେ କ୍ଷମତା ଦେଇଛି। କେନ୍ଦ୍ରଶାସନ ହସ୍ତାନ୍ତର କରିବାକୁ ସମୟ ଆବଶ୍ୟକ ହୋଇପାରେ, କିନ୍ତୁ ପ୍ରାଦେଶିକ ଶାସନର ସମସ୍ତ କ୍ଷମତା ଲୋକପ୍ରତିନିଧିମାନଙ୍କ ହାତକୁ ତୁରନ୍ତ ହସ୍ତାନ୍ତର କରିବା କଂଗ୍ରେସର ଦାବୀ।

କଂଗ୍ରେସର ଦାବୀ, ବଳ ଓ କ୍ଷମତା ବିଷୟ ନେଇ ଗାନ୍ଧୀଜୀ ଏହିପରି ସ୍ପଷ୍ଟ ଭାଷାରେ ବୁଝାଇ ଦେଇଥିଲେ। କେବଳ ବିଲାତବାସୀଙ୍କୁ ନୁହେଁ, ଆମେରିକା ଅଧିବାସୀଙ୍କୁ ମଧ୍ୟ ଭାରତ କାହିଁକି ସ୍ୱରାଜ୍ୟ ଦାବୀ କରୁଛି ତାହା ତାହାଙ୍କ ବାର୍ତ୍ତାରେ ଶୁଣାଇଥିଲେ। ବିଲାତରେ ଯେଉଁ ସବୁ ବିଶିଷ୍ଟ ବ୍ୟକ୍ତିମାନଙ୍କ ସଂସର୍ଗରେ ଆସିଥିଲେ

ଏବଂ ଯେଉଁ ସବୁ ସ୍ଥାନକୁ ନିମନ୍ତ୍ରିତ ହୋଇ ଯାଇଥିଲେ, ସେ ସମସ୍ତଙ୍କ ମନରେ ଏବଂ ସବୁ ଜାଗାରେ ଗାନ୍ଧୀଜୀ ଭାରତ ସପକ୍ଷରେ ଅନୁକୂଳ ମତ ସୃଷ୍ଟି କରି ପାରିଥିଲେ। ଗାନ୍ଧୀଜୀ ସମସ୍ତଙ୍କୁ ଏବଂ ସର୍ବତ୍ର ବୁଝାଇ ଦେଇ ପାରିଥିଲେ ଯେ ତାହାଙ୍କ ନେତୃତ୍ୱରେ କଂଗ୍ରେସ ବ୍ରିଟିଶ ସରକାର ବିରୁଦ୍ଧରେ ଲଢ଼ାଇ କରୁଛି କିନ୍ତୁ ବ୍ରିଟିଶ ଜାତି ବିରୁଦ୍ଧରେ ନୁହେଁ। ଇଂରେଜ ଲୋକେ ବୁଝନ୍ତୁ, ଭାରତକୁ ମୁକ୍ତି ନ ଦେବା ତାଙ୍କ ଜାତିପକ୍ଷରେ ଗୌରବର ଚିହ୍ନ ନୁହେଁ।

ଲଣ୍ଡନ ସହରର ବିଖ୍ୟାତ ବକିମ୍‌ହାମ ରାଜ ପ୍ରାସାଦରେ ସମ୍ରାଟ ପଞ୍ଚମ ଜର୍ଜ୍‌ଙ୍କ ସହିତ ଚା' ପାନ କରିବାକୁ ପ୍ରତିନିଧିମାନଙ୍କୁ ନିମନ୍ତ୍ରଣ କରାଗଲା। ମହାମାନ୍ୟ ସମ୍ରାଟଙ୍କ ସହିତ ଚା' ପାନ କରିବାକୁ ରାଜପ୍ରାସାଦକୁ ଯିବାକୁ ହେଲେ ରାଜକୀୟ ପରିଚ୍ଛଦ ପରିଧାନ କରିବା ନିହାତି ଦରକାର। ବିଲାତକୁ ଯାଇ ଗାନ୍ଧିଜୀ ସେଠାରେ ମଧ ଆଣ୍ଠୁଲୁଚୁ ନ ଥିବା ଖଣ୍ଡିଏ ଲେଙ୍ଗଟ ବ୍ୟବହାର କରୁଛନ୍ତି। ନିଜର ଦୈନନ୍ଦିନ ପରିଚ୍ଛଦ ତ୍ୟାଗକରି ରାଜକୀୟ ପୋଷାକ ପିନ୍ଧିବାର କଥା ଉଠିବାରୁ ନିମନ୍ତ୍ରଣ ରକ୍ଷା କରିପାରିବେ ନାହିଁ ବୋଲି ଗାନ୍ଧିଜୀ ଶୁଣାଇ ଦେଲେ। ମହାମାନ୍ୟ ସମ୍ରାଟଙ୍କ ନିମନ୍ତ୍ରଣକୁ ଉପେକ୍ଷା କରିବା ବଡ଼ ଗର୍ହିତ କଥା। କିନ୍ତୁ ଗାନ୍ଧିଜୀ କୌଣସିମତେ ତାଙ୍କର ଲେଙ୍ଗଟ ଛାଡ଼ି ଅନ୍ୟ ପୋଷାକ ପିନ୍ଧିବେ ନାହିଁ। ଶେଷରେ ତାଙ୍କ ପାଇଁ ରାଜକୀୟ ମର୍ଯ୍ୟାଦା ଭଙ୍ଗକରି, ତାଙ୍କ ନିଜ ପରିଚ୍ଛଦରେ ରାଜ ପ୍ରାସାଦକୁ ଯିବାକୁ ଅନୁମତି ମିଳିଲା। ଗାନ୍ଧିଜୀ ତାଙ୍କ ଆଣ୍ଠୁ ଲୁଚୁ ନ ଥିବା ଲେଙ୍ଗଟ ଖଣ୍ଡିକ ପରିଧାନ କରି ରାଜପ୍ରାସାଦରେ ଉପସ୍ଥିତ ହେଲେ। ସମ୍ରାଟ ପଞ୍ଚମ ଜର୍ଜ୍ ଆସି ଜଣକ ପରେ ଜଣଙ୍କ ସହିତ କର ମର୍ଦ୍ଦନ କରି ଆଳାପ କରିଥିଲେ। ଗାନ୍ଧିଜୀଙ୍କ ନିକଟ ଉପସ୍ଥିତ ହୋଇ ମହାମାନ୍ୟ ସମ୍ରାଟ ଯେପରି ଢଙ୍ଗରେ କଥାବାର୍ତ୍ତା କଲେ ତଦ୍ୱାରା ଏକ ସଂକଟଜନକ ପରିସ୍ଥିତି ଉପୁଜିବାର ସମ୍ଭାବନା ଦେଖାଗଲା। କିନ୍ତୁ ଗାନ୍ଧିଜୀ ନିଜର ମର୍ଯ୍ୟାଦାକୁ ଅକ୍ଷୁଣ୍ଣ ରଖି ଅତି ଗାମ୍ଭୀର୍ଯ୍ୟର ସହିତ କଥୋପକଥନ କରିଥିଲେ।

ସମ୍ରାଟ ପଞ୍ଚମଜର୍ଜ୍‌: –''ମିଃ ଗାନ୍ଧି, ଦକ୍ଷିଣ ଆଫ୍ରିକାରେ ତୁମକୁ ମୁଁ ଦେଖିଛି। ତୁମେ ଜଣେ ଅତି ଭଲ ମଣିଷ ଥିଲ ବୋଲି ମୁଁ ଜାଣେ। କିନ୍ତୁ ୧୯୧୮ ମସିହା ପରେ ତୁମେ ସେହି ମଣିଷ ଆଉ ନୁହଁ। ତୁମେ ଏବେ ବହୁତ ଗୋଳମାଳ କରୁଛ।'' ଏହା ଶୁଣି କୌଣସି ପ୍ରତ୍ୟୁତ୍ତର ନ କରି ଗାନ୍ଧିଜୀ ନୀରବରେ ଠିଆହୋଇ ରହିଥିଲେ। ସମ୍ରାଟ ପୁଣି ପଚାରିଲେ, ''୧୯୨୧ ମସିହାରେ ତୁମେ ମୋର ପୁଅକୁ ବାସନ୍ଦ କରିଥିଲ କାହିଁକି ?'' ଗାନ୍ଧିଜୀ ଅତିଶୟ ନମ୍ରତା ସହକାରେ ଧୀର ଓ ଗମ୍ଭୀର ଭାବରେ ଉତ୍ତର ଦେଲେ, ''ମହାମାନ୍ୟ ସମ୍ରାଟଙ୍କର ପୁତ୍ରକୁ ନୁହେଁ, ବ୍ରିଟିଶ ସରକାରଙ୍କ ପ୍ରତିନିଧିଙ୍କୁ ବାସନ୍ଦ କରାଯାଇଥିଲା।''

ସମ୍ରାଟ ପୁଣି କହିଲେ, ''ଗାନ୍ଧୀ, ତୁମେ ବିଦ୍ରୋହ ସୃଷ୍ଟି କରୁଛ। ରାଜାଙ୍କ ଶାସନ ଅବଶ୍ୟ ଚାଲିବ ଏବଂ ଯେ କୌଣସି ବିଦ୍ରୋହକୁ ନିଶ୍ଚୟ ଦମନ କରାଯିବ।''

ଗାନ୍ଧୀଜୀ–"ମହାମାନ୍ୟ ସମ୍ରାଟଙ୍କ ସହିତ ଯୁକ୍ତିକରିବା ମୋ ପକ୍ଷରେ ଉଚିତ ହେବ ନାହିଁ। ମତେ ଯୁକ୍ତି ଭିତରକୁ ଟଣା ନ ଯାଉ।" ଏହାପରେ ସମ୍ରାଟ ପଞ୍ଚମ ଜର୍ଜ, ଗାନ୍ଧୀଜୀଙ୍କୁ ଛାଡ଼ି ଅନ୍ୟାନ୍ୟମାନଙ୍କ ସହିତ ଆଳାପ କରିଥିଲେ। ଏହି ସମୟରେ କେହି ସୂଚନା ଦେଇ କହିଲେ, ଗାନ୍ଧିଜୀ ଯେଉଁ ଆଣ୍ଠୁ ଲୁଚୁ ନ ଥିବା ଲୁଗା ଖଣ୍ଡକ ପିନ୍ଧିଛନ୍ତି ତାହା କଣ ତାଙ୍କୁ ଯଥେଷ୍ଟ ହେଉଛି? ଏହା ଶୁଣି ଗାନ୍ଧିଜୀ ହସି ହସି କହିଥିଲେ, "ମୋର ଆଉ ଲୁଗା କଣ ହେବ? ମହାମାନ୍ୟ ସମ୍ରାଟ୍ ଯେତେ ବସ୍ତ୍ର ପରିଧାନ କରିଛନ୍ତି ତାହା ତାହାଙ୍କୁ ଆଉ ମତେ ଉଭୟଙ୍କ ପାଇଁ ଯଥେଷ୍ଟ ହେବ।"

ଗାନ୍ଧିଜୀ ବର୍ତ୍ତମାନ ଭାରତରେ ନାହାନ୍ତି। ରାଜନୈତିକ ପରିସ୍ଥିତି ଦିନକୁ ଦିନ ଜଟିଳ ହୋଇ ଉଠୁଛି। ଆରମ୍ଭରୁ କେବଳ କଂଗ୍ରେସ ସନ୍ଧିସର୍ତ୍ତ ପାଳନ କରୁଛି କହିଲେ ଚଳେ। ସରକାରୀ ଜୁଲମ ଓ ଅତ୍ୟାଚାରର ଅବସାନ ଘଟୁ ନାହିଁ। ବାର୍ଦୋଲିରେ ଯେଉଁ ତଦନ୍ତ କରାଯାଉଥିଲା ତାହା ଅଚଳ ଅବସ୍ଥାରେ ଆସି ପହଞ୍ଚିଲାଣି। ଯୁକ୍ତ ପ୍ରଦେଶର ଅବସ୍ଥା ଅତି ସାଂଘାତିକ ହୋଇ ଉଠିଲାଣି। ବଙ୍ଗଳା ଓ ସୀମାନ୍ତ ପ୍ରଦେଶର ଦୁଃଖ କହିଲେ ନ ସରେ। ହିଜିଲି କ୍ୟାମ୍ପ ଜେଲ୍‌ରେ ଗୁଳି ଚାଳି ଦୁଇଜଣ ରାଜବନ୍ଦୀ ପ୍ରାଣ ହରାଇଛନ୍ତି ଏବଂ କୋଡ଼ିଏ ଜଣ ପର୍ଯ୍ୟନ୍ତ ଆହତ ହୋଇଛନ୍ତି। ସରକାରୀ ଦମନଲୀଳାର ତାଣ୍ଡବନୃତ୍ୟ ଆରମ୍ଭ ହୋଇ ଯାଇଛି।

ସୀମାନ୍ତ ପ୍ରଦେଶରେ ସୀମାନ୍ତଗାନ୍ଧୀ ଗଫାର ଖାଁଙ୍କ ପ୍ରଭାବ ଓ ପ୍ରତିପତ୍ତି ସରକାରଙ୍କୁ ଅସହ୍ୟ ବୋଧ ହେଲା ପ୍ରାୟ ଜଣା ପଡ଼ୁଛି। ଲାଲ କୁର୍ତ୍ତା ପରିଚ୍ଛଦ ପରିଧାନ କରୁଥିବା ଖୁଦାଙ୍କ ସେବାକାରୀ ଦଳଙ୍କୁ ଶିକ୍ଷା ଦେବାପାଇଁ ସୀମାନ୍ତଗାନ୍ଧୀ ପେଶାୱାର ସହର ନିକଟରେ ଗୋଟିଏ ଶିବିର ସ୍ଥାପନ କରିଥିଲେ। ତାହା ସରକାରଙ୍କ ଅତିଶୟ ଚକ୍ଷୁଶୂଳ ହୋଇଛି। ସରକାର ଗୋଟିଏ ଦରବାର ବସାଇଲେ ସେଥିରେ ଯୋଗଦେବା ପାଇଁ ସୀମାନ୍ତଗାନ୍ଧୀ ଓ ତାଙ୍କର ଜ୍ୟେଷ୍ଠଭ୍ରାତା ଡାକ୍ତର ଖାଁ ସାହେବଙ୍କୁ ନିମନ୍ତ୍ରଣ କରାଗଲା। ଉଭୟେ ସେହି ନିମନ୍ତ୍ରଣ ରକ୍ଷା କରିବାକୁ ଅସ୍ୱୀକାର କରିଥିଲେ। ତଦ୍ଦ୍ୱାରା ସରକାରଙ୍କ ରାଗ ବୃଦ୍ଧି ପାଇଲା। ବିଲାତରୁ ଭାରତକୁ ଗାନ୍ଧିଜୀ ପ୍ରତ୍ୟାବର୍ତ୍ତନ କରିବା ପୂର୍ବରୁ ସୀମାନ୍ତଗାନ୍ଧୀ ଧରା ହୋଇ ଜେଲରେ ବନ୍ଦୀ ହେଲେ।

ଯୁକ୍ତ ପ୍ରଦେଶରେ ଚାଷି କୂଳଙ୍କୁ ଖଜଣା ରିହାତି ଦେବାକୁ ବହୁ ଚେଷ୍ଟା କରାଗଲା। କିନ୍ତୁ ପରିମାଣରେ କିଛି ଫଳ ନ ଫଳିବାରୁ ପ୍ରାନ୍ତୀୟ କଂଗ୍ରେସ କମିଟି ଖଜଣାଛାଡ଼ ଆନ୍ଦୋଳନର ସୂତ୍ରପାତ କରିବାକୁ ପ୍ରସ୍ତାବ ଗ୍ରହଣ କରିଥିଲେ। ସେଠାରେ ଖଜଣାବନ୍ଦ ଆନ୍ଦୋଳନ କରିବା ବ୍ୟତୀତ ଅନ୍ୟ ଉପଯା କିଛି ନ ଥିଲା। କିନ୍ତୁ କୌଣସି ଆନ୍ଦୋଳନ ଆରମ୍ଭ କରିବା ପାଇଁ ଆଗ ସଂଗଠନ ଆବଶ୍ୟକ। ପ୍ରାନ୍ତୀୟ କଂଗ୍ରେସ କମିଟି ପ୍ରସ୍ତାବ ପାଶ୍ କରି ଗାନ୍ଧୀଜୀଙ୍କ ପ୍ରତ୍ୟାବର୍ତ୍ତନକୁ ଅପେକ୍ଷା କରି ରହିଛନ୍ତି। ଗାନ୍ଧୀଜୀ ବମ୍ବେଇରେ ଉପସ୍ଥିତ ହେବା ବେଳକୁ ଶ୍ରୀ ଜବାହାରାଲାଲ ନେହୁରୁ

ସେଠାକୁ ଯାଇ ମହାତ୍ମାଜୀଙ୍କ ସହିତ ପରାମର୍ଶ କରିବେ। କିନ୍ତୁ ସରକାର କଂଗ୍ରେସର ପ୍ରସ୍ତାବ ଶୁଣି ଅଧୀର ହୋଇ ପଡ଼ିଲେ। ହଠାତ୍ ଅଡ଼ିନାନ୍ସ ଶାସନ ଜାରୀ କରିଦେଲେ। ଶ୍ରୀ ଜବାହାରଲାଲ ନେହେରୁଙ୍କ ଉପରେ ନିଷେଧାଜ୍ଞା ଜାରୀ କରାଗଲା। ସେ କୁଆଡ଼େ ଯାଇ ପାରିବେ ନାହିଁ। କୌଣସି ସଭା ସମିତିରେ ଯୋଗ ଦେବେ ନାହିଁ। କିନ୍ତୁ କାହାକୁ କହିବେ ନାହିଁ କିମ୍ବା କୌଣସି ଲେଖା ପ୍ରକାଶ କରି ପାରିବେ ନାହିଁ। ଏ ସବୁ କିଛି କାର୍ଯ୍ୟ କରିବାକୁ ଇଚ୍ଛା କଲେ ଆଗ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ଅନୁମତି ନେବାକୁ ପଡ଼ିବ। କୌଣସି କାମ କରିବାକୁ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ଅନୁମତି ନେବାର ଆବଶ୍ୟକ ଦରକାର କରୁ ନାହାନ୍ତି ବୋଲି ଶ୍ରୀ ଜବାହାରଲାଲ ସରକାରଙ୍କୁ ଜଣାଇ ଦେଲେ। ଗାନ୍ଧୀଜୀଙ୍କ ସହିତ ସାକ୍ଷାତ କରିବା ପାଇଁ ବମ୍ବେଇ ଯିବାକୁ ରେଳରେ ଚଢ଼ିଲା ବେଳେ ସେ ଧରା ହେଲେ। ଡିସେମ୍ବର ୨୪ ତାରିଖ ଦିନ ଗାନ୍ଧିଜୀ ବମ୍ବେଇରେ ପଦାର୍ପଣ କରିଥିଲେ। କିନ୍ତୁ ତାର ଚାରିଦିନ ପୂର୍ବରୁ ଶ୍ରୀ ଜବାହାରଲାଲ ଧରା ହୋଇ ଜେଲ ଯାଇଥିଲେ।

କୌଣସି ଜଳାଶୟରେ କିଛି ନିକ୍ଷେପ କଲେ ତାହା ଯେପରି ଜଳରେ ତରଙ୍ଗମାଳା ସୃଷ୍ଟି କରେ, ଦେଶରେ ଘଟୁଥିବା ଘଟଣା ସବୁ ସେପରି ଆମ୍ଭମାନଙ୍କ ମନ ଓ ହୃଦୟରେ ଭାବତରଙ୍ଗ ସୃଷ୍ଟି କରୁଥିଲା। ନିକଟ ଭବିଷ୍ୟତରେ କଣ ଘଟିବ ତାହାର କଳ୍ପନା କରି ହେଉ ନାହିଁ। ସରକାରଙ୍କ ଅତିଥିଶାଳାକୁ ଫେରିଯିବାକୁ ଶୀଘ୍ର ପଡ଼ିବ, ଏ ବିଷୟରେ ମନରେ ଆଉ କୌଣସି ସନ୍ଦେହ ରହୁ ନାହିଁ। ଇତ୍ୟବସରରେ ଚମ୍ପାପୁର ଆଶ୍ରମରେ କେତେକ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଘଟିଛି। ଶ୍ରୀ ଦାମୋଦର ସାହୁ ସାବରମତୀ ଆଶ୍ରମରେ ଶିକ୍ଷା ସମାପ୍ତ କରି ଆଶ୍ରମକୁ ଫେରିଛନ୍ତି। ଶ୍ରୀ ଶରତଚନ୍ଦ୍ର ପଟ୍ଟନାୟକ ମଧ୍ୟ ତାଙ୍କର ଶିକ୍ଷା ଶେଷ କରି ଆଶ୍ରମରେ ଯୋଗ ଦେଇଛନ୍ତି। ବିଶେଷ ଘଟଣା ହେଉଛି ନାରୀକର୍ମୀ ଶ୍ରୀମତୀ ଅନ୍ନପୂର୍ଣ୍ଣାଙ୍କ ଆଶ୍ରମରେ ଯୋଗଦାନ।

ସ୍ୱର୍ଗୀୟ ଉତ୍କଳମଣି ଗୋପବନ୍ଧୁ ଦାସ ପୁରୀରେ ଗୋଟିଏ ବିଧବାଶ୍ରମ ସ୍ଥାପନ କରିଥିଲେ। ତାହାଙ୍କ ସ୍ୱର୍ଗବାସ ପରେ ସେ ଆଶ୍ରମଟି ଭାଙ୍ଗିଗଲା। ସେଠାରୁ ଅନ୍ନପୂର୍ଣ୍ଣା ସାବରମତୀ ଆଶ୍ରମକୁ ଗଲେ। ମାତ୍ର ସେଠାକୁ ଗଲାପରେ ତାଙ୍କର ପୂର୍ବକୃତ ପାପକର୍ମ ଜଣା ପଡ଼ିବାରୁ ତାଙ୍କୁ କଲିକତାର ଅବଳାଶ୍ରମକୁ ପଠାଇ ଦିଆଯାଇଥିଲା। ଏହିଠାରେ ତାଙ୍କର ଗୋଟିଏ ପୁତ୍ର ସନ୍ତାନ ଜାତହେଲା। କିନ୍ତୁ ତାଙ୍କ ପଶ୍ଚାତ୍ତାପ କହିଲେ ନ ସରେ। ତାଙ୍କର ମର୍ମ ବେଦନା ଅବଳାଶ୍ରମର କର୍ତ୍ତୃପକ୍ଷଙ୍କ ହୃଦୟକୁ ଦ୍ରବୀଭୂତ କଲା। ଅନ୍ନପୂର୍ଣ୍ଣାଙ୍କ ଇଚ୍ଛା ଦେଶ ସେବାରେ ନିଜକୁ ବୁଡ଼ାଇଦେବା। ଅବଳାଶ୍ରମର କର୍ତ୍ତୃପକ୍ଷ ଏକଥା ସାବରମତୀ ଆଶ୍ରମକୁ ଲେଖିଲେ। ସାବରମତୀ ଆଶ୍ରମର ପରିଚାଳକ ବୁଝାସୁଝା କରି ତାଙ୍କର ହୃଦ୍‌ବୋଧ ହେବାରୁ ଅନ୍ନପୂର୍ଣ୍ଣାଙ୍କୁ ଦେଶର କିଛି ସେବା କରିବାପାଇଁ ଓଡ଼ିଶାକୁ ପଠାଇବାକୁ ସ୍ଥିର କଲେ। ମୋ ନିକଟକୁ ପତ୍ର ଆସିଲା। କାରଣ ସେତେବେଳକୁ

ଓଡ଼ିଶାର ଯେ କୌଣସି ବିଷୟରେ ସାବରମତୀ ଆଶ୍ରମ ଏବଂ ଗାନ୍ଧିଜୀ ମଧ୍ୟ ମୋର ମତାମତ ଲୋଡୁଥିଲେ। ଓଡ଼ିଶାରୁ ଆଉ କାହାରି ମୋ ପରି ଘନିଷ୍ଠ ସଂବନ୍ଧ ଏ ପର୍ଯ୍ୟନ୍ତ ସ୍ଥାପିତ ହୋଇପାରି ନ ଥାଏ। ଓଡ଼ିଶାର ଅବସ୍ଥାକୁ ବିଚାର କରି ମୁଁ କିଛି ବ୍ୟବସ୍ଥା କରିପାରିବି ନାହିଁ ବୋଲି ଜଣାଇଦେଲି। ତାରପର ଭାଇ ଜୀବରାମ କଲ୍ୟାଣୀଜୀ କୋଠରୀଙ୍କ ନିକଟ ପତ୍ର ଆସିଲା। ଜୀବରାମ ଭାଇ ଜଣେ ବଡ଼ ଶେଠ। ତାଙ୍କର କୋଟିଏ ଟଙ୍କାର ବ୍ୟବସାୟ। ସେଥିରେ ତାଙ୍କ କାକା ଜଣେ ସମାନ ଅଂଶରେ ଭାଗୀଦାର। ଜୀବରାମ ଭାଇ ଗାନ୍ଧିନୀତି ଗ୍ରହଣ କରିବାରୁ କାକା ତାଙ୍କର ବିରୋଧ କଲେ। ତେଣୁ ସେ ସମସ୍ତ ସମ୍ପତ୍ତି କାକାଙ୍କୁ ଦେଇ କେବଳ ପାଞ୍ଚ ଲକ୍ଷ ଟଙ୍କା ନେଇ ବ୍ୟବସାୟରୁ ସମସ୍ତ ଦାବୀ ତ୍ୟାଗ କରିଦେଲେ। ଏଥିରୁ ତିନିଲକ୍ଷ ଟଙ୍କା ମହାତ୍ମାଗାନ୍ଧୀଜୀଙ୍କୁ ଦାନ କରି ଓଡ଼ିଶାରେ ଦରିଦ୍ରଙ୍କ ସେବା କରିବାପାଇଁ ଓଡ଼ିଶା ଆସିଲେ। ଓଡ଼ିଶାକୁ ଆସିଲାବେଳେ ତାଙ୍କୁ ସବୁ ପ୍ରକାର ସାହାଯ୍ୟ କରିବାପାଇଁ ଶ୍ରୀ ମହାଦେବ ଭାଇ ଦେଶାଇ ମତେ ଖଣ୍ଡିଏ ପତ୍ର ଲେଖିଥିଲେ। ସେ ସସ୍ତ୍ରୀକ ରହି କାର୍ଯ୍ୟ କରୁଛନ୍ତି। ସାବରମତୀ ଆଶ୍ରମରୁ ପତ୍ର ପାଇ ଜୀବରାମ ଭାଇ ମତେ ପତ୍ର ଲେଖି ଅନ୍ନପୂର୍ଣ୍ଣାଙ୍କପାଇଁ କିଛି ବ୍ୟବସ୍ଥା କରିବାକୁ ବାଧ କଲେ। ଅନ୍ନପୂର୍ଣ୍ଣା ଓଡ଼ିଶାରେ ଯେଉଁଠାରେ କାର୍ଯ୍ୟ କରିବେ, ସାବରମତୀ ଆଶ୍ରମରୁ ତାଙ୍କର ଚଳିବା ମୁତାବକ ସାହାଯ୍ୟ ମିଳିବାର କଥା ହେଲା।

ଏ ବିଷୟ ମୁଁ ଆଶ୍ରମର କର୍ମୀମାନଙ୍କ ସହିତ ଆଲୋଚନା କରିଥିଲି। ଆଶ୍ରମର ପୁରୁଣା କର୍ମୀ ଶ୍ରୀ ରଘୁନାଥ ପଣ୍ଡା ଅନ୍ନପୂର୍ଣ୍ଣାଙ୍କୁ ଆଶ୍ରମକୁ ଆଣି ପଲ୍ଲୀ ସଂଗଠନ କାର୍ଯ୍ୟ କରାଇବାକୁ ମତ ବ୍ୟକ୍ତ କଲେ। ତାହାହେଲେ ସେ ନିଜ ସ୍ତ୍ରୀଙ୍କୁ ଆଶ୍ରମକୁ ଆଣିପାରିବେ। ଆଶ୍ରମ ଏହିପରି ଦୁଇଟି ନାରୀକର୍ମୀ ପାଇବ। ଏ ପ୍ରସ୍ତାବରେ ମୁଁ ଭଲିଗଲି। ଅନ୍ନପୂର୍ଣ୍ଣାଙ୍କୁ ଆଶ୍ରମକୁ ଆଣିବାକୁ ନିଶ୍ଚୟ କରି ସାବରମତୀ ଆଶ୍ରମ ଓ ଶ୍ରୀ ଜୀବରାମ ଭାଇଙ୍କୁ ମୋର ପ୍ରସ୍ତାବ ଜଣାଇଦେଲି। ବର୍ତ୍ତମାନ ମୋଠାରୁ ଅନୁମତି ନେଇ କଲିକତା ଅବଳାଶ୍ରମରୁ ଅନ୍ନପୂର୍ଣ୍ଣାଙ୍କୁ ଆଣିବାର କାର୍ଯ୍ୟ ବାକୀ ରହିଲା।

କିନ୍ତୁ ଦେଶର ପରିସ୍ଥିତି ଭୀଷଣ ଆକାର ଧାରଣ କରୁଛି। କଂଗ୍ରେସକୁ ଦବେଇ ଦେବାକୁ ସରକାର ବଦ୍ଧପରିକର ହୋଇ ଉଠୁଥିବାର ଜଣାପଡୁଛି। ଆମ୍ଭେମାନେ ବିସ୍ମିତ ନୟନରେ ମହାତ୍ମାଗାନ୍ଧୀଙ୍କ ପ୍ରତ୍ୟାବର୍ତ୍ତନକୁ ଅନାଇ ରହିଛୁ। ମନରେ ଗୋଟାଏ କ୍ଷୀଣ ଆଶା ରହିଛି, ଗାନ୍ଧିଜୀ ଯଦି କୌଣସି ଉପାୟରେ ସନ୍ଧି ସ୍ଥାପନ କରିବାର ବାଟ ଉଦ୍ଭାବନ କରିପାରନ୍ତି। ଡିସେମ୍ବର ମାସ ଶେଷ ସପ୍ତାହରେ ଗାନ୍ଧିଜୀ ଗୋଲଟେବୁଲ ସମ୍ମିଳନୀରୁ ଭାରତକୁ ଫେରିଆସିଲେ। ଭାରତରେ ଘଟୁଥିବା ସମସ୍ତ ଘଟଣା ତାହାଙ୍କୁ ଅଜଣା ନାହିଁ। ବମ୍ବେଇରେ ଗୋଟିଏ ସାଧାରଣ ସଭାରେ ଗାନ୍ଧିଜୀ ଘୋଷଣା କଲେ, "ସରକାର ଅଡ଼ିନାନ୍‌ସ ଜାରୀ କରି କଂଗ୍ରେସର ବଳ କଷିବାକୁ ଆହ୍ୱାନ ଦେଇଛନ୍ତି।

ମତେ ଯେଉଁ ପ୍ରତିଶ୍ରୁତି ଦେବାରୁ ମୁଁ ବିଲାତ ଗଲି, ତଦ୍ଦ୍ୱାରା ମୋ ପ୍ରତି ପ୍ରତାରଣା କରାଯାଇଛି ବୋଲି ମୁଁ ମନେ କରୁଛି। ବଙ୍ଗଳାକୁ ଭୟଭୀତ କରାଇବା ଇଚ୍ଛାରେ ଯେଉଁ ଅର୍ଡ଼ିନାନ୍‌ସ ସବୁ ଜାରୀ କରାଯାଇଛି ସେ ସବୁର କୌଣସି ଦରକାର ଥିଲା ବୋଲି ମୁଁ ମନେକରୁନାହିଁ। ତଥାପି ବଙ୍ଗଳାରେ ଘଟିଥିବା ହିଂସାକାଣ୍ଡକୁ ନିନ୍ଦା ନ କରି ମୁଁ ରହିପାରୁ ନାହିଁ। ବଡ଼ଲାଟ ୱେଲିଙ୍ଗଡନ୍ ସାହେବ ଜଣେ ଖ୍ରୀଷ୍ଟିୟାନ। ବଡ଼ଦିନ ପର୍ବରେ ଜଣେ ଖ୍ରୀଷ୍ଟିୟାନ ବଡ଼ଲାଟଙ୍କଠାରୁ ଅର୍ଡ଼ିନାନ୍‌ସ ରୂପକ ଭଲ ପୁରସ୍କାର ମତେ ମିଳିଛି। ତଥାପି କିଛି ବାଟ ଯଦି ଦେଖିପାରେ ସମାଧାନ ପାଇଁ ଯଥାସାଧ ଚେଷ୍ଟା କରିବି। ମୋ ଚେଷ୍ଟାରେ ଯଦି ମୁଁ ବିଫଳ ହୁଏ ତେବେ ସମସ୍ତଙ୍କୁ ସଂଗ୍ରାମକୁ ଆହ୍ୱାନ କରିବି। ଏଥର ଯେଉଁ ସଂଗ୍ରାମ ହେବ ତାହା ହେବ ଶେଷ ସଂଗ୍ରାମ। ଗତ ସଂଗ୍ରାମରେ ଲୋକେ ଲାଠିର ସମ୍ମୁଖୀନ ହୋଇଥିଲେ। ଏଥର ବନ୍ଧୁକର ସମ୍ମୁଖୀନ ହେବାକୁ ପଡ଼ିବ। ଭାରତର ସ୍ୱାଧୀନତା ସଂଗ୍ରାମରେ ଲକ୍ଷ ଲକ୍ଷ ଲୋକଙ୍କୁ ବଳିଦାନ ଦେବାକୁ ମୁଁ କୁଣ୍ଠିତ ହେବି ନାହିଁ। ବିଲାତରେ ଏହି କଥା ମୁଁ ଇଂରେଜ ଜାତିକୁ ଶୁଣାଇ ଆସିଛି।''

ସେହିଦିନ ବମ୍ବେଇରେ କଂଗ୍ରେସ କାର୍ଯ୍ୟକାରୀ ସମିତିର ବୈଠକ ବସିଲା। ସରକାରଙ୍କ ସହିତ ବର୍ତ୍ତମାନ ଆଉ କୌଣସି କଥାବାର୍ତ୍ତା ନ ଚଳାଇ ସନ୍ଧିସର୍ତ୍ତ ରଦ୍ଦ କରିଦେବାପାଇଁ ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା। କିନ୍ତୁ ଏହି ପ୍ରସ୍ତାବକୁ ସ୍ଥଗିତ ରଖି ସରାକରଙ୍କ ଉଦ୍ଦେଶ୍ୟ କଣ ବୁଝିବାପାଇଁ ବଡ଼ଲାଟ ସାହେବଙ୍କ ସହିତ କଥା ହେବାକୁ ଗାନ୍ଧିଜୀ ପରାମର୍ଶ ଦେଲେ। ବଡ଼ଲାଟଙ୍କ ସହିତ ଦେଖାକରିବାକୁ ଗାନ୍ଧିଜୀ ନିମ୍ନଲିଖିତ ମର୍ମରେ ଗୋଟିଏ ତାର ପ୍ରେରଣ କଲେ—''ବଙ୍ଗଳା ଓ ସୀମାନ୍ତ ପ୍ରଦେଶରେ ଆପଣ ଅର୍ଡ଼ିନାନ୍‌ସ ଜାରୀ କରିଥିବେ ଏବଂ ମୋର ବିଶ୍ୱସ୍ତ ସାଥି ସବୁ ଧରାହୋଇ ଜେଲରେ ଥିବେ, ବିଲାତରୁ ଫେରି ମୁଁ ଏ କଥା ଶୁଣିବାକୁ ପାଇବି ବୋଲି ପ୍ରସ୍ତୁତ ନ ଥିଲି। ଆମ୍ଭ ଦୁହିଁଙ୍କ ମଧ୍ୟରେ ଯେଉଁ ବନ୍ଧୁଭାବ ଥିଲା ତାହା ଆଉ ରହିଲା ନାହିଁ ବୋଲି କଣ ମୁଁ ଏଥିରୁ ବୁଝିବି? କଂଗ୍ରେସକୁ କିପରି କଣ ପରାମର୍ଶ ମୁଁ ଦେବି ଏ ବିଷୟରେ ଉପଦେଶ ଲୋଡ଼ିବାପାଇଁ ମୁଁ ଆପଣଙ୍କ ସହିତ କଥୋପକଥନ କରିବାକୁ ଆପଣ ଇଚ୍ଛା କରନ୍ତି କି ନାହିଁ, ଅନୁଗ୍ରହପୂର୍ବକ ମତେ ତାର ଦ୍ୱାରା ଜଣାଇ ପାରିଲେ ମୁଁ ବଡ଼ ଉପକୃତ ହେବି।''

ଦୁଇଦିନ ପରେ ବଡ଼ଲାଟଙ୍କ ନିକଟରୁ ତାର ଆସିଲା ସରକାର କାର୍ଯ୍ୟକୁ ସମର୍ଥନ କରି। ସେଥିରେ ଲେଖାଥିଲା—''ଆପଣ ଗୋଲଟେବୁଲ ସମ୍ମିଳନୀ କାର୍ଯ୍ୟ ହେତୁ ଏଠାରେ ନ ଥିଲେ। ସେଠାରେ ଆପଣ ଯେପରି କାର୍ଯ୍ୟ କରିଛନ୍ତି ତାହାକୁ ବିଚାର କରି ବଡ଼ଲାଟ ବିଶ୍ୱାସ କରୁ ନାହାନ୍ତି ଯେ ଯୁକ୍ତ ପ୍ରଦେଶ ଓ ସୀମାନ୍ତ ପ୍ରଦେଶରେ କଂଗ୍ରେସ ଲୋକେ ଯାହା ସବୁ କରିଛନ୍ତି ସେ ସବୁ ଆପଣ ସମର୍ଥନ

କରିବେ। ଏହା ଯଦି ହୁଏ, ତେବେ ବଡ଼ଲାଟ ଆପଣଙ୍କୁ ସାକ୍ଷାତ ଦେଇ କଥାବାର୍ତ୍ତା କରିବାକୁ ପ୍ରସ୍ତୁତ ଅଛନ୍ତି। ଗୋଲଟେବୁଲ ସମ୍ମିଳନୀରେ ଯେପରି ସହଯୋଗ ମନୋବୃତ୍ତି ପ୍ରକାଶ ପାଇଛି ତାହାକୁ ରକ୍ଷା କରିବାପାଇଁ ଉପଦେଶ ଦେବାରେ ଆପଣ କଂଗ୍ରେସ ଉପରେ ଆପଣଙ୍କ ପ୍ରଭାବ ପକାଇ ପାରିବେ ବୋଲି ବଡ଼ଲାଟ ବିଶ୍ୱାସ କରନ୍ତି। କିନ୍ତୁ ଏ କଥା ଆପଣ ପରିଷ୍କାର ରୂପେ ଜାଣି ରଖନ୍ତୁ, ଭାରତ ସରକାର ବିଲାତ ସରକାରଙ୍କ ଜ୍ଞାତ ସାରରେ ଆବଶ୍ୟକ ବୋଧ କରିବାରୁ ବଙ୍ଗଳା, ଯୁକ୍ତପ୍ରଦେଶ ଓ ସୀମାନ୍ତ ପ୍ରଦେଶ ସବୁରେ ଯେଉଁ ସବୁ ଜରୁରିକାଳୀନ ଆଇନ ଜାରୀ କରିଛନ୍ତି ସେ ବିଷୟରେ ଆପଣଙ୍କ ସହିତ କୌଣସି ଆଲୋଚନା କରିବାକୁ ବଡ଼ଲାଟ ପ୍ରସ୍ତୁତ ନୁହନ୍ତି। ପରିଣାମରେ ଯାହା ଘଟୁ ପଛକେ ଦେଶର ଶାସନ ଶୃଙ୍ଖଳା ରକ୍ଷା କରିବାକୁ ସରକାରଙ୍କ ଆଇନ ସବୁ ଅବଶ୍ୟ ବଳବତ୍ତର ରହିବ। ଏହି ପତ୍ର ପ୍ରକାଶ କରିବାକୁ ସରକାର ଇଚ୍ଛା କରନ୍ତି। କେବଳ ଆପଣଙ୍କ ଉତ୍ତର ପାଇବା ଅପେକ୍ଷାରେ ତାହା ବନ୍ଦ ରହିଲା।''

ଏହାର ଜବାବ ଦେବାକୁ ଗାନ୍ଧିଜୀ ଲେଖିଲେ—''ଆପଣଙ୍କର ଯେ ପ୍ରକାର ମେଚ୍ଛାଚାରୀ ଶାସନ ଚାଲିଛି ସେଥିରେ ଶାସନଖସଡ଼ା ବିଚାର କରିବାର ବେଳ ଆଉ ନାହିଁ। ଆପଣ କହିଛନ୍ତି, କଂଗ୍ରେସ ଗୋଳମାଳ ସୃଷ୍ଟି କରିବାକୁ ଉଦ୍ୟତ ହେବାରୁ ଅର୍ଡ଼ିନାନ୍‌ସ ଜାରୀ କରିବାକୁ ସରକାର ବାଧ୍ୟ ହେଲେ। ଏହା ସ୍ୱୀକାର କରିବାକୁ ମୁଁ ପ୍ରସ୍ତୁତ ନୁହେଁ। ଆପଣ ସହଯୋଗ ଆଶା କରୁଛନ୍ତି, କିନ୍ତୁ ଉଭୟ ପକ୍ଷରୁ ସହଯୋଗ ମନୋବୃତ୍ତି ପ୍ରକାଶ ପାଇବା ଦରକାର। ସରକାରଙ୍କ ସହଯୋଗ ନ ଥାଇ କଂଗ୍ରେସ ସହଯୋଗ କରିବା ଆପଣଙ୍କର ଇଚ୍ଛା। କଂଗ୍ରେସର କାର୍ଯ୍ୟକଳାପ ଯଦି ବିପଦଜନକ ଜଣାଗଲା ତେବେ ତାହା ଦମନ କରିବାକୁ ଦେଶରେ ପ୍ରଚଳିତ ଆଇନ୍ ଅଛି। ଅର୍ଡ଼ିନାନ୍‌ସ ଜାରୀ କରିବାର କୌଣସି କାରଣ ମତେ ଦେଖାଯାଉ ନାହିଁ। କେବଳ କଂଗ୍ରେସର ସହଯୋଗ ଲୋଡ଼ିଲେ କାର୍ଯ୍ୟ ଚଳିବ ନାହିଁ। ସହଯୋଗ ଉଭୟପକ୍ଷରୁ ହେବା ଉଚିତ। ବଡ଼ଲାଟଙ୍କ ଉତ୍ତରରୁ ଏହା ହିଁ ମୁଁ ବୁଝିଲି। ତାହା ନ ହେଲେ ତାଙ୍କ ସହିତ ଦେଖାକରି ସମସ୍ତ ବିଷୟ ବୁଝିବାକୁ ଇଚ୍ଛା କରୁଥିବାବେଳେ ତାହାଙ୍କ ସହିତ ଦେଖା କରିବାକୁ ଏଭଳି ଭାବରେ ମତେ ନାସ୍ତି ବାଣୀ ଶୁଣାଇ ନ ଥାନ୍ତେ। ମୁଁ ବିଦେଶରେ ଥିଲେ ମଧ୍ୟ ମୋର ସହକର୍ମୀମାନଙ୍କ କାର୍ଯ୍ୟପାଇଁ ମୁଁ ନିଶ୍ଚୟ ଦାୟୀ। କେବଳ ଗୋଟିଏ ପକ୍ଷରୁ ଶୁଣି ଚୂଡ଼ାନ୍ତ ନିଷ୍ପତ୍ତି କରିଦେବା ଉଚିତ ନୁହେଁ। ତେଣୁ କଂଗ୍ରେସର କାର୍ଯ୍ୟକଳାପରୁ କିପରି କଣ ବୁଝିବାରୁ ସରକାର ଅର୍ଡ଼ିନାନ୍‌ସ ଜାରୀ କରିବାକୁ ବାଧ୍ୟହେଲେ କେବଳ ସେତିକି ବୁଝିବା ଉଦ୍ଦେଶ୍ୟରେ ମୁଁ ବଡ଼ଲାଟ ସାହେବଙ୍କ ସହିତ ଦେଖା କରି କଥା ହେବାକୁ ଇଚ୍ଛା ପ୍ରକାଶ କରିଥିଲି। ତାହାଙ୍କ ସହିତ କଥା ହୋଇ ମୁଁ ଯଦି ଜାଣି ପାରିଥାନ୍ତି ଯେ କଂଗ୍ରେସର ପ୍ରକୃତ

ଭୁଲ୍ ହୋଇଛି, ତେବେ ଶାନ୍ତିସ୍ଥାପନ ପାଇଁ କଂଗ୍ରେସକୁ କିପରି କଣ ମୁଁ ଉପଦେଶ ଦେବି ଏବଂ ସେ ବିଷୟରେ ବଡ଼ଲାଟ ମୋ ଠାରୁ କଣ ଆଶା କରନ୍ତି ତାହାହିଁ ମୁଁ ତାହାଙ୍କ ସହିତ ପରାମର୍ଶ କରିଥାନ୍ତି। କଥାବାର୍ତ୍ତା କରିବାକୁ ସେ ଯେଉଁ ସର୍ତ୍ତ ଦେଇଛନ୍ତି ତଦ୍ୱାରା ଦେଖା ସାକ୍ଷାତର ବାଟ ବନ୍ଦ କରି ଦିଆଯାଇଛି। ଯେପରି ବନ୍ଧୁତ୍ୱପୂର୍ଣ୍ଣ ମନୋବୃତ୍ତିରେ ବଡ଼ଲାଟ ସାହେବଙ୍କ ସହିତ ଦେଖା କରିବାକୁ ଇଚ୍ଛା କରିଥିଲି ତାହାଙ୍କର ଟେଲିଗ୍ରାମ ତହିଁର ଯଥାର୍ଥ ଉତ୍ତର ନୁହେଁ।

"ତଥାପି ବେଳ ଯାଇ ନାହିଁ। ବଡ଼ଲାଟଙ୍କୁ ମୁଁ ଅତି ବିନୀତ ଭାବରେ ଅନୁରୋଧ କରୁଛି, ସେ ପୁଣି ଥରେ ବିଚାର କରନ୍ତୁ ଏବଂ ମତେ ବନ୍ଧୁ ଭାବରେ ଗ୍ରହଣ କରନ୍ତୁ। ମୁଁ ନିର୍ମଳ ଅନ୍ତଃକରଣରେ ତାଙ୍କ ସହିତ ବସି ଆଲୋଚନା କରିବି। ଆମ୍ଭର ଆଲୋଚ୍ୟ ବିଷୟକୁ ସୀମାବଦ୍ଧ ନ କରି ଏବଂ କୌଣସି ସର୍ତ୍ତ ମଧ ନ ରଖି ସମସ୍ତ କଥା ମତେ ଜଣାଇବା ଉଚିତ। ମନରେ କୌଣସି ପ୍ରକାର ସଂକୋଚ ଭାବ ନ ରଖି ମୁଁ ସବୁ ପ୍ରଦେଶକୁ ଯିବି। ସେଠାରେ କର୍ମଚାରୀମାନଙ୍କ ସାହାଯ୍ୟରେ ଉଭୟ ପକ୍ଷର କଥା ଶୁଣିବି। ମୁଁ ଯଦି ଜାଣିବି ଯେ ମୁଁ ଏବଂ କଂଗ୍ରେସର ନେତୃବୃନ୍ଦ ପ୍ରକୃତ ଘଟଣା ସଂବନ୍ଧରେ ଯାହା ଯେପରି ବୁଝିଛୁ ତାହା ଠିକ ନୁହେଁ ଏବଂ ସରକାର ଯାହା ବୁଝିଛନ୍ତି ତାହାହିଁ ସଠିକ ସମ୍ବାଦ, ତାହାହେଲେ ସେହିକଥା ପ୍ରକାଶ୍ୟରେ ମୁଁ ଘୋଷଣା କରିଦେବି ଏବଂ ସରକାରଙ୍କୁ ସାହାଯ୍ୟ କରିବାକୁ ପଶ୍ଚାତ୍‌ପଦ ହେବି ନାହିଁ।"

"ସରକାରଙ୍କ ସହିତ ଏହିପରି ଭାବରେ ସହଯୋଗ କରିବାକୁ ମୋର ପ୍ରବଳ ଇଚ୍ଛା ଓ ଆକାଂକ୍ଷା ଅଛି ସତ, ତଥାପି ମହାମାନ୍ୟ ବଡ଼ଲାଟ ସାହେବଙ୍କୁ ସ୍ପଷ୍ଟଭାବରେ କହିଦେବାକୁ ଇଚ୍ଛା କରେ, ସେ ଜାଣି ରଖନ୍ତୁ ମୋର ସାହାଯ୍ୟ କରିବାର ସୀମା ଅଛି। ଅହିଂସା ମୋର ଧର୍ମ। ଆଇନ ଅମାନ୍ୟ କରି ସତ୍ୟାଗ୍ରହ କରିବା ପ୍ରତ୍ୟେକ ମନୁଷ୍ୟ ଏବଂ ପ୍ରତ୍ୟେକ ଜାତିର ମଧ ଜନ୍ମଗତ ଅଧିକାର ଅଛି ବୋଲି ମୁଁ ବିଶ୍ୱାସ କରେ। ଯେଉଁ ଦେଶର ଶାସନ ଜନସାଧାରଣଙ୍କ ମତାମତ ଉପରେ ନିର୍ଭର କରେ ନାହିଁ, ସେଠାରେ ହିଂସା କିମ୍ବା ହିଂସାତ୍ମକ ବିଦ୍ରୋହ ନ କରି ଅହିଂସାପୂର୍ଣ୍ଣ ସତ୍ୟାଗ୍ରହ ଦ୍ୱାରା ଶାସନ ପରିବର୍ତ୍ତନ କରିବା ଏକମାତ୍ର ଉପାୟ। ମୁଁ ଯାହା ଶୁଣିବାକୁ ପାଇଛି ଏବଂ ସରକାରଙ୍କ କାର୍ଯ୍ୟକଳାପ ଯେପରି ଦେଖୁଛି ତହିଁରୁ ମୋର ହୃଦ୍‌ବୋଧ ହୋଇଛି ଦେଶକୁ ବାଟ ଦେଖାଇବା ପାଇଁ ସମ୍ଭବତଃ ମତେ ଆଉ ସୁବିଧା ସୁଯୋଗ ମିଳିବ ନାହିଁ। ସୁତରାଂ ମୋର ପରାମର୍ଶ ଅନୁସାରେ ସତ୍ୟାଗ୍ରହ ଆରମ୍ଭ କରିବାକୁ କଂଗ୍ରେସ ପ୍ରସ୍ତାବ ଗ୍ରହଣ କରୁଛି। ଆପଣ ଜାଣିବା ପାଇଁ ଉକ୍ତ ପ୍ରସ୍ତାବଟି ମୁଁ ଏଥି ସହିତ ପଠାଉଅଛି। ଇଚ୍ଛା କଲେ ବଡ଼ଲାଟ ମତେ ତୁରନ୍ତ ଡକାଇ ନେଇ ମୋ ସହିତ ଆଲୋଚନା କରି ପାରନ୍ତି। ତାହାହେଲେ ସତ୍ୟାଗ୍ରହ ଆରମ୍ଭ ନ କରି ମୁଁ ଯାଇ

ତାହାଙ୍କ ସହିତ ଆଲୋଚନା କରିବି। ମୁଁ ଆଶା କରୁଛି, ଆମ୍ଭମାନଙ୍କ ଆଲୋଚନା ଫଳରେ ସତ୍ୟାଗ୍ରହ ଜାରି କରିବା ଆଉ ଦରକାର ପଡ଼ି ନ ପାରେ। ବଡ଼ଲାଟ ଆଉ ମୋ ମଧ୍ୟରେ ଯେଉଁ ପତ୍ର ବିନିମୟ ହେଲା ତାହା ତୁରନ୍ତ ପ୍ରକାଶ କରିଦେବା ଉଚିତ୍ ବୋଲି ମୁଁ ମନେ କରୁଛି। ସୁତରାଂ ଆପଣଙ୍କ ତାର ଏବଂ ମୋର ଏହି ଉତ୍ତର ସହିତ ଆଉ ସବୁ ପତ୍ର ମଧ୍ୟ ମୁଁ ପ୍ରକାଶ କରିବାକୁ ଦେଇ ଦେଉଛି।''

୧୯୩୨ ମସିହା ଜାନୁୟାରୀ ଦୁଇ ତାରିଖରେ ଗାନ୍ଧୀଜୀଙ୍କ ଏହି ପତ୍ରର ଉତ୍ତର ବଡ଼ଲାଟଙ୍କଠାରୁ ଆସିଲା। ସେଥିରେ ଲେଖାଥିଲା—''ଗାନ୍ଧିଜୀଙ୍କ ପରାମର୍ଶରେ କଂଗ୍ରେସ ପୁଣି ସତ୍ୟାଗ୍ରହ ଆରମ୍ଭ କରିବାପାଇଁ ପ୍ରସ୍ତାବ ଗ୍ରହଣ କରିଥିବାର ଶୁଣି ବଡ଼ଲାଟ ବିସ୍ମୟ ପ୍ରକାଶ କରୁଛନ୍ତି। ବିଲାତର ପ୍ରଧାନମନ୍ତ୍ରୀଙ୍କ ବକ୍ତୃତାରେ ଉଲ୍ଲେଖଥିବା ଶାସନ ସଂସ୍କାରକୁ କାର୍ଯ୍ୟରେ ପରିଣତ କରିବାକୁ ଭାରତ ଓ ବିଲାତ ସରକାର ଉଭୟେ ବ୍ୟଗ୍ରତା ପ୍ରକାଶ କରୁଥିବା ବେଳେ କଂଗ୍ରେସର ଏଭଳି ମନୋବୃତ୍ତି ଅତ୍ୟନ୍ତ ଶୋଚନୀୟ। କାହାରି ବେଆଇନ କାର୍ଯ୍ୟ କରିବାର ଧମକକୁ କୌଣସି ଦାୟିତ୍ୱପୂର୍ଣ୍ଣ ସରକାର କଦାପି ବରଦାସ୍ତ କରିବେ ନାହିଁ। ଯଥା ସମ୍ଭବ ସମସ୍ତ ପ୍ରକାର ଚେଷ୍ଟା କରି କାହିଁରେ କୃତକାର୍ଯ୍ୟ ନ ହେବାରୁ ବୁଝି ବିଚାରି ଦେଶରେ ଶାନ୍ତି ସ୍ଥାପନ କରିବା ପାଇଁ ସରକାର ଯେଉଁ ମାର୍ଗ ଅବଲମ୍ବନ କରିଛନ୍ତି, ତାହା ନ କରି କେବଳ ଆପଣଙ୍କ ବିଚାର ଉପରେ ନିର୍ଭର କରି କାର୍ଯ୍ୟ କରିବା ନୀତିକୁ ସରକାର ଗ୍ରହଣ କରି ନ ପାରନ୍ତି। ସତ୍ୟାଗ୍ରହ ଜାରୀ କରିବାର ଧମକ ଦେଇସାରି ଦେଖାସାକ୍ଷାତର ଆଉ କୌଣସି ପ୍ରୟୋଜନ ଅଛି ବୋଲି କଂଗ୍ରେସ ବିଚାରୁଥିବ ସେପରି ବିଶ୍ୱାସ ଆଉ ବଡ଼ଲାଟଙ୍କର ନାହିଁ କିମ୍ବା ସରକାର ମଧ୍ୟ ସେପରି ବିଚାରୁ ନାହାନ୍ତି। କଂଗ୍ରେସ ଯେଉଁ ମାର୍ଗ ଅବଲମ୍ବନ କରିବାକୁ ଯାଉଛି, ତହିଁର ପରିଣାମ ପାଇଁ ଆପଣ ଓ କଂଗ୍ରେସ ଉଭୟେ ଦାୟୀ ହେବେ ଏବଂ ତହିଁର ମୁକାବିଲା କରିବାକୁ ସରକାର ଉପଯୁକ୍ତ ପନ୍ଥା ଅବଲମ୍ବନ କରିବାକୁ ବାଧ ହେବେ।''

ବଡ଼ଲାଟଙ୍କଠାରୁ ଉପରୋକ୍ତ ଉତ୍ତର ପାଇ ଗାନ୍ଧିଜୀ ପୁଣି ଲେଖିଲେ—''ଅତିଶୟ ଦୁଃଖର ବିଷୟ ଏହି ଯେ ବଡ଼ଲାଟ ସାହେବ ଓ ତାଙ୍କ ସରକାର ଯେପରି ଭାବରେ ମୋର ପତ୍ରର ଅର୍ଥ କରିଛନ୍ତି ସେଥିପାଇଁ ଅତ୍ୟନ୍ତ ଦୁଃଖ ପ୍ରକାଶ ନ କରି ମୁଁ ରହିପାରୁ ନାହିଁ। ସରଳ ଭାବରେ ମନଖୋଲି ମୁଁ ଯେଉଁ କଥା ଲେଖିଲି ତାକୁ ଧମକ ବୋଲି ବିଚାରିବା ନିହାତି ଭୁଲ କଥା। ସରକାର ଭୁଲି ଯାଉଛନ୍ତି, ମୁଁ ତାଙ୍କୁ ସ୍ମରଣ କରେଇ ଦେବାପାଇଁ—ଲେଖିବାକୁ ଇଚ୍ଛା କରୁଛି। ଦିଲ୍ଲୀରେ ଚୁକ୍ତିସର୍ତ୍ତ ସ୍ଥିର କରିବାପାଇଁ ଆଲୋଚନା ଚାଲୁଥିବା ସମୟରେ ସତ୍ୟାଗ୍ରହ ସଂଗ୍ରାମ ବନ୍ଦ କରାଯାଇ ନ ଥିଲା। ଚୁକ୍ତିପତ୍ର ସ୍ୱାକ୍ଷର କଲାପରେ ମଧ୍ୟ ସତ୍ୟାଗ୍ରହ ବନ୍ଦ ନ କରି କେବଳ ସ୍ଥଗିତ କରି ଦିଆଗଲା। ସତ୍ୟାଗ୍ରହ ଆଉ କରିବାକୁ ହେବ ନାହିଁ ଏପରି କୌଣସି

ପ୍ରଶ୍ନ ନ ଥିଲା । ମୁଁ ଲଣ୍ଡନ ଯାତ୍ରା କରିବା ପୂର୍ବରୁ ସରକାରଙ୍କ ସହିତ ଯେଉଁ କଥୋପକଥନ କରାଯାଇଥିଲା ସେତେବେଳେ ସରକାର ଏହାକୁ ସ୍ୱୀକାର କରିଛନ୍ତି । ମୁଁ ସେତେବେଳେ କହିଥିଲି, ଦରକାର ପଡ଼ିଲେ କଂଗ୍ରେସ ସୀମାବଦ୍ଧ ଭାବରେ ସତ୍ୟାଗ୍ରହ କରିବାର କ୍ଷମତା ପ୍ରୟୋଗ କରିବ । ମୋ ଠାରୁ ଏପରି କଥା ଶୁଣି ସରକାର ଆମ୍ଭମାନଙ୍କର ଆପୋଷ ଆଲୋଚନା ବନ୍ଦ କରିଦେଇ ନଥିଲେ । ମୋର ସେପରି କହିବା କଥାକୁ ସରକାର ଯଦି ଆପତ୍ତି କରିଥାନ୍ତେ ତେବେ ମତେ କଦାପି ବିଲାତ ପଠାଇ ନ ଥାନ୍ତେ । ବଡ଼ଲାଟ ସାହେବ ବରଂ ମୋର ବିଲାତଯାତ୍ରା ପାଇଁ ତାଙ୍କର ଶୁଭାଶୀଷ ପ୍ରଦାନ କରିଥିଲେ । ମୋର ବିଚାର ଉପରେ କେବଳ ନିର୍ଭର ରଖି ସରକାର ତାଙ୍କର ନୀତି ପ୍ରୟୋଗ କରନ୍ତୁ ଏପରି ଦାବୀ କଦାପି ମୁଁ କରିନାହିଁ । ଏପରି ଦାବୀ ମୁଁ କରିଛି ବୋଲି କହିବା ନିହାତି ଭୁଲ୍ ଏବଂ ଅନ୍ୟାୟ କଥା । ମୁଁ ବରଂ କହିବାକୁ ଇଚ୍ଛା କରେ ଯେ କୌଣସି ପ୍ରଜାରଂଜକ ବିଧିବଦ୍ଧ ସରକାରଙ୍କର କୌଣସି ନିୟମ ଅବା ଅଇନକୁ ପ୍ରଜାମାନେ ଯଦି ଗ୍ରହଣ ନ କଲେ, ତେବେ ପ୍ରଜା ପ୍ରତିନିଧିମାନଙ୍କ ସୂଚନାକୁ ସହାନୁଭୂତିର ସହିତ ଗ୍ରହଣ କରି ସେମାନଙ୍କ ମନ ମାନିଲା ଭଳି ସମସ୍ତ ତଥ୍ୟ ବୁଝାଇ ଦେବା ସରକାରଙ୍କର ଉଚିତ । ଏହାଛଡ଼ା ମୋର ପତ୍ରର ଅନ୍ୟ କୌଣସି ଅର୍ଥ ନ ଥିଲା । କାହାର କଥାରେ ନ୍ୟାୟ ଅଛି ଯଥା ସମୟରେ ତାହା ଜଣା ପଡ଼ିବ । ତେବେ ମୁଁ ଏତକ ପ୍ରତିଶ୍ରୁତି ଦେବାକୁ ଇଚ୍ଛାକରି କହୁଛି ଯେ କୌଣସି ଦ୍ୱେଷଭାବ ନ ରଖି କଂଗ୍ରେସ, ଅହିଂସ ଭାବରେ ସଂଗ୍ରାମକୁ ପରିଚାଳନ କରିବ । କଂଗ୍ରେସ ଏବଂ କଂଗ୍ରେସର ଜଣେ ସାମାନ୍ୟ ପ୍ରତିନିଧି ହିସାବରେ ମୁଁ ଆଉ କଂଗ୍ରେସ ଉଭୟେ ଆମ୍ଭମାନଙ୍କ କାର୍ଯ୍ୟର ଫଳାଫଳ ପାଇଁ ଦାୟୀ ହେବୁ ଏ କଥା ଆମ୍ଭମାନଙ୍କୁ ଜଣାଇଦେବାର କୌଣସି ଦରକାର ନ ଥିଲା ।''

## ସଂଗ୍ରାମ ଆରମ୍ଭ

୧୯୩୨ ମସିହା ଜାନୁୟାରୀ ୪ ତାରିଖ ସକାଳୁ ଗାନ୍ଧୀଜୀ ଧରା ହୋଇଗଲେ । ସେ ଦିନ ତାଙ୍କର ମୌନ ଦିବସ । ପୂର୍ବରାତ୍ରି ଗାନ୍ଧୀଜୀ ନିଦ୍ରା ଯାଇ ନାହାନ୍ତି । କାରଣ ତାଙ୍କର ଧରା ହୋଇଯିବା ନିଶ୍ଚିତ ବୋଲି ଜାଣିପାରି ତାହାଙ୍କୁ ବହୁତ କାମ କରିବାକୁ ପଡ଼ିଥିଲା । ମୌନ ଦିବସ ଥିବାରୁ କଥା କହିବା ସମ୍ଭବ ନ ଥିଲା । ଦୈବାତ୍ ତାଙ୍କ ନିକଟରେ ସେତେବେଳକୁ ତାଙ୍କର ଜନୈକ ଇଂରେଜ ବନ୍ଧୁ ଉପସ୍ଥିତ ଥିଲେ । ଖଣ୍ଡିଏ ପତ୍ରରେ ତାଙ୍କୁ ଲେଖିଦେଲେ, ''ଆପଣଙ୍କ ଦେଶବାସୀଙ୍କୁ ଆପଣ କହିବେ, ମୋର ଦେଶବାସୀଙ୍କୁ ମୁଁ ଯେପରି ଭଲପାଏ, ସେମାନଙ୍କୁ ମଧ ଠିକ୍ ସେହିପରି ଭଲପାଏ । କ୍ରୋଧ ଅଥବା ଦ୍ୱେଷଭାବ ପୋଷଣ କରି ସେମାନଙ୍କ ପ୍ରତି ମୁଁ କୌଣସି କାର୍ଯ୍ୟ କରି ନାହିଁ, ଏବଂ ଭବିଷ୍ୟତରେ ସେପରି କିଛି କରିବି ନାହିଁ;

ତାହା କେବଳ ଭଗବାନ ଜାଣନ୍ତି। ତାରପର ଦେଶବାସୀଙ୍କ ଉଦ୍ଦେଶ୍ୟରେ ଗାନ୍ଧୀଜୀ ଏହି ବାର୍ତ୍ତା ଲେଖି ଦେଇଗଲେ, Infinite is God's mercy. Never swerve from truth and non-violence. Never turn your back and sacrifice your life and all to win Swaraj" ଅର୍ଥାତ୍—ଭଗବାନଙ୍କର ଦୟା ଅସୀମ। ସତ୍ୟ ଓ ଅହିଂସା ପଥରୁ କଦାପି ବିଚ୍ୟୁତ ହୁଅ ନାହିଁ। ପଛକୁ କେଭେ ଅନାଅ ନାହିଁ। ସ୍ୱରାଜ ଲାଭ ପାଇଁ ଧନ ଜୀବନ ସମସ୍ତ ବଳିଦାନ କର।"

ସରକାରଙ୍କ କାର୍ଯ୍ୟକଳାପ ଦେଖି ଯାହା ଆଶଙ୍କା କରା ଯାଉଥିଲା ତାହାହିଁ ଘଟିଲା। ଆଗରୁ ଦେଶ ଏଥିପାଇଁ ପ୍ରସ୍ତୁତ ନ ଥିଲା ତାହା ନୁହେଁ। ତଥାପି ମନରେ ଗୋଟିଏ କ୍ଷୀଣ ଆଶା ସ୍ଥାନ ପାଇଥିଲା ଯେ, ଗାନ୍ଧୀଜୀ ଦେଶକୁ ଫେରିଲେ ସମ୍ଭବତଃ କିଛି ଗୋଟାଏ ବାଟ ଆପୋଷ କଥାବାର୍ତ୍ତାରେ ବାହାର କରି ପାରନ୍ତି। ସେ ଆଶା ନିରାଶାରେ ପରିଣତ ହେଲା। ଗାନ୍ଧୀଜୀଙ୍କ ଧରା ହେବା ସମ୍ବାଦ ବିଦ୍ୟୁତ୍ ବେଗରେ ଭାରତ ତମାମ ବ୍ୟାପିଗଲା। ସରକାର ସଂଗେ ସଂଗେ ଅର୍ଡ଼ିନାନ୍ସମାନ ଜାରୀ କରି ଦେଇ କଂଗ୍ରେସକୁ ବେଆଇନ ସଂଘ ବୋଲି ଘୋଷଣା କଲେ। ନେତୃସ୍ଥାନୀୟ ବ୍ୟକ୍ତି ସମସ୍ତେ ଧରା ହୋଇଗଲେ। ଦେଶରେ ଗୋଟାଏ ଆତଙ୍କ ଭାବ ସୃଷ୍ଟି କରିଦେବାକୁ ସରକାର କୌଣସି ଉପାୟ ବାଦ୍ ଦେଲେ ନାହିଁ।

କିନ୍ତୁ କଂଗ୍ରେସ ହେଉଛି ବର୍ତ୍ତମାନ ବିଦ୍ରୋହୀ କଂଗ୍ରେସ। ଗାନ୍ଧୀଜୀଙ୍କର ବାଣୀ କଂଗ୍ରେସର ନୂତନ କଳେବର ଗଠନ କରିଛି। କଂଗ୍ରେସ ବୀଣାର ତାର ପରି କଠିନ ଏବଂ କିଞ୍ଚିତ ମାତ୍ର ଆଘାତ ପାଇଲେ ଝଙ୍କାରିତ ହୋଇ ଉଠୁଛି। କଂଗ୍ରେସ ଉପରେ ହାତ ପକାଇ ତାକୁ କଣ୍ଠରୋଧ କରିବାକୁ ପ୍ରୟାସ କରିବା ନିର୍ବୋଧତା ଛଡ଼ା ଆଉ କଣ ହୋଇପାରେ ? ସାମାନ୍ୟ ହିଲ୍ଲୋଳରେ ଅଶ୍ୱତ୍ଥ ବୃକ୍ଷର ପ୍ରତ୍ୟେକ ପତ୍ର ଥରି ଉଠିଲା ପରି ଭାରତର ପ୍ରତ୍ୟେକ କଂଗ୍ରେସ କର୍ମୀ ଚମକି ଉଠିଲେ। ଅଚାନକ ଭାବରେ ସରକାରଙ୍କର ଏପରି "ଯୁଦ୍ଧଂ ଦେହୀ" ଆହ୍ୱାନର ସମ୍ମୁଖୀନ ହେବାପାଇଁ ପ୍ରତ୍ୟେକ କଂଗ୍ରେସ କର୍ମୀ ଆଇନ କାନୁନ ଅବଜ୍ଞା କରି ସତ୍ୟାଗ୍ରହ ସଂଗ୍ରାମ ଆରମ୍ଭ କରିଦେଲେ। ସ୍ୱରାଜ ପାଇଁ ଧନ ଜୀବନ ସମସ୍ତ ବଳିଦାନ କରିବାକୁ ପଡ଼ିବ, ଗାନ୍ଧୀଜୀଙ୍କର ଆଦେଶ। ଏହି କେତୋଟି ଶବ୍ଦ ବ୍ୟତୀତ କାହାରି ମୁହଁରୁ ଅନ୍ୟ କଥା ଶୁଣାଗଲା ନାହିଁ।

ଓଡ଼ିଶାରେ ଆମ୍ଭେମାନେ ପୁରୀ କଂଗ୍ରେସ ଅଧିବେଶନ ପାଇଁ ଆତ୍ମହରା ହୋଇ କାମ କରୁଥିଲୁ। ଏହା ଗୋଟିଏ ଅତି ବିରାଟ ଆୟୋଜନ। ଏହି ବିରାଟ ଆୟୋଜନ ଦେଖିଲେ ଓଡ଼ିଶାରେ ଜନ ସାଧାରଣଙ୍କର ଆଖି ଖୋଲିଯିବ। ନିଖୁଣ ଭାବରେ ସଂଗଠନ କରି ପାରିଲେ ଆମ୍ଭର ଜାତୀୟ ଜୀବନର କର୍ମ କୁଶଳତା ପ୍ରକାଶ ପାଇବ। ପ୍ରଦର୍ଶନୀ ମଣ୍ଡପରେ ଓଡ଼ିଆ ଜାତିର ଜ୍ୟୋତି କଳା ଓ ଶିଳ୍ପ କୌଶଳର ଚାତୁରୀର

ପ୍ରତ୍ୟକ୍ଷ ରୂପ ଦେଖାଇ ବର୍ତ୍ତମାନ ଓ ଅତୀତର ଶିଳ୍ପ ଓ କଳା କୁଶଳତାର ପ୍ରମାଣ ଦର୍ଶାଇ ହେବ। କଂଗ୍ରେସ ଅଧିବେସନ ପାଇଁ ରାତିଦିନ ଖଟି କାର୍ଯ୍ୟ କରୁଥିବା ସମୟରେ ଏହିପରି ଭାବନା ଆମ୍ଭମାନଙ୍କୁ ଉଦ୍‌ବୁଦ୍ଧ କରୁଥିଲା। ଗାନ୍ଧୀଜୀଙ୍କ ଗିରଫ ହେବା ସମ୍ବାଦ ବିନା ମେଘରେ ବ୍ରଜପାତ ପରି ଆମ୍ଭମାନଙ୍କୁ ବୋଧହେଲା। ଆମ୍ଭମାନଙ୍କ ଯାବତୀୟ ଆୟୋଜନ ଛିନ୍ନଛତ୍ର ହୋଇଗଲା। କଣ କେଉଁଠାରେ ଗଲା ରହିଲା ତାହାର କିଛି ଠିକଣା ରହିଲା ନାହିଁ। ପୁରୀ ତ୍ୟାଗ କରି କଂଗ୍ରେସ କର୍ମୀମାନେ ନିଜ ନିଜ ଜିଲାକୁ ଦୌଡ଼ ଦେଲେ, ସଂଗ୍ରାମର ଆହ୍ବାନର ଜବାବ ଦବାପାଇଁ।

ପୁରୀ ଛାଡ଼ି ମୁଁ ଚମ୍ପାପୁର ଆଶ୍ରମରେ ଉପସ୍ଥିତ ହେଲି। କୌଣସି କଥା ବିଚାର କରିବାର ବେଳ ଆଉ ନାହିଁ। କେଉଁ ମୁହୂର୍ତ୍ତରେ ଗିରଫ ହେବାକୁ ପଡ଼ିବ ତାହାର ସ୍ଥିରତା ନାହିଁ। ଶ୍ରୀ ଦାମୋଦର ସାହୁ ସାବରମତୀ ଆଶ୍ରମରୁ ଫେରିଥାନ୍ତି। ସେ ଖଦଡ଼ କାମରେ ରହିଲେ। କୃପାସିନ୍ଧୁ ପଟ୍ଟନାୟକ ନାମକ ଜଣକୁ ହିସାବ ରଖିବାକୁ ନିଯୁକ୍ତ କଲି। ଶ୍ରୀ ଶରତ ପଟ୍ଟନାୟକଙ୍କ ଉପରେ ଆଶ୍ରମ ପରିଚାଳନ ଭାର ରହିଲା। ସରକାରଙ୍କର ନିମନ୍ତ୍ରଣକୁ ମୁଁ ଚାହିଁ ବସିଲି। ଆଶ୍ରମର କର୍ମୀ ଶ୍ରୀ ବିଶ୍ୱକେଶନ ଡାଳୁଆ ଖଦଡ଼ ରଙ୍ଗେଇବା ଓ ଛପେଇବା କାମ ଶିଖୁଥିଲେ। ସେ ମାଟ୍ରିକ ପାଶ୍ କରିଛନ୍ତି, ଘର ଦଶପଲ୍ଲା ରାଜ୍ୟରେ। ପୁରୀ କଂଗ୍ରେସ ସକାଶେ ସ୍ୱେଚ୍ଛାସେବକ କାର୍ଯ୍ୟ କରିବାକୁ ସେବାଦଳ ଟ୍ରେନିଙ୍ଗ୍ କ୍ୟାମ୍ପ୍ ଖୋଲା ଯାଇଥିଲା। ସେବାଦଳ ଟ୍ରେନିଙ୍ଗ୍ ପାଇବାକୁ ତାଙ୍କୁ ସେହି କ୍ୟାମ୍ପକୁ ପଠାଇଥିଲି। ଟ୍ରେନିଙ୍ଗ୍ ପାଇ କଂଗ୍ରେସରେ ସ୍ୱେଚ୍ଛାସେବକର କାମ କରିବାର ସୁଯୋଗ ପାଇଲେ ତାଙ୍କର ଆଖି ପାଇଯିବ ଏବଂ ସେ ଜଣେ ଆଶ୍ରମର ବଳିଷ୍ଠ କର୍ମୀ ହୋଇପାରିବେ ଏହି ଉଦ୍ଦେଶ୍ୟରେ ମୁଁ ତାଙ୍କୁ ସେବାଦଳ କ୍ୟାମ୍ପକୁ ପଠାଇଥିଲି। କଂଗ୍ରେସ ଅନୁଷ୍ଠାନ ବେଆଇନ୍ ଘୋଷିତ ହେବା ସଂଗେ ସଂଗେ ସେବାଦଳ ମଧ୍ୟ ବେଆଇନ୍ ବୋଲି ଘୋଷିତ ହେଲା। ଅନ୍ୟାନ୍ୟ ସମସ୍ତ ସ୍ୱେଚ୍ଛାସେବକମାନଙ୍କ ସହିତ ବିଶ୍ୱକେତନ ଡାଳୁଆ ଧରାହୋଇ ଜେଲ ଗଲେ। ତାଙ୍କର ଗିରଫ ଓ ଜେଲଦଣ୍ଡ ସମ୍ବାଦ ପାଇ ମୁଁ କଟକ ଆସିଲି।

ଓଡ଼ିଶାରେ ସତ୍ୟାଗ୍ରହ ସଂଗ୍ରାମ ପରିଚାଳନା କରିବାପାଇଁ ଜଣକ ପଛକୁ ଜଣେ କରି ପରିଚାଳକ ବଛା ଯାଉଥିଲେ। ଦୁଇ ଜଣକ ପରେ ମୋର ପାଳି ପଡ଼ିଲା। ଜାନୁୟାରୀ ୨୬ ତାରିଖ ସ୍ୱାଧୀନତା ଦିବସ। ଅଦ୍ୟ ସଭାରେ ଠିଆ ହୋଇ ସ୍ୱାଧୀନତା ପାଇଁ ଶପଥ ପାଠ କରି ସମସ୍ତଙ୍କୁ ଶପଥ ପାଠ କରାଇବା ପ୍ରଧାନ କାର୍ଯ୍ୟ। ସରକାରଙ୍କର କଡ଼ା କଟକଣା, ଆଜି ଦେଶରେ କେଉଁଠାରେ ସଭା କରାଇ ଶପଥ ପାଠ କରାଇ ଦେବେ ନାହିଁ। ପ୍ରଦେଶର ମୁଖ୍ୟ ପରିଚାଳକ ହିସାବରେ ଆଜି ମତେ ଶପଥ ପାଠ କରି କରାଇବାପାଇଁ କଟକ ସହରର ବିଭିନ୍ନ ସ୍ଥାନରେ ସଭା କରିବାପାଇଁ ବ୍ୟବସ୍ଥା ଅବଲମ୍ବନ କରିବାକୁ ପଡ଼ିବ। କଟକ ସହରରେ ବିଭିନ୍ନ ବଜାରରେ

ସ୍ଥାନ ସବୁ ଠିକଣା କରାଗଲା, କିଏ କେଉଁ ସ୍ଥାନରେ ସଭା କରି ଶପଥ ପାଠ କରିବେ, ସେଥିପାଇଁ ଆଦେଶ ପ୍ରଦାନ କରି ମୁଁ ନିଜେ ରାଣୀହାଟ ଛକ ନିକଟରେ ଶପଥ ପାଠ କରିବାକୁ ନିଶ୍ଚୟ କଲି। ଏହି ୨୬ ତାରିଖ ଦିନ ସନ୍ଧ୍ୟା ୫ଟାରେ ସହରର ବିଭିନ୍ନ ସ୍ଥାନରେ ଯୁଗପତ୍ ସଭାମାନ କରାଯାଇ ଶପଥପାଠ କରାଗଲା ଏବଂ ବହୁଲୋକ ମଧ୍ୟ ଗୋଟିଏ ଦିନରେ ଧରାହୋଇ ଜେଲ ଯାଇଥିଲେ। କେବଳ କଟକ କିମ୍ବା ଓଡ଼ିଶା ପ୍ରଦେଶରେ ନୁହେଁ, ଆଜି ସମଗ୍ର ଭାରତରେ ସଭା କରି ଶପଥ ପାଠ କରାଯାଇଥିଲା ଏବଂ ଅସଂଖ୍ୟ ନରନାରୀ ମଧ୍ୟ ଗିରଫ ହୋଇ ଜେଲ ବରଣ କରିଥିଲେ। ସଭାକୁ ଭାଙ୍ଗିଦେଇ ଶପଥ ପାଠ କରେଇ ନ ଦେବାକୁ ସରକାର ସାଧମତେ ଚେଷ୍ଟା କରିଛନ୍ତି କିନ୍ତୁ କୃତକାର୍ଯ୍ୟ ହୋଇ ପାରୁ ନାହାନ୍ତି।

ସନ୍ଧ୍ୟା ୫ଟାରେ ରାଣୀହାଟ ଛକ ନିକଟରେ ମୁଁ ଉପସ୍ଥିତ ହୋଇଥିଲି। ପୂର୍ବରୁ ଭିତିରିଆ ସଂବାଦ ଦିଆଯାଇଥିଲା। ମୁଁ ଉପସ୍ଥିତ ହେବାର ଦେଖି ଚାରିଆଡ଼ୁ ଲୋକ ଆସି ଠୁଳ ହୋଇଗଲେ। ସଭା ହେଉଥିବାର ସଂବାଦ ପାଇ ମଙ୍ଗଳାବାଗ ପୋଲିସ ହାଜର ହୋଇଗଲେ। ପୋଲିସ ଆସିଲା ବେଳକୁ ମୁଁ ଶପଥ ପାଠ କରୁଛି। ସଭା ମଝିରେ ଖଣ୍ଡିଏ କାଠ ଚୁଲି ଉପରେ ଠିଆହୋଇ ମୁଁ ଶପଥ ପତ୍ର ପାଠ କରୁଥାଏ। ଏପରି ସମୟରେ ପୋଲିସ ସବଇନ୍‌ସପେକ୍ଟର କହିଥିଲେ, ''ଆପଣଙ୍କୁ ଗିରଫ କରାଗଲା, ଆପଣ ଆଉ କିଛି କହିପାରିବେ ନାହିଁ।'' ତାଙ୍କର ଏହି ଆଦେଶକୁ ଶୁଣି ମଧ୍ୟ ନ ଶୁଣିଲା ପରି ମୁଁ ଶପଥ ପତ୍ର ପାଠି କରୁଥିଲି। ପୋଲିସଙ୍କର ଏତାଦୃଶ ଆଦେଶ ନ ଶୁଣିବାରୁ ମତେ ଧରି ଘୋଷାରି ଆଣିବାକୁ ପୋଲିସ ମୋ ନିକଟକୁ ଦୌଡ଼ିଯାଇ ମତେ ଟାଣି ଆଣିବାକୁ ଉଦ୍ୟତ ହୋଇଥିଲେ। ଏପରି ଭାବରେ ମତେ ଟାଣି ଆଣିବାକୁ ଉଦ୍ୟତ ହୋଇଥିବା ପୋଲିସ କର୍ମଚାରୀଙ୍କୁ ମୁଁ ଧମକ ଦେଇ କହିଥିଲି, ''ଖବରଦାର, ଶପଥ ପାଠ ଶେଷ ନ କଲା ପର୍ଯ୍ୟନ୍ତ ତୁମ୍ଭର ଆଦେଶ ମୁଁ ମାନିବି ନାହିଁ। ମତେ ଧରିବାକୁ ବଳ ପ୍ରୟୋଗ କଲେ, ଏଠାରେ ଗୋଳମାଳ ଘଟିପାରେ। ସେଥିପାଇଁ ମୁଁ ଦାୟୀ ହେବି ନାହିଁ। ମୋର ଏପରି ଧମକରେ ପୋଲିସ ଅଟକି ଗଲେ। ଶପଥ ପାଠ ଶେଷକରି ମୁଁ ଯାଇ ପୋଲିସ ନିକଟରେ ଆତ୍ମ ସମର୍ପଣ କଲି। ରାଣୀହାଟ ଛକରୁ ମଙ୍ଗଳାବାଗ ପୋଲିସ ଫାଣ୍ଡି ପର୍ଯ୍ୟନ୍ତ ପୋଲିସ ମତେ ଧରି ଚଲେଇ ଆଣିଲେ। ମୋ ପଛରେ ଶତ ଶତ ଲୋକ ଗୋଡ଼ାଉଥାନ୍ତି। ସୁତରାଂ ପୋଲିସ ପଛରେ ନୀରବ ରହି ସୁନାପୁଅଟି ପରି ବାଟ ଚାଲିବା ମତେ ଯଥାର୍ଥ କର୍ତ୍ତବ୍ୟ ବୋଲି ବୋଧ ହେଲା ନାହିଁ। ଯାଉ ଯାଉ ବାଟରେ ବକ୍ତୃତା ଆରମ୍ଭ କଲି। ଗାନ୍ଧୀଜୀଙ୍କ ବାର୍ତ୍ତା ଶୁଣାଇଲି—ସଂଗ୍ରାମପାଇଁ ସରକାର କଂଗ୍ରେସକୁ ଆହ୍ୱାନ ଦେଇଛନ୍ତି। ଦେଶରୁ କଂଗ୍ରେସର ନାମ ଲୋପ କରିଦବାକୁ ବିଦେଶୀ ସରକାରଙ୍କର ତାଣ୍ଡବ ନୃତ୍ୟ ଆରମ୍ଭ ହୋଇଛି। ମହାତ୍ମାଗାନ୍ଧୀଙ୍କ ଆଦେଶ, ସ୍ୱରାଜ୍ୟପାଇଁ ସମସ୍ତଙ୍କୁ ଧନ ଜୀବନ ଆଦି ସମସ୍ତ ବଳିଦାନ ଦେବାକୁ ହେବ।

ଅଦ୍ୟ ଶପଥ ପାଠ ବ୍ୟତୀତ ଅନ୍ୟ କିଛି କିଛି କହିବାର ନୁହେଁ। ପୋଲିସ ଗିରଫ କଲା ପର ବକ୍ତୃତା ଛଳରେ ଲୋକଙ୍କୁ କିଛି କହିବା ସତ୍ୟାଗ୍ରହୀ ପକ୍ଷରେ ଉଚିତ ହେବ କି ନାହିଁ ଏ ବିଷୟରେ ଆମ୍ଭେମାନେ ସମସ୍ତେ ଏକମତ ହୋଇ ପାରିନାହୁଁ। ସତ୍ୟାଗ୍ରହୀର ମର୍ଯ୍ୟାଦା ଭଙ୍ଗ କଲାଭଳି କାର୍ଯ୍ୟ ମୁଁ କରିଥିଲି ବୋଲି କେହି କେହି ବିଶିଷ୍ଟ କଂଗ୍ରେସ ନେତା ମତେ ଦୋଷ ଦେଇଥିଲେ। ଗିରଫ କଲା ବୋଲି କହିଦେଲା ମାତ୍ରକେ ପୋଲିସ ପଛରେ ଗୋଡ଼ାଇ ଥାନାରେ ହାଜର ହେବା ସତ୍ୟାଗ୍ରହୀର କର୍ତ୍ତବ୍ୟ ବୋଲି ମୁଁ ଭାବିପାରି ନାହିଁ। ମୁଁ ବଡ଼ ଅସହିଷ୍ଣୁ ଏବଂ ଉଗ୍ର ପ୍ରକୃତିର ଲୋକ ବୋଲି ଅନେକେ ମନେ କରନ୍ତି। କିନ୍ତୁ ମୁଁ ନିଜକୁ ସେପରି ଭାବିପାରେ ନାହିଁ। ମୋ ଠାରେ ବରଂ ଉଗ୍ରପ୍ରକୃତିର ଅଭାବ ଥିଲାପରି ବୋଧହୁଏ। ଗିରଫ କଲାପର ଲୋକଙ୍କ ନିକଟରୁ ସତ୍ୟାଗ୍ରହୀକୁ ଅତିଶୀଘ୍ର ଅନ୍ତର କରିଦେବା ପୋଲିସର କର୍ତ୍ତବ୍ୟ। ତାହା ନ କରି ସତ୍ୟାଗ୍ରହୀକୁ ଧରି ପୋଲିସ ବାଟ ଚଲାଇ ନେଉଥିବେ। ଶହ ଶହ ଲୋକ ଧରାହୋଇଥିବା ସତ୍ୟାଗ୍ରହୀର ଚାରିପାଖ ଘେରି ନାନା ପ୍ରକାର ଜୟଧ୍ୱନି ଦେଇ ଗୋଡ଼ାଉଥିବେ, ଏପରି ପରିସ୍ଥିତରେ ଲୋକଙ୍କୁ କିଛି ନ କହି, ପୋଲିସ ପଛରେ ନୀରବରେ ବାଟଚାଲିବା ସତ୍ୟାଗ୍ରହୀର କର୍ତ୍ତବ୍ୟ ବୋଲି ସ୍ୱୀକାର କରିବାକୁ ମୁଁ ପ୍ରସ୍ତୁତ ନୁହେଁ। (ଆମ୍ଭର ସଂଗ୍ରାମ ଆରମ୍ଭ ହୋଇଛି। ଆମ୍ଭମାନଙ୍କ ସଂଗ୍ରାମରେ ହିଂସାର ସ୍ଥାନ ନାହିଁ। କାହାରି ଦ୍ୱେଷ ଏବଂ ଅନିଷ୍ଟ କରିବା କିମ୍ୱା କାହାରି ପ୍ରତି ହିଂସାତ୍ମକ ଭାବ ପୋଷଣ କରିବା ସତ୍ୟାଗ୍ରହୀର କର୍ତ୍ତବ୍ୟ ନୁହେଁ।) ଗିରଫ ହୋଇ ବନ୍ଧୁଲୋକଙ୍କ ଗହଣରେ ଯଦି ଚାଲିବାକୁ ପଡ଼େ ସେପରି ଅବସ୍ଥାରେ ସଂଗ୍ରାମରେ ଯୋଗଦେବା ପାଇଁ କିଛି ଉତ୍ସାହ ବାଣୀ ଶୁଣାଇବା ସତ୍ୟାଗ୍ରହୀର କେବଳ କର୍ତ୍ତବ୍ୟ ନୁହେଁ, ଏପରି କରିବା ମଧ୍ୟ ତାହାର ଧର୍ମ, ଏହା ହିଁ ମୋର ବିଶ୍ୱାସ।

ସେ ଯାହାହେଉ, ଏହିପରି ଗିରଫ ହୋଇ ମୁଁ କଟକ ଜେଲରେ ରହିଲି। ଜେଲ ଭିତରେ ମୋର ବିଚାର ହେଲା। ଏଥର ଅଠରମାସ ସଶ୍ରମ କାରାବାସର ପୁରସ୍କାର ମିଳିଲା। ମୁଁ ଗିରଫ ହୋଇଯିବା ପରେ ଚମ୍ପାପୁର ଆଶ୍ରମରୁ କେହି ମୋ ସହିତ ସାକ୍ଷାତ କରିବାକୁ ଆସିପାରି ନାହାନ୍ତି। ଶ୍ରୀ ରଘୁନାଥ ପଣ୍ଡା କଲିକତା ଅବଳାଶ୍ରମରୁ ଅନ୍ନପୂର୍ଣ୍ଣାଙ୍କୁ ଆଣିବାର ସଂବାଦ କଟକ ଜେଲରେ ମୁଁ ପାଇଲି। ଏହି ସଂବାଦ ପାଇ ମୁଁ ଟିକିଏ ଚିନ୍ତିତ ହୋଇ ପଡ଼ିଥିଲି। ମୁଁ ଗିରଫ ହୋଇଗଲା ପରେ ଅନ୍ନପୂର୍ଣ୍ଣାଙ୍କୁ ଆଶ୍ରମକୁ ଆଣିବା ଉଚିତ ହେଲା ନାହିଁ ବୋଲି ମତ ବ୍ୟକ୍ତ କଲି। କଟକ ଜେଲରୁ ହଜାରୀବାଗ ଜେଲକୁ ଚାଲାଣ ହୋଇଯିବା ବାଟରେ ବୈରୀ ରେଳ ଷ୍ଟେସନରେ ଅନ୍ନପୂର୍ଣ୍ଣାଙ୍କୁ ମୋ ସହିତ ଭେଟ କରାଇ ଦିଆଗଲା। ସେତେବେଳେ ମୁଁ କହିଥିଲି, ''ଗରିବର ସେବା ଭଗବାନଙ୍କର ସେବା। ସେଥିରେ ତୁମେ ମନ ପ୍ରାଣ ଢାଳିଦିଅ।'' ଗାଡ଼ି ବୈରୀ ଷ୍ଟେସନ ଛାଡ଼ିଲା, ଅନ୍ନପୂର୍ଣ୍ଣା ଆଶ୍ରମକୁ ଫେରିଗଲେ।

ଯଥା ସମୟରେ ମୁଁ ହଜାରୀବାଗ ଜେଲରେ ଉପସ୍ଥିତ ହେଲି। ଏଥର ମଧ୍ୟ ସେହି ତିନି ନମ୍ବର ଖୁଆଡ଼ ଓଡ଼ିଆପଡ଼ାରେ ହଜାରୀବାଗ ଜେଲରେ ଓଡ଼ିଶାର ରାଜବନ୍ଦୀଙ୍କର ନିବାସସ୍ଥଳ। କିନ୍ତୁ ଏଥର ମତେ ବେଶୀଦିନ ଏଠାରେ ରହିବାକୁ ପଡ଼ିଲା ନାହିଁ। ମତେ ପାଟଣା କ୍ୟାମ୍ପ ଜେଲକୁ ପଠାଇ ଦିଆଗଲା। କଟକ ଜେଲରେ ମୋର ବିଚାର ହେଉଥିବା ବେଳେ ବିଚାରକର୍ତ୍ତା ପୋଲିସର ମୋ ପ୍ରତି ବ୍ୟବହାର ବିଷୟରେ ପ୍ରଶ୍ନ କରିଥିଲେ। ପୋଲିସ ବ୍ୟବହାର ମୋ ପ୍ରତି ନିଷ୍ଠୁର ହୋଇଥିଲା ବୋଲି ମୁଁ ମତ ବ୍ୟକ୍ତ କରିଥିଲି। ଏହା ହିଁ ହେଲା ମୋର ଦୋଷ। ଏହି ଦୋଷପାଇଁ ମତେ ଦଣ୍ଡ ମିଳିଲା ଖ ଶ୍ରେଣୀରୁ ଗ ଶ୍ରେଣୀକୁ ଖସାଇ ପାଟଣା କ୍ୟାମ୍ପ ଜେଲକୁ ବଦଳି।

## ପାଟଣା କ୍ୟାମ୍ପ ଜେଲ

ଲବଣ-ସତ୍ୟାଗ୍ରହ ଆରମ୍ଭରୁ ପାଟଣା କ୍ୟାମ୍ପ ଜେଲ ସୃଷ୍ଟି। ୧୯୩୦ରେ ସତ୍ୟାଗ୍ରହ ସଂଗ୍ରାମରେ ଯୋଗଦେଇ ଅଗଣିତ ନରନାରୀ ଜେଲ ବରଣ କଲେ। ଜେଲ ସବୁ ରାଜନୈତିକ ବନ୍ଦିମାନଙ୍କ ଦ୍ୱାରା ଭରପୂର ହୋଇଗଲା। ଜେଲଖାନାର ଅଭାବ ପୂରଣ ପାଇଁ କ୍ୟାମ୍ପ ଜେଲ ସୃଷ୍ଟି କରାଗଲା। ବିହାର-ଓଡ଼ିଶା ରାଜଧାନୀ ପାଟଣା ନିକଟରେ ଏହି କ୍ୟାମ୍ପ ଜେଲ ତିଆରି ହୋଇଥିବାରୁ ଏହା ପାଟଣା କ୍ୟାମ୍ପ ଜେଲ ନାମରେ ପ୍ରସିଦ୍ଧ। ରାଜନୈତିକ ବନ୍ଦୀମାନେ କ, ଖ ଓ ଗ ହୋଇ ତିନୋଟି ଶ୍ରେଣୀରେ ବିଭକ୍ତ। କ ଓ ଖ ଶ୍ରେଣୀ ବନ୍ଦୀମାନେ ହଜାରୀବାଗ ଜେଲରେ ଏବଂ କେବଳ ଗ ଶ୍ରେଣୀ ବନ୍ଦୀସବୁ କ୍ୟାମ୍ପ ଜେଲରେ ରଖା ଯାଉଥିଲେ। ହଜାରୀବାଗ ଜେଲରୁ ୧୯୩୨ ମସିହା ଫେବୃୟାରୀ ମାସ ଶେଷକୁ ମୁଁ ଏହି ପାଟଣା କ୍ୟାମ୍ପ ଜେଲକୁ ଆସିଲି।

ପାଟଣା କ୍ୟାମ୍ପ ଜେଲଟିକୁ ବିସ୍ତୀର୍ଣ୍ଣ ଚାଷ ଜମି କ୍ଷେତ୍ର ଉପରେ ନିର୍ମାଣ କରାଯାଇଛି। ଦେଖିବାକୁ ଏହା ଗୋଟିଏ ଯୁଦ୍ଧକାଳୀନ ସୈନ୍ୟ ଛାଉଣୀପରି। ଯୁଦ୍ଧରେ ବନ୍ଦୀ ହୋଇଥିବା ଶତ୍ରୁପକ୍ଷର ସୈନ୍ୟମାନଙ୍କୁ ରଖିବାକୁ ଛାଉଣି ତିଆରି ହେଲା ପ୍ରାୟ ପାଟଣା କ୍ୟାମ୍ପ ଜେଲ କଣ୍ଟାତାର ଘେର ପକାଇ ତିଆରି ହୋଇଛି। ଚାରିପାଖରେ ପ୍ରାୟ ଦଶଫୁଟ ଉଚ୍ଚରେ କଣ୍ଟା ତାର ଘେର ପଡ଼ି, ସଶସ୍ତ୍ର ପୋଲିସ ଦିନ ରାତି ପହରା ଦେଉଛନ୍ତି। ଏହି ଘେର ଭିତରେ କଣ୍ଟା ତାର ବାଡ଼ ସବୁ ଦିଆ ହୋଇ ଗୋଟିଏ କରି ଖୁଆଡ଼। ପ୍ରତି ଖୁଆଡ଼ ଭିତରେ ଟିଣ ବାଡ଼ ଓ ଟିଣ ଛପର ହୋଇ ଗୋଟିଏ ଗୋଟିଏ ପ୍ରକାଣ୍ଡ ଘର। ପ୍ରତି ଘରେ ଅଶୀ ନବେ ଜଣ ପର୍ଯ୍ୟନ୍ତ ରାଜବନ୍ଦୀ ରହୁଛନ୍ତି। ବିଜୁଳୀ ଆଲୋକରେ ରାତି ଦିନ ପରି ଦିଶୁଛି। ମୁଁ ଉପସ୍ଥିତ ହେବା ସମୟକୁ ଏଠାରେ ପ୍ରାୟ ପଞ୍ଚତିରିଶି ଶହ ରାଜବନ୍ଦୀ ଅଛନ୍ତି। ସେମାନଙ୍କ ପାଇଁ କାମ କରିବା ସକାଶେ ସାଧାରଣ କଏଦୀ ଦୁଇଶହ ପର୍ଯ୍ୟନ୍ତ ଅଣାଯାଇ ଅଛନ୍ତି। ଓଡ଼ିଶାର ରାଜବନ୍ଦୀ ହଜାରେ, ବାର ଶହ ପର୍ଯ୍ୟନ୍ତ ହେବେ।

ହଜାରୀବାଗ ଜେଲରେ ଖ ଶ୍ରେଣୀ ରାଜବନ୍ଦୀ ଥିବାରୁ ଯେଉଁ ପୋଷାକ ମିଳିଥିଲା ପାଟଣା କ୍ୟାମ୍ପ ଜେଲ ପୋଷାକ ତାଠାରୁ ବହୁତ ତଫାତ୍। ପୂରା ପ୍ୟାଣ୍ଟ କୁରୁତା ପରିବର୍ତ୍ତେ ଅଧା ପ୍ୟାଣ୍ଟ ଓ କୁରୁତା ପିନ୍ଧିବାକୁ ମିଳିଲା। ଆଉ ନିଜର କିଛି ଲୁଗାପଟା ନିକଟରେ ରଖି ବ୍ୟବହାର କରିବାକୁ ମିଳିଲା ନାହିଁ। ପୋଷାକ ପରି ଖାଦ୍ୟରେ ମଧ ବହୁତ ପ୍ରଭେଦ। କ ଓ ଖ ଶ୍ରେଣୀ ରାଜବନ୍ଦୀମାନଙ୍କୁ ଦିନରେ ଦଶଅଣା ମୂଲ୍ୟର ଖାଦ୍ୟ ମିଳେ। କିନ୍ତୁ ଗ ଶ୍ରେଣୀ ପାଇଁ ଦିନରେ ନଅ ପଇସା ମାତ୍ର ସରକାର ଖର୍ଚ୍ଚ କରନ୍ତି। ବଙ୍ଗାଳୀ, ବିହାରୀ ଏବଂ ଓଡ଼ିଆ ସମସ୍ତଙ୍କ ପାଇଁ ସମାନ ଖାଦ୍ୟ। ଭାତ ରୋଟି ଡାଲି ତରକାରୀ। ସକାଳେ ଚୂଡ଼ା ଗୁଡ଼ କିମ୍ବା ଖେଚୁଡ଼ି ଖାଇବାକୁ ମିଳେ।

## ପରିଚାଳନା-କମିଟି

ହଜାରୀବାଗ ଜେଲ ତୁଳନାରେ କ୍ୟାମ୍ପ ଜେଲର ବିଶେଷତ୍ୱ ରହିଛି। କ୍ୟାମ୍ପ ଜେଲର ସ୍ୱାଧୀନତା ବାତାବରଣ ହଜାରୀବାଗ ଜେଲରେ ନାହିଁ। ଜେଲ ପରିଚାଳନାରେ କ୍ୟାମ୍ପ ଜେଲ ରାଜବନ୍ଦୀମାନେ ସ୍ୱାୟତ୍ତଶାସନର ଅଧିକାର ପ୍ରାପ୍ତ ହୋଇଛନ୍ତି। ଜେଲ ଭିତରର ଯାବତୀୟ କାର୍ଯ୍ୟ ଜେଲ କମିଟି ଦ୍ୱାର ପରିଚାଳିତ ହେଉଛି। ଏପରି ସ୍ୱାଧୀନତା ହଜାରୀବାଗ ଜେଲରେ ନାହିଁ। କ୍ୟାମ୍ପ ଜେଲରେ ରାଜବନ୍ଦୀମାନେ ଆପଣା ମଧ୍ୟରୁ ପ୍ରତିନିଧି ବାଛି ଗୋଟିଏ ଜେଲ କମିଟି ଗଠନ କରିଛନ୍ତି। କ୍ୟାମ୍ପ ଜେଲରେ ପ୍ରତ୍ୟେକ ବିଷୟ ଏହି କମିଟିରେ ଆଲୋଚିତ ହୋଇ ଯେପରି ଯାହା ସ୍ଥିର କରାଯାଏ ତଦନୁସାରେ ରାଜବନ୍ଦୀ ସବୁ କାର୍ଯ୍ୟ କରନ୍ତି। ଏହି ସାଧରଣ କମିଟିର ଗୋଟିଏ କାର୍ଯ୍ୟନିର୍ବାହିକା କମିଟି ଥାଏ। କମିଟିର ସଭାପତି ରାଜବନ୍ଦୀମାନଙ୍କର ମୁଖ୍ୟ ପରିଚାଳକ। ସାଧାରଣ କମିଟି ତଳେ କେତେଗୁଡ଼ିଏ ସଭାପତିମାନେ କାର୍ଯ୍ୟନିର୍ବାହିକା ସମିତିର ସଭ୍ୟ ହୁଅନ୍ତି। ଡାକ୍ତରଖାନା କମିଟି, ପାକଶାଳା କମିଟି, ସ୍ୱାସ୍ଥ୍ୟ କମିଟି, ଶିକ୍ଷା କମିଟି, ସାଂସ୍କୃତିକ କମିଟି, ଆଲୋଚନା କମିଟି ଓ ନାଟ୍ୟଶାଳା କମିଟି—ଏହିପରି କମିଟି ସବୁ ଗଠିତ ହୋଇଥାଏ। ପାଟଣା କ୍ୟାମ୍ପ ଜେଲରେ ଉପସ୍ଥିତ ହେଲାମାତ୍ରକେ ଓଡ଼ିଶାର ରାଜବନ୍ଦୀମାନେ ମତେ ସାଧାରଣ କମିଟିର ସଭ୍ୟରୂପେ ବାଛିଥିଲେ। ପରେ ସାଧାରଣ କମିଟିଦ୍ୱାରା ସର୍ବସମ୍ମତିକ୍ରମେ ମୁଁ ଡାକ୍ତରଖାନା କମିଟିର ସଭାପତି ରୂପେ ମନୋନୀତି ହୋଇଥିଲି। ଏଥର ମୁଁ ପ୍ରାଦେଶିକ ତୃତୀୟ ଡିକ୍ଟେଟର ବା ସମର-ପରିଚାଳକ ରୂପେ ବନ୍ଦୀହୋଇ ଜେଲ ବରଣ କରିଥିବାରୁ ପାଟଣା କ୍ୟାମ୍ପ ଜେଲରେ ଉପସ୍ଥିତ ହେବା ମାତ୍ରକେ, ପଣ୍ଡିତ ଶ୍ରୀ ପ୍ରାଣକୃଷ୍ଣ ପଡ଼ିହାରୀ, ଶ୍ରୀ ମଦନମୋହନ ପଟ୍ଟନାୟକ ଓ ଶ୍ରୀ କରୁଣାକର ପାଣିଗ୍ରାହୀ ପ୍ରଭୃତି ମତେ ସାଧାରଣ କମିଟିର ସଭ୍ୟ ରୂପେ ବାଛିଥିଲେ।

ପାଟଣା କ୍ୟାମ୍ପ୍ ଜେଲରେ ବର୍ତ୍ତମାନ ଯେଉଁସବୁ ରାଜବନ୍ଦୀ ଅଛନ୍ତି, ଗାନ୍ଧି-ଇରଉଇନ୍ ଚୁକ୍ତି ପୂର୍ବରୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏଠାରେ ଥିଲେ। କ୍ୟାମ୍ପ୍ ଜେଲରେ ରହଣି ଓ କାର୍ଯ୍ୟକଳାପ ସେମାନଙ୍କୁ ଜଣା। କିନ୍ତୁ ମୋ ପକ୍ଷରେ କ୍ୟାମ୍ପ୍ ଜେଲ ଅନୁଭୂତି ସଂପୂର୍ଣ୍ଣ ନୂତନ। ଆମ ଓଡ଼ିଆ ରାଜବନ୍ଦୀମାନଙ୍କର ଗୋଟିଏ କମିଟି ଅଛି, ଆମ୍ଭମାନଙ୍କ ସୁବିଧା ଅସୁବିଧା ଦେଖି ବିଚାର କରିବାକୁ। ଏହି କମିଟି ନ ଥିଲେ ବହୁ ଅସୁବିଧା ଭୋଗ କରିବାକୁ ପଡୁଥାନ୍ତା। ଆମ୍ଭମାନଙ୍କ ମଧ୍ୟରେ ବିଶୃଙ୍ଖଳା ଜାତ ହୋଇ ବହୁ ବାଦ ବିବାଦ ସୃଷ୍ଟି ହେଉଥାନ୍ତା। ଓଡ଼ିଶାର ରାଜବନ୍ଦୀମାନଙ୍କୁ ଶୃଙ୍ଖଳାରେ ରଖି ଚଳାଇବାରେ ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିହାରୀ, ଶ୍ରୀ ମଦନ ପଟ୍ଟନାୟକ, ଶ୍ରୀ କରୁଣାକର ପାଣିଗ୍ରାହୀ, ଶ୍ରୀ ଗୋକୁଳାନନ୍ଦ ମହାନ୍ତି, ଶ୍ରୀ ସୁଧୀରଚନ୍ଦ୍ର ଘୋଷ, ଶ୍ରୀ ନୃସିଂହ ସାମନ୍ତ ସିଂହାର ପ୍ରଭୃତି ସବୁବେଳେ ତତ୍ପର ରହିଥାନ୍ତି। ପ୍ରଚାରକ ଅନନ୍ତ ମିଶ୍ର ପ୍ରଭୃତି ଆଉ ଅନେକ ଯତ୍ନ ନେଉଛନ୍ତି। ସମସ୍ତଙ୍କ ନାମ ଉଲ୍ଲେଖ କରିବା ଏଠାରେ ସମ୍ଭବ ନୁହେଁ। ଏହିମାନଙ୍କ ପରିଚାଳନାରେ ସେବାଦଳ ଟ୍ରେନିଙ୍ଗ୍ କ୍ୟାମ୍ପ କରି ଓଡ଼ିଶାର ଯୁବକ ରାଜବନ୍ଦୀମାନଙ୍କୁ ସେବାଦଳ ଟ୍ରେନିଙ୍ଗ୍ ଦିଆଯାଉଛି। ନିରକ୍ଷରତା ଦୂରୀକରଣ ଓ ଶିକ୍ଷା ବିସ୍ତାର ପାଇଁ କ୍ଲାସ୍ ଖୋଲି ପାଠ ପଢ଼ା ଯାଉଅଛି। ରାଜନୈତିକ ଜ୍ଞାନ ପ୍ରଚାରପାଇଁ ଆଲୋଚନା ସଭା ବସି ନାନା ବିଷୟର ଆଲୋଚନା କରାଯାଉଛି। କଂଗ୍ରେସର ଇତିହାସ ଶୁଣାଇବା କାମ ମୋତେ ଦିଆଗଲା। ନୃସିଂହ ଚରଣ ସାମନ୍ତ ସିଂହାର ଗୋଟିଏ ସେବାଦଳ କ୍ୟାମ୍ପର ଅଧ୍ୟକ୍ଷ ରହି ଟ୍ରେନିଙ୍ଗ୍ ଦେଉଥିଲେ। ମୁଁ ତାଙ୍କରି କ୍ୟାମ୍ପରେ ରହିବାର ବ୍ୟବସ୍ଥା କରି ଦିଆଗଲା। କିଏ କେଉଁ ଘରେ ରହିବ, କଣ କରିବ ଇତ୍ୟାଦି କଥା କମିଟି ସ୍ଥିର କରୁଥାଏ। ଜେଲ କର୍ତ୍ତୃପକ୍ଷଙ୍କର ଏ ସବୁରେ କୌଣସି ପ୍ରକାର ପ୍ରତ୍ୟକ୍ଷ ସମ୍ବନ୍ଧ ନ ଥାଏ।

## ଜେଲରେ ଲାଠିମାଡ଼

୧୯୩୨ ମସିହା ଅପ୍ରେଲ ଶେଷ କିମ୍ବା ମଇ ମାସ ଆରମ୍ଭ। ଇତିମଧ୍ୟରେ ଜେଲ ଫାଟକ ନିକଟରେ କେତେକ ବିହାରୀ ରାଜବନ୍ଦୀମାନଙ୍କ ସହିତ ଜେଲ କର୍ତ୍ତୃପକ୍ଷଙ୍କ ମଧ୍ୟରେ ଝଗଡ଼ା ହେବାରୁ ଲାଠିମାଡ଼ ହେଲା। ଜେଲ ୱାର୍ଡ଼ରମାନେ ଖୁଆଡ଼ ଭିତରେ ପଶି ଲାଠି ଚଳାଇବାରୁ ଅନେକ ରାଜବନ୍ଦୀ ଆହତ ହେଲେ। ଜେଲ ସୁପରିଣ୍ଟେଣ୍ଡେଣ୍ଟ ମି: ପାରଚା ସାହେବଙ୍କ ବୁଝାମଣା ସନ୍ତୋଷଜନକ ନ ହେବାରୁ ଏହି ଘଟଣା କ୍ୟାମ୍ପ ଜେଲରେ ଭୀଷଣ ଉତ୍ତେଜନା ସୃଷ୍ଟିକଲା। ସମସ୍ତ ରାଜବନ୍ଦୀ ଜେଲ ଫାଟକ ନିକଟରେ ଉପସ୍ଥିତ ହୋଇ ପାଟିତୁଣ୍ଡ କଲେ। ସେମାନଙ୍କର ଦାବୀ ହେଲା, ଲାଠିମାଡ଼ର କାରଣ ତଦନ୍ତ ହୋଇ ଉପଯୁକ୍ତ ବିଚାର କରାହେଉ। ତା ନ ହେଲେ ଜେଲ ଫାଟକରୁ କେହି ଉଠିବେ ନାହିଁ। ଏ ସଂବାଦ ପାଇ ଜେଲ ବିଭାଗର ଆଇ.ଜି.

ଆସି ଉପସ୍ଥିତ ହେଲେ। ପରିସ୍ଥିତି ଅଣାୟତ୍ତ ଦେଖି ସେ ଜିଲା ମାଜିଷ୍ଟ୍ରେଟଙ୍କୁ ତୁରନ୍ତ ଆସି ଉପସ୍ଥିତ ହେବାକୁ ଅନୁରୋଧ କଲେ। ମାଜିଷ୍ଟ୍ରେଟ ସାହେବ ବନ୍ଧୁକଧାରୀ ପୋଲିସ ଫଉଜ ଧରି ଉପସ୍ଥିତ ହୋଇଗଲେ। ଜେଲରେ ଶାନ୍ତିସ୍ଥାପନ କରିବାର ଦାୟିତ୍ୱ ଜେଲ କର୍ତ୍ତୃପକ୍ଷ ମାଜିଷ୍ଟ୍ରେଟଙ୍କ ଉପରେ ଅର୍ପଣ କରିଦେଲେ। ଏହି ସବୁ ସରକାରୀ କର୍ତ୍ତୃପକ୍ଷ ଓ ବନ୍ଧୁକଧାରୀ ପୋଲିସ ଗୋଟିଏ ପକ୍ଷରେ ଏବଂ ପଞ୍ଚତିରିଶ ଶହ ରାଜବନ୍ଦୀ ଗୋଟିଏ ପକ୍ଷରେ ଠିଆ ହୋଇ ସେମାନଙ୍କ ଦାବୀ ଶୁଣାଇ ପାଟିତୁଣ୍ଡ କରୁଛନ୍ତି। ଏପରି ଅବସ୍ଥାରେ କୌଣସି ଆପତ୍ତି ନ ଶୁଣି ମାଜିଷ୍ଟ୍ରେଟ ସାହେବ ଶୁଣାଇ ଦେଲେ, ପନ୍ଦର ମିନିଟ ମଧ୍ୟରେ ଜେଲ ଫାଟକ ଛାଡ଼ି ଚାଲିଯିବାକୁ। ତାହା ନ ହେଲେ ସେ ଗୁଳି ଚଳାଇବାକୁ ବାଧ୍ୟହେବେ। ମାଜିଷ୍ଟ୍ରେଟ ସାହେବଙ୍କ ହୁକୁମ ପୋଡ଼ା ଘାରେ ଚୂନ ଦେବା ସଦୃଶ କାର୍ଯ୍ୟ କଲା। ରାଜବନ୍ଦୀମାନେ ଏକ ସ୍ୱରରେ ପାଟିକଲେ, ଗୁଳିଖାଇ ଏଠାରେ ପ୍ରାଣ ଦେବୁ ପଛକେ ଆମର ଦାବୀ ଶୁଣା ନ ଗଲା ପର୍ଯ୍ୟନ୍ତ ଆମ୍ଭେମାନେ ଏ ସ୍ଥାନ ଛାଡ଼ିଯିବୁ ନାହିଁ।

ବିହାର ପ୍ରଦେଶ ଦେଓଘରର ଶ୍ରୀ ବିନୋଦନନ୍ଦ ଝା ଓ ଶ୍ରୀ ଶଶୀଭୂଷଣ ରାଏ ଓ ମୁଁ ଆମ୍ଭେ ତିନିଜଣ ଗୋଟିଏ ଜାଗାରେ ଠିଆ ହୋଇ ସମସ୍ତଙ୍କୁ ଫେରାଇ ନେବାକୁ ଅଦ୍ୟମ ଚେଷ୍ଟା କରିଥାଉଁ। ସମସ୍ତଙ୍କୁ ଫେରାଇ ନେବାର ଆଉ ଆଶା ରହିଲା ନାହିଁ। ଆଉ କେତୋଟା ମିନିଟ ପରେ ଗୁଳି ଚାଲିବ। ପରିଣାମ ଅତି ଭୟାବହ ହେବ। ମାଜିଷ୍ଟ୍ରେଟ ପ୍ରଭୃତି ଏ ସଂକଟଜନକ ପରିସ୍ଥିତିର ଗୁରୁତ୍ୱ ଅନୁଭବ କରିପାରୁ ନାହାନ୍ତି ତାହା ନୁହେଁ। ରାଜବନ୍ଦୀମାନଙ୍କ ମଝିରେ ମୁଁ ଥିଲି। ସେଠାରୁ ହଠାତ୍ ମୁଁ ତାରବାଡ଼ ନିକଟକୁ ପଳାଇ ଆଇ.ଜି.ସାହେବଙ୍କୁ ଡାକ ପକାଇଲି। ମୁଁ ଠିଆହୋଇ ଡାକୁଥିବା ତାରବାଡ଼ ନିକଟକୁ ଆସି ମୋର ଡାକିବା କାରଣ ସେ ପଚାରିଥିଲେ। ମୁଁ ତାହାଙ୍କୁ ବୁଝାଇବାକୁ ଚେଷ୍ଟାକଲି, 'ଜେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ ବୁଝାମଣା ଉତ୍ତେଜନା ସୃଷ୍ଟି କରିଛି। ଆପଣ ଅନୁଗ୍ରହ ପୂର୍ବକ ତାଙ୍କୁ ଏଠାରୁ ହଟାଇ ନିଅନ୍ତୁ। ଆପଣମାନେ ଦୟାକରି ଟିକିଏ ପଛକୁ ଘୁଞ୍ଚିଯାନ୍ତୁ। ଆମ୍ଭେମାନେ ଚେଷ୍ଟା କରିବୁ ସମସ୍ତଙ୍କୁ ହଟାଇ ନେବାକୁ।' ମୋର ଅନୁରୋଧ ରକ୍ଷାକରି ଆଇ.ଜି ମାଜିଷ୍ଟ୍ରେଟ ଓ ସୁପରିଣ୍ଟେଣ୍ଡେଣ୍ଟ ସାହେବ, ପୋଲିସ ଫଉଜ ଆଦି ସମସ୍ତେ ପଛକୁ ହଟିଗଲେ। ଏଥିରେ ମୁଁ, ବିନୋଦାନନ୍ଦ ଝା ପ୍ରଭୃତି ପାଟିକଲୁ, 'ଆମ ଧମକରେ ଡରି କର୍ତ୍ତୃପକ୍ଷ ପଛଘୁଞ୍ଚା ଦେଲେଣି। ଆଉ ଆମର ଏଠାରେ ରହିବା ଉଚିତ୍ ହେବ ନାହିଁ। ଆସ ଆମ୍ଭେ ସମସ୍ତେ ଏଠାରୁ ବର୍ତ୍ତମାନ ହଟିଯିବା।' ଏପରି କହି ସମସ୍ତଙ୍କୁ ଆମ୍ଭେମାନେ ଫେରାଇ ଆଣିଲୁ। ତାରପର କର୍ତ୍ତୃପକ୍ଷଙ୍କ ସହିତ ଦେଖା ସାକ୍ଷାତ ହୋଇ ସମାଧାନ ଗୋଟାଏ ହେଲା। ଏଣିକି କିଛି ଗୋଳମାଳ ଘଟିଲେ କର୍ତ୍ତୃପକ୍ଷ ଆଗ ଆମ୍ଭମାନଙ୍କ ପରାମର୍ଶ ନ ଲୋଡ଼ି କିଛି କରିବେ ନାହିଁ ଏବଂ ଆମ୍ଭେମାନେ ମଧ୍ୟ ଶାନ୍ତିଶୃଙ୍ଖଳା

ରକ୍ଷା କରିବାକୁ ସାହାଯ୍ୟ ସହଯୋଗ କରିବୁ ବୋଲି ପ୍ରତିଶ୍ରୁତି ପ୍ରଦାନ କରିଥିଲୁ। ଏହି ଘଟଣା ଏପରି ସରଳ ଭାବରେ ନିଷ୍ପତ୍ତି ହୋଇଯିବା ଦ୍ୱାରା ସମସ୍ତେ ଆନନ୍ଦ ଅନୁଭବ କରିଥିଲେ। ଏଥିରେ ମୋର ସେପରି କିଛି ବିଶେଷ କର୍ତ୍ତୃତ୍ୱ ନ ଥିଲା। ତଥାପି ଏ ଘଟଣା ପରେ କ୍ୟାମ୍ପ ଜେଲରେ ମୁଁ ଜଣେ ଜଣାଶୁଣା ବ୍ୟକ୍ତି ଭାବରେ ପ୍ରତିଷ୍ଠା ଲାଭ କରିଥିଲି। ପ୍ରତି ଘଟଣାରେ ମୋର ମତାମତ ଦରକାର ପଡୁଥିଲା। ଏଣୁ ଡାକ୍ତରଖାନା କମିଟିରେ ସଭାପତି ରୂପେ ନିର୍ବିବାଦରେ ମୁଁ ବଛା ଯାଇଥିଲି।

## କ୍ୟାମ୍ପ ଜେଲରେ ରୋଗୀସେବା

କ୍ୟାମ୍ପ ଜେଲରେ ସବୁ ସମୟରେ ବହୁ ରାଜବନ୍ଦୀ ବେମାର ପଡୁଥିଲେ। ଅଧିକାଂଶ ଜ୍ୱର, ଆମାଶୟ ରୋଗରେ ପୀଡ଼ିତ ହେଉଥିଲେ। ନିମୋନିଆ ଓ ସାନ୍ନିପାତିକ ଜ୍ୱର ହୋଇ ପ୍ରତିମାସରେ ତିନି ଚାରିଜଣ ମୃତ୍ୟୁ ମୁଖରେ ପତିତ ହେଉଥିଲେ। ଏହି ସାନ୍ନିପାତିକ ରୋଗରେ ଓଡ଼ିଶାରୁ କେତୋଟି ଯୁବକ ପ୍ରାଣ ହରାଇଛନ୍ତି। ଏହିପରି ମର୍ମାନ୍ତିକ ଘଟଣା ଘଟିଲେ ଆମ୍ଭେମାନେ ଅତିଶୟ ଦୁଃଖ ଶୋକରେ ଅଭିଭୂତ ହୋଇପଡୁ। ଶୋକସଭା ବସେ। ସ୍ୱର୍ଗାରୋହୀ ଯୁବକର ଏପରି ଭାବରେ ଜୀବନ ବଳିଦାନ କରିବାରେ ଯେଉଁ ମହତ୍ତ୍ୱ ତାହା ସମସ୍ତଙ୍କର ହୃଦ୍‌ବୋଧ କରାଇବା ନିମିତ୍ତ ଅନେକ କଥା କୁହାଯାଏ। କିଛି ସମୟପାଇଁ ମନ ଭଲ ରହେ ନାହିଁ। ଓଡ଼ିଶାର କେଉଁ ଅଜଣା ପୁରପଲ୍ଲୀରୁ ନିରୀହ ଯୁବକ ସତ୍ୟାଗ୍ରହ ସଂଗ୍ରାମରେ ଯୋଗଦେଇ ଜେଲଖାନା ଆସି ଏଠାରେ ପ୍ରାଣ ହରାଇଲା, ତାହାର କାହାଣୀ କିଏ କେତେଦିନ ମନେ ରଖିବ? ତାହାର ପିତା ମାତାଙ୍କୁ କିଏ କଣ ସାନ୍ତ୍ୱନା ଦେବ? ଦେଶ ସ୍ୱାଧୀନ ନ ହେବା ପର୍ଯ୍ୟନ୍ତ ତାର ଆତ୍ମା କଣ ଶାନ୍ତି ପାଇବ? ଏହିପରି ଚିନ୍ତା ଜାଗି ଉଠି ମନକୁ ବ୍ୟାକୁଳ କରାଏ। ଦେଶବାସୀଙ୍କ ହୃଦୟକୁ ଏ ବେଦନା କିପରି ସ୍ପର୍ଶ କରିବ ଏବଂ ଅଧିକାଂଶ ଲୋକ ସ୍ୱାଧୀନତା ସଂଗ୍ରାମରେ କିପରି ଅଂଶ ଗ୍ରହଣ କରିବେ? ସେପରି ହେଲେ ଏହି ବଳିଦାନ ସାର୍ଥକ ହେବ। ଏହିପରି ଭାବ ଶେଷରେ ଆମ୍ଭେମାନେ ମନକୁ ସାନ୍ତ୍ୱନା ଦେଉ।

କ୍ୟାମ୍ପ୍ ଜେଲରେ ସବୁବେଳେ ରୋଗୀ ସଂଖ୍ୟା ଚାରିଶହରୁ ପାଞ୍ଚଶହ ପର୍ଯ୍ୟନ୍ତ ଥାନ୍ତି। ବାର ଚଉଦଟା ପର୍ଯ୍ୟନ୍ତ ଖୁଆଡ଼ ହାସପାତଲରେ ପରିଣତ ହୋଇଥାଏ। ବିଭିନ୍ନ ପ୍ରକାର ରୋଗୀଙ୍କପାଇଁ ଭିନ୍ନ ଭିନ୍ନ ଘର ଥାଏ। ପ୍ରତିଘରେ ଚାଳିଶରୁ ପଚାଶ ପର୍ଯ୍ୟନ୍ତ ରୋଗୀ ରହନ୍ତି। ଚାରିଜଣ ଡାକ୍ତର, କେତେଜଣ କମ୍ପାଉଣ୍ଡର କାର୍ଯ୍ୟ କରିବାକୁ ରହିଥାନ୍ତି। ରୋଗୀମାନଙ୍କ ସେବା କାର୍ଯ୍ୟ କରିବାକୁ ପ୍ରତି ଘରପାଇଁ ଆଠ ଦଶଜଣ ସ୍ୱେଚ୍ଛାସେବକ ବଛାହୋଇ ନିଯୁକ୍ତ ହୁଅନ୍ତି। ଏହି ସ୍ୱେଚ୍ଛାସେବକ ବାଛି ସେମାନଙ୍କ ନିଯୁକ୍ତ କରିବା, କେଉଁ ଡାକ୍ତର କେଉଁ ରୋଗୀକୁ ଦେଖିବେ ଇତ୍ୟାଦି ବ୍ୟବସ୍ଥା

ମତେ କରିବାକୁ ପଡୁଥିଲା । ଦିନରେ ତିନି ଚାରିଥର ରୋଗୀମାନଙ୍କୁ ଯାଇ ଦେଖି ସେମାନଙ୍କର ସୁବିଧା ଅସୁବିଧା ବୁଝି ତଦନୁସାରେ ସବୁ ବ୍ୟବସ୍ଥା କରିବା କାର୍ଯ୍ୟ ମୁଁ ଏକାକୀ କରୁଥିଲି । ରୋଗୀକୁ ଫଳ, ଦୁଧ, ଦହି, ସାଗୁ, ବାର୍ଲି ଇତ୍ୟାଦି ବଣ୍ଟନ କରିବାର ବ୍ୟବସ୍ଥା ଡାକ୍ତରଖାନା କମିଟି ଦାୟିତ୍ୱରେ ଥିବାରୁ ମତେ ଅକ୍ଲାନ୍ତ ପରିଶ୍ରମ କରିବାକୁ ପଡ଼େ । ଏସବୁ ବଣ୍ଟନ ପ୍ରତି ସୂକ୍ଷ୍ମ ଦୃଷ୍ଟି ନ ଦେଲେ ଅନେକ ସମୟରେ ବିଭ୍ରାଟ ଘଟୁଥିଲା । ଦିନକୁ ବାରମହଣ ଦୁଧ ଆସେ । ତହିଁରୁ ଦହିକରି ଘୋଳ ତିଆରି ହୁଏ । ରୋଗୀମାନଙ୍କ ଛଡ଼ା ଅନ୍ୟାନ୍ୟ ଦୁର୍ବଳ ରାଜବନ୍ଦୀମାନଙ୍କୁ ମଧ୍ୟ ଘୋଳ ଓ ଦୁଧ ଦେବାକୁ ଡାକ୍ତର ବ୍ୟବସ୍ଥା କରିଥାନ୍ତି । ଦୁଧ ଓ ଦହିର ଅପବ୍ୟବହାର ନ ହୋଇ ରୋଗୀ କିପରି ଠିକ୍‌ରୂପେ ଓ ଠିକ୍ ପରିମାଣରେ ପାଇବେ ତାହାର ବ୍ୟବସ୍ଥା କଠୋର କରିବାକୁ ଯାଇ ମୁଁ ଅନେକଙ୍କର ଅପ୍ରୀତିଭାଜନ ହେଉଥିଲି । ରୋଗୀଙ୍କ ସେବାପାଇଁ ବାଛିଥିବା ସ୍ୱେଚ୍ଛାସେବକମାନଙ୍କ ମଧ୍ୟରୁ କାହାରି କାର୍ଯ୍ୟ କୌଣସି କାରଣବଶତଃ ରୋଗୀଙ୍କର ଅପ୍ରୀତିକର ବୋଧ ହେଉଥିବାର ଜଣା ପଡୁଥିଲେ ମୁଁ ସେମାନଙ୍କୁ ଅନ୍ତର କରିଦେଇ ଅନ୍ୟ ସେବକ ବାଛି ନିଯୁକ୍ତ କରୁଥିଲି । ଏପରି କାର୍ଯ୍ୟ କଦାପି ପ୍ରୀତିକର ନୁହେଁ । ତଥାପି କର୍ତ୍ତବ୍ୟ କରିବାକୁ ଯାଇ ଅନେକ ସମୟରେ ଏହିପରି ଅପ୍ରୀତିକର କାର୍ଯ୍ୟ କରିବାକୁ ବାଧହେବାକୁ ପଡ଼େ । ମୁଁ ଏତେ କାର୍ଯ୍ୟ କରୁଥିଲେ ମଧ୍ୟ ଜେଲ ସୁପରିଣ୍ଟେଣ୍ଡେଣ୍ଟଙ୍କର ମୋ ପ୍ରତି ମନ ମଧ୍ୟରେ କ୍ରୋଧଭାବ ଥିଲା ପରି ଜଣା ପଡୁଥାଏ । ପୋଲିସ ଫଉଜକୁ ପଛକୁ ହଟାଇ ନେବାକୁ ଆଇ.ଜି. ସାହେବଙ୍କୁ ଡାକି ଅନୁରୋଧ କଲାବେଳେ ମୁଁ ତାଙ୍କ ବିରୁଦ୍ଧରେ କିଛି ଅଭିଯୋଗ କରିଛି ବୋଲି ତାଙ୍କର ଦୃଢ଼ବିଶ୍ୱାସ ।

## କ୍ୟାମ୍ପ ଜେଲରେ ଓଡ଼ିଶାର ରାଜବନ୍ଦୀ

ପାଟଣା କ୍ୟାମ୍ପ ଜେଲରେ ଓଡ଼ିଶା ରାଜବନ୍ଦୀମାନଙ୍କର ଖୁବ୍ ସୁଖ୍ୟାତି । ସବୁକାର୍ଯ୍ୟରେ ସେମାନେ ଅଗ୍ରଣୀ କହିଲେ ଚଳେ । ଜେଲ କର୍ତ୍ତୃପକ୍ଷଙ୍କ ସହିତ ଝଗଡ଼ା କରିବାଠାରୁ ଜେଲରେ ଶାନ୍ତି ରକ୍ଷାକରିବା ପର୍ଯ୍ୟନ୍ତ ସବୁକାର୍ଯ୍ୟକୁ ଓଡ଼ିଶାର ରାଜବନ୍ଦୀମାନେ ଆଗଭର । ପଢ଼ାଶୁଣା କରିବାରେ, ରୋଷେଇଶାଳର ଖାଦ୍ୟପେୟର ବ୍ୟବସ୍ଥା କରିବାରେ ଏବଂ ଖେଳ ଓ ସେବା କାର୍ଯ୍ୟରେ, ବିଶେଷତଃ ନାଟକ ଅଭିନୟ କରିବାରେ ଓଡ଼ିଶାର ରାଜବନ୍ଦୀ ଯେପରି ନିପୁଣତାର ପରିଚୟ ଦେଇଛନ୍ତି ତହିଁରେ ସମସ୍ତେ ମୁଗ୍ଧ ହୋଇଛନ୍ତି । ବଙ୍ଗାଳୀ, ବିହାରୀ ଓ ଓଡ଼ିଆ ପାଳିକରି ରୋଷେଇଶାଳାର ଦାୟିତ୍ୱ ବହନ କରିବାକୁ ପାକଶାଳା କମିଟି ବ୍ୟବସ୍ଥା ବାନ୍ଧିଥାଏ । ରୋଷେଇ ବ୍ୟବସ୍ଥା କରିବାର ପାଳି, ଓଡ଼ିଶା ରାଜବନ୍ଦୀମାନଙ୍କ ଉପରେ ପଡ଼ିଲେ ବିହାରୀ ଭାଇମାନଙ୍କ ଆନନ୍ଦର ସୀମା ରହେ ନାହିଁ । ଜେଲ କର୍ତ୍ତୃପକ୍ଷ ମଧ୍ୟ ବିଶେଷ ଆନନ୍ଦ ଓ ସନ୍ତୋଷ ପ୍ରକାଶ କରନ୍ତି ।

ଦିନକୁ ନ'ଟି ପଇସାରେ ସବୁ ବ୍ୟବସ୍ଥା କରିବାକୁ ହେବ। ସବୁ ଜିନିଷ ଶସ୍ତା ଥିବାରୁ ବ୍ୟବସ୍ଥା କରି ଜାଣିଲେ ଖୁବ୍ ଭଲ ହୁଏ। ଓଡ଼ିଆଙ୍କର ଚୂଡ଼ାରେ ଖେଚୁଡ଼ି ଖାଇ ବିହାରୀ ଭାଇମାନେ ଭାରି ଖୁସୀ। ଡାଲି ତରକାରୀ ଯେପରି ସୁସ୍ୱାଦୁ ସେପରି ପରିମାଣରେ ଅଧିକ ହୁଏ। ବିହାରୀ ବଙ୍ଗାଳୀ ଭାଇମାନେ କେଜାଣି କାହିଁକି ଓଡ଼ିଆଙ୍କ ପରି ସୁବ୍ୟବସ୍ଥା କରିପାରନ୍ତି ନାହିଁ। ଜେଲଖାନାରେ ଗ ଶ୍ରେଣୀ କଏଦୀ ହୋଇ ସୁସ୍ୱାଦୁ ଡାଲି ତରକାରୀ ଆଶାତୀତ ପରିମାଣରେ ଅଧିକ ପାଇବାକୁ ଭାବିବା ସ୍ୱର୍ଗର କଳ୍ପନା କରିବା ସଂଗେ ସମାନ। ଗ ଶ୍ରେଣୀର କଏଦୀ ଖାଇବା ସାଙ୍ଗକୁ ଯଦି ଟିକିଏ ଲୁଣ ଓ ଗୋଟାଏ ଲଙ୍କାମରିଚ ଯୋଗାଡ଼ କରିପାରିଲା ତେବେ ସେ ଅମୃତଲାଭ କଲା ବୋଲି ମନେ କରିଥାଏ। ୧୯୨୨ ଓ ୨୩ ମସିହାରେ ଜେଲର ଏପ୍ରକାର ଭୀଷଣତା ମୁଁ ଅନୁଭବ କରିଛି। ବାବୁ ହରେକୃଷ୍ଣ ମହତାବଙ୍କର ୧୯୨୨ ଓ ୨୩ ର ଏପରି କଠୋର ବ୍ୟବସ୍ଥା ଅନୁଭବ କରିବାର ଅନୁଭୂତି ଥାଇପାରେ, ନଚେତ୍ ଅନ୍ୟ କୌଣସି ଓଡ଼ିଶାର ରାଜବନ୍ଦୀ ସେପରି କଠୋର ବ୍ୟବସ୍ଥାର ଅନୁଭୂତି ପାଇବାର ସୌଭାଗ୍ୟ ପାଇ ପାରି ନାହାନ୍ତି। ସେ ଯାହାହେଉ, ପାଟଣା କ୍ୟାମ୍ପ ଜେଲରେ ଏଥିପାଇଁ ଓଡ଼ିଶା ରାଜବନ୍ଦୀମାନଙ୍କର ଭାରି ସୁନାମ।

ନାଟକ ଅଭିନୟ ଚର୍ଚ୍ଚିରୁ ବଳେ। ଜେଲଖାନାରେ କିଛିଦିନ ରହିଗଲେ ଚିତ୍ତବୃତ୍ତି ସାମାନ୍ୟ ଘଟଣାରେ ପ୍ରଭାବିତ ହୋଇପଡ଼େ। ମନ ଯାହା ଲୋଡ଼ୁଥାଏ, ତାହା ପାଇବାର ସମ୍ଭାବନା ନ ଥିବାରୁ ଆନନ୍ଦ ଜାତ କଲାଭଳି ପ୍ରତ୍ୟେକ କଥା ଓ ଦୃଶ୍ୟ ମନୁଷ୍ୟର ହୃଦୟକୁ ସ୍ପର୍ଶ କରେ। ଜେଲଖାନା ଭିତରେ ନାଟକ ଏହି କାରଣରୁ ଚିତ୍ତାକର୍ଷକ ହୋଇଥିଲା। କୋଣାର୍କ ନାଟକକୁ ଓଡ଼ିଶାର ରାଜବନ୍ଦୀ ଅଭିନୟ କରିଥିଲେ। ଗୋଟିଏ ଖୁଆଡ଼ର ରହିବା ଘରେ ନାଟକଟିର ଅଭିନୟ କରାଯାଇଥିଲା। ଅଭାବ ଅସୁବିଧା ମଧ୍ୟରେ କେବଳ ବିଭିନ୍ନ ରଙ୍ଗର ଖଦଡ଼ ଚାଦର ଓ କେତେକ ସବୁଜ ତାଳପତ୍ର ସାହାଯ୍ୟରେ ନାଟ୍ୟମଣ୍ଡପ ନିର୍ମାଣ କରାଯାଉଥାଏ। ସାଜସଜ୍ଜା ଓ ବେଶଭୂଷା ଦେଖି ସମସ୍ତେ ମୁଗ୍ଧ ହୋଇ ଯାଇଥିଲେ। ଧରମା ବିଶୁ ମହାରଣା ଭେଟ, ଧର୍ମାର 'ବାପା' ବୋଲି ଡାକିବା, ପୁଅରେ ଦାୟ ନା ବାରଶହ ବଢ଼େଇରେ ଦାୟ, ଇତ୍ୟାଦି ବିଷୟ ଅଭିନୟ ଦେଖି ବଙ୍ଗାଳୀ ଓ ବିହାରୀ ଭାଇମାନେ ଆତ୍ମହରା ହୋଇ ପଡ଼ିଲେ। ଧର୍ମାର ବାପା ଡାକ ଶୁଣି ସମସ୍ତେ କାନ୍ଦି ପକାଇଥିଲେ। ଜେଲ କର୍ତ୍ତୃପକ୍ଷ ସମସ୍ତେ ଆସି କୋଣାର୍କ ନାଟକ ଦେଖିଛନ୍ତି। ନାଟକଟି କିପରି ଚିତ୍ତାକର୍ଷକ ହୋଇଥିଲା ତାହା ବର୍ଣ୍ଣନା କରି ହେବ ନାହିଁ। କେବଳ ନାଟକ ଅଭିନୟ ନୁହେଁ, ଅଷ୍ଟପ୍ରହରୀ କୀର୍ତ୍ତନ କରି ଜେଲ ଭିତରେ ଓଡ଼ିଶାର ରାଜବନ୍ଦୀ ସମସ୍ତଙ୍କୁ ମୁଗ୍ଧ କରି ପାରିଛନ୍ତି। ଏ ସବୁର ଯୋଗାଡ଼ ଓ ଆୟୋଜନ କରିବାରେ ଶ୍ରୀ ମଦନମୋହନ ପଟ୍ଟନାୟକ ଓ ସୁଧୀରଚନ୍ଦ୍ର ଘୋଷ ବଡ଼ ଦକ୍ଷ। ହାସପାତାଳ କମିଟିର ମୁଁ ସଭାପତି ଥିବାରୁ ଜିନ୍

ପାଇଙ୍କର ପ୍ରଭୃତି ପାଇବାରେ ଅସୁବିଧା ନ ଥାଏ। ଜେଲଖାନା ଆଉ ଆମ୍ଭମାନଙ୍କ ପାଇଁ ଜେଲ ନ ଥିଲା। ଏଠାରେ ଦୋକାନ ବସି ବିଡ଼ି, ପାନ, ସିଗାରେଟ୍ ଓ ଚିନାବାଦାମ ମିଠେଇ ଆଦି ବିକ୍ରି ହେଉଥିଲା। ଅବଶ୍ୟ ଦୋକାନ କିଣାବିକା ଜେଲ କର୍ତ୍ତୃପକ୍ଷଙ୍କ ସଂପୂର୍ଣ୍ଣ ଅଜାଣତରେ ଚାଲିଥାଏ। ଖେଳ କସରତ ହେଉଥାଏ। ନାନା ପ୍ରକାର ଖେଳ। ଦେବଗଡ଼ର ଶ୍ରୀ ବିନୋଦାନନ୍ଦ ଝା ଓ ଶ୍ରୀ ଶଶୀଭୂଷଣ ରାଏଙ୍କ ସହିତ ମୁଁ ବେଶ୍ ଖେଳୁଥିଲି। ୧୯୨୨ ମସିହାରେ ଭାଗଲପୁର ଜେଲରେ ଏହି ଚେଶ୍‌ଖେଳ ଶିଖିଥିଲି। ବିନୋଦାନନ୍ଦବାବୁ ସେତେବେଳେ ମୋ ସହିତ ଖେଳୁଥିଲେ। ବର୍ତ୍ତମାନ ପାଟଣା କ୍ୟାମ୍ପ ଜେଲରେ ସେ ମୋର ପୁଣି ଚେଶ୍‌ଖେଳ ସାଥି। ୧୯୩୦ରେ ହଜାରୀବାଗ ଜେଲରେ ପଶାଖେଳ ଶିଖିଛି, ବର୍ତ୍ତମାନ ଏଠାରେ ପଶାଖେଳ ସୃଷ୍ଟି ହୋଇନାହିଁ। ପାଟଣା କ୍ୟାମ୍ପ ଜେଲରେ ଓଡ଼ିଶା ରାଜବନ୍ଦୀ ସବୁ କାର୍ଯ୍ୟରେ ସୁନାମ ଅର୍ଜନ କରିଛନ୍ତି। ନିଜ ମଧ୍ୟରେ କଳି ଲଗାଇବାରେ ମଧ୍ୟ ପଛରେ ପଡ଼ି ନାହାନ୍ତି। ଗୀତା ମୁଖସ୍ଥ କରି ପ୍ରତିଦ୍ୱନ୍ଦ୍ୱୀତା କରି ପୁରସ୍କାର ଲାଭ କରିଛନ୍ତି। କବି ସମ୍ମିଳନୀରେ କବିତା ଲେଖି ପ୍ରଶଂସା ପାଇଛନ୍ତି। ଗୀତା ପ୍ରତିଦ୍ୱନ୍ଦ୍ୱୀତାରେ ଖଣ୍ଡିଏ ଗୀତା ପୁସ୍ତକ ମୁଁ ପୁରସ୍କାର ପାଇଥିଲି।

## କ୍ୟାମ୍ପ ଜେଲରେ ହରିଜନ-ସେବା

ପାଟଣା କ୍ୟାମ୍ପ ଜେଲରେ ଥିବା ସମୟରେ ଏପରି ଗୋଟିଏ ଅଭିନବ ଘଟଣା ଦେଶରେ ଘଟିଲା ଯାହା ଚିରସ୍ମରଣୀୟ। ଭୂମିକମ୍ପ ହେଲେ ଧରାପୃଷ୍ଠ ଥରି ଉଠିଲାପରି ଏହି ଘଟଣା ସମସ୍ତ ଭାରତକୁ ଥରାଇଦେଇ ପୃଥିବୀରେ ଏକ ଚହଳ ପକାଇ ଦେଲା। ଭାରତର କୋଟି କୋଟି ନରନାରୀ ଚମକି ଉଠିଲେ। ବିଲାତର ପାର୍ଲିଆମେଣ୍ଟ ଥୟଧରି ରହି ପାରିଲା ନାହିଁ। ବିଲାତରେ ବସିଥିବା ଗୋଲଟେବୁଲ ବୈଠକ ବେଳେ ତଫସିଲଭୁକ୍ତ ଜାତିର ନେତା ଡାକ୍ତର ଆମ୍ବେଦକର ଭାରତ ଶାସନ ଖସଡ଼ାରେ ନିଜ ଜାତିପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରିବାକୁ ଦାବୀ କଲେ। ମହାତ୍ମାଗାନ୍ଧୀଙ୍କ କୌଣସି କଥା ଭାରତର ଶାସନଖସଡ଼ାରେ କଣ ଅଧିକାର କିପରି ସ୍ୱତନ୍ତ୍ର ରଖା ଯାଇପାରିବ, ତାହା ଡାକ୍ତର ଆମ୍ବେଦକରଙ୍କ ମନ ମାନିଲା ଭଳି ସମାଧାନ ହୋଇ ନ ପାରିବାରୁ ତାର ଶେଷ ମୀମାଂସା କରିଦେବାକୁ ବିଲାତର ପ୍ରଧାନମନ୍ତ୍ରୀ ମିଃ ରାମସେ ମ୍ୟାକଡୋନାଲ୍ଡ଼ଙ୍କ ଉପରେ ଛାଡ଼ି ଦିଆଗଲା। ମହାତ୍ମାଗାନ୍ଧୀ ମିଃ ରାମସେ ମ୍ୟାକ୍‌ଡୋନାଲ୍ଡ଼ଙ୍କୁ ସତର୍କବାଣୀ ଶୁଣାଇ କହିଥିଲେ ଯେ ତଫସିଲଭୁକ୍ତ ଜାତିକୁ ହିନ୍ଦୁ ସମାଜରୁ ପୃଥକ୍ କଲାଭଳି ଯଦି କିଛି ବ୍ୟବସ୍ଥା ହୁଏ, ତେବେ ସେପରି ବ୍ୟବସ୍ଥା ସେ ଗ୍ରହଣ କରି ପାରିବେ ନାହିଁ ଏବଂ ଆମରଣ ଅନଶନ କରି ସେହି ବ୍ୟବସ୍ଥାର ସେ ବିରୋଧ କରିବେ।

କିନ୍ତୁ ଦୁଃଖର ବିଷୟ, ବିଲାତ ପାର୍ଲିଆମେଣ୍ଟର ପ୍ରଧାନମନ୍ତ୍ରୀ ଏହିପରି ଆପତ୍ତିଜନକ ବ୍ୟବସ୍ଥା କରିବାର ଘୋଷଣା କଲେ। ଏହି ବ୍ୟବସ୍ଥା ଗ୍ରହଣ କଲେ ତଫସିଲଭୁକ୍ତ ଜାତିର ଲୋକେ ହିନ୍ଦୁ ସମାଜରୁ ଚିରକାଳ ପାଇଁ ଅଲଗା ହୋଇଯିବେ। ବର୍ତ୍ତମାନ ଜଗତରେ ରାଜନୀତି ହେଉଛି ଜୀବନ ଧାରଣର ମୂଳପିଣ୍ଡ। ଦେଶର ଶାସନ ପ୍ରଣାଳୀ ଏହି ରାଜନୀତିରେ ପୁଣି ମୂଳ ଆଧାର ଅଟେ। ଲୋକପ୍ରତିନିଧି ଶାସନ ପରିଚାଳନା କରିବେ। ଶାସନ ପରିଚାଳନା ଉପରେ ଦେଶ ଓ ସମାଜର ସର୍ବବିଧ ଉନ୍ନତି ନିର୍ଭର କରୁଛି। ତଫସିଲଭୁକ୍ତ ଜାତିର ଲୋକେ ସେମାନଙ୍କ ପ୍ରତିନିଧି ବାଛିବା କାର୍ଯ୍ୟରେ ହିନ୍ଦୁମାନଙ୍କ ମତାମତ ପ୍ରତି ଅପେକ୍ଷା ରଖିବାର କୌଣସି ଆବଶ୍ୟକ ରହୁ ନାହିଁ। ଉଚ୍ଚ ହିନ୍ଦୁ ଶ୍ରେଣୀର ଲୋକ ମଧ୍ୟ ଭୋଟପାଇଁ ତଫସିଲଭୁକ୍ତ ଜାତିଙ୍କ କୌଣସି ସାହାଯ୍ୟ ଦରକାର କରୁନାହାନ୍ତି। ସୁତରାଂ ଦେଶର ଶାସନକୁ ନିୟନ୍ତ୍ରିତ କରିବାକୁ, ଉଚ୍ଚ ହିନ୍ଦୁଜାତି ଓ ହିନ୍ଦୁ ତଫସିଲଭୁକ୍ତ ଜାତି, ଭୋଟ ଦେବା କାର୍ଯ୍ୟରେ ଆଉ କେହି କାହାର ସମର୍ଥନ ଆବଶ୍ୟକ କରିବାର ପ୍ରଶ୍ନ ରହୁ ନାହିଁ। ହିନ୍ଦୁ ସମାଜ ପକ୍ଷରେ ଏପରି ବ୍ୟବସ୍ଥା ଅତୀବ ସାଙ୍ଘାତିକ ଏବଂ ଦେଶ ପକ୍ଷରେ ମଧ୍ୟ କମ ବିପଦପୂର୍ଣ୍ଣ ନୁହେଁ। ଏହିପରି ଭାବରେ ତଫସିଲଭୁକ୍ତ ଜାତିର ଲୋକେ ହିନ୍ଦୁମାନଙ୍କଠାରୁ ସ୍ୱତନ୍ତ୍ର ହୋଇଗଲେ ଅନ୍ୟ ଯାହା କିଛି ସାମାଜିକ ସଂବନ୍ଧ ରହିଛି ତାହା ଭୁଷୁଡ଼ି ପଡ଼ିବ। ମୂଳ ହିନ୍ଦୁ ସମାଜ ସହିତ ସେମାନଙ୍କୁ ସଂଲଗ୍ନ କରି ରଖିଥିବା ଚେର ଛିଣ୍ଡିଯିବ। ସେମାନଙ୍କ ପାଇଁ ହିନ୍ଦୁ ସମାଜର ଆଉ କୌଣସି ଦାୟିତ୍ୱ ରହିବ ନାହିଁ। ଏହା ସତ୍ୟ ଯେ ବହୁକାଳରୁ ତଫସିଲଭୁକ୍ତ ଜାତିର ଲୋକଙ୍କ ସହିତ ଉଚ୍ଚ ଜାତିଙ୍କର ସାମାଜିକ ଅସାମଞ୍ଜସ୍ୟ ରହିଛି। ସେମାନେ ହିନ୍ଦୁ ସମାଜର ଅବିଚ୍ଛେଦ୍ୟ ଅଂଶ ହୋଇଥିବାରୁ ଉଚ୍ଚ ଶ୍ରେଣୀର ହିନ୍ଦୁମାନେ ତାହା ଦୂର କରିବେ ଏବଂ ସେମାନଙ୍କ ଉନ୍ନତି ପାଇଁ କାର୍ଯ୍ୟ କରିବାକୁ ଧର୍ମତଃ ଏବଂ ନ୍ୟାୟତଃ ସେମାନେ ଦାୟୀ।

ମୂଳ ହିନ୍ଦୁ ସମାଜ ନିକଟରୁ ସେମାନେ ସ୍ୱତନ୍ତ୍ର ହୋଇଯିବାର ବ୍ୟବସ୍ଥା ଖଞ୍ଜିଦେଲା ମାତ୍ରକେ ଦେଶରେ ଗୋଟିଏ ଶୂନ୍ୟସ୍ଥାନ ସୃଷ୍ଟି ହୋଇଯିବ। ବିଭିନ୍ନ ଧର୍ମ, ଜାତି ଓ ରାଜନୈତିକ ଦଳ ସବୁ ଉକ୍ତ ଶୂନ୍ୟ ସ୍ଥାନରେ ପ୍ରତିପତ୍ତି ଓ ପ୍ରଭାବ ବିସ୍ତାର କରିବାକୁ ତତ୍ପର ହୋଇ ଉଠିବେ। ସେମାନଙ୍କୁ ନିଜର କରି ନେବାକୁ ପ୍ରଲୋଭନ ମଧ୍ୟ ଦେଖାଇବେ। ଏପରି ବ୍ୟବସ୍ଥାକୁ ପ୍ରତିରୋଧ ନ କରି ଜୀବନ ଧାରଣ କରିବା ଗାନ୍ଧିଜୀଙ୍କୁ ଅସହ୍ୟ ବୋଧ ହେଲା। ଯରବାଦା ଜେଲରେ ସେତେବେଳକୁ ମହାତ୍ମାଜୀ ଅଟକବନ୍ଦୀ ହୋଇ ରହିଥାନ୍ତି। ହିନ୍ଦୁ ସମାଜକୁ ଭାଙ୍ଗିଦେଇ ରାଜନୀତି ଖେଳ ଖେଳିବାକୁ ଦେଶରେ ଶୂନ୍ୟସ୍ଥାନ ସୃଷ୍ଟି କରୁଥିବା ବିଧାନକୁ ରଦ୍ଦ କରିବା ଉଦ୍ଦେଶ୍ୟରେ ଗାନ୍ଧିଜୀ ଆମରଣ ଅନଶନ ଆରମ୍ଭ କରିଥିଲେ।

ଗାନ୍ଧିଜୀଙ୍କ ଆମରଣ ଅନଶନ ପ୍ରତିଜ୍ଞା ସମଗ୍ର ଭାରତକୁ ଦୋହଲାଇ ଦେଲା। ପୃଥିବୀରେ ଚହଳ ପଡ଼ିଗଲା। ଭାରତର କୋଟି କୋଟି ନରନାରୀ ବ୍ୟଥିତ ହୋଇ

ଉଠିଲେ। ଗାନ୍ଧିଜୀ ନ ଖାଇ ନ ପିଇ ଜେଲରେ ପ୍ରାଣତ୍ୟାଗ କରିବେ ଏହା ଭାରତବାସୀ ନୀରବରେ କଦାପି ସହ୍ୟ କରି ପାରିବେ ନାହିଁ। ଭାରତର ପୁରପଲ୍ଲୀ ସର୍ବତ୍ର ସଭା ଓ ଶୋଭାଯାତ୍ରା ହୋଇ ଏହି ବ୍ୟବସ୍ଥା ଅତିଶୀଘ୍ର ରଦ୍ଦ କରିବାପାଇଁ ପ୍ରସ୍ତାବ ଗ୍ରହଣ କରାଗଲା। ବିଲାତର ପ୍ରଧାନମନ୍ତ୍ରୀଙ୍କ ନିକଟକୁ କେବଳ ଭାରତ ନୁହେଁ, ପୃଥିବୀର ଅନ୍ୟାନ୍ୟ ଦେଶରୁ ଶୀଘ୍ର ଏହି ଆଇନ୍ ବଦଳାଇବାକୁ ନିବେଦନ କରାଗଲା। ବିଶ୍ୱକବି ରବୀନ୍ଦ୍ରନାଥ ପ୍ରଭୃତି ବିଶେଷ ବ୍ୟକ୍ତିସବୁ ଯରବାଦା ଜେଲ ଭିତରେ ମହାତ୍ମାଗାନ୍ଧୀଙ୍କ ସହିତ ଯାଇ ଭେଟ କଲେ। ଲକ୍ଷଲକ୍ଷ ନରନାରୀ ଆକୁଳ ପ୍ରାଣରେ ଦାଣ୍ଡକୁ ବାହାରି ପଡ଼ିଲେ। ଏହି ସମ୍ବାଦ ପାଟଣା କ୍ୟାମ୍ପ ଜେଲରେ ପହଞ୍ଚିଲା ମାତ୍ରକେ ଆମ୍ଭେମାନେ କଣ କରିବୁ କିଛି ବାଟ ଦେଖାଗଲା ନାହିଁ। ଅସ୍ପୃଶ୍ୟତା ଭଳି ଏକ ମହାବ୍ୟାଧି ହିନ୍ଦୁ ସମାଜରେ ରହିଥିବାରୁ ଆଜି ମହାତ୍ମାଗାନ୍ଧୀଙ୍କୁ ଆମରଣ ଅନଶନ କରିବାକୁ ହେଲା ବୋଲି ଆମ୍ଭେମାନେ ଉପଲବ୍ଧ କରିଥିଲୁ। ଏହି ଜ୍ଞାନ ଆଗରୁ ଆମ୍ଭମାନଙ୍କର ନ ଥିଲା ତାହା ନୁହେଁ। କିନ୍ତୁ ଏହି ଜ୍ଞାନ ଆମ୍ଭମାନଙ୍କୁ କେବଳ ନୁହେଁ, ଆଜି ସମଗ୍ର ଭାରତକୁ ଯେପରି ପାଗଳ କରିଛି, ସେପରି ଜ୍ଞାନ ଆଗରୁ କେବେ ହୋଇ ନାହିଁ। ଉଚ୍ଚଜାତି ଲୋକଙ୍କୁ ଏଥିପାଇଁ ପ୍ରାୟଶ୍ଚିତ୍ତ କରିବାକୁ ହେବ। ଜେଲଖାନା ଭିତରେ କଣ ପ୍ରାୟଶ୍ଚିତ୍ତ କି ପ୍ରକାର ହୋଇପାରେ? ଯେ କୌଣସି କାର୍ଯ୍ୟ କରିବାକୁ ୩୮ ଶହ ରାଜବନ୍ଦୀ ପାଗଳ ପାଲଟିଗଲେ।

ପାଟଣା କ୍ୟାମ୍ପ ଜେଲରେ ପ୍ରତି ଖୁଆଡ଼ରେ ପାଇଖାନା ସଫା କରୁଥିବା ମେହେନ୍ତରମାନଙ୍କ ସେବା ପୂଜା କାମ ଆରମ୍ଭ କରି ଦିଆଗଲା। ସେମାନଙ୍କୁ ସାବୁନ ଲଗାଇ ସ୍ନାନ କରାଇଦିଆଗଲା। ସ୍ନାନ ଉତ୍ସବପରେ ନୂତନ ପରିଧାନ ଓ ପୁଷ୍ପମାଳ ଏବଂ ତାର ପରେ ପୂଜା ଅର୍ଚ୍ଚନା ଓ ଭୋଗ ଅର୍ପଣ। କେବଳ ଏତିକି ନୁହେଁ। ମେହେନ୍ତରମାନଙ୍କୁ ବସାଇ ପାଇଖାନା ସଫା କାର୍ଯ୍ୟ ମଧ୍ୟ ଆମ୍ଭେମାନେ ନିଜ ନିଜ ହାତରେ କରିଥିଲୁ। ପାଇଖାନା ସଫା କରିବା ସତ୍ୟାଗ୍ରହୀଙ୍କ ପକ୍ଷରେ ଗୋଟାଏ ବଡ଼କାମ ନୁହେଁ କିମ୍ବା ସେଥିରେ ସେପରି କିଛି ବିଶେଷତ୍ୱ ନାହିଁ। କିନ୍ତୁ ଭାବବିହ୍ୱଳ ହୋଇ ଯେପରି ଢଙ୍ଗରେ କେତେକ ରାଜବନ୍ଦୀ ପାଇଖାନା ସଫା କରିବା କାର୍ଯ୍ୟ ସମ୍ପାଦନ କରିଥିଲେ ତାହାହିଁ ବିଚିତ୍ର ଓ ପ୍ରଧାନ ପ୍ରଣିଧାନର ବିଷୟ। ପାଇଖାନା ସଫା କରିବାରେ ମଳକୁ ମଳ ରୂପେ ଦେଖି କାର୍ଯ୍ୟ କରିବା ଭଳି ଜ୍ଞାନ ଅନେକଙ୍କର ନ ଥିଲା। ପାଇଖାନା ମଳକୁ ହାତରେ ଆଞ୍ଜୁଳା ଆଞ୍ଜୁଳା କରି ଧରି ଉଠାଇଛନ୍ତି। କେଉଁ ମଳ କିପରି ବାସୁଛି ତାହା ଜାଣିବାକୁ ହାତରେ ମୁଠା ମୁଠା ମଳ ଉଠାଇ ନାକ ନିକଟ ଲଗାଇ ବାସନା ବାରିବାକୁ ପ୍ରତିଦ୍ୱନ୍ଦ୍ୱିତା କରିଛନ୍ତି। ମଳ ପାତ୍ରକୁ ସାବୁନରେ ଧୋଇ ନିଜ ନିଜ ଗାମୁଛାରେ ପୋଛି ପକାଇଛନ୍ତି। କେହି କେହି ମଧ୍ୟ ମଳମୂତ୍ର ସ୍ଥାନ ସାବୁନ ପାଣିରେ ଧୋଇ ନିଜ ମୁଣ୍ଡବାଳରେ ପୋଛିଛନ୍ତି। ସମସ୍ତ

ପ୍ରକାର ବିକାରଭାବ ମନରୁ ଲୋପ ପାଇଛି। ପଞ୍ଚତିରିଶ ଶହ ରାଜବନ୍ଦୀ ଭାବବିହ୍ବଳ ହୋଇ ମେହେନ୍ତରଙ୍କ କାମ କରିଛନ୍ତି। ଏହାକୁ କେହି ସାମୟିକ ପାଗଳାମି ବୋଲି କହି ପାରନ୍ତି। କିନ୍ତୁ ପାଗଳ ନ ହେଲେ କୌଣସି ମହତ୍‌କାମ ସାଧିତ ହୁଏ ନାହିଁ। ପାଟଣା କ୍ୟାମ୍ପ ଜେଲରେ ଆମ୍ଭେମାନେ ଯେ ଖାଲି ଏପରି ପାଗଳ ହୋଇଥିଲୁ ତାହା ନୁହେଁ। ସମସ୍ତ ଭାରତ ଆଜି ପାଗଳ ବନିଛି।

## ଯରବାଦା ସର୍ତ୍ତ

ଆଜି ଜଣକ କଥାରେ ଭାରତବାସୀ ପାଗଳ ବନିଛନ୍ତି। ସମସ୍ତ ମାୟାମମତା ତ୍ୟାଗକରି ଜୀବନ ବଳିଦାନ ଦେବାକୁ ପ୍ରସ୍ତୁତ ହୋଇଥିବାରୁ ଅସମ୍ଭବ ବ୍ୟାପାର ସମ୍ଭବପର ହୋଇଥିବାର ଦୃଶ୍ୟ ଦେଖିବାକୁ ମିଳୁଛି। ଜଣେ ବ୍ୟକ୍ତି ପ୍ରାଣବଳି ଦେବାକୁ ଘୋଷଣା ପ୍ରକାଶ କରିଦେବା ଦ୍ୱାରା କୋଟି କୋଟି ଭାରତବାସୀଙ୍କ ହୃଦୟରେ ଅପୂର୍ବ ପରିବର୍ତ୍ତନ ଘଟିଛି। ମାନବ ସମାଜର ଇତିହାସରେ ଏତାଦୃଶ ଘଟଣା ଅତି ଅପୂର୍ବ ଓ ବିରଳ ବୋଲି କହିଲେ କଦାପି ଅତ୍ୟୁକ୍ତି ହେବ ନାହିଁ। ପୃଥିବୀର ଆଶ୍ଚର୍ଯ୍ୟ ଘଟଣାରେ ଏହା ନିଶ୍ଚୟ ଗୋଟିଏ ଆଶ୍ଚର୍ଯ୍ୟ। ତିନିଦିନ ମଧ୍ୟରେ ପୃଥିବୀରେ ଚହଳ ପଡ଼ିଯିବାରୁ ବିଲାତର ପ୍ରଧାନମନ୍ତ୍ରୀ ଆଉ ଥୟଧରି ରହିପାରିଲେ ନାହିଁ। ସେ ତାଙ୍କର ନିଷ୍ପତ୍ତିକୁ ପରିବର୍ତ୍ତନ କରିବାକୁ ବାଧ ହୋଇଥିଲେ। ଗାନ୍ଧିଜୀଙ୍କ ଅନୁମୋଦନ ଓ ନିର୍ଦ୍ଦେଶ ଅନୁସାରେ ଭାରତର ସବୁ ଶ୍ରେଣୀର ବିଶିଷ୍ଟ ବ୍ୟକ୍ତିଗଣ ଯେଉଁ ସର୍ତ୍ତ ଦେଲେ, ବିଲାତର ପ୍ରଧାନ ମନ୍ତ୍ରୀ ତାହାକୁ ଗ୍ରହଣ କରିଥିଲେ। ଏହାର ନାମ ହେଲା ଯରବାଦା ଚୁକ୍ତି ସର୍ତ୍ତ।

ଏହି ଚୁକ୍ତିସର୍ତ୍ତ ଅନୁସାରେ ତଫସିଲଭୁକ୍ତ ଜାତିଙ୍କ ପାଇଁ ସଂଖ୍ୟାନୁପାତରେ ପ୍ରତି ପ୍ରଦେଶରେ କେତୋଟି ସ୍ଥାନ ସଂରକ୍ଷିତ ରହିବ। ଏହି ସଂରକ୍ଷିତ ସ୍ଥାନ ଛଡ଼ା ଇଚ୍ଛାକଲେ ସର୍ବସାଧାରଣ ସ୍ଥାନରୁ ତଫସିଲଭୁକ୍ତ ଜାତିର ଯେ କେହି ବ୍ୟକ୍ତି ପ୍ରତିନିଧି ହେବାପାଇଁ ପ୍ରାର୍ଥୀ ହୋଇପାରିବେ। କିନ୍ତୁ କେବଳ ତଫସିଲଭୁକ୍ତ ଜାତି ଲୋକଙ୍କଠାରୁ ଭୋଟ ପାଇଗଲେ କାର୍ଯ୍ୟ ସାଧିତ ହୋଇଯିବ ନାହିଁ। ଭୋଟରେ ଜୟଯୁକ୍ତ ହେବାକୁ ଉଚ୍ଚ ହିନ୍ଦୁମାନଙ୍କ ଦ୍ୱାରସ୍ଥ ହେବାକୁ ପଡ଼ିବ। ଉଚ୍ଚ ଶ୍ରେଣୀର ହିନ୍ଦୁମାନେ ସେପରି ଭୋଟପାଇଁ ତଫସିଲଭୁକ୍ତ ଜାତିଙ୍କ ଦ୍ୱାରସ୍ଥ ହେବାକୁ ହେବ। କେହି କାହାକୁ ଅବହେଳା କରି ରାଜନୈତିକ କ୍ଷମତା ହାସଲ କରିବା ସମ୍ଭବପର ନୁହେଁ। ସୁତରାଂ ତଫସିଲଭୁକ୍ତ ଜାତିର ଲୋକେ ଏବଂ ଉଚ୍ଚ ଶ୍ରେଣୀର ହିନ୍ଦୁ ଏହାଦ୍ୱାରା ପରସ୍ପରରେ କେହି କାହାକୁ ଅବଜ୍ଞା କରିବାର ଆଉ ଅବକାଶ ରହିଲା ନାହିଁ। ଯରବାଦା ଚୁକ୍ତି ସର୍ତ୍ତର ଏହା ହିଁ ହେଲା ସାରମର୍ମ। ହିନ୍ଦୁଧର୍ମାବଲମ୍ବୀ ତଫସିଲଭୁକ୍ତ ଜାତିର ଲୋକେ ହିନ୍ଦୁ ସମାଜରେ ରହିଲେ। ମହାତ୍ମାଗାନ୍ଧୀଙ୍କର ଜୟ ହେଲା। ସେ ଅନଶନ ଭଙ୍ଗ କଲେ। ଦେଶରେ

ସାଧାରଣ ଅବସ୍ଥା ଫେରି ଆସିଲା। ପାଟଣା କ୍ୟାମ୍ପ ଜେଲ ପୂର୍ବବତ୍ ସ୍ୱାଭାବିକ ଅବସ୍ଥା ଧାରଣ କଲା।

ବୁଝି ବିଚାରି କୌଣସି କାର୍ଯ୍ୟ କରିବାକୁ ଅବସର ନ ଥିଲା। ଜେଲ ଭିତରେ ଆମ୍ଭେମାନେ ଏପରି ଆତ୍ମହରା ହୋଇଥିଲୁ ତାହା ନୁହେଁ ସମଗ୍ର ଭାରତ ଆତ୍ମହରା ହୋଇଥିଲା ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। ଏହି ଦୁଇ ତିନି ଦିନର ଘଟଣାବଳୀ ଆମ୍ଭମାନଙ୍କ ଚିନ୍ତା ଓ କାର୍ଯ୍ୟକୁ ନାନାଭାବରେ ପ୍ରଭାବିତ କରିଛି। ହୃଦୟରେ ଅପୂର୍ବ କର୍ମପ୍ରେରଣା ଭାବ ଜାଗ୍ରତ କରିଛି। ଉଗ୍ର ପ୍ରକୃତିକୁ ନମ୍ର କରିଛି। ସହନଶୀଳତା ଶିକ୍ଷା ଦେଇଛି। ସମାଜରୁ ଛୁଆଁ ଅଛୁଆଁ ଭାବ ଦୂର କରିବାକୁ ବହୁ ବ୍ୟକ୍ତିଙ୍କୁ ଦୃଢ଼ ପ୍ରତିଜ୍ଞା କରିଛି। ରାଜନୈତିକ ଘଟଣାବଳୀ ଦେଶପାଇଁ କାମ କରୁଥିବା କର୍ମୀମାନଙ୍କ ଜୀବନକୁ କିପରି ପ୍ରଭାବିତ କରେ ଏହା ଗୋଟିଏ ଜ୍ୱଳନ୍ତ ଦୃଷ୍ଟାନ୍ତ। ମହାତ୍ମାଗାନ୍ଧୀ ନିଜର କଥା ଓ କାର୍ଯ୍ୟଦ୍ୱାରା ଭାରତର ଭାଗ୍ୟ କିପରି ଗଠନ କରି ପାରୁଥିଲେ, ତାହା ହୃଦୟଙ୍ଗମ କରିବାକୁ ଏହାଠାରୁ ଆଉ ଅଧିକ ପ୍ରମାଣ କଣ ହୋଇପାରେ ?

## ଚମ୍ପାପୁର ଆଶ୍ରମ ଓ ଶରତ ପଟ୍ଟନାୟକ

ଆମ୍ଭେମାନେ ସାଧାରଣ ଅବସ୍ଥାକୁ ଫେରି ଆସିବା ପରେ ମୋର ମନ ଚମ୍ପାପୁର ଗାନ୍ଧୀ ସେବାଶ୍ରମ ଆଡ଼କୁ ଗତିକଲା। ଶ୍ରୀମାନ୍ ଶରତଚନ୍ଦ୍ର ପଟ୍ଟନାୟକଙ୍କ ଉପରେ ଆଶ୍ରମ ପରିଚାଳନା ଭାର ଅର୍ପଣ କରି ମୁଁ ଜେଲବରଣ କରିଛି। ଶରତ ଯୁବକ। ଆଦର୍ଶଗତ କେତେ କଳ୍ପନା ତା ମନରେ ଖେଳୁଥିବାର ଜାଣି ତାକୁ ମୁଁ ଜଣେ ବିଶିଷ୍ଟ କର୍ମୀ ଭାବରେ ଗ୍ରହଣ କରିଛି। କେବଳ କଳ୍ପନା ମହତ୍ ହେଲେ ସମାଜରେ କାର୍ଯ୍ୟ କରିବା ସହଜ ହୋଇପଡ଼େ ନାହିଁ। ଲୋକ ସମାଜରେ କାର୍ଯ୍ୟ କରିବାକୁ ବ୍ୟବହାରୀକ ଅଭିଜ୍ଞତା ନିହାତି ଦରକାର। ଏପରି କୌଣସି ବ୍ୟବହାରିକ ଅଭିଜ୍ଞତା ଲାଭ କରିବାର ସୁଯୋଗ ସୁବିଧା ଶରତ ପାଇନାହାନ୍ତି। ଏପରି ଅବସ୍ଥାରେ ଆଶ୍ରମ ପରିଚାଳନାର ସମସ୍ତ ଦାୟିତ୍ୱ ତାଙ୍କ ଉପରେ ଲଦିଦେଇ। ତାଙ୍କୁ ଏକ ଭୀଷଣ ପରୀକ୍ଷାର ସମ୍ମୁଖୀନ ହେବା ପରିସ୍ଥିତିରେ ପକାଇ ଦେଇ ଆସିଥିବାରୁ ଆଶ୍ରମ କଥା ଚିନ୍ତା ନ କରି ମୁଁ ରହିପାରୁ ନାହିଁ। ସାଧାରଣ କ୍ଷେତ୍ରରେ କାମକରିବା ଅର୍ଥ, କ୍ଷୁରଧାରରେ ଚାଲିବା ସଂଗେ ସମାନ। ଆଦର୍ଶଗତ ଭାବନା ଯେତେ ଉଚ୍ଚ ହେଲେ ମଧ ତଦନୁସାରେ କାର୍ଯ୍ୟ କରିବାପାଇଁ କର୍ମୀଙ୍କୁ ଅତିଶୟ ସାବଧାନର ସହିତ ବ୍ୟବହାର କରିବାକୁ ହେବ। ଲୋକ ଚକ୍ଷୁରେ ଦୋଷଣୀୟ ଦେଖାଗଲା ପରି କୌଣସି କାର୍ଯ୍ୟ ଦେଶସେବକ ପକ୍ଷରେ କରଣୀୟ ନୁହେଁ। ଆମ୍ଭମାନଙ୍କ ପରି ସାଧାରଣ କର୍ମୀଙ୍କ କଥା କିଏ ପଚାରେ ? ରାମାୟଣରେ ବର୍ଣ୍ଣନା କରାଯାଇଅଛି ଲୋକାପବାଦକୁ ଡରି ରାଜା ରାମଚନ୍ଦ୍ର ସୀତାଦେବୀଙ୍କୁ ପରିତ୍ୟାଗ କରିଥିଲେ। ଲୋକାପବାଦକୁ ଡରି

ନ ଚଳିଲେ ମନୁଷ୍ୟର ମହତ୍ତ୍ୱ ପରିସ୍ଫୁଟ ହୁଏ ନାହିଁ। ପୁଣି ଦେଶପାଇଁ କାମ କରୁଥିବା କର୍ମୀର ଗୁଣ ତ କେହି ଦେଖନ୍ତି ନାହିଁ। ଦୋଷ ନ ଥିଲେ ମଧ୍ୟ ଦୋଷାରୋପ କରି ସମାଲୋଚନା କରିବାରେ ବହୁବ୍ୟକ୍ତି ତଦ୍ୱାରା ନିର୍ଭିକ ମତାମତ ପ୍ରକାଶ କଲେ ବୋଲି ଆନନ୍ଦ ଅନୁଭବ କରନ୍ତି। ସନ୍ନ୍ୟାସୀ ଦୀକ୍ଷା ନେଇ କଠୋର ସାଧନା କରିବା ସହଜ କିନ୍ତୁ ଦେଶପାଇଁ କାର୍ଯ୍ୟକରିବା କଦାପି ସହଜ ନୁହେଁ। କୌଣସ ବ୍ୟକ୍ତିର ଅତିମାତ୍ରାରେ ଦୁଃସାହସିକ କାର୍ଯ୍ୟ ଦେଖିଲେ ତାହା ସମାଜର ଅମଙ୍ଗଳ ହେଲେ ମଧ୍ୟ, ସେହି କାର୍ଯ୍ୟକୁ ଲୋକେ ପ୍ରଶଂସା କରିବାର ଦୃଷ୍ଟାନ୍ତ ବିରଳ ନୁହେଁ। କିନ୍ତୁ କୌଣସି କର୍ମୀର କାର୍ଯ୍ୟ ନିଜ ମତାମତର ଅନୁକୂଳ ନ ହେଲେ ତାହାର କଠୋର ସମାଲୋଚନା କରିବାକୁ ଦେଶରେ ବହୁଲୋକ କର୍ତ୍ତବ୍ୟ ପାଳନ କଲେ ବୋଲି ମନେ କରନ୍ତି। ଦେଶର ସାଧାରଣ କର୍ମୀ ଓ ଅନୁଷ୍ଠାନର କାର୍ଯ୍ୟକଳାପରେ ଦୋଷ ତ୍ରୁଟି ବାଛିବା ଆମ ଦେଶରେ ଗୋଟାଏ ବ୍ୟାଧି ବୋଲି ମୋର ମନେ ହୁଏ।

## ଶରତ ପଟ୍ଟନାୟକଙ୍କ ଆଶ୍ରମ ତ୍ୟାଗକରିବା

ଚମ୍ପାପୁରଠାରେ କାର୍ଯ୍ୟ କରିବାକୁ ଉପସ୍ଥିତ ହେବା ସମୟରୁ ମୁଁ ବାଧା ପ୍ରତିବନ୍ଧକ ପାଇଛି। କାର୍ଯ୍ୟ ଆରମ୍ଭ କରିବାକୁ ଦାସେ ଆପଣଙ୍କଠାରୁ ପଚାଶଟି ଟଙ୍କା ପାଇଥିଲି। ଦାସେ ଆପଣେ ଆଉ ନାହାନ୍ତି। ଇତି ମଧ୍ୟରେ ଆଶ୍ରମର ବହୁ ଉନ୍ନତି ଘଟିଛି। ଏଥିପାଇଁ ଓଡ଼ିଶାରେ କାହାରିଠାରୁ କୌଣସି ସମର୍ଥନ ପାଇ ନାହିଁ। ବରଂ ଆଶ୍ରମର ଉନ୍ନତି ଅନେକଙ୍କ ଚକ୍ଷୁଶୂଳ ହୋଇଛି। ମୁଁ ଧରାହୋଇ ଜେଲ ଆସିବା ପରେ ଅନ୍ନପୂର୍ଣ୍ଣାଙ୍କ ଆଶ୍ରମକୁ ଆସିବା କଥା ପୂର୍ବରୁ ଉଲ୍ଲେଖ କରିଛି। ଶ୍ରୀମାନ୍ ଶରତଙ୍କ ଉପରେ ଆଶ୍ରମ ପରିଚାଳନା ଭାର ଦେବା ଦ୍ୱାରା କୌଣସି ପୁରୁଣା କର୍ମୀଙ୍କର ଈର୍ଷା ଜାତ ହୋଇଛି। ଶରତ ଓ ଅନ୍ନପୂର୍ଣ୍ଣାକୁ ଲକ୍ଷ୍ୟ କରି ଅପ୍ରୀତିକର କଥା ସୃଷ୍ଟି ହୋଇ ଦାଣ୍ଡକୁ ପ୍ରକାଶ ପାଇଲା। ଆଶ୍ରମର ଦୁର୍ନାମ ରଟନା କରିବାକୁ ଅଗ୍ନିରେ ଘିଅ ଢାଳିଲା ପରି ଏହା ସାହାଯ୍ୟ କଲା। କଟକ ସହରରୁ 'ଦେଶକଥା' ନାମରେ ଖଣ୍ଡିଏ କାଗଜ ପ୍ରକାଶ ପାଉଥାଏ। ଅତିରଂଜିତ କରି ଆଶ୍ରମର ନାନା ପ୍ରକାର ସମାଲୋଚନା ଉକ୍ତ କାଗଜରେ ପ୍ରକାଶ ପାଇଲା। ଏହି ପ୍ରକାର ସମାଲୋଚନାର ଉତ୍ତର ଦେବାକୁ ଅତି ସାହସର ସହିତ ଅନ୍ନପୂର୍ଣ୍ଣାକୁ ବିବାହ କରିବାକୁ ଶରତ ଦୃଢ଼ପ୍ରତିଜ୍ଞା ହେଲେ। ମତେ ତାଙ୍କର ପ୍ରତିଜ୍ଞା ଜଣାଇଲେ। ମୁଁ ଜେଲରୁ ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରନ୍ତୁ ନଚେତ୍ ଜୀବରାମ ଭାଇଙ୍କ ସହିତ ପରାମର୍ଶ କରି ଯାହା ତାହା କରିବାକୁ ମୁଁ ପରାମର୍ଶ ଦେଇଥିଲି। କିନ୍ତୁ ଗଭୀର ସମୁଦ୍ରରେ ନାବିକବିହୀନ ନୌକାପରି ଶରତ ନିଜକୁ ଅସହାୟ ମନେ କଲେ ଏବଂ ନିଜର ପ୍ରତିଜ୍ଞା ରକ୍ଷା କରିବାକୁ ସେ ଅନ୍ନପୂର୍ଣ୍ଣାଙ୍କୁ ସଙ୍ଗରେ ଧରି ଆଶ୍ରମ ତ୍ୟାଗ କରି ଚାଲିଗଲେ। ଗଲାବେଳକୁ ନିଜର ଆବଶ୍ୟକ ଅନୁଯାୟୀ କିଛି ଟଙ୍କା ପଇସା ସେ ନେଇଛନ୍ତି।

ଶରତ ଆଶ୍ରମ ତ୍ୟାଗ କରି ଚାଲିଗଲେ କିମ୍ବା କିଛି ଟଙ୍କା ପଇସା ନେଲେ, ସେଥିପାଇଁ ମୁଁ ଦୁଃଖିତ ନୁହେଁ। ଆଶ୍ରମର ସମସ୍ତ ଦାୟିତ୍ୱ ତାଙ୍କ ଉପରେ ଥିଲା। ସେ ହଠାତ୍ ଆଶ୍ରମ ଛାଡ଼ି ଚାଲିଯିବା ଦ୍ୱାରା ଆଶ୍ରମର ମୂଳଦୁଆ ଦୋହଲିଗଲା। ଏହି ସମ୍ବାଦ କ୍ୟାମ୍ପ ଜେଲରେ ପାଇଲି। ଦେଢ଼ବର୍ଷ ମିଆଦରୁ ଆହୁରି ଛ ମାସ ବାକୀ ଅଛି। ମୋର ଦୁଃଖର ସୀମା ରହିଲା ନାହିଁ। ଆଶ୍ରମର ଭବିଷ୍ୟତ୍ ମତେ ଅନ୍ଧକାର ଦେଖାଗଲା। ଆଶ୍ରମର ବହୁ ଟଙ୍କା ପଇସା ଲୋକସାନ୍ ହୋଇଗଲା। ଚିନ୍ତାମଣି ଭୂୟାଁ ନାମକ ଜନୈକ କର୍ମୀ ପନ୍ଦର ଶହ ପର୍ଯ୍ୟନ୍ତ ଟଙ୍କା ଆତ୍ମସାତ୍ କଲେ। ଖଦଡ଼ ବିକ୍ରୀ କରିବାକୁ ଶରତଙ୍କ ମାରଫତରେ ଯେଉଁମାନେ ନେଇଥିଲେ ସେମାନଙ୍କର ଦେଖା ମିଳିଲା ନାହିଁ। ଏହି ସବୁ ସମ୍ବାଦ କ୍ରମଶଃ ମୁଁ ଯେତେ ଶୁଣିବାକୁ ପାଉଥାଏ ସେତିକି ମୋ ମନ ଚଞ୍ଚଳ ହୋଇ ଉଠେ। ମନରେ ଦୁଃଖ ଏବଂ କ୍ରୋଧଭାବ ଉଭୟ ଜାତ ହୁଏ। ଆଶ୍ରମର ଭବିଷ୍ୟତ୍ ଚିନ୍ତାରେ ଦୁଃଖ ଏବଂ ସମାଲୋଚକମାନଙ୍କ ପ୍ରତି ମନରେ କ୍ରୋଧ ଜାଗି ଉଠେ।

## ଆଶ୍ରମ ପରିଚାଳନା ପାଇଁ ନୂତନ ବ୍ୟବସ୍ଥା

କୌଣସି ସାଧାରଣ ଅନୁଷ୍ଠାନ କୌଣସି ବ୍ୟକ୍ତିବିଶେଷଙ୍କ ନିଜସ୍ୱ ନୁହେଁ। ସୁତରାଂ ତାହାର ସମାଲୋଚନା କରିବା ପୂର୍ବରୁ ଅନୁଷ୍ଠାନର ପରିସ୍ଥିତି ଓ ତହିଁରୁ ଉପୁଜୁଥିବା ଆନୁସଙ୍ଗିକ ଘଟଣାର ସବିଶେଷ ତଦନ୍ତ କରିବା ନିହାତି ଆବଶ୍ୟକ। ତାହା ନ କରି ଯାହା ଯେପରି ଶୁଣାଗଲା ତାହା ଚିତ୍ରଣ କରି ନିଜର ମତଲବ ଜାହୀର କରିବା ପ୍ରକୃତି ସମାଲୋଚନା ନୁହେଁ। ଏହି ପ୍ରକାର ଦାୟିତ୍ୱ ବିହୀନ ସମାଲୋଚନା ଯେଉଁମାନେ କରନ୍ତି ସେମାନେ ଦେଶର ଅନିଷ୍ଟ ସାଧନ କରନ୍ତି ବୋଲି ମୋର ଦୃଢ଼ ବିଶ୍ୱାସ। ଓଡ଼ିଶା ପରି ପ୍ରଦେଶରେ କେବଳ ଜଣେ ବ୍ୟକ୍ତିର ଅଦମ୍ୟ ଚେଷ୍ଟାରେ ଗୋଟିଏ ଅନୁଷ୍ଠାନ ଦୃଢ଼ଭାବରେ ଠିଆ ହେବାକୁ ଚେଷ୍ଟା କରୁଛି। ଏହାକୁ ଲକ୍ଷ୍ୟକରି ମହାତ୍ମାଗାନ୍ଧୀ ମରୁଭୂମିରେ ଏହା ଗୋଟିଏ ଶ୍ୟାମଳ କ୍ଷେତ୍ରବୋଲି ମତପ୍ରକାଶ କରିଛନ୍ତି। ସୁତରାଂ କୌଣସି କଥାର ଆମୂଳଚୂଳ ରହସ୍ୟ ଜାଣିବାକୁ ପ୍ରୟାସ ନ କରି ଯେଉଁମାନେ ସମାଲୋଚନା ଦ୍ୱାରା ଗୋଟିଏ ଅନୁଷ୍ଠାନ ପ୍ରତି ବିରୁଦ୍ଧଭାବ ସୃଷ୍ଟି କରନ୍ତି ସେମାନେ ଦେଶର ମଙ୍ଗଳ କରୁଛନ୍ତି ବୋଲି ସ୍ୱୀକାର କରିବାକୁ ମୁଁ ପ୍ରସ୍ତୁତ ନୁହେଁ। ଶରତ ପଟ୍ଟନାୟକ ଆଶ୍ରମ ଛାଡ଼ି ଚାଲିଯିବା ପରେ ମୋ ମନରେ ଏହିପରି ପ୍ରତିକ୍ରିୟା ଭାବ ଜାତ ହୋଇଛି। ଯାହା ଘଟିବାର ଘଟିଗଲାଣି। ନିରର୍ଥକ ଦୁଃଖ କରି କିଛି ଲାଭ ନାହିଁ ଭାବି ଅସ୍ଥିର ମନକୁ ପୁଣି ଦୃଢ଼ କରିବାକୁ ଚେଷ୍ଟା କଲି। ଜେଲ ଭିତରୁ ସାକ୍ଷୀଗୋପାଳ ଗୋପବନ୍ଧୁ-ସେବାସଦନର କର୍ମୀ ଶ୍ରୀ ସତ୍ୟବାଦୀ ନନ୍ଦଙ୍କୁ ମୁଁ ଜେଲରୁ ମୁକ୍ତହେବା ପର୍ଯ୍ୟନ୍ତ ଆଶ୍ରମ ପରିଚାଳନା ଦାୟିତ୍ୱ ବହନ କରିବାକୁ

ଅନୁରୋଧ କରି ପତ୍ର ଲେଖିଲି। ସେ ମୋର ଅନୁରୋଧ ରକ୍ଷାକରି ଆଶ୍ରମ ପରିଚାଳନା କରିଥିଲେ। ତାଙ୍କର ପରାମର୍ଶ ଓ ସାହାଯ୍ୟ ପାଇବାରୁ ଶ୍ରୀ ଦାମୋଦର ସାହୁଙ୍କ ଚେଷ୍ଟାରେ ଆଶ୍ରମ ଖଦି ବିଭାଗ ମୂଳପୋଛ ନ ହୋଇ କୌଣସି ପ୍ରକାରେ ତିଷ୍ଠିଗଲା।

## ପାଟଣା ଜିଲା ଜେଲକୁ ଚାଲାଣ

୧୯୩୩ ମସିହା ଜୁଲାଇ ମାସରେ ମୁଁ ଜେଲରୁ ବାହାରିଲି। କିନ୍ତୁ ମୁଁ ଆଉ ପାଟଣା କ୍ୟାମ୍ପ ଜେଲରେ ନ ଥିଲି। ପାଟଣା କ୍ୟାମ୍ପ ଜେଲରେ ସୁପରିଣ୍ଟେଣ୍ଡେଣ୍ଟଙ୍କ ମୋ ପ୍ରତି ଶୁଭଦୃଷ୍ଟି ନ ଥିଲା, ଏହା ପୂର୍ବରୁ ସୂଚନା ଦେଇଛି। ଅନେକ ସମୟରେ ମୁଁ ତାହାଙ୍କ ସହିତ ଯୁକ୍ତି କରେ। ମୋର ଯୁକ୍ତି ତାଙ୍କୁ ଭଲଲାଗେ ନାହିଁ। ଜେଲରେ ରୋଗୀ ସେବା କାର୍ଯ୍ୟକୁ ମୁଁ ଭଲଭାବରେ ବ୍ୟବସ୍ଥା କରିପାରି ଥିବାରୁ ମନରେ ବିରକ୍ତଭାବ ଥିଲେ ମଧ ପ୍ରକାଶ୍ୟରେ ସେ ମତେ ଏ ପର୍ଯ୍ୟନ୍ତ କିଛି କହିନାହାନ୍ତି। ଶ୍ରୀ ବିନୋଦାନନ୍ଦ ଝା, ଶଶୀବାବୁ ଓ ମୁଁ ଅନେକ ସମୟରେ ଜେଲର ଆଭ୍ୟନ୍ତରୀଣ ବିଷୟରେ ସୁପରିଣ୍ଟେଣ୍ଡେଣ୍ଟଙ୍କ ସହିତ ଆଳାପ ଆଲୋଚନା କରିଛୁ। ଶ୍ରୀ ବିନୋଦାନନ୍ଦ ଓ ଶଶୀଭୂଷଣ ବାବୁ ଉଭୟେ ହଜାରୀବାଗ ଜେଲକୁ ବଦଳି ହୋଇ ଗଲେଣି। ସୁପରିଣ୍ଟେଣ୍ଡେଣ୍ଟଙ୍କ ସହିତ ମୋର ଆଉ ସେପରି ଦେଖାସାକ୍ଷାତ ହେବାର ଆବଶ୍ୟକ ପଡୁନାହିଁ। ଜେଲ ଭିତରେ ଯେତେବେଳେ କିଛି ଆନ୍ଦୋଳନ ସୃଷ୍ଟି ହେଉଛି ସେଥିରେ ମୁଁ ବିଶେଷ ଭାବରେ ଅଂଶ ଗ୍ରହଣ କରୁଛି ବୋଲି ତାଙ୍କ ମନରେ ଗୋଟାଏ ଧାରଣା ବଦ୍ଧମୂଳ ହେଉଛି। ସେ ଟିକିଏ କିନ୍ତୁ ଆଡ଼ପାଗଳିଆ ଲୋକ। ବେଳେବେଳେ କଣ ଗୋଟାଏ ଖିଆଲ ଧରି ଯାହା ଇଚ୍ଛା ତାହା କରି ବସନ୍ତି। ଦିନେ ସକାଳେ ଆଠଟା ସମୟରେ ମୁଁ ଆଉ ସୁଧୀରବାବୁ ଦୁହେଁ ଠିଆହୋଇ ଆଳାପ କରୁଛୁ। ସେହି ସମୟରେ ସୁପରିଣ୍ଟେଣ୍ଡେଣ୍ଟ ସାହେବ ଆସିଲେ। କଣ ଦେଖି ସେ ରାଗିଗଲେ ମୋର ମନ ପଡୁନାହିଁ। ଯାହାକୁ ଘର ବାହାରେ ଠିଆହେବାର ଦେଖିଲେ ତାକୁ ଗୋଡ଼େଇଲେ। ମୋ ନିକଟ ଦୌଡ଼ି ଆସିବାରୁ ମୁଁ କହିଥିଲି, 'Please don't touch me'–ଅନୁଗ୍ରହପୂର୍ବକ ମୋ ନିକଟ ଆସ ନାହିଁ। ସାହେବ ଏଥିରେ ଅଧିକ ରାଗିଯାଇ ଆମ୍ଭ ଦୁଇଜଣଙ୍କୁ ଧରି ନେଇ ଅଫିସ ଘରେ ବସାଇ ରଖିଲେ। ସେଠାରୁ ଆମ୍ଭେ ଦୁଇଜଣ ପାଟଣା ଜିଲା ଜେଲକୁ ଚାଲାଣ ହେଲୁ। ଏହା ୧୯୩୩ ମସିହା ଫେବୃୟାରୀ ମାସ ଦଶ ବାରଦିନ ପରେ ସୁଧୀରବାବୁ ଜେଲରୁ ଖଲାସ ହେଲେ। ମତେ କେତେ ମାସ ପାଟଣା ଜିଲାର ଜେଲଖାନାରେ ରହିବାକୁ ପଡ଼ିଲା। ପ୍ରତିମାସରେ ସତ୍ୟାଗ୍ରହୀ ଧରାହୋଇ ଜେଲ ଆସୁଥାନ୍ତି। ଡାକ୍ତର ମହମ୍ମଦ ଧରାହୋଇ ଏହି ଜିଲ୍ଲା ଜେଲରେ କିଛିଦିନ ରହିଥିଲେ। ଆଚାର୍ଯ୍ୟ କ୍ରିପଲାଣି ଓ ପୂଜ୍ୟ ଶ୍ରୀ ରାଜେନ୍ଦ୍ରପ୍ରସାଦ ଏହି ଜିଲ୍ଲା ଜେଲକୁ ଆସିଲେ। କିଛିଦିନ ପରେ ହଜାରୀବାଗ ଜେଲକୁ ସେ ଦୁଇଜଣ

ଚାଲାଣ ହୋଇଗଲେ। ମୋ ସହିତ ଜଣେ ବଙ୍ଗାଳୀ ଭଦ୍ରବ୍ୟକ୍ତି ଜେଲ ଖଟୁଥାନ୍ତି। ଆମ ଦୁଇଜଣଙ୍କୁ ଦରଭଙ୍ଗା ଜେଲକୁ ପଠାଇ ଦିଆଗଲା। ପାଟଣା ଜିଲା ଜେଲରେ ଥିବା ସମୟରେ କିଛି ସମୟପାଇଁ ଚମ୍ପାପୁର ଆଶ୍ରମ କଥା ମୋ ମନରୁ ପାସୋର ଯାଇଥିଲା। ଏଠାରେ ଆଚାର୍ଯ୍ୟ କ୍ରିପଲାଣୀ ଓ ରାଜେନ୍ଦ୍ରବାବୁଙ୍କ ସହିତ ଦେଖାସାକ୍ଷାତ ପାଇ ଆଳାପ କରିବାରେ ଆଶ୍ରମ ଚିନ୍ତା ମୋ ମନରୁ ଦୂର ହୋଇଥିଲା। ବମ୍ବେଇରେ ମହାତ୍ମାଗାନ୍ଧୀଙ୍କ ସହିତ ରହି ତାଙ୍କର ସେବା ଓ ବମ୍ବେଇରେ ଅରଟ ପ୍ରଚାର କାର୍ଯ୍ୟ କରୁଥିବା ସମୟରେ ଏହି ଦୁଇ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ମୋର ବ୍ୟକ୍ତିଗତ ଘନିଷ୍ଠ ସଂପର୍କ ସ୍ଥାପିତ ହୋଇଛି। ସେମାନେ ମତେ ସେଠାରେ ଦେଖି ଆପଣାର ଲୋକପରି ମନେ କରୁଛନ୍ତି। ସୁତରାଂ ଏପରି ଭାବରେ ଜେଲ ଭିତରେ ସେମାନଙ୍କ ସହିତ ଦେଖାସାକ୍ଷାତ୍ ଘଟି ଆଳାପ ଆଲୋଚନା କରିବାର ସୁବିଧା ଜୁଟିଯିବାରୁ ମନରେ ଆନନ୍ଦ ଅନୁଭବ କରିବା ସ୍ୱାଭାବିକ। ରାଜେନ୍ଦ୍ରବାବୁ ବେଶୀ କଥା କହନ୍ତି ନାହିଁ। ଆଚାର୍ଯ୍ୟ କ୍ରିପଲାଣୀ ସବୁବେଳେ ଏବଂ ସମସ୍ତଙ୍କ ସହିତ ଥଟ୍ଟାଳି କଥା କୁହନ୍ତି। ଗୋଟାଏ ବାୟାଲୋକ ପରି ତାଙ୍କର ଚଳଣି। କୌଣସି କଥାକୁ ଭ୍ରୂକ୍ଷେପ ନ ଥାଏ। ତାଙ୍କର ବେଶଭୂଷା ଓ କଥା କହିବାର ଢଙ୍ଗ ଦେଖିଲେ ତାଙ୍କୁ ନ ଜାଣିଥିବା ଲୋକ, ତାଙ୍କର ବାଲ୍ୟ ଚପଳତା ଯାଇନାହିଁ ବୋଲି କହିବ। କିନ୍ତୁ ତାଙ୍କର ଗଭୀର ପାଣ୍ଡିତ୍ୟ ଏବଂ ସମସ୍ତ କଥାର ବିଶ୍ଳେଷଣ କରିବାର ଶୈଳୀ ଦେଖିଲେ ମୁଗ୍ଧ ନ ହୋଇ ରହିପାରିବ ନାହିଁ।

## ଦରଭଙ୍ଗା ଜେଲ

ଜେଲରୁ ଖଲାସ ପାଇବାକୁ ପନ୍ଦରଦିନ ମାତ୍ର ବାକୀ ଅଛି। ମତେ ଦରଭଙ୍ଗା ଜେଲକୁ ଚାଲାଣ କରାଗଲା। ଦରଭଙ୍ଗା ଜେଲରେ ଉଲ୍ଲେଖଯୋଗ୍ୟ କୌଣସି ଘଟଣା ଘଟିନାହିଁ। ମୋ ସହିତ ଚାଲାଣ ହୋଇଥିବା ବଙ୍ଗାଳୀ ଭଦ୍ରବ୍ୟକ୍ତିଙ୍କର ଅଧିକ ସମୟ ମିଆଦ ବାକୀ ଥାଏ। ସେ ଧୀରସ୍ଥିରଭାବରେ ପଢ଼ାଶୁଣା କରୁଥାନ୍ତି। କିନ୍ତୁ ମୋ ମନ ଚଞ୍ଚଳ ହେଉଥିବାରୁ କାହିଁରେ ମୋ ମନ ଥୟ ଧରେ ନାହିଁ। ଜେଲଖାନାରେ ଦୀର୍ଘ ମିଆଦ ଥିଲେ ମନରେ ଶାନ୍ତି ରହେ। କିନ୍ତୁ ଜେଲରୁ ମୁକ୍ତି ପାଇବା ଦିନ ଯେତିକି ପାଖେଇ ହୋଇ ଆସୁଥିବ ମନ ସେତିକି ଚଞ୍ଚଳ ହୋଇ ଉଠିବ। କାରଣ ଜେଲ ଭିତରେ ଆଉ ମନ ନ ଥାଏ। ଶରୀରଟା ଭିତରେ ଥିଲେ ମଧ୍ୟ ମନ ବାହାରକୁ ଚାଲି ଆସେ। ଦିନକ ସମୟ ମାସେ ପରି ବୋଧ ହୁଏ। ମୁହୂର୍ତ୍ତକ ସମୟ ଗୋଟାଏ ଦିନପରି ଲାଗେ। ଜେଲରୁ ବାହାରିଲେ କଣ ସବୁ କାମ କରିବାକୁ ହେବ କେବଳ ସେହି ଚିନ୍ତା ମନରେ ଖେଳେ। ବିଳମ୍ବ ସହି ହୁଏ ନାହିଁ।

ଦରଭଙ୍ଗା ଜେଲକୁ ଆସି ଗୋଟାଏ ବଡ଼ ଘରଟାରେ ରହିବାକୁ ପଡ଼ିଲା। ରାତିରେ ପଚାଶରୁ ଅଧିକ ସାଧାରଣ କଏଦୀ ଆସି ସେ ଘରେ ଶୁଅନ୍ତି।

ସେ ଘରେ ଏତେ ଓଶଢ଼ ତାହା ଅନୁମାନ କରିହେବ ନାହିଁ। ପ୍ରଥମ ରାତି ମୁଁ ଆଉ ଶୋଇନାହିଁ। 'ଶୋଇବା ତ ଦୂରର କଥା, ନିଶ୍ଚିନ୍ତରେ ଗୋଟାଏ ସ୍ଥାନରେ ବସିବା ଅସମ୍ଭବ ଜଣାଗଲା। ସୁତରାଂ ଦିନରାତି ଓଡ଼ଶ ମାରିବା କାର୍ଯ୍ୟରେ ମୁଁ ମନକୁ ଲଗାଇ ଦେଲି। ଦିନେ ଦୁଇଦିନ ଓଡ଼ଶ ମାରିବା ପରେ ସେ ଘରେ ଶୋଇହେଲା। ଏଥିରେ ସାଧାରଣ କଏଦୀ ବିଚାରାଙ୍କର କେତେ ଆନନ୍ଦ ଏବଂ ଆମ୍ଭ ପ୍ରତି ମନରେ ସନ୍ତୋଷ ପ୍ରକାଶ। ନିଜର କୌଣସି କାର୍ଯ୍ୟ ଅପର ମନରେ ସୁଖ ଶାନ୍ତି ଜାଗ୍ରତ କରି ପାରୁଥିବାର ଜାଣିବାକୁ ପାଇଲେ ମନରେ ଯେ ପ୍ରକାର ଆନନ୍ଦ ମିଳେ ସେପରି ଆନନ୍ଦ ଆଉ କାହିଁରେ ନ ଥାଏ। ଭୋଗରେ ଜୀବନର ପ୍ରକୃତ ଆନନ୍ଦ ନ ଥାଏ, ତ୍ୟାଗର ଆନନ୍ଦ ମିଳେ। ତ୍ୟାଗ କହିଲେ ମୁଁ ବୁଝେ କେବଳ ପରର ସେବା। ଅନ୍ୟର ଦୁଃଖ ଲାଘବ କରିବାପାଇଁ ନିଜର ଦୁଃଖ ବରଣ ହେଉଛି ପ୍ରକୃତ ତ୍ୟାଗ ଭାବ। ଦୁଃଖକୁ ବରଣ କରିବାରେ ଯେଉଁ ସୁଖ, ଦୁଃଖକୁ ଦୂର କରିବାକୁ ଚେଷ୍ଟା କରିବାରେ ସେପରି ସୁଖ ନ ଥାଏ। ମୋର ଭାବନା ଓ ମନୋବୃତ୍ତି ଏହିପରି ହେଲେ ମଧ୍ୟ ଜେଲରୁ ବାହାରି କିପରି ଯାଇ ଆଶ୍ରମ କାର୍ଯ୍ୟ ବୁଝିବି ଏହି ଚିନ୍ତା ମତେ ଅସ୍ଥିର କରୁଥିଲା। ମୋର ଓଡ଼ଶମରା କାର୍ଯ୍ୟ କେତେକ ନିଃସହାୟ ଲୋକଙ୍କ ମନରେ ସୁଖ ଦେବାର ଜାଣିବାରୁ ମନରୁ ଅସ୍ଥିରତା ଭାବ ଟିକିଏ ଉଣା ପଡ଼ି ଯାଇଥିଲା। ଦରଭଙ୍ଗା ଜେଲରୁ ବାହାରି ମୁଁ ଆସି ଚମ୍ପାପୁର ଗାନ୍ଧି ସେବାଶ୍ରମରେ ଉପସ୍ଥିତ ହେଲି।

## କାରାଗାରରୁ ମୁକ୍ତି

ଅଠର ମାସ ଜେଲରେ ରହି ୧୯୩୩ ମସିହା ଜୁଲାଇ ମାସରେ ଆଶ୍ରମକୁ ଫେରିବା ପରେ ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ବହୁଲୋକ ମତେ ସାକ୍ଷାତ୍ କରିବାକୁ ଆସିଥିଲେ। ସେମାନଙ୍କ ମନରେ କି ପ୍ରକାର ପ୍ରତିକ୍ରିୟା ସୃଷ୍ଟି ହୋଇଛି ତାହା ସବୁ ଜାଣିଲାପରେ ଯେଉଁ ସତ୍ୟ ମୁଁ ଉପଲବ୍ଧ କଲି, ତାହାର ଆଭାସ ନ ଦେଇ ଏ ଲେଖାରେ ପୂର୍ଣ୍ଣଚ୍ଛେଦ ଦେବାକୁ ଇଚ୍ଛା ହେଉନାହିଁ। ଦେଶପାଇଁ କାମ କରିବାକୁ କେବଳ ବଡ଼ ଆଦର୍ଶଗତ ଧ୍ୱନି କରିବାରେ କୌଣସି ମୂଲ୍ୟ ନାହିଁ। ଜନ ସାଧାରଣଙ୍କ ସହିତ ପାଦ ମିଳାଇ ଅଗ୍ରସର ହେବାକୁ ପ୍ରୟାସ ନ କଲେ ଆମ୍ଭମାନଙ୍କ ଚିନ୍ତା ତଥା କାର୍ଯ୍ୟର ଗତିରୋଧ ହୋଇଯିବା ସଂପୂର୍ଣ୍ଣ ସମ୍ଭାବନା। ଶ୍ରୀ ଶରତଚନ୍ଦ୍ର ପଟ୍ଟନାୟକଙ୍କ କାର୍ଯ୍ୟ ସେହିପରି ହୋଇଛି। ସାଧାରଣ ତାଙ୍କୁ ଦୋଷ ଦେଲାପରି ମୁଁ କଦାପି ଦୋଷ ଦେବି ନାହିଁ। ତାଙ୍କର ଚିନ୍ତା ଓ କାର୍ଯ୍ୟକୁ ନିମିତ୍ତ ମାତ୍ର କରି ଯେଉଁ ଝଡ଼ ତୋଫାନ ଆଶ୍ରମ ବିରୁଦ୍ଧରେ ସୃଷ୍ଟି କରାଗଲା; ତଦ୍ୱାରା ଶ୍ରୀମାନ୍ ଶରତଙ୍କ ଡେର ଆଶ୍ରମରୁ ଛିଣ୍ଡିଗଲା, ଏବଂ ମୁଁ ତାଙ୍କୁ ସବୁ ଦିନପାଇଁ ହରାଇଲି। କେବଳ ସେତିକି ନୁହେଁ,

ଏହି ଝଡ଼ ତୋଫାନର ପ୍ରତିକ୍ରିୟା ନାନାରୂପରେ ପ୍ରକାଶ ପାଇଲା । ଅବଶେଷରେ ମତେ ହିଁ ତାର ବିଷମୟ ପରିଣାମ ଭୋଗ କରିବାକୁ ପଡ଼ିଛି ।

ବଙ୍ଗଳାଦେଶରେ ଗଢ଼ା ଯାଇଥିବା ଅଭୟାଶ୍ରମ ପରି ଚମ୍ପାପୁର ଆଶ୍ରମକୁ ଗଢ଼ିବାକୁ ମୋର କଳ୍ପନା । ଅଭୟାଶ୍ରମର କର୍ମକର୍ତ୍ତାଙ୍କ ମଧ୍ୟରୁ ଅଧିକାଂଶ ମୋର ଜଣାଶୁଣା ବ୍ୟକ୍ତି । ସେମାନଙ୍କ ସହିତ ମୁଁ କଲିକତାରେ ରହିଛି । ଡାକ୍ତର ସୁରେଶଚନ୍ଦ୍ର ବାନାର୍ଜି ଏହାର ପ୍ରତିଷ୍ଠାତା । ଅଭୟାଶ୍ରମର ପ୍ରଧାନ କର୍ମକର୍ତ୍ତାମାନେ କଲିକତାରେ ଏକାଠି ରହି ଅଧ୍ୟୟନ କରୁଥିବା ସମୟରେ ମୁଁ ସେମାନଙ୍କ ସହିତ ରହିଥିଲି । ଏହିଠାରେ ଡାକ୍ତର ସୁରେଶଚନ୍ଦ୍ର ବାନାର୍ଜି, ଡାକ୍ତର ପ୍ରଫୁଲ୍ଲଚନ୍ଦ୍ର ଘୋଷ ଓ ଶ୍ରୀ ସୁବାଷଚନ୍ଦ୍ର ବୋଷ ପ୍ରଭୃତି ଏକତ୍ର ବସି ଦେଶର ଭବିଷ୍ୟତ ଚିନ୍ତା କରୁଥିଲେ । କେତେ ଜଣ ଉଚ୍ଚ ଶିକ୍ଷିତ ଯୁବକ ଘର ଓ ପିତାମାତାଙ୍କୁ ଭୁଲି ଦେଶକାର୍ଯ୍ୟ କରିବାପାଇଁ ଗୋଟିଏ ଅନୁଷ୍ଠାନ ଗଢ଼ିବାର କଳ୍ପନା କରାଯାଇଥିଲା । ସେତେବେଳର ସେହି କଳ୍ପନା ଅଭୟାଶ୍ରମ ନାମରେ ରୂପାନ୍ତରିତ ହୋଇଛି । ସୁତରାଂ ସେହିପରି କଳ୍ପନାରେ ଚମ୍ପାପୁର ଆଶ୍ରମକୁ ଗଢ଼ିବା ମୋର ଇଚ୍ଛା ଓ ସଂକଳ୍ପ । ଏହି ସଂକଳ୍ପକୁ କାର୍ଯ୍ୟରେ ପରିଣତ କରିବା ଉଦ୍ଦେଶ୍ୟରେ ଓଡ଼ିଶାରେ ଅନେକ ଯୁବକ ଛାତ୍ରଙ୍କୁ ମୁଁ ସାହାଯ୍ୟ କରିଛି । କିନ୍ତୁ କଲେଜରେ ପ୍ରବେଶ କଲାପରେ ସେମାନଙ୍କ ମନରେ ପରିବର୍ତ୍ତନ ଘଟି ସେମାନେ ନିଜର ଘର ଓ ପିତାମାତାଙ୍କ କଥା ଭାବିଛନ୍ତି । ନିଜର ପିତାମାତା ଭୋକ ଉପବାସରେ ରହୁଥିବାର ଜାଣି କେଉଁ ଯୁବକ ଦେଶସେବା କରିବାକୁ ମନ ବଳାଇବ ? ଅନ୍ତତଃ ଓଡ଼ିଶାରେ ସେପରି ଅବସ୍ଥା ସୃଷ୍ଟି ହୋଇନାହିଁ । ମୋଠାରୁ ସାହାଯ୍ୟ ପାଇ ଉଚ୍ଚଶିକ୍ଷା ଲାଭ କରିଥିବା ଯୁବକମାନଙ୍କ ମଧ୍ୟରୁ ଆଜି ଡାକ୍ତର, ଇଂଜିନିୟର, ଡେପୁଟି, ଓକିଲ ଓ ଶିକ୍ଷକ କାମ କରୁଛନ୍ତି । ଆଶ୍ରମରେ ସହକର୍ମୀ ଭାବରେ ପାଇବାକୁ ଆଶା ରଖି ଯେଉଁମାନଙ୍କୁ ସାହାଯ୍ୟ କଲି ସେମାନଙ୍କ ଜୀବନର ଗତିକୁ ଲକ୍ଷ୍ୟ କରି ମୁଁ ଉପଲବ୍ଧ କଲି ଯେ ଘର ଓ ପିତାମାତା ବଡ଼ ପ୍ରତିବନ୍ଧକ । ଏ ପ୍ରତିବନ୍ଧକ ଏଡ଼ି ସହକର୍ମୀ ପାଇବା ଇଚ୍ଛାରେ କେତେଜଣଙ୍କୁ ମୁଁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିବାକୁ ନିଷ୍ଠୟ କଲି । ସୁତରାଂ ଏହିପରି ପୋଷ୍ୟପୁତ୍ର ରୂପେ ଗ୍ରହଣ କରି ସେମାନଙ୍କୁ ଉଚ୍ଚଶିକ୍ଷା ଦେବି । ସେମାନେ ଆସି ଆଶ୍ରମର ଆଜୀବନ କର୍ମୀ ହୋଇ ରହିଲେ ମୁଁ ମୋର କଳ୍ପନାକୁ କାର୍ଯ୍ୟରେ ପରିଣତ କରିପାରିବ । ଏହି ଉଦ୍ଦେଶ୍ୟରେ କେତେଜଣ ଯୁବକଙ୍କୁ ମୁଁ ଆଶ୍ରମରେ ଗ୍ରହଣ କରି ଉଚ୍ଚଶିକ୍ଷା ଦେଇଛି କିନ୍ତୁ ମୋର ଉଦ୍ଦେଶ୍ୟ ସାଧିତ ହୋଇପାରି ନାହିଁ । କାରଣ ମୋର ସମସ୍ତ ଚେଷ୍ଟା ହେଲା ଜଣେ ବ୍ୟକ୍ତିର ଚେଷ୍ଟା । ଦେଶରେ ବାହାରିବାରୁ ସାହାଯ୍ୟ ସହ ଯୋଗ ପାଇବା ଦୂରେ ଥାଉ; ବରଂ ଈର୍ଷାଭାବ ଏବଂ କ୍ରୁର ଓ କଠୋର ସମାଲୋଚନା ପାଇଛି । ତଥାପି ମୋର ମନ ଭାଙ୍ଗିପଡ଼ି ନାହିଁ । ମୁଁ ଶତ ଚେଷ୍ଟା କରି ନିଜର ଆଦର୍ଶ ଅନୁସାରେ ଅନୁଷ୍ଠାନ ଗଢ଼ିବାକୁ

ବାରମ୍ବାର ଚେଷ୍ଟା କରିଛି କିନ୍ତୁ କୃତକାର୍ଯ୍ୟ ହୋଇପାରି ନାହିଁ। ଯେଉଁମାନଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲି, ସେମାନଙ୍କ ମଧ୍ୟରୁ କେବଳ ଦୁଇଜଣ ମୋ ସହିତ ରହିଲେ। ସେ ଦୁଇଜଣଙ୍କୁ ଉଚ୍ଚଶିକ୍ଷା ଦେଇଛି। ସେ ଦୁହେଁ ବର୍ତ୍ତମାନ ଓକିଲାତି କରୁଛନ୍ତି। ଶ୍ରୀ ରାମଚନ୍ଦ୍ର ମିଶ୍ର ମୋର ଆତ୍ମୀୟ। ସେ ଓକିଲ ଏବଂ ଓଡ଼ିଶାରେ ଜଣେ ସୁପରିଚିତ ନାଟକ ଲେଖକ। ଅନ୍ୟ ଜଣଙ୍କ ନାମ ଶ୍ରୀନିବାସ ମିଶ୍ର। କଟକ ଜିଲ୍ଲା ହରିଦାସପୁର ରେଲଷ୍ଟେସନ ନିକଟ ନାନପୁର ତାଙ୍କର ଜନ୍ମସ୍ଥାନ। ସେ 'କର' ବ୍ରାହ୍ମଣ। କିନ୍ତୁ ରେଜିଷ୍ଟାରୀ କରି ତାଙ୍କୁ ପୋଷ୍ୟପୁତ୍ର ରୂପେ ମୁଁ ଗ୍ରହଣ କରିଥିବାରୁ 'କର'ଙ୍କଟି ମିଶ୍ର ନାମ ହୋଇଛି। ଆମ ନିଜ ଗୋତ୍ରରେ ତାଙ୍କର ବିବାହ କାର୍ଯ୍ୟ କରାଯାଇଛି। ସେ ଜଣେ ବର୍ତ୍ତମାନ କଟକ ହାଇକୋର୍ଟରେ ଆଡ଼ଭୋକେଟ।

ଭାରତର ଅନ୍ୟ ସବୁ ଷ୍ଟେଟରେ କେତେ ଅନୁଷ୍ଠାନ ଗଢ଼ା ଯାଇଛି। ସେହି ସବୁ ଅନୁଷ୍ଠାନ ଦେଶସେବାର ପରମ୍ପରା ସୃଷ୍ଟି କରୁଛି। ଓଡ଼ିଶାରେ ସେହିପରି କୌଣସି ଗୋଟିଏ ସାଧାରଣ ଅନୁଷ୍ଠାନ ସାଧାରଣ କର୍ମୀର ଚେଷ୍ଟାରେ ଗଢ଼ାହୋଇ ପାରିଲା ନାହିଁ। ଭବିଷ୍ୟତ୍ ବଂଶଧର କଣ ଦେଖି ଅତୀତପାଇଁ ଗର୍ବ ଅନୁଭବ କରିବେ? ଆମ୍ଭର ଦେଶସେବା କାର୍ଯ୍ୟରେ ପ୍ରତୀକ କିଛି ରହୁନାହିଁ ଯାହା ପରଂପରା ସୃଷ୍ଟି କରିବ। ୧୯୩୩ ମସିହା ଜୁଲାଇ ମାସରୁ ୧୯୩୬ ମସିହା ପର୍ଯ୍ୟନ୍ତ ଆଶ୍ରମକୁ ସୁଦୃଢ଼ କରିବାକୁ ବହୁ ଚେଷ୍ଟା କରିଛି। ସାଧାରଣ ପଲ୍ଲୀବାସୀଙ୍କ ହୃଦୟରେ ଆଶ୍ରମ ପ୍ରତି ପ୍ରଗାଢ଼ ଅନୁରକ୍ତି ଜାଗ୍ରତ କରାଇବା ପାଇଁ ସେମାନଙ୍କ ସେବାରେ ନିଜକୁ ଲୀନ କରିଦେବାକୁ ଅବିରତ ପରିଶ୍ରମ କରିଛି। ଡାକ୍ତରଖାନା ଖୋଲିଦେଇ ନିଜେ ଡାକ୍ତର ବନିଛି। ହୋମିଓପାଥି ପଢ଼ି, ଶିଖି ରୋଗୀ ଚିକିତ୍ସା ନିଜେ କରିଛି। ହଇଜା ସଂକ୍ରାମକ ଭାବରେ ଗ୍ରାମମାନଙ୍କରେ ବ୍ୟାପିଗଲେ ଦିନ ରାତି ମତେ ପରିଶ୍ରମ କରିବାକୁ ପଡ଼େ। ଆଶ୍ରମରୁ ତମ୍ବାପାତ୍ରରେ ସିଝା ପାଣି ଓ ରନ୍ଧା ବାର୍ଲି ଅନେକ ରୋଗୀଙ୍କୁ ଦେବାକୁ ପଡ଼େ। ପଟାଶ ଓ ଫିନାଇଲ ପାଣି ରୋଗୀଙ୍କର ଗର ଦାଣରେ ନିଜେ ପକାଏ। ବ୍ୟବସାୟ ବୃତ୍ତି ନ କରି ସେବାଭାବରେ ଚିକିତ୍ସା କରୁଥିବାରୁ ହଇଜା ମଲୁ ଶହେରୁ ନବେ ପର୍ଯ୍ୟନ୍ତ ବଞ୍ଚାଇ ପାରିଛି। ହଇଜା, ବସନ୍ତ ଇତ୍ୟାଦି ସଂକ୍ରାମକ ରୋଗର କେବଳ ଚିକିତ୍ସା କରିଛି ତାହା ନୁହେଁ, ସାଂଘାତିକ ଟାଏଫଯଡ଼ ଓ ନିମୋନିୟା ରୋଗୀ ମଧ୍ୟ ମୁଁ ଆରୋଗ୍ୟ କରିପାରିଛି। ଯାବତୀୟ ରୋଗରେ ଲୋକେ ମୋର ସାହାଯ୍ୟ ଓ ପରାମର୍ଶ ଲୋଡ଼ିଛନ୍ତି ଏବଂ ଅକାତର ଭାବରେ ଲୋକଙ୍କର ସେବାଶୁଶ୍ରୂଷା ଓ ଚିକିତ୍ସା କରି ବହୁ ରୋଗୀଙ୍କୁ ଆରୋଗ୍ୟ କରି ପାରିଛି। ମୋର ସେବା ଓ ଚିକିତ୍ସା ପାଇ କେତେ ଲୋକ ପୁନର୍ଜନ୍ମ ଲାଭ କଲାଭଳି ଅତି ସାଂଘାତିକ ଅବସ୍ଥାରୁ ଆରୋଗ୍ୟଲାଭ କରି ପାରିଛନ୍ତି। ଚିକିତ୍ସା ବିଦ୍ୟାରେ ମୋର ସେପରି କୌଣସି ପାରଦର୍ଶିତା ନାହିଁ। ମୋର ମନ ଥିଲା ମୋର ପ୍ରଧାନ ସହାୟ। ହଇଜା ଆଦି ଯେ କୌଣସି

ରୋଗୀର ଚିକିତ୍ସା କଲାବେଳେ ମୁଁ ନିଜକୁ ଭୁଲିଯାଏ। ମନ ପ୍ରାଣ ଦେଇ ରୋଗୀ ପଛରେ ପରିଶ୍ରମ କରେ। ହୋମିଓ ଶାସ୍ତ୍ର ଅନୁସନ୍ଧାନ କରି ରୋଗୀ ଲକ୍ଷଣ ଉପରେଇ ଔଷଧ ବ୍ୟବସ୍ଥା କରେ। ବର୍ଷାଦିନେ ଅନ୍ଧକାରମୟ ରଜନୀରେ ପେଟ୍ରୋମାକ୍ସ ଆଲୋକ ଜାଳି ହଇଜା ଲାଗିଥିବା ଗ୍ରାମରେ ଏବଂ ରୋଗୀନିକଟ ଉପସ୍ଥିତ ହୋଇଗଲେ, ସେମାନଙ୍କ ମନରେ ଯେଉଁ ବଳ ଓ ସାହସ ଭାବ ଜାତ ହୁଏ ତାହା ରୋଗୀକୁ ଭଲ ଏବଂ ରୋଗକୁ ଦୂର କରିବାରେ ଅନେକ ପରିମାଣରେ ସାହାଯ୍ୟ କରେ। ହଇଜା ରୋଗୀ ଚିକିତ୍ସା କରୁଥିବାବେଳେ ମୁଁ ମୋ କଥାନୁସାରେ କାମ ହୋଇ ନ ପାରିଲେ ରୋଗୀର ସଂପର୍କୀୟ ଲୋକଙ୍କୁ ମାଡ଼ଦେଇଛି। ସୁତରାଂ ଯାହା ଯେପରି କରିବାକୁ ମୁଁ କହୁଥାଏ, ତାହା ତତ୍କ୍ଷଣାତ୍ କାର୍ଯ୍ୟରେ ପରିଣତ କରାଇ ନେଇ ପାରୁଥାଏ।

ହଇଜାବେଳେ ଗ୍ରାମ ଠାକୁରାଣୀ ନାମରେ କାଳିସୀମାନଙ୍କ ଆବିର୍ଭାବ ଗୋଟାଏ ବଡ଼ ବିପଦ। ସାଧାରଣ ଗ୍ରାମବାସୀ ହଇଜାକୁ ରୋଗ ବୋଲି ନ ବିଚାରି, ଠାକୁରାଣୀ ଗ୍ରାସ କରିଛି ବୋଲି ବିଶ୍ୱାସ କରନ୍ତି। ହଇଜା ରୋଗ ଲାଗିଲେ କାଳିସୀ ଉଭା ହୁଏ। ଠାକୁରାଣୀ ରାଗିବାର କାରଣ ଦେଖାଏ ଏବଂ ମା କିପରି ସନ୍ତୁଷ୍ଟ ହେବେ ସେଥିପାଇଁ ନାନା ଦାବୀର ଅବତାରଣା କରେ। ଏହି କାଳିସୀକୁ ଜବତ କରିବା ଏବଂ ଠାକୁରାଣୀ ଭୟଜନିତ ରୋଗରୁ ସାଧାରଣ ଗ୍ରାମବାସୀଙ୍କୁ ରକ୍ଷାକରିବା ହେଲା ଗୋଟିଏ ବଡ଼ ସମସ୍ୟା। ସୁତରାଂ ଅନେକ ସ୍ଥାନରେ କାଳିସୀକୁ ଧରି ମାଡ଼ ଦେଇଛି। ଠାକୁରାଣୀକୁ ଉଠାଇ ଫିଙ୍ଗିଦେଇଛି। ଠାକୁରାଣୀ ନିକଟ ଶହ ଓ ହଜାର ସଂଖ୍ୟାରେ ବୋଦା ବଳି ପଡ଼ିବା ପ୍ରଥାକୁ ବନ୍ଦ କରି ପାରିଛି। ନିରୀହ ଗ୍ରାମବାସୀମାନଙ୍କ ମନରୁ ଭୟ ବିପଦ ଭାବ ଦୂର କରିବାକୁ ଚେଷ୍ଟା କରିବାରେ ଯେ କୌଣସି ବିପଦ ବରଣ କରିବାକୁ ମୁଁ ପଶ୍ଚାତ୍‌ପଦ ହୋଇନାହିଁ। ବିପଦବେଳେ ଯେ ମୋର ସାହାଯ୍ୟ ଲୋଡ଼ିଛି, ତାହାକୁ ସାହାଯ୍ୟ କରିବାକୁ ମୁଁ ମୋର ଯଥାସାଧ ଚେଷ୍ଟା କରିଛି। ପୋଲିସର ଅତ୍ୟାଚାର, ଜମିଦାର ଓ ଧନୀ ମହାଜନଙ୍କର ଦାଉର ସମ୍ମୁଖୀନ ହେବାପାଇଁ ଲୋକଙ୍କ ମନରେ ବଳ ଓ ସାହସର ଭାବ ସଂଚାର କରିପାରିଛି। ବିପଦ ବେଳେ ମତେ ଦେଖିଲେ ସାଧାରଣ ଲୋକ ମନରେ ସାହସ ଆସି ଯାଉଥିଲା।

୧୯୩୩ ମସିହା ଜୁଲାଇ ମାସରେ ଜେଲରୁ ବାହାରି ଓଡ଼ିଶାରେ ଉପସ୍ଥିତ ହେବା ସମୟକୁ ପ୍ରବଳ ବନ୍ୟା ହୋଇ କଟକ ଓ ପୁରୀ ଜିଲାର ଅବସ୍ଥା ସାଙ୍ଘାତିକ ହୋଇ ଉଠିଛି। କଟକରେ ରିଲିଫ୍ କମିଟି ଗଠିତ ହୋଇ ବନ୍ୟା ପ୍ରପୀଡ଼ିତ ଅଞ୍ଚଳରେ ସାହାଯ୍ୟ ବଣ୍ଟନ କରିବାର ବ୍ୟବସ୍ଥା କରାଯାଉଛି। ଚମ୍ପାପୁର ଆଶ୍ରମ କାର୍ଯ୍ୟକୁ ଧରି ରହିହେଲା ନାହିଁ। ବନ୍ୟାଞ୍ଚଳରେ ସାହାଯ୍ୟ କରିବାକୁ ଆଶ୍ରମ ଛାଡ଼ିଲି। ସାହାଯ୍ୟକେନ୍ଦ୍ର ପରିଦର୍ଶନ କରିବା ଦାୟିତ୍ୱ, ରିଲିଫ୍‌କମିଟି ମତେ ଦେବାରୁ, କଟକ, ପୁରୀଜିଲ୍ଲାର ସାହାଯ୍ୟ କେନ୍ଦ୍ର ବୁଲି ସାହାଯ୍ୟ ବଣ୍ଟନରେ କର୍ମୀମାନଙ୍କୁ ସାହାଯ୍ୟ କରିଥିଲି। ଏହାପର

ଆଶ୍ରମ ପାଇଁ ଅର୍ଥ ସଂଗ୍ରହ କରିବା ଉଦ୍ଦେଶ୍ୟରେ ବମ୍ବେଇ ଯାତ୍ରାକଲି। ବମ୍ବେଇରୁ ପୁନା ଯାଇ ମହାତ୍ମାଗାନ୍ଧୀଙ୍କ ସହିତ ସାକ୍ଷାତ କରିଥିଲି। ହରିଜନ କାର୍ଯ୍ୟପାଇଁ ଗାନ୍ଧିଜୀ ଜେଲରେ ୨୧ ଦିବସ ଉପବାସ କରିଥିଲେ। ତାଙ୍କ ଅବସ୍ଥା ସଂକଟଜନକ ଜଣାପଡ଼ିବାରୁ ସରକାର ତାଙ୍କୁ ଜେଲ ମୁକ୍ତ କରି ଦେଇଛନ୍ତି। ପରବାଦ ଜେଲରୁ ଆସି ପୁନାରେ ପର୍ଣ୍ଣକୁଟୀର ନାମକ ଗୋଟିଏ ବାସ ଭବନରେ ଗାନ୍ଧିଜୀ ରହିଛନ୍ତି। ଘରଟି ନାମ ପର୍ଣ୍ଣକୁଟୀର କିନ୍ତୁ କୁଟୀରଟି ଗୋଟିଏ ମାର୍ବଲ ପଥର ନିର୍ମିତ ବିରାଟ ଅଟ୍ଟାଳିକା। ଗୋଟିଏ ଛୋଟ ପାହାଡ଼ ଉପରେ ଗୃହଟି ନିର୍ମିତ ହୋଇଛି। ଘର ଓ ଚାରିପାଖ ପୁଷ୍ପ ଉଦ୍ୟାନ ଅତି ରମଣୀୟ। ବମ୍ବେଇର ଜଣେ ଗୁଜରାଟି ଭାଟିଆ ଜାତିର ଶେଠଙ୍କର ସେ ଘର। ପନ୍ଦରଲକ୍ଷ ଟଙ୍କା ଖର୍ଚ୍ଚରେ ଘର ତିଆରି ହୋଇଛି। ଏଥିରୁ ତାହା କିପରି ରମଣୀୟ ହୋଇଥିବ ଅନୁମାନ କରାଯାଇପାରେ। ଏହିଠାରେ ୩/୪ ଦିନ ଗାନ୍ଧିଜୀଙ୍କ ନିକଟ ମୁଁ ରହି ଓଡ଼ିଶାର ପରିସ୍ଥିତି ବୁଝାଇଥିଲି। ଗାନ୍ଧିଜୀ ସେତେବେଳକୁ ହରିଜନ ମନ୍ଦିର ପ୍ରବେଶ ବିଷୟ ପ୍ରଧାନ ସମସ୍ୟା କରି ଧରିଥାନ୍ତି। ପୁରୀ ଜଗନ୍ନାଥ ମନ୍ଦିରରେ ହରିଜନ ପ୍ରବେଶ କଥା ଉଲ୍ଲେଖ କଲାବେଳେ, ଗାନ୍ଧିଜୀଙ୍କୁ ମୁଁ ପଣ୍ଡିତ ନୀଳକଣ୍ଠ ଦାସଙ୍କ ନାମ ଶୁଣାଇଥିଲି। ମୁଁ କହିଥିଲି, ଓଡ଼ିଶା ସମସ୍ୟା ଭାବିଲା ବେଳେ ଆପଣ ପଣ୍ଡିତ ନୀଳକଣ୍ଠ ଦାସଙ୍କ ନାମ ଭୁଲିଯାନ୍ତୁ ନାହିଁ। କାରଣ ପଣ୍ଡିତ ଦାସ ଭାବୁଛନ୍ତି ଯେ ଆପଣ ପ୍ରତି କଥାରେ ତାଙ୍କ ପ୍ରତି ଅବହେଳା ଭାବ ଦେଖାଉଛନ୍ତି। ମୋଠାରୁ ଏପରି କଥା ଶୁଣି ହସି ହସି ଗାନ୍ଧିଜୀ ମୋତେ କହିଥିଲେ, "ତୁ ଆଜି ନୀଳକଣ୍ଠବାବୁଙ୍କୁ ତାର କର, ସେ ଶୀଘ୍ର ଆସି ବମ୍ବେଇରେ ମୋ ସହିତ ସାକ୍ଷାତ କରି ଓଡ଼ିଶାର ବନ୍ୟା ପରିସ୍ଥିତି ବୁଝାଇବାକୁ।"

ପଣ୍ଡିତ ନୀଳକଣ୍ଠ ଦାସଙ୍କର ମୁଁ ଜଣେ ସମର୍ଥକ। ଗାନ୍ଧିଜୀଙ୍କ ଦ୍ୱାରା ସେ ପ୍ରଭାବିତ ହୋଇପାରିଲେ, ତାଙ୍କଦ୍ୱାରା ଅନେକ କାର୍ଯ୍ୟ ହୋଇପାରିବ ବୋଲି ମୋର ବିଶ୍ୱାସ। ଗାନ୍ଧିଜୀଙ୍କ ସହିତ ମୋ ଛଡ଼ା ଆଉ କାହାରି ଘନିଷ୍ଠ ସମ୍ବନ୍ଧ ନାହିଁ। ମୋର ଇଚ୍ଛା ପଣ୍ଡିତ ନୀଳକଣ୍ଠ ଦାସ ଗାନ୍ଧିଜୀଙ୍କ ନିକଟ ଆସନ୍ତୁ। ଗାନ୍ଧିଜୀଙ୍କ କହିବା ଅନୁସାରେ ମୁଁ ତାର କଲି। ନୀଳକଣ୍ଠବାବୁ ବମ୍ବେଇରେ ଉପସ୍ଥିତ ହୋଇ ଗାନ୍ଧିଜୀଙ୍କ ସହିତ ସାକ୍ଷାତ କରିଥିଲେ। କିନ୍ତୁ ନୀଳକଣ୍ଠବାବୁଙ୍କୁ ଗାନ୍ଧିଜୀ ଡକାଇ ପଠାଇଛନ୍ତି। ଏହା ଓଡ଼ିଶାରେ ଜଣା ପଡ଼ିଯିବାରୁ ନୀଳକଣ୍ଠବାବୁ ବମ୍ବେଇରେ ପହଞ୍ଚିବା ପୂର୍ବରୁ, ତାଙ୍କ ବିରୁଦ୍ଧରେ ଗାନ୍ଧିଜୀଙ୍କ ନିକଟ ପତ୍ର ପହଞ୍ଚିଗଲା। ସାଧାରଣ ଧନ ଆତ୍ମସାତ୍ କରିବା ନୀଳକଣ୍ଠ ଦାସଙ୍କ ବ୍ୟବସାୟ। ତାଙ୍କ ହାତକୁ କୌଣସି ଟଙ୍କା ଦବା ଉଚିତ ନୁହେଁ କିମ୍ବା ବନ୍ୟା ସାହାଯ୍ୟ କମିଟିର ସଭାପତି ହେବାକୁ ମଧ୍ୟ ସେ ଉପଯୁକ୍ତ ନୁହନ୍ତି ଇତ୍ୟାଦି। ଏ ପତ୍ରଖଣ୍ଡି ଗାନ୍ଧିଜୀ ମତେ ପଢ଼ିବାକୁ ଦେଲେ ଏବଂ ମୋର ମତାମତ ଜାଣିବାକୁ ଇଚ୍ଛା କରିଥିଲେ। ନୀଳକଣ୍ଠବାବୁ ଏପରି ବ୍ୟବସାୟ କରିଥିବାର

ମୁଁ କିଛି ଜାଣେ ନାହିଁ ବୋଲି କହିଥିଲି। ନୀଳକଣ୍ଠବାବୁ ଗାନ୍ଧିଜୀଙ୍କ ସହିତ ସାକ୍ଷାତ କରିବାକୁ ଗଲାବେଳେ ଏ ପତ୍ରି ଖଣ୍ଡି ଗାନ୍ଧିଜୀ ତାଙ୍କୁ ଦେଖାଇ, ଏପରି ପତ୍ର ଅଳିଆଗଦାକୁ ଫିଙ୍ଗିବାର କହି ନିଜେ ଚିରି ଫୋପାଡ଼ି ଦେଲେ। ନୀଳକଣ୍ଠବାବୁ ବଡ଼ ଭାବପ୍ରବଣ ଲୋକ। ଏ ପତ୍ର ଦେଖି ସେ ବ୍ୟଥିତ ହୋଇ ପଡ଼ିଲା ଭଳି ଜଣାଗଲା। ଜେଲରୁ ଆସିଲା ପରେ ତାଙ୍କର ମାନସିକ ଅବସାଦ ଆସିଥାଏ। ଏ ପତ୍ରଖଣ୍ଡି ତାଙ୍କୁ ଗୋଳମାଳରେ ପକାଇଦେଲା। ସେ ଗାନ୍ଧିଜୀଙ୍କୁ ବନ୍ୟାର ସଠିକ ସମ୍ବାଦ ଦେଇପାରିଲେ ନାହିଁ।

ବମ୍ବେଇ ଅହମେଦାବାଦ ହୋଇ ଚାରିହଜାର ଟଙ୍କା ସଂଗ୍ରହ କରି ମୁଁ ଚମ୍ପାପୁର ଆଶ୍ରମକୁ ଫେରିଲି। ଏଥର ଚମ୍ପାପୁର ଆଶ୍ରମର ଦଶମାଇଲ ପଶ୍ଚିମକୁ କଳକଳାରେ ଗୋଟିଏ ଶାଖା ଆଶ୍ରମ ସ୍ଥାପନ କଲି। କଳକଳାରେ ପଚିଶ ଏକର ଜମି ଏକତ୍ର କିଣିବାକୁ ମିଳିବାରୁ ଏଠାରେ ଶାଖାଶ୍ରମ ସ୍ଥାପନ କରିଥିଲି। ଉଦ୍ଦେଶ୍ୟ, ଆଉ ଉଚ୍ଚ ଶିକ୍ଷିତ ଯୁବକଙ୍କୁ କର୍ମୀରୂପେ ପାଇବାକୁ ଅଧିକ ଚେଷ୍ଟା ନ କରି ପଲ୍ଲୀଗ୍ରାମରେ ଅର୍ଦ୍ଧଶିକ୍ଷିତ ଯୁବକଙ୍କୁ ତାଲିମ କରି ସେମାନଙ୍କ ମଧ୍ୟରୁ କର୍ମୀ ବାଛିବାକୁ ହେବ। ତିନି ବର୍ଷରୁ ପାଞ୍ଚବର୍ଷ ତାଲିମ ଦିଆଯିବ। ଧର୍ମ, ଅର୍ଥ ଓ ରାଜନୀତି ବିଷୟ ଜାଣିବେ। ସୂତାକଟା, ଲୁଗାବୁଣା ଓ ବଢ଼େଇ କାମ ଶିଖିବେ। ଜମିରେ ପରିଶ୍ରମ କରି ନିଜର ଖାଦ୍ୟସାମଗ୍ରୀ ସଂଗ୍ରହ କରିବା ସଂଗେ ସଂଗେ ଚାଷ ଓ ନାନା ପ୍ରକାର ପନିପରିବା ଚାଷ ମଧ୍ୟ ଶିକ୍ଷା କରିବେ। ଏହିପରି ତାଲିମ ପାଇଁ ଯେଉଁ କର୍ମୀ ମିଳିବେ ସେମାନଙ୍କ ସାହାଯ୍ୟରେ ପଲ୍ଲୀ ସଂଗଠନ କାର୍ଯ୍ୟ ଆରମ୍ଭ କରିବି। ଏହି ଉଦ୍ଦେଶ୍ୟରେ ପଚିଶ ଏକର ଜମି ନେଲି। ସେଠାରେ କ୍ରମରେ ସାତ ବଖରା, ଅଧା ପଥର ଓ ଅଧା ମାଟି କାନ୍ଥରେ ଘର ତିଆରି ହେଲା। କୂଅ ପୋଖରୀ ଖୋଳେଇଲି। ବଳଦ ଗାଈ କିଣା ହୋଇ ଜଙ୍ଗଲ ସଫା କରାଇ, ଚାଷଜମି ତିଆରି କରି ଚାଷ କାମ ଆରମ୍ଭ କରିଦେଲି। ଚମ୍ପାପୁର ଆଶ୍ରମରେ ଖଦି ଓ ସେବା କାମ ଚାଲିଥାଏ। ଶ୍ରୀ ଦାମୋଦର ସାହୁ, ଶ୍ରୀ ରତ୍ନାକର ମିଶ୍ର, ପୂର୍ଣ୍ଣଚନ୍ଦ୍ର ମହାନ୍ତି କର୍ମୀମାନେ ଏସବୁ କାମ କରୁଥାନ୍ତି। କଳକଳା ଆଶ୍ରମ ଗଢ଼ିବା ଥିଲା ମୋର କାମ।

ମହାତ୍ମାଗାନ୍ଧୀ ହରିଜନ ପ୍ରଚାର କାମରେ ଭାରତ ଭ୍ରମଣ କରୁଥାନ୍ତି। ତାମିଲନାଡୁ ଓ ଆନ୍ଧ୍ର ପ୍ରଦେଶ ଭ୍ରମଣ ଶେଷ କରି ୧୯୩୪ ମସିହାରେ ଓଡ଼ିଶାରେ ପ୍ରବେଶ କଲେ। ପୁରୀଠାରୁ ତାଙ୍କର ହରିଜନ ପଦଯାତ୍ରା ଆରମ୍ଭ ହେଲା। ଭୂମିକମ୍ପ ହୋଇ ବିହାର ଛାରଖାର ହୋଇଯାଇଛି। ଗାନ୍ଧିଜୀ ଏପର୍ଯ୍ୟନ୍ତ ସେଠାକୁ ଯାଇପାରି ନାହାନ୍ତି। ଭୂମିକମ୍ପ ସଂକ୍ରାନ୍ତ କାର୍ଯ୍ୟୋପଲକ୍ଷେ କଟକଠାରୁ ସେ ପାଟଣା ଯାତ୍ରାକଲେ। ପାଟଣାରୁ କଟକ ଫେରି ଆସି ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ଘରେ ଗାନ୍ଧିଜୀ ରହଣି କରିବେ। ସେଠାରୁ ପୁଣି ତାଙ୍କର ପଦଯାତ୍ରା ଆରମ୍ଭ ହୋଇ ଯାଜପୁର, ଭଦ୍ରଖ ଓ ବାଲେଶ୍ୱରଠାରେ

ଶେଷ ହେବ। କଟକରୁ ବନ୍ଦକୁଦ, ସାଲେପୁର ଓ କେନ୍ଦ୍ରାପଡ଼ା ହୋଇ ଯାଜପୁର ଯାତ୍ରା କରିବା ସ୍ଥିର ହୋଇଗଲା। ଶ୍ରୀ ଗୋପବନ୍ଧୁ ଚୌଧୁରୀ ଗାନ୍ଧିଜୀଙ୍କ ପଦଯାତ୍ରା ପାଇଁ ଆନୁସଙ୍ଗିକ ସମସ୍ତ ବ୍ୟବସ୍ଥା କରୁଥାନ୍ତି। ଗାନ୍ଧିଜୀଙ୍କ ପଦଯାତ୍ରା ପଥରେ ଚମ୍ପାପୁର ଆଶ୍ରମ ରହିଲା ନାହିଁ। ଚମ୍ପାପୁର ଆଶ୍ରମ ରହିଲା ଭଳି, ପଦଯାତ୍ରା ପଥ ସ୍ଥିର କରିବାକୁ ମୁଁ ଯେତେ କହିଲି, ମୋ କଥା ବିଚାର କଲାଭଳି ସମ୍ଭାବନା ଦେଖାଗଲା ନାହିଁ। ଏ କଥା ମୁଁ ଯାଇଁ ଗାନ୍ଧିଜୀଙ୍କୁ କହିଥିଲି। ମୋ କହିବାନୁସାରେ ପଦଯାତ୍ରାର ପଥ ପରିବର୍ତ୍ତନ କରାଗଲା। ପାଟଣାରୁ ଫେରି ବୈରୀ ରେଲ ଷ୍ଟେସନରେ ଓହ୍ଲାଇ ଗାନ୍ଧିଜୀ ଚମ୍ପାପୁର ଆଶ୍ରମକୁ ଯିବେ ଏବଂ ସେଠାରେ ଦୁଇଦିନ ରହଣି କରିବେ। ସେହିଠାରୁ ଓଡ଼ିଶାର ଅବଶିଷ୍ଟ ହରିଜନ ପଦଯାତ୍ରା ଆରମ୍ଭ ହେବ।

ଗାନ୍ଧିଜୀ ହାବଡ଼ାରୁ ପୁରୀ ଏକ୍ସପ୍ରେସ ଗାଡ଼ିରେ ଆସିବେ। ବୈରୀ ଷ୍ଟେସନରେ ଏକ୍ସପ୍ରେସ୍ ଗାଡ଼ି ରହେନାହିଁ। କଲିକତା ହେଡ୍ ଅଫସକୁ ଚିଠି ଲେଖି ପାଞ୍ଚ ମିନିଟ ପାଇଁ ବୈରୀ ଷ୍ଟେସନରେ ଏକ୍ସପ୍ରେସ ଗାଡ଼ିକୁ ଅଟକାଇବା ପାଇଁ ବ୍ୟବସ୍ଥା କରି ଆଶ୍ରମରେ ଉପସ୍ଥିତ ହେଲି। ୧୯୩୪ ମସିହା ମଇ ମାସ ୪ତାରିଖ ଦିନ ଗାନ୍ଧିଜୀ ଚମ୍ପାପୁର ଆଶ୍ରମରେ ଉପସ୍ଥିତ ହୋଇ ଦୁଇଦିନ ରହଣି କରିଥିଲେ।

କିନ୍ତୁ ଗାନ୍ଧିଜୀ ଆଶ୍ରମରେ ପହଞ୍ଚିବା ପୂର୍ବରୁ କେତେଗୁଡ଼ିଏ ବେନାମୀ ଚିଠି ମୋ ବିରୁଦ୍ଧରେ ତାଙ୍କ ନିକଟକୁ ଲେଖାଯାଇଛି। ଶରତ ଓ ଅନ୍ନପୂର୍ଣ୍ଣାଙ୍କ ଉପାଖ୍ୟାନଠାରୁ ଆରମ୍ଭ କରି ନାନା ପ୍ରକାର ବିଭତ୍ସ ଅଭିଯୋଗମାନ ମୋ ବିରୁଦ୍ଧରେ କରାଯାଇଛି। ଗାନ୍ଧିଜୀ ସେସବୁ ଚିଠିପତ୍ର ମତେ ପଢ଼ିବାକୁ ଦେଲେ। ତାରପର ଏସବୁ ଅଳିଆଗଦାର ଯୋଗ୍ୟ କହି ଚିରି ଫିଙ୍ଗି ଦେଇଥିଲେ। ଗାନ୍ଧିଜୀ ଆଶ୍ରମ ଛାଡ଼ି ପଦଯାତ୍ରା ଆରମ୍ଭ କଲେ। ମୁଁ ତାହାଙ୍କ ସହିତ ଭଦ୍ରଖ ପର୍ଯ୍ୟନ୍ତ ଯାତ୍ରା କରିଥିଲି। ସେଠାରୁ ଗାନ୍ଧିଜୀ ରେଳରେ ବାଲେଶ୍ୱର ହୋଇ ଓ୍ୟାର୍ଦ୍ଧା ଗଲେ। ମୁଁ ଚମ୍ପାପୁର ଆଶ୍ରମକୁ ଫେରିଲି। ଗାନ୍ଧିଜୀ ସୁଖ ମନରେ ଆଶ୍ରମରୁ ଫେରି ନାହାନ୍ତି ତାହା ବୁଝିବାରେ ମୋ ମନରେ ସନ୍ଦେହ ନ ଥିଲା। ମୁଁ ଅତ୍ୟନ୍ତ ଦୁଃଖାଭିଭୂତ ପଡ଼ିବାର ଦେଖି କେବଳ ପଣ୍ଡିତ ନୀଳକଣ୍ଠ ଦାସ ମତେ ସାନ୍ତ୍ୱନା ଦେଇଥିଲେ। ଆଶ୍ରମ ଚତୁଃପାର୍ଶ୍ୱସ୍ଥ ଗ୍ରାମବାସୀମାନଙ୍କର ମୋ ପ୍ରତି ସ୍ନେହ ଶ୍ରଦ୍ଧା ମତେ ଉତ୍ସାହ ପ୍ରଦାନ କରିଥିଲା।

୧୯୨୫ ମସିହା ଜୁନ ମାସରେ ଖଦି କାମ କରିବାକୁ ଚମ୍ପାପୁର ଅଞ୍ଚଳକୁ ବାଛିଥିଲି। ସ୍ଥାନୀୟ ପରିସ୍ଥିତିକୁ ଲକ୍ଷ୍ୟକରି ୧୯୨୬ ମସିହାରେ ସେଠାରେ ସ୍ଥାୟୀ ଭାବରେ ରହି ଗୋଟିଏ ଅନୁଷ୍ଠାନ ଗଢ଼ିବାକୁ ସଂକଳ୍ପ କଲି। ଏହି ସଂକଳ୍ପକୁ ରୂପରେଖ ଦେବାକୁ ତିନି ଚାରିବର୍ଷ ବିତିଗଲା। ଉପକରଣ ସଂଗ୍ରହ ଓ ଘର ନିର୍ମାଣ କାମରେ ତିନିବର୍ଷ ବିତିଛି। ଗୃହନିର୍ମାଣ କାର୍ଯ୍ୟ ସହିତ ସୂତା କଟାଇ ଖଦଡ଼ ବୁଣେଇ ବିକ୍ରି କରିବାରେ ବ୍ୟବସ୍ଥା କରୁଥାଏ। ଇତ୍ୟବସରରେ ଲବଣ-ସତ୍ୟାଗ୍ରହ ଆରମ୍ଭ ହେଲା।

ସବୁ କାମ ପଛକୁ ପକାଇ ସତ୍ୟାଗ୍ରହ ସଂଗ୍ରାମରେ ଯୋଗ ଦେଇ କାରାବରଣ କରିଥିଲି। ଆଶ୍ରମର ପରିଚାଳନା ଭାର ଯେଉଁମାନଙ୍କ ଉପରେ ନ୍ୟସ୍ତ କରିଥିଲି, ସେମାନଙ୍କ ଦୋଷ ତ୍ରୁଟି ହେତୁ, ଅନୁଷ୍ଠାନର ବହୁ କ୍ଷତି ଘଟିଲା। ଜେଲରୁ ବାହାରିଲା ବେଳକୁ ଆଶ୍ରମର ମୂଳଦୁଆ ଦୋହଲି ଯାଇଥିଲା ପରି ମତେ ବୋଧ ହେଲା। ଆଶ୍ରମକୁ ପୁନର୍ଗଠନ କରିବାକୁ ଅଦମ୍ୟ ପରିଶ୍ରମ କରୁଛି। ଓଡ଼ିଶାରେ କାହାରିଠାରୁ ସାହାଯ୍ୟ ସହାନୁଭୂତି ପାଇ ନାହିଁ, ବରଂ ଗାନ୍ଧିଜୀ ଆଶ୍ରମରେ ଉପସ୍ଥିତ ହେଲାବେଳକୁ ମୋ ବିରୁଦ୍ଧରେ କେତେ ସବୁ ବେନାମୀ ଚିଠି ଲେଖା ଯାଇଥିଲା। ଗାନ୍ଧିଜୀ ମୋ ବିରୁଦ୍ଧରେ ସିନା ଶୁଣିବାକୁ ପାଇଲେ, କିନ୍ତୁ ମୋ ସପକ୍ଷରେ ପଦେ କଥା କାହାଠାରୁ ଶୁଣିଲେ ନାହିଁ। ଆଶ୍ରମକୁ ଯେପରି ରୂପରେ ଦେଖି ଗାନ୍ଧିଜୀ ସନ୍ତୋଷ ଲାଭ କରିଥାନ୍ତେ ସେପରି ଅବସ୍ଥାରେ ଆଶ୍ରମ ନଥିଲା। ସେଠାରେ କେତେ ଦୁଃଖ କଷ୍ଟରେ ଅନୁଷ୍ଠାନଟିଏ ଗଢ଼ିବାକୁ ମୁଁ ପ୍ରାଣପାତ କରି ଅଦମ୍ୟ ପରିଶ୍ରମ କରୁଛି, ତାହା ସେ ହୃଦୟଙ୍ଗମ କରି ପାରିଲେ ବୋଲି ମୋର ବିଶ୍ୱାସ ହେଲା ନାହିଁ। ଗାନ୍ଧିଜୀ ସୁଖ ମନରେ ଆଶ୍ରମରୁ ଫେରିବାର ମୋର ହୃଦ୍‌ବୋଧ ନ ହେବାରୁ ମୋର ଉତ୍ସାହ ଭାଙ୍ଗିପଡ଼ିଲା। ମୁଁ ଆଉ ଅଧିକ କଣ କରି ପାରିଥାନ୍ତି, କିଛି ବୁଝି ପାରିଲି ନାହିଁ।

ଓଡ଼ିଶାରେ ହରିଜନ ପଦଯାତ୍ରା କରି ଗାନ୍ଧିଜୀ ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କୁ ଭଲକରି ଚିହ୍ନିବାକୁ ପାଇଲେ। ଗୋପବାବୁ ଏମ୍.ଏ. ପାଶ୍ କରି ଡେପୁଟି ଚାକିରି କରୁଥିଲେ। ତାଙ୍କ ପିତା ଜଣେ ବିଖ୍ୟାତ ଓକିଲ ଥିଲେ। ଚାକିରି ଛାଡ଼ି ସମସ୍ତ ପରିବାରକୁ ଧରି ସେ ଦେଶ କାମରେ ଲାଗିଛନ୍ତି। ଭାରତରେ ନେହେରୁ ପରିବାର ଯେପରି ତ୍ୟାଗ ଓ ସେବାରେ ପ୍ରସିଦ୍ଧ, ଓଡ଼ିଶା କଂଗ୍ରେସରେ ଗୋପବାବୁଙ୍କ ପରିବାର ସେପରି ପ୍ରସିଦ୍ଧ। ଚୌଧୁରୀ ପରିବାରଙ୍କୁ ଧରି ଓଡ଼ିଶା ଗର୍ବ କରିବାର କଥା। ଏପରି ଅବସ୍ଥାରେ ଗୋପବାବୁଙ୍କ ପ୍ରତି ଗାନ୍ଧିଜୀଙ୍କ ଦୃଷ୍ଟି ପଡ଼ିବା ସ୍ୱାଭାବିକ।

ଆଜି ପର୍ଯ୍ୟନ୍ତ ଓଡ଼ିଶାରୁ ମୋ ବ୍ୟତୀତ ଅନ୍ୟ କାହାରି ଗାନ୍ଧିଙ୍କ ସହିତ ବ୍ୟକ୍ତିଗତ ଘନିଷ୍ଠ ଓ ସାକ୍ଷାତ୍ ସଂବନ୍ଧ ନ ଥିଲା। ଓଡ଼ିଶାକୁ ମୁଁ ଗାନ୍ଧିଜୀଙ୍କୁ ଚିହ୍ନାଇଛି। ଅନେକ ସମୟରେ ଓଡ଼ିଶାର କଥା ପଡ଼ିଲେ ଗାନ୍ଧିଜୀ ମୋର ମତାମତ ଜାଣିବାକୁ ଇଚ୍ଛା କରୁଥିଲେ। ବର୍ତ୍ତମାନ ସେ ଅବସ୍ଥାରେ ପରିବର୍ତ୍ତନ ଘଟୁଛି। ମୁଁ ଜଣେ ଅଜଣା ପରିବାରରେ ବ୍ୟକ୍ତି। ମୋର ସାମାଜିକ ସ୍ଥିତି ଲୋକ ଦୃଷ୍ଟି ଆକର୍ଷଣ କରିବାର କିଛି ନାହିଁ। ଉଚ୍ଚ ଶିକ୍ଷା ଉପାଧି ମଧ୍ୟ ନାହିଁ। ମୋ ବିରୁଦ୍ଧରେ ନାନା କଥା ଗାନ୍ଧିଜୀଙ୍କ କର୍ଣ୍ଣଗୋଚର ହୋଇଛି। କର୍ମ କ୍ଷେତ୍ରରେ ମୋର କାର୍ଯ୍ୟ ଯାହା ଯେପରି ଦେଖିବାକୁ ପାଇଲେ ତହିଁରେ ତାଙ୍କର ଆଶା ପୂରଣ ହୋଇପାରିଲା ନାହିଁ। ପରିଣାମରେ ମୁଁ ଦୂରେଇ ହୋଇପଡ଼ିବା ସଂଗେ ସଂଗେ ଶ୍ରୀ ଗୋପବନ୍ଧୁ ଚୌଧୁରୀ ତାଙ୍କର ଦୃଷ୍ଟି ଆକର୍ଷଣ କରୁଛନ୍ତି। ଏ ଅବସ୍ଥା ଓ ପରିସ୍ଥିତିର ପରିବର୍ତ୍ତନ ମୁଁ ହୃଦୟଙ୍ଗମ

କରି ପାରୁଥିଲେ ମଧ ମତେ କିଂ କର୍ତ୍ତବ୍ୟ ବିମୂଢ଼ ହୋଇ ରହିବାକୁ ପଡ଼ିଲା। ନିଜକୁ ବଡ଼ ·ଅସହାୟ ମନେ କଲି। ମନରେ ଦୁଃଖ ହୋଇଛି। କିନ୍ତୁ ମନ ମୋର ଭାଙ୍ଗି ପଡ଼ିନାହିଁ। ଏହାକୁ କହନ୍ତି ଭାଗ୍ୟ। ଗୋପବାବୁ ବଡ଼ ଭାଗ୍ୟବାନ୍। ତ୍ୟାଗ ତାଙ୍କର ସମ୍ପଦ। ମୋ ପରି ବ୍ୟକ୍ତି ପକ୍ଷରେ ତ୍ୟାଗ ଓ ସେବା ନଗଣ୍ୟ। ଏହିପରି ଭାବ ହୃଦୟରେ ଜାଗି ଉଠିଲା ସତ କିନ୍ତୁ ଏ ଭାବନାରେ ମୁଁ ବିଚଳିତ ହୋଇ ନାହିଁ।

ତ୍ୟାଗ ଓ ସେବା କାହାରି ନିଜସ୍ୱ ନୁହେଁ। ଏହା ହେଉଛି ମନୁଷ୍ୟର ଅନ୍ତର୍ନିହିତ ବାଣୀ। ଏହି ବାଣୀ ଶୁଣିପାରିଲେ ମନୁଷ୍ୟ ପରମ ଆନନ୍ଦ ଉପଭୋଗ କରେ। ସେ ଯେତିକି କରି ପାରିବ, ସେତିକି ମାତ୍ରାରେ ଆନନ୍ଦ ଓ ବଳ ପାଇବ। ଏହି ବିଶ୍ୱାସ ମୋର ହୃଦୟରେ ସ୍ଥାନ ପାଇଥିବାରୁ ମୁଁ ବଞ୍ଚିଛି ଓ କାମ କରୁଛି। ସମସ୍ତ ପ୍ରକାର ନିନ୍ଦା, ଅପମାନ ଓ ଗ୍ଲାନି ସହ୍ୟ କରି ପାରିଛି। ମୁଁ ନିଜକୁ ବଡ଼ ଭାଗ୍ୟବାନ ମନେ କରେ, କାରଣ କର୍ତ୍ତବ୍ୟ ପଥରୁ ବିଚ୍ୟୁତ ହୋଇନାହିଁ।

୧୯୩୩ ମସିହାରେ ଜେଲରୁ ମୁକ୍ତ ହୋଇ ଆସିଲାବେଳକୁ ଆଶ୍ରମ କିପରି ଓ କାହିଁକି ଭୁଷୁଡ଼ି ପଡ଼ିଥିଲା ତାହାର କାରଣ ଉଲ୍ଲେଖ କରି ମହାତ୍ମାଗାନ୍ଧୀଙ୍କୁ ଆଶ୍ରମକୁ ଆହ୍ୱାନ କରିଥିଲି। ତାଙ୍କର ପଦସ୍ପର୍ଶରେ ଆଶ୍ରମକୁ ଅଧିକ ବଳଶାଳୀ କରିବାକୁ ସମର୍ଥ ହୋଇ ପାରିବି ବୋଲି ଦୃଢ଼ ଆଶା ରଖି। କିନ୍ତୁ ପରିଣାମ ବିପରୀତ ହେଲା। ମହାତ୍ମାଜୀ ମନ ସୁଖରେ ଆଶ୍ରମରୁ ଫେରି ନ ଯିବାରୁ ମୁଁ ଚିନ୍ତିତ ହୋଇ ପଡ଼ିଲି। ସେ ଯାହା ଯେପରି ମତେ କହିଗଲେ ତଦନୁସାରେ କର୍ମ ଯୋଜନା କଳ୍ପନା କରି କଳକଳା ଶାଖାଶ୍ରମକୁ ଦୃଢ଼ କରିବାକୁ ଚେଷ୍ଟା କରୁଛି। ଉପଯୁକ୍ତ କର୍ମୀ ବାହାର କରିବା ପ୍ରଥମ ପ୍ରଶ୍ନ। ଅର୍ଦ୍ଧଶିକ୍ଷିତ ବେକାର ଯୁବକ ଗ୍ରାମମାନଙ୍କରେ ରହିଛନ୍ତି। ସେମାନେ ଘର କିମ୍ବା ବାହାର କୌଣସି କାର୍ଯ୍ୟ ପାଇଁ ଯୋଗ୍ୟ ବିବେଚିତ ହେଉନାହାନ୍ତି। ସେହିମାନଙ୍କ ମଧ୍ୟରୁ ବାଛି ପାଞ୍ଚ ବର୍ଷ ତାଲିମ ଦବାର ବ୍ୟବସ୍ଥା କରି ପଲ୍ଲୀ-ସଂଗଠନ କାର୍ଯ୍ୟପାଇଁ କର୍ମୀ ବାଛିବାକୁ ହେବ। ଏହି ଉଦ୍ଦେଶ୍ୟରେ ମୁଁ ଅଦମ୍ୟ ପରିଶ୍ରମ କରୁଛି। କିନ୍ତୁ ସବୁ କାମ କରିବାକୁ ମୁଁ ଜଣେ। ଚାନ୍ଦା ସଂଗ୍ରହ କରିବା, ହିସାବ ରଖିବା—କର୍ମୀମାନଙ୍କର କାର୍ଯ୍ୟକୁ ନିରୀକ୍ଷଣ କରି ନୂତନ କର୍ମ ମାର୍ଗ ଅନ୍ୱେଷଣ କରିବା, ସବୁ କାମ ପାଇଁ ଜଣେ ବ୍ୟକ୍ତିର ଚିନ୍ତା ଓ ଅଦମ୍ୟ ଚେଷ୍ଟା, ଭାଇବନ୍ଧୁ ଅବା ସାଙ୍ଗ ସାଥୀ ପଛକୁ କେହି ନାହାନ୍ତି। ଓଡ଼ିଶା କଂଗ୍ରେସର ଜଣାଶୁଣା କର୍ମୀ କାହାରି ଦୃଷ୍ଟି ନାହିଁ। ଓଡ଼ିଶା ବାହାରୁ ଯେ କେହି ଆସୁଥିଲେ ଚମ୍ପାପୁର ଆଶ୍ରମ ଦେଖିବାକୁ ଯାଉଥିଲେ। ମହାତ୍ମାଗାନ୍ଧୀ ଆଶ୍ରମ ଦେଖିଯିବା ପର ଆଉ କେହି ଆଶ୍ରମ ଦେଖିବାକୁ ଯାଉନାହାନ୍ତି। କଟକରୁ ମୋ ବିରୁଦ୍ଧରେ ନାନା କଥା ଶୁଣି ସେ ସବୁ ଗାନ୍ଧିଜୀଙ୍କୁ ରିପୋର୍ଟ କରୁଛନ୍ତି। ଗାନ୍ଧିଜୀ ମଧ ଏସବୁ ମତେ ଜଣାଇ ଦେଉଛନ୍ତି। ଉପଯୁକ୍ତ ସହକର୍ମୀ ଥିଲେ କୌଣସି ଚିନ୍ତା ନ ଥିଲା। ଯେଉଁ ଆଡ଼କୁ ଚାହିଁଲେ

ମତେ କୌଣସି କୂଳକିନାରା ଦେଖା ଯାଉନାହିଁ। ପଲ୍ଲୀବାସୀଙ୍କର ମୋ ପ୍ରତି ଅସୀମ ସ୍ନେହ ଶ୍ରଦ୍ଧା କେବଳ ମୋର ଏକମାତ୍ର ସମ୍ବଳ। ସେମାନଙ୍କ ସେବାରେ ମୁଁ ଆତ୍ମହରା ହୋଇ ସବୁ ଦୁଃଖଦୁର୍ଦ୍ଦଶା ଭୁଲିଯାଏ। ମୁଁ ଯେଉଁ କଳ୍ପନାରେ ଅନୁଷ୍ଠାନ ଗଢୁଥିଲି ତାହା ଯଦି ଆଜି ପର୍ଯ୍ୟନ୍ତ ତିଷ୍ଠି ପାରିଥାନ୍ତା, ଦେଶର କେତେ ଅଭାବମୋଚନ କରି ପାରୁଥାନ୍ତା। ଗ୍ରାମସେବକ, ହରିଜନ ସେବକ ଆଦି କେତେ କର୍ମୀ ଦରକାର ପଡୁଛନ୍ତି। ଏହିସବୁ କର୍ମ କରିବାକୁ ଦେଶରେ ଶିକ୍ଷାପ୍ରାପ୍ତ କର୍ମୀ ଅନେକ ଥାନ୍ତେ ଏବଂ କର୍ମୀମାନଙ୍କୁ ତାଲିମ ଦେବାପାଇଁ ସେହି ଅନୁଷ୍ଠାନ ମଧ୍ୟ କାର୍ଯ୍ୟରେ ସମ୍ଭବତଃ ଲାଗି ପାରିଥାନ୍ତା। କଣ ହେଉଥାନ୍ତା ତାହା କହି ପାରୁନାହିଁ। କିନ୍ତୁ ପରସ୍ପର ମଧ୍ୟରେ ଅନ୍ୟର ମତାମତ ଓ କାର୍ଯ୍ୟ ପ୍ରତି ଯଥାଯୁକ୍ତ ଶ୍ରଦ୍ଧା ଓ ସହନଶୀଳତା ଭାବ ଅଭାବରୁ ଆମ ଓଡ଼ିଶାରେ କୌଣସି ଗୋଟିଏ କାର୍ଯ୍ୟ ଭଲ ଭାବରେ ହୋଇପାରୁ ନାହିଁ। ଈର୍ଷା, ଦ୍ୱେଷଭାବ ଅତି ମାତ୍ରାରେ ସର୍ବତ୍ର କାର୍ଯ୍ୟ କରୁଛି। ନିର୍ମମ ସମାଲୋଚନା ସମସ୍ତଙ୍କୁ ଅକର୍ମା ବନେଇ ଦଉଛି। କେହି କିଛି କାର୍ଯ୍ୟ କଲେ ସାହାଯ୍ୟ ସହାନୁଭୂତିର କେବଳ ଅଭାବ ରହୁଛି ତାହା ନୁହେଁ; ଯେ କୌଣସି ପ୍ରକାରେ ଦୋଷ ଲଗାଇ କାମକୁ ଭ୍ରଷ୍ଟ ନ କଲା ପର୍ଯ୍ୟନ୍ତ ବିରାମ ନାହିଁ।

୧୯୩୬ ମସିହାରେ ଇଂରେଜ ସରକାର ଓଡ଼ିଶାକୁ ଗୋଟିଏ ନୂତନ ପ୍ରଦେଶରେ ଗଠନ କଲେ। ୧୯୩୭ ମସିହାର ଶାସନ ଖସଡ଼ାନୁସାରେ ଭାରତରେ ନିର୍ବାଚନ କରାଗଲା। କଂଗ୍ରେସ ଏହି ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରୁଥିବାରୁ ମୁଁ ଜଣେ କଂଗ୍ରେସ ପ୍ରାର୍ଥୀ ହୋଇଥିଲି। ପଲ୍ଲୀ ଅଞ୍ଚଳରେ ନାନାପ୍ରକାର ପ୍ରତିକ୍ରିୟାଶୀଳ ଶକ୍ତି ଲୋକଙ୍କ ବିରୁଦ୍ଧରେ କାର୍ଯ୍ୟ କରୁଛି। ମୁଁ ଏକାକୀ କାର୍ଯ୍ୟ କରୁଥିବାରୁ ଅନେକ ସମୟରେ ଏହି ପ୍ରତିକ୍ରିୟାଶୀଳ ଲୋକଙ୍କ ବିରୁଦ୍ଧରେ ମତେ ଠିଆ ହେବାକୁ ପଡୁଛି। ମୋର ଆସନକୁ ଦୃଢ଼ କରିବାପାଇଁ ଏବଂ ପୋଲିସ ଓ ପ୍ରତିକ୍ରିୟାଶୀଳ ଲୋକଙ୍କ ପ୍ରଭାବକୁ ଚପେଇ ରଖି ଲୋକସାଧାରଣଙ୍କ ମନରେ ବଳ ସାହସ ଭାବ ସଂଚାର କରିବାପାଇଁ ଲାଟସଭାର ସଭ୍ୟ ପଦ ନିଶ୍ଚୟ ସାହାଯ୍ୟ କରିବ। ଏହିପରି ଅନେକ କାରଣରୁ ଲାଟସଭାର ସଭ୍ୟ ପଦପାଇଁ ମୁଁ ପ୍ରାର୍ଥୀ ରୂପେ ଠିଆହେଲି। ଅବସ୍ଥାକୁ ଦେଖି ବ୍ୟବସ୍ଥା କରିବା ଦରକାର। କିନ୍ତୁ ଏହିଠାରେ ସବୁ ଗୋଳମାଳ ପୁଞ୍ଜିଭୂତ ହୋଇ ମୋ ବିରୁଦ୍ଧରେ ଦଣ୍ଡାୟମାନ ହେଲା। ମୋ ବିରୁଦ୍ଧରେ ଗୁରୁତର ଅଭିଯୋଗ କଳ୍ପନା କରାଯାଇଥିଲା। ଗାନ୍ଧୀଜୀଙ୍କ ନାମରେ ଟଙ୍କା ପଇସା ଆଣି କୋଠା ଜମି, ଗାଈ ଗୋରୁ, ଧନ ସଂପତ୍ତି କରି ଅତି ନିନ୍ଦନୀୟ କାର୍ଯ୍ୟରେ ଲିପ୍ତ ହୋଇଛି। ଏହାର ଇତିହାସ ବଡ଼ ମର୍ମନ୍ତୁଦ। ତାହା ଉଲ୍ଲେଖ କରି ଗୃହକଳାକୁ ଦାଣରେ ପ୍ରକ୍ଷାଳନ କରିବା ଉଚିତ ମନେ କରୁନାହିଁ।

୧୯୩୫ ମସିହାର ଶାସନ ଖସଡ଼ାନୁସାରେ କେତେକ ପରିମାଣରେ ଶାସନ ଅଧିକାର ପ୍ରଦେଶକୁ ମିଳିଲା। ତଦନୁସାରେ ନିର୍ବାଚନ ହୋଇ କଂଗ୍ରେସ ପ୍ରଦେଶମାନଙ୍କରେ ମନ୍ତ୍ରୀମଣ୍ଡଳ ଗଠନ କଲା। ଓଡ଼ିଶାର ବ୍ୟବସ୍ଥା ସଭାକୁ ଷାଠିଏ ଜଣ ସଭ୍ୟ ନିର୍ବାଚିତ ହେଲେ। କଂଗ୍ରେସ ସଂଖ୍ୟା ଗରିଷ୍ଠ ହେବାରୁ ଓଡ଼ିଶାରେ ପ୍ରଥମ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତ ହେଲା। ଶ୍ରୀ ବିଶ୍ୱନାଥ ଦାସ ମୁଖ୍ୟମନ୍ତ୍ରୀ ହୋଇଥିଲେ। ଦୁର୍ଭାଗ୍ୟବଶତଃ ମୁଁ ଧର୍ମଶାଳା ବଡ଼ଚଣା ଥାନାରୁ ମଧୁପୁର ରାଜାସାହେବଙ୍କ ସହିତ ପ୍ରତିଦ୍ୱନ୍ଦିତା କରି ବହୁ ଅଳ୍ପ ଭୋଟରେ ହାରି ଯାଇଥିଲି। ଲୋକେ କହନ୍ତି ଯେ ମୋ ଭୋଟ ବାକ୍ସରୁ ଚୋରି ହୋଇ ଯିବାରୁ ମୁଁ ହାରିଗଲି। ମୋର ଅବସ୍ଥା ସେତେବେଳକୁ ଅତ୍ୟନ୍ତ ଦୟାଜନକ। କାରଣ ମୋ ବିରୁଦ୍ଧରେ ଯେତେ ଅଧିକ ଯେ କରିପାରିଲା ସେ ହେଲା ଓଡ଼ିଶାର ଅଧିକାଂଶ କଂଗ୍ରେସ ନେତୃବର୍ଗଙ୍କର ପ୍ରିୟପାତ୍ର। ଗାନ୍ଧୀଜୀଙ୍କର ମୋ ପ୍ରତି ଆଉ ଶୁଭଦୃଷ୍ଟି ନାହିଁ। ସେ ସବୁର କାରଣ ଲେଖିଲେ ସରିବ ନାହିଁ। ସୁତରାଂ ସେ ସବୁକୁ ମୁଁ ମୋର ଦୁର୍ଭାଗ୍ୟ ବୋଲି ମନେ କରିବା ବ୍ୟତୀତ ଅନ୍ୟ ଗତି ନାହିଁ। ଏହିଠାରୁ ଓଡ଼ିଶାରେ ସ୍ଥାୟୀ ଅନୁଷ୍ଠାନ ଗଢ଼ିବାର ମୋର କଳ୍ପନା ଭାଙ୍ଗିପଡ଼ିଲା। ସମସ୍ତ କାର୍ଯ୍ୟସ୍ଥଗିତ ରଖିଦେଇ କର୍ମୀମାନଙ୍କୁ ବିଦାୟ କରିଦେଲି। ଏହାପରେ ମୋ ନାମରେ ବହୁ ଅପକୀର୍ତ୍ତି ରଟନା କରାଗଲା କିନ୍ତୁ ଏସବୁ ଅପକୀର୍ତ୍ତି ମୋତେ ତିଳେମାତ୍ର ସ୍ପର୍ଶ କରିନାହିଁ। ଏହି ସମୟରେ ବାବୁ ହରେକୃଷ୍ଣ ମହତାବ, ଆଶା ସଂପାଦକ ଶ୍ରୀ ଶଶୀଭୂଷଣ ରଥ, ମତେ ଉସାହିତ କରି ପତ୍ର ଦେଇଛନ୍ତି। ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ମଧ ତାଙ୍କ ସହାନୁଭୂତି ଜଣାଇଛନ୍ତି।

ପ୍ରାଦେଶିକ ଇଲେକ୍ସନ୍ ସରି ମନ୍ତ୍ରୀମଣ୍ଡଳ ଗଠିତ ହେଲା ସତ କିନ୍ତୁ ପ୍ରାଦେଶିକ କଂଗ୍ରେସ କମିଟିରେ ଦଳସୃଷ୍ଟି କରିବାରେ ପ୍ରତିଦ୍ୱନ୍ଦିତା ଚାଲିଲା। ପଣ୍ଡିତ ନୀଳକଣ୍ଠ ଦାସ ନିର୍ବାଚନରେ ଅକ୍ଳାନ୍ତ ପରିଶ୍ରମ କରି କଂଗ୍ରେସକୁ ଜୟଯୁକ୍ତ କରାଇଛନ୍ତି। ତାଙ୍କର ଇଚ୍ଛା ଥିଲା ମୁଖ୍ୟମନ୍ତ୍ରୀ ହେବାପାଇଁ। ସେ ଦେଖିଲେ ଯେ ତାଙ୍କୁ ଗୁଡ଼ର ଗଣେଶ ବନାଇ ତାଙ୍କର ପୂଜା କରାଯାଇଛି। ସେ ଅତିଶୟ କ୍ଷୁଣ୍ଣ ହୋଇ ଦଳଗଠନ କରିବାରେ ଲାଗିପଡ଼ିଲେ। ପ୍ରାଦେଶିକ କଂଗ୍ରେସ କମିଟି ସଭାପତି ନିର୍ବାଚନରେ ମହତାବବାବୁଙ୍କୁ ହରାଇ ସଭାପତି ଗାଦି ଆରୋହଣ କଲେ। ସେହି ବର୍ଷ ହରିପୁରା କଂଗ୍ରେସର ସଭାପତି ଶ୍ରୀ ସୁବାଷଚନ୍ଦ୍ର ବୋଷ। ସୁବାଷବାବୁଙ୍କୁ ଧରି ମହତାବବାବୁ କଂଗ୍ରେସ କାର୍ଯ୍ୟକାରୀ ସମିତିର ସଭ୍ୟରୂପେ ବଛାଗଲେ। ରାଜନୈତିକ ଦୃଷ୍ଟିରେ ମହତାବବାବୁ, ନୀଳକଣ୍ଠବାବୁଙ୍କୁ ଟପି ଉପରକୁ ଉଠିଗଲେ।

ଶ୍ରୀ ନବକୃଷ୍ଣ ଚୌଧୁରୀ ମନ୍ତ୍ରୀମଣ୍ଡଳରେ ରହିବାକୁ ଇଚ୍ଛା ନକରି ଦେଶରେ କୃଷକ ସଂଗଠନ ଆରମ୍ଭ କଲେ ଏବଂ କଂଗ୍ରେସୀ ସାମ୍ୟବାଦୀ ଦଳ ଗଠନ କଲେ। 'ଚାଷୀ ମୂଲିଆ ଏକଜୁଟ ହୁଅ।' ନବବାବୁଙ୍କର ନୂତନ ଧ୍ୱନି ବାହାରିଲା। କଂଗ୍ରେସ

ଓ ଗାନ୍ଧିଜୀଙ୍କର ପ୍ରକାଶ୍ୟ ସମାଲୋଚନା ଆରମ୍ଭ କଲେ। ସ୍ୱାଧୀନ କୃଷକଦଳ ଗଠନ କରିବା ନୀତିକୁ ନୀଳକଣ୍ଠବାବୁ ସମର୍ଥନ କରି ନଥିଲେ। କଂଗ୍ରେସରେ ରହି କଂଗ୍ରେସ ବିରୁଦ୍ଧରେ କୃଷକଦଳ ଗଠନ କରିବା ନୀତିକୁ ନୀଳକଣ୍ଠବାବୁ ଘୋର ବିରୋଧ କଲେ। ପୁରୀ, ଗଞ୍ଜାମ, କୋରାପୁଟ ଓ ସମ୍ବଲପୁର କଂଗ୍ରେସ ଲୋକେ ନୀଳକଣ୍ଠବାବୁଙ୍କର ସମର୍ଥକ। କଟକ ଜିଲ୍ଲାରୁ ଅଟଳବିହାରୀ ଆଚାର୍ଯ୍ୟ, ଯଦୁମଣି ମଙ୍ଗରାଜ ଓ ମୁଁ ଆମ୍ଭେ ତିନିଜଣ ନୀଳକଣ୍ଠବାବୁଙ୍କୁ ସମର୍ଥନ କରୁଥିବୁ। ଧର୍ମଶାଳା ଓ ବଡ଼ଚଣା ମୋର କର୍ମକ୍ଷେତ୍ର। ଏ ଅଞ୍ଚଳର ପ୍ରତି ଗ୍ରାମରେ ଆବାଳ ବୃଦ୍ଧବନିତା ସମସ୍ତେ ମତେ ଜାଣନ୍ତି ଏବଂ ଭକ୍ତି ଶ୍ରଦ୍ଧାଭାବ ମଧ ମୋ ପ୍ରତି ପୋଷଣ କରିଥାନ୍ତି। ନବବାବୁ ତାଙ୍କର କୃଷକ ଆନ୍ଦୋଳନ ପାଇଁ ଧର୍ମଶାଳା ଥାନାକୁ ବାଛିଥିଲେ। ତାଙ୍କୁ ଓଡ଼ିଶାର ଜହରଲାଲ ବୋଲି ତାଙ୍କର ଅନୁଗାମୀ କର୍ମୀମାନେ ପ୍ରଚାର ଚଳାଇଲେ। ସଭା ସମିତିରେ କହିବାକୁ ଠିଆହେବା ବେଳକୁ ସେ ଓଡ଼ିଶାର ଜହରଲାଲ ବୋଲି ତାଙ୍କର ପରିଚୟ ଦିଆଯାଇ ତାଙ୍କ ନାମରେ ଜୟଧ୍ୱନି କରାଗଲା। ଧର୍ମଶାଳାରେ ତାଙ୍କର କାର୍ଯ୍ୟକରଣ ଦେଖି ମୋ ମନରେ ଆଶଙ୍କା ଜାତହେଲା। ମତେ ଚାରିଆଡୁ ଚିପିଦେବା ଇଚ୍ଛାରେ, ଧର୍ମଶାଳାକୁ ସେ କର୍ମକ୍ଷେତ୍ର ରୂପେ ବାଛିଛନ୍ତି। କାରଣ ସେ ଯେଉଁ ସ୍ଥାନକୁ ଯାଇ ସଭା ସମିତି କରିଛନ୍ତି ସେ ସ୍ଥାନର ଲୋକେ ମତେ ଆଉ ଭଲଭାବରେ ଦେଖି ନାହାନ୍ତି। ଲୋକସାଧାରଣଙ୍କ ମୋ ପ୍ରତି ଏପରି ହଠାତ୍ ଭାବ ପରିବର୍ତ୍ତନ ଦେଖିବାରୁ ମୋ ମନରେ କୌଣସି ଆଶଙ୍କା ଜାତହେବା ଅସ୍ୱାଭାବିକ ହୋଇ ନ ପାରେ। ମୋର ଆଶଙ୍କା ଅଯଥା ହୋଇପାରେ, ସେ ଭିନ୍ନ କଥା। କଂଗ୍ରେସ ସଭ୍ୟ ସଂଗ୍ରହ କରିବାକୁ ମତେ ଖାତା ଦେବାକୁ କେହି କଟକ ଜିଲ୍ଲାର ମୁଖ୍ୟ ନେତା ଆପତ୍ତି କରିଥିବାର ମୁଁ ଜାଣିବାକୁ ପାଇଛି। ସେ ଯାହାହେଉ, ଧର୍ମଶାଳାରେ କେତୋଟି ଗ୍ରାମକୁ ଛାଡ଼ିଦେଲେ ସବୁଆଡ଼େ ବୁଲି କାମ କରିବା ପାଇଁ ଅନୁକୂଳ ପରିସ୍ଥିତି ରହି ନ ଥିଲା। ଖଣ୍ଡିତର ଗ୍ରାମ ଓ ଉକ୍ତ ଗ୍ରାମର ଶ୍ରୀ ବାଞ୍ଛାନିଧି ପଣ୍ଡା, ମହନ୍ତ ନବକିଶୋର ଦାସ, ରାଜକିଶୋର କର ଓ ବୃନ୍ଦାବନ ଶତପଥି ପ୍ରଭୃତି କର୍ମୀଙ୍କୁ ଛାଡ଼ିଦେଲେ ଅବଶିଷ୍ଟ ସବୁ କର୍ମୀ ମତେ ଛାଡ଼ିଲେ। ଧର୍ମଶାଳା ଥାନାକୁ ମୋର ଯିବା ବନ୍ଦ ହୋଇଗଲା। କାରଣ ଯାହା ହୋଇପାରେ।

୧୯୩୭ ମସିହାରେ ଶ୍ରୀ ସାରଙ୍ଗଧର ଦାସଙ୍କ ନେତୃତ୍ୱରେ ଗଡ଼ଜାତ ପ୍ରଜାସମ୍ମିଳନୀର ଦ୍ୱିତୀୟ ବୈଠକ କଟକରେ ବସିଥିଲା। ଡାକ୍ତର ପଟ୍ଟାଭି ସୀତାରାମାୟା ସଭାପତିତ୍ୱ ଆସନ ଗ୍ରହଣ କରିଥିଲେ। ଏହି ସମ୍ମିଳନୀରେ ଗଡ଼ଜାତରେ ଦାୟିତ୍ୱପୂର୍ଣ୍ଣ ସ୍ୱାୟତ୍ତଶାସନ ଦାବୀ କରି ପ୍ରସ୍ତାବ ଗୃହୀତ ହୋଇଥିଲା ଏବଂ ଗଡ଼ଜାତ ପ୍ରଚଳିତ ଶାସନ ପ୍ରଥାର ତଦନ୍ତ କରିବାପାଇଁ ଗୋଟିଏ କମିଟି ବସାଇବାର ପ୍ରସ୍ତାବ ମଧ ଗ୍ରହଣ କରାଗଲା। ଏହି ପ୍ରସ୍ତାବ ଅନୁସାରେ ଶ୍ରୀ ହରେକୃଷ୍ଣ ମହତାବଙ୍କ ସଭାପତିତ୍ୱରେ ଗୋଟିଏ କମିଟି

ଗଠନ କରାଗଲା। ନିଖିଳଭାରତ ଦେଶୀୟ ରାଜ୍ୟ ପ୍ରଜାସମ୍ମିଳନୀର ସଂପାଦକ ଶ୍ରୀବଳବନ୍ତରାଏ ମେହେଟା ଉକ୍ତ କମିଟିର ଜଣେ ସଭ୍ୟ ରୂପେ ବଛା ଯାଇଥିଲେ। ମହତାବ ତଦନ୍ତ କମିଟି ରିପୋର୍ଟ ଛାପା ହୋଇଛି। ତହିଁରେ ଗଡ଼ଜାତ ଅନ୍ଧାରୀ ରାଜତ୍ୱର ଅସଲି ସ୍ୱରୂପ ଆତ୍ମପ୍ରକାଶ କରିଛି। ଏହି ସମୟରୁ ମହତାବବାବୁ ଗଡ଼ଜାତ ପ୍ରଜାଙ୍କର ସୁଖ ଦୁଃଖରେ ଭାଗୀ ଏବଂ ସେମାନଙ୍କ ପ୍ରଧାନ ପରାମର୍ଶଦାତା।

ତାଳଚେର, ଢେଙ୍କାନାଳ, ରଣପୁର ଓ ନୟାଗଡ଼ ପ୍ରଭୃତି ବହୁ ଗଡ଼ଜାତ ରାଜ୍ୟମାନଙ୍କରେ ପ୍ରଜା ଆନ୍ଦୋଳନର ପ୍ରବଳ ଆକାର ଧାରଣ କଲା। ତାଳଚେର ପ୍ରଜା ରାଜ୍ୟ ଛାଡ଼ି ଚାଲି ଆସିଲେ। ଢେଙ୍କାନାଳରେ ଲାଠି ଓ ଗୁଳି ଚାଲିଲା। ଏହି ସମୟରେ ପ୍ରସିଦ୍ଧ ବାଳକ ବାଜିରାଉତର ବଳିଦାନ। ନବବାବୁ କୃଷକ ଆନ୍ଦୋଳନ ଛାଡ଼ି ଗଡ଼ଜାତ ପ୍ରଜା-ଆନ୍ଦୋଳନରେ ମନଦେଲେ। ନବବାବୁ ଓ ମାଳତୀ ଦେବୀ ଉଭୟେ ଢେଙ୍କାନାଳ ପାଇଁ ବହୁତ କାମ କରିଛନ୍ତି। ଏ ଦୁହିଁଙ୍କ ହେତୁ ବାଜିରାଉତର ବଳିଦାନ ଦାଣ୍ଡକୁ ପ୍ରକାଶ ପାଇଲା, ନଚେତ୍ ଅନ୍ଧାରରେ ସେ କ୍ୟୋତି ଲୁଚି ଯାଇଥାନ୍ତା। ଢେଙ୍କାନାଳରେ ଗୁଳି ଚଳାଇ ଲୋକଙ୍କୁ ମାରି ଦେଉଥିବା ବେଳେ ସହକାରୀ ପଲିଟିକାଲ ଏଜେଣ୍ଟ ବଜେଇଗେଟ୍ ସାହେବ ସେଠାରେ ଥିଲେ। ସାହେବ ପ୍ରଜାଙ୍କ ବିରୋଧୀ ନୁହନ୍ତି। ପ୍ରଜା-ଆନ୍ଦୋଳନକୁ ନୃଶଂସ ଭାବରେ ଦମନ କରିବା ନୀତିକୁ ସେ ବିରୋଧ କରୁଥିଲେ। ଗଡ଼ଜାତ ଶାସନ ବିଷୟ ରିପୋର୍ଟରେ ପ୍ରଜାଙ୍କ ସପକ୍ଷରେ ସେ ତାଙ୍କର ଅନୁକୂଳ ମତ ରଖିଥିବାର ଶୁଣାଯାଏ। କିନ୍ତୁ ସେତେବେଳେ ଲୋକେ ତାଙ୍କୁ ମଣିଷମରା ସାହେବ ବୋଲି ଜାଣିଲେ। ସେ ରଣପୁର ଗଡ଼ରେ ଉପସ୍ଥିତ ହେଲା ବେଳକୁ ମଣିଷମରା ସାହେବ ଆସିଲା କହି ଉତ୍ୟକ୍ତ ଜନତା ତାଙ୍କୁ ପ୍ରାଣରେ ବାଡ଼େଇ ମାରିଦେଲେ। ୧୯୩୯ ମସିହା ଜାନୁୟାରୀ ମାସ ପାଞ୍ଚ ତାରିଖ ପୌଷ ପୂର୍ଣ୍ଣିମା ଦିନ ବଜେଲଗେଟ୍ ସାହେବଙ୍କୁ ହତ୍ୟା କରାଗଲା। ଗଡ଼ଜାତ ରାଜାମାନଙ୍କର ସ୍ୱେଚ୍ଛାଚାରୀ ବିଭତ୍ସ ଶାସନର ପରିଣତି ହତ୍ୟାକାଣ୍ଡରେ ପରିଣତ ହେବା ଏପରି ଅନୁମାନ ଆଗରୁ ଅନେକ କରୁଥିଲେ। ଗଡ଼ଜାତ ଆନ୍ଦୋଳନବେଳେ କଟକରେ ଶ୍ରୀ ସାରଙ୍ଗ ଦାସଙ୍କ ବାସଭବନରେ ବହୁବୀର ପ୍ରଜା-ସମ୍ମିଳନୀ କାର୍ଯ୍ୟନିର୍ବାହିକା ସମିତିର ବୈଠକ ବସି ପରିସ୍ଥିତିର ବିଚାର ଆଲୋଚନା ଆମ୍ଭେମାନେ କରିଛୁ। ବଜେଲଗେଟ୍ ସାହେବଙ୍କ ହତ୍ୟା ସଂବାଦ ପାଇ ଆମ୍ଭମାନଙ୍କ ବୈଠକ ବସିଥିଲା। ଶ୍ରୀ ରାଧାନାଥ ରଥ, କବିରାଜ ଶ୍ରୀ ବାଲୁକେଶ୍ୱର ଆଚାର୍ଯ୍ୟ, ମୁଁ ଆମ୍ଭେ ତିନିଜଣ ଅଧିକାଂଶ ସମୟରେ ବୈଠକରେ ଯୋଗଦେଇ ବିଚାର ଆଲୋଚନା କରିଥିଲୁ। ବଜେଲଗଟ୍ ସାହେବଙ୍କ ମୃତ୍ୟୁ ଗଡ଼ଜାତ ଶାସନ ଆଡ଼କୁ ଇଂରେଜ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲା ଏଥିରେ କୌଣସି ସନ୍ଦେହ ନାହିଁ। କିନ୍ତୁ ଉପସ୍ଥିତ ଘଟଣାରେ ଇଂରେଜ ସରକାର କଠୋର ଦମନ ନୀତି ଅବଲମ୍ବନ କରିପାରନ୍ତି ବୋଲି ଆମ୍ଭମାନଙ୍କ ମନରେ ନାନାପ୍ରକାର ଆଶଙ୍କା ଜାତହେଲା।

ଦୁଃଖର କଥା, ବାବୁ ହରେକୃଷ୍ଣ ମହତାବ ସେହିଦିନ ରଣପୁରରେ ଯାଇ ପହୁଞ୍ଚି ବଜେଲଗେଟ୍ କ୍ଷତବିକ୍ଷତ ହୋଇ ମରି ପଡ଼ିଥିବା ଭୟଙ୍କର ଦୃଶ୍ୟ ସ୍ୱଚକ୍ଷୁରେ ଦେଖି ଆସିଲେ। ଫେରିଲା ବେଳକୁ ରାଜ୍ୟ ଛାଡ଼ି ପଳାଇ ଯିବାକୁ ପ୍ରଜାମାନଙ୍କୁ ଉପଦେଶ ଦେଇଥିଲେ। ମହତାବାବୁ ତାଙ୍କ ତଦନ୍ତ ରିପୋର୍ଟ ପ୍ରକାଶ ପାଇଲା ପରେ ଗଡ଼ଜାତ ପ୍ରଜା ଓ ରାଜାମାନଙ୍କ ସହିତ ବ୍ୟକ୍ତିଗତ ସଂପର୍କ ସ୍ଥାପନ କରି ନାନା ପ୍ରଶ୍ନ ସମାଧାନ କରିବାକୁ ଅବିରାମ ପ୍ରୟାସ କରୁଛନ୍ତି। ଅନେକ ବିଷୟରେ ପଲିଟିକାଲ ଏଜେଣ୍ଟଙ୍କ ସହିତ ମଧ ପତ୍ର ବ୍ୟବହାର କରୁଛନ୍ତି। ବଜେଲ୍‌ଗେଟ୍ ସାହେବ ରଣପୁର ଯାଉଥିବାର ଜାଣି, ସେ ରଣପୁର ଯାଇଥିଲେ। ଉଦ୍ଦେଶ୍ୟ, ରାଜାସାହେବ ଓ ପଲିଟିକାଲ ଏଜେଣ୍ଟ, ଉଭୟଙ୍କ ସହିତ କଥୋପ କଥନ କରି ପ୍ରଜା-ସମ୍ମିଳନୀର ଦାବୀ ସବୁର ବିଚାର ଆଲୋଚନା କରିବା। କିନ୍ତୁ ରଣପୁରରେ ଉପସ୍ଥିତ ହୋଇ ଯେଉଁ ଦୃଶ୍ୟ ଦେଖିବାକୁ ପାଇଲେ, ତହିଁରେ ସେ ବ୍ୟଥିତ ଓ ଚିନ୍ତିତ ହୋଇ ତତ୍‌କ୍ଷଣାତ୍ ସେ ସ୍ଥାନରୁ ଫେରି ଆସିଲେ। ଗଡ଼ଜାତ ପ୍ରଜା-ଆନ୍ଦୋଳନ ସହିତ ସଂପର୍କ ରଖିଥିବାରୁ ଏହି ହତ୍ୟାକାଣ୍ଡ ଆମ୍ଭମାନଙ୍କ ମନରେ ଯେ ପ୍ରକାର ଭୟ ଓ ବିପଦର ଆଶଙ୍କା ସୃଷ୍ଟି କରିଥିଲା ତାହା ସାଧାରଣ ଲୋକେ କଳ୍ପନା କରିପାରିବେ ନାହିଁ।

ଦୁଃଖର କଥା, ଇଂରେଜ ସରକାରଙ୍କ ପୂର୍ବ ଅଧିକାର ପ୍ରଦେଶମାନଙ୍କରେ ଆଉ ନାହିଁ। ତଥାପି ଲାଟସାହେବଙ୍କ ଅଖଣ୍ଡ କ୍ଷମତା ରହିଛି। ମନ୍ତ୍ରୀମାନେ ତାଙ୍କ କଥା ନ ଶୁଣିଲେ, ଲାଟସାହେବ ତାଙ୍କ କ୍ଷମତା ବଳରେ ମନ୍ତ୍ରୀସଭା ଭାଙ୍ଗି ଦେଇ ସମସ୍ତ ଶାସନଭାର ନିଜ ହାତକୁ ନେଇ ପାରନ୍ତି। କିନ୍ତୁ ଭାରତର ରାଜନୈତିକ ପରିସ୍ଥିତିରେ ପ୍ରଦେଶର ଲାଟ ସେପରି କରିବାକୁ ଗଲେ ଅବସ୍ଥା ଅସମ୍ଭାଳ ହୋଇ ଉଠିବ। ସୁତରାଂ ରଣପୁରକୁ ସମସ୍ତ ପୋଲିସ ଫଉଜ ପଠାଇବାକୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ ସମ୍ମତି ପ୍ରଦାନ କଲେ ନାହିଁ। ମହତାବବାବୁଙ୍କ ପରାମର୍ଶରେ ରଣପୁର ପ୍ରଜା ରାଜ୍ୟ ଛାଡ଼ି ପଳାଇଥାନ୍ତି। ରଣପୁର ରାଜ୍ୟ ଜନଶୂନ୍ୟ ହୋଇ ଯାଇଛି। ଯଥା ସମୟରେ ରଣପୁରର ସମସ୍ତ ପ୍ରଜା ଫେରି ଆସିଲେ। ବିଶେଷ ବିଚାରକର୍ତ୍ତା ନିଯୁକ୍ତ ହୋଇ ରଣପୁର ହତ୍ୟାକାଣ୍ଡ ବିଚାର ହୋଇଥିଲା। ଏହି ମକଦ୍ଦମାରେ ମହତାବବାବୁଙ୍କୁ ଜଡ଼ିତ କରାଇ ଫାଶୀକାଠରେ ଝୁଲାଇ ଦେବାର ମସୁଧା କରାଯାଇଥିଲା ଏବଂ ଆମ୍ଭମାନଙ୍କ ମଧ୍ୟରୁ କେତେ ଜଣଙ୍କୁ ତହିଁରେ ଜଡ଼ିତ କରିବାର ପ୍ରଶ୍ନ ମଧ ଉଠିଥିଲା। ସ୍ୱର୍ଗୀୟ ଚିନ୍ତାମଣି ଆଚାର୍ଯ୍ୟ ସେତେବେଳେ ରଣପୁର ମକଦ୍ଦମାରେ ସରକାରୀ ଓକିଲ ନିଯୁକ୍ତ ହୋଇଥିଲେ। ତାହାଙ୍କ ଠାରୁ ମୁଁ ଏହାର ସଠିକ ସମ୍ବାଦ ପାଇଛି। ତାଛଡ଼ା ଆହୁରି ଅନେକ ଘଟଣାରେ ଇଂରେଜ ସରକାରଙ୍କ ରାଜନୈତିକ ବିଭାଗ ଏପରି ମସୁଧା କରିଥିବାର ସଂକେତ ଜଣା ପଡ଼ିଛି। ଆଉ କାହାରି ମନକଥା ମୁଁ କହି ନ ପାରେ କିନ୍ତୁ ଏ ପ୍ରକାର ସଂକେତ ପାଇ ପ୍ରଜା-ଆନ୍ଦୋଳନ ତୀବ୍ର

ଆକାର ଧାରଣ କରିଥିବା ଗଡ଼ଜାତ ରାଜ୍ୟ ସବୁରେ ଇଂରେଜ ସରକାର ଭୟାବହ କାଣ୍ଡ ସୃଷ୍ଟି କରି ଦେଇ ପାରନ୍ତି ବୋଲି ଚିନ୍ତା କରି ମୋ ମନ ଉଦ୍‌ବେଗ ହୋଇ ଉଠିଥିଲା। ଦଶପଲ୍ଲା କନ୍ଧମେଳି ଦମନର ଭୟାବହ ଦୃଶ୍ୟ ମୋର ମନେ ପଡ଼ି ଯାଇଥାଏ। ବେଳେବେଳେ ଗଡ଼ଜାତ ରାଜ୍ୟରେ ପ୍ରବେଶ କରି ପ୍ରଜା-ଆନ୍ଦୋଳନରେ ସକ୍ରୀୟ ଅଂଶ ଗ୍ରହଣ କରିବାକୁ ମନ ଉଦ୍‌ବେଗ ହୋଇ ଉଠେ। କିନ୍ତୁ ମତେ ମ୍ୟାଲେରିଆ ଜ୍ୱର ଓ ଅତି ଭୟଙ୍କର ଭାବରେ ଶ୍ୱାସରୋଗ ଅଣାୟତ୍ତ କରିଥାଏ। ଆଶ୍ରମ ସଂକ୍ରାନ୍ତ ନେଇ ମୋ ମନ ଏକ ପ୍ରକାର ଭାଙ୍ଗି ପଡ଼ିଥାଏ କହିଲେ ଚଳେ। ମୁଁ କିଛି ଆଉ କରି ପାରି ନାହିଁ।

ଆଜକୁ ଦୁଇ ତିନି ବର୍ଷ ହେବ ମୁଁ ଆଉ ମହାତ୍ମାଗାନ୍ଧୀଙ୍କ ନିକଟ ଯାଉ ନାହିଁ କିମ୍ବା ଜଣ କରୁଛି, କିଛି ତାଙ୍କୁ ଜଣାଉ ନାହିଁ। କିନ୍ତୁ ଗାନ୍ଧିଜୀ ମତେ ଭୁଲି ଯାଇ ନାହାନ୍ତି। ଓଡ଼ିଶାର ଯେତେବେଳେ ଯାହାକୁ ଓ୍ୟାର୍ଦ୍ଧାରେ ଦେଖନ୍ତି, ତାଙ୍କୁ ମୋ କଥା ପଚାରନ୍ତି। ମୁଁ ତାଙ୍କ ନିକଟ ଯାଉ ନ ଥିବାର କାରଣ ବୁଝିବାକୁ ଇଚ୍ଛା କରନ୍ତି। କିନ୍ତୁ ଏ ସମ୍ବାଦ ମତେ କେହି ଦେଇ ନାହାନ୍ତି, କେବଳ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଥରେ ଏକଥା ମତେ କହି ତାଙ୍କ ସଙ୍ଗରେ ଓ୍ୟାର୍ଦ୍ଧା ଯାଇ ଗାନ୍ଧିଜୀଙ୍କ ସହିତ ସାକ୍ଷାତ କରିବାକୁ ଅନୁରୋଧ କରିଥିଲେ। ଗୋପବନ୍ଧୁ ଥରେ ଏହି କଥା ମଧ୍ୟ ମତେ ଲେଖିଥିଲେ।

## ଓଡ଼ିଶାରେ ଗାନ୍ଧୀ ସେବାସଂଘ

୧୯୩୪ ମସିହାରେ ଉତ୍କଳରେ ଗାନ୍ଧୀଜୀଙ୍କ ହରିଜନ ପଦଯାତ୍ରା ପରଠାରୁ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଗାନ୍ଧୀ ସେବାସଂଘରେ ଯୋଗଦେଇ ଯାଜପୁର ସବ୍‌ଡ଼ିଭିଜନର ବରୀ ଗ୍ରାମକୁ ତାଙ୍କ କର୍ମକେନ୍ଦ୍ର ରୂପେ ବାଛିଛନ୍ତି। ଗାନ୍ଧୀଜୀଙ୍କ କାର୍ଯ୍ୟକ୍ରମର ପ୍ରତ୍ୟେକ କର୍ମପଦ୍ଧତିକୁ ଗୋପବାବୁ ଆଦରି ନେଲେ। ବରୀଠାରେ ବିଭିନ୍ନ ପ୍ରକାର କର୍ମକେନ୍ଦ୍ର ଖୋଲାଗଲା। ବରୀ ହୋଇଛି ଓଡ଼ିଶା ରାଜନୀତିର ଜୀବନ୍ତ ପ୍ରତିମୂର୍ତ୍ତି। ଓଡ଼ିଶାର ସବୁ ନେତୃସ୍ଥାନୀୟ କର୍ମୀ ବରୀକୁ ତୀର୍ଥକ୍ଷେତ୍ର ବୋଲି ବିଚାରୁଛନ୍ତି। ବାହାରୁ ଯେ କେହି ସଂଗଠକ କର୍ମୀ ଅବା ନେତା ଆସୁଛନ୍ତି, ସମସ୍ତେ ବରୀ ପରିଦର୍ଶନ କରିବାକୁ ପ୍ରଧାନ କାମ କରିଛନ୍ତି। ଓଡ଼ିଶାର ଅଧିକାଂଶ କର୍ମୀ ଗୋପବାବୁଙ୍କୁ ବାପା ଏବଂ ରମା ଦେଇଙ୍କୁ ବୋଉ ବୋଲି ଡାକିବାକୁ ଆରମ୍ଭ କରିଛନ୍ତି। ଗାନ୍ଧୀଜୀଙ୍କ ନିକଟ ମୁଁ ଖଣ୍ଡିଏ ପତ୍ର ଲେଖିବାରୁ, ବରୀ ଯାଇ ଗୋପବାବୁଙ୍କ ସହିତ କାର୍ଯ୍ୟ କରିବାକୁ ସେ ମତେ ପରାମର୍ଶ ଦେଇଛନ୍ତି। ବରୀ ଯିବାକୁ ମୋ ମନରେ ଆଗ୍ରହ ଜାତ ହୋଇନାହିଁ କିମ୍ବା ଓ୍ୟାର୍ଦ୍ଧା ସେବାଗ୍ରାମ ଯିବାକୁ ମୋ ମନ ଡାକୁ ନାହିଁ। ମୁଁ ରାଗ ଓ ଅଭିମାନରେ ଗାନ୍ଧୀଙ୍କ କଥା ଶୁଣୁ ନାହିଁ କିମ୍ବା ଦେଖାସାକ୍ଷାତ କରିବା ପାଇଁ

ମନ ବଳାଉ ନାହିଁ। ଗାନ୍ଧୀଜୀ ମୋଠାରୁ ମୋ କଥା ନ ଶୁଣି ଯଦି ମୋ ବିରୁଦ୍ଧରେ କିଛି ଲେଖିଲେ, ତେବେ ମୁଁ ଆଉ କାହିଁକି ଯିବି।

ଗାନ୍ଧୀଜୀ ଭାରତକୁ ଫେରିବା ପୂର୍ବରୁ ମୁଁ ଦେଶ କାର୍ଯ୍ୟ କରିବାକୁ ବିପୁଳ ପ୍ରଲୋଭନ ତ୍ୟାଗ କରି ଜୀବନକୁ ବିପଦ ସଂକୁଳ କରିଥିଲି। ଦଶପଲ୍ଲା ମେଲିରେ ମୋର ଫାଶୀ କିମ୍ବା ଦ୍ୱୀପାନ୍ତର ସୁଦ୍ଧା ହୋଇଥାନ୍ତା। ସେଥିରୁ ଉଦ୍ଧାର ପାଇବା ପାଇଁ ମୋର ଭରସା ନ ଥିଲା। କିନ୍ତୁ ଘଟଣାକ୍ରମେ ସେଥିରୁ ରକ୍ଷା ପାଇଛି। ହିଂସାନୁମୋଦିତ ମାର୍ଗରେ ପରିଚାଳିତ ହୋଇ ଦେଶର ସ୍ୱାଧୀନତା ଲାଭ କରିବା ଉଦ୍ଦେଶ୍ୟରେ କାର୍ଯ୍ୟ କରି ନିରାଶାବାଦୀ ହୋଇ ଜୀବନର ବ୍ୟର୍ଥତା ଅନୁଭବ କରୁଥିବା ସମୟରେ ଗାନ୍ଧୀଜୀଙ୍କ ବାର୍ତ୍ତାରେ ମୁଁ ନୂତନ ଆଲୋକ ଦେଖିବାକୁ ପାଇଲି। ୧୯୧୮ ମସିହା ନଭେମ୍ବର ମାସରେ ଗାନ୍ଧୀଜୀଙ୍କ ଆଶ୍ରମରେ ଯୋଗ ଦେଇଥିଲି। ଗାନ୍ଧିଜୀଙ୍କ ଆଶୀର୍ବାଦ ଲାଭ କରିଥିଲି। କାର୍ଯ୍ୟର ପରିସର ଓ ପରିମାଣ ଅଧିକ ହେଉଥିଲା। ଦୁର୍ଭାଗ୍ୟବଶତଃ ସେଥିରୁ ବଞ୍ଚିତ ହୋଇଛି। ଗୀତାରେ ଅଛି, ପତ୍ର କିମ୍ବା ଫୁଲଟିଏ ହେଲେ ମଧ ହୃଦୟର ଭକ୍ତି ସହିତ ତାହା ଅର୍ପଣ କରି ପାରିଲେ, ତହିଁରେ ମନୁଷ୍ୟ ଜୀବନର ଲକ୍ଷ୍ୟସାଧିତ ହୋଇପାରେ। କର୍ମ କିଛି ନୁହେଁ, ବୁଦ୍ଧି ଓ ହୃଦୟର ଭାବନା ଅସଲ କଷଟିପଥର। ମୁଁ ଯେତିକି ପାରିବି କରିବି। ହୃଦୟରେ କୌଣସି ପ୍ରକାର ସ୍ୱାର୍ଥଭାବ ନରଖି, ଦେଶବାସୀଙ୍କ ସେବାରେ ନିଜର ମନପ୍ରାଣ ନିୟୋଜିତ କରି ପାରିଲେ ଯଥେଷ୍ଟ ହେଲା। ଏହିପରି ଭାବନାରେ ପ୍ରଭାବିତ ହୋଇ, ମୁଁ ନୂତନ ଆଲୋକର ଅନୁସନ୍ଧାନରେ ବସିଛି। ସାଧାନୁସାରେ ସେବା କାର୍ଯ୍ୟକରୁଛି। ଗ୍ରାମରେ ସଭା ସମିତି କରି ଦେଶର ଭଲମନ୍ଦ କଥା ଶୁଣାଉଛି। ଭବିଷ୍ୟତର ଚିନ୍ତା କେବଳ ନୂତନ କର୍ମ ମାର୍ଗର ଅନ୍ୱେଷଣ।

ଏହି ସମୟରେ ଗାନ୍ଧୀନୀତିର ଅନ୍ଧାନୁସରଣ ଦେଖି ମୋ ମନରେ ଭୀଷଣ ପ୍ରତିକ୍ରିୟା ଭାବ ସୃଷ୍ଟି ହେଲା। ଗାନ୍ଧୀନୀତି ହୃଦୟରେ କର୍ମପ୍ରେରଣା ଭାବ ଯେପରି ଜାଗ୍ରତ କରାଏ, ମନୁଷ୍ୟ ଚିନ୍ତାଶକ୍ତିକୁ ସେପରି ପ୍ରଖର କରାଏ। କିନ୍ତୁ ଓଡ଼ିଶାରେ ଏ ମହାନ୍ ଶକ୍ତିର ଅନ୍ଧାନୁକରଣ ମନୁଷ୍ୟକୁ କର୍ମବୀର ନ କରି କର୍ମଶୂନ୍ୟ ବନେଇ ଦେଉଛି। ଚିନ୍ତାଶକ୍ତି ସ୍ଥବିର ହୋଇଯାଉଛି। ବେଶଭୂଷା ଓ ଖାଦ୍ୟପେୟରେ ଗାନ୍ଧୀନୀତି ପର୍ଯ୍ୟବେଶିତ ହୋଇଯାଇଛି। ଆଣ୍ଠୁ ଲୁଚୁ ନ ଥିବା ଖଣ୍ଡିଏ ଛୋଟ ଖଦଡ଼ ପିନ୍ଧିବା, ସମସ୍ତଙ୍କୁ ଦେଖାଯାଉଥିବା ଭଳି ଅଣ୍ଟାରେ କଣ୍ଟାଟିଏ ଖୋସିବା, ଛୋଟ ଚାଦର ଖଣ୍ଡିଏ ଧରି ଖଦଡ଼ ଝୁଲାଟିଏ କାନ୍ଧରେ ଝୁଲାଇ, ସବୁବେଳେ ଲୋକ ଦେଖିବାକୁ ତକଲୀରେ ସୂତା କାଟିବା ହେଲା ପ୍ରଥମ କାର୍ଯ୍ୟ। ତାରପର ସକାଳୁ ଚାରିଟାରେ ଉଠି ଗାନ୍ଧୀଜୀଙ୍କ ପ୍ରାର୍ଥନା ଶ୍ଳୋକକୁ ଶୁଆପରି ଆବୃତ୍ତି କରିବା—ହଗିକରି ମାଟି ଘୋଡ଼େଇବା—ଅରୁଆ ଭାତ ଓ ସିଝା ତରକାରି ଖାଇବା—ସନ୍ଧ୍ୟାରେ ପୁଣି ସେହିପରି

ପ୍ରାର୍ଥନାର ପୁନରାବୃତ୍ତି କରିବାରେ ଗାନ୍ଧୀନୀତି ପୂର୍ଣ୍ଣତାପ୍ରାପ୍ତ ହୋଇଗଲା। କୌଣସି କଥାର ଯୁକ୍ତିତର୍କ ପଡ଼ିଲେ, ଏହା ଗାନ୍ଧୀନୀତିର ବିରୁଦ୍ଧ କହି ନୀରବ ରହିବା, ନୂଆ କରି କିଛି କହିଲେ ତାହା ନ ଶୁଣି ସେଥିପ୍ରତି ଅସହିଷ୍ଣୁ ଭାବ ପ୍ରକାଶ କରିବା ଓଡ଼ିଶାରେ ଗାନ୍ଧୀନୀତି ଅନୁସରଣ କରୁଥିବା କର୍ମୀମାନଙ୍କର ହେଲା ପ୍ରଧାନ ଗୁଣ। ଶ୍ରୀ ଗୋପବନ୍ଧୁ ଚୌଧୁରୀଙ୍କ ଚାଲିଚଳଣ ଦେଖି ସେ ଗାନ୍ଧୀଜୀଙ୍କ ଜଣେ ନକଲି ଅବତାର ବୋଲି ମୋ ମନରେ ଭାବ ଜାଗ୍ରତ ହୋଇଛି। ସେତେବେଳକାର ମୋର ମନର ଅବସ୍ଥା ଯାହା ହୋଇଥିଲା ତାହା ମୁଁ ଲେଖୁଛି। ଓଡ଼ିଶାର ରାଜନୈତିକ ଜୀବନ ବିକାଶରେ ଏପରି ଦୃଶ୍ୟ ଗୋଟିଏ ବିପଦ ବୋଲି ମୁଁ ଭାବିଛି।

ଗାନ୍ଧୀଯୁଗରେ ଭାରତରେ ଅଭିନବ ପରିବର୍ତ୍ତନ ସବୁ ଘଟିଯାଉଛି। କେତେ ନୂତନ ଅନୁଷ୍ଠାନ ଓ ଶିକ୍ଷାକେନ୍ଦ୍ର ଆଦି ନୂତନ କର୍ମକେନ୍ଦ୍ର ଅନ୍ୟ ସବୁ ପ୍ରଦେଶରେ ସ୍ଥାୟୀ ରୂପରେ ଗଢ଼ା ହୋଇ ଯାଉଛି। ସ୍ଥାୟୀ ଭାବରେ କୌଣସି ଗୋଟିଏ କାର୍ଯ୍ୟର ଚିହ୍ନ ରହୁନାହିଁ। ଶ୍ରୀ ଗୋପବନ୍ଧୁ ଚୌଧୁରୀ ସବୁ କାମକୁ ଆଦରିଛନ୍ତି। ଅର୍ଥ ଓ କର୍ମୀର ତାଙ୍କର ଅଭାବ ନାହିଁ। ତାଙ୍କ ପରିବାରବର୍ଗ ସମସ୍ତଙ୍କୁ ସେ ଦେଶସେବା କାର୍ଯ୍ୟରେ ବ୍ରତୀ କରାଇ ପାରିଛନ୍ତି। ତଥାପି ସ୍ଥାୟୀ ଭାବରେ ଗାନ୍ଧୀ ଯୁଗର କୌଣସି ଗୋଟିଏ କର୍ମପଦ୍ଧତି ଦୃଢ଼ ଭାବରେ ସଂଗଠନ କରିବାକୁ ସେ କ୍ଷମ ହୋଇ ନାହାନ୍ତି। ବଡ଼ ବଡ଼ କଥା କହି ସବୁ କାର୍ଯ୍ୟ ଧରି ବସି ଖାଲି ପବନରେ ଠେଙ୍ଗା ବୁଲାଇଲା ଭଳି କାର୍ଯ୍ୟ କଲେ ସେ କାର୍ଯ୍ୟର କୌଣସି ମହତ୍ତ୍ୱ ଚିରସ୍ଥାୟୀ ହୁଏ ନାହିଁ। ଗାନ୍ଧୀଯୁଗରେ ଓଡ଼ିଶାରେ ଆମ୍ଭେମାନେ କିଛି ଗଢ଼ି ପାରିନାହୁଁ କିମ୍ବା ଗଢ଼ିବାକୁ ମନୋବୃତ୍ତି ନାହିଁ ବୋଲି ମୁଁ ସ୍ପଷ୍ଟ ଦେଖିବାକୁ ପାଉଛି। ତେଣୁ ବରୀ ଯିବାକୁ ମୋର ମନ ହେଉନାହିଁ। ମୁଁ କଣ କରିବି ଏହି ଚିନ୍ତା ମତେ ଘାରୁଛି।

ପଚିଶ ଏକର ଜମିରେ କଲକତ୍ତାଠାରେ ଗୋଟିଏ ଶାଖା ଆଶ୍ରମ ସ୍ଥାପନ କରି ଆଶ୍ରମର ପରିସର ବଢ଼ାଇ ଦେଶସେବା କରିବାକୁ ଗୋଟାଏ ବିରାଟ କଳ୍ପନା କରିଥିଲି। ବର୍ତ୍ତମାନ ସବୁ ଶୂନ୍ୟ। ନିର୍ଭରଯୋଗ୍ୟ ସହକର୍ମୀ ନାହାନ୍ତି। ଅନ୍ୟ କାହାଠାରୁ ସାହାଯ୍ୟ ଓ ସହଯୋଗ ପାଇନାହିଁ। ଆଶ୍ରମ ବିରୁଦ୍ଧରେ ଯେପରି ବାତାବରଣ ସୃଷ୍ଟି କରାଯାଇଛି ତହିଁର ବିଷମୟ ପରିଣାମ ମୋର ଜୀବନର ଗତି ଓ ଲକ୍ଷ୍ୟକୁ ପରିବର୍ତ୍ତନ ଘଟାଉ ଅଛି। ଗୋଟିଏ ସ୍ଥାୟୀ ଅନୁଷ୍ଠାନ ଗଢ଼ିବାକୁ ଯେଉଁସବୁ ଉପକରଣ ସୃଷ୍ଟି କରିଛି ଏବଂ ସଂଗ୍ରହ କରିଛି ସେ ସବୁର କିପରି କଣ ବ୍ୟବସ୍ଥା କରିବି ଏହି ଚିନ୍ତାରେ ମୁଁ ଅସ୍ଥିର। ସେ ସବୁ କୋଠାବାଡ଼ି ବିକ୍ରି କରି ଦେଇଥିଲେ କଲିକତାର କୌଣସି ଝୋଟ କମ୍ପାନୀ ହୁଏତ ଲକ୍ଷେ ଟଙ୍କା ଦେଇ କିଣି ନେବାକୁ ଦ୍ୱିଧା କରି ନ ଥାନ୍ତେ। ମୁଁ ଯେପରି ଉତ୍କଟ ଆର୍ଥିକ ଦୁର୍ଗତି ଭୋଗ କରିଛି, ତାହା ଭୋଗ କରିବାକୁ ପଡ଼ି ନ ଥାନ୍ତା। କିନ୍ତୁ ତାହା କରିବାକୁ ମନ ଡାକିଲା ନାହିଁ। କାରଣ

ତହିଁରେ ମୋର ମୃତ୍ୟୁ ଘଟିଥାନ୍ତା। ମୁଁ ବଞ୍ଚି ରହିବାକୁ ଇଚ୍ଛା କରେ। ଶରୀର ପତନରେ ମନୁଷ୍ୟର ମୃତ୍ୟୁ ହୁଏ ନାହିଁ, ଲକ୍ଷ୍ୟଭ୍ରଷ୍ଟ ହେଲେ ମନୁଷ୍ୟର ମୃତ୍ୟୁ ହୁଏ।

ସ୍ୱାର୍ଥ ସାଧନ କରିବାକୁ ଆଶ୍ରମ କାର୍ଯ୍ୟ ସ୍ଥଗିତ ରଖିନାହିଁ। ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ଦଣ୍ଡାୟମାନ ହେବାକୁ ସମର୍ଥ ହୋଇ ନ ପାରିବାରୁ ଆଶ୍ରମ କାର୍ଯ୍ୟ ବନ୍ଦ କରି ଦେଇଛି। ଏପରି କରିବାରେ ସ୍ୱାର୍ଥ ସାଧନ କରିବାର ତିଳେମାତ୍ର ଲିପ୍ସା ମୋର ନ ଥିଲା। ବଞ୍ଚି ରହିବା ଇଚ୍ଛାରେ ଆଶ୍ରମ ଭାଙ୍ଗି ଦେଲି। ଆଶ୍ରମ କାର୍ଯ୍ୟକ୍ରମରେ ଶିକ୍ଷା ପ୍ରଚାର ଗୋଟିଏ ପ୍ରଧାନ ଅଙ୍ଗ ଥିଲା। ସେହି ଶିକ୍ଷା ପ୍ରଚାର ଉଦ୍ଦେଶ୍ୟରେ ୧୯୪୨ ମସିହା ଜାନୁଆରୀ ମାସରେ ଗୋଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଆଶ୍ରମକୁ ପରିଣତ କଲି। କାରଣ ଶିକ୍ଷା ପ୍ରଚାର ବର୍ତ୍ତମାନ ଏକମାତ୍ର କାର୍ଯ୍ୟ ବୋଲି ମତେ ଜଣା ପଡ଼ିଲା। ଲୋକେ ମଧ ତାକୁ ସହଜରେ ଗ୍ରହଣ କରିଥିଲେ।

୧୯୩୯ ମସିହାରେ ଦ୍ୱିତୀୟ ମହାସମର ଆରମ୍ଭ ହେଲା। ଭାରତର ମତାମତ ନ ନେଇ ଇଂରେଜ ସରକାର ଭାରତକୁ ଯୁଦ୍ଧରେ ପୂରାଇବାରୁ କଂଗ୍ରେସ ପ୍ରଦେଶମାନଙ୍କରୁ ମନ୍ତ୍ରୀତ୍ୱ ଛାଡ଼ିଲେ। ଗାନ୍ଧୀଜୀ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ କଲେ। ଭାରତର ପ୍ରଥମ ସତ୍ୟାଗ୍ରହୀ ରୂପେ ଶ୍ରୀବିନୋବା ଭାବେଙ୍କୁ ଗାନ୍ଧୀଜୀ ବାଛିଥିଲେ। ଯେ କେହି ଇଚ୍ଛା କରିବ ସେ ସତ୍ୟାଗ୍ରହ କରିପାରିବ ନାହିଁ। ପ୍ରାଦେଶିକ କର୍ମକର୍ତ୍ତା ଜଣେ ନିଯୁକ୍ତ ହେଲେ। ସେ ଯାହାକୁ ଉପଯୁକ୍ତ ବିବେଚନା କରିବେ ସେ କେବଳ ସତ୍ୟାଗ୍ରହ କରିବ। ଏପରି ବ୍ୟକ୍ତି ବିଶେଷଙ୍କ ଉପରେ ସତ୍ୟାଗ୍ରହୀ ବାଛିବାର ସମସ୍ତ କ୍ଷମତା ଅର୍ପଣ କରାଯିବା ହେତୁ ଦଳଗତ ଭାବରେ ସତ୍ୟାଗ୍ରହୀ ବଛାଗଲେ। ନୀଳକଣ୍ଠବାବୁ ଆଉ ପ୍ରାଦେଶିକ କଂଗ୍ରେସ କମିଟି ସଭାପତି ନାହାନ୍ତି। ତାଙ୍କ ଦଳକୁ ପଟେଇ ଦିଆ ଗଲାଣି। କୋରାପୁଟର ଶ୍ରୀ ବିଶ୍ୱେସରାୟଙ୍କୁ ସଭାପତି କରାଯାଇଛି। ନୀଳକଣ୍ଠବାବୁଙ୍କ ସମର୍ଥକ ପୁଣି ଗାନ୍ଧୀଜୀଙ୍କ ଆର୍ଶୀବାଦରୁ ବଞ୍ଚିତ ହୋଇଥିବାରୁ ସତ୍ୟାଗ୍ରହ କରିବାକୁ ମୁଁ ଉପଯୁକ୍ତ ବିବେଚିତ ହେଲିନାହିଁ। ତେଣୁ ମୁଁ ମୋର ଆତ୍ମଜୀବନୀ ଲେଖି ୧୯୪୦ ମସିହାରେ ତାହାକୁ ପ୍ରକାଶ କଲି। ବର୍ତ୍ତମାନ ୧୯୪୨ ମସିହାରେ ଚମ୍ପାପୁର ଆଶ୍ରମକୁ ସ୍କୁଲରେ ପରିଣତ କଲି। କଳକଟା ଶାଖାଶ୍ରମ କୁଷ୍ଠାଶ୍ରମରେ ପରିଣତ ହେଲା। ଏହି ଉଭୟ କାର୍ଯ୍ୟରେ ମୋର ପ୍ରଧାନ ସହାୟକ ହିନ୍ଦ୍ ସେବକ ସମାଜର ସଭ୍ୟ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ। ଉଭୟ ଅନୁଷ୍ଠାନର ସେ ସଭାପତି ଓ ମୁଁ ସଂପାଦକ। କଳକଟା ଶାଖାଶ୍ରମ ଜମିବାଡ଼ି ଘର ଆଦି ସମସ୍ତ ଲକ୍ଷ୍ମୀନାରାୟଣବାବୁଙ୍କ କହିବା ଅନୁସାରେ ହିନ୍ଦ୍‌ସେବକ ସମାଜ ନାମରେ ରେଜିଷ୍ଟରୀ କରାଗଲା। ସ୍କୁଲର ପରିଚାଳନା କମିଟି ନାମରେ ଚମ୍ପାପୁର ଆଶ୍ରମର କୋଠାବାଡ଼ି ରେଜିଷ୍ଟରୀ କରିଦେଲି। ଲକ୍ଷ୍ମୀନାରାୟଣବାବୁ ସ୍କୁଲ ପାଇଁ କିଛି ଅର୍ଥ ସାହାଯ୍ୟ କରିଛନ୍ତି କିନ୍ତୁ ଧାନ, ଗୋରୁ ବଳଦ ଯାହା କିଛି ଥିଲା ସବୁ ବିକି ସ୍କୁଲ କାର୍ଯ୍ୟରେ ଲଗାଇଲି। କଟକ ଟ୍ରେଡ଼ିଙ୍ଗ୍

କମ୍ପାନୀରେ ମୋର ଦୁଇହଜାର ଟଙ୍କାର ଅଂଶ ଥିଲା। ସେଥିରୁ ବର୍ଷରେ ମୁଁ ତିନିଶହ ପର୍ଯ୍ୟନ୍ତ ଟଙ୍କା ପାଉଥିଲି। ତାକୁ ମଧ୍ୟ ବିକି ସ୍କୁଲ କାର୍ଯ୍ୟରେ ଖର୍ଚ୍ଚକଲି। ସ୍କୁଲ କାର୍ଯ୍ୟ ସଂପୂର୍ଣ୍ଣ ହେଲା। ୧୯୪୫ ରେ ମୁଁ ସ୍କୁଲ ଛାଡ଼ି ଚମ୍ପାପୁର ଚିରଦିନ ପାଇଁ ତ୍ୟାଗ କରି ଆସିଲି। ସେ ସ୍ଥାନ ମୁଁ ତ୍ୟାଗ କରିଛି ସତ କିନ୍ତୁ ସ୍ଥାନୀୟ ଅଧିବାସୀ ମତେ ଭୁଲିନାହାନ୍ତି କିମ୍ବା ଭୁଲି ପାରିବେ ନାହିଁ। ସେମାନଙ୍କ ଶ୍ରଦ୍ଧା ଭକ୍ତି ମୋ ପ୍ରତି ରହିଛି ଓ ରହିଥିବ ବୋଲି ମୋର ବିଶ୍ୱାସ। କାରଣ ନିସ୍ୱାର୍ଥଭାବରେ ଯଦି ମୁଁ ଲୋକସେବା କରିଛି ତାହା କଦାପି ଲୋପ ପାଇ ନ ପାରେ।

ଇତିମଧ୍ୟରେ ୧୯୪୨ ମସିହା ଓ ତା ପୂର୍ବରୁ ଓଡ଼ିଶାର ରାଜନୀତିରେ କେତେକ ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିଗଲାଣି। ୧୯୩୬ ମସିହାର ନିର୍ବାଚନରେ ଅକ୍ଳାନ୍ତ ପରିଶ୍ରମ କରି ପଣ୍ଡିତ ନୀଳକଣ୍ଠ ଦାସ ଓଡ଼ିଶାରେ କଂଗ୍ରେସକୁ ଜୟଯୁକ୍ତ କରିଥିଲେ। ସେଥିପାଇଁ ମୁଖ୍ୟମନ୍ତ୍ରୀ ହେବାକୁ ତାଙ୍କର ଏକାନ୍ତ ଇଚ୍ଛା ଥିଲା। ତାହାଙ୍କର ଉକ୍ତ ଇଚ୍ଛା ପୂରଣ କରିବାରେ ବାଧାପ୍ରାପ୍ତ ହୋଇ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଆସନ ଗ୍ରହଣ କରିଥିଲେ। କଂଗ୍ରେସ ମନ୍ତ୍ରୀମଣ୍ଡଳ ନାମରେ କେତେକ ଅଭିଯୋଗ ଆଣିବାରୁ ଶ୍ରୀ ରାଜେନ୍ଦ୍ର ପ୍ରସାଦ ଉକ୍ତ ଅଭିଯୋଗ ତଦନ୍ତ କରିବାକୁ କଟକକୁ ଆଗମନ କଲେ। ପୂର୍ବରୁ କୃଷକ ଆନ୍ଦୋଳନ ନେଇ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସହିତ ତାଙ୍କର ମନାନ୍ତର ଜାତ ହୋଇଛି। ନୀଳକଣ୍ଠବାବୁଙ୍କ ଦ୍ୱାରା ପରିଚାଳିତ ମାସିକ ନବଭାରତ କାଗଜରେ ଗୋଟିଏ ପ୍ରବନ୍ଧ ପ୍ରକାଶିତ ହୋଇଥିଲା। ଉକ୍ତ ପ୍ରବନ୍ଧର ବିଷୟବସ୍ତୁ ପାଠକରି ନବବାବୁ ଓ ମାଳତୀ ଦେବୀ, ବିଶେଷ ଭାବରେ ଦୁ ଖାଭିଭୂତ ହୋଇ ନୀଳକଣ୍ଠବାବୁଙ୍କ ପ୍ରତି କ୍ରୋଧଭାବ ଘୋଷଣା କରିଛନ୍ତି। ଶ୍ରୀଯୁକ୍ତ ରାଜେନ୍ଦ୍ରପ୍ରସାଦ ଉପରୋକ୍ତ ଅଭିଯୋଗ ବିଷୟ ନେଇ, ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ହିସାବରେ ନୀଳକଣ୍ଠବାବୁଙ୍କୁ ଡକାଇ କଥୋପକଥନ କରୁଥିବା ସମୟରେ ଶ୍ରୀମତୀ ମାଳତୀ ଦେବୀ ନୀଳକଣ୍ଠବାବୁଙ୍କ ପ୍ରତି ଅତ୍ୟନ୍ତ ଅଶୋଭନୀୟ ବ୍ୟବହାର ଦେଖାଇଲେ। ଯାହାର ଫଳରେ ଶ୍ରୀ ରାଜେନ୍ଦ୍ରବାବୁ, ଘଟଣାକୁ ଅଧିକ ଅପ୍ରୀତିକର କରିବାକୁ ନ ଦେବା ଇଚ୍ଛାରେ ସ୍ଥାନ ଛାଡ଼ି ଚାଲି ଆସିବାପାଇଁ ନୀଲକଣ୍ଠବାବୁଙ୍କୁ ଅନୁରୋଧ କଲେ। ନୀଳକଣ୍ଠବାବୁ ଅତିଶୟ ଅପମାନିତ ହୋଇ ରାଜେନ୍ଦ୍ରବାବୁଙ୍କ ନିକଟରୁ ଉଠି ଆସିଲେ। ରାଜେନ୍ଦ୍ରବାବୁ ମଧ୍ୟ ଅଭିଯୋଗ ବିଷୟରେ ଅଧିକ ବୁଝାଶୁଣା ନ କରି ଓଡ଼ିଶାରୁ ଫେରି ଯାଇଥିଲେ। ତାରପର ବ୍ରହ୍ମପୁରଠାରେ ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ବସିଲା। ନୀଳକଣ୍ଠବାବୁଙ୍କ ପରିବର୍ତ୍ତେ ପ୍ରସ୍ତାବ ଶ୍ରୀ ରାଧାକୃଷ୍ଣ ବିଶ୍ୱେଶରାୟଙ୍କୁ ଉତ୍କଳ ପ୍ରାଦେଶିକ କଂଗ୍ରେସର ସଭାପତି କରାଗଲା। ନୀଳକଣ୍ଠବାବୁଙ୍କୁ ଏକପ୍ରକାର କଂଗ୍ରେସରୁ ତଡ଼ି ଦିଆଗଲା ବୋଲି କୁହାଯାଇପାରେ। ଓଡ଼ିଶା କଂଗ୍ରେସର ଦଳଗତ ରାଜନୀତିରେ ନୀଳକଣ୍ଠବାବୁ ସମ୍ପୂର୍ଣ୍ଣ ରୂପେ ପରାସ୍ତ ହୋଇ କଂଗ୍ରେସକୁ ଛାଡ଼ିଲେ। ସେଠାରେ ଆଉ ତାଙ୍କର ସ୍ଥାନ ରହିଲା ନାହିଁ। ସେ ସୁବାଷବାବୁଙ୍କ ଫରୱାଡ଼୍ ବ୍ଲକରେ ଯୋଗଦେଇ ଓଡ଼ିଶାରେ

ଏକ ମନ୍ତ୍ରୀମଣ୍ଡଳ ଗଢ଼ିବାକୁ ଚେଷ୍ଟାକଲେ। ଓଡ଼ିଶା କଂଗ୍ରେସ ଦଳରୁ ଲାଟ୍‌ଧାରାର ସଭ୍ୟ କେତେଜଣ ବ୍ୟକ୍ତିଗତ ସତ୍ୟାଗ୍ରହ କରି ଜେଲରେ ଥାନ୍ତି। ନୀଳକଣ୍ଠବାବୁ ଗୋଦାବରୀଶ ମିଶ୍ରଙ୍କ ସହିତ ମିଶି ସାତ ଆଠଜଣ ପର୍ଯ୍ୟନ୍ତ କଂଗ୍ରେସ ସଭ୍ୟ ହାତ କରି, ଓଡ଼ିଶାରେ ମିଳିତ ମନ୍ତ୍ରୀମଣ୍ଡଳ ଗଠନ କଲେ। ପାରଳାଖେମୁଣ୍ଡି ମହାରାଜା ମୁଖ୍ୟମନ୍ତ୍ରୀ ହୋଇଥିଲେ। ପାରଳା ମହାରାଜାଙ୍କ ମନ୍ତ୍ରୀମଣ୍ଡଳ ଗଠନ ନୀଳକଣ୍ଠବାବୁଙ୍କ କଂଗ୍ରେସ ବିରୁଦ୍ଧରେ ବିଦ୍ରୋହର ପରିଣାମ ବ୍ୟତୀତ ଅନ୍ୟ କିଛି ନୁହେଁ। ଦଳଗତ ରାଜନୀତି ଦ୍ୱାରା କଂଗ୍ରେସରେ ତାଙ୍କୁ ତଣ୍ଟିଚିପି ରାଜନୈତିକ ହତ୍ୟା କରାଗଲା। ମରଣର ଉପକଣ୍ଠରେ ତାଙ୍କୁ ପହଞ୍ଚାଇ ଦିଆଗଲା। ରାଜନୈତିକ କ୍ଷେତ୍ରରେ ଶ୍ୱାସରୁଦ୍ଧ ହୋଇ ଛଟପଟରେ ପ୍ରାଣଯିବା ଅପେକ୍ଷା ବିଦ୍ରୋହ କରିବାକୁ ସେ ଜୀବନର ବିକାଶ ବୋଲି ମନେ କରିଥିଲେ। ମୋର ବିଶ୍ୱାସ ଏହାଛଡ଼ା ତାଙ୍କର ଗତ୍ୟନ୍ତର ନ ଥିଲା। ଓଡ଼ିଶାରେ କଂଗ୍ରେସ ବିରୁଦ୍ଧରେ ବିଦ୍ରୋହ କରି ମିଳିତ ମନ୍ତ୍ରୀମଣ୍ଡଳ ଗଠନ କରିବାରେ ସେ ଅସୀମ ଧୈର୍ଯ୍ୟ ଓ ସାହସର ପରିଚୟ ଦେଇଛନ୍ତି। ୧୯୪୨ ମସିହା ଅଗଷ୍ଟ ମାସରେ କଂଗ୍ରେସ 'ଭାରତ ଛାଡ଼' ପ୍ରସ୍ତାବ ଗ୍ରହଣ କଲା। ମହାତ୍ମାଗାନ୍ଧୀ ପ୍ରଭୃତି କଂଗ୍ରେସର ତୁଙ୍ଗ ନେତୃବୃନ୍ଦ ଅତର୍କିତ ଭାବରେ ଧରାହୋଇ ବନ୍ଦୀ ହେଲେ। କଂଗ୍ରେସ ବେଆଇନ ଘୋଷିତ ହେଲା। ଦ୍ୱିତୀୟ ମହାସମର ପୃଥିବୀ ବ୍ୟାପି ଗଲାଣି। ଇଂରେଜ ସରକାର ବର୍ମାରେ ଅତି ଶୋଚନୀୟ ଭାବରେ ପରାସ୍ତ ହେଇ ଜାପାନ ନିକଟରେ ଆତ୍ମସମର୍ପଣ କରିଛି। କେଉଁ ମୁହୂର୍ତ୍ତରେ ଜାପାନ ଭାରତ ଆକ୍ରମଣ କରିବ, କିଏ ଜାଣେ ? ଜାପାନର ଆକ୍ରମଣରୁ ଦେଶକୁ ରକ୍ଷା କରିବାପାଇଁ ଇଂରେଜ ସରକାର କଂଗ୍ରେସର ସାହାଯ୍ୟ ଲୋଡ଼ିଲେ। ଭାରତର ଶାସନ କ୍ଷମତା ବିଶେଷତଃ, ସୈନ୍ୟ ବିଭାଗର ପରିଚାଳନା ଦାୟିତ୍ୱ ପୂରାମାତ୍ରାରେ ଭାରତ ହାତରେ ନ ଦେଲେ, ଯୁଦ୍ଧରେ ସାହାଯ୍ୟ କରିବାକୁ କଂଗ୍ରେସ ଦେଶବାସୀଙ୍କୁ ଡାକରା ଦେଇପାରିବ ନାହିଁ ବୋଲି କଂଗ୍ରେସ ପରାମର୍ଶ ଦେଲା। କଂଗ୍ରେସର ପରାମର୍ଶ ଇଂରେଜ ସରକାର ଗ୍ରହଣ କଲେ ନାହିଁ। ଭାରତ ଉପରେ ଆକ୍ରମଣ ହେବ ଏଥିରେ ଆଉ କାହାରି ମନରେ ସନ୍ଦେହ ରହିନାହିଁ। କିନ୍ତୁ ଭାରତବାସୀ କାହାରି ଶତ୍ରୁ ନୁହନ୍ତି। ସୁତରାଂ ଭାରତ ଉପରେ ଆକ୍ରମଣ ହେବାର କାରଣ କଣ ? ଇଂରେଜ ଶାସନ ଏପରି ଆକ୍ରମଣର ମୂଳ କାରଣ। ସୁତରାଂ ଇଂରେଜମାନେ ଏ ଦେଶ ତ୍ୟାଗକରି ଗଲେ ଭାରତ ଆକ୍ରମଣ ହେବାର ଆଉ କୌଣସି କାରଣ ରହିବ ନାହିଁ। ଏହି ସତ୍ୟକୁ ଗାନ୍ଧୀଜୀ ଉପଲବ୍ଧି କରିବାରୁ ଇଂରେଜ ସରକାରଙ୍କୁ ଭାରତ ଛାଡ଼ିବା ସକାଶେ ଆହ୍ୱାନ କରିଥିଲେ। ଭାଗ୍ୟର ବିପର୍ଯ୍ୟୟ ଘଟିଲେ ସବୁ ବିପରୀତ ଦେଖାଗଲା ପରି, କଂଗ୍ରେସର ଭାରତ ଛାଡ଼ ପ୍ରସ୍ତାବକୁ ଇଂରେଜ ସରକାରଙ୍କ ମନରେ ମହା ଆତଙ୍କ ସୃଷ୍ଟିକଲା। ଗାନ୍ଧୀଜୀଙ୍କ ସହିତ କଥାହୋଇ ଉପସ୍ଥିତ ପରିସ୍ଥିତିର ସମାଧାନର ବାଟ ଅନ୍ୱେଷଣ ନ କରି କଂଗ୍ରେସକୁ ଜବତ୍ କରିବାକୁ ସରକାରଙ୍କୁ ଡର ସହିଲା ନାହିଁ। କଂଗ୍ରେସର ନାମକୁ

ଲୁଚାଇ ଦେବାକୁ ଇଂରେଜ ସରକାର ବଦ୍ଧପରିକର ହୋଇ ପଡ଼ିଲେ। କଂଗ୍ରେସ ଲୋକଙ୍କୁ ଦେଖିଲେ ଗୋଡ଼େଇ ଧରିନେଲେ।

୧୯୪୨ ମସିହା ଜାନୁୟାରୀ ପହିଲା ତାରିଖରୁ ଆଶ୍ରମକୁ ସ୍କୁଲରେ ପରିଣତ କରି ସାରିଥିଲି। ଦଳଗତ ଅନ୍ତର୍ବିବାଦ ହେତୁ ଉତ୍କଳ କଂଗ୍ରେସ ସହିତ ମୋର ସାକ୍ଷାତ ସଂବନ୍ଧ ନ ଥିଲା କହିଲେ ଚଳେ। ଦେଶରେ ତ କଂଗ୍ରେସର କୌଣସି କାର୍ଯ୍ୟ ନ ଥିଲା। କଂଗ୍ରେସର ସଭ୍ୟ ସଗ୍ରହ କରି ଜିଲା ଓ ପ୍ରାଦେଶିକ କମିଟି ସବୁର ସଭ୍ୟ ହେବା ଥିଲା ଏକମାତ୍ର କାର୍ଯ୍ୟ। କଂଗ୍ରେସ ସଭ୍ୟ ସଂଗ୍ରହରୁ ସଂଗୃହିତ ଅର୍ଥ ଦେଶରେ କଂଗ୍ରେସ ଅନୁଷ୍ଠାନକୁ ବିସ୍ତାର ଓ ସବଳ କରିବାକୁ କାର୍ଯ୍ୟରେ ବ୍ୟୟ ନ ହୋଇ ଦଳସୃଷ୍ଟି କରିବା ଭଳି କାର୍ଯ୍ୟରେ ବ୍ୟୟ କରାଯାଉଥିଲା। କଂଗ୍ରେସ ସଭ୍ୟ ସଂଗ୍ରହ କରି ଗ୍ରାମ୍ୟ କମିଟି ଗଠନ କରିବାକୁ ରେଷ୍ଟାକରିବାର ସୁଯୋଗ ସୁବିଧା ମୁଁ ପାଇ ପାରିଲି ନାହିଁ। ଆଶ୍ରମକୁ ମଧ୍ୟ ଦୃଢ଼ଭାବରେ ସଂଗଠନ କରି ନ ପାରି ସ୍କୁଲ ଓ କୃଷ୍ଣାଶ୍ରମ ଦୁଇଟି ସଂଗଠନ ଆରମ୍ଭ କରିଛି। ଏପରି କରିବା ଆବଶ୍ୟକ ଜଣା ପଡ଼ିଲା। ପରିସ୍ଥିତିର ପରିବର୍ତ୍ତନରେ ଅନୁଷ୍ଠାନର କର୍ମ ପ୍ରଣାଳୀର ପରିବର୍ତ୍ତନ ଆବଶ୍ୟକ କରେ। ସୁତରାଂ କାର୍ଯ୍ୟର ଗତି ବଦଳାଇବାକୁ ମୁଁ ବାଧ୍ୟ ହେଲି। କଂଗ୍ରେସ ଭାରତ ଛାଡ଼ ପ୍ରସ୍ତାବ ଗ୍ରହଣ କଲାପରେ କଂଗ୍ରେସ ନେତୃବର୍ଗ ଓ ଜଣାଶୁଣା କର୍ମୀମାନେ ଧରାହୋଇ ଜେଲ ଗଲେ। ଭାରତ ଛାଡ଼ ପ୍ରସ୍ତାବରେ ସଂଗ୍ରାମର ଯେଉଁଳି କଳ୍ପନା କରାଯାଇଥିଲା, ତଦନୁସାରେ ଦେଶରୁ ଇଂରେଜ ସରକାରଙ୍କ ଚିହ୍ନ ଲୋପ କରିଦେଇ ପ୍ରଜାଶାସନ ଜାରୀ କରିବା ହେଲା ବଡ଼ କାମ। ସେପରି ଭାବରେ କୌଣସି ଅଞ୍ଚଳକୁ ସଂଗଠନ କରିବାକୁ ଓଡ଼ିଶାରେ ପ୍ରୟାସ କରାଯାଇ ନାହିଁ। ଜଣାଶୁଣା କଂଗ୍ରେସ କର୍ମୀ ହଠାତ୍ ଧରାହୋଇ ଯିବାରୁ ସେପରି କାର୍ଯ୍ୟ କରିବାକୁ କେହି ଆଉ ନ ଥିଲେ। ମୁଁ ଧରାହୋଇ ଜେଲ ଯିବାକୁ ପ୍ରସ୍ତୁତ ହୋଇଗଲି। କିନ୍ତୁ ମୁଁ ଧରା ହୋଇନାହିଁ। ପରେ ଶୁଣିବାକୁ ପାଇଲି ଧରିବାକୁ ପୋଲିସ କର୍ତ୍ତୃପକ୍ଷ ଯେଉଁ ନାମର ତାଲିକା ପାଇଛନ୍ତି ସେଥିରେ ମୋ ନାମ ନ ଥିବାରୁ ପୋଲିସ ମତେ ଧରିଲା ନାହିଁ। ପାରଳା ମହାରାଜାଙ୍କ ନିକଟରେ ପୋଲିସ ଯେଉଁମାନଙ୍କ ନାମ ଦେଇଥିଲେ, ମୋ ନାମ ତହିଁରୁ କାହାରି ଇଙ୍ଗିତରେ କାଟି ଦିଆ ଯାଇଥିଲା। ତେଣୁ ପୋଲିସ ମତେ ଧରିବାକୁ ଆସି ନାହାନ୍ତି। ପାରଳା ମନ୍ତ୍ରୀମଣ୍ଡଳ ଭାଙ୍ଗିଗଲା ପରେ ଏହା ମୁଁ ଜାଣି ପାରିଲି। ହଇଜାରୋଗ ପ୍ରବଳ ହେଲେ କାଳିସୀଙ୍କଠାରେ ଠାକୁରାଣୀ ଆବିର୍ଭାବ ହେଲା ଭଳି, ଦେଶରେ ବିଦେଶୀ ସରକାର ସହିତ ରାଜନୈତିକ ସଂଘର୍ଷ ଲାଗିଗଲେ କୌଣସି କଂଗ୍ରେସ କର୍ମୀ ସେହି ଭାବରେ ଅଭିଭୂତ ନ ହୋଇ ରହି ନ ପାରେ। କିନ୍ତୁ କେବଳ ଥାନା ଓ ଡାକଘର ପୋଡ଼ିଦେବା, ଚୌକିଦାର, ଦଫାଦାରଙ୍କୁ ଏକାକୀ ଦେଖି ତାଠାରୁ ପୋଷାକ ଛଡ଼ାଇନେବା କିମ୍ବା ରେଲ ପୋଲ ଭାଙ୍ଗିଦେବା, ଇତ୍ୟାଦି ପ୍ରକାର କଥା ଦାଣ୍ଡ ହାଟରେ ଗପିଦେଇ ଜେଲଯିବାକୁ ମୋ

ମନ ଡାକିଲା ନାହିଁ। ପୁଣି ଦୁଇଟି ଅନୁଷ୍ଠାନ ନୂଆକରି ଗଢ଼ିବାକୁ ଆରମ୍ଭ କରିଛି। ମୁଁ ଜେଲ ଚାଲିଗଲେ ଦୁଇଟିଯାକ ଅନୁଷ୍ଠାନ ଭାଙ୍ଗିଯିବ। ଏହିପରି ନାନା କାରଣରୁ ମୁଁ ଜେଲ ବରଣ କରି ନ ଥିଲି। ଆଶ୍ରମ ଚାରିପାଖ ମାହାଙ୍ଗା, ବଡ଼ଚଣା, ଟାଙ୍ଗି ଓ ସାଲେପୁର ପୋଲିସ କର୍ତ୍ତୃପକ୍ଷ ମୋ ଉପରେ ସଂପୂର୍ଣ୍ଣ ବିଶ୍ୱାସ ରଖିଥାନ୍ତି। ସେମାନଙ୍କ ବିଶ୍ୱାସ ମୁଁ ଚୋରାଛପା ଭାବରେ, ପୋଡ଼ାଜଳା କିମ୍ବା ଭଙ୍ଗାରୁଜା କାର୍ଯ୍ୟ କରିବାର କିମ୍ବା ସେପରି କାମକୁ ଗୁପ୍ତରେ ପ୍ରେରଣା ଦେବାର ବ୍ୟକ୍ତି ନୁହେଁ। ତେଣୁ ପୋଲିସ ମତେ ହଇରାଣ କରିନାହାନ୍ତି। ମୁଁ ଦୁଇଟି ଅନୁଷ୍ଠାନ ଗଢ଼ିବାରେ ମନପ୍ରାଣ ସ୍ୱଚ୍ଛନ୍ଦରେ ନିୟୋଗ କରି ପାରିଥିଲି। ଦୁଇଟିଯାକ ଅନୁଷ୍ଠାନ ଗଢ଼ାହୋଇ ସରିବା ପରେ ୧୯୪୫ ମସିହାରେ ମୁଁ ଉଭୟରୁ ବିଦାୟ ନେଲି ଏବଂ ଚିରଦିନ ପାଇଁ ଚମ୍ପାପୁର କର୍ମକ୍ଷେତ୍ର ଛାଡ଼ି ଆସିଲି—ନୂତନ କର୍ମକ୍ଷେତ୍ର ଅନୁସନ୍ଧାନ କରିବା ପାଇଁ। କାରଣ ସେହି ସ୍ଥାନରେ କାର୍ଯ୍ୟ ମତେ ଆଉ ନୂତନ ଆଲୋକ ଦେଲାପରି ଜଣାଗଲା ନାହିଁ। ମୁଁ ନ ରହିଲେ ସେଠାର କାର୍ଯ୍ୟ ନଚଳିବ ସେପରି ଅବସ୍ଥା ନ ଥିଲା। ବିଦ୍ରୋହାତ୍ମକ ମନ ନୂତନତ୍ୱ ନ ଥିବା ପରିସ୍ଥିତିରେ ଥୟଧରି ରହିବା ସମ୍ଭବପର ନୁହେଁ। ସୁତରାଂ ନୂତନ ଆଲୋକର ଅନୁସନ୍ଧାନ କରିବା ମୋର ଉଦ୍ଦେଶ୍ୟ। ଚମ୍ପାପୁରଠାରେ ଘସରା ହୋଇ ପଡ଼ି ରହିବା ଆବଶ୍ୟକ ରହିଲା ନାହିଁ। ଦେଶ ସ୍ୱାଧୀନ ହେବାର ସଂକେତ ଜଣା ପଡ଼ିଲା। ଦେଶ ସ୍ୱାଧୀନ ହେଲେ ନୂତନ କର୍ମକ୍ଷେତ୍ର ସୃଷ୍ଟିହେବ। ତାହା ନ ହେଲେ ସଂଗ୍ରାମରେ ଝାସଦେବି। ଚମ୍ପାପୁରଠାରେ ରହି ଆଉ ଅଧିକ ଶକ୍ତିସାମର୍ଥ୍ୟ ବ୍ୟୟ କରିବାକୁ ମନ ଡାକିଲା ନାହିଁ। ତେଣୁ ଚମ୍ପାପୁର ତ୍ୟାଗ କଲି।

ଚମ୍ପାପୁର ଛାଡ଼ି ଆସିଲା ପରେ ମୁଁ କଣ କରିବି କିଛି ସ୍ଥିର କରିବା କଠିନ ବୋଧହେଲା। ପୂର୍ବ ସ୍ୱାସ୍ଥ୍ୟ ଆଉନାହିଁ। ଅତି କଠିନ ଶ୍ୱାସରୋଗ ମତେ ଅଣାୟତ୍ତ କଲାଣି। ଶୋଇବା ବସିବା ମଧ୍ୟ କଷ୍ଟକର ଜଣାଯାଉଛି। ହାତରେ ପଇସାଟିଏ ନାହିଁ। ଭାଇ ବନ୍ଧୁ ସେପରି କେହି ନାହାନ୍ତି ମତେ ଆଶ୍ରା ଦେବାକୁ। ଦେଶକୁ ସ୍ୱାଧୀନ କରିବାପାଇଁ ପାଗଳ ପରି କାର୍ଯ୍ୟ କରିଛି। ନିଜର ଭବିଷ୍ୟତ୍ ଚିନ୍ତା କ୍ଷଣକପାଇଁ ମନରେ ସ୍ଥାନ ପାଇନାହିଁ। ବିପ୍ଳବୀ ଜୀବନର ଭବିଷ୍ୟତ୍ କଳ୍ପନା କରାଯାଇ ନ ପାରେ। କାରଣ ସ୍ୱାଧୀନତା ସଂଗ୍ରାମରେ କେଉଁଠାରେ ଗୁଳି ମାଡ଼ଖାଇ ଜୀବନର ଅବସାନ ଘଟିବ ନତୁବା ଦୀର୍ଘ କାରାଦଣ୍ଡ ଭୋଗି ଜେଲଖାନାରେ ମୃତ୍ୟୁ ଘଟିବ, ଏହା ସୁନିଶ୍ଚିତ। ସୁତରାଂ ଏପରି ଅବସ୍ଥାରେ ଭବିଷ୍ୟତର କଳ୍ପନା ମନରେ ସ୍ଥାନ ପାଇନାହିଁ। ଭବିଷ୍ୟତ ପାଇଁ ଚିନ୍ତା ମନରେ ନ ଥିବାରୁ ବ୍ୟବସ୍ଥା କରିବାର ପ୍ରଶ୍ନ ନ ଥିଲା। ସୁତରାଂ ଚମ୍ପାପୁର ଛାଡ଼ି କଟକ ଆସିଲା ପରେ ମୁଁ କଣ କରିବି ବୁଝିପାରିଲି ନାହିଁ। ଔଷଧ ବ୍ୟବହାର କରି ଶ୍ୱାସରୋଗକୁ ଦୂରକରି ନ ପାରିଲେ ମଧ୍ୟ ତାକୁ ଚପେଇ ରଖିବାକୁ ହେବ। ସାଧାରଣ ଲୋକ କଣ କହୁଛନ୍ତି ସେଥିରେ ମୁଁ ବ୍ୟଥିତ ହୋଇନାହିଁ କିନ୍ତୁ କଂଗ୍ରେସର ଅନେକ ବିଶିଷ୍ଟ ଲୋକଙ୍କ ଧାରଣା ଗାନ୍ଧୀ

ଆଶ୍ରମ ନାମରେ ବହୁତ ଅର୍ଥ ସଂଗ୍ରହ କରି ସେଥିରୁ ମୁଁ ବହୁତ ଧନ ଆତ୍ମସାତ୍ କରିଛି। ସାଧାରଣ ପାଣ୍ଠି ସଂଗ୍ରହ କରି ତଦ୍ୱାରା କିଛି କାର୍ଯ୍ୟ କଲେ, କୌଣସି ବ୍ୟକ୍ତି ନିସ୍ୱାର୍ଥ ଭାବରେ କାର୍ଯ୍ୟ କରିପାରେ ବୋଲି ଆମ ଦେଶର ଲୋକେ କଳ୍ପନା କରି ନ ପାରୁଥିବାର କଥା ଜଣା ଅଧିକେ ସମସ୍ତେ ଜାଣନ୍ତି। ମୁଁ ଅଧିକ ଅବା କଣ ଲେଖିବି। ଶ୍ରୀ ହରେକୃଷ୍ଣ ମହତାବ ମତେ ଏହି ସମୟରେ ସାହାଯ୍ୟ କରିଛନ୍ତି। ପଣ୍ଡିତ୍ ଲିଙ୍ଗରାଜ ମିଶ୍ର ଓ ଶ୍ରୀରାଧାନାଥ ରଥଙ୍କ ସାହାଯ୍ୟ ଓ ସହାନୁଭୂତି ମଧ୍ୟ ଭୁଲିପାରିବି ନାହିଁ। ସମସ୍ତଙ୍କ ଅପେକ୍ଷା ଅଧିକ ସାହାଯ୍ୟ କରିଛନ୍ତି ପଣ୍ଡିତ ଆର୍ତ୍ତତ୍ରାଣ ମିଶ୍ର। ସେ ମତେ ତାଙ୍କ ତେଲେଙ୍ଗା ବଜାର ବାସଭବନରେ ଆଶ୍ରୟ ଦେଇ କହିଥିଲେ, "ଗୋବିନ୍ଦବାବୁ, ତମେ ମୋର ସାଥୀ। ତମେ ଆସି ମୋ ଘରେ ବାସକର ଏବଂ ଯାହା ଯେତିକି ଦେଶକାର୍ଯ୍ୟ କରିପାରିବ ସେତିକି କର। ତମେ ନିସ୍ୱାର୍ଥ ଭାବରେ ଦେଶର ସେବା ଯଦି କରିଥିବ, ଭଗବାନ ତୁମକୁ କୌଣସି ନା କୌଣସି ବାଟରେ ନିଶ୍ଚୟ ସାହାଯ୍ୟ କରିବେ।" ସୁତରାଂ ମୁଁ ତେଲେଙ୍ଗା ବଜାର ପଣ୍ଡିତ ଆର୍ତ୍ତତ୍ରାଣ ମିଶ୍ରଙ୍କ ଘରେ ତିନିବର୍ଷ ପର୍ଯ୍ୟନ୍ତ ରହିଥିଲି। ଏହି ସମୟରେ ଶ୍ୱାସ ଓ ଜ୍ୱରରୋଗ ଯନ୍ତ୍ରଣାରେ ମୁଁ ଅତିଶୟ ପୀଡ଼ିତ ହୋଇ ପଡ଼ିଥିଲି।

୧୯୪୪ ମେ ମାସରେ ମହାତ୍ମାଗାନ୍ଧୀଙ୍କ ସ୍ୱାସ୍ଥ୍ୟ ଉଦ୍‌ବେଗଜନକ ବୋଲି ଜଣାପଡ଼ିଲା। ସେ ବମ୍ବେଇ ନିକଟସ୍ଥ ଆଗାଖାଁଙ୍କ ପ୍ରାସାଦରେ ଅଟକବନ୍ଦୀ ହୋଇ ରହିଥିଲେ। ଏହିଠାରେ ମହାଦେବଭାଇ ଦେଶାଇ ଓ ପୂଜ୍ୟା କସ୍ତୁରବା ଦେହତ୍ୟାଗ କରିଛନ୍ତି। ଏହି ଦୁଇଜଣଙ୍କ ସ୍ୱର୍ଗବାସ ମହାତ୍ମାଜୀଙ୍କ ମନରେ ବଡ଼ ଆଘାତ ଦେଇଛି। ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଛି। ଏଣୁ ସରକାର ତାହାଙ୍କୁ ତୁରନ୍ତ ଅଟକବନ୍ଦୀରୁ ମୁକ୍ତ କରିଦେଲେ। ମହାତ୍ମାଜୀ ପୁନାରେ ପ୍ରାକୃତିକ ଚିକିତ୍ସା ସଦନରେ ଆସି ରହିଲେ। ଜର୍ମାନ ଯୁଦ୍ଧର ଅବସାନ ଘଟିବାରୁ ଅଟକବନ୍ଦୀ କଂଗ୍ରେସ ନେତୃବର୍ଗ ମଧ୍ୟ ମୁକ୍ତି ପାଇଲେ। ସର୍ଦ୍ଦାର ପଟେଲଙ୍କ ସ୍ୱାସ୍ଥ୍ୟ ଭଲ ନଥିଲା। ସୁତରାଂ ସେ ଆସି ଗାନ୍ଧୀଜୀଙ୍କ ସହିତ ପୁନାରେ ରହିଲେ। ଶ୍ରୀମତୀ ରାଜକୁମାରୀ ଅମୃତ କାଉର ଗାନ୍ଧୀଜୀଙ୍କ ସେବା କରିବାକୁ ରହିଥାନ୍ତି। ସ୍ୱର୍ଗୀୟ ମହାଦେବଭାଇ ଓ ପୂଜ୍ୟା କସ୍ତୁରବାଙ୍କ ସହିତ ମୋର ଅତି ଘନିଷ୍ଠ ସଂବନ୍ଧ ଥିଲା, ଏହା କହିବା ଅନାବଶ୍ୟକ। ସେମାନଙ୍କ ସ୍ନେହ ସହାନୁଭୂତି ସୂଚକ କଥା ଓ ବ୍ୟବହାର ଏ ଜୀବନରେ ଭୁଲିହେବ ନାହିଁ। ସେମାନଙ୍କ ମୃତ୍ୟୁ ସଂବାଦ ମୋ ମନରେ ଦାରୁଣ ଆଘାତ ଦେଇଥିଲା। ସମବେଦନା ଭରା ମୋର ହୃଦୟର ଭାବ ଗାନ୍ଧୀଜୀଙ୍କୁ ଲେଖିବାକୁ ମୋ ମନରେ ତୀବ୍ର ଆକାଂକ୍ଷା ଜାତ ହୋଇଛି। ମାତ୍ର ଗାନ୍ଧୀଜୀ ଅଟକବନ୍ଦୀ ହୋଇ ରହିଥିବାରୁ ମୁଁ ତାହା ଏ ପର୍ଯ୍ୟନ୍ତ ଜଣାଇ ପାରି ନ ଥିଲି। ବର୍ତ୍ତମାନ ଖଣ୍ଡିଏ ପତ୍ର ଲେଖି ତାଙ୍କ ସହିତ ଦେଖା କରିବାକୁ ଅନୁମତି ମାଗିଲି। ପୂଜ୍ୟା କସ୍ତୁରବା ଓ ମହାଦେବଭାଇଙ୍କ ମୃତ୍ୟୁରେ ମୁଁ କିପରି ମର୍ମବେଦନା ଅନୁଭବ କରିଛି ତାହା ହିଁ ମୋ ପତ୍ରରେ ମୁଁ ଉଲ୍ଲେଖ କରିଥିଲି।

ଯଥା ସମୟରେ ଉତ୍ତର ପାଇ ଗାନ୍ଧୀଜୀଙ୍କ ସହିତ ଦେଖା କରିବାକୁ ମୁଁ ପୁନାରେ ଉପସ୍ଥିତ ହେଲି।

ଗାନ୍ଧୀଜୀଙ୍କ ଦେଖି ମୋ ମୁହଁରୁ କଥା ବାହାରିଲା ନାହିଁ। ମହାଦେବ ଭାଇ ଓ ପୂଜ୍ୟା କସ୍ତୁରବାଙ୍କ କଥା କହିଲା ବେଳକୁ ମୋ ଆଖି ଛଳ ଛଳ ହୋଇଗଲା। ମୁଁ କାନ୍ଦି ପକାଇଲି। ଗାନ୍ଧୀଜୀ କଣ ଲେଖୁଥିଲେ, ଲେଖା ବନ୍ଦକରି ମତେ ଚାହିଁ ରହିଲେ। ସେଦିନ ସୋମବାର ତାଙ୍କର ମୌନ ଦିବସ। ସେ କିଛି ନ କହି ମୋ କଥା ମନଦେଇ ଶୁଣିଲେ। ଗତ ଚାରି ପାଞ୍ଚବର୍ଷ ଭିତରେ ମୁଁ ଯାହା ଯେପରି କାର୍ଯ୍ୟ କରିଥିଲି ସବୁ ଶୁଣାଇଲି। ସ୍କୁଲ ଓ କୁଷ୍ଠାଶ୍ରମ ପ୍ରତିଷ୍ଠା କରି ମୋ ନାମରେ ଥିବା ସମସ୍ତ ସମ୍ପତ୍ତି କିପରି ହସ୍ତାନ୍ତର କରିଦେଇଛି, ତାହାଙ୍କ ଆଶୀର୍ବାଦରୁ ବଞ୍ଚିତ ହୋଇଥିବାରୁ କଂଗ୍ରେସର କିଛି କାର୍ଯ୍ୟ କରିବା କିପରି ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡୁଛି, ଇତ୍ୟାଦି କଥା ମଧ୍ୟ ଅତି ସଂକ୍ଷେପରେ କହିଥିଲି। ସବୁ ଶୁଣି ଗାନ୍ଧୀଜୀ ଖଣ୍ଡିଏ କାଗଜ ଉଠାଇ ତହିଁରେ ଲେଖିଦେଲେ :-

"ମୈଁ ଏ କୁଛ ନହିଁ କର ଶକତା। ତୁମାରା କୈସେ ଚଳତା ହେଁ ସୋଭି ମୈଁ ଏ ନହିଁ ଜାଣତା। ଓଁ ହାକେ ଲୋଗ ଅଗର ରାଜ୍ୟ ହୋ ଯାୟତୋ ମୈଁ ଏ ଦଖଳ ନହିଁ ଦୁଁଗା। ଅଚ୍ଛେ କରୋଗେ ତୋ ମୈଁ ଏ ଜରୁର ଖୁସୀ ହୁଁ ଗା।" ଇତି।

ବାପୁକେ ଆଶୀର୍ବାଦ।

ଅର୍ଥାତ୍ "ମୁଁ କିଛି କରିପାରିବି ନାହିଁ। ତୁ କଣ କରିଛୁ ତାହା ମଧ୍ୟ ମତେ ଜଣାନାହିଁ। ସେଠାରେ କର୍ମୀମାନେ ତୋ ଉପରେ ରା ଜିହୋଇ ସହଯୋଗ କଲେ ମୁଁ ନିଶ୍ଚୟ ଖୁସିହେବି।"ଇତି।

ବାପୁଙ୍କ ଆଶୀର୍ବାଦ।

ଗାନ୍ଧୀଜୀଙ୍କ ପାଖରୁ ଯାଇ ସର୍ଦ୍ଦାର ପଟେଲଙ୍କ ସହିତ ଦେଖାକଲି। ସେ ମଧ୍ୟ ମତେ ଆପଣାର ବୋଲି ଭାବନ୍ତି। ଗାନ୍ଧୀଙ୍କ ସହିତ ରହି ତାଙ୍କର ସେବା କରିବା ସୁଯୋଗ ଲାଭ କରିପାରି ଥିବାରୁ ସର୍ଦ୍ଦାର ପଟେଲ, ଶ୍ରୀ ରାଜଗୋପାଳାଚାରୀ, ବାବୁ ରାଜେନ୍ଦ୍ର ପ୍ରସାଦ ଓ ଆଚାର୍ଯ୍ୟ କ୍ରୀପଲାଣି ଓ ସ୍ୱାମୀ ଆନନ୍ଦ ପ୍ରଭୃତି କେତେ ଜଣଙ୍କ ସହିତ, ମୋର ଘନିଷ୍ଠ ସଂପର୍କ ସ୍ଥାପିତ ହୋଇ ପାରିଥିଲା। ସେହି ବଳରେ ମୁଁ ସର୍ଦ୍ଦାର ପଟେଲଙ୍କୁ ଯାଇ ଦେଖାକଲି। ଗାନ୍ଧଜୀଙ୍କ ସହିତ ଦେଖାକରି କଥା ହେଉଥିବାର ସେ ମତେ ଦେଖିଛନ୍ତି ଏବଂ ଗାନ୍ଧୀଜୀଙ୍କ ଆଶୀର୍ବାଦରୁ ବଞ୍ଚିତ ହୋଇଥିବା କଥା ମଧ୍ୟ ତାଙ୍କୁ ଅଗୋଚର ନ ଥିଲା। ସେ ମତେ ଦେଖି ହଠାତ୍ ପଚାରିଲେ, "କ୍ୟା ବାପୁକା ଆଶୀର୍ବାଦ ମିଲା।" ମୁଁ କିଛି ଉତ୍ତର ନ ଦେଇ ଗାନ୍ଧୀଜୀ ଦେଇଥିବା ଲେଖା ଖଣ୍ଡିକ ତାଙ୍କ ହାତକୁ ବଢ଼ାଇଦେଲି। ସେ ଖଣ୍ଡି ପାଠକରି ସର୍ଦ୍ଦାର ପଟେଲ କହିଥିଲେ, "ଅବ୍ କ୍ୟା ହେ, ବାପୁକା ଆଶୀର୍ବାଦ ମିଲ୍ଗୟା, ଖୁସୀସେ କାମ କରୋ।

ମୁଁ ପୁନାରୁ ବମ୍ବେ ହୋଇ ଓଡ଼ିଶାକୁ ଫେରି ଆସିଲି। ଗଡ଼ଜାତ ରାଜ୍ୟରେ "ଛାମୁ ମନା" ହେଲେ ଯେପରି ସମାଜରେ ଲୋକର ଆସନ ତଳକୁ ଖସି ପଡୁଥିଲା ଏବଂ ତାକୁ କେହି ଚାହୁଁ ନ ଥିଲେ, ଓଡ଼ିଶାର କଂଗ୍ରେସ ରାଜନୀତିରେ ମୋର ଅବସ୍ଥା ତା ଠାରୁ କିଛି ନ୍ୟୂନ ନ ଥିଲା। ମତେ କେହି ଆଉ ଖୋଜୁ ନ ଥିଲେ ଏବଂ ଜଣେ ସମାଜଚ୍ୟୁତ ବ୍ୟକ୍ତି ସହିତ ବ୍ୟବହାର କଲାଭଳି କଂଗ୍ରେସର ବିଶେଷତଃ କଟକ ଜିଲାର କେତେକ ବିଶିଷ୍ଟ ବ୍ୟକ୍ତି, ମୋ ସହିତ ସେପରି ବ୍ୟବହାର କରୁଥିଲେ। ଥରେ କଟକ ଜିଲ୍ଲା କଂଗ୍ରେସ କମିଟିର ସଦସ୍ୟମାନଙ୍କୁ ଜିଲ୍ଲା କମିଟିର ବୈଠକ ଶେଷରେ ନିମନ୍ତ୍ରଣ କରାଗଲା। ଜିଲ୍ଲା କମିଟିର ସଦସ୍ୟ ଭାବରେ ମୁଁ ଯୋଗ ଦେଇଥିଲି। କେତେଜଣ ବିଶିଷ୍ଟ କଂଗ୍ରେସ କର୍ମୀଙ୍କ ସହିତ ଏକତ୍ର ବସି ଭୋଜନ କରୁଥିବା ସମୟରେ ଜଣେ ବିଶିଷ୍ଟ ନାରୀନେତ୍ରୀ ମୋ ନାମ ଉଚ୍ଚାରଣ କରି କହିଥିଲେ, "ଗୋବିନ୍ଦ ମିଶ୍ରେ! ତୁମେ ଏଠାରେ ବସି ଭୋଜନ କରୁଛ, ତମକୁ କିଏ ନିମନ୍ତ୍ରଣ କଲା ?" ଏପରି ବ୍ୟବହାରରେ ଅବଶ୍ୟ ଅନ୍ୟାନ୍ୟ ସମସ୍ତେ ପ୍ରତିବାଦ କରିଥିଲେ ଏବଂମୋ ପ୍ରତି ସମ୍ମାନସୂଚକ ବ୍ୟବହାର ଦେଖାଇଥିଲେ। ଏହି ଘଟଣାଟି ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଉଛି, ଗାନ୍ଧୀଜୀଙ୍କ ନାମରେ ମୋ ପ୍ରତି ଏପରି ନିର୍ମମ ବ୍ୟବହାର କରିବାକୁ ମଧ କେହି କେହି ଦ୍ୱିଧା ବୋଧ କରି ନାହାନ୍ତି। ଏହି ଅବସ୍ଥାରେ ପରିବର୍ତ୍ତନ ଆଣିବା ଇଚ୍ଛାରେ ମୁଁ ଗାନ୍ଧୀଜୀଙ୍କ ସହିତ ଦେଖା କରିବା ଅନ୍ୟତମ କାରଣ ଥିଲା। ଏ ରାଜନୈତିକ ଜୀବନ କିପରି ପିଚ୍ଛିଳ ଏବଂ ଦୁଃଖପୂର୍ଣ୍ଣ ତାହା ଅନୁଭବ ନ କଲେ ଅପର ବ୍ୟକ୍ତି ସହଜରେ ଉପଲବ୍ଧି କରି ପାରିବେ ନାହିଁ। ରାଜନୈତିକ ଜୀବନ ଏପରି ଦୁଃଖଦାୟକ ହେଲେ ମଧ ଯେଉଁମାନେ ଏଥିରେ ଜୀବନ ଉତ୍ସର୍ଗ କରିଛନ୍ତି ସେମାନଙ୍କ ସମ୍ମୁଖରେ ଭବିଷ୍ୟତ ସବୁବେଳେ ଉଜ୍ଜ୍ୱଳ। ସେମାନେ ପଛକୁ ନ ଚାହିଁ ସବୁବେଳେ ଆଗକୁ ଦୃଷ୍ଟି ପକାନ୍ତି ଏବଂ ଦେଶର ପରିସ୍ଥିତିକୁ ଅନାଇ ନିଜର କର୍ମପନ୍ଥା ବାଛି ନିଅନ୍ତି। ରାଜନୀତିରେ ହାରଜିଣା ହୋଇ କିଛି ନାହିଁ। ଯଦି କିଛି ଥାଏ ତାହା ସାମୟିକ। ରାଜନୈତିକ ଜୀବନ ବଡ଼ ଆଦରଣୀୟ। ଏହି ବାଟରେ ପଡ଼ି ଆଣ୍ଠୁ ଗଣ୍ଠି ଭାଙ୍ଗି ଯିବାର ଉପକ୍ରମ ହେଲେ ମଧ ପ୍ରକୃତ ଦେଶସେବକ ସେଥିରେ ଭାଙ୍ଗି ପଡ଼େ ନାହିଁ। ଯୋକପରି ସେ ଲାଗି ରହେ। ଦେଶର ପ୍ରକୃତ ସେବକ ମଧ ଦୀର୍ଘଜୀବୀ ହେଉଥିବାର ଯଥେଷ୍ଟ ପ୍ରମାଣ ଅଛି। କାରଣ ଶରୀର ଭାଙ୍ଗି ପଡ଼ିଲେ ମଧ ମନଟା ଭାଙ୍ଗି ପଡ଼େ ନାହିଁ।

ଗାନ୍ଧୀଜୀଙ୍କ ପତ୍ର ଖଣ୍ଡି ମତେ ବହୁତ ସାହାଯ୍ୟ କରିଥିଲା। ତାଙ୍କର ଦୁଇଧାଡ଼ି ଲେଖାରେ ସେପରି ବିଶେଷ ସ୍ପଷ୍ଟ କଥା ପ୍ରକାଶ ପାଉ ନ ଥିଲେ ମଧ ଶେଷରେ ତାଙ୍କର ଆଶୀର୍ବାଦ ମୋ ଦୃଷ୍ଟିରେ ଯଥେଷ୍ଟ ମୂଲ୍ୟବାନ। ମୋର ଶରୀର ଭାଙ୍ଗି ପଡ଼ିଥିଲେ ମଧ ମନ ଭାଙ୍ଗିଯାଇ ନାହିଁ। ମତେ ନୂଆ କରି କର୍ମକ୍ଷେତ୍ର ସୃଷ୍ଟି କରିବାକୁ ହେବ। ଦେଶର ପରିସ୍ଥିତିକୁ ଦେଖି କର୍ମ କରିବା ବାଟ ବାଛିବାକୁ ହେବ। ଦେଶର ରାଜନୈତିକ

ପରିସ୍ଥିତି ଆମ୍ଭମାନଙ୍କୁ ସବୁବେଳେ ପ୍ରଭାବିତ କରିଛି ଓ କରୁଥିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। ରାଜନୈତିକ ସ୍ୱାଧୀନତା ପ୍ରାପ୍ତି କରିବାକୁ ଜୀବନବ୍ୟାପୀ କର୍ମ କରି ଆସିଛି। ବର୍ତ୍ତମାନ କ୍ଷଣକୁ କ୍ଷଣ ଦେଶର ରାଜନୀତି ବଦଳି ଯାଉଛି। ଦ୍ୱିତୀୟ ମହାସମର ଅବସାନ ଘଟୁଛି। ଦେଶରେ ହିନ୍ଦୁ ମୁସଲମାନ ସମସ୍ୟାର ସମାଧାନ ପ୍ରଧାନ ପ୍ରଶ୍ନ ହୋଇଛି। ଏହି ପ୍ରଶ୍ନ ସମାଧାନ କରିବାକୁ ମୁସଲିମ ଲିଗ୍ ଓ ଲିଗ୍‌ର ନେତା ମହମ୍ମଦ ଅଲ୍ଲି ଜିନ୍ନାଙ୍କ ସହିତ ଆଳାପ ଆଲୋଚନା କରି କୌଣସି ବାଟ ନ ପାଇବାରୁ ଶ୍ରୀ ଜବାହରଲାଲ ନେହେରୁ ଦେଶର ସାଧାରଣ ମୁସଲମାନ ଅଧିବାସୀଙ୍କ ସହିତ ଘନିଷ୍ଠ ସମ୍ବନ୍ଧ ସ୍ଥାପନ କରି ସେମାନଙ୍କ ସହଯୋଗ ଲାଭ କରିବାକୁ କାର୍ଯ୍ୟ କରିବା ସକାଶେ କଂଗ୍ରେସ କର୍ମୀଙ୍କୁ ଡାକ ଦେଇଛନ୍ତି। ଏଥିପାଇଁ ଲିଗ୍ ଓ କଂଗ୍ରେସ ମଧ୍ୟରେ ବଳ କଷାକଷି ଲାଗିଛି। ଏହି ବଳ ପରୀକ୍ଷା କରିବାକୁ ୧୯୪୬ରେ ଦେଶରେ ନିର୍ବାଚନ କରାଗଲା। ଓଡ଼ିଶାରେ ନିର୍ବାଚନ ହେଲା। ଓଡ଼ିଶାରେ ବହୁ କ୍ଷେତ୍ରରେ କଂଗ୍ରେସ ନିର୍ବିବାଦରେ ଜୟଯୁକ୍ତ ହୋଇଥିଲା। ଅଧିକ ସଂଖ୍ୟାରେ କଂଗ୍ରେସ ଜୟଲାଭ କରି ଓଡ଼ିଶାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ କରିଥିଲା। ଏହି ନିର୍ବାଚନରେ ମତେ କଂଗ୍ରେସ ପ୍ରତିନିଧି କରି ବାଛିବାରେ ଆଉ କୌଣସି ପ୍ରକାର ଆପତ୍ତି କରିବାର କାରଣ ନ ଥିଲେ ମଧ୍ୟ ଦଳଗତ ସଂକୀର୍ଣ୍ଣତା ହେତୁ ମୁଁ ସ୍ଥାନ ପାଇ ପାରିଲି ନାହିଁ। ଏହି ନିର୍ବାଚନ ପରେ ମୁଁ ସ୍ପଷ୍ଟ ଭାବରେ ବୁଝିଲି ଦଳଗଠନ କରି ନ ପାରିଲେ ଆଉ ଏଣିକି ରାଜନୈତିକ କ୍ଷେତ୍ରରେ କିଛି କାର୍ଯ୍ୟ କରିବା ସହଜ ହେବ ନାହିଁ। ସେ ଯାହାହେଉ, ଓଡ଼ିଶାରେ କଂଗ୍ରେସ ମନ୍ତ୍ରୀମଣ୍ଡଳର ପରିଚାଳନାର ଦାୟିତ୍ୱ ଶ୍ରୀ ହରେକୃଷ୍ଣ ମହତାବ ଗ୍ରହଣ କରିଥିଲେ।

ଭାରତର ରାଜନୀତିରେ ମୁସଲମାନ ଲିଗ୍ ସହିତ ପ୍ରତିଦ୍ୱନ୍ଦ୍ୱିତା କରି କଂଗ୍ରେସର ଆଶାପୂରଣ ହୋଇ ପାରିଲା ନାହିଁ। ମୁସଲମାନ ସଂଖ୍ୟାଗରିଷ୍ଠ ଥିବା ନିର୍ବାଚନ ମଣ୍ଡଳୀରେ କଂଗ୍ରେସକୁ ପରାସ୍ତ କରି ଲିଗ୍ ଜୟଯୁକ୍ତ ହେଲା। ବଙ୍ଗଳା ସୀମାନ୍ତ ପ୍ରଦେଶରେ ଲିଗ୍ ମନ୍ତ୍ରୀମଣ୍ଡଳ ଗଠନ କଲା। ସିନ୍ଧୁ ପ୍ରଦେଶରେ କଂଗ୍ରେସକୁ ସମର୍ଥନ କରୁଥିବା ଆଲାବକ୍ସଙ୍କୁ ହତ୍ୟାକରି ଲିଗ୍ ମନ୍ତ୍ରୀମଣ୍ଡଳ ଗଠିତ ହେଲା। ୧୯୪୫ରେ ଜର୍ମାନୀ ଯୁଦ୍ଧରେ ସଂପୂର୍ଣ୍ଣରୂପେ ପରାସ୍ତ ହୋଇଛି। ହିଟଲର ଆତ୍ମହତ୍ୟା କରିଛନ୍ତି। କିନ୍ତୁ ଜର୍ମାନ ଯୁଦ୍ଧ ଓ ହିଟଲରଙ୍କ ରାଜନୀତି ବହୁ ଦେଶର ଭାଗ୍ୟର ବିପର୍ଯ୍ୟୟ ଘଟାଇଛି ଏବଂ ବହୁ ଦେଶର ଭାଗ୍ୟ ଗଠନ କରିବାରେ ସାହାଯ୍ୟ ମଧ୍ୟ କରିଛି। ଭାରତର ସ୍ୱାଧୀନତା ପ୍ରଶ୍ନର ସମାଧାନକୁ ସହଜ ଓ ସରଳ କରିଛି ବୋଲି ମୋର ବିଶ୍ୱାସ। ଯୁଦ୍ଧ ପରେ ବିଲାତରେ ନିର୍ବାଚନ କରାଗଲା। ଚର୍ଚ୍ଚିଲ ସାହେବ ଓ ତାଙ୍କର ଟୋରିଦଳ ପରାଜିତ ହେଲେ। ବିଲାତର ଶ୍ରମିକଦଳ ଅଧିକ ସଂଖ୍ୟାରେ ଜୟଲାଭ କରି ସରକାର ଗଠନ କରିଥିଲେ। ଶ୍ରମିକଦଳର ନେତା ଅଟ୍‌ଲି ସାହେବ ବର୍ତ୍ତମାନ ବିଲାତ ପାର୍ଲିଆମେଣ୍ଟର ପ୍ରଧାନମନ୍ତ୍ରୀ।

ବିଲାତର ଶ୍ରମିକ ସରକାର ଭାରତକୁ ମୁକ୍ତି ପ୍ରଦାନ କରିବାକୁ ଘୋଷଣା କଲେ। କିନ୍ତୁ ବିଲାତ ପାର୍ଲିଆମେଣ୍ଟର ଢାଠଦଳ ବଡ଼ ରକ୍ଷଣଶୀଳ। ସେମାନେ ଭାରତକୁ ମୁକ୍ତି ପ୍ରଦାନ କରିବାକୁ ସବୁବେଳେ କୁଣ୍ଠିତ। ବ୍ରିଟିଶ ସରକାରଙ୍କର କୂଟନୀତି ଭାରତରେ ହିନ୍ଦୁ ମୁସଲମାନ ବିଭେଦ ସୃଷ୍ଟି କରିଛି। ଭାରତର ରାଜନୈତିକ ସମସ୍ୟା ସମାଧାନ କରିବାକୁ ହେଲେ ହିନ୍ଦୁ ମୁସଲମାନ ବିଭେଦ ତହିଁରେ ପ୍ରଧାନ ଅନ୍ତରାୟ ହୋଇ ଦଣ୍ଡାୟମାନ ହେଲା। ପ୍ରକାଶ୍ୟରେ ନ ହେଲେ ମଧ୍ୟ ଅପ୍ରକାଶ୍ୟ ଭାବରେ ଭାରତର ଇଂରେଜ ଶାସକ ଗୋଷ୍ଠୀଙ୍କ ସାମ୍ରାଜ୍ୟବାଦର ଷଡଯନ୍ତ୍ର ଚାଲିଛି। ବର୍ତ୍ତମାନ ମୁସଲିମ୍ ଲିଗ୍‌ର ସାଂପ୍ରଦାୟିକତା ଓ ଚର୍ଚ୍ଚିଲ, ହୋର୍ ଓ ଆମେରୀ ସାହେବଙ୍କ ଇଙ୍ଗିତରେ ବିଦେଶୀ ଶାସକଗୋଷ୍ଠୀଙ୍କର ସାମ୍ରାଜ୍ୟବାଦ ଏକତ୍ର ହାତ ମିଳେଇଛନ୍ତି। ଢାଠଦଳ ବୁଝିଲେଣି ଯେ ଭାରତ ଆଉ ଇଂରେଜଙ୍କ ହାତରେ ରହିବ ନାହିଁ। ସେମାନେ ଏହି ମୁସଲିମ୍ ଲିଗ୍ ଓ ରାଜା ମହାରାଜାମାନଙ୍କୁ ପ୍ରଭାବିତ କରି ଭାରତରେ ଏକ ସଂକଟଜନକ ପରିସ୍ଥିତି ସୃଷ୍ଟି କରିବାକୁ ଷଡଯନ୍ତ୍ର କରିଛନ୍ତି। ସେମାନଙ୍କ ଉଦ୍ଦେଶ୍ୟ ଭାରତର ଶାସନଡୋରୀ ସେମାନଙ୍କ ହାତରୁ ଖସିଗଲେ ମଧ୍ୟ ସେମାନଙ୍କ ପ୍ରଭାବ ପ୍ରତିପତ୍ତି ଯେପରି କୌଣସି ପ୍ରକାରେ ଅକ୍ଷୁଣ୍ଣ ରହିପାରେ। ମୁସଲିମ୍‌ଲିଗ୍‌ର ନେତା ଜିନ୍ନା ସାହେବ ତାଙ୍କର କ୍ରୀଡ଼ାପୁତ୍ତଳିକା ସାଜିଲାପରି ମନେ ହେଉଛି।

ଜିନ୍ନାଙ୍କ ପୂରା ନାମ ମହମ୍ମଦ ଅଲ୍ଲି ଜିନ୍ନା। ତାଙ୍କ ଘର ଗୁଜରାଟରେ। ତାଙ୍କ ପୂର୍ବପୁରୁଷ ବ୍ରାହ୍ମଣ ଥିଲେ। ଜିନ୍ନା ସାହେବ ଜଣେ ଉଦାର ରାଜନୈତିକ ବ୍ୟକ୍ତି ବୋଲି ଦେଶରେ ତାଙ୍କର ସୁଖ୍ୟାତି ଥିଲା। ସେ ଜଣେ କଂଗ୍ରେସର ଲୋକପ୍ରିୟ ନେତା ଥିଲେ। କିନ୍ତୁ ୧୯୨୧ ମସିହାରେ ମୁସଲମାନଙ୍କ ଖିଲାଫତ୍ ଆନ୍ଦୋଳନବେଳେ ସେ ପଛକୁ ପଡ଼ିଗଲେ ଏବଂ କଂଗ୍ରେସର ଅସହଯୋଗ ଆନ୍ଦୋଳନର ସେ ବିରୋଧ କରିଥିଲେ। ଏହି କାରଣରୁ ତାଙ୍କର ଲୋକପ୍ରିୟତା କମିଗଲା। ବମ୍ବେଇରେ ସେ ଜଣେ ବିଖ୍ୟାତ ବାରିଷ୍ଟର ଥିଲେ। କିନ୍ତୁ ଲୋକ ସାଧାରଣରେ ଅପ୍ରିୟ ହୋଇ ପଡ଼ିବାରୁ ସେ ବମ୍ବେଇ ଛାଡ଼ି ବିଲାତ ଯାଇ ସେଠାରେ ପ୍ରିଭି କାଉନ୍‌ସିଲରେ ବାରିଷ୍ଟରୀ କଲେ। ସେ ଜଣେ ଅତି ବିଚକ୍ଷଣ ଓ ବୁଦ୍ଧିମାନ ରାଜନୈତିକ ବ୍ୟକ୍ତି। ନେତୃତ୍ୱ କରିବାକୁ ସବୁବେଳେ ସେ ଆଗ୍ରହୀ। ତାଙ୍କ ପରି ଉଦାରଭାବାପନ୍ନ ବ୍ୟକ୍ତିଙ୍କ ହୃଦୟରେ ସାଂପ୍ରଦାୟିକତାର ସଂକୀର୍ଣ୍ଣ ଭାବନା କିପରି ଅଙ୍କୁରିତ ହେଲା ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ। ଜିନ୍ନା ସାହେବଙ୍କୁ ମୁଁ ବମ୍ବେଇରେ ଦେଖିଛି, ତାଙ୍କ କଥା ଶୁଣିଛି ଏବଂ ତାଙ୍କ ସଂବନ୍ଧରେ ଅନେକ କଥା ଶୁଣିବାକୁ ମଧ୍ୟ ପାଇଛି। ରାଓଲାଟ ସତ୍ୟାଗ୍ରହ ସ୍ଥଗିତ ରଖି ଗାନ୍ଧୀଜୀ ବମ୍ବେଇରେ ରହୁଥିବା ସମୟରେ ଜିନ୍ନାସାହେବ ଗାନ୍ଧୀଜୀଙ୍କ ନିକଟ ଯିବା ଆସିବା କରୁଥିଲେ। ଜିନ୍ନା ସାହେବଙ୍କୁ ଦେଖି ତାହାଙ୍କ କଥା ଶୁଣିଲେ ସେ ଜଣେ ଉଦାର ଓ ସରଳ ହୃଦୟର ବ୍ୟକ୍ତି ବୋଲି ନିଶ୍ଚୟ ମନେ କରିବ। କିନ୍ତୁ ତାଙ୍କର ଏପରି ଘୋର ପରିବର୍ତ୍ତନର କାରଣ କଣ? ଏହି କାରଣ ସମ୍ବନ୍ଧରେ

ମୁଁ ଯାହା ଅନୁମାନ କରିଛି ତାହା ଉଲ୍ଲେଖ ନ କରି ରହିପାରୁ ନାହିଁ। ବ୍ରିଟିଶ ସାମ୍ରାଜ୍ୟବାଦୀ ଶାସକଗୋଷ୍ଠୀ ଭାରତରେ ତାଙ୍କର ଶାସନକୁ ଦୃଢ଼ କରିବାକୁ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଭେଦଭାବ ସୃଷ୍ଟି କରିଛନ୍ତି। ନିଆଁରେ ତାଉ ଦେଲାଭଳି ସବୁବେଳେ ସାଂପ୍ରଦାୟିକ ଭାବନାକୁ ବଳ ଓ ଉତ୍ସାହ ପ୍ରଦାନ କରିଛନ୍ତି। ୧୯୨୧ ମସିହାରେ ଗାନ୍ଧୀଜୀ ଖିଲାଫତ ଆନ୍ଦୋଳନ ସୃଷ୍ଟି କରି ହିନ୍ଦୁ ମୁସଲମାନ ମଧ୍ୟରେ ଯେଉଁ ଐକ୍ୟଭାବ ସ୍ଥାପନ କଲେ ତାହା ଶାସକ ଗୋଷ୍ଠୀଙ୍କ ମନରେ ମହା ଆତଙ୍କ ଜାତ କରିଥିଲା। ଭାରତବାସୀଙ୍କୁ ପୁଣି ଦୁଇ ଦୁଇ ଫାଙ୍କ କରିବାକୁ ଅଦମ୍ୟ ଚେଷ୍ଟା କଲେ। ବ୍ରିଟିଶ ଡାଠଦଳର କୂଟନୀତି ବିଶାରଦମାନେ ସାଂପ୍ରଦାୟିକ ଭିତ୍ତି ଉପରେ ଦଣ୍ଡାୟମାନ କରାଇ ଗାନ୍ଧୀଜୀଙ୍କ ସହିତ ସମାନ ଆସନରେ ଜଣେ ପ୍ରତିଦ୍ୱନ୍ଦୀ ଠିଆ କରାଇବାକୁ ଚକ୍ରାନ୍ତ ଆରମ୍ଭ କରିଦେଲେ।

ଜିନ୍ନା ସାହେବ ଜଣେ ବୁଦ୍ଧିମାନ ରାଜନୈତିକ ପୁରୁଷ। ବମ୍ବେଇରେ ସେ ଜଣେ ସର୍ବଶ୍ରେଷ୍ଠ ଲୋକପ୍ରିୟ ନେତା ଥିଲେ। ସେଥିରୁ ସେ ବଞ୍ଚିତ ହୋଇଛନ୍ତି। ସବୁବେଳେ ସେ ନେତୃତ୍ୱ ନେବାକୁ ଲାଳାୟିତ। କିନ୍ତୁ ଦେଶରେ ରାଜନୈତିକ ଆନ୍ଦୋଳନର ରୂପ ବଦଳି ଗଲାଣି। ତ୍ୟାଗ ସ୍ୱୀକାର କରି ଦୁଃଖ କଷ୍ଟ ସହିବାକୁ ପ୍ରସ୍ତୁତ ନ ହେଲେ ନେତୃତ୍ୱ ପ୍ରତିଷ୍ଠା କରିବା ଆଉ ସମ୍ଭବପର ନୁହେଁ। ଜିନ୍ନା ଜଣେ ଅତି ସୌଖୀନ ଲୋକ। ପ୍ରଚୁର ଅର୍ଥ ରୋଜଗାର କରି ଅତି ବିଳାସ ବ୍ୟସନରେ ସେ ଜୀବନକୁ ଅତିବାହିତ କରୁଛନ୍ତି। କଠୋର ଜୀବନଯାପନ କରିବା ତାଙ୍କ କଳ୍ପନାର ବହିର୍ଭୂତ ବିଷୟ। ତାଙ୍କର ବ୍ୟବହାର ଓ ଭାଷା ସବୁବେଳେ ସରଳ ଓ ମଧୁର। କିନ୍ତୁ ବ୍ୟକ୍ତିତ୍ୱର ଅହଂକାର ତାହାଙ୍କଠାରେ ଅତିମାତ୍ରାରେ ଥିବାପରି ଜଣାପଡ଼େ। ଯାହାଙ୍କର ନିଜର ବ୍ୟକ୍ତିତ୍ୱ ଉପରେ ଅଟଳ ବିଶ୍ୱାସ ସେମାନଙ୍କ କଥାକୁ ବିନା ବିଚାରରେ ଗ୍ରହଣ କରୁଥିବାରୁ କୌଣସି ଗୋଷ୍ଠୀ ଅବା ଦଳ ମିଳିଗଲେ ସେମାନେ ଏକାବେଳେକେ ନିଜ ଖିଆଲରେ ଅନ୍ଧ ବନିଯାନ୍ତି। ନିଜର ବ୍ୟକ୍ତିତ୍ୱ ପ୍ରତିଷ୍ଠା କରି ଜନନେତା ନାମରେ ପରିଚୟ ଦେବାକୁ ମନରେ କୌଣସି ପ୍ରକାର ଦ୍ୱିଧା ରଖନ୍ତି ନାହିଁ।

ଖିଲାଫତ ଆନ୍ଦୋଳନ ବେଳେ ହିନ୍ଦୁ ମୁସଲମାନ ଏକତା ପ୍ରତିଷ୍ଠିତ ହୋଇ ପାରିଥିଲା। ମୌଲାନା ମହମ୍ମଦ ଅଲ୍ଲି ଓ ସୌକତ ଅଲ୍ଲି ଦୁଇଭାଇ ମୁସଲମାନଙ୍କର ଅପ୍ରତିଦ୍ୱନ୍ଦୀ ନେତା ଥିଲେ। ଭାରତର ମୁସଲମାନଙ୍କ ଉପରେ ମହାତ୍ମାଗାନ୍ଧୀଙ୍କର ପ୍ରଭାବ ଅସୀମ। କିନ୍ତୁ ଖିଲାଫତ ଆନ୍ଦୋଳନ ଶିଥିଳ ପଡ଼ିଗଲା ପରେ ଗାନ୍ଧୀଜୀଙ୍କର ପ୍ରଭାବ କମିବାକୁ ଆରମ୍ଭ କରିଥିଲା। ଆଲ୍ଲିଭାଇ ଦୁହେଁ ଗାନ୍ଧୀଙ୍କୁ ପରିତ୍ୟାଗ କରି ମୁସଲମାନଙ୍କ ନେତା ବନିବାକୁ ପ୍ରୟାସ କଲେ। ଡାକ୍ତର ଅନସାରୀ, ମୌଲାନା ଆଜାଦ ପ୍ରଭୃତି ପ୍ରତିଷ୍ଠିତ ମୁସଲମାନ ନେତୃସ୍ଥାନୀୟ ବ୍ୟକ୍ତିମାନେ କଂଗ୍ରେସରେ ରହିଲେ। ଆଲ୍ଲିଭାଇ ମୁସଲମାନ ସଂପ୍ରଦାୟର ଅପ୍ରତିଦ୍ୱନ୍ଦୀ ନେତାରୂପେ ରହିପାରିଲେ ନାହିଁ। ମୁସଲମାନଙ୍କୁ ପ୍ରଭାବିତ କଲାଭଳି ସେପରି ବିଚକ୍ଷଣ ବ୍ୟକ୍ତି ଆଉ କେହି ରହିଲେ ନାହିଁ। ଏହି

ଶୂନ୍ୟସ୍ଥାନ ପୂରଣ କରିବାକୁ ଜିନ୍ନାଙ୍କୁ ଏକ ଅପୂର୍ବ ସୁଯୋଗ ମିଳିଗଲା। କେବଳ କଥା ଛଳରେ ଜିନ୍ନା ସାହେବ ଭାରତର ମୁସଲମାନଙ୍କ ନେତା ବନିଲେ। କାରଣ ସେ ସାମ୍ରାଜ୍ୟବାଦୀ ଶାସକଗୋଷ୍ଠୀଙ୍କ ପୂରା ସମର୍ଥନ ଲାଭକରି ପାରୁଥିଲେ। ତାଙ୍କ କଥାକୁ ଇଂରେଜ ସରକାର ଗ୍ରହଣ କରୁଥିବାରୁ ତାଙ୍କର ଆସନ କ୍ରମଶଃ ଦୃଢ଼ ହୋଇ ଉଠିଲା। ସାମ୍ରାଜ୍ୟବାଦୀଙ୍କ ଚକ୍ରାନ୍ତ, ମୁସଲମାନଙ୍କ ସାଂପ୍ରଦାୟିକ ଭାବନା ଏବଂ ଜିନ୍ନାଙ୍କ ବିନା ତ୍ୟାଗରେ ନେତୃତ୍ୱ କରିବାର ତୀବ୍ର ଲାଳସା ଏହି ତିନୋଟି ଉପାଦାନର ମିଶ୍ରଣରେ ମହମ୍ମଦ ଅଲ୍ଲି ଜିନ୍ନା ଭାରତରେ ମହାତ୍ମାଗାନ୍ଧୀଙ୍କ ସହିତ ସମାନ ସ୍ତରରେ ଠିଆହୋଇ ଭାରତର ଭାଗ୍ୟ ଗଠନ କରିବାକୁ ସମର୍ଥ ହୋଇ ପାରିଲେ।

୧୯୨୦ ମସିହାରେ ଯେଉଁ ଜିନ୍ନାଙ୍କୁ ମୁଁ ବମ୍ୱେଇରେ ଦେଖିଥିଲି, ୧୯୪୫ ଓ ୪୬ ମସିହା ବେଳକୁ ସେ ବଦଳି ଯାଇଛନ୍ତି। ସୁତରାଂ ତାଙ୍କୁ ଆଉ ମହମ୍ମଦ ଅଲ୍ଲି ଜିନ୍ନା ନ କହି, ବର୍ତ୍ତମାନ ତାଙ୍କୁ ମହମ୍ମଦ ଘୋରୀ କହିବା ଉଚିତ ବୋଲି ମୁଁ ମନେକରେ। ମହମ୍ମଦ ଘୋରୀ ଆକ୍ରମଣ କରି ଭାରତରେ ମୁସଲମାନ ରାଜ୍ୟ ସ୍ଥାପନ କରିଥିଲେ। ଜିନ୍ନା ସାହେବ ସେହିଭଳି ରକ୍ତାକ୍ତ ସଂଗ୍ରାମଦ୍ୱାରା ଭାରତର ଅଙ୍ଗଛେଦନ କରି ପାକିସ୍ଥାନ ପ୍ରତିଷ୍ଠା କରିବାକୁ ବ୍ରିଟିଶ ସାମ୍ରାଜ୍ୟବାଦୀଙ୍କ ଚକ୍ରାନ୍ତରେ ଗାନ୍ଧୀଜୀ ଓ କଂଗ୍ରେସକୁ ପରାଜିତ କଲେ। ହିନ୍ଦୁ ମୁସଲମାନ ଦୁଇଭାଇ ନୁହଁନ୍ତି, ସେମାନେ ଦୁଇଟି ଜାତି। ସେମାନେ ଏକ ଶାସନାଧୀନରେ ରହି ନ ପାରନ୍ତି। ଜିନ୍ନା, ତୁମ୍ଭେ ଅଦ୍ଭୁତ, ତୁମର ବିଚାର ଅଦ୍ଭୁତ, ତୁମର କାର୍ଯ୍ୟ ମଧ୍ୟ ଅଦ୍ଭୁତ। ହିଂସା ଓ ଦ୍ୱେଷ ବାଣୀ ପ୍ରଚାର କରି ଲକ୍ଷ ଲକ୍ଷ ହିନ୍ଦୁ ମୁସଲମାନ ନରନାରୀ, ବୃଦ୍ଧ ବାଳକ ହତ୍ୟାର କାରଣ ବନିଛ। ଯେଉଁ ପାକିସ୍ଥାନ ସୃଷ୍ଟି କରିଗଲ, ସେହି ପାକିସ୍ଥାନ ଓ ଭାରତ ଉଭୟ ଦେଶର ହିନ୍ଦୁ ମୁସଲମାନ ଭାଇଙ୍କର ଅସୀମ ଦୁଃଖ ନିର୍ଯ୍ୟାତନାର କାରଣ ହୋଇଛି। ତୁମ୍ଭ ପୂର୍ବପୁରୁଷ ବ୍ରାହ୍ମଣ ଥିଲେ। ତୁମ୍ଭେ ଭାରତରେ ଜନ୍ମଗ୍ରହଣ କରିଥିଲ। ଅତଏବ ତୁମର ଆତ୍ମା ଶାନ୍ତିଲାଭ କରୁ—ଏହି ହେଉଛି ମୋ ପରି ଜଣେକ କର୍ମୀର ହୃଦୟବାଣୀ।

ମହାତ୍ମାଗାନ୍ଧୀ ଜିନ୍ନା ସାହେବଙ୍କୁ କୌଣସି ପ୍ରକାରେ ବୁଝାଇ ପାରିଲେ ନାହିଁ। ହିନ୍ଦୁ, ମୁସଲମାନ ଦୁଇଟି ଜାତି କଥା ଶୁଣି ମହାତ୍ମାଜୀ ଜିନ୍ନାଙ୍କ ନିକଟରୁ ନିରାଶାରେ ଫେରି ଆସିଲେ। ଦୁଇ ଜାତି ନୀତିକୁ ଗ୍ରହଣ କରି ପାକିସ୍ଥାନ ଦାବୀକୁ କଂଗ୍ରେସ ପ୍ରଥମେ ସ୍ୱୀକାର କରିବା ଦରକାର। ଜିନ୍ନା ସାହେବ ଅଖଣ୍ଡ ଭାରତପାଇଁ ସ୍ୱାଧୀନତା ଦାବୀ କରିବାରେ କଂଗ୍ରେସ ସହିତ ହାତ ମିଳାଇ ପାରିବେ ନାହିଁ। ପାକିସ୍ଥାନ ଓ ଭାରତ ଏପରି ଦୁଇଟି ଦେଶପାଇଁ ସ୍ୱାଧୀନତା ଦାବୀ କରିବାକୁ ଜିନ୍ନା ସାହେବ ପ୍ରସ୍ତୁତ। ପାକିସ୍ଥାନ ହେବ ମୁସଲମାନ ରାଜ୍ୟ, ଭାରତ ହେବ ହିନ୍ଦୁଙ୍କ ରାଜ୍ୟ। ଭାରତ ଏହିପରି ଦୁଇ ଭାଗ ହେଲେ ସାମ୍ରାଜ୍ୟବାଦୀ ଇଂରେଜ ଶାସକଗୋଷ୍ଠୀ, ଭାରତ ଛାଡ଼ି ପାକିସ୍ଥାନରେ ସେମାନଙ୍କ ସ୍ୱାର୍ଥ ଓ ପ୍ରଭାବ ପତିପରି ବଜାୟ ରଖିବାକୁ ଅଧିକ ସମର୍ଥ ହୋଇ ପାରିବେ। ଏଥିପାଇଁ ସେମାନଙ୍କ ପ୍ରିୟପାତ୍ର ଜିନ୍ନା ସାହେବ।

ମହାତ୍ମାଗାନ୍ଧୀ ଓ କଂଗ୍ରେସ, ଭାରତକୁ ଏପରି ଦୁଇଭାଗ କରିବାକୁ ପ୍ରସ୍ତୁତ ନୁହନ୍ତି। ବିଲାତର ଶ୍ରମିକ ସରକାର ମଧ୍ୟ ଭାରତକୁ ଦୁଇଭାଗ କରିବା ନୀତିକୁ ସମର୍ଥନ କରି ନାହାନ୍ତି। ଶ୍ରମିକ ସରକାର ଭାରତର ରାଜନୈତିକ ସମସ୍ୟା ସମାଧାନ କରିବାକୁ ବିଲାତରୁ ଗୋଟିଏ ପାର୍ଲିଆମେଣ୍ଟ ଦଳ ଭାରତକୁ ପଠାଇଲେ। ୧୯୪୬ ମସିହା ଅପ୍ରେଲ ମାସରୁ ଜୁନମାସ ପର୍ଯ୍ୟନ୍ତ ସେମାନେ ବହୁ ଚେଷ୍ଟା କଲେ। ବଡ଼ଲାଟଙ୍କ କାଉନ୍‌ସିଲକୁ ଭାଙ୍ଗି ନୂଆ କାଉନ୍‌ସିଲ ଗଢ଼ାଯିବ। ଏହି ନବଗଠିତ କାଉନ୍‌ସିଲ୍ ହାତରେ ଭାରତର ସମସ୍ତ ଶାସନ କ୍ଷମତା ରହିବ। ବିଲାତର ପାର୍ଲିଆମେଣ୍ଟ ଭାରତର ଶାସନଖସଡ଼ା ପ୍ରସ୍ତୁତ କରିବାର ଅଧିକାର ମଧ୍ୟ ଭାରତର ପ୍ରଜାପ୍ରତିନିଧିଙ୍କ ହାତରେ ଅର୍ପଣ କରି ଦେବ। ହିନ୍ଦୁ ମୁସଲମାନ ମିଶି ଶାସନକ୍ଷମତା ଗ୍ରହଣ କରିବା ନିହାତି ଦରକାର।

କିନ୍ତୁ ଜିନ୍ନା ସାହେବ କୌଣସି କଥା ଶୁଣିବାକୁ ପ୍ରସ୍ତୁତ ନୁହନ୍ତି। ଚର୍ଚ୍ଚିଲ, ହୋର ଓ ଆମେରୀ ସାହେବଙ୍କ ଇଙ୍ଗିତରେ ଭାରତ ସାମ୍ରାଜ୍ୟବାଦୀ ଶାସକଗୋଷ୍ଠୀ ତାଙ୍କୁ ଗୁପ୍ତଭାବରେ ସବୁପ୍ରକାର ସାହାଯ୍ୟ କରୁଛନ୍ତି। ଅନେକ ଭିତରି ରହସ୍ୟ କଂଗ୍ରସକୁ ନ ଜଣାଇ ଜିନ୍ନାଙ୍କୁ ସେମାନେ ଜଣାଇଛନ୍ତି ବୋଲି ଅନୁମାନ କରିବାର ଯଥେଷ୍ଟ କାରଣ ଅଛି। ବଡ଼ଲାଟ ଲର୍ଡ ଓ୍ୟାଭେଲ ମଧ୍ୟ ଏଥିରୁ ମୁକ୍ତ ନୁହନ୍ତି। ଜିନ୍ନା ସାହେବ କୌଣସି କଥା ନ ଶୁଣିବାରୁ ବିଲାତର ଶ୍ରମିକ ସରକାର କଂଗ୍ରେସ ହାତରେ କ୍ଷମତା ଅର୍ପଣ କରିଦବାକୁ ସୂଚନା ଦେଲେ। ସୁତରାଂ ବଡ଼ଲାଟ ଲର୍ଡ ଓ୍ୟାଭେଲ କଂଗ୍ରେସ ପ୍ରେସିଡେଣ୍ଟ ଶ୍ରୀ ଜବହାରଲାଲ ନେହେରୁଙ୍କୁ ଅସ୍ଥାୟୀ ସରକାର ଗଠନ କରିବାକୁ ଆହ୍ୱାନ କଲେ। ଶ୍ରୀ ଜବାହାରଲାଲ ନେହେରୁଙ୍କ ଅଧକ୍ଷତାରେ କଂଗ୍ରେସ ଭାରତର ଅସ୍ଥାୟୀ ସରକାର ଗଠନ କରି ଶାସନ କ୍ଷମତା ଗ୍ରହଣ କରିଥିଲା। ଏହି ଅସ୍ଥାୟୀ ସରକାରରେ ଯୋଗଦେଇ ଭାରତର ଶାସନବିଧାନ ଗଢ଼ିବାକୁ କଂଗ୍ରେସ ଜିନ୍ନାଙ୍କ ସହଯୋଗ ଲାଭ କରିବାକୁ କୌଣସି ଉପାୟ ବାକୀ ରଖି ନାହିଁ। ଶାସନଖସଡ଼ା ପ୍ରସ୍ତୁତ କଲାବେଳେ ପାକିସ୍ଥାନ ବିଷୟ ଆଲୋଚନା କରି ମୀମାଂସା କରିବାକୁ ସ୍ୱୀକୃତି ମଧ୍ୟ ପ୍ରଦାନ କରାଗଲା। କିନ୍ତୁ ଜିନ୍ନା ସାହେବ ସହଯୋଗ କରିବା ପରିବର୍ତ୍ତେ ରକ୍ତାକ୍ତ ସଂଗ୍ରାମ ଘୋଷଣା କରି ପାକିସ୍ଥାନ ହାସଲ କରିବାକୁ ଚେଷ୍ଟାକଲେ। ପାକିସ୍ଥାନର ରୂପରେଖ କଣ ହେବ ଜଣାନାହିଁ, ତଥାପି ଭାରତର ମୁସଲମାନ ଭାଇ 'ଲଡ୍‌କେ ଲେଙ୍ଗେ ପାକିସ୍ଥାନ, ମାରକେ ଲେଙ୍ଗେ ପାକିସ୍ଥାନ' ବୋଲି ଚିତ୍କାର କରି ଉଠିଲେ। ୧୯୪୬ ମସିହା ଅଗଷ୍ଟ ୧୬ ତାରିଖରୁ ପାକିସ୍ଥାନ ପାଇଁ ଭାରତରେ ମୁସଲମାନ ଓ ହିନ୍ଦୁଙ୍କ ବିରୁଦ୍ଧରେ ରକ୍ତାକ୍ତ ସଂଗ୍ରାମ ଆରମ୍ଭ ହୋଇଗଲା।

ବଙ୍ଗଳାରେ ମୁସଲିମ୍ ଲିଗର ଶାସନ ଏବଂ ସୁରାବର୍ଦ୍ଦି ମୁଖ୍ୟମନ୍ତ୍ରୀ। ଏଣୁ କଲିକତା ନଗରୀରେ ହିନ୍ଦୁ ସଂପ୍ରଦାୟର ଲୋକଙ୍କୁ ମୂଳପୋଛ କରିଦେବାକୁ ଷଡ଼ଯନ୍ତ୍ର କରାଯାଇଥିଲା। କଲିକତା ନଗରୀରେ ହଜାର ହଜାର ହିନ୍ଦୁ ହାଣଖାଇ ଶୋଇଗଲେ।

ହିନ୍ଦୁଙ୍କ ଘର ଦୋକାନପତ୍ର ସବୁ ଲୁଟ୍‌କରି ନିଆଗଲା। ସେ ଭୟାବହ ଘଟଣା ବର୍ଣ୍ଣନା କରିବା କଠିନ। ତାହା କାହାରିକୁ ଅଛପା ନୁହେଁ। ସୁତରାଂ ସେ କାହାଣୀ ବର୍ଣ୍ଣନା କରୁ ନାହିଁ। ଏଠାରେ ଗୋଟିଏ ପ୍ରଶ୍ନ ସ୍ୱତଃ ମନରେ ଜାଗି ଉଠୁଛି। ଯେଉଁମାନେ ଏପରି ପ୍ରକାଶ୍ୟରେ ସଂଗ୍ରାମ ଘୋଷଣା କରି ଅସଂଖ୍ୟ ନରହତ୍ୟା କଲେ, ସେମାନଙ୍କର ବିଚାର ହୋଇ ଫାଶୀ, ଦ୍ୱୀପାନ୍ତର ସଜା ପାଇବାର କଥା। ଜିନ୍ନା ସାହେବଙ୍କୁ ଏଥିପାଇଁ ସଂପୂର୍ଣ୍ଣ ଦାୟୀ କରି ତାଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ଦେବା ଉଚିତ। ସାମ୍ରାଜ୍ୟବାଦୀ ଶାସକଗୋଷ୍ଠୀ ପ୍ରକାରାନ୍ତରେ ଜିନ୍ନାଙ୍କୁ ସାହାଯ୍ୟ କରୁଥିବାରୁ ସେ ପ୍ରଶ୍ନ ଉଠିପାରିଲା ନାହିଁ। ଭାରତରେ ମୁସଲମାନଙ୍କୁ ଉସାହିତ କରି ବିଭୀଷିକା ସୃଷ୍ଟି କରିପାରିଲେ ଭାରତର ସ୍ୱାଧୀନତା ଦାବୀ କିଛି ସମୟ ପାଇଁ ଲୋକସାଧାରଣଙ୍କ ମନରୁ ପାସୋର ଯିବ। ଦୁନିଆ ବୁଝିବ, ଭାରତରୁ ଇଂରେଜ ରାଜତ୍ୱ ଉଠିଗଲେ ଭାରତ ଲୋକେ, ଆପଣା ମଧ୍ୟରେ ହାଣକାଟ ହୋଇ ମରିବେ ଏବଂ ଦେଶ ଶାସନ କରିବାକୁ କଦାପି ସମର୍ଥ ହୋଇ ପାରିବେ ନାହିଁ। ସାମ୍ରାଜ୍ୟବାଦୀ ଶାସକଗୋଷ୍ଠୀଙ୍କର ଥିଲା ଏହା ହିଁ ଲକ୍ଷ୍ୟ। ତେଣୁ ସେମାନଙ୍କ ଭିତିରି ସାହାଯ୍ୟ ଓ ସହାନୁଭୂତିପାଇ ମୁସଲମାନମାନେ ଏପରି ନୃଶଂସ ହତ୍ୟାକାଣ୍ଡ ସୃଷ୍ଟି କରି ହିନ୍ଦୁ ସଂପ୍ରଦାୟ ଏବଂ କଂଗ୍ରେସର ନେତୃବର୍ଗଙ୍କୁ ଭୟଭୀତ କରାଇ ପାକିସ୍ଥାନ ହାସଲ କରିବାକୁ ସାହସ ଓ ବଳ ପାଇଲେ। ହତ୍ୟାକାଣ୍ଡ ଦମନ କରିବା ପାଇଁ ସୈନ୍ୟ ମଧ୍ୟ ମିଳି ପାରିଲା ନାହିଁ।

ବଡ଼ଲାଟ ଲର୍ଡ଼ ଓ୍ୟାଭେଲ ସାହେବ ଏଥିରେ କେତେଦୂର ସଂପୃକ୍ତ ଥିଲେ କହିହେବ ନାହି। ମାତ୍ର ତାଙ୍କର ଜିନ୍ନା ଓ ମୁସଲିମ୍ ଲିଗ୍ ପ୍ରତି ପ୍ରଗାଢ଼ ଆନ୍ତରିକତା ଥିବାରୁ ଏପରି ବିଭ୍ରାଟ ସୃଷ୍ଟି ହୋଇ ପାରିଲା। ଶ୍ରୀ ଜବାହରଲାଲଙ୍କ ଅସ୍ଥାୟୀ ସରକାର ନିରୁପାୟ ହୋଇ ପଡ଼ିଲା ପରି ଜଣାପଡ଼ିଲା। ଏହି କାରଣରୁ ବିଲାତର ଶ୍ରମିକ ସରକାର ଭାରତରୁ ଲର୍ଡ଼ ଓ୍ୟାଭେଲ ସାହେବଙ୍କୁ ବଡ଼ଲାଟ ପଦରୁ ଅନ୍ତର କରି ବିଲାତ ଡକାଇ ନେଲେ। ତାଙ୍କ ପରିବର୍ତ୍ତେ ଲର୍ଡ଼ ମାଉଣ୍ଟବାଟେନ ଭାରତର ବଡ଼ଲାଟ ହୋଇ ଆସିଲେ। ଲର୍ଡ଼ ମାଉଣ୍ଟବାଟେନ ସାହେବ ଭାରତର ବଡ଼ଲାଟ ପଦ ଗ୍ରହଣ କଲା ପରେ ସେ ଦେଶର ପରିସ୍ଥିତିକୁ ନିରୀକ୍ଷଣ କରିଥିଲେ। ଭାରତକୁ ଦୁଇଭାଗ କରିବା ଛଡ଼ା ଅନ୍ୟ କୌଣସି ବାଟ ତାଙ୍କୁ ଦେଖାଗଲା ନାହିଁ। କିନ୍ତୁ କଂଗ୍ରେସ ଏହାକୁ ସ୍ୱୀକାର କରିବା ଦରକାର। ଅସ୍ଥାୟୀ ସରକାରରେ ବଡ଼ଲାଟ ଓ୍ୟାଭେଲଙ୍କ ଦୂରଦୃଷ୍ଟି ଅଭାବରୁ ମୁସଲିମ୍ ଲିଗ୍‌ର ପ୍ରତିନିଧି ଅସ୍ଥାୟୀ ସରକାରରେ ଯୋଗ ଦେଇଛନ୍ତି। କଂଗ୍ରେସ ତାହା ହିଁ ଇଚ୍ଛା କରୁଥିଲା। କିନ୍ତୁ ମୁସଲିମ୍ ଲିଗ୍‌ର ପ୍ରତିନିଧି ଅସ୍ଥାୟୀ ସରକାରରେ ଯୋଗଦେଇ ଦେଶର ଶାସନ ଚଳାଇବାକୁ ସହଯୋଗ ନ କରି ଶାସନକଳକୁ ଅଚଳ କରିଦେବା ଇଚ୍ଛାରେ ନାନା ପ୍ରକାର ଉପଦ୍ରବ ସୃଷ୍ଟି କରିବାକୁ ଲାଗିଲେ। କଂଗ୍ରେସର ନେତୃବର୍ଗ ଦେଖିଲେ ଯେ ଶାସନ କ୍ଷମତା ଛାଡ଼ିଦେଲେ

ଆଉ ଭାରତ ହାତକୁ ସହଜରେ କ୍ଷମତା ଆସିବ ନାହିଁ। ବର୍ତ୍ତମାନର ସୁଯୋଗ ହରାଇ ବସିବା ଉଚିତ ନୁହେଁ। ଆଗ ବ୍ରିଟିଶ ରାଜତ୍ୱ ଲୋପ ପାଇବା ପ୍ରଧାନ ଓ ଜରୁରୀ ପ୍ରଶ୍ନ। ଦେଶ ଦୁଇଭାଗ ହେବା ବରଂ ବାଞ୍ଛନୀୟ, କିନ୍ତୁ ଦାସତ୍ୱ ତଥା ପରାଧୀନତା ଅସହ୍ୟ। ସୁତରାଂ ଦେଶ ଦୁଇ ଭାଗ ହେବାକୁ କଂଗ୍ରେସ ସ୍ୱୀକୃତି ପ୍ରଦାନ କଲା। ଭାରତ ଦୁଇ ଭାଗରେ ବିଭକ୍ତ ହେଲା। ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ରାତ୍ର ବାରଟାରେ ଭାରତ ଓ ପାକିସ୍ଥାନ ଦୁଇଟି ସ୍ୱାଧୀନ ରାଷ୍ଟ୍ରରୂପେ ଆତ୍ମପ୍ରକାଶ କଲେ ଏବଂ ସେହି ମୁହୂର୍ତ୍ତରୁ ଇଂରେଜ ରାଜତ୍ୱ ଭାରତରୁ ଚିରକାଳ ନିମନ୍ତେ ନିର୍ବାଣପ୍ରାପ୍ତ ହୋଇଥିଲା।

ବ୍ରିଟିଶ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ଯାଉ ନଥିଲେ। କିନ୍ତୁ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ରାତି ବାରଘଣ୍ଟା ପରେ ଭାରତ ଭୂମିରୁ ବ୍ରିଟିଶ ସାମ୍ରାଜ୍ୟ ଲୋପ ପାଇଲା। ଦେଢ଼ଶହ ବର୍ଷ ପରେ ଭାରତ ଏକ ନୂତନ କଳେବର ଧାରଣ କରୁଛି। ଭାରତର ସ୍ୱାଧୀନତା ପ୍ରାପ୍ତି ମନରେ ଯେପରି ଆନନ୍ଦ ଜାତ କରିବାର କଥା ସେପରି ଆନନ୍ଦ ମନରେ ସ୍ୱତଃ ଜାଗି ଉଠୁନାହିଁ। ମନ ଓ ହୃଦୟ ମଧ୍ୟରେ ବେଦନା ଅନୁଭବ କଲାପରି ବୋଧ ହେଉଛି। ସହସ୍ର ସଂଖ୍ୟାରେ ଆବାଳ ବୃଦ୍ଧବନିତାଙ୍କୁ ନିଷ୍ଠୁର ଭାବରେ ହତ୍ୟା କରାଯାଇଛି। ଲକ୍ଷ ଲକ୍ଷ ଲୋକ ଜୀବନ ବିକଳରେ ଧନ ସମ୍ପତ୍ତିର ମାୟା ତ୍ୟାଗକରି ଦାଣ୍ଡର ଭିଖାରୀ ପାଲଟିଛନ୍ତି। ଏହିପରି ଚିତ୍ର ଆଖି ଆଗରେ ଝଲସି ଉଠୁଛି। ଭାରତ ସ୍ୱାଧୀନ ହେଲା ବୋଲି ଭାବିଲା ବେଳକୁ ଏହିପରି ହୃଦୟ ବିଦାରକ କରୁଣ ଚିତ୍ର ମାନସ ପଟରେ ଆଙ୍କିହୋଇ ଯାଉଛି। ମନରେ ଆନନ୍ଦ ମିଳୁନାହିଁ। ତଥାପି ୧୫ତାରିଖ ଅଗଷ୍ଟ ଦିବସ ରାତି ବାରଟା ପରେ ଆଉ ନିଦ ହୋଇନାହିଁ। ଅବଶିଷ୍ଟ ରାତ୍ରି ଆନନ୍ଦ ଉତ୍ସବରେ କଟିଯାଇଛି। ଭାରତକୁ ସ୍ୱାଧୀନ କରିବାପାଇଁ କେତେ କଳ୍ପନା, କେତେ ସଂଗଠନ, କେତେ କଠୋର ପରିଶ୍ରମ କରିବାକୁ ପଡ଼ିଛି, ତାହାର ଇୟତ୍ତା ନାହିଁ। ଆଜି ସ୍ୱପ୍ନ ବାସ୍ତବ ରୂପ ଧାରଣ କରିଛି। ମନର ଚିନ୍ତାଧାରା ବଦଳିବାକୁ ଆରମ୍ଭ କରୁଛି। ଜୀବନର ଗତି ବଦଳି ଯାଉଛି ଏବଂ ଆଦର୍ଶରେ ପରିବର୍ତ୍ତନ କରୁଛି। ଏହି ନୂତନ ଆଦର୍ଶ ଓ ନୂତନ ଆଲୋକରେ ନୂତନ ଭାରତକୁ ଗଢ଼ିବାକୁ ହେବ। ଶାସନଖସଡ଼ା ପ୍ରସ୍ତୁତ କରାଯିବ। ଦେଶବାସୀଙ୍କ ଉପରେ ଯେଉଁ ନୂତନ ଦାୟିତ୍ୱର ବୋଝ ଲଦାଗଲା, ତାହା ଦେଶବାସୀ କିପରି ହୃଦୟଙ୍ଗମ କରିବେ, ଏଥିପାଇଁ କଠିନ ପରିଶ୍ରମ କରିବାକୁ ହେବ। ଏହିପରି ବହୁତ ଭାବନା ମନରେ ଜାଗି ଉଠିଲା। କଟକରେ ରୋଗ ଶଯ୍ୟାରେ ପଡ଼ି ରହିବାକୁ ଇଚ୍ଛା ହେଲା ନାହିଁ।

ବ୍ରିଟିଶ ସରକାର ଭାରତର ସ୍ୱାଧୀନତା ଘୋଷଣା କରିଦେଇ ତାଙ୍କର ଶାସନକାଳ ଅନ୍ତର କରିଦେଲେ ସତ, ତଥାପି ଭାରତର ଶାସନରେ ତାଙ୍କର ପ୍ରଭାବ ପକାଇବା ବାଟସବୁ ନିଶ୍ଚିହ୍ନ କରିନାହାନ୍ତି। ଅଙ୍ଗଚ୍ଛେଦ ଘଟିବାରୁ ନୂତନ ଭାରତର ଦୁଃଖ କହିଲେ ନ ସରେ। ଘୋର ବିପଦର ଅଚିରେ ସମ୍ମୁଖୀନ ହେଲା ପ୍ରାୟ ସଙ୍କେତ ସବୁ

ଦେଖା ପଡୁଛି। ଦେଶରେ ଛ ଶହ ପର୍ଯ୍ୟନ୍ତ ଦେଶୀୟ ରାଜ୍ୟ ଥିଲା। ସେମାନେ ସମସ୍ତେ ଇଂରେଜ ସରକାରଙ୍କ ନିକଟରେ ବଶ୍ୟତା ସ୍ୱୀକାର କରି ଅସଂଖ୍ୟ ନରନାରୀଙ୍କ ଉପରେ ରାଜତ୍ୱ କରୁଥିଲେ। ସେମାନଙ୍କ ଉପରୁ ବ୍ରିଟିଶ ଆଧିପତ୍ୟ ମଧ୍ୟ ଉଠିଗଲା। ସେମାନେ ସମସ୍ତେ ଜଣେ ଜଣେ ସ୍ୱାଧୀନ ରାଜା। ମନଇଚ୍ଛା ଯାହା କିଛି କରିପାରନ୍ତି। ଇଂରେଜଙ୍କ ଗୁପ୍ତଚର ସେମାନଙ୍କ ଭିତରେ କିଛି ଷଡ଼ଯନ୍ତ୍ର ନ କରୁଛନ୍ତି ବୋଲି କିଏ କହିବ? ଏହି ଦେଶୀୟ ରାଜା ରାଜୁଡ଼ାଙ୍କୁ ଧରି ଇଂରେଜ ସରକାର ଭାରତରେ କେତେକ ଅଞ୍ଚଳରେ ତିଷ୍ଠିଯିବାକୁ ପ୍ରବଳ ଚେଷ୍ଟା ନ କରୁଥିବେ ତାହା କିଏ ଜାଣେ? କଂଗ୍ରେସର ତୁଙ୍ଗ ନେତୃବୃନ୍ଦ ଏଥିପାଇଁ ଅବସର ଦେଇନାହାନ୍ତି। ସର୍ଦ୍ଦାର ପଟେଲଙ୍କ ଦୂରଦୃଷ୍ଟି ଭାରତକୁ ଆଶୁ ବିପଦରୁ ରକ୍ଷା କରିପାରିଛି। ଛ ଶହ ଦେଶୀୟ ରାଜ୍ୟକୁ ଗୋଟିଏ କଲମଗାରରେ ଲୋପ କରିଦେଇ, ଶତ ଶତ ସଂଖ୍ୟାରେ ବିଭକ୍ତ ଭାରତକୁ ଏକ ବିଶାଳ ଭାରତରେ ପରିଣତ କରିଦେବା ଦ୍ୱାରା ସମଗ୍ର ପୃଥିବୀକୁ ସେ ଚମକିତ କରି ପାରିଛନ୍ତି। ବିନା ରକ୍ତପାତରେ ପୁଣି କୌଣସି ପ୍ରକାର ବାକ୍‌ବିତଣ୍ଡା ନ ଲାଗି ଭାରତରେ ଏତେ ବଡ଼ ବିପ୍ଳବାତ୍ମକ ପରିବର୍ତ୍ତନ ଘଟିପାରିଲା ତାହାହିଁ ପୃଥିବୀକୁ ଆଶ୍ଚର୍ଯ୍ୟଜନକ ବୋଧ ହୋଇଛି। ଏହି ବିପ୍ଳବର ସୂତ୍ରପାତ ୧୯୪୭ ମସିହା ଡିସେମ୍ବର ୧୪ ଓ ୧୫ ତାରିଖରେ ଓଡ଼ିଶାରେ ଆରମ୍ଭ ହୋଇଥିଲା।

ଭାରତରେ ଯେଉଁ ଏତେ ବଡ଼ ବିପ୍ଳବାତ୍ମକ କାର୍ଯ୍ୟ ଅନାୟାସରେ ଘଟିପାରିଲା ତାହାର ସୂତ୍ରପାତ ପୁଣ୍ୟଭୂମି ଉତ୍କଳରେ ପ୍ରଥମେ ଆରମ୍ଭ ହୋଇଥିଲା। ଓଡ଼ିଶା ଗଡ଼ଜାତରେ ବିଦ୍ରୋହାନଳ ୧୯୧୪ରେ ପ୍ରଥମେ ମୁଁ ସୃଷ୍ଟି କରିଥିଲି। ସେହିଦିନୁ ଗଡ଼ଜାତ ପ୍ରଜାଙ୍କ ଦୁଃଖ ଦୁର୍ଦ୍ଦଶା ସବୁବେଳେ ମୋ ମନରେ ଥାଏ। ମହାତ୍ମାଗାନ୍ଧୀ ଓ ଦୀନବନ୍ଧୁ ଆଣ୍ଡୁଜଙ୍କ ସହିତ ପ୍ରଥମ ସାକ୍ଷାତରେ ଆଗ ମୁଁ ଓଡ଼ିଶା ଗଡ଼ଜାତ କଥା ସେମାନଙ୍କୁ କହିଥିଲି। ଓଡ଼ିଶା ଖଣ୍ଡ ବିଖଣ୍ଡ ହୋଇ ବିଭିନ୍ନ ପ୍ରାଦେଶିକ ସରକାରଙ୍କ ଅଧୀନରେ ପଡ଼ିଥିବାରୁ ଓଡ଼ିଶାର ସ୍ୱାର୍ଥ ସର୍ବତ୍ର ଅବହେଳିତ ହେଉଛି। ଓଡ଼ିଶା ନାମରେ ଯେଉଁ ରାଜ୍ୟ, ତାହା ମଧ୍ୟରେ କ୍ଷୁଦ୍ର କ୍ଷୁଦ୍ର ଦେଶୀୟ ରାଜା ରାଜୁଡ଼ାଙ୍କ ରାଜ୍ୟ ଅନେକ ଏହି ଦେଶୀୟ ରାଜ୍ୟ ସହିତ ପ୍ରାକୃତିକ ଓଡ଼ିଶାର କୌଣସି ସଂବନ୍ଧ ନାହିଁ କହିଲେ ଚଳେ। ଓଡ଼ିଶାର ଭବିଷ୍ୟତ ଚିନ୍ତାକଲେ ଗଡ଼ଜାତ କଥା ଚିନ୍ତା ନ କରି ରହି ହୁଏ ନାହିଁ। ଓଡ଼ିଶାର ଗଡ଼ଜାତ ସବୁ ମିଶି ଗୋଟିଏ ମିଳିତ ରାଜ୍ୟଗୋଷ୍ଠୀ ହେଉ ନତୁବା ଓଡ଼ିଶାରେ ସେସବୁକୁ ମିଶାଇ ଦିଆଯାଉ। ଏହା ଥିଲା ମୋର ସେତେବେଳର କଳ୍ପନା। କିନ୍ତୁ ଭାରତରେ ଇଂରେଜ ରାଜତ୍ୱ ଥିବା ପର୍ଯ୍ୟନ୍ତ ମୋର ସେ କଳ୍ପନାକୁ ରୂପାନ୍ତରିତ କରିବାକୁ କୌଣସି ଭାବନା ମୋର ମନରେ ସ୍ଥାନ ପାଇ ନାହିଁ। ମହତାବ କମିଟିର ତଦନ୍ତ ରିପୋର୍ଟ ପ୍ରକାଶ ପାଇଲା ପରେ ମଧ୍ୟ ଗଡ଼ଜାତ ସବୁର ପରିଣତି କି ଆକାର ଧାରଣା କରିବ ସେ ବିଷୟ ସ୍ପଷ୍ଟ ମତ କେହି ପ୍ରକାଶ କରିନାହାନ୍ତି। ଶ୍ରୀ ହରେକୃଷ୍ଣ ମହତାବ, ତାଙ୍କ କମିଟିର ରିପୋର୍ଟ

ପରେ ଗଡ଼ଜାତ ପ୍ରତି ବିଶେଷ ଆକୃଷ୍ଟ ହୋଇଥିଲେ। କିନ୍ତୁ ଦେଶର ସ୍ୱାଧୀନତା ପ୍ରଶ୍ନ ମୁଖ୍ୟ ଥିବାରୁ ଏ ବିଷୟରେ ତାଙ୍କର କୌଣସି ନିଧାର୍ଯ୍ୟ ଧାରଣା ହୋଇନାହିଁ। ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ପରେ ଗଡ଼ଜାତ ପ୍ରଜାମଣ୍ଡଳ ସବୁ ଗଡ଼ଜାତରେ ଗଠିତ ହୋଇ ତୀବ୍ର ଆନ୍ଦୋଳନର ସୂତ୍ରପାତ ହେଲା। ରାଜ ଶାସନକୁ ଅବଜ୍ଞା କରି ପ୍ରଜା ଶାସନ ଜାରୀ କରିବାକୁ ସର୍ଦ୍ଦାର ପଟେଲ ନିର୍ଦ୍ଦେଶ ଦେଇଥିଲେ। ଏହି ସମୟରୁ ଗଡ଼ଜାତ ମିଶ୍ରଣ ପ୍ରଶ୍ନ ପ୍ରକାଶ୍ୟରେ ଆଲୋଚିତ ହୋଇଥିଲା। ଶ୍ରୀ ହରେକୃଷ୍ଣ ମହତାବ ଅତି ଦୃଢ଼ତାର ସହିତ, ଗଡ଼ଜାତ ସମୂହକୁ ଓଡ଼ିଶାରେ ମିଶାଇ ଦେବାକୁ ସ୍ୱଷ୍ଟମତ ପ୍ରକାଶ କଲେ। ତାହାଙ୍କର ଉଦ୍ୟମ ଓ ପ୍ରେରଣାରେ ଗଡ଼ଜାତ ସମୂହ ଓଡ଼ିଶାରେ ମିଶିପାରିଛି। ସର୍ଦ୍ଦାର ପଟେଲ ଏଥିପାଇଁ ଓଡ଼ିଶାକୁ ଆଗମନ କରିଥିଲେ। ୧୯୪୭ ମସିହା ଡିସେମ୍ବର ମାସ ୧୪ ଓ ୧୫ ତାରିଖରେ ଗଡ଼ଜାତ ରାଜାମାନେ ସେମାନଙ୍କ ଶାସନ କ୍ଷମତା ପ୍ରାଦେଶିକ ସରକାର ହାତରେ ସମର୍ପଣ କରି ଚୁକ୍ତିପତ୍ରରେ ସ୍ୱାକ୍ଷର କରିଥିଲେ। ଏ ବିଷୟରେ ଓଡ଼ିଶା ଭାରତର ପଥପ୍ରଦର୍ଶକ। ଶ୍ରୀ ହରେକୃଷ୍ଣ ମହତାବଙ୍କ ଦୃଢ଼ତା ହେତୁ ଏହା ସମ୍ଭବପର ହୋଇଥିଲା, ଏହା ସମସ୍ତଙ୍କୁ ସ୍ୱୀକାର କରିବାକୁ ପଡ଼ିବ। ଶ୍ରୀ ସାରଙ୍ଗଧର ଦାସ, ଶ୍ରୀ ପବିତ୍ରମୋହନ ପ୍ରଧାନ, ଶ୍ରୀ କପିଳେଶ୍ୱର ନନ୍ଦ, ଶ୍ରୀ ରାଧାନାଥ ରଥ, ଶ୍ରୀ କୈଳାସଚନ୍ଦ୍ର ମହାନ୍ତି ପ୍ରଭୃତି ଆମ୍ଭମାନଙ୍କର ପୂରା ସହଯୋଗ ଓ ସମର୍ଥନ ପାଇ ମହାତାବବାବୁ ଏହା କାର୍ଯ୍ୟରେ ପରିଣତ କରିପାରି ଥିଲେ। ସେହିଦିନୁ ମହତାବବାବୁ ନୂତନ ଓଡ଼ିଶାର ନିର୍ମାତା ବୋଲି ସୁଖ୍ୟାତି ଅର୍ଜନ କରିଛନ୍ତି।

ମୋର ମନ ବଡ଼ ଭାରାକ୍ରାନ୍ତ ଥିଲା। ଭବିଷ୍ୟତ କର୍ମପନ୍ଥା ମୁଁ କିଛି ନିର୍ଣ୍ଣୟ କରିପାରି ନଥିଲି। ଗଡ଼ଜାତ ମିଶ୍ରଣରେ ମୋର ବହୁଦିନର କଳ୍ପନା ସଫଳ ହେବାର ଦେଖି ମୋ ମନର ସମସ୍ତ ପ୍ରକାର ଅବସାଦ ଦୂର ହୋଇଗଲା। ବର୍ତ୍ତମାନ ପୂର୍ବ ଗଡ଼ଜାତ ରାଜ୍ୟ ପ୍ରଜାଙ୍କ ମଧ୍ୟରେ କାର୍ଯ୍ୟକରି ମୋର ଅବଶିଷ୍ଟ ଜୀବନ ଅତିବାହିତ କରିବାକୁ ମୁଁ ସଂକଳ୍ପ କଲି। ଦଶପଲ୍ଲା ମୋର ଜନ୍ମସ୍ଥାନ। ସେହି ଦଶପଲ୍ଲା ରାଜ୍ୟକୁ ମୁଁ ପ୍ରତ୍ୟାବର୍ତ୍ତନ କଲି। ଭାରତ୍ ସ୍ୱାଧୀନ ହୋଇଛି। ଗଡ଼ଜାତରେ ରାଜାଙ୍କ ଶାସନ ଅନ୍ତିମଦଶା ପ୍ରାପ୍ତ ହେଲା। ଏପରି ପରିସ୍ଥିତିରେ ମୋର ଦଶପଲ୍ଲା ପ୍ରତ୍ୟାବର୍ତ୍ତନ ମନରେ ଯେଉଁ ଭାବ ଜାତ କରୁଛି ତାହା ବର୍ଣ୍ଣନା କରି ପାରିବି ନାହିଁ। ମୋର ଜୀବନର ଲକ୍ଷ୍ୟ ପୂରଣ ହୋଇଛି ବୋଲି ମୋର ବିଶ୍ୱାସ। ଦଶପଲ୍ଲା ନାମ ଉଚ୍ଚାରଣ କଲେ ମୋର ରୋମାଞ୍ଚ ଜାତ ହେଉଥିଲା। କଣ୍ଟମେଳି ଓ ଭାବଗ୍ରାହୀ ବିଶ୍ୱାଳଙ୍କ ଶାସନ ଯୁଗପଦ୍ ମନରେ ଜାଗି ଉଠେ ଏବଂ ମନରେ କେତେ କରୁଣ ଚିତ୍ର ଆଙ୍କି ହୋଇଯାଏ। ସେ ସବୁ ବର୍ତ୍ତମାନ କୁହେଳିକା। ରାଜାଙ୍କ ନିରଙ୍କୁଶ ଶାସନର ଅବସାନ ଘଟିଥିଲେ ମଧ୍ୟ ଦଶପଲ୍ଲା ରାଜ ପରିବାର ପ୍ରତି ମୋ ହୃଦୟରେ ଅନୁକମ୍ପା ଭାବ ଲୋପ ପାଉନାହିଁ। କାରଣ ବିଶ୍ୱାଳଙ୍କ ଶାସନର ପୋଷଣରେ ନାବାଳକ ରାଜା ଓ ରାଜପରିବାର ସାଧାରଣ ପ୍ରଜାଙ୍କ ପରି ନାନା ଦୁର୍ଦ୍ଦଶା ଭୋଗ କରିଛନ୍ତି। ଗଡ଼ଜାତ

ରାଜା ପ୍ରଜାଙ୍କର ଏକ ବିଚିତ୍ର ସଂବନ୍ଧ। ରାଜା କିମ୍ବା ରାଜ ପରିବାରର ଲାଞ୍ଛନା ଗଡ଼ଜାତ ପ୍ରଜାଙ୍କୁ ସୁଖକର ବୋଧହୁଏ ନାହିଁ।

ଦଶପଲ୍ଲା ରାଜାଙ୍କର ଅମୂଲ୍ୟ ଗନ୍ତାଘର ଲୁଟ୍ ହୋଇ ଯାଇଛି। ରାଜା ଓ ରାଜ ପରିବାର ଦୁଃଖ ଓ ଲାଞ୍ଛନା ଭୋଗ କରିଛନ୍ତି। ପଲିଟିକାଲ ଏଜେଣ୍ଟ କବ୍‌ଡ଼େନ୍ ରାମସେନ ଦାଉ ଓ ପ୍ରତାପରେ ରାଜା ପ୍ରଜା କେହି ବାଦ ପଡ଼ିନାହାନ୍ତି। ଏହି ଦୁଃଖଦାୟକ କାହାଣୀ ବର୍ଣ୍ଣନା କରିହେବ ନାହିଁ। ସବୁ ମୁଁ ଜାଣିଛି। ଜାଣି ଶୁଣି ଭାବଗ୍ରାହୀ ବିଶ୍ୱାଳଙ୍କୁ ହତ୍ୟା କରିବାକୁ କନ୍ଧମାନଙ୍କୁ ଉତ୍ତେଜିତ କରିଥିଲି। ଏହି କନ୍ଧମେଳିରୁ ମୋର ଜୀବନର ଗତି ବଦଳିଥିଲା। ଦଶପଲ୍ଲା ନାମ ଉଚ୍ଚାରଣ କଲେ ଏ ସବୁର ଚିତ୍ର ମନରେ ଆଙ୍କି ହୋଇଯାଏ ଏବଂ ମୋର ରୋମ ଟାଙ୍କୁରି ଉଠେ। ଦେଶ ସ୍ୱାଧୀନ ହେଲା। ଗଡ଼ଜାତ ସମୂହରୁ ଅନ୍ଧାରୀ ଶାସନ ଲୋପ ପାଇଲା। ଏପରି ଅବସ୍ଥାରେ ଦଶପଲ୍ଲାକୁ ପ୍ରତ୍ୟାବର୍ତ୍ତନ କରିବାରେ ମୋର ମନର ଭାବ ଅନ୍ୟ ବୁଝିପାରିଲା ଭଳି ବ୍ୟକ୍ତ କରିବା ଅସମ୍ଭବ।

ଗଡ଼ଜାତ ମିଶ୍ରଣ ପରେ, ପ୍ରତି ଷ୍ଟେଟ୍ ପାଇଁ ଗୋଟିଏ ଲେଖାଏଁ ପରାମର୍ଶଦାତା କମିଟି ଏବଂ ବ୍ୟବସ୍ଥାପକ ସଭାପରି ଗୋଟିଏ ଷ୍ଟେଟ୍ ବ୍ୟବସ୍ଥାସଭା ମଧ୍ୟ ସରକାର ଗଠନ କରିଥିଲେ। ଏହି ଉଭୟରେ ସଭ୍ୟ ରହି କାର୍ଯ୍ୟ କରିବାପାଇଁ ମୁଁ ମନୋନିତ ହୋଇଥିଲି। ଏହାଦ୍ୱାରା ଗଡ଼ଜାତ ରାଜ୍ୟରେ ରହି କାର୍ଯ୍ୟ କରିବାକୁ ମୋର କୌଣସି ଅସୁବିଧା ରହିଲା ନାହିଁ। ଷ୍ଟେଟ୍‌ର ପରାମର୍ଶଦାତା କମିଟି ଓ ଷ୍ଟେଟ୍ ଆସେମ୍ବ୍ଲି ଉଭୟର ସଭ୍ୟପଦ ପାଇବାରୁ ପ୍ରଜାଙ୍କର କେତେକ ଅସୁବିଧା ଦୂର କରିବାକୁ ସମର୍ଥ ହୋଇ ପାରିଥିଲି। କିନ୍ତୁ ପ୍ରଜାଙ୍କର ସାମାନ୍ୟ ସୁବିଧା ଅସୁବିଧା ଦୂର କରିବା କିମ୍ବା କୌଣସି କର୍ମଚାରୀଙ୍କ ଅତ୍ୟାଚାରରୁ ରକ୍ଷା କରିବା ବଡ଼ କାମ ନୁହେଁ। ଗଡ଼ଜାତ ରାଜ୍ୟରେ ପ୍ରଜା ସଂଗଠନ ଦୃଢ଼ କରି ସେମାନଙ୍କ ସାହାଯ୍ୟରେ ମୋର ସାଧାରଣ ଅନୁଷ୍ଠାନ ଗଠନ କରିବା ଲକ୍ଷ୍ୟ। ରାଜା ଅବା ସରକାର ସବୁ କରିବେ ଏଇ ହେଲା ଗଡ଼ଜାତ ପ୍ରଜାଙ୍କର ମନୋବୃତ୍ତି। କେହି ଦୁଃଖ ଯନ୍ତ୍ରଣା ଭୋଗ କରୁଥିବାର ଜାଣିଲେ, କିମ୍ବା କେହି ସରକାରୀ ଅଥବା ରାଜକର୍ମଚାରୀଦ୍ୱାରା ଅନ୍ୟାୟରେ ପ୍ରପୀଡ଼ିତ ହେଉଥିବାର ଦେଖିଲେ, ଗଡ଼ଜାତ ପ୍ରଜା ସାଧାରଣଙ୍କ ମନରେ ତହିଁର ପ୍ରତିକାର ପାଇ କୌଣସି ଭାବାନ୍ତର ଜାତ ହେଉନାହିଁ। ହାକିମ ସାଜି ହୁକୁମଜାରୀ କରୁଥିବା ବ୍ୟକ୍ତିର ମାନସମ୍ମାନ କିଛି କମ ନୁହେଁ। ଏପରି ଅବସ୍ଥାରେ ହଠାତ୍ କିଛି ଗୋଟାଏ କାର୍ଯ୍ୟ ଆରମ୍ଭ କରିଦବା ମତେ ସହଜସାଧ୍ୟ ଜଣାପଡୁ ନାହିଁ। ପ୍ରତି ଷ୍ଟେଟ୍‌ରେ ପ୍ରଜାମଣ୍ଡଳ ସୃଷ୍ଟି ହୋଇଛି। ପ୍ରଜାମଣ୍ଡଳ କର୍ମୀମାନଙ୍କ ମନୋବୃତ୍ତି ସହିତ ମୋର ଚିନ୍ତାଧାରା ଖାପ ଖାଉନାହିଁ। ଏହି ପ୍ରଜାମଣ୍ଡଳ କଂଗ୍ରେସ କମିଟିରେ ପରିଣତ କରାଗଲା। ପ୍ରଜାମଣ୍ଡଳକୁ କଂଗ୍ରେସ କମିଟିରେ ପରିଣତ କରିଦେଲେ, ବିରାଟ କଂଗ୍ରେସର ଭାବଧାରାରେ ପ୍ରଜାମଣ୍ଡଳ କର୍ମୀ ଅନୁପ୍ରାଣିତ ହୋଇ ଯିବେ, ଏପରି ଆଶା କରିବା ଅନୁଚିତ।

ପ୍ରଜାମଣ୍ଡଳର ସଭାପତିଙ୍କ ଅଖଣ୍ଡ ପ୍ରଭାବ ଓ ପ୍ରତିପତ୍ତି ବିସ୍ତାର ଲାଭ କରିଛି। ସଭାପତିଙ୍କୁ ଅବଜ୍ଞା କରି କିଛି କରିହେବ ନାହିଁ। କିନ୍ତୁ ସଭାପତିଙ୍କ ମନରେ ଲୋକଙ୍କୁ ସଂଗଠନ କରିବାର କୌଣସି ଭାବନା ନାହିଁ। ମତେ ଯାହା କିଛି କାର୍ଯ୍ୟ କରିବାକୁ ହେବ, ପ୍ରଜାମଣ୍ଡଳଙ୍କ ଜ୍ଞାତସାରରେ କାର୍ଯ୍ୟାରମ୍ଭ କରିବା ବ୍ୟତୀତ ଅନ୍ୟ ଗତି ନାହିଁ। କିନ୍ତୁ ଦେଶ ସେବା କରିବା ଜୀବନର ମୁଖ୍ୟ ଉଦ୍ଦେଶ୍ୟ ନ ଥିଲେ ଯାହା ଘଟେ ପ୍ରଜାମଣ୍ଡଳ ସଭାପତି ଓ କର୍ମୀମାନଙ୍କର ସେପରି ଦଶା ଘଟୁଥିବାର ଦେଖି ମୁଁ ମନରେ ଅସ୍ଥିରତା ଅନୁଭବ କରୁଛି। ଏପରି ଅବସ୍ଥାରେ ମୁଁ କଟକ ଆସିଛି। ୧୯୪୮ ମସିହା ଜାନୁୟାରୀ ୩୦ ତାରିଖ ସନ୍ଧ୍ୟା ପାଞ୍ଚଟା ସମୟରେ ରେଡ଼ିଓରେ ଶୁଣିଲି "ଆତତାୟୀର ଗୁଳି ଚୋଟରେ ଗାନ୍ଧୀଜୀ ନିହତ।" ଏତିକି ମାତ୍ର କହିଦେଇ ରେଡ଼ିଓ ମୁହୂର୍ତ୍ତକ ପାଇଁ ବନ୍ଦ ହୋଇଗଲା। ମୁଁ କଣ ଶୁଣିଲି, ତହିଁର ଅର୍ଥ ବୁଝିବାର ଜ୍ଞାନ ମୋର କୁଆଡ଼େ ଉଭେଇ ଗଲା। ରେଡ଼ିଓ ଆଉ କିଛି କହୁନାହିଁ। ପାଗଳ ପରି ଟେଲିଫୋନ୍ ନିକଟ ଦୌଡ଼ି ସମାଜ ପ୍ରେସକୁ ଫୋନ୍ କଲି। କୌଣସି ଉତ୍ତର ନାହିଁ। ଯେଉଁଠାକୁ ଫୋନ୍ କଲେ, କିଛି ଉତ୍ତର ମିଳିଲା ନାହିଁ। ବଜାରକୁ ଦୌଡ଼ିଲି। ଦେଖିଲି ଲୋକେ ଦଳବାନ୍ଧି ନୀରବରେ ଠିଆ ହୋଇଛନ୍ତି। କେହି କାହାକୁ ପଦେ କଥା କହୁ ନାହାନ୍ତି। ଦେଖିଲେ ବୋଧ ହେଉଛି ସବୁ ମୂକ ବଧିର। ତୁରନ୍ତ ବସାକୁ ଫେରି, ରେଡ଼ିଓରୁ ଶୁଣିଲି, ଗଡ୍‌ସେ ନାମକ ଜଣେ ମରହଟ୍ଟା ଯୁବକ ଗାନ୍ଧୀଜୀଙ୍କୁ ରିଭଲ୍‌ଭର ଚୋଟରେ ହତ୍ୟା କରିଛି। ଗାନ୍ଧୀଜୀ ସନ୍ଧ୍ୟା ପ୍ରାର୍ଥନା କରିବାକୁ ଯାଉଥିବା ବେଳେ ପ୍ରାର୍ଥନା ଭୂମିରେ ଉପସ୍ଥିତ ହେବା ସମୟକୁ, ଗାନ୍ଧୀଜୀଙ୍କ ପଦଧୂଳି ନେବାକୁ ବାହାନା କରି ଲଇଁ ପଡ଼ିଲା। ପକେଟରୁ ରିଭଲଭର ବାହାର କରି ଗାନ୍ଧୀଜୀଙ୍କ ବକ୍ଷସ୍ଥଳକୁ ଲକ୍ଷ୍ୟ କରି ଗୁଳି କଲା। ଗାନ୍ଧିଜୀ 'ହାୟ ରାମ' କହି ଟଳି ପଡ଼ିଲେ।

ଗାନ୍ଧୀଜୀ ଆତତାୟୀର ଗୁଳିଚୋଟରେ ନିହତ ହେବା ସଂବାଦ ସମଗ୍ର ପୃଥିବୀରେ କିପରି ଶୋକଛାୟା ବିସ୍ତାର କରିଥିଲା, ସମଗ୍ର ଭାରତ କିପରି ଶୋକାକୁଳ ହୋଇ ଉଠିଲା ସେସବୁ କାହାରିକୁ ଅଜଣା ନୁହେଁ। ସେହି ସମୟର ଘଟଣାସବୁ ବିଶଦଭାବରେ ଉଲ୍ଲେଖ କରିବା ଏଠାରେ ଅନାବଶ୍ୟକ। କିନ୍ତୁ ମୋ ମନରେ କଣ ସବୁ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା ତାହା ଉଲ୍ଲେଖ ନ କରି ରହିପାରୁ ନାହିଁ। ପ୍ରଥମତଃ ପନ୍ଦରଦିନ ପର୍ଯ୍ୟନ୍ତ ମୁଁ ନିର୍ବେଦ ହୋଇ ପଡ଼ି ରହିଥିଲି। ଗାନ୍ଧୀଜୀଙ୍କୁ ହରାଇ ବଞ୍ଚି ରହିବା ନିରର୍ଥକ ବୋଲି ମତେ ଜଣାଗଲା। ସବୁବେଳେ ତାଙ୍କର ସ୍ୱଚ୍ଛ ଓ କୋମଳମୂର୍ତ୍ତି ମତେ ଦେଖା ଯାଉଥାଏ। ଗାନ୍ଧୀଜୀଙ୍କ ବୟସ ଅଠସ୍ତରି। କିନ୍ତୁ ତାଙ୍କ ଶରୀର ଗୋଟିଏ ଛୋଟ ଶିଶୁର ଶରୀର ପରି କୋମଳ ଓ ତାମ୍ର ବର୍ଣ୍ଣପରି ଉଜ୍ଜ୍ୱଳ। ଗାନ୍ଧୀଜୀଙ୍କ ଶରୀରକୁ ଚାହିଁଦେଲେ, ମନୁଷ୍ୟ ଭାବବିହ୍ୱଳ ହୋଇ ପଡ଼ିବ। ନିହାତି କଠିନ ହୃଦୟ ଓ ନିଷ୍ଠୁର କ୍ରୂର ପ୍ରକୃତିର ଲୋକ ନ ହେଲେ, ଗାନ୍ଧୀଜୀଙ୍କ ଶରୀରକୁ ଦେଖି ତାଙ୍କୁ ଗୁଳି କରି ନିହତ କରି ଦେବାକୁ ମନ ବଳିବ ନାହିଁ। ଗାନ୍ଧୀଜୀଙ୍କୁ

ନିହତ କରିବାକୁ ମନ ବଳେଇ, ହାତ ଉଠାଇବା ସହଜ କଥା ନୁହେଁ। ଗଡ଼୍‌ସେ ନିଷ୍ଠୁର ବନିଯିବାର କାରଣ କଣ ? ସେ କଣ ଆଉ ପାଗଳ ? ଗଡ଼୍‌ସେଙ୍କର କଣ ହିତାହିତ ଜ୍ଞାନ ନଥିଲା ? କିନ୍ତୁ, ଗଡ଼୍‌ସେଙ୍କର ହିତାହିତ ଜ୍ଞାନ ନଥିଲା କିମ୍ବା ସେ ପାଗଳ ଥିଲେ ବୋଲି କହିଦେବା ମଧ୍ୟ ଠିକ୍ ନୁହେଁ। ଏହାର କାରଣ ମୁଁ ଯାହା ବୁଝିଛି, ତାହାହିଁ ଉଲ୍ଲେଖ କରୁଛି। ଆମ୍ଭମାନଙ୍କ ଜୀବନରେ ଗାନ୍ଧିଜୀଙ୍କର ମୃତ୍ୟୁ ଏକ ଅଗ୍ନିପରୀକ୍ଷା। ଗାନ୍ଧୀଜୀଙ୍କୁ ଆମ୍ଭେମାନେ ଦେଶର ସର୍ବଶ୍ରେଷ୍ଠ ନେତା ଭାବରେ ଦେଖିନାହୁଁ। ତାଙ୍କୁ ଆମ୍ଭେମାନେ ଆମ୍ଭମାନଙ୍କ ଜୀବନର ଆଦର୍ଶ ପୁରୁଷ ରୂପେ ଗ୍ରହଣ କରିଛୁ। ସେ ଥିଲେ ଆମ୍ଭମାନଙ୍କ ଚକ୍ଷୁରେ ଦେବତା। ତାଙ୍କର ବିଚାର ଅଭ୍ରାନ୍ତ ବୋଲି ଆମ୍ଭମାନଙ୍କ ହୃଦୟ ବିଶ୍ୱାସ କରିଥିଲା। ତାହାଙ୍କୁ ଯେ ହତ୍ୟାକଲା ତା ପ୍ରତି ଆମ୍ଭମାନଙ୍କ ହୃଦୟରେ ଅନୁକମ୍ପାର ଭାବ ସ୍ଥାନ ପାଇ ନ ପାରେ। ତଥାପି ଗାନ୍ଧୀଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ତାଙ୍କର ଉପଦେଶ ସବୁ ପାଳନ କରିବାକୁ କଦାପି ସମର୍ଥ ହୋଇ ପାରୁନାହୁଁ ବୋଲି ମୁଁ ନିଶ୍ଚୟ ସ୍ୱୀକାର କରିବି। ତଥାପି ତାଙ୍କର ସାନ୍ନିଧ ଲାଭ କରି ପାରିଥିବାରୁ ମୋର ହୃଦୟରେ ସବୁବେଳେ ଅପର ବ୍ୟକ୍ତିର ଚିନ୍ତା ଓ କାର୍ଯ୍ୟରେ ସତ୍ୟ ଅନୁସନ୍ଧାନ କଲାଭଳି ଭାବନା ଜାଗି ଉଠେ। ଏହି କାରଣରୁ ଗଡ଼୍‌ସେଙ୍କ ଘୃଣିତ କାର୍ଯ୍ୟକୁ ଭୁଲି ତାଙ୍କର ମନୋବୃତ୍ତି କଣ ହୋଇଥିବ, ଏବଂ ଏପରି ମନୋବୃତ୍ତି ଗଢ଼ି ଉଠିବାର କାରଣ କଣ ତାହା ଜାଣିବାକୁ ମୁଁ ଚେଷ୍ଟା କରୁଛି। ଯାହା ଯେପରି ଜାଣିଛି ତାହାହିଁ ଉଲ୍ଲେଖ କରୁଛି।

୧୯୧୯ ଓ ୨୦ ମସିହାରେ ମୁଁ ବମ୍ବେଇରେ ରହି ଗାନ୍ଧୀଜୀଙ୍କ ସେବା ଓ ଅରଟ ପ୍ରଚାର କରୁଥିବା ବେଳେ ଗୁଜରାତି ଓ ମରହଟ୍ଟା ଜାତିର ବହୁ ଲୋକଙ୍କ ଘନିଷ୍ଠ ସମ୍ପର୍କ ଲାଭ କରିପାରିଛି। ମୁଁ ସେତେବେଳେ ଜାଣିଛି ଯେ, ଇଂରେଜ ରାଜତ୍ୱ ପୂର୍ବରୁ, "The Marhata will rule & the Gujarati will trade In India." ଅର୍ଥାତ୍, ମରହଟ୍ଟା ଦେଶ ଶାସନ କରିବେ, ଗୁଜରାତି ଦେଶରେ ବାଣିଜ୍ୟ ବ୍ୟବସାୟ କରିବେ। ଏହା ଥିଲା ସେମାନଙ୍କର ଜାତୀୟ ଆଦର୍ଶ। ମୋଗଲ ସାମ୍ରାଜ୍ୟକୁ ଭାଙ୍ଗି, ଶିବାଜୀ ମହାରାଜା ହିନ୍ଦୁ ରାଜ୍ୟ ସ୍ଥାପନ କରିଥିଲେ। ମରହଟ୍ଟା ଦେଶରେ ଗୋଖଲେ ରାନାଡ଼େ ଓ ମତିମାନ ତିଳକଙ୍କ ପରି ମହାନ ଜାତୀୟବାଦୀ ନେତା ଜନ୍ମଗ୍ରହଣ କରିଛନ୍ତି ସତ କିନ୍ତୁ ହିନ୍ଦୁ ସାମ୍ପ୍ରଦାୟିକ ଭାବ ମରହଟ୍ଟା ଦେଶରେ ଅତି ପ୍ରଖର। ଗାନ୍ଧୀବାଦକୁ ସେମାନେ ପୂର୍ଣ୍ଣ ପ୍ରାଣରେ ଗ୍ରହଣ କରି ପାରି ନାହାନ୍ତି। ମରହଟ୍ଟା ଦେଶର ଲୋକେ ସାଧାରଣତଃ ଗରିବ। ବାଣିଜ୍ୟ ବ୍ୟବସାୟରେ ସେତେ ଉନ୍ନତ ନୁହନ୍ତି। ଗୁଜରାତି ଲୋକେ ମରହଟ୍ଟା ଦେଶରେ କଳକାରଖାନା ବସାଇ ଅଧିକାଂଶ ବଡ଼ ବଡ଼ ବ୍ୟବସାୟକୁ ଆୟତାଧୀନ କରିଛନ୍ତି। ଗୁଜରାତ ଓ ମରହଟ୍ଟା ଉଭୟ ଦେଶରେ ଲୋକଙ୍କ ଭିତରେ ସହୃଦୟତା ଥିଲେ ମଧ୍ୟ ଅପ୍ରକାଶ୍ୟରେ ପ୍ରାଦେଶିକ ତିକ୍ତଭାବ ରହିଛି। ସୀମା ସମସ୍ୟାରେ ଗୁଜରାତ ଓ ମହାରାଷ୍ଟ୍ର ନାମରେ ଦୁଇଟି

ସ୍ୱତନ୍ତ୍ର ଷ୍ଟେଟ୍ ଗଠନ କରିବା ଇଚ୍ଛାରେ ସୀମା ମୀମାଂସା କଲାବେଳକୁ ବମ୍ବେଇ ସହର ପାଇଁ ଗୁଜରାତି ଓ ମହାରାଷ୍ଟ୍ରୀୟଙ୍କ ମଧ୍ୟରେ ଯେଉଁ ବିବାଦର ସୂତ୍ରପାତ ହୋଇଥିଲା ତାହା ମୋର କଥାକୁ ପ୍ରମାଣିତ କରି ଦେଇଛି। ବମ୍ବେଇ ସହର ଗୁଜରାତ କିମ୍ବା ମହାରାଷ୍ଟ୍ର ପାଇବ ଏଥିପାଇଁ ଯେଉଁ ଝଗଡ଼ା–ତାହା ମୋର କଥାକୁ ପ୍ରମାଣିତ କରି ଦେଉଛି। ଏ ବିଷୟରେ ଅଧିକ ଲେଖିବା ଅନାବଶ୍ୟକ।

ଇଂରେଜ ଶାସକଗୋଷ୍ଠୀ ଦେଶରେ ହିନ୍ଦୁ ମୁସଲମାନ ଭେଦ ସୃଷ୍ଟି କଲେ। ତାହାର ବିଷମୟ ଫଳ ସମସ୍ତଙ୍କୁ ଜଣା। କଲିକତା ନୂଆଖାଲିରେ ମୁସଲମାନଙ୍କ ଦ୍ୱାରା ଅସଂଖ୍ୟ ହିନ୍ଦୁ କେବଳ ନିହତ ହେଲେ ତାହା ନୁହେଁ, ବହୁ ହିନ୍ଦୁଙ୍କୁ ଜବରଦସ୍ତି ମୁସଲମାନ ଧର୍ମରେ ଦୀକ୍ଷିତ କରାଯାଇଛି। ହିନ୍ଦୁ ରମଣୀଙ୍କ ଉପରେ ପାଶବିକ ଅତ୍ୟାଚାର କରିବାକୁ ମଧ୍ୟ କୌଣସି ଦ୍ୱିଧା ବୋଧ କରି ନାହାନ୍ତି। ଏସବୁ ସଂବାଦ ଶୁଣିବାକୁ ପାଇ ଭାରତର ହିନ୍ଦୁ ସମାଜ ଥରି ଉଠିଲା। ମୁସଲମାନମାନେ ଝଗଡ଼ା ଲଗାଇ ନୃଶଂସ ହତ୍ୟାକାଣ୍ଡ ଓ ନାରୀହରଣ କରିଛନ୍ତି ଏବଂ ପୂଣ୍ୟ ଓ ପବିତ୍ର ଭାରତ ଭୂମିର ଅଙ୍ଗ ଛେଦନ କରି ପାକିସ୍ଥାନ ସୃଷ୍ଟି କରିଛନ୍ତି। ପୁଣି ପାକିସ୍ଥାନରେ ଯେଉଁ ହିନ୍ଦୁ ଓ ଶିଖ୍‌ଜାତିର ଲୋକେ ରହିଗଲେ ସେମାନଙ୍କୁ ଲୋପ କରିଦେବା ଇଚ୍ଛାରେ ନୃଶଂସ ହତ୍ୟାକାଣ୍ଡ ମଧ୍ୟ ଆରମ୍ଭ କରିଛନ୍ତି। ଲକ୍ଷ ଲକ୍ଷ ହିନ୍ଦୁ ପାକିସ୍ଥାନ ଛାଡ଼ି ଜୀବନ ବିକଳରେ ଭାରତକୁ ପଳାଇ ଆସିଲେ। ପଳାଇ ଆସିଲାବେଳେ, ଧନସମ୍ପତ୍ତି ସବୁ ହରାଇଛନ୍ତି ତାହା ନୁହେଁ, ନିଜର ଭାଇ ବନ୍ଧୁ କୁଟୁମ୍ବଙ୍କୁ ମୁସଲମାନ ହତ୍ୟାକରିବା ଦାରୁଣ ଦୃଶ୍ୟ ସ୍ୱଚକ୍ଷୁରେ ଦେଖି ଆସିଛନ୍ତି। ଏପରି ଭାଇବନ୍ଧୁ କୁଟୁମ୍ବଙ୍କ ହତ୍ୟା ଦେଖି ଜୀବନ ବିକଳରେ ଯେଉଁ ହିନ୍ଦୁ ଓ ଶିଖ ଭାରତକୁ ପଳାଇ ଆସିଲେ, ସେମାନେ ମୁସଲମାନ ଦେଖିଲେ କ୍ରୋଧାନ୍ଧହୋଇ ପଡ଼ିଲେ। ପରିଣାମରେ ପଞ୍ଜାବ, ଦିଲ୍ଲୀ, ମିରଟ ପ୍ରଭୃତି ସ୍ଥାନରେ ବାସକରି ରହିଥିବା ମୁସଲମାନମାନଙ୍କୁ ନିଶ୍ଚିହ୍ନ କରିବାରେ ସେମାନେ ପାଗଳ ବନିଗଲେ। ମୁସଲମାନ ଯାହା କରିଥିଲେ, ହିନ୍ଦୁ,ଶେଖ୍ ତହିଁରୁ କିଛି ଊଣା କରିନାହାନ୍ତି। ମୁସଲମାନଙ୍କ ଆଡୁ ଆଗ ଆରମ୍ଭ ହୋଇଛି। ବିନା କାରଣରେ ମୁସଲମାନ ହିନ୍ଦୁଙ୍କ ଉପରେ ନିର୍ମମ ଅତ୍ୟାଚାର କରିଛନ୍ତି, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ। ମୁସଲମାନ ସବୁକାଳେ ଧର୍ମାନ୍ଧ। ଧର୍ମାନ୍ଧ ବନିଗଲେ ମୁସଲମାନର ବିଚାର ଶକ୍ତି ରହେ ନାହିଁ। ହିନ୍ଦୁ ଓ ଶିଖ୍ ପ୍ରତିଶୋଧ ନେବାକୁ ଯାଇ ମୁସଲମାନଙ୍କ ପରି ବିଚାରଶକ୍ତି ହରାଇ ଅତି ଅମାନୁଷିକ କାର୍ଯ୍ୟ କରିବାକୁ ଆରମ୍ଭ କଲେ। ମୁସଲମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଆରମ୍ଭ ହୋଇଗଲା। କଂଗ୍ରେସରେ ଯୋଗ ଦେଇଥିବା ଜାତୀୟବାଦୀ ମୁସଲମାନ ମଧ ଏହି ବିଭୀଷିକାରୁ ପ୍ରାଣ ପାଇପାରିଲେ ନାହିଁ। ଏ ଦୃଶ୍ୟ ଗାନ୍ଧୀଜୀଙ୍କୁ ଅସହ୍ୟ ବୋଧ ହୋଇଥିଲା। ହିନ୍ଦୁ ମୁସଲମାନ ଉଭୟେ ଦୁଇଭାଇ ପରି ନ ଚଳି ଏପରି ପରସ୍ପରରେ ହଣାକଟା ହୋଇ ମରିବେ, ଏ ଦୃଶ୍ୟ ଦେଖି ଜୀବନ ଧାରଣ କରିବାକୁ ଗାନ୍ଧୀଜୀ ଇଚ୍ଛା କରି ନ ଥିଲେ। ଏପରି

ସଂକଟଜନକ ପରିସ୍ଥିତିରେ ମୁସଲମାନଙ୍କ ପ୍ରତି ନିଷ୍ଠୁର ବ୍ୟବହାର ନ କରିବା ପାଇଁ ଦିଲ୍ଲୀରେ ଗାନ୍ଧୀଜୀ ଆମରଣ ଅନଶନ ଆରମ୍ଭ କରିଥିଲେ। ଗାନ୍ଧୀଜୀଙ୍କର ଏତାଦୃଶ୍ୟ ମୁସଲମାନ ପ୍ରୀତି, ହିନ୍ଦୁମାନଙ୍କୁ ଉତ୍‌କ୍ଷିପ୍ତ କରି ପକାଇଲା। ଭାରତର ହିନ୍ଦୁ ମହାସଭାମାନ ଧର୍ମାନ୍ଧ ହୋଇ ଯାଇଥିଲେ। ଯେଉଁ ମୁସଲମାନ ଭାରତକୁ ଦୁଇଖଣ୍ଡ କରି ଖଣ୍ଡେ ଆପଣାର କରି ମାଡ଼ି ବସିଲା–ଯେଉଁମାନେ ହିନ୍ଦୁ ସ୍ତ୍ରୀ ବାଳକଙ୍କୁ ହତ୍ୟା କରିବାକୁ ତିଳେମାତ୍ର ଦ୍ୱିଧା ବୋଧ କରିନାହାନ୍ତି, ସେପରି ଆତତାୟୀକୁ ହତ୍ୟା ନ କରି ତାଙ୍କୁ ରକ୍ଷା କରିବାକୁ ଗାନ୍ଧୀ ଉପବାସ କରୁଛନ୍ତି। ହିନ୍ଦୁଧର୍ମ ଓ ହିନ୍ଦୁ ସମାଜକୁ ଗାନ୍ଧୀ ବୁଡ଼ାଇ ମାରିବେ। ସେ ଦେଶର ଆଖି ଫିଟାଇଛନ୍ତି। ଲୋକେ ତାଙ୍କୁ ମହାତ୍ମା ଓ ଜଣେ ମହାପୁରୁଷ ବୋଲି ଜାଣନ୍ତି। କିନ୍ତୁ ଗାନ୍ଧୀଜୀ ବର୍ତ୍ତମାନ ଯେପରି ମୁସଲମାନ ପ୍ରୀତି ଦେଖାଇଲେଣି ତାଙ୍କର ଆଉ ମହାତ୍ମାପଣିଆ ରହିବ ନାହିଁ। ଲୋକଚକ୍ଷୁରେ ସେ ତଳକୁ ଖସି ପଡ଼ିବେ। ଏପରି ଘଟିବା ଦେଶର ଦୁର୍ଭାଗ୍ୟ। ସୁତରାଂ ଗାନ୍ଧୀଙ୍କ ଜୀବନକୁ ଏହିଠାରେ ଶେଷ କରିଦବା ଦରକାର। ସାମ୍ପ୍ରଦାୟିକ ଭାବନାରେ ଦେଶର ସାଧାରଣ ଲୋକେ ବିବେକ ବୁଦ୍ଧି ହରାଇ ଜ୍ଞାନହୀନ ପଶୁପରି ଆଚରଣ କରୁଛନ୍ତି। ଉତ୍କଟ ସାମ୍ପ୍ରଦାୟିକ ଭାବନାର ଗାନ୍ଧୀଜୀ ଶିକାର ବନିଲେ। ଗଡ୍‌ସେ ନିମିତ୍ତ ମାତ୍ର ବୋଲି ମୋର ବିଶ୍ୱାସ।

ଦିଲ୍ଲୀର ଗାନ୍ଧୀଜୀଙ୍କ ପ୍ରାର୍ଥନା ସଭାରେ ବହୁଲୋକ ଜମା ହୁଅନ୍ତି। କିନ୍ତୁ ପ୍ରାର୍ଥନାରେ ମନ ନଦେଇ ଗାନ୍ଧୀଜୀଙ୍କୁ ସମାଲୋଚନା କରୁଥିବାର ପ୍ରମାଣ ମିଳିଛି। ମୁସଲମାନଙ୍କ ପ୍ରତି ଗାନ୍ଧୀଜୀ ଯେଉଁ ଉଦାରନୀତି ଆଚରଣ କରୁଛନ୍ତି ତାହା ସାଧାରଣ ଲୋକେ ଗ୍ରହଣ କରୁନାହାନ୍ତି। ଗାନ୍ଧୀଜୀ ଏହା ବୁଝିପାରୁ ନାହାନ୍ତି ତାହା ନୁହେଁ, ତଥାପି ମୁସଲମାନ ସଂପ୍ରଦାୟର ଲୋକଙ୍କୁ ଆପଣାର କରିବାକୁ ସେ ଚେଷ୍ଟା କରିଛନ୍ତି ଏବଂ ହିନ୍ଦୁ ସମାଜକୁ ସେପରି ଉଦାର ଭାବ ପୋଷଣ କରିବାକୁ ବାରମ୍ବାର ପରାମର୍ଶ ଦେଇଛନ୍ତି। ଗାନ୍ଧୀଜୀଙ୍କର ଦୃଢ଼ବିଶ୍ୱାସ ମୁସଲମାନଙ୍କୁ ଆପଣାର ନ କଲେ, ଭାରତର ରାଜନୈତିକ ପରିସ୍ଥିତି ଦୃଢ଼ ହେବନାହିଁ। ହିନ୍ଦୁ ମୁସଲମାନ ପରସ୍ପରକୁ ବିଶ୍ୱାସ କରିବାକୁ ପଡ଼ିବ, ଏହା ଛଡ଼ା ଅନ୍ୟ ଗତି ନାହିଁ। କ୍ଷଣିକ ଉତ୍ତେଜନାରେ ଭାସିଯାଇ ଦେଶର ଭବିଷ୍ୟତକୁ ବିପଦପୂର୍ଣ୍ଣ କରିବା ଉଚିତ ନୁହେଁ। ହିନ୍ଦୁ ମୁସଲମାନଙ୍କ ଏକତା ବିନା ଭାରତର ଜାତୀୟ ଭାବର ଅଭିବୃଦ୍ଧି ଆଶା କରିବା ବିଡ଼ମ୍ବନା ମାତ୍ର। ଭାରତରେ ହିନ୍ଦୁ ମୁସଲମାନ ପ୍ରଶ୍ନ ନୂଆ ନୁହେଁ। ଭାରତର ଦୁର୍ଭାଗ୍ୟ ଏ ଦେଶରେ ମୁସଲମାନ ଆକ୍ରମଣ କରି ଶାସନ କ୍ଷମତା ହସ୍ତଗତ କରିଥିଲେ। ମୁସଲମାନ ଏ ଦେଶକୁ ଆସି ଏ ଦେଶବାସୀ ବନି ଯାଇଛନ୍ତି। ଅତୀତରେ ମୁସଲମାନ ନିଜକୁ ଗୋଟିଏ ସ୍ୱତନ୍ତ୍ର ଅଲଗା ଜାତି ମନେକରି ଦେଶକୁ ଭାଗ କରିବାପାଇଁ ଚେଷ୍ଟାକରିବା ଦୂରେ ଥାଉ, ସେପରି ସ୍ୱପ୍ନ ମଧ ଦେଖିନାହାନ୍ତି। ହିନ୍ଦୁ ମୁସଲମାନମାନଙ୍କୁ ଏକତା ସୂତ୍ରରେ ଆବଦ୍ଧ କରିବାକୁ ଅତୀତରେ ବହୁ ସାଧୁ, ସନ୍ଥ ଓ ରାଜପୁରୁଷ ଚେଷ୍ଟାକରି ଯାଇଛନ୍ତି।

ସମ୍ରାଟ ଆକବର ଏଥିପାଇଁ ଗୋଟାଏ ନୂତନ ପ୍ରଥା ଅବଲମ୍ବନ କରିଥିଲେ। ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ସାମାଜିକ ବନ୍ଧନ ସ୍ଥାପନ କରିବାକୁ ସେ ବହୁ ଚେଷ୍ଟାକରି ଯାଇଛନ୍ତି। କବୀର, ନାନକ ପ୍ରଭୃତି ନୂତନ ପନ୍ଥା ଓ ନୂତନ ଧର୍ମ ଏଥିପାଇଁ ସୃଷ୍ଟି କରିଗଲେ। ସତ୍ୟନାରାୟଣ ପାଲା ସୃଷ୍ଟି ହେଲା। ଏହି ପାଲା ହିନ୍ଦୁମାନେ ଗ୍ରହଣ କରି ନେଇଛନ୍ତି କିନ୍ତୁ କାହିଁରେ ଅଭୀଷ୍ଟ ସିଦ୍ଧିଲାଭ କରିନାହିଁ। ବର୍ତ୍ତମାନ ଯୁଗରେ ମହାତ୍ମାଗାନ୍ଧୀ ଭାରତରେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ସଖ୍ୟଭାବ ଜାଗ୍ରତ କରିବାକୁ ନିଜ ଜୀବନ ବଳିଦାନ କଲେ। ସମୁଦ୍ରରେ ନଦନଦୀ ମିଶିଗଲେ, ମହାନ ସମୁଦ୍ରରେ ସେମାନଙ୍କର ନିଜତ୍ୱ ଲୀନ ହୋଇଯାଏ। ଭାରତରେ ପ୍ରାଚୀନ କାଳରୁ କେତେ ଜାତି ଓ କେତେ ସଭ୍ୟତା ପ୍ରବେଶ କରିଛି। ସମୁଦ୍ର ତାର କୋଳରେ ନଦନଦୀକୁ ଗ୍ରହଣ କଲାଭଳି, ପ୍ରାଚୀନ ଭାରତର ଆର୍ଯ୍ୟ ସଭ୍ୟତା ସମସ୍ତଙ୍କୁ ନିଜ ଅଙ୍ଗରେ ଧାରଣ କରିନେଇଛି। କିନ୍ତୁ ଭାରତର ଦୁର୍ଭାଗ୍ୟକୁ ମୁସଲମାନ ଏ ଦେଶ ଜୟ କରିବାକୁ ଆସି ଏ ଦେଶ ମାଟି, ଜଳ, ପବନ, ଆଲୋକର ପ୍ରଭାବରେ ପ୍ରଭାବିତ ହୋଇ ଏ ଦେଶକୁ ନିଜର ଜନ୍ମଭୂମି କରିନେଲେ। କିନ୍ତୁ, ଏ ଦେଶର ଆର୍ଯ୍ୟ ସଭ୍ୟତାକୁ ଆହରଣ କରି ନ ପାରିବାରୁ ଗୋଟିଏ ସ୍ୱତନ୍ତ୍ର ଗୋଷ୍ଠୀହୋଇ ରହିଗଲେ। ଭାରତର ସାଧାରଣ ଅଧିବାସୀଙ୍କ ସୁଖ ଦୁଃଖ ସହିତ ନିଜର ସୁଖ ଦୁଃଖ ନିର୍ଭର କରୁଥିବାର ଜାଣି ମଧ ଆଜି ନିଜକୁ ଗୋଟିଏ ଭିନ୍ନ ଜାତି ବୋଲି ଦାବୀ କରି ଭାରତବାସୀଙ୍କ ଅଶେଷ ଦୁଃଖ ଦୁର୍ବିପାକର କାରଣ ବନିଛନ୍ତି। ଏହା ସମସ୍ତଙ୍କ ହୃଦୟରେ ଆଘାତ ଦେଇଛି। ମହାତ୍ମାଗାନ୍ଧୀଙ୍କୁ ଏଥିପାଇଁ ଜୀବନ ବଳିଦାନ ଦେବାକୁ ପଡ଼ିଲା। ଗଡ଼୍‌ସେକୁ ଦୋଷ ଦେଇ ସମସ୍ୟା ସମାଧାନ କରାଯାଇ ନ ପାରେ। ଭାରତର ଦୁର୍ଭାଗ୍ୟ ବୋଲି ମନେ କରିବା ଛଡ଼ା ଅନ୍ୟ ଉପାୟ ନାହିଁ। ମୋ ମନରେ ଏ ପ୍ରକାର ପ୍ରତିକ୍ରିୟା ସୃଷ୍ଟି ହୋଇଛି। ନୂତନ କର୍ମକ୍ଷେତ୍ରରେ ନୂତନ ଅନୁଷ୍ଠାନ ଗଢ଼ି ଗାନ୍ଧୀଜୀଙ୍କ ପୂର୍ବ ସ୍ନେହ ସହାନୁଭୂତି ଲାଭ କରିବା ପାଇଁ ମନରେ ଯେଉଁ ଆଶା ପୋଷଣ କରିଥିଲି ସେ ଆଶା ଲୋପ ପାଇଲା।

କଟକରୁ ଦଶପଲ୍ଲା ଫେରିଗଲି, ମନ ଆଉ କାହିଁରେ ଥୟ ଧରିଲା ନାହିଁ। ଇତିମଧ୍ୟରେ ପ୍ରତ୍ୟକ ଷ୍ଟେଟ୍‌ରୁ ପରାମର୍ଶଦାତା କମିଟିକୁ ଭାଙ୍ଗି ଦିଆଗଲା। ଷ୍ଟେଟ୍ ବ୍ୟବସ୍ଥାସଭାକୁ ଭାଙ୍ଗିଦେଇ, ଓଡ଼ିଶା ବ୍ୟବସ୍ଥା ସଭା ସହିତ ସାମିଲ କରି ଦିଆଗଲା। ଏଥିପାଇଁ ଷ୍ଟେଟ୍‌ମାନଙ୍କ ମଧ୍ୟରୁ ତିରିଶ ଜଣ ସଭ୍ୟ ମନୋନୀତ ହୋଇଥିଲେ। କିନ୍ତୁ, ଏଥର ମୋର ନାମ ସେମାନଙ୍କ ମଧ୍ୟରେ ନ ଥିଲା। ଦେଶ ସ୍ୱାଧୀନ ହୋଇଛି। ଗଡ଼ଜାତ ରାଜ୍ୟସବୁ ଲୋପ ପାଇଲା। ଗଡ଼ଜାତ ଅଞ୍ଚଳ ବ୍ରିଟିଶ ଶାସନ ଅଧୀନରେ ଥିବା ଅଞ୍ଚଳ ସହିତ ମିଶି ଯାଇଛି। କିନ୍ତୁ ଗଡ଼ଜାତର ଜନସାଧାରଣ ବ୍ରିଟିଶ ଶାସିତ ଅଞ୍ଚଳର ଲୋକସାଧାରଣଙ୍କ ସହିତ ସହଜରେ ମିଶି ପାରିବେ ନାହିଁ। ବ୍ୟକ୍ତିଗତ ନିରଙ୍କୁଶ ଶାସନ ତଳେ ଗଡ଼ଜାତ ପ୍ରଜା ଚିପି ହୋଇ ଯାଇଛନ୍ତି। ରାଜାମାନଙ୍କର

ଶାସନ ଅଧିକାର ଚାଲିଗଲା ସତ, କିନ୍ତୁ ରାଜାମାନଙ୍କ ପ୍ରତି ପ୍ରଜାସାଧାରଣଙ୍କର ଅସାଧାରଣ ଭକ୍ତି, ଶ୍ରଦ୍ଧା ରହିଛି। ଶାସନ କ୍ଷମତା ଚାଲିଯିବା ଦ୍ୱାରା ରାଜାମାନଙ୍କ ପ୍ରତି ଦୟା ଓ ସହାନୁଭୂତି ପ୍ରଜାସାଧାରଣଙ୍କ ହୃଦୟରେ ସ୍ଥାନ ପାଇଛି। ଏପରି ଅବସ୍ଥା ସୁବିଧାଜନକ ନୁହେଁ। ଏପରି ଅବସ୍ଥାଥିବା ପର୍ଯ୍ୟନ୍ତ ରାଜନୈତିକ ଚେତନା ଆସି ନ ପାରେ। ଏପରି ପରିସ୍ଥିତିକୁ ବଦଳାଇବାକୁ ସମୟ ସାପେକ୍ଷ ଏବଂ ଏଥିପାଇଁ ସଂଗଠନ କାର୍ଯ୍ୟ କରିବାକୁ ପଡ଼ିବ। ପ୍ରଜାମଣ୍ଡଳ କର୍ମୀମାନଙ୍କ ମନରେ ଏପରି କୌଣସି ସଂଗଠନ କାର୍ଯ୍ୟ କରିବାପାଇଁ ଚିନ୍ତା କରିବାର ଲକ୍ଷଣ ମତେ ଦେଖାଗଲା ନାହିଁ। ଗଡଜାତରେ କର୍ମକରି ଅବଶିଷ୍ଟ ଜୀବନ ବ୍ୟୟ କରିବାକୁ କଳ୍ପନା କରିଛି। କୌଣସି ଗୋଟିଏ ଗଠନମୂଳକ କାର୍ଯ୍ୟ କରିବାକୁ ଚିନ୍ତା କରୁଛି ସତ, କିନ୍ତୁ ସେଥିପାଇଁ ଯେପରି କଠିନ ପରିଶ୍ରମ କରିବାକୁ ପଡ଼ିବ, ସେପରି ପରିଶ୍ରମ କରିବାର ଶକ୍ତି ଆଉ ନାହିଁ। ସାଧାରଣ ପ୍ରଜାଙ୍କ ମନରେ ଭାବନା ଉଦ୍ରେକ କରିବାକୁ, ଅକ୍ଳାନ୍ତ ପରିଶ୍ରମ ଦରକାର। ଶ୍ୱାସରୋଗ ମତେ ଆକ୍ରାନ୍ତ କରିଛି। ସହକର୍ମୀ ସେପରି କାହାକୁ ପାଉନାହିଁ। ବୟସ ଆସି ଷାଠିକ ଉପରେ, ତଥାପି ଆଶା ଓ ଭରସା ରହିଛି। ଉପାୟ ଅନ୍ୱେଷଣ କରୁଛି। ସୁବିଧା ସହଯୋଗ ପାଇଲେ ଲୋକଦୃଷ୍ଟି ଆକର୍ଷଣ କରି ପାରିଲା ଭଳି କାର୍ଯ୍ୟ କରିବାକୁ ଯୋଜନା ବାନ୍ଧୁଛି। ସୁବିଧା ସୁଯୋଗରୁ ମୁଁ ବଞ୍ଚିତ ହେଲି।

କିନ୍ତୁ ମିଶ୍ରଣ ପରେ ଗଡ଼ଜାତରେ ଯେଉଁ ସାଧାରଣ ଶାସନ ପ୍ରଚଳନ କରାଗଲା, ଗଡ଼ଜାତ ପ୍ରଜା ସେଥିରେ ଅଭ୍ୟସ୍ତ ନୁହନ୍ତି। ଅତି ସାମାନ୍ୟ କଥାରେ ସେ ତଟକା ନିଷ୍ପତ୍ତି ଲାଭ କରି ପାରୁଥିଲେ। ବିପଦ ବେଳେ ହଠାତ୍ ସାହାଯ୍ୟ କିଛି ପାଇ ପାରୁଥିଲେ। ଘରେ ଅବା ଦାଣ୍ଡରେ କିଛି ବିବାଦ ଲାଗିଲେ, ମୌଖିକ ଆପତ୍ତି ଜଣାଇ ବିବାଦ ମେଣ୍ଟାଇ ନେଇ ପାରୁଥିଲେ। ଏତଦ୍ୱାରା ସମସ୍ତଙ୍କର ଡର ଭୟ ଥିଲା। କେହି କାହାରିକୁ ଲଘି ଉଚ୍ଚବାଚରେ କଥା କହିବାକୁ ଶଙ୍କିତ ହେଉଥିଲେ। ଏହିପରି ତତ୍କାଳୀନ ଓ ତଟକା ସୁବିଧା ପାଇ ପାରିବାର ଅନୁକୂଳ ପରିସ୍ଥିତିରେ ଜୀବନ ଯାପନ କରିବାରେ ଗଡ଼ଜାତ ପ୍ରଜା ଅଭ୍ୟସ୍ତ। ଅବଶ୍ୟ କୌଣସି ପ୍ରକାର ବ୍ୟକ୍ତିଗତ ସ୍ୱାଧୀନତା ନ ଥିଲା। ରାଜ୍ୟର ଶାସନ ଅବା ରାଜାଙ୍କ କାର୍ଯ୍ୟ କଳାପ ନେଇ ବ୍ୟକ୍ତି ଅବା ସମଷ୍ଟି ଗତ ଭାବରେ କୌଣସି ମତାମତ ବ୍ୟକ୍ତ କରି ପାରୁ ନଥିଲେ। ଜୀବନ ବିକାଶ ଲାଭ କରିବା ପାଇଁ ଅନୁକୂଳ ପରିସ୍ଥିତି ନ ଥିଲା। ଯେତେବଡ଼ ବିଦ୍ୱାନ ଏବଂ ମତିମାନ ବ୍ୟକ୍ତି ହେଲେ ମଧ୍ୟ ରାଜାଙ୍କଠାରୁ ତାଙ୍କର ଆସନ ଉଚ୍ଚ–ଏହା ଗଡ଼ଜାତ ପ୍ରଜାଙ୍କ ପକ୍ଷରେ କଳ୍ପନାତୀତ ବିଷୟ। ନିର୍ଭିକ ଚିତ୍ତରେ ଯେ କୌଣସି ବିଷୟବସ୍ତୁ ଉପରେ ନିଜର ମତାମତ ବ୍ୟକ୍ତ କରି ପାରିବାର ଅଧିକାର କ୍ଷୁଣ୍ଣ ହେବାଭଳି ପରିସ୍ଥିତିରେ ରହିବାକୁ ହେଲେ ମନୁଷ୍ୟର ସ୍ୱାଭାବିକ ଚିତ୍ତବୃତ୍ତି ପରିପୁଷ୍ଟ ହୋଇପାରେ ନାହିଁ। ମନୁଷ୍ୟର ବିକାଶ ଶକ୍ତି ଖର୍ବ ହୋଇଯାଏ। ଗଡ଼ଜାତ ଶାସନରେ

ମନୁଷ୍ୟର ବିକାଶ ଶକ୍ତି ଏହିପରି ଖର୍ବ ହେଉଥିଲା । ମନୁଷ୍ୟ ଜୀବନର କିଛି ଲକ୍ଷ୍ୟ ଅଛି । ଇଚ୍ଛା କଲେ ସେ ଆସାଧ୍ୟ ସାଧନ କରିପାରେ । ଏପରି ମହତ୍ ଭାବନା ଗଡ଼ଜାତ ପ୍ରଜାଙ୍କ ହୃଦୟରେ ସ୍ଥାନ ପାଉ ନ ଥିଲା । ମିଶ୍ରଣ ପରେ ସବୁ ଦ୍ୱାର ଉନ୍ମୁକ୍ତ । ନିଜର ଅବା ସମାଜର ମଙ୍ଗଳ ପାଇଁ ଯେ କୌଣସି କାର୍ଯ୍ୟ କରିବାରେ, ଯେ କୌଣସି ମତାମତ ବ୍ୟକ୍ତ କରିବାରେ ଆଉ କୌଣସି ବାଧା ନାହିଁ । ଏହି ସ୍ୱାଧୀନତାର ଉପଲବ୍ଧି କରିବା କଠିନ । କୂପଭେକ ପୁଷ୍କରିଣୀରେ ପଡ଼ିଲେ ଯେପରି କୌଣସି ସ୍ଥଳ କୂଳ ପାଏ ନାହିଁ, ଗଡ଼ଜାତ ପ୍ରଜା ପ୍ରଚଳିତ ଶାସନର କୌଣସି କୂଳକିନାରା ପାଉନାହାନ୍ତି । ସେମାନଙ୍କ କଥା କେହି ଶୁଣୁନାହିଁ । ଭୟ ବିପଦରେ କାହାଠାରୁ ସାହାଯ୍ୟ ପାଇବେ, କିଛି ବୁଝିପାରୁ ନାହାନ୍ତି । ମହରଗରୁ ଆସି କାନ୍ତରରେ ପଡ଼ିଲାପରି ଗଡ଼ଜାତ ପ୍ରଜା ଅସ୍ଥିର ହୋଇ ଉଠୁଛନ୍ତି । ଏପରି ପରିସ୍ଥିତିରେ ସଂଗଠନ କାମ ମୁଁ କଣ କରିବି ? ମୁଁ ଜଣେ ଦେଶର ବଡ଼ ସେବକ ଅବା ଜଣେ ଜଣାଶୁଣା କଂଗ୍ରେସ କର୍ମୀ, ସେମାନେ ପ୍ରତ୍ୟକ୍ଷଦର୍ଶୀ ନୁହନ୍ତି, କିମ୍ବା ମୋଠାରୁ କୌଣସି ପ୍ରକାରେ କିଛି ଉପକାର ପାଇନାହାନ୍ତି । କୌଣସି କ୍ଷମତା ଅବା ଅଧିକାର ନ ଥିଲେ, ଗଡ଼ଜାତ ପ୍ରଜାଙ୍କ ନିକଟରେ କଥାର ତେତେ ମୂଲ୍ୟ ରହେ ନାହିଁ । ଅଳ୍ପ ସମୟପାଇଁ, ଷ୍ଟେଟ୍ପାଇଁ ଗଢ଼ାଯାଇଥିବା ବ୍ୟବସ୍ଥାପକ ସଭାର ସଭ୍ୟ ଥିଲି । ସରକାରୀ କର୍ମଚାରୀ ମଧ୍ୟ ମୋ କଥାକୁ ଟିକିଏ ଶୁଣୁଥିଲେ । ବର୍ତ୍ତମାନ କୌଣସି ସଭ୍ୟ ପଦବୀ ନାହିଁ । ଆର୍ଥିକ ସ୍ୱଚ୍ଛଳତା ନାହିଁ । ମୁଁ କିଛି ବାଟ ପାଇଲି ନାହିଁ । ଦଶପଲ୍ଲାରେ ଆଗ କିଛି ଲୋକ ସଂଗଠନ କାର୍ଯ୍ୟ କରିବା ଇଚ୍ଛାରେ ରାଜ୍ୟର କେତେକ ଅଞ୍ଚଳରେ ବୁଲିଲି । କିନ୍ତୁ ମୋ କଥାର କୌଣସି ପ୍ରଭାବ ପଡୁଥିଲା ପରି ମତେ ଜଣାଗଲା ନାହିଁ । ପ୍ରଜାମଣ୍ଡଳର ତଥାକଥିତ ଦେଶକର୍ମୀ ମୋ ସହିତ ସହଯୋଗ କରିବା ପରିବର୍ତ୍ତେ ବରଂ ମୋ ବିରୁଦ୍ଧରେ ମତାମତ ପ୍ରକାଶ କରୁଥିବାର ଜାଣିବାକୁ ପାଇଲି । ମୋ ବିରୁଦ୍ଧରେ ମନଗଢ଼ା କେତେକଥା ପ୍ରଚାର କରାଗଲା । ଅପବାଦକୁ ଡରି ଲକ୍ଷ୍ୟ ଭୁଲିଯିବା କିମ୍ବା କର୍ତ୍ତବ୍ୟ କର୍ମରୁ ଅପସରିଯିବା ଉଚିତ ନୁହେଁ ବୋଲି ମୁଁ କହିପାରେ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କର୍ତ୍ତବ୍ୟ କରିବା ଜୀବନ୍ତ ମନୁଷ୍ୟର ଲକ୍ଷଣ । କର୍ତ୍ତବ୍ୟ ପଥରେ ଭ୍ରମଭ୍ରାନ୍ତି ନ ହେବ, ଏହା କିଏ କହିବ ? ରଜ୍ଜୁକୁ ସର୍ପ ଜ୍ଞାନ କଲାଭଳି ଭଲ କର୍ମରେ ମଧ୍ୟ ମନ୍ଦ ବାଛି ପାରିଲେ, ସ୍ୱାଧୀନ ଓ ନିର୍ଭୀକ ଚେତନାର ପରିଚୟ ଦେଲେ ବୋଲି ଅନେକେ ମନେ କରନ୍ତି । ସୁତରାଂ ମନକୁ ଅତିଶୟ ଗୌଣ ନ କଲେ ଦେଶସେବା କରିବା ଅସମ୍ଭବ । ମନୁଷ୍ୟ ନିଜର ବିଚାର ବୁଦ୍ଧିବଳରେ କର୍ମକରିବା ପାଇଁ ଯୋଜନା ବାନ୍ଧେ ଏବଂ ତଦନୁସାରେ କାର୍ଯ୍ୟ କରେ । ସମସ୍ତେ ଉକ୍ତ ଯୋଜନାକୁ ସମର୍ଥନ କରିବେ, ଏବରି ଆଶାକରିବା ମଧ୍ୟ ଉଚିତ ନୁହେଁ । ସମାଲୋଚନା ଅଥବା ଅପକୀର୍ତ୍ତି ରଟନା ଶୁଣି କର୍ତ୍ତବ୍ୟ କର୍ମ ପ୍ରତି ଉଦାସୀନ ହେବା ଦେଶସେବକ ପକ୍ଷରେ ଉଚିତ ନୁହେ । ପ୍ରତିକୂଳ ପରିସ୍ଥିତି ବିରୁଦ୍ଧରେ ସଂଗ୍ରାମ କରି କାର୍ଯ୍ୟକରିବା ମୋ

ପକ୍ଷରେ ନୂଆ କଥା ନୁହେଁ। ଦଶପଲ୍ଲାରେ ଗୋଟିଏ ସ୍ଥାୟୀ ଅନୁଷ୍ଠାନ ଗଢ଼ିବା ମୋର ଇଚ୍ଛା। ଆର୍ଥିକ ଦୁର୍ଗତି ମତେ ବେଳେ ବେଳେ ବିଚଳିତ କରୁଛି ସତ, କିନ୍ତୁ ତଦ୍ୱାରା ମୁଁ ମୋର ଲକ୍ଷ୍ୟ ଭୁଲିଯାଇ ନାହିଁ।

ଦେଶରେ ନୂଆ ଶାସନଖସଡ଼ା ପ୍ରସ୍ତୁତ ହୋଇ ସାରିଲାଣି। ନୂତନ ଶାସନବିଧାନ କାର୍ଯ୍ୟରେ ପରିଣତ ନ ହେବା ପର୍ଯ୍ୟନ୍ତ ପୂର୍ବ ପ୍ରଥାନୁସାରେ ବ୍ରିଟିଶ ରାଜାଙ୍କ ପ୍ରତିନିଧି ସ୍ୱରୂପ ଜଣେ ବଡ଼ଲାଟ ରହିବାର କଥା। ପାକିସ୍ଥାନରେ ମହମ୍ମଦ୍ ଅଲ୍ଲିଜିନ୍ନା ନିଜେ ବଡ଼ଲାଟ ହେଲେ। ଭାରତରେ ଲର୍ଡ୍ ମାଉଣ୍ଟବାଟେନ କିଛି ସମୟ ରହି ବିଦାୟ ନେଲାପରେ କଂଗ୍ରେସର ତୁଙ୍ଗ ନେତା ଶ୍ରୀ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ଭାରତର ବଡ଼ଲାଟ ହେଲେ। ନୂଆ ଶାସନବିଧାନ ଜାରୀ ହେବାପରେ ଭାରତରୁ ବଡ଼ଲାଟ ପଦ ଲୋପ ପାଇଲା। ସ୍ୱାଧୀନ ଭାରତର ପ୍ରଥମ ସଭାପତି ହେଲେ ଶ୍ରୀ ରାଜେନ୍ଦ୍ରପ୍ରସାଦ। ନୂତନ ଶାସନବିଧାନ ଅନୁସାରେ ଭାରତର ପାର୍ଲିଆମେଣ୍ଟ ଓ ପ୍ରଦେଶ ସବୁର ବିଧାନ ସଭାପାଇଁ ନୂତନ ନିର୍ବାଚନ ହେବାର କଥା। ଏହି ନିର୍ବାଚନ ପ୍ରତୀକ୍ଷାରେ ମୁଁ ରହିଲି। ପ୍ରଦେଶର ବିଧାନ ସଭାର ସଭ୍ୟପଦ ପାଇଁ କଂଗ୍ରେସର ପ୍ରତିନିଧି ହୋଇ ନିର୍ବାଚନ ଲଢ଼ିବା ମୋର ଉଦ୍ଦେଶ୍ୟ। କାରଣ ବିଧାନ ସଭାର ସଭ୍ୟ ହୋଇ ପାରିଲେ ଗଡ଼ଜାତରେ କାର୍ଯ୍ୟ କରିବାପାଇଁ ଆଉ ବିଶେଷ ଅସୁବିଧା ରହିବ ନାହିଁ। ମୋର ଆର୍ଥିକ ଦୁର୍ଗତିର ମଧ୍ୟ ଅବସାନ ଘଟିବ। ମୁଁ ମୋର କଳ୍ପନାକୁ କାର୍ଯ୍ୟରେ ପରିଣତ କରିବାକୁ ସମର୍ଥ ହୋଇପାରିବି। ଲକ୍ଷ୍ୟ ହାସଲ କରିବାକୁ ସୁଯୋଗ ସୁବିଧା ଲାଭ କରିବା ବିଶେଷ କଷ୍ଟକର ହେବନାହିଁ।

ନିର୍ବାଚନର ବେଳ ଉପସ୍ଥିତ ହେଲା। କଂଗ୍ରେସ ତରଫରୁ ବିଧାନସଭାର ସଭ୍ୟପଦ ପାଇଁ ପ୍ରାର୍ଥୀ ହେବାକୁ ନିୟମାନୁସାରେ ମୁଁ ଦରଖାସ୍ତ କଲି। ଜିଲ୍ଲା ଓ ପ୍ରାଦେଶିକ କଂଗ୍ରେସ କମିଟି ମୋର ଦରଖାସ୍ତକୁ ଗ୍ରହଣ କରି ସୁପାରିଶ କଲେ। ଉତ୍କଳ ପ୍ରଦେଶର ପାର୍ଲିୟାମେଣ୍ଟାରୀ ବୋର୍ଡ ମୋର ଦରଖାସ୍ତ ଗ୍ରହଣ କରିଥିଲେ। ସେମାନଙ୍କ ମଧ୍ୟରୁ କାହାରି ପରାମର୍ଶରେ ଦିଲ୍ଲୀରେ ମତେ ଗ୍ରହଣ ନ କରି ଦଶପଲ୍ଲାର ରାଜାସାହେବ ଶ୍ରୀ କିଶୋରଚନ୍ଦ୍ର ଭଞ୍ଜ ଦେଓଙ୍କୁ ଗ୍ରହଣ କରାଗଲା। କଂଗ୍ରେସ ପ୍ରାର୍ଥୀ ହେବାକୁ ମୋ ଅପେକ୍ଷା ଦଶପଲ୍ଲାର ରାଜାସାହେବ ଅଧିକ ଉପଯୁକ୍ତ ବୋଲି ବିବେଚିତ ହେବା ଅତିଶୟ ଅନ୍ୟାୟ। ରାଜାସାହେବ ବନ୍ଧାହୋଇ ପାରିଲେ, ବ୍ୟକ୍ତିଗତ ଭାବରେ ମୋର ଆନନ୍ଦ ହେବାର କଥା। ଏଥିପାଇଁ ମୋ ମନରେ ଦୁଃଖ ନ ହୋଇଛି ତାହା ନୁହେଁ। ବ୍ୟକ୍ତିଗତ ଭାବରେ ଏ କଥାକୁ ମୁଁ ବିଚାର କରିନାହିଁ। ଏଥିରେ ମୌଳିକ ତଥ୍ୟକୁ ବିଚାର କରିବାର କଥା। କଂଗ୍ରେସ ଗୋଟିଏ ବିରାଟ ରାଜନୈତିକ ଅନୁଷ୍ଠାନ। ଯେଉଁମାନେ ନେତୃତ୍ୱ ଆସନରେ ବସିଗଲେ ସେମାନେ କେବଳ ନିଜର ବିଚାର ବୁଦ୍ଧି ବଳରେ ସବୁବୋଲ ସବୁକଥା ଯଦି ମୀମାଂସା କରି ବସନ୍ତି, ଅନୁଷ୍ଠାନ ମୂଳଦୁଆ ଭୁଷୁଡ଼ି ପଡ଼ିବ। ଅନୁଷ୍ଠାନର ଅନ୍ୟାନ୍ୟ ଜଣାଶୁଣା ଖ୍ୟାତନାମା କର୍ମୀଙ୍କୁ ତଦ୍ୱାରା ଅବହେଳା

କରାଯାଏ। ପୁରୁଣା କର୍ମୀଙ୍କୁ ବାଦ୍‌ଦେଇ ହଠାତ୍ କଂଗ୍ରେସ ସହିତ କୌଣସି ସଂବନ୍ଧ ନ ଥିବା ବ୍ୟକ୍ତିଙ୍କୁ ଗ୍ରହଣ କଲେ, ଅନୁଷ୍ଠାନ ଉପରେ ସାଧାରଣ କର୍ମୀଙ୍କର ବିଶ୍ୱାସ ରହେ ନାହିଁ। ବର୍ତ୍ତମାନ କ୍ଷେତ୍ରରେ ତାହା ହିଁ ଘଟିଲା। ରାଜାମାନଙ୍କୁ କଂଗ୍ରେସରେ ଏପରି ହଠାତ୍ ଗ୍ରହଣ କରିବାର ନ ଥିଲା। ଏ ବିଷୟ କଂଗ୍ରେସ କମିଟିରେ ଆଲୋଚିତ ହୋଇ ଯାହା ଯେପରି ସ୍ଥିର ହୋଇଥାନ୍ତା ତଦନୁସାରେ କାର୍ଯ୍ୟ କରିଥିଲେ, କାହାରି ଆପତ୍ତି କରିବାର କିଛି କାରଣ ନ ଥିଲା। ନେତୃସ୍ଥାନରେ ବସିଗଲେ, କଂଗ୍ରେସ ଓ କଂଗ୍ରେସ କର୍ମୀମାନଙ୍କ ମତାମତ ପ୍ରତି ଭ୍ରୂକ୍ଷେପ ନ କରି କାର୍ଯ୍ୟକରିବା ଗୋଟାଏ ବ୍ୟାଧି ଘୋଟିଲା ବୋଲି ମୁଁ ବୁଝିଲି। କୌଣସି ସମୟରେ ନିଜର ବ୍ୟକ୍ତିଗତ ସ୍ୱାର୍ଥର ଭାବନା ଦ୍ୱାରା ପ୍ରଭାବିତ ହୋଇ କିଛି ବିଚାର କରିବା ଉଚିତ ନୁହେଁ। ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ହେବାରେ ମୋର ସ୍ୱାର୍ଥ ସାଧନର ଉଦ୍ଦେଶ୍ୟ ନ ଥିଲା। କାର୍ଯ୍ୟ କରିବାପାଇଁ ସୁବିଧାର ଅନ୍ୱେଷଣ କରିବା ମୋର ଲକ୍ଷ୍ୟ। ବିଧାନସଭାର ସଭ୍ୟ ହୋଇ ନ ପାରିବାରୁ ଏଥିପାଇଁ ମୋ ମନରେ ଦୁଃଖ ନ ହୋଇଛି ତାହାନୁହେଁ, ଦୁଃଖ କିଛି ନ ହୋଇଛି ବୋଲି କହିବା ଅସ୍ୱାଭାବିକ। କିନ୍ତୁ ଏଥିପାଇଁ ମନରେ ତିକ୍ତଭାବ ସ୍ଥାନ ପାଇନାହିଁ। ବରଂ ନିର୍ବାଚନରେ କଂଗ୍ରେସକୁ ଜୟଯୁକ୍ତ କରେଇବା ପାଇଁ ଅକ୍ଳାନ୍ତ ପରିଶ୍ରମ କରିଛି। କଂଗ୍ରେସକୁ ବର୍ତ୍ତମାନ ଦୃଢ଼ କରିବାକୁ ହେବ। କଂଗ୍ରେସ ଅନୁଷ୍ଠାନ ଆମ୍ଭର ପ୍ରାଣ ଓ ଜୀବନ। ବ୍ୟକ୍ତିଗତ ସୁବିଧା ଅସୁବିଧା ଭାବି କଂଗ୍ରେସ ପ୍ରତି ଅବହେଳା କରାଯାଇ ନ ପାରେ।

ଦଶପଲ୍ଲାରେ ରହି ସେଠାରେ କିଛି କାର୍ଯ୍ୟ କରି ଜୀବନର ଅବଶିଷ୍ଟ ଜୀବନ ଅତିବାହିତ କରିବାକୁ ଦୃଢ଼ସଂକଳ୍ପ କରିଥିଲେ ମଧ୍ୟ, ସେଠାରେ ରହି କିଛି କାର୍ଯ୍ୟ କରିବାପାଇଁ ପରିସ୍ଥିତି ପ୍ରତିକୂଳ ହୋଇ ଉଠିଲା। ଦଶପଲ୍ଲା ରାଜାସାହେବ କଂଗ୍ରେସ ପ୍ରତିନିଧି ହୋଇ ନିର୍ବାଚନ ଲଢ଼ିଲେ ଏବଂ ଶେଷରେ କଂଗ୍ରେସ ସରକାରରେ ଜଣେ ମନ୍ତ୍ରୀ ହେଲେ। ଏହାଦ୍ୱାରା କଂଗ୍ରେସ ନାମରେ କାର୍ଯ୍ୟକରିବା ମୋ ପକ୍ଷରେ ସୁବିଧାଜନକ ହୋଇ ନ ଥିବ ବୋଲି ଯେ କେହି ଅକ୍ଳେଶରେ ବୁଝିପାରିବେ। ରାଜାସାହେବ କଂଗ୍ରେସରେ ଯୋଗଦେବା ଅବଶ୍ୟ ଆନନ୍ଦର ବିଷୟ। କିନ୍ତୁ ସାଧାରଣ ପ୍ରଜାଙ୍କ ସହିତ ପାଦ ମିଳାଇ କାର୍ଯ୍ୟ କରିବା ଏବଂ ସେମାନଙ୍କ ସୁଖ ଦୁଃଖରେ ଭାଗୀହେବା ରାଜାଙ୍କ ପକ୍ଷରେ କଦାପି ସହଜ ନୁହେଁ। ମନୁଷ୍ୟର ପ୍ରକୃତି ହଠାତ୍ ବଦଳି ଯାଇ ନ ପାରେ। ଦଶପଲ୍ଲାରେ ରହି କାର୍ଯ୍ୟ କଲେ ମୋର ମତାମତ ସହିତ ରାଜାସାହେବଙ୍କ ମତର ଅମେଳ ଘଟିବାର ସମ୍ଭାବନା ଦେଖାଯିବାରୁ ମୁଁ ଦଶପଲ୍ଲା ତ୍ୟାଗକରି କଟକ ଆସିଲି। କାର୍ଯ୍ୟକରିବା ପଦ୍ଧତି ବର୍ତ୍ତମାନ ବଦଳି ଯାଇଛି, ନୂତନ ପରିସ୍ଥିତିରେ ନୂତନ ଜୀବନ ଆରମ୍ଭ କରିବା ଭଳି। ବର୍ତ୍ତମାନ କର୍ମପନ୍ଥା ବାଛିବାକୁ ପଡ଼ିବ। ଏଥର ଆସି ସ୍ୱରାଜ୍ୟାଶ୍ରମରେ ରହିଲି। ବର୍ତ୍ତମାନ ୧୯୫୪ ମସିହା—ଶ୍ରୀ ନବକୃଷ୍ଣ ଚୌଧୁରୀ ଓଡ଼ିଶାର କର୍ଣ୍ଣଧାର।

ନୂତନ ଆଦର୍ଶରେ ଭାରତକୁ ଗଢ଼ିବାକୁ ଶ୍ରୀ ଜବାହରଲାଲ ନେହେରୁ 'ଭାରତ ସେବକ ସମାଜ' ନାମରେ ଗୋଟିଏ ସଂଗଠନର ମୂଳଭିତ୍ତି ସ୍ଥାପନ କରନ୍ତି। ଭାରତରେ ପ୍ରତି ଷ୍ଟେଟ୍‌ରେ ଏହାର କାର୍ଯ୍ୟ ଆରମ୍ଭ ହୋଇଗଲାଣି। ଓଡ଼ିଶାରେ ଏହି କାର୍ଯ୍ୟ ଆରମ୍ଭ କରିବାପାଇଁ ନବବାବୁ ମତେ ବାଛିଲେ ଏବଂ ଭାରତ ସେବକ ସମାଜର ସଭାପତି ଶ୍ରୀ ଜବାହରଲାଲ ନେହେରୁ ମତେ ଓଡ଼ିଶା ଷ୍ଟେଟ୍‌ପାଇଁ ସଂଯୋଜକ, ଅର୍ଥାତ୍ State Convenorଭାବରେ ନିଯୁକ୍ତ କଲେ। ଭାରତ ସେବକ ସମାଜର ଉଦ୍ଦେଶ୍ୟ ଓ କର୍ମପଦ୍ଧତି ମୋର କଳ୍ପନା ସହିତ ମିଳିଯିବାରୁ ମୁଁ ଅତି ଉତ୍ସାହର ସହିତ ସେହି କାମରେ ମନପ୍ରାଣ ଢାଳିଦେଲି। ସ୍ୱାଧୀନ ଭାରତର ମାଲିକ ଏ ଦେଶର ପ୍ରତ୍ୟେକ ନରନାରୀ। ଧନୀ, ଦରିଦ୍ର, ଉଚ୍ଚ ନୀଚ କିମ୍ବା ଶିକ୍ଷିତ ଅଶିକ୍ଷିତର ବିଚାର ନାହିଁ। ପ୍ରତ୍ୟେକ ବ୍ୟକ୍ତି ଦେଶର ମାଲିକ। ଏହି ଭାବନା ଦେଶରେ ଜାଗ୍ରତ କରିବାକୁ ହେବ। ଦେଶକୁ ନୂତନ କରି ଗଢ଼ାଯାଉଛି। ଯେଉଁମାନଙ୍କ ପାଇଁ ଗଢ଼ାଯାଉଛି ସେମାନେ ଗଠନ କାର୍ଯ୍ୟରେ ସହଯୋଗ କରିବା ଉଚିତ। ଏହା ହିଁ ହେଲା ବର୍ତ୍ତମାନ ଆମ୍ଭମାନଙ୍କର ଆଦର୍ଶ ଓ ନୂତନ ଆଲୋକ। ଏହି ବାର୍ତ୍ତା ପ୍ରଚାର କରି ଦେଶର ପ୍ରତ୍ୟେକ ନରନାରୀଙ୍କୁ ଦୀକ୍ଷିତ କରିବାକୁ ପଡ଼ିବ। ମୂର୍ଖବ୍ୟକ୍ତିଙ୍କୁ ପାଠ ପଢ଼ାଇବାକୁ ହେଲେ ସି, ଧି, ଅ, ଆ ଆରମ୍ଭ କରାଇଲା ପରି ଦେଶବାସୀଙ୍କୁ ନିଜ ଦେଶ, ତଥା ଗ୍ରାମକୁ ଆପଣାର ଭାବି କାର୍ଯ୍ୟ କରିବାପାଇଁ ଖଡ଼ି ଧରେଇଲା ଭଳି କାର୍ଯ୍ୟରେ ସୂତ୍ରପାତ କରାଯିବ। ଏହି ଭାବରେ ମୁଁ ଏହାକୁ ଗ୍ରହଣ କଲି। ଦିନରାତି ଚବିଶ ଘଣ୍ଟାରୁ ଗୋଟିଏ ଘଣ୍ଟା ଦେଶ ତଥା ନିଜ ଗ୍ରାମର କାମ କରିବାକୁ ଯେ ପ୍ରତିଶ୍ରୁତି ଦେବେ ସେ ଭାରତ ସେବକ ସମାଜର ସଭ୍ୟ ହୋଇପାରିବେ। ଯେଉଁ ଗ୍ରାମରେ ଦଶ ଜଣରୁ ଅଧିକ ସଭ୍ୟ ହେବେ, ସେହି ଗ୍ରାମରେ ଭାରତ ସେବକ ସମାଜର ଗୋଟିଏ ଶାଖା ସ୍ଥାପନ କରାଯିବ। ଦଶଜଣ ସଭ୍ୟ ହେଲେ ପ୍ରତିଦିନ ଦଶଘଣ୍ଟା ସମୟ ଗ୍ରାମ କାମପାଇଁ ମିଳିଲା। ଏହା ହେଲା ସେମାନଙ୍କ ପାଣ୍ଠି। ଏହି ପାଣ୍ଠି ବୃଦ୍ଧି କରିବାକୁ ଗ୍ରାମରେ ସଭ୍ୟ ସଂଖ୍ୟା ବଢ଼ାଇବାକୁ ହେବ। ଏହାର ସଭାପତି, ସମ୍ପାଦକ ଓ କୋଷାଧ୍ୟକ୍ଷ ବଛାଯିବେ। ଗ୍ରାମର ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ଗୋପାଳନ, ବୈଷୟିକ ଉନ୍ନତି—ଯାବତୀୟ ବିଷୟ, ଦୃଷ୍ଟିରେ ରଖି କାର୍ଯ୍ୟ ଆରମ୍ଭ କରାଯିବ। ନିଜର ବ୍ୟକ୍ତିଗତ ବିଷୟ ଛାଡ଼ି ଗ୍ରାମପାଇଁ ଏପରି କାମ କରିବାକୁ ଅଭ୍ୟାସ ଆରମ୍ଭ କରିବା ଦ୍ୱାରା, ଦେଶପ୍ରତି ଦାୟିତ୍ୱବୋଧ ଭାବନା ଅଙ୍କୁରିତ ହୋଇ ଉଠିବ। ଗ୍ରାମକୁ ପରିଚାଳନା କରିବାର ଶକ୍ତିଲାଭ କରିବାପାଇଁ ଅପୂର୍ବ ସୁଯୋଗ ମିଳିବ। ଦେଶର ଶାସନ ଦାୟିତ୍ୱ ବହନ କରିବା ପାଇଁ ଦେଶର ନରନାରୀ ମଧ୍ୟ ଉପଯୁକ୍ତ ଶିକ୍ଷା ପାଇବେ। ଦେଶରେ ଚାଲିଥିବା ପାଞ୍ଚବର୍ଷିଆ 'ଯୋଜନା ସବୁ କାର୍ଯ୍ୟରେ ଅକ୍ଳେଶରେ ପରିଣତ ହୋଇ ପାରିବ। ଏହିପରି କଳ୍ପନାରେ ମୁଁ ଆତ୍ମହରା ହୋଇ କାର୍ଯ୍ୟ କଲି। ପୁରୀ, କଟକ, ବାଲେଶ୍ୱର, ଗଞ୍ଜାମ, ସମ୍ବଲପୁର, କେନ୍ଦୁଝର, ବଲାଙ୍ଗିର ଓ କଳାହାଣ୍ଡି

ଆଦି ଜିଲ୍ଲା ସବୁ ବୁଲି ଶାଖା ସମାଜ ସବୁ ଗଠନ କଲି। ସଂଗଠନକୁ କାର୍ଯ୍ୟକାରୀ କରିବାକୁ ବହୁ ବ୍ୟକ୍ତିଙ୍କ ସହଯୋଗ ଆବଶ୍ୟକ। ପ୍ରାଦେଶିକ ଓ ଜିଲ୍ଲା ଅଫିସ କରିବାକୁ ଅର୍ଥ ଦରକାର। ବର୍ଷକୁ ଲକ୍ଷେ ଟଙ୍କା ନ ହେଲେ ନ ଚଳେ। ଓଡ଼ିଶାରୁ ବ୍ୟକ୍ତିଗତ ଚେଷ୍ଟାରେ ଏତେ ଟଙ୍କା ଉଠାଇ କାମ କରିବା ସହଜ ନୁହେଁ। ଏଥିପାଇଁ ଗୋଟିଏ ଯୋଜନା ପ୍ରସ୍ତୁତ କରି କେନ୍ଦ୍ର ଅଫିସକୁ ପଠାଇଲି। ୧୯୫୫ ମସିହା ମାର୍ଚ୍ଚ ମାସ ପ୍ରଥମ ସପ୍ତାହରେ ନାଗପୁରରେ ଭାରତ ସେବକ ସମାଜର ବାର୍ଷିକ ସମ୍ମିଳନୀ ହେଲା। ସେଥିରେ ଯୋଗଦେଇ ଓଡ଼ିଶାର ପରିସ୍ଥିତି ବୁଝାଇଥିଲି। କେନ୍ଦ୍ରରୁ ନାନା କାର୍ଯ୍ୟରେ ଅର୍ଥ ସାହାଯ୍ୟ ମିଳିବାର ଆଶା ପାଇଲି। ଓଡ଼ିଶାକୁ ଫେରିଲି ନାନାପ୍ରକାର କଳ୍ପନା ଧରି। କିନ୍ତୁ ମୋର ସ୍ୱାସ୍ଥ୍ୟ ପୂର୍ବରୁ ଭଲ ନ ଥିଲା। ଭାରତ ସେବକ ସମାଜ ପାଇଁ ଅତିମାତ୍ରାରେ ପରିଶ୍ରମ କରି ମୋର ସ୍ୱାସ୍ଥ୍ୟ ଏକାବେଳେକେ ଭାଙ୍ଗି ପଡ଼ିଲା। ହଠାତ୍ ରକ୍ତବାନ୍ତି ଓ ରକ୍ତଝାଡ଼ା ହୋଇ ମୃତ୍ୟୁମୁଖରେ ଉପନୀତ ହେଲି। ଏଥିପାଇଁ କଟକ ହାସପାତାଳରେ ଚାରିମାସ ରହିବାକୁ ପଡ଼ିଲା। କୌଣସି ପ୍ରକାରେ ଜୀବନ ରକ୍ଷା ହେଲା ସତ, କିନ୍ତୁ ଆଉ କୌଣସି କାର୍ଯ୍ୟ କରିବାକୁ ଶକ୍ତି ରହିଲା ନାହିଁ। ଦୀର୍ଘ ସମୟ ବିଶ୍ରାମ ଗ୍ରହଣ କରିବାକୁ ଡାକ୍ତର ପରାମର୍ଶ ଦେଲେ। ଭାରତ ସେବକ ସମାଜ କାମରୁ ଅବ୍ୟାହତି ଦେବାକୁ ଅନୁରୋଧ କରି ମୁଁ ପୂର୍ଣ୍ଣ ବିଶ୍ରାମ ଗ୍ରହଣ କଲି। ସେବକ ସମାଜର ସମ୍ପାଦକ, ଶ୍ରୀ କୃଷ୍ଣପ୍ରସାଦ ଦିଲ୍ଲୀରୁ ପତ୍ର ଦେଲେ,"It is unfortunate for us that you have had such serious illness. We are thankful to God that you have got over it. We hope your interest in 'Bharat Sevak Samaj' will continue unabated. A person of your back-ground of social service & influence will be most useful to the Samaj."

ଅର୍ଥାତ୍—ଆମ୍ଭମାନଙ୍କ ଦୁର୍ଭାଗ୍ୟ ତମେ ଏପରି ସାଙ୍ଘାତିକ ଭାବରେ ବେମାର ପଡ଼ିଲ। ଆମ୍ଭେମାନେ ଈଶ୍ୱରଙ୍କ ନିକଟରେ କୃତଜ୍ଞତା ଜଣାଉଅଛୁ— ତୁମେ ସେଥିରୁ ରକ୍ଷା ପାଇଥିବାରୁ। ଆମ୍ଭମାନଙ୍କର ଆଶା, ଭାରତ ସେବକ ସମାଜ ପ୍ରତି ତୁମର ସ୍ପୃହା ବେଳକୁବେଳ ବଢ଼ିବା କିନ୍ତୁ କମିଯିବ ନାହିଁ। ତମପରି ଜଣେ ଜଣାଶୁଣା ସମାଜ ସେବକ, ପ୍ରଭାବିଶାଳୀ ବ୍ୟକ୍ତି ଭାରତ ସେବକ ସମାଜର ବହୁ କାମ କରି ପାରିବ।

## ଉପସଂହାର

ଚମ୍ପାପୁର ଗାନ୍ଧୀ-ସେବାଶ୍ରମକୁ ଦୃଢ଼ କରିବାକୁ ନାନା ଚେଷ୍ଟା କରିଛି, କିନ୍ତୁ ପରିସ୍ଥିତିରେ ପରିବର୍ତ୍ତନ ଘଟିବାରୁ ଆଶ୍ରମକୁ ଭାଙ୍ଗି ସ୍କୁଲରେ ପରିଣତ କଲି। ଆଶ୍ରମ ଭାଙ୍ଗିଯାଇ ମାଟିରେ ମିଶିଯାଉ ବୋଲି କେତେ ଜଣଙ୍କର ଇଚ୍ଛା ଏବଂ ଉଦ୍ଦେଶ୍ୟ ଥିଲା। ସେ ସବୁର ସବିଶେଷ ଇତିବୃତ୍ତି ଲେଖିନାହିଁ। କାରଣ, ଲେଖିବାକୁ ହେଲେ

ବହୁତ ଅପ୍ରିୟ ସତ୍ୟ କଥା ଲେଖିବାକୁ ପଡ଼ିବ ଏବଂ ବହୁ ବ୍ୟକ୍ତିବିଶେଷଙ୍କ କଥା ନ ଲେଖି ରହି ହେବ ନାହିଁ। ନିଜର ଦୋଷ ତ୍ରୁଟି ମଧ୍ୟ ଲେଖିବାକୁ ହେବ। ସ୍ୱାଧୀନତା ପରେ ଦେଶର ଆଖି ଫିଟିଛି। ଦେଶର ଭଲ ମନ୍ଦ ସଂବାଦ ଜାଣିବାକୁ ସାଧାରଣରେ ଆଗ୍ରହ ପ୍ରକାଶ ପାଇଛି। ରାଜନୈତିକ ପରିସ୍ଥିତି ବଦଳିଛି। ଦେଶରେ ଘଟିଥିବା ଅବା ଘଟୁଥିବା ଘଟଣାବଳୀ ଆଉ କାହାରି ଅଜଣା ରହୁନାହିଁ। ତେଣୁ ସେସବୁ ଅପ୍ରୀତିକର ଘଟଣା ସବୁର ବିସ୍ତୃତ ବର୍ଣ୍ଣନା କରି ଜାତୀୟ ଜୀବନର ଆତ୍ମବିକାଶ ପୁସ୍ତକର କଳେବର ବୃଦ୍ଧି କରିବାକୁ ଇଚ୍ଛା କରିନାହିଁ। ଏ ପର୍ଯ୍ୟନ୍ତ ଯେଉଁସବୁ ଘଟଣାମାନ ଆମ୍ଭମାନଙ୍କର ଜୀବନକୁ ପ୍ରଭାବିତ କରି ଜୀବନର ଗତି, କାର୍ଯ୍ୟ ଓ ଚିନ୍ତାରେ ଘୋର ପରିବର୍ତ୍ତନ ଘଟାଇ ପାରିଛି, ତାହାର ଆଭାସ ମାତ୍ର ଅତି ସଂକ୍ଷେପରେ ଉଲ୍ଲେଖ କଲି। ସେ ସମସ୍ତ ଘଟଣାର ବିଷଦବିବରଣ ଲେଖିବାର ଆବଶ୍ୟକ ଏ ପୁସ୍ତକରେ ମୁଁ ଅନୁଭବ କରୁନାହିଁ। ମତେ ଏବଂ ମୋର ଚିନ୍ତାକୁ ପ୍ରଭାବିତ କରି ମୋର ଜୀବନର ଗତିକୁ ପରିବର୍ତ୍ତିତ କରିଥିବା ରାଜନୈତିକ ଇତିବୃତ୍ତର କିଞ୍ଚିତ ଆଭାସ କେବଳ ଏଥିରୁ ମିଳିବ। ଏଥିରୁ ଅଧିକ କଥା ଉଲ୍ଲେଖ କରିବାକୁ ମନରେ ସ୍ପୃହା ଆସୁ ନାହିଁ। ତେବେ ଗୋଟିଏ କଥା ମନକୁ ଜାଗି ଉଠୁଛି। ଜବରଦସ୍ତି କୌଣସି ସତ୍ୟକୁ ପ୍ରକାଶ ନ କରିବା କଦାପି ଉଚିତ ନୁହେଁ। ଆମ୍ଭ ମହାନ୍ ଜାତୀୟ ଜୀବନ ମଧ୍ୟ ଏହି ଶିକ୍ଷା ଦେଉଛି। ଯାହା ସତ୍ୟ ଓ କର୍ତ୍ତବ୍ୟ ତାକୁ କାର୍ଯ୍ୟରେ ପରିଣତ କରିବା ବିଧେୟ। ଏହା ସମସ୍ତେ ସ୍ୱୀକାର କରିବେ। କିନ୍ତୁ ଏ ସତ୍ୟ ସମସ୍ତଙ୍କ ପାଇଁ ସମାନ ନୁହେଁ ବୋଲି ମୋର ଅନୁଭୂତି ମତେ ଶିକ୍ଷା ଦେଇଛି। ସାଧାରଣ ମାନବ ସେପରି କଲେ ସେ ଅବାଟରେ ଗଲା ବୋଲି ସମସ୍ତେ କହିବେ। ସତ୍ୟ, ନ୍ୟାୟ ଓ ଭଗବାନ—ଏହି ତିନୋଟି କଥା ପ୍ରତି ମୁହୂର୍ତ୍ତରେ ଏବଂ ପ୍ରତ୍ୟେକ ଘଟଣାରେ ଆମେମାନେ ଉଦାହରଣ କରିଥାଉ। କିନ୍ତୁ ଏହି ତିନୋଟି ଶବ୍ଦର ମୂଲ୍ୟ ସମସ୍ତଙ୍କ ପାଇଁ ସମାନ ନୁହେଁ। ଦେଶରେ ଓ ସମାଜରେ ଯାହାର ଯେପରି ପ୍ରତିଷ୍ଠା, ଏହି ତିନୋଟି ଶବ୍ଦର ମୂଲ୍ୟ ସେହିପରି ତାହାପାଇଁ ସେତିକି ଅଧିକ। ଦେଶ ଓ ସମାଜରେ ପ୍ରତିଷ୍ଠିତ ବ୍ୟକ୍ତିଙ୍କର କଥା ଓ କାର୍ଯ୍ୟ ଅଧିକାଂଶଙ୍କ ନିକଟରେ ସତ୍ୟ ଓ ନ୍ୟାୟ ବୋଲି ବିବେଚିତ ହୁଏ। ଭଗବାନ ମଧ୍ୟ ତାଙ୍କ ପାଇଁ ସହଜ ସାଧାରଣ ମନୁଷ୍ୟର କଥାରେ ସତ୍ୟ ଓ ନ୍ୟାୟ କାହାରିକୁ ଦେଖାଯାଏ ନାହିଁ। ତାହାପାଇଁ ମଧ୍ୟ ଭଗବାନ କେଉଁଠାରେ ନ ଥାନ୍ତି।

ସୁତରାଂ ସାଧାରଣ ମନୁଷ୍ୟ ଯାହା ସତ୍ୟ ଓ ନ୍ୟାୟ ବୋଲି ଭାବିବ ତାହାକୁ କାର୍ଯ୍ୟରେ ପରିଣତ କରିବାକୁ ଚେଷ୍ଟା କରିବା ବିପଦପୂର୍ଣ୍ଣ। ପୁଣି ଦେଶ ସେବାରେ ରତଥିବା କର୍ମୀଙ୍କୁ ଅଧିକ ସାବଧାନ ହେବାକୁ ପଡ଼ିବ। ସାଧାରଣ ଲୋକେ ଗ୍ରହଣ କରି ପାରିଲା ଭଳି କଥା କହିବା କିମ୍ବା କାର୍ଯ୍ୟ କରିବା ସାଧାରଣ କର୍ମୀ ପକ୍ଷରେ ନିହାତି ଆବଶ୍ୟକ। ସତ୍ୟ କଥା କର୍ତ୍ତବ୍ୟ ବୋଲି ଯାହା ଜଣାପଡ଼ିବ ତାହା କାର୍ଯ୍ୟରେ

ପରିଣତ କରିବା ସମସ୍ତଙ୍କ ପକ୍ଷରେ କଦାପି ସ୍ପୃହଣୀୟ ନୁହେଁ। ଲୋକସାଧାରଣଙ୍କ ଚିନ୍ତାଧାରାରେ ପରିବର୍ତ୍ତନ ଆଣିବାକୁ ପ୍ରଥମ ଚେଷ୍ଟା ନ କରି ଯାହା କରାଯାଏ ତାହା ଲୋକଚକ୍ଷୁରେ ବିଦ୍ରୂପ କରୁଥିବା ଭଳି ପ୍ରତିଭାତ ହୁଏ। ଲୋକମତର ପରିବର୍ତ୍ତନ ଘଟାଇବା ପାଇଁ ଲୋକମତ ବିରୁଦ୍ଧରେ କାର୍ଯ୍ୟ କରିବା ସାଧାରଣ କର୍ମୀ ପକ୍ଷରେ ଶୋଭାପାଏ ନାହିଁ। ମହାପୁରୁଷ ତଥା ଅବତାର ପୁରୁଷମାନେ କେବଳ ସେପରି କାର୍ଯ୍ୟ କରି ପାରନ୍ତି। ମାନବ ସମାଜର ଚିନ୍ତାଧାରାରେ ପରିବର୍ତ୍ତନ କରିବାକୁ ମହାତ୍ମାଗାନ୍ଧୀ ଅହିଂସାର ମାର୍ଗ ଅବଲମ୍ବନ କରିଛନ୍ତି। କଂଗ୍ରେସର ଅନୁଷ୍ଠାନକୁ ବ୍ୟବହାର କରି ତାଙ୍କର ସତ୍ୟ ଓ ଅହିଂସାର ବାଣୀ ଜଗତକୁ ଶୁଣାଇଛନ୍ତି। ତଥାପି ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଏ ଭ୍ରାତୃଭାବ ସ୍ଥାପନ କରିବାକୁ ଚେଷ୍ଟାକରି ଜୀବନକୁ ବଳିଦାନ ଦେଇଛନ୍ତି।

ସାଧାରଣ ଲୋକେ ଆମ୍ଭମାନଙ୍କୁ ଦେଶସେବକ ନ କହି କଂଗ୍ରେସର ଲୋକ ତଥା କଂଗ୍ରେସକର୍ମୀ ବୋଲି ଜାଣନ୍ତି। କଂଗ୍ରେସ ନାମରେ ଆମ୍ଭେମାନେ କାର୍ଯ୍ୟକରିଛୁ। କଂଗ୍ରେସ ଓ ଗାନ୍ଧୀଜୀ ଏହି ଦୁଇଟି ନାମ ଶୁଣିଲେ ଆମ୍ଭମାନଙ୍କ ମନ ଓ ହୃଦୟରେ ଅପୂର୍ବ ବଳ ସଂଚାରିତ ହୁଏ। କଂଗ୍ରେସ ସାହାଯ୍ୟରେ ଗାନ୍ଧୀଜୀଙ୍କ ବାଣୀ ଭଗବାନଙ୍କ ବାଣୀ ସଦୃଶ ଆମ୍ଭମାନଙ୍କୁ ପ୍ରଭାବିତ କରିଛି। ଏହିପରି ଭାବନାରେ ପ୍ରଭାବିତ ହୋଇ ମୁଁ ଯାହା କରିଛି ତାହାକୁ ଭଗବାନଙ୍କ ସେବା ବୋଲି ମୁଁ ବିଶ୍ୱାସ କରିଛି। କୌଣସି ପ୍ରକାର ସ୍ୱାର୍ଥଜଡ଼ିତ ଭାବନା ମତେ କଦାପି ପ୍ରଭାବିତ କରି ନାହିଁ। ଘୋର ସଂକଟପୂର୍ଣ୍ଣ ପରିସ୍ଥିତିରେ ପଡ଼ିଲେ ମଧ୍ୟ ମୋର ମନର ବଳ ଭାଙ୍ଗିପଡ଼ି ନାହିଁ। ଘୋର ଅନ୍ଧକାର ଭିତରେ ପୁଣି ନୂତନ ଆଲୋକ ଦେଖିବାକୁ ପାଇଛି। ମୋର ହୃଦୟର ଭାବତରଙ୍ଗ ହୋଇଛି, ମୋର ନୂତନ ଆଲୋକ ଓ ନୂତନ ବଳ। ଦେଶସେବା କାର୍ଯ୍ୟରେ କୌଣସି ପ୍ରକାର ସ୍ୱାର୍ଥ ସାଧନ କରିବାର ଲିପ୍‌ସା ହୃଦୟରେ ସ୍ଥାନ ନ ପାଇଲେ, ମନୁଷ୍ୟକୁ ସବୁବେଳେ ନୂତନ ପ୍ରେରଣା ମିଳିବ ବୋଲି ମୋର ବିଶ୍ୱାସ। ସେବାକାର୍ଯ୍ୟରେ ପରିମାଣ ବଡ଼ କଥା ନୁହେଁ। କାର୍ଯ୍ୟର ପରିମାଣ ପ୍ରେରଣାକୁ ସବଳ କରେ ନାହିଁ। କଠୋର ସମାଲୋଚନା ଓ ବନ୍ଧୁବର୍ଗଙ୍କର ନିର୍ଦ୍ଦୟ ବ୍ୟବହାରକୁ ସମ୍ଭାଳି ଦେଶସେବାରେ ଲାଗି ରହିବାକୁ ହେଲେ କେବଳ ନିଜର ଆଦର୍ଶ ଉପରେ ଅଟଳ ବିଶ୍ୱାସ ରଖି ସେଥିପାଇଁ ଅସୀମ ଦୁଃଖ ନିର୍ଯ୍ୟାତନା ସହିବାକୁ ହୃଦୟ ଓ ମନର ଟାଣ ଭାବ ଏକମାତ୍ର ସହାୟ। ମୋ ଜୀବନର ଏହା ହିଁ ଅନୁଭୂତି। ଏହିପରି ଭାବନରେ ପ୍ରଭାବିତ ହୋଇ ଦେଶର ଅଗଣିତ ନରନାରୀ ନୂତନ ଭାରତକୁ ଗଢ଼ିବାକୁ ମନପ୍ରାଣ ଢାଳିଦେବେ—ଏହି ଉଦ୍ଦେଶ୍ୟରେ ଏ ପୁସ୍ତକ ଲେଖିବାକୁ ମନ ବଳେଇଲି।

ଦେଶ ସ୍ୱାଧୀନ ହେଲାଣି। ଲୋକଙ୍କ ଆଖି ଫିଟିଲାଣି ବୋଲି କହିବା ଅତ୍ୟୁକ୍ତି ହୋଇ ନ ପାରେ। ଦେଶ ପରାଧୀନ ଥିଲାବେଳେ ତାକୁ ସ୍ୱାଧୀନ କରିବା ଥିଲା ଏକମାତ୍ର ପ୍ରଶ୍ନ। ଆଜି ବହୁ ପ୍ରଶ୍ନ ସମାଧାନ କରିବା ଆବଶ୍ୟକ ପଡୁଛି। ଆଖି ଫିଟିଲେ ଲୋକଙ୍କୁ ଆଲୋକ ଦେଖାଯାଏ। କିନ୍ତୁ ଆଲୋକ ପାଇ ମଧ ଅନ୍ଧକାରରେ

ରହିଲା ପରି ସାଧାରଣ ଲୋକେ ଧନ୍ଦାକି ହେଉଛନ୍ତି। କୌଣସି ଗୋଟିଏ ପ୍ରଶ୍ନ ସମାଧାନ କରିବାକୁ ବାଟ ଦେଖା ନ ଯାଉଥିଲା ଭଳି ଜଣାପଡୁଛି। ସମସ୍ତେ ସବୁପ୍ରକାର ସୁବିଧା ଖୋଜୁଛନ୍ତି। ସୁବିଧାର ପନ୍ଥା ବାଛିନେଇ କାର୍ଯ୍ୟ ସଂପାଦନା କରିବାକୁ କାହାରି ଭରସା ନାହିଁ କିମ୍ବା ମନରେ ବଳ ମଧ୍ୟ ପାଉନାହାନ୍ତି। ଦେଶ ଓ ସମାଜରେ ହା ହତାଶ ଭାବ ବୃଦ୍ଧି ପାଉଥିବାର ସ୍ପଷ୍ଟ ପ୍ରମାଣ ମିଳୁଛି। ଏହିସବୁ ଲକ୍ଷ୍ୟ କରି ଏ ବହିଖଣ୍ଡି ଲେଖିବାକୁ ମନ ବଳେଇବା ଅନ୍ୟ ଏକ କାରଣ। ଏହି ବହିର ନାମ ଦେଇଛି ପ୍ରଥମରୁ ଜାତୀୟ ଜୀବନର ଆତ୍ମ ପ୍ରକାଶ। ସୁବିଧା ଖୋଜିଲେ ଜୀବନର ବିକାଶ ହୁଏ ନାହିଁ। ସଂଗ୍ରାମ ଦ୍ୱାରା ଜୀବନ ବିକାଶପ୍ରାପ୍ତ କରେ। ଅଭାବ ଅସୁବିଧା ପ୍ରତି ଦୃଷ୍ଟି ନ ରଖି ଦେଶ ଓ ତଥା ସମାଜର ମଙ୍ଗଳ ପାଇଁ କାମ କରିବା ହେଉଛି ଜୀବନର ପ୍ରକୃତ ସଂଗ୍ରାମ। ଆନନ୍ଦରେ ବିହ୍ୱଳ ହୋଇ ଦୁଃଖ କଷ୍ଟ ଓ ଭୟ ବିପଦକୁ ବରଣ କରିବାରେ ଜୀବନର ଲକ୍ଷ୍ୟ ସାଧନ କରିବା ମାର୍ଗ ସହଜ ହୁଏ। ଏହି ସତ୍ୟ ଉପଲବ୍ଧି କରି ଜୀବନର ଲକ୍ଷ୍ୟ ମୁଁ ସାଧନ କରିପାରିଛି ବୋଲି ମୋର ବିଶ୍ୱାସ। ଦେଶକୁ ସ୍ୱାଧୀନ କରିବାର ସ୍ୱପ୍ନ ଯେତେବେଳେ ମୁଁ ଦେଖିଥିଲି, ସେତେବେଳେ ଦେଶରେ କୌଣସି ପ୍ରକାର ଆଲୋକ ନ ଥିଲା। ଦେଶକୁ ସ୍ୱାଧୀନ କରିବାର ସ୍ୱପ୍ନ ଦେଖି ଜୀବନକୁ ତଦନୁକୂଳରେ ଗଢିବାକୁ ସାଧନା କରୁଥିବାରୁ ୧୯୧୪ ମସିହାରେ ଦଶପଲ୍ଲା କନ୍ଧମେଳିର ସୂତ୍ରପାତ କରି ପାରିଥିଲି। ଜୀବନର ଏହି ଅଧ୍ୟାୟର କିଞ୍ଚିତ ଆଭାସ ପୂର୍ବ ପ୍ରକାଶିତ ମୋର ଜାତୀୟ ଜୀବନର ଆତ୍ମପ୍ରକାଶ ପୁସ୍ତକରେ ଉଲ୍ଲେଖ କରିଛି। ଏଠାରେ ତାହାର ପୁନରାବୃତ୍ତି ଅନାବଶ୍ୟକ। ସେତେବେଳେ ସୁବିଧା ଅସୁବିଧା ବିଚାର କରିବାର ପ୍ରଶ୍ନ ନ ଥିଲା। ମୋର ଜୀବନର ଅନୁଭୂତିରୁ ମୁଁ କହିପାରେ ଯେ ସୁବିଧା ଖୋଜିଲେ କାହାକୁ ମିଳେ ନାହିଁ। ଜୀବନର ଲକ୍ଷ୍ୟ ଉପରେ ଅଟଳବିଶ୍ୱାସ ରଖି କର୍ମକ୍ଷେତ୍ରରେ ଅଗ୍ରସର ହେବାକୁ ଅବିରାମ ଚେଷ୍ଟା କଲେ ସୁବିଧା ଆସି ମନକୁ ଜୁଟେ। ଅପ୍ରଚ୍ଛନ୍ନ ଭାବରେ କୌଣସି ଅଦୃଶ୍ୟ ଶକ୍ତି ପଛରେ ରହି ସାହାଯ୍ୟ କରୁଥିଲା ଭଳି ମନରେ ବିଶ୍ୱାସ ଜନ୍ମେ। ବାଧା ପ୍ରତିବନ୍ଧକ ଯେତେ ଟାଣ ହୁଏ, ହୃଦୟରେ କର୍ମପ୍ରେରଣା ଭାବ ସେତିକି ପ୍ରବଳ ଆକାର ଧାରଣ କରେ। ଜୀବନର ଲକ୍ଷ୍ୟ ନିରୂପଣ ଏବଂ ଲକ୍ଷ୍ୟପ୍ରାପ୍ତି କରିବା ପାଇଁ ଅଟଳବିଶ୍ୱାସ--ଏହି ଦୁଇଟି ହେଉଛି ମୂଳ କଥା। ତାହା ନ ହେଲେ ଯେ କେହି ବ୍ୟକ୍ତି ବାଟ ନ ପାଇ ଅନ୍ଧକାରରେ ଧନ୍ଦାକି ହେବ। ଧନୀ ଦରିଦ୍ର କିମ୍ବା ସୁବିଧା ଅସୁବିଧାର କୌଣସି ପ୍ରଶ୍ନ ନାହିଁ। ମନୁଷ୍ୟ ଯେଉଁ ଦେଶରେ ଜନ୍ମ ଗ୍ରହଣ କରେ ସେ ହେଉଛି ସେ ଦେଶର ଅଧିକାରୀ। ଅଧିକାରର ପ୍ରଶ୍ନ ଥିଲେ ଦାୟିତ୍ୱର କଥା ନିଶ୍ଚୟ ଅଛି। ମନୁଷ୍ୟ ଯାହାକୁ ନିଜର ବୋଲି ଭାବେ ସେଠାରେ ଅଧିକାର ବିସ୍ତାର କରିବାକୁ ଲାଳାୟିତ ହୁଏ। କିନ୍ତୁ ଅଧିକାର ପାଇଲା ମାତ୍ରକେ ଉକ୍ତ ଦ୍ରବ୍ୟକୁ ନିଜର ବୋଲି ଭାବି ତାହିରେ ଦେଖା ଯାଇଥିବା ତ୍ରୁଟିକୁ ସଂଶୋଧନ କରିବାକୁ ବ୍ୟାକୁଳ ହେବା ଉଚିତ।

କିନ୍ତୁ ଲୋକେ ଅଧିକାର ବଳରେ କେବଳ ସୁବିଧା ଖୋଜୁଛନ୍ତି ଏବଂ ଦାୟିତ୍ୱ କଥାଟି କାହାରି ମନରେ ନ ଥିବାରୁ ସବୁ ପ୍ରକାର ବିଭ୍ରାଟ ଉପୁଜୁଛି।

ଏହି ବିଭ୍ରାଟରୁ ଦେଶ କିପରି ଉଦ୍ଧାର ପାଇବ, ଏହି ପ୍ରଶ୍ନ ମୋ ପରି ପ୍ରତ୍ୟେକ ପୁରୁଣା କଂଗ୍ରେସକର୍ମୀଙ୍କ ମନରେ ଖେଳୁଛି। କଂଗ୍ରେସର ପତାକା ତଳେ କାର୍ଯ୍ୟ କରି ଜୀବନ ଆସି ନିର୍ବାଣ ମୁଖରେ ପହୁଞ୍ଚିଲାଣି। କଂଗ୍ରେସର ନାମ ଶୁଣିଲା ମାତ୍ରକେ ମନ ଓ ହୃଦୟରେ ଅପୂର୍ବ ବଳ ସଞ୍ଚାରିତ ହେଉଥିଲା। କଂଗ୍ରେସର ପତାକା ଆମ୍ଭମାନଙ୍କର ଆଶା ଓ ଆକାଂକ୍ଷାର ପ୍ରତୀକ ଥିଲା। ଆଜି ମଧ୍ୟ ସେହି ଆଶା ଓ ବିଶ୍ୱାସ ଆମ୍ଭମାନଙ୍କର କଂଗ୍ରେସ ଉପରେ ରହିଛି। କିନ୍ତୁ ଦେଶରେ ବହୁ ଲୋକ କଂଗ୍ରେସ ଉପରୁ ଆସ୍ଥା ହରେଇଲା ପରି ଜଣା ପଡୁଛି। କଂଗ୍ରେସକୁ ବାଦ୍‌ଦେଲେ ଭାରତରେ ବର୍ତ୍ତମାନ ଉପୁଜୁଥିବା ସମସ୍ୟାମାନଙ୍କର ସମାଧାନ କିଏ କରିବ? ଏହି ପ୍ରଶ୍ନ ମନରେ ଜାଗି ଉଠେ। ଲୋକସାଧାରଣଙ୍କ ମନକୁ ସୁହାଇଲା ଭଳି କଥା କହି ସତ୍ୟକୁ ଲୁଚାଇବା ଦେଶସେବକ ପକ୍ଷରେ ଅତୀବ ଶୋଚନୀୟ ଓ ଲଜ୍ଜାର ବିଷୟ।

ଭବିଷ୍ୟତ କଳ୍ପନାର ଉପାଦାନ, ଅତୀତ ସବୁବେଳେ ମନୋହର ଏବଂ ବର୍ତ୍ତମାନ କଦାପି ସୁଖକର ନୁହେଁ। ଏହା ହେଉଛି ପ୍ରକୃତିର ନିୟମ। ପ୍ରକୃତି ବର୍ତ୍ତମାନ ତାର ଖେଳ ଖେଳୁଛି। କଂଗ୍ରେସ ଓ କଂଗ୍ରେସ ସରକାର ସମସ୍ତଙ୍କ ଆଶା ଓ ଆକାଂକ୍ଷାକୁ ପରିପୂରଣ କରି ପାରୁନାହିଁ। ମନୁଷ୍ୟ ଯାହା ଖୋଜୁଛି ତାହା ପାଇପାରୁ ନାହିଁ। ଅଧିକାଂଶ ସୁବିଧାବାଦୀ ପାଲଟିଛନ୍ତି। କିନ୍ତୁ ବର୍ତ୍ତମାନ ଅତୀତରେ ପରିଣତ ହେବା ଯେପରି ଧ୍ରୁବ ସତ୍ୟ, ଦେଶର ଲୋକେ କଂଗ୍ରେସ ଓ କଂଗ୍ରେସ ସରକାରଙ୍କ କାମରେ ଗୌରବାନ୍ୱିତ ମନେ କରିବା ସେପରି ମଧ୍ୟ ସତ୍ୟ। କଂଗ୍ରେସର ଇତିବୃତ୍ତ ଏ ଦେଶର ଅମରକାହାଣୀ ହେବ। ପୃଥିବୀ ବର୍ତ୍ତମାନ ହଳାହଳମୟ ହୋଇ ଉଠୁଥିବାରୁ ମାନବସମାଜ ଆତଙ୍କିତ ହୋଇ ପଡ଼ିଛି। ମହାତ୍ମାଗାନ୍ଧୀଙ୍କ ବାଣୀରେ ଅମୃତର ସନ୍ଧାନ ପାଇ ପୃଥିବୀର ଜନସମାଜ ଭାରତ ଆଡ଼କୁ ଦୃଷ୍ଟି ପକାଇଛନ୍ତି। ଯେଉଁ କଂଗ୍ରେସ ଉପରେ ଅବଲମ୍ବନ ରଖି ମହାତ୍ମାଗାନ୍ଧୀ ତାଙ୍କର ସତ୍ୟ ଓ ଅହିଂସାର ବାଣୀ ଜଗତକୁ ଶୁଣାଇଥିଲେ, ସେହି କଂଗ୍ରେସ ଭାରତବାସୀର ଆଶା ଓ ଆକାଂକ୍ଷା ପୂରଣ କରିଛି ଏବଂ ବର୍ତ୍ତମାନ ସମସ୍ୟା ସବୁ ସମାଧାନ କରିବାକୁ ସକ୍ଷମ ହେବ ବୋଲି ମୋର ବିଶ୍ୱାସ। କଂଗ୍ରେସ ଦେଶରେ ସବଳ, ଦୃଢ଼ ଏବଂ ଦୀର୍ଘଜୀବୀ ହେଉ, ଏହା ମୋର ଅନ୍ତର୍ନିହିତ ବାଣୀ। ଜାତୀୟ ଜୀବନର ଆତ୍ମବିକାଶ କାହାଣୀ ବର୍ତ୍ତମାନ ପାଇଁ ଏତିକିରେ ଶେଷ କରୁଛି। ୧୯୫୬ ମସିହା ଡିସେମ୍ବର ୬ ତାରିଖରୁ ପାର୍ଲିଆମେଣ୍ଟର ରାଜ୍ୟସଭାକୁ ମୁଁ ନିର୍ବାଚିତ ହୋଇଛି। ରାଜ୍ୟସଭାରେ ଓଡ଼ିଶାର ସଭ୍ୟସଂଖ୍ୟା ଦଶ ଜଣ। କାର୍ଯ୍ୟ କରିବାକୁ ଗୋଟିଏ ସୁଯୋଗ ଘଟିଛି। ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଦେଶସେବାରେ ଏ ଜୀବନ ଲୀନ ହେଉ ଏବଂ ଆତ୍ମବିକାଶ ପୁସ୍ତକର ପରବର୍ତ୍ତୀ ଖଣ୍ଡ ଲେଖିବାକୁ ସମର୍ଥ ହୁଏ। ଦେଶବାସୀଙ୍କ ନିକଟରୁ ମୋର ଏହି ଆଶୀର୍ବାଦ ଭିକ୍ଷା।

